

## ବସନ୍ତ କୁମାର ଶତପଥୀ
(୧୯୧୩-୧୯୯୪)

ଜନ୍ମ ମୟୂରଭଞ୍ଜ ଜିଲ୍ଲାର ପାଣ୍ଡଦା ଗ୍ରାମରେ।

ରେଭେନ୍ସା କଲେଜ ଓ ପାଟନା ବିଶ୍ୱବିଦ୍ୟାଳୟରେ ଉଚ୍ଚଶିକ୍ଷା ଲାଭ । ପରେ ମୟୂରଭଞ୍ଜ ମହାରାଜାଙ୍କ ପବ୍ଲିସିଟି ଅଫିସର ଭାବରେ କାର୍ଯ୍ୟରତ। ମୟୂରଭଞ୍ଜ ମିଶ୍ରଣ ପରେ ବିଭିନ୍ନ ସରକାରୀ କଲେଜରେ ଇଂରାଜୀ ଅଧ୍ୟାପକ କାର୍ଯ୍ୟକରି ୧୯୭୦ ମସିହାରେ ଅବସର ଗ୍ରହଣ।

ଏକାଧାରରେ ଅନୁବାଦକ, ସମ୍ପାଦକ, ସଂକଳକ, ସମାଲୋଚକ, ଏବଂ ରମ୍ୟରଚନା, ସର୍ବୋପରି କ୍ଷୁଦ୍ରଗଳ୍ପ ଲେଖକ ହିସାବରେ ସୁପରିଚିତ।

'ମନେପଡ଼େ' ତାଙ୍କ ରଚିତ ଦୀର୍ଘତମ ସାହିତ୍ୟକୃତି, ଯେଉଁଥିରେ ଜୀବନର ବିଶେଷ ଘଟଣା ଲେଖକ ନିଜର ଅନନୁକରଣୀୟ ଶୈଳୀରେ ବର୍ଣ୍ଣନା କରିଛନ୍ତି । ନିଜର ସର୍ବୋତ୍ତମ ଅନୁଭୂତି, ଜାତିୟତାବାଦୀ ଓ ସମାଜବାଦୀ ନେତା, ରାଜା ମହାରାଜାମାନଙ୍କ, ଠାରୁ ଆରମ୍ଭ କରି ନିଜର ଆତ୍ମୀୟସ୍ୱଜନ, ବନ୍ଧୁ-ବାନ୍ଧବ ତଥା ସାଧାରଣ ଲୋକଙ୍କ ବିଷୟରେ ମନୋରମ ଓ ସାବଲୀଳ ଭାଷାରେ ପ୍ରକାଶ କରିଛନ୍ତି ।

— ପ୍ରକାଶକ

ବସନ୍ତ କୁମାର ଶତପଥୀ

# ମନେପଡେ

ସମ୍ପାଦନା

ସୁମନ୍ୟୁ ଶତପଥୀ




ଭୁବନେଶ୍ୱର

# ମନେପଡ଼େ

| | |
|---|---|
| ଲେଖକ | ବସନ୍ତ କୁମାର ଶତପଥୀ |
| ସମ୍ପାଦନା | ସୁମନ୍ୟୁ ଶତପଥୀ |
| ପ୍ରକାଶକ | ଶିକ୍ଷାସନ୍ଧାନ,<br>ଏ-୧୨, ହାଉସିଂ ବୋର୍ଡ଼ କଲୋନୀ<br>ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩,<br>ଫୋନ୍-୦୬୭୪-୨୫୫୬୧୦୯, ୨୫୫୦୬୫୬ |
| ପ୍ରକାଶନ କାଳ : | ଅକ୍ଟୋବର, ୨୦୦୮ |
| ମୁଦ୍ରଣ | ଶିକ୍ଷାପ୍ରକାଶନୀ,<br>ଏ-୧୨, ହାଉସିଂ ବୋର୍ଡ଼ କଲୋନୀ, ବରମୁଣ୍ଡା,<br>ଭୁବନେଶ୍ୱର-୭୫୧୦୦୩, |
| ମୂଲ୍ୟ | ୨୫୦/- |

---

# *Mane Pade*

| | |
|---|---|
| Author | **Basanta Kuamar Satpathy** |
| Edited by | Sumanyu Satpathy |
| Year of Publication | **October, 2008** |
| Publisher | **Sikshasandhan,**<br>A-12, Housing Board Colony, Baramunda,<br>Bhubaneswar-751003, |
| Printed at | **Siksha Prakashani,**<br>A-12, Housing Board Colony, Baramunda,<br>Bhubaneswar-751003,<br>Ph-0674-2556109,2550656 |
| I.S.B.N No. | 13:978-81-87982-46-3 |
| Price | **Rs. 250/-** |

# ଦୁଇପଦ

"ମନେପଡ଼େ" ଅନେକ ବାଧାବିଘ୍ନ ଅତିକ୍ରମ କରି ଆଜି ଶେଷରେ ପ୍ରକାଶିତ ହେବା ଓଡ଼ିଶାର ସାଂସ୍କୃତିକ ଇତିହାସ ପରମ୍ପରା ଦୃଷ୍ଟିରୁ ଏକ ବିଶେଷ ଘଟଣା କହିଲେ ଅତ୍ୟୁକ୍ତି ହେବନାହିଁ। "ଲେଖା" ପରିବାର ପ୍ରାୟ ଷୋହଳ ବର୍ଷରୁ ଊର୍ଦ୍ଧ୍ୱ ସମୟ ବିତିଯାଇଥିବା ଦୁଃଖର ବିଷୟ; ଏହି ବିଳମ୍ବ ପକାଶେ ହୁଏତ ଆମେ ସମସ୍ତେ ଊଣା ଅଧିକେ ଦାୟୀ। କିନ୍ତୁ "Better late than never" ମର୍ମରେ ଆମେ କିଛିଟା ଦୋଷମୁକ୍ତ ହୋଇପାରିବା ବୋଲି ଆଶା।

ଉପରୋକ୍ତ ପରିଚ୍ଛେଦରେ "ଲେଖା" ଶବ୍ଦଟିକୁ ଉଦ୍ଧୃତ ଚିହ୍ନ ଦ୍ୱାରା ଚିହ୍ନିତ କରାଯାଇଥିବା ଲକ୍ଷ୍ୟକରି ପାଠକେ ହୁଏତ ଆମୋଦିତ ତଥା ମୃଦୁ ଆଶ୍ଚର୍ଯ୍ୟ ହୋଇଥିବେ। ଉଦ୍ଧୃତ ଚିହ୍ନର ତାତ୍ପର୍ଯ୍ୟ ଏହା ଯେ ପାଣ୍ଡୁଲିପିଟିକୁ ସମ୍ପୂର୍ଣ୍ଣରୂପେ ନିଜେ ବସନ୍ତ ଶତପଥୀ ଲେଖିପାରି ନାହାନ୍ତି। ପ୍ରାୟ କୋଡ଼ିଏ ବା ପଚିଶି ଅଧ୍ୟାୟ ପର୍ଯ୍ୟନ୍ତ ହାତରେ ଲେଖିବା ପରେ ବାକି ଅଂଶ ଅନର୍ଗଳ ଡାକି ଲିପିକାରମାନଙ୍କ ଦ୍ୱାରା ଲିପିବଦ୍ଧ କରାଇଛନ୍ତି। ଏହି ପ୍ରକ୍ରିୟାରେ ଲେଖାଯାଉଥିବା ସମୟରେ, ପାଣ୍ଡୁଲିପିଟି ସମ୍ପୂର୍ଣ୍ଣ ହେବା ପୂର୍ବରୁ, ଲେଖକ ଅସୁସ୍ଥ ହୋଇ କିଛି ମାସ ମଧ୍ୟରେ ମୃତ୍ୟୁବରଣ କରିଥିଲେ ଓ "ମନେପଡ଼େ" ଅସମ୍ପୂର୍ଣ୍ଣ ରହିଗଲା। ମାତ୍ର କିଛିଟା ଆଶ୍ୱାସନା ମିଳେ ଯଦି ଆମେ ଭାବୁ ଯେ "ମନେପଡ଼େ"ର ସବୁଠାରୁ ମହତ୍ତ୍ୱପୂର୍ଣ୍ଣ, ମନୋରମ ଓ ଆକର୍ଷଣୀୟ ଭାଗ ଲିପିବଦ୍ଧ ଏବଂ ପ୍ରକାଶିତ ହୋଇପାରିଛି। ସେଥିପାଇଁ ଆମେ ନିଜକୁ ଭାଗ୍ୟବାନ୍ ମନେ କରିବା ସଙ୍ଗେସଙ୍ଗେ ସେଇ ଯେଉଁ ଲିପିକାର ସମୂହ ଗ୍ରନ୍ଥ ଲେଖାରେ ସହାୟକ ହୋଇଛନ୍ତି ତାଙ୍କୁ କୃତଜ୍ଞତା ଜଣାଇବା। ଏହି ପ୍ରାୟତଃ ଅଜ୍ଞାତ ଲିପିକାରମାନଙ୍କ ମଧ୍ୟରେ ଅଛନ୍ତି ଲେଖକଙ୍କର କିଛି ପୂର୍ବତନ ଛାତ୍ରଛାତ୍ରୀ ଓ ସେହି ସମୟରେ ସ୍କୁଲ୍ କଲେଜରେ ପଢୁଥିବା ଆଉକିଛି ପିଲା। ପରେ ଅନେକ ଅନୁସନ୍ଧାନ କରି ଏଇ ଭିତରୁ କେତେକଣଙ୍କ ପରିଚୟ ଜଣାପଡ଼ିଲା। ସେମାନେ ହେଲେ : ଦୋଳଗୋବିନ୍ଦ ମହାନ୍ତ, ରବୀନ୍ଦ୍ର ଶତପଥୀ ଓ ସର୍ବୋପରି କନିଷ୍ଠ ବୋହୂ ସନ୍ଧ୍ୟା। ବିଚିତ୍ର ସାହୁ ନାମକ ସେ ସମୟର ଜଣେ ତରୁଣ ଅଧ୍ୟାପକ ମଧ୍ୟ ଲେଖକଙ୍କୁ ସାହାଯ୍ୟ କରିବା କଥା ଜଣାଯାଇଛି। ଏ ସମସ୍ତ ପରିଚିତ ଓ ଅପରିଚିତ ବ୍ୟକ୍ତିମାନଙ୍କ ନିକଟରେ ଆମେ ସମସ୍ତେ ଋଣୀ।

ବିଗତ କିଛି ବର୍ଷ ମଧ୍ୟରେ "ମନେପଡ଼େ" ନାମରେ ଅନେକ ଆତ୍ମଜୀବନୀ ପ୍ରକାଶିତ ହୋଇସାରିଲାଣି। କିନ୍ତୁ ୧୯୮୮ରେ ଯେତେବେଳେ ବସନ୍ତ ଶତପଥୀଙ୍କ "ମନେପଡ଼େ" ଧାରାବାହିକ ହିସାବରେ ପ୍ରଥମେ ପ୍ରକାଶ ଲାଭ କଲା, ସେ ପର୍ଯ୍ୟନ୍ତ ଏ ଶୀର୍ଷକରେ କୌଣସି ପୁସ୍ତକ ନଥିଲା। ଏଇ କୋଡ଼ିଏ ବର୍ଷ ମଧ୍ୟରେ "ମନେପଡ଼େ" ଶୀର୍ଷକର ବହୁଳତା ଲକ୍ଷ୍ୟକରି, କେତେକଣ ବନ୍ଧୁ ଏକ ଭିନ୍ନ ଶୀର୍ଷକ ଚୟନ କରିବାକୁ ପରାମର୍ଶ ଦେଇଥିଲେ। କିନ୍ତୁ ପରିବାରର ସମସ୍ତ ସଦସ୍ୟ ବିଚାର ବିମର୍ଶ ପରେ,

ଉପରୋକ୍ତ ଉପଦେଶକୁ ଗ୍ରହଣ ନକରିବା ଓ ଲେଖକଙ୍କ ଚୟିତ ଶୀର୍ଷକକୁ ରଖିବା ଉଚିତ ମନେକଲୁ ।

ସେ ଯାହାହେଉ ପତ୍ରିକାର ତତ୍କାଳୀନ ସମ୍ପାଦକ ପୀତାମ୍ବର ମିଶ୍ର "ମନେପଡ଼େ"କୁ "ନବଲିପି"ରେ କ୍ରମ ପ୍ରକାଶ କରିବାର ପ୍ରତିଶ୍ରୁତି ଦେବାପରେ ବସନ୍ତ ଶତପଥୀ ଆଗ୍ରହାନ୍ୱିତ ହୋଇ ପାଣ୍ଡୁଲିପିର ଅନେକ ଅଧ୍ୟାୟ ବାରମ୍ବାର ସଂଶୋଧନ କରି ବେଶ୍ ତ୍ରୁଟିଶୂନ୍ୟ ଅବସ୍ଥାରେ ଛପାଇ ପାରିଥିଲେ । ଜୁନ୍ ୧୯୮୮ରୁ "ନବଲିପି"ର "ଫିଚର" ଭାଗରେ "ମନେପଡ଼େ" କ୍ରମଶଃ ପ୍ରକାଶିତ ହେବାକୁ ଲାଗିଲା । ବର୍ଷେପରେ, ଅର୍ଥାତ୍ ଅଗଷ୍ଟ-ସେପ୍ଟେମ୍ବର ୧୯୮୯ ସଂଖ୍ୟାରୁ, ହଠାତ୍ ଗୋପୀନାଥ ମହାନ୍ତିଙ୍କ ଆତ୍ମଜୀବନୀ "ସ୍ରୋତସ୍ୱତୀ" ମଧ୍ୟ ଧାରାବାହିକ ହିସାବରେ ସ୍ଥାନପାଇବାକୁ ଲାଗିଲା । ଗୋଟିଏ ପତ୍ରିକାରେ ଦୁଇଟି ଆତ୍ମଜୀବନୀ ଧାରାବାହିକ ଭାବେ ପ୍ରକାଶ କରିବା ହୁଏତ ବୁଦ୍ଧିମାନର କାର୍ଯ୍ୟ ନୁହେଁ ଭାବି କେଉଁ ଗୋଟିଏକୁ ସ୍ଥଗିତ କରିବା ନିଷ୍ପତ୍ତି ନେଲାପରେ କେଉଁଟିକୁ ବଳିଦିଆଯିବ ସେକଥା ନିର୍ଣ୍ଣୟ କରିବା ପାଇଁ ମିଶ୍ରବାବୁଙ୍କୁ ବିଶେଷ କଷ୍ଟ ହୋଇନଥିବ ନିଶ୍ଚୟ । ଅତିଶୀଘ୍ର ବସନ୍ତ ଶତପଥୀଙ୍କ "ମନେପଡ଼େ" "ସ୍ରୋତସ୍ୱତୀ" ନିକଟରେ ହାରମାନି ଲୋକଲୋଚନରୁ ଅନ୍ତର୍ହିତ ହୋଇଗଲା, ଜାନୁୟାରୀ ୧୯୯୦ରେ ଶେଷଥର ପାଇଁ ଗୋଟିଏ ଭାଗ ପ୍ରକାଶିତ ହେଲାପରେ ଏହି ନୃଶଂସ ନିଷ୍ପତ୍ତି "ମନେପଡ଼େ" ପ୍ରତି ଏକ କୁଠାରଘାତ ବୋଲି କୁହାଯାଇପାରେ । ଏପରି ପରିସ୍ଥିତିରେ ଯେକୌଣସି ଲେଖକ ମର୍ମାହତ ହେବା ସ୍ୱାଭାବିକ । ବସନ୍ତ ଶତପଥୀ ତ ସହଜରେ ସ୍ପର୍ଶକାତର ଥିଲେ ଏବଂ ସମ୍ପାଦକଙ୍କ ହାତରେ ଏପରି ଅବହେଳିତ ହୋଇ ଭାଙ୍ଗିପଡ଼ିଲେ ଓ ଲେଖା ପ୍ରାୟ ବନ୍ଦ କରିଦେଲେ ।

କିଛି ମାସ ବା ବର୍ଷ ପରେ "ଚୋରକୁ ଅଭିମାନ କରି ଖପରାରେ ଖାଇବା" ଠିକ୍ ମନେ ନକରି ସେ ପୁଣି ଲେଖା ଆରମ୍ଭ କଲେ । କିନ୍ତୁ ବାର୍ଦ୍ଧକ୍ୟ, ଶାରୀରିକ ଓ ମାନସିକ ଅସୁସ୍ଥତା ହେତୁ ତାଙ୍କର ଅବଶ ହାତର ଲେଖା ଅସ୍ପଷ୍ଟ ହେଲା ଓ ଲିପିକାରମାନଙ୍କୁ ଡାକି ଲେଖାଇବା ଛଡ଼ା ତାଙ୍କ ହାତରେ ଅନ୍ୟ କିଛି ଉପାୟ ନଥିଲା । କହିବା ବାହୁଲ୍ୟ ପାରିଶ୍ରମିକ ଦେଇ ଏ କାମ କରାଇବାର ସଂସ୍କୃତି ଆମ ଜାତିରେ ନାହିଁ କିମ୍ବା ସେ ସମୟରେ ଅନ୍ତତଃ ନଥିଲା ।

"Labour of love" ହିସାବରେ କିପରି କେତେକଣ ସ୍ୱଇଚ୍ଛାରେ ଲେଖକଙ୍କୁ ସାହାଯ୍ୟ କରିଥିଲେ ସେକଥା ପୂର୍ବରୁ କୁହାଯାଇଛି । ଅବଶୋଷ, ଏମାନଙ୍କ ମଧ୍ୟରୁ କେତେକଣଙ୍କୁ କୌଣସି ଭାଷା ଭଲଭାବରେ କଣା ନଥିଲା । ଅନେକ ସମୟରେ ଲେଖକଙ୍କର ଅନର୍ଗଳ ସ୍ମୃତିଚାରଣ ହୁଏତ ନବୁଝି ଏଇ ଲିପିକାରମାନେ ଲେଖିବାକୁ ବାଧ୍ୟ ହୋଇଥିଲେ । ଏହି ପ୍ରକ୍ରିୟାର ଫଳାଫଳ ଦେଖି ସହଜରେ ଅନୁମାନ କରିହେବ ଯେ ବ୍ୟାସ କାହିଁକି ତାଙ୍କର ଲିପିକାର ଗଣେଶଙ୍କୁ ପ୍ରଥମେ ବୁଝି ତା'ପରେ ଲେଖିବାକୁ କହିଥିଲେ । ବସନ୍ତ ଶତପଥୀଙ୍କ ପାଣ୍ଡୁଲିପିରେ ଲିପିକାରମାନଙ୍କ ସୃଷ୍ଟ ଅଜାଣତ-

ବ୍ୟାସକୂଟର ସଂଖ୍ୟା ଏତେ ବେଶୀ ଥିଲା ଯେ, ଅଡୁଆ ଗଣ୍ଠି ଖୋଲି ସଜାଇବାରେ ଅକ୍ଳାନ୍ତ ପରିଶ୍ରମ କରିବାକୁ ପଡ଼ିଥିଲା । ମୟୂରଭଞ୍ଜର କଥିତ ଭାଷା ତଥା ଲୋକଗୀତ ଇତ୍ୟାଦିର ଲିପିକାରମାନଙ୍କ ଦ୍ୱାରା ଭୁଲ ଲେଖାଯିବା ଅନେକ ସମୟରେ ଅବାନ୍ତର ବା ମାନେ ନଥିବା ପଙ୍‌କ୍ତି ସୃଷ୍ଟି କରିଥିଲା ଏବଂ ଏସବୁକୁ ସୁଧାରିବା ଏକ କଷ୍ଟସାଧ୍ୟ ବ୍ୟାପାର ହୋଇପଡ଼ିଲା । ଏ ସବୁତ ଗତ ଦୁଇ ବା ତିନି ବର୍ଷ ତଳର ଘଟଣା ।

ତାପୂର୍ବରୁ ଓ ୧୯୯୪ରେ ବସନ୍ତ ଶତପଥୀଙ୍କ ମୃତ୍ୟୁ ପରେ ବ୍ରଜନାଥ ରଥ "ମନେପଡ଼େ"ର ପ୍ରକାଶନ ଦାୟିତ୍ୱ ନେଇଥିଲେ । "ନବଲିପି"ରେ ଛପାହୋଇଥିବା ଭାଗଗୁଡ଼ିକ ଅକ୍ଳେଶରେ DTP ହୋଇଗଲା ପରେ, ପ୍ରୁଫ୍ ମଧ୍ୟ ଦେଖାସରିଗଲା । କିନ୍ତୁ ବାକି ପୃଷ୍ଠାଗୁଡ଼ିକ (ପ୍ରାୟ ୩୦୦ ପୃଷ୍ଠାରୁ ଅଧିକ) ଏତେ ବେଶୀ ଅସ୍ପଷ୍ଟ ଓ ତ୍ରୁଟିପୂର୍ଣ୍ଣ ଥିଲା ଯେ ସବୁଠାରୁ ସିଦ୍ଧହସ୍ତ DTP କଲାବାଲାର କ୍ଷମତାକୁ ମଧ୍ୟ ମୁକାବିଲା କଲା । ବ୍ରଜବାବୁ କିନ୍ତୁ ସହଜରେ ଛାଡ଼ିବା ବ୍ୟକ୍ତି ନୁହନ୍ତି । କଷ୍ଟେମଷ୍ଟେ ସେସବୁ ପୃଷ୍ଠାକୁ DTP କରାଇଲେ । ଏହାର ଫଳାଫଳ ମଧ୍ୟ ଭୟାବହ ହେଲା । ପ୍ରଥମ ପ୍ରୁଫ୍‌ର ସଂଶୋଧିତ ପୃଷ୍ଠା ଯେକୌଣସି ସଂଗ୍ରହାଳୟରେ ସ୍ଥାନ ପାଇବା ଯୋଗ୍ୟ । କାରଣ ପ୍ରତ୍ୟେକ ପୃଷ୍ଠାରେ ଏତେ ବେଶୀ ଗାର ଟଣା ହୋଇଥିଲା ଯେ ଛପା ଅକ୍ଷର ଅପେକ୍ଷା ବିଭିନ୍ନ ରଙ୍ଗର କଲମ ଦାଗ ବହୁଳତର ଥିଲା । ସେସବୁ ସଂଶୋଧନକୁ ବ୍ୟବହାର କରିବା ଅପେକ୍ଷା ନୂଆ କରି DTP କରିବା ସହଜ ମନେ ହେଲା. ଏ ମଧ୍ୟରେ ପାଞ୍ଚ/ଛଅ ବର୍ଷ ବିତିଗଲା । କାରଣ ପରିବାର ମଧ୍ୟରେ ଆମ ନିଜନିଜ ଭିତରେ ବୁଝାମଣାର କିଛିଟା ଅଭାବ ରହିଲା ତଥା ବ୍ରଜବାବୁ ସାହିତ୍ୟ ଏକାଡେମୀ ଓ ଫକୀରମୋହନ ସାହିତ୍ୟ ପରିଷଦ (ବିଶ୍ୱଶ୍ରୀ ପ୍ରେସ୍‌ର ବ୍ୟସ୍ତତା ଛାଡ଼ି) ନାନାଧି ଦାୟିତ୍ୱରେ ଜଡ଼ିତ ଥିବାରୁ ତାଙ୍କଦ୍ୱାରା "ମନେପଡ଼େ"ର ଅଡୁଆକୁ ସିଧା କରିବା ସମ୍ଭବ ହେଲା ନାହିଁ । ପ୍ରାୟ ୨୦୦୪ ମସିହାରେ ଆମେ DTP କାର୍ଯ୍ୟରେ ସିଧାସଳଖ ସହାୟତା କରିବା ପାଇଁ ଆଗଭର ହେଲୁ ଏଇ ଆଶାରେ ଯେ କାମକୁ ଶୀଘ୍ର ଆଗକୁ ବଢ଼ାଇପାରିବା । କମ୍ପ୍ୟୁଟର୍‌ରେ ସବୁ ମିଳିଲା ମାତ୍ର "ମନେପଡ଼େ"ର DTPର ପତ୍ତା ମିଳିଲା ନାହିଁ । ଖୋଳାତଡ଼ାରୁ ଜଣାଗଲା ଯେ ଯେଉଁ ପୁରୁଣା କମ୍ପ୍ୟୁଟର୍‌ରେ DTP ହୋଇଥିଲା ତାହା କେଉଁ କାଳରୁ ରଦି ଦରରେ ବିକ୍ରି ହୋଇଯାଇଛି । ସେ ଯାହା ହେଉ, କାନମୁଣ୍ଡ ଆଉଁସି ବ୍ରଜବାବୁଙ୍କୁ କାକୁତିମିନତି ହୋଇ ସେହି ଅଦ୍ଭୁତ ପାଣ୍ଡୁଲିପି ଓ ପେଜ୍-ପ୍ରୁଫ(?)କୁ ଦୁଇ ତିନୋଟି ଫଟୋକପି କଲୁ ଏଇ ଆଶାରେ ଯେ ଏଇ ଶେଷ ସମ୍ବଳ ହଜିଯିବାର ଡ଼ର ବା ଦୁଃସ୍ୱପ୍ନ ଆଉ ରହିବ ନାହିଁ ।

ଯାପରେ ଚାଲିଲା ପ୍ରକାଶକଙ୍କ ସନ୍ଧାନ । ଲାଭ କ୍ଷତି ଓ ପଇସାର ହିସାବ । ଏଥିରେ ପ୍ରଭାବ ଓ ଅମଲାତନ୍ତ୍ରର ବଳ କଷାକଷିର ମଧ୍ୟ ପ୍ରଶ୍ନ ଉଠିଲା । ଲେଖକଙ୍କ ତରଫ ହୋଇ ତାଙ୍କର ଆତ୍ମସମ୍ମାନ କଥା ଭାବି ଆମେ ସ୍ଥିର କଲୁ ଯେ ନିଜ ବଳରେ ସିଏ ଆଗକୁ ଯିବେ, ପଇସା ବଳରେ ନୁହେଁ । "ଲେଖିବି ବହି ମୁଁ ଛାପିବୁ ତୁହି/ ପଇସା କିପାଇଁ ନେବୁରେ ଭାଇ", କିନ୍ତୁ ସବୁ ଚେଷ୍ଟା ବିଫଳ ହେଲା । କୌଣସି ଏକ "ବଡ଼" ପ୍ରକାଶକ ପାଣ୍ଡୁଲିପିର

ଗୋଟିଏ କପିନେଲେ ସଙ୍ଗେସଙ୍ଗେ ଛାପିଦେବାର ପ୍ରତିଶ୍ରୁତି ଦେଲେ। ପ୍ରାୟ ଦେଢ଼ବର୍ଷ ପରେ ପଚାରିବାରୁ (ଏଇ ଭିତରେ ଅନେକଥର ଫୋନ୍ କରାଯାଇଥିଲା ଭଦ୍ରାମୀ ସହକାରେ "ଆଉ କେତେଦିନ ?" ପ୍ରଶ୍ନ ସହ) ପ୍ରକାଶକ ରାଗିଯାଇ କହିଲେ, "ଆପଣ କାଲି ପାଣ୍ଡୁଲିପି ଦେଇ ଆଜି ପଚାରିଲେ କେମିତି ହେବ ?" ଏହା ପରେ ମୁଁ ଦ୍ୱିତୀୟଥର ଆଉ ଫୋନ୍ ନକରି ମୋର ଦୁଃଖ ବନ୍ଧୁ ଯତୀନ୍ଦ୍ର ନାୟକଙ୍କୁ ଜଣାଇଲି। ସେ ମୁହୂର୍ତ୍ତେ ମଧ୍ୟ ଅପେକ୍ଷା ନକରି କହିଲେ, "ଆମକୁ ଦେଉନ, 'ଶିକ୍ଷା ସନ୍ଧାନ' ତରଫରୁ ଆମେ ଛପାଇ ଦେବୁ।" "ଶିକ୍ଷାସନ୍ଧାନ" ତରଫରୁ ନିଷ୍ଠାପର ଶିକ୍ଷାଜନିତ ସମାଜସେବା କାର୍ଯ୍ୟ ଚାଲିଛି, ସେଥିମଧ୍ୟରୁ ପାଣ୍ଡୁଲିପି ସଂଗ୍ରହ, ଦୁର୍ଲଭ ଓ ମୂଲ୍ୟବାନ ପୁସ୍ତକର ପ୍ରକାଶନ ବା ପୁର୍ନପ୍ରକାଶନ ଉଲ୍ଲେଖଯୋଗ୍ୟ। "ମନେପଡ଼େ"କୁ ଶ୍ରଦ୍ଧା ଓ ଯତ୍ନ ଦ୍ୱାରା ଯେଉଁ ପୁନର୍ଜନ୍ମ ମିଳିଲା, ତାହା ଏ ଲେଖକ ପକ୍ଷରେ ଭାଷାଦ୍ୱାରା ପ୍ରକାଶ କରିବା ଅସମ୍ଭବ। ଯା'ହେଉ, "All is well that ends well", ଏବଂ ସେଥିପାଇଁ "ଶିକ୍ଷାସନ୍ଧାନ"ର ସମସ୍ତ କର୍ମକର୍ତ୍ତା ଓ କର୍ମକର୍ତ୍ତୀଙ୍କୁ ସବିଶେଷ ଧନ୍ୟବାଦ। ଅନିଲ ପ୍ରଧାନଙ୍କ ନିକଟରେ ଆମେ ଚିର ଋଣୀ।

ଶେଷରେ ଏହି ଆତ୍ମଜୀବନୀକୁ ବାଗକୁ ଆଣିବାରେ ଯେଉଁ ବ୍ୟକ୍ତିମାନଙ୍କ ସାହାଯ୍ୟ ମିଳିଛି ସେମାନଙ୍କ ନାମ ଉଲ୍ଲେଖ କରିବା ଆମର କର୍ତ୍ତବ୍ୟ : ସର୍ବପ୍ରଥମେ ବ୍ରଜନାଥ ରଥ ଓ ବିରାଜମୋହନ ଦାସ, ଯେଉଁ ଦୁଇଜଣ ଅନ୍ୟାନ୍ୟ ବନ୍ଧୁମାନଙ୍କ ସାଙ୍ଗରେ ମିଶି ବସନ୍ତ ଶତପଥୀଙ୍କୁ ଲେଖିବା ପାଇଁ ଉତ୍ସାହିତ କରାଇଥିଲେ, ଏବଂ ଯେଉଁମାନେ କି ତାଙ୍କୁ ନିଜର ଅନୁଭୂତିକୁ ଲୋକଲୋଚନକୁ ଆଣିବା ତାଙ୍କ ପକ୍ଷରେ କେତେ ଆବଶ୍ୟକ ସେ ବିଷୟରେ ତାଙ୍କର ଦୃଷ୍ଟି ଆକର୍ଷଣ କରିପାରିଥିଲେ। ଏତଦ୍‌ବ୍ୟତୀତ କୈଳାଶ ପଟ୍ଟନାୟକ (ଅନ୍ୟଜଣେ ବସନ୍ତ ଶତପଥୀଙ୍କ ମୁଗ୍ଧ ପାଠକ ଓ ନିଜଲୋକ) ଓ ଗୌରାଙ୍ଗ ଚରଣ ଦାସ ସର୍ବଶେଷ ପ୍ରୁଫ୍‌କୁ ପୁଙ୍ଖାନୁପୁଙ୍ଖ ଭାବରେ ଦେଖିଥିବାରୁ ବହିରେ ତ୍ରୁଟି ସଂଖ୍ୟାର ମାତ୍ରା ହ୍ରାସ ପାଇଥିବା ସମ୍ଭବ ହେଇ ପାରିଛି।

ସ୍ୱାଧୀନୋତ୍ତର ଭାରତର ଅନ୍ୟତମ କବି ପଦ୍ମଶ୍ରୀ ସୀତାକାନ୍ତ ମହାପାତ୍ର "ମନେପଡ଼େ"କୁ ପାଠକଙ୍କ ଆଗରେ ଉପସ୍ଥାପନା କରିବାକୁ ରାଜି ହୋଇଥିବାରୁ ଆମେ ତାଙ୍କ ନିକଟରେ ଚିରଋଣୀ।

ନୂଆଦିଲ୍ଲୀ
ମହାନବମୀ, ୨୦୦୮

ସୁମନ୍ୟୁ ଶତପଥୀ
(ବସନ୍ତ ଶତପଥୀଙ୍କ ପରିବାର ବର୍ଗ ତରଫରୁ)

# ବସନ୍ତ ବାବୁଙ୍କ 'ମନେପଡ଼େ' : ମୋଡ଼ ବୁଲିଲେ ଗପଟିଏ

ଫକୀରମୋହନ ସେନାପତିଙ୍କ 'ଆତ୍ମଜୀବନ ଚରିତ' ୧୯୧୭ରେ ପ୍ରକାଶିତ। ସେ ବହିର "ସୂଚନା"ରେ ତାଙ୍କ ନିଜସ୍ୱ ଶୈଳୀରେ ସେ ଲେଖିଛନ୍ତି : ଓଡ଼ିଆ ଭାଷାରେ ଜୀବନ ଚରିତ ବିଶେଷ ଅଭାବ। ମାତ୍ର ମୋ ତୁଚ୍ଛ ଜୀବନରେ ଜୀବନ ଚରିତର ଉପଯୋଗୀ ସେପରି ଗୁରୁତର ଉପାଦାନର ମଧ୍ୟ ନିତାନ୍ତ ଅଭାବ। ବିଶେଷରେ ଯେପରି ସଜାଇ ଲେଖିଲେ ପାଠକ ମହାଶୟଗଣ ଆଗ୍ରହ ସହିତ ପୁସ୍ତକ ପାଠରେ ପ୍ରବୃତ୍ତ ହେବେ, ସେପରି ଶକ୍ତି ମଧ୍ୟ ମୋର ନାହିଁ; ତେବେ ଏହି ଦୁଃସାହସିକ କାର୍ଯ୍ୟରେ ପ୍ରବୃତ୍ତ ହେବାର ଗୋଟିଏ ମାତ୍ର କୈଫିୟତ୍ ଅଛି। ଅଦୂର ଭବିଷ୍ୟତରେ ଅନେକଗୁଡ଼ିଏ ଆତ୍ମଜୀବନୀ ଲେଖକ ଆମ୍ଭମାନଙ୍କର ଏହି ପବିତ୍ର ଜନ୍ମଭୂମିରେ ବିଚରଣ କରିବେ। ଏହା ମୋର ଧ୍ରୁବ ବିଶ୍ୱାସ। ମୁଁ ସେମାନଙ୍କ ପାଇଁ ମୂଳଦୁଆ ମାତ୍ର ପ୍ରସ୍ତୁତ କରୁଅଛି"।

ତାଙ୍କ "ବିଶ୍ୱାସ" ଥିଲା ବାସ୍ତବରେ ଭବିଷ୍ୟବାଣୀ। ଆତ୍ମଜୀବନୀ ଆଜି ଓଡ଼ିଆ ସାହିତ୍ୟର ଏକ ଆଖିଦୃଶିଆ ଓ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ। ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, କୁଞ୍ଜବିହାରୀ ଦାଶ, ଗୋପୀନାଥ ମହାନ୍ତି, ଚିତ୍ତରଞ୍ଜନ ଦାସ, ସଚ୍ଚି ରାଉତରାୟ, ସୁରେନ୍ଦ୍ର ମହାନ୍ତିଙ୍କ ପରି ସାହିତ୍ୟିକ; ରମାଦେବୀ, ଅନ୍ନପୂର୍ଣ୍ଣା ମହାରଣାଙ୍କ ପରି ସମାଜସେବୀ; ହରେକୃଷ୍ଣ ମହତାବ, ନୀଳମଣି ରାଉତରାୟଙ୍କ ପରି ରାଜନୀତିଜ୍ଞ ଓ ଏମାନଙ୍କ ବ୍ୟତୀତ ଆହୁରି ଅନେକଙ୍କ ଆତ୍ମଜୀବନୀ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି। ସେଇ ପ୍ରବାହର ଧାରାରେ ବସନ୍ତ ବାବୁଙ୍କ 'ମନେପଡ଼େ' ଆଉ ଏକ ଉଲ୍ଲେଖନୀୟ ସଂଯୋଜନ।

ଆତ୍ମଜୀବନୀ ଦୁଇଟି କାମ କରିଥାଏ। ପ୍ରଥମତଃ ଆମକୁ ସୃଜନଶୀଳ ସ୍ରଷ୍ଟାର ବ୍ୟକ୍ତିଗତ ଜୀବନର ଘଟଣାବଳୀ ଓ ମନସ୍ତାତ୍ତ୍ୱିକ ପ୍ରତିକ୍ରିୟାର ସାମଗ୍ରିକ ପରିବର୍ତ୍ତନଶୀଳ ପୃଷ୍ଠଭୂମି ସହ ପରିଚିତ କରାଏ। ତା' ଫଳରେ ତା'ର ସୃଷ୍ଟି ସହିତ ଜୀବନର ଅତୁଟ ସଂପର୍କ ଓ ସେଇ ସଂପର୍କର ବିଶେଷତ୍ୱ ବିଷୟରେ ଆମେ ଧାରଣା କରିପାରୁ। ଦ୍ୱିତୀୟତଃ ଚାରିପଟର ବିଶ୍ୱକୁ ଅର୍ଥାତ୍ ସମାଜ, ନିର୍ଦ୍ଦିଷ୍ଟ ବ୍ୟକ୍ତି, ମୂଲ୍ୟବୋଧ ଇତ୍ୟାଦିକୁ ଗୋଟିଏ ଗବାକ୍ଷ ଖୋଲିଦିଏ। ସଂକ୍ଷେପରେ ବ୍ୟକ୍ତିଟିର ମନସ୍ତତ୍ତ୍ୱ ଓ ସମସାମୟିକ ସମାଜ ପ୍ରତି ତା'ର ଦୃଷ୍ଟିଭଙ୍ଗୀ ଆମେ ଜାଣିବାର ସୁଯୋଗ ପାଉ। ଖୁବ୍ "ବଡ଼ମଣିଷ"ଙ୍କ ଜୀବନ ମୁଖ୍ୟତଃ ଜଣାଶୁଣା ଘଟଣାବଳୀର ସମାହାର। ଯେମିତି ନେହେରୁଙ୍କ ଆତ୍ମଜୀବନୀ-କିନ୍ତୁ ସେଥିରେ ମଧ୍ୟ ତାଙ୍କର ମନସ୍ତତ୍ତ୍ୱ ବିଷୟରେ ଅନେକ କଥା ଜାଣିହୁଏ। କମଳା ନେହେରୁଙ୍କ ଅସୁସ୍ଥତା ଓ ମୃତ୍ୟୁ ଓ ସେଇ ସବୁଦିନର ଅନୁଭବରୁ ଆମକୁ ଭିନ୍ନ ଏକ ନେହେରୁ ଦେଖିବାକୁ ମିଳନ୍ତି।

ବସନ୍ତ ବାବୁଙ୍କ ମନସ୍ତତ୍ତ୍ୱ ବେଶୀଭାଗ ଅନ୍ତର୍ମୁଖୀ, ଆବେଗ-ପରିଚାଳିତ ଓ "ଅଙ୍ଗେ ନିଭେଇଥିବା" ଅନୁଭବ ପ୍ରତି ନିଷ୍ଠ। ଯାହା ଯାହା ମନେପଡ଼େ ବହିଟି ତା'ର ଏକ ସ୍ୱଚ୍ଛ, ବ୍ୟକ୍ତିନିଷ୍ଠ, ଅନୁରାଗଭରା ରୂପାୟନ। ପାଠକ ଆଖିକୁ ସ୍ୱତଃ ଦିଶିଯାଏ ସ୍ନେହୀ ମଣିଷଟିଏ, ଯିଏ ଜୀବନରେ ବହୁ ଦୁଃଖର ଝଡ ଝଞ୍ଜା ଭିତରେ ଯାଇଛି କିନ୍ତୁ ଜୀବନବିମୁଖ ହୋଇ ପଡ଼ିନି, ଭାଗ୍ୟକୁ ଦୋଷ ଦେଇନି। ଅନ୍ୟପକ୍ଷରେ ଭିତରେ ରହିଛି ଏମିତି କିଛି ଟାଣୁଆପଣ, ଜୀବନ-ଅନୁରକ୍ତି ଯାହା ଦୁଃଖ ସହିବାକୁ ଶିଖାଇଛି, ସ୍ନେହ ବାଣ୍ଟିବାକୁ ଶିଖାଇଛି, ଅନ୍ୟର ସୁଖଦୁଃଖରେ ଭାଗନେବାର ସ୍ୱାଭାବିକ ପ୍ରବୃତ୍ତିକୁ ଜିଆଇ ରଖିଛି।

ଆତ୍ମଚରିତ ମୋ ମତରେ "ଆତ୍ମାର ଚରିତ" ହେବା ବିଧେୟ। "ଆତ୍ମା" ନିଜେ ନିଜର ସାକ୍ଷୀ ପରି ଆତ୍ମଚରିତ ଲେଖୁଥିବା ବ୍ୟକ୍ତି ଆଉ କାହାକୁ ସାକ୍ଷୀ ରଖିବାକୁ ଚାହେଁନି। ଅନୁଭବ ନ କରିଥିବା କଥା ମନରୁ ଗଢି କହେନି, କୃତ୍ରିମତା ଓ ଛଳନାର ପାଖ ପଶେନା, ଅଯଥା ଦର୍ଶନ ବା ତତ୍ତ୍ୱ କଥା ବଖାଣେନା। ଅନେକଙ୍କ ଆତ୍ମଚରିତ ପଢ଼ିଲେ ତ ମନେହେବ ସେମାନେ ଜନ୍ମରୁ ହିଁ ମହାପୁରୁଷ ହୋଇ ପୃଥିବୀକୁ ଆସିଥିଲେ, କଳୁଷ ବା କଳୁଷ ତାଙ୍କୁ ଛୁଇଁ ପାରି ନଥିଲା। 'ମନେପଡ଼େ'ରେ ଯେଉଁ ଗୁଣଟି ପାଠକକୁ କିଣିନିଏ ସେଇଟି ହେଲା ତା'ର ସତ୍ୟନିଷ୍ଠତା ଓ ଆତ୍ମିକ ସ୍ତରରେ କାଟିଥିବା ଜୀବନର ସରଳ, କୃତ୍ରିମତାହୀନ, ସଂପୂର୍ଣ୍ଣ ରୂପାୟନ। ନଷ୍ଟାଲ୍‌ଜିଆର ଆବେଦନ ତ ପ୍ରଚୁର ଯାହା ଆମକୁ ତାଙ୍କ ସୁଖଦୁଃଖର ବଳୟ ଭିତରକୁ ଅନାୟାସରେ ଟାଣିନିଏ। ବସନ୍ତବାବୁଙ୍କୁ ଖୁବ୍ ଭଲଭାବରେ, ଅତି ନିକଟରୁ ନ ଜାଣିଥିଲେ ବି ଯେତିକି ଜାଣିବାକୁ ସେ ମୋତେ ସୁଯୋଗ ଦେଇଥିଲେ ତାହାକୁ ଭିତ୍ତିକରି କହିବି ଯେ ତାଙ୍କ ନିଜ ଜୀବନ ଓ ଏଇ ଜୀବନୀ କେବଳ ସମାନ୍ତରାଳ ନୁହନ୍ତି; ସେମାନେ ଏକାତ୍ମ।

ଉମାଦେଇପୁର ବନାମ ପାଦ୍ଧତାଠୁଁ ଆରମ୍ଭ କରି, ତେଲିଙ୍ଗି ବାଜା, ଅଫିମ ନିଶା ଧରିଆସୁଥିବା ପାଣିଗ୍ରାହୀ ମହାଶୟ, ଗାଆଁର ବର୍ଣ୍ଣନା (ଚାରିପଟେ ସାତୁଟା ପୋଖରୀ), ଜେଜେ, ପୋଥିଖେଦା, ପାଠ ଆରମ୍ଭ (ବିଦ୍ୟାରମ୍ଭେ ଗୁରୁଶ୍ରେଷ୍ଠ) ଦିନର ପୂଜାର୍ଚ୍ଚନା, ଖୀର୍ଷା ଓ ବାରିପଦାରେ ପାଠପଢ଼ା, ରାମକୃଷ୍ଣ ନନ୍ଦ ଓ 'ନିର୍ଝରିଣୀ'ର ଧାଡ଼ି-ଏମିତି କେତେ ଯେ କେତେ ଘଟଣା ଓ ସେଥିରେ ତାଙ୍କର ସ୍ଥିତି ଏତେ ଆତ୍ମୀୟତା ସହିତ ବର୍ଣ୍ଣିତ ଯେ ପାଠକ ପହୁଞ୍ଚିଯିବ ତାଙ୍କ ଗାଁରେ, ଦେଖିବ ସେଇ ସବୁ ମଣିଷଙ୍କୁ। ତା'ପରବର୍ତ୍ତୀ ଅଧ୍ୟାୟ ମାନଙ୍କରେ ସେ ଭେଟିବ କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କୁ। ନିଜେ ବାରବର୍ଷ ସଂପାଦନା କରିଥିବା ଭଂଜପ୍ରଦୀପର ପୂର୍ବତନ ସଂପାଦକ କାଳିନ୍ଦୀ ପାଣିଗ୍ରାହୀଙ୍କୁ, ଡ଼ି.ପି.ଆଇ ଅଫିସରେ ମହେଶ ପ୍ରଧାନ ଓ ଗୋକୁଳ ଶତପଥୀଙ୍କୁ, ମାନସିଂହ ଓ ନୀଳକଣ୍ଠ ଦାସଙ୍କୁ,

ପାରଳାଖେମୁଣ୍ଡିର 'ପାଲେସ୍ ଷ୍ଟ୍ରୀଟକୁ', ତାଙ୍କ ରମ୍ୟ ରଚନା ('ଜାଗରଣ' ପତ୍ରିକାରେ ପ୍ରକାଶିତ) 'The art of smoking'ର "ଆସ୍ୱାଦନ"କୁ। ସର୍ବୋପରି ନିଜ ପରିବାର, ସ୍ତ୍ରୀ ଓ ପିଲାଙ୍କ ସଂପର୍କରେ ଯେଉଁସବୁ ମାର୍ମିକ, ହୃଦୟସ୍ପର୍ଶୀ ଓ ଅନ୍ତରଙ୍ଗ ବର୍ଣନା ତାହା ସହଜରେ ଭୁଲିହେବନାହିଁ। ଘଟଣା ଓ ବ୍ୟକ୍ତିଙ୍କର ପ୍ରାଚୁର୍ଯ୍ୟ "ମନେପଡ଼େ"ରେ। ସଭିଏଁ ଜୀବନ୍ତ, ସାମୟିକ କଟାକ୍ଷ ସତ୍ତ୍ୱେ ସଂବେଦନଶୀଳ ମନର ପରିଚାୟକ। ଗାଆଁର ବର୍ଣନା ମୋତେ ମନେପକେଇଦିଏ ଫକୀରମୋହନଙ୍କ ଗାଆଁ ବର୍ଣନା, ଗାଆଁ ଦୀଘି ଓ ଗାଆଁର ମଣିଷଙ୍କୁ। ଭାଷା କିୟତ୍ ପରିମାଣରେ ଫକୀରମୋହନୀୟ ମାତ୍ର ବେଶୀଭାଗ ନିଜସ୍ୱ। 'ଭଞ୍ଜପ୍ରଦୀପ'ରେ ବସନ୍ତବାବୁଙ୍କ 'ଫକୀରମୋହନ ସେନାପତି' ଶୀର୍ଷକ ସମୀକ୍ଷାଟି ଦିବଂଗତ ବଂଧୁ ଶ୍ରୀ ଚିନ୍ତାମଣି ବେହେରାଙ୍କୁ କିପରି ଆକୃଷ୍ଟ କରିଥିଲା ସେକଥା ସେ ଲେଖିଛନ୍ତି ଏବଂ ଆଲୋଚନାଟିର ଅନ୍ତର୍ନିହିତ ରସଚେତନା, ଆଲୋକ ଓ ବିଶ୍ଳେଷଣୀ ପ୍ରତିଭା ପ୍ରତି ଦୃଷ୍ଟି ଆକର୍ଷଣ କରିଛନ୍ତି।

"ମନେପଡ଼େ"ରେ ବସନ୍ତବାବୁଙ୍କ ବ୍ୟାକୁଳଆତ୍ମ-ଅନ୍ୱେଷା, ସାମୟିକ ଆତ୍ମସଙ୍କଟ ଓ ସତ୍ୟାନୁସନ୍ଧାନର ଯଥେଷ୍ଟ ପରିଚୟ ମିଳେ। ଶୈଳୀରେ ସେ କିଛି ପରିମାଣରେ ପ୍ରହରାଜଙ୍କ ନିକଟବର୍ତ୍ତୀ। ଓଡିଆର ରମ୍ୟରଚନା ଇତିହାସରେ ବସନ୍ତ ବାବୁ ଏକ ପ୍ରମୁଖ ସ୍ୱର କିନ୍ତୁ ତାଙ୍କ ଆକ୍ଷେପ, ଭ୍ରୁକୁଟି ବା ବିଦ୍ରୂପ (ଯାହାକୁ ସାମଗ୍ରୀକ ଭାବେ "ସାଟାୟର" କୁହାଯାଏ) ଆଦୌ ଦ୍ୱେଷ-ଦୁଷ୍ଟ ନୁହେଁ; ବରଞ୍ଚ ସେସବୁ ବେଶ୍ ଚପଳ, ପିଲାଙ୍କ ସରଳ ଦୃଷ୍ଟିଭଙ୍ଗୀ ସଂପନ୍ନ ଓ ନିରହଂକାରୀ। ଏକଥା ମଧ୍ୟ ସ୍ମରଣୀୟ ଯେ ସେ ନିଜକୁ ବିଦ୍ରୂପ କରିବାକୁ ବି ଛାଡିନାହାନ୍ତି।

'ମନେପଡ଼େ' ପଛରେ ତାଙ୍କ ବ୍ୟକ୍ତିତ୍ୱର ଯେଉଁ ବିଶିଷ୍ଟ ଗୁଣସବୁ ବିଦ୍ୟମାନ ସେଗୁଡ଼ିକୁ ଏକାଠି ମିଶେଇ କହିଲେ ହେବ ସତ୍ୟନିଷ୍ଠତା ଓ ସ୍ୱ-ଅନୁଭବ ପ୍ରତି ଗଭୀର ଅନୁରକ୍ତି।

ପ୍ରିୟତମା ପତ୍ନୀଙ୍କ ବିୟୋଗ ତାଙ୍କ ଜୀବନରେ ଏକ ଅପୂରଣୀୟ ଶୂନ୍ୟତା ଯାହା ରଖିଗଲା ଏପରି ଏକ ନିଃସଙ୍ଗତା ଯେଉଁଥିରୁ ସେ ନିଜକୁ ପିଲାମାନଙ୍କ ପାଇଁ ଦାୟିତ୍ୱ ସ୍ନେହ, ଆଦର ଓ "ସାହିତ୍ୟର ଆଶ୍ରା" କରିଆରେ କିୟତ୍ ପରିମାଣରେ ମୁକ୍ତି ଲାଭ କରି ପାରିଥିଲେ। "ଗୋଟିଏ ଆଳୁ" ଗଳ୍ପ ସଂକଳନର ମୁଖବଂଧ "ପଦେ" ରେ ସେଇ ଦୁର୍ଦ୍ଦିନରୁ କିପରି "ସାହିତ୍ୟର ଆଶ୍ରା" ନେଇ ଥିଲେ "ବଞ୍ଚିରହିବା ଉଦ୍ଦେଶ୍ୟ ନେଇ" ସେ କଥା କହିଛନ୍ତି। ନିଜ ସଂପ୍ରର୍କରେ କହିଛନ୍ତି ସେ "ଆଣ୍ଟି-ରୋମାଣ୍ଟିକ୍" ଓ "ଡରୁଆ ଭୀରୁ ପ୍ରକୃତି"ର। କହିଛନ୍ତି "ମୁଁ ନୀଚ଼ତା, ଫୁଟାଣି ଓ ଭଣ୍ଡାମି ଘୃଣାକରେ ଏବଂ ପିନ୍ କଣ୍ଟା ମାରି ରବର ବେଲୁନ୍ ଫଟେଇବାକୁ ଭଲ ପାଏ"। (ଆମ ସମାଜର ଆଜିର ଦୁର୍ଦ୍ଦିନରେ ବେଲୁନ୍ ଫୁଟେଇବା ଲୋକ କେତେ ଜରୁରୀ ସତେ !)

କିନ୍ତୁ ଗଳ୍ପ କରିଆରେ ସେ କୁଆଡ଼େ ମୋହିଁଥିଲେ ? ତାଙ୍କରି ଭାଷାରେ ସାମାନ୍ୟରୁ ଅସାମାନ୍ୟ ମହାନ୍‌କୁ, ଇନ୍ଦ୍ରିୟରୁ ଇନ୍ଦ୍ରିୟାତୀତକୁ, ମେଣ୍ଟାଲ୍‌ରୁ ସୁପ୍ରାମେଣ୍ଟାଲକୁ, ଅନ୍ଧାରରୁ ଆଲୋକକୁ, ଅଜ୍ଞାନରୁ ଜ୍ଞାନକୁ, ବର୍ତ୍ତମାନରୁ ଭବିଷ୍ୟତକୁ, ଏକକଥାରେ 'ମରାମରା'ରୁ 'ରାମରାମ'କୁ। ଏଇ ଉତ୍ତରଣର ଅଭୀପ୍‌ସା ସର୍ବତ୍ର ଲକ୍ଷଣୀୟ ତାଙ୍କ ରଚନାରେ। ସେ ମଧ୍ୟ କହିଛନ୍ତି "ମୋର ବିଶ୍ୱାସ ମୋଡ ବୁଲିଲେ ଗପଟିଏ"। ଆତ୍ମଜୀବନର ପ୍ରତ୍ୟେକ ଛତ୍ରରେ ତାଙ୍କ ଜୀବନର ପ୍ରତି ମୋଡରେ ହିଁ ପାଠକକୁ ମିଳେ ଗପଟିଏ।

ଭୁବନେଶ୍ୱର
ଗଣେଶ ଚତୁର୍ଥୀ

ସୀତାକାନ୍ତ ମହାପାତ୍ର

## ।। ଏକ ।।

'ଲିଖିତଂ ଶ୍ରୀ ବସନ୍ତ କୁମାର ଶତପଥୀ, ପିତା ଶ୍ରୀ ଭୋଳାନାଥ ଶତପଥୀ, ଜାତିରେ ବ୍ରାହ୍ମଣ, ସାକିନ୍....' ଦ୍ୱିତୀୟ ଶ୍ରେଣୀରେ ପଢୁଥିଲା ବେଳେ ଏଇଠି ପରକଲମଟି ଅଟକି ଯାଉଥିଲା। ଉମାଦେଈପୁର ଲେଖିବି, ନା ପାନ୍ଧଡ଼ା ଲେଖିବି ? ଦ୍ୱିତୀୟ ମାଷ୍ଟର ବୃନ୍ଦାବନ ମିଶ୍ରଙ୍କ ଆଜ୍ଞାରେ ଉମାଦେଈପୁର ଶାସନ ଲେଖିଲି। ଭାରି କଡ଼ା ମାଷ୍ଟର, ଯାହା କହିବେ ସେଇଆ। ଟିକି କାନଟିକୁ ବାଁ ହାତରେ ଟାଣୁଥିବେ, ନହେଲେ ମୋଡୁଥିବେ ଏବଂ କାନ ଭିତର ଦେଇ ବୁଦ୍ଧି ପୂରାଉଥିବେ, ଲାଲ ହୋଇ ରକ୍ତ ବାହାରିବା ଅବସ୍ଥାକୁ ଆସିବା ଯାକେ।

ତା'ପରେ ପାଉତି ବିଶୋଧନ, ପଟା-କବୁଲିୟତ ନାହିଁ, କି ଉମାଦେଈପୁର ଶାସନ ନାହିଁ। କିନ୍ତୁ ଗାଁ ସ୍କୁଲ ଆଗରେ ପାନ୍ଧଡ଼ା ଉ:ପ୍ରା: ସ୍କୁଲ, ସ୍ଥାପିତ ୧୮୮୯' ଲେଖା ହୋଇଛି ପଟା ଖଣ୍ଡିକରେ ଖୋଦେଇ ହୋଇ। ଏଇଟି ବାପାଙ୍କର ହାତର କୀର୍ତ୍ତି। ଉମାଦେଈପୁର ଗଲା କୁଆଡ଼େ ? ପୁରୁଣା ଛାପା ମେପ୍‌ରେ 'ଉମାଦେଈପୁର' ଛୋଟ ଛୋଟ ଅକ୍ଷରରେ ତ ଥିଲା ! ଗଲା କୁଆଡ଼େ ? କିଏ କାହା ଆଦେଶରେ ଏ କଳାପାହାଡ଼ୀ କଥା କଲା ? ଯା ହେଉ ସେ ଭଦ୍ର ନାଆଁଟି ନାହିଁ। ଯାହାକୁ ପଚାରିଲେ କହିବ 'ପାନ୍ଧଡ଼ା'। ଗାଁର ଶିକ୍ଷିତ ଲୋକେ ମଧ୍ୟ କହି ପାରିବେ ନାହିଁ ଯେ, ଦିନେ ତାଙ୍କ ଗାଁଟିର ନାଁ ଉମାଦେଈପୁର ଥିଲା।

ପାନ୍ଧଡ଼ା ! କି ଅଜବ ନାଁ। ନା ଅଛି ଅର୍ଥ, ନା ଅଛି ସଭ୍ୟତା। ଲେଖିବା ଯେମିତି କଷ୍ଟ, ଉଚ୍ଚାରଣ କରିବା ତା'ଠୁଁ ବଳି। ଗାଁ ଛାଡ଼ି ବାହାର ଦୁନିଆଁକୁ ଯିବା ପରେ ଗାଁର ନାଆଁ 'ପାନ୍ଧଡ଼ା' କହିବାକୁ ଲାଜ ମାଡ଼ିଲା। ଅଥଚ ଏଇଟି ମୟୂରଭଞ୍ଜର (ସେବେ ରାଜ୍ୟ, ଏବେ ଜିଲ୍ଲା) ପ୍ରଖ୍ୟାତ ପ୍ରାଚୀନ ଗାଁ। ବାଟଘାଟରେ ଲୋକେ କୁହାକୁହି ହେଉଥିଲେ- "ପାନ୍ଧଡ଼ାରେ ଯେତେ ନୁକ ପାଠ ପଢ଼ିଛନ୍, ଚାକିରୀ କରୁଛନ୍, ସେମିତି କାହିଁ ନାହିଁ।"

ନାମବାଚକ ଶବ୍ଦଗୁଡ଼ାକ ଅର୍ଥହୀନ, ଖିଆଲିଆ; କିନ୍ତୁ ମୋ ସମୁଧିମାନଙ୍କ ଗାଁର ନାଆଁ ସତ୍ୟଭାମାପୁର, ବିଶ୍ୱନାଥପୁର, ଚକ୍ରଧରପୁର; ଛାତି ଫୁଲାଇ ଦୁନିଆଁକୁ କହିହେବ, କିନ୍ତୁ ପାନ୍ଧଡ଼ା ? ଅଖାଡୁଆ, ଅର୍ଥହୀନ, ଯିମିତି କରଠ, ଠରଣ। ବୟସ ପାହିଆ ବଢ଼ିବଢ଼ି ଚାଲନ୍ତେ ମନରେ ଏଇ ଗାଁର ନାଆଁ ଖଟକା ହୋଇ ରହିଗଲା। ଛୋଟ ଗାଁ ହେଲା ବୋଲି ତାର ନାଆଁ ନଥିବ ? ଯଦି ବା ଥିବ, ତାହା ଏମିତି ଅଶ୍ଳୀଳ ! କୋର୍ଟ କଚେରୀ, ବେଙ୍କ, ପୋଷ୍ଟ ଅଫିସ୍, ଥାନା, ବ୍ଲକ, ସ୍କୁଲ, କଲେଜ, ସେନସନ କାଗଜ, ଜମି ରେକର୍ଡ଼ ସବୁଠି ସେଇ ପାନ୍ଧଡ଼ା ! କି ଲଜ୍ଜା, ଅପମାନ !

ଦିନେ ଓତାବୁଢ଼ାଙ୍କୁ ପଚାରିଲି। କ୍ଷେତ୍ରମୋହନ ହୋତା। ଗାଁର ମୁଖିଆ। ପୁଅନାତିମାନେ ଉଚ୍ଚ ଶିକ୍ଷିତ, ବଡ଼ ବଡ଼ ଚାକିରିଆ। ଯଜନ-ଯାଜନରେ ସେ କରିତ୍‌କର୍ମା। ଆର୍ଯ୍ୟଋଷିଙ୍କ କଣ୍ଠସ୍ୱରରେ ସେ ଶ୍ଳୋକ ପଢ଼ିପାରନ୍ତି। ଉପନୟନ, ବିବାହ ବନ୍ଧାପନା ଆଦି କର୍ମରେ ସେ ନଥିଲେ ଜଣା ପଡ଼ିଯାଏ। ପାଣିପାଗ ସେ "ଇନସାଟ୍" (INSAT) ଅପେକ୍ଷା ବେଶି ଠିକ୍ କହିପାରନ୍ତି। ମାନଗଡ଼ିଆ ମେଘ, ସୁଆଁପାଟିଆ ମେଘ, ଉତ୍ତରା ହାଓ୍ୱା, ପୂବାଳି ପବନ- କାହାର କେତେ ଶକ୍ତି ତାଙ୍କୁ ଜଣା। ବାପାଙ୍କ କଥାନୁସାରେ ସେ ଏତେ ଟାଣୁଆଁ, ଶକ୍ତ, ଏତେ ବେଶି ବୟସରେ, ତାର ଏକମାତ୍ର କାରଣ- ସୋରିଷ ଆକାରର ଟିକିଏ ଅଫିମ। ତାଙ୍କର ରୋଗ ବୈରାଗ କିଛି ନାହିଁ, ସିଧା ସଳଖ ଚାଲନ୍ତି, ଭଲ ଖାଆନ୍ତି। ଦିନେ ତାଙ୍କୁ ପଚାରିଲି ଖୁବ୍ ଡ଼ରିମରି, "ଦଦେଇ ! ଆମର ଗାଁର ନାମ ଉମାଦେଇପୁର ଥିଲା, କେମିତି ପାଛଡ଼ା ହେଲା ?" ସେ ସାମାନ୍ୟ ବିରକ୍ତ ହୋଇ କହିଲେ, "ସେ କଥା କିଏ କହି ପାରିବ ? ପଚାର ପାଣିଗ୍ରାହୀଙ୍କି। ତାଙ୍କ ପୂର୍ବପୁରୁଷ ମହାରାଜା ମହାରାଣୀମାନଙ୍କଠାରୁ ଶାସନ ଦାନ ନେଇଥିଲେ। କିଛି କାଗଜପତ୍ର, ପଟ୍ଟା-ଦଲିଲ ଓ ଦସ୍ତାବିଜ ତାଙ୍କ ଘରେ ଥାଇପାରେ।" ଓତାବୁଢ଼ା ପ୍ରକୃତରେ ଗାଁର ଏକ ବିସ୍ମୟ। କେତେ ଘଡ଼ି, କେତେ ଦଣ୍ଡରେ ରାହୁ ବା କେତୁ, ସୂର୍ଯ୍ୟ ବା ଚନ୍ଦ୍ରଙ୍କୁ କେଉଁପଟୁ ଗ୍ରାସିବେ ତାହା ସେ ଗ୍ରହଣ ବା ପରାଗ ପୂର୍ବରୁ କହିଦେବେ। ଯେ କୌଣସି ବିଷୟରେ ସନ୍ଦେହମୋଚନ କରିବେ। ମାଲିମୋକଦ୍ଦମାକୁ ସେ ଡରନ୍ତି।

ଗାଁର ପାଣିଗ୍ରାହୀ ଅନ୍ୟ ଏକ ମୁରବି ସ୍ଥାନୀୟ ପୁରୁଷ। କିନ୍ତୁ ତାଙ୍କ ମହିମା ଅନ୍ୟ କ୍ଷେତ୍ରରେ ପ୍ରତିଭାତ। ସେ ପୋଖତ୍ ଚାଷୀ। ଆଜିକାଲି ଦୁନିଆଁରେ ସେ କୃଷି-ପଣ୍ଡିତ ବୋଲାଉଥାନ୍ତେ। ପୋଖରୀ ତଳ ମାଣେ ଜମିରେ ସେବର୍ଷ ପୋକ ଲାଗିଥାନ୍ତି। ଫୁଟି କାକୁଡ଼ି, ପିଆଜ, ରସୁଣ ଋତୁ ଅନୁସାରେ ଥାଏ। ଅଧେ ଜମିରେ ଆଖୁ ଲାଗିଥାଏ। ସେଇ ଆଖୁରୁ ତିଆରି ଗୁଡର ରଙ୍ଗ ଚମ୍ପାଫୁଲ ପରି। ଦିହର ରଙ୍ଗ, ଜାମାପଟା କିଛି ନଥାଇ ଖରାରେ ବିଲରେ ଖଟିଲେ ଯାହା ହେବାର କଥା। ବହୁ କଷ୍ଟରେ ଯଦୁନାଥ ପାଣିଗ୍ରାହୀ ବୋଲି ଦସ୍ତଖତ କରନ୍ତି, ଇସ୍କୁଲ କମିଟି ବା ଗୋବଧ ପ୍ରାୟଶ୍ଚିତ୍ତରେ ପଞ୍ଚାୟତ ମିଟିଂକୁ ଡ଼କରାହୁଏ। ଲୋକଟି ଖୁବ୍ ଅମାୟିକ। ସାଧ୍ୟ ମାତ୍ରାରେ ପରୋପକାରୀ। ଛୋଟ ଛୋଟ ପିଲା ଝିଲାଏ ପଇସାଟିଏ ଧରି ବାଡ଼ ଆରପାଖରୁ ଫୁଟି, କି ବୋଇତକଖାରୁ ଫୁଲ ମାଗିଲେ ଶରଧାରେ ଦିଅନ୍ତି; ବେଶି କ୍ଷତି, କମ୍ ଲାଭ ନୀତିରେ। ଏଇ ଆମ ଗାଁର ପାଣିଗିରି। ତାଙ୍କ ପୂର୍ବପୁରୁଷେ ଆମଗାଁକୁ କାହାଠୁ ଦାନ ଆଣିଥିଲେ ପରା।

ଶରତ ସନ୍ଧ୍ୟା। ପୂଜାଛୁଟି। ସ୍କୁଲ, କଲେଜ ପିଲାମାନେ ଓ ଗାଁର ଗପୁଡ଼ିମାନେ ଆମ ଦାଣ୍ଡପିଣ୍ଡାରେ ବସିଥାନ୍ତି। ସେଇଠି ପ୍ରତିଦିନ ସନ୍ଧ୍ୟାରେ ଭିଡ଼ ଜମେ। ଆଠ ବାଜୁ ନବାଜୁଣୁ

ଦାଣ୍ଡର ଏପଟୁ ସେ ପଟୁ ଶବ୍ଦ ଶୁଭେ 'ଏ ଗଦା ! ପଖାଳ ଖାଇବୁ ଆ'; 'ଏ ଭାଜ ! ବଢ଼ା ହେଲାଣି'; 'ଏ ହରିଆ, ଆସୁଛୁ ନା, ରାତି ଅଧ ହେଲାଣି, ତୋ ମାଆ ଆଉ ଚାହିଁ ପାରିବନି ।' ସଭା ମଉଳି ଯାଏ, କେବଳ ଉମାକାନ୍ତ ନନା ଖଟଟିରେ ଶୋଇ ଗୁଣୁ ଗୁଣୁ ଗୀତ ଗାଉଥାଏ 'ସୁଶୀଳମାଳତୀ'ରୁ ।

"ହେଇ ପାଣିଗିରି ଆସୁଛନ୍ତି"– ବାଙ୍କା କହିଲା । ପଶ୍ଚିମ ପଟୁ ମନ୍ଦିର ପାଖ ଦାଣ୍ଡରେ ଦିଶିଲା ଲଣ୍ଠନ ଆଲୁଅ, ଶୁଭିଲା କଠଉ ଶବ୍ଦ । ପାଣିଗ୍ରାହୀ, ଗାଁର ମଉଡ଼ମଣି । ପିଣ୍ଡାକୁ ଉଠି ଲଣ୍ଠନ ମିଞ୍ଜି ମିଞ୍ଜି ଅବସ୍ଥାକୁ ଆଣିଦେଲେ । ଲଣ୍ଠନଟି ଆଲୁଅପାଇଁ ନୁହେଁ, ବିଡ଼ି ଲଗାଇବାପାଇଁ । ବାଙ୍କା କହିଲା, 'ବାଃ ! କି ବଢ଼ିଆ ବାସନା !' ପାଣିଗିରି ବାବୁ ଭାରି ରସିକ ଲୋକ । ପାଣିଗିରି କହିଲେ- "ଆଜି ବାଡ଼ିରେ ଟବକା କନିଅରି ଫୁଲ ପ୍ରଥମ ଫୁଟିଲା । ତୋଳିଲା ବେଳେ କଢ଼ ଥିଲା, ଏଇ ଫୁଟିଲା । କାନରେ ଲଗାଇ ଦେଇଛି । ଖୁବ୍ ବାସନା, ବଣୁଆ ଫୁଲ ତ । ନେ ବାଙ୍କା, ବିଡ଼ିଟା ଧର ।" ବାଙ୍କା ବଡ଼ ଲଣ୍ଠନଟାର କାଚ ଉଠାଇ ଇଞ୍ଜିନ ମାର୍କା ବିଡ଼ି ଧରାଇ କହିଲା- "ପାଣିଗିରିଙ୍କ ଲଣ୍ଠନ କାଚ କେଡ଼େ ବଡ଼, କେଡ଼େ ସଫା, ଡ଼େଲାଇଟ୍ ପରି ଜଳେ ।" ପାଣିଗିରି କହିଲେ- "ଜର୍ମାନୀ ଲଣ୍ଠନ, ଡ଼ିକ୍ କଂପାନୀ; ସାନଟା ଦଶଅଣା, ମାଝାରି ଚଉଦଅଣା । ମୋର୍ ଏଇ ବଡ଼ଟା ଟଙ୍କାଏ ଚାରିଅଣା । ହେଲେ, ବିଡ଼ି ଖାଇବା ଲୋକ ତୁମ ଭିତରେ ଆମର ଏଇ ବସନ୍ତ ବାବୁ । ଗଣପତି ଦୋକାନର ଇଞ୍ଜିକିଆ ବିଡ଼ି । ତିନିକଠା (୭୫ଟା) ଆଉ ଦୁଇ ପକେଟ ସିଗ୍ରେଟ୍ । ସେ ଯେତେ ଧୂଆଁ ଟାଣିଲେଣି ଏକାଠି ଧରି ରଖିଲେ ବାରିପଦାର ପାଣିଟାଙ୍କି ଭର୍ତ୍ତି ହୋଇଯାନ୍ତା ।" ଦଣ୍ଡେ ରହି ପୁଣି କହିଲେ- "ମାଛ ଧରିବାରେ ସେ ଜଣେ ରଥୀ । ପୋଖରୀ ବାଡ଼ିରେ ଠିଆହୋଇ ଦେଖିଛି– ଯଦି ପୋଖରୀରେ ଗୋଟାଏ ମାଛ ଥିବ ସେ ତାକୁ ଏକା ଦିନକେ ଧରିଦେବେ । ଗୁଣିଗାରେଡ଼ି ତାଙ୍କୁ ଜଣା ।"

କଥାଟା ମୋ ବାଗକୁ ଆସୁଥିଲା ଏବଂ ପ୍ରଶ୍ନଟା ପଚାରିବି ଭାବୁଛି, କୁଆଳିଆ ଶଙ୍ଖାସୁର ବିଗିଡ଼ାଇ ଦେଲା । କହିଲା- "ପାଣିଗିରିଙ୍କ କାନର କନିଆରି ଫୁଲର ମହକଠୁ ତାଙ୍କ ଦିହର ଜଡ଼ାତେଲ ବାସନା ବଳି ପଡୁଛି ।" ସତ କଥା ବାସନା ନୁହେଁ ଗନ୍ଧ । ପାଣିଗିରି କୁଆଡ଼େ ଦିନରେ ଦି' ଥର ଦିହରେ ଖାଣ୍ଟି ରଙ୍ଗ ଜଡ଼ାତେଲ ବୋଳି ହୁଅନ୍ତି ତାଳୁରୁ ତଳିପା ଯାଏ; ବାତ ହବନି, ସରଦ ଧରିବନି । ତେଲ ବୋଳି ହୋଇ ଅନ୍ତତଃ ଥରେ ଗାଧୋଉଥାନ୍ତେ ଭଲା । ବର୍ଷକରେ ଥରୁଟିଏ ପାଣିକୁ ପଶନ୍ତି । ଅଣ୍ଟାପାଣି ହୁଅନ୍ତି ମାତ୍ର ।

ସେ ଦିନଟି ହେଲା ମକର ସଂକ୍ରାନ୍ତି । ଗାଁରେ ହୋମ ସାହିଟିଏ । ବ୍ରାହ୍ମଣମାନଙ୍କ ଖଟଣିପାଇଁ ନିଷ୍କର ଜମି ତାଙ୍କୁ ଦିଆଯାଇଛି । ଗାଁରେ ଲୋକେ କହନ୍ତି, "ଯାହାର ଅଛି

ଢୋମ ପରଜା, ତାର ହଗୁଣୁ ମୁତୁଣୁ ବାଜଇ ବାଜା''। ତାରି ସାଙ୍ଗକୁ ଆଉ ଏକ କଥା, ''ଲୁହା ଶସ୍ତା ହେଲେ ଶିଆଳ ଟାଙ୍ଗିଧରେ।'' ମକର ମୟୁରଭଞ୍ଜର ଜାତୀୟ ଉତ୍ସବ। ବଡ଼ିଭୋର ସକାଳେ ଗାଁର ପୁରୁଷ ସ୍ତ୍ରୀ, ବାଳକ ବାଳିକା ମକରବୁଡ଼ ପକାଇବାପାଇଁ ପୁରୁଣା-ପୋଖରୀ, ନ ହେଲେ କିଆ-ପୋଖରୀ ଯାଆନ୍ତି। ଯେତେ ବୁଡ଼ ସେତେ ମଣ୍ଡା। ବୁଡ଼ ପକାଇ ସାରି ଶୀତ ନିବାରଣପାଇଁ କୂଳରେ ଥିବା ଝାଟିକୁଟା ଆଦିରେ ତିଆରି 'କୁମା'ରେ ନିଆଁ ଜଳାଇ ଘରକୁ ଆସନ୍ତି। ବ୍ରାହ୍ମଣ ଗୋସେଇଁମାନେ ବେଳ ହେଲେ ରଥ ପୋଖରୀକି ଯାଆନ୍ତି, ବ୍ରାହ୍ମଣିଆ ପୋଖରୀ ସେଇଟା। ଅନ୍ୟ ଜାତିର ଲୋକେ କମ୍ ଯା'ନ୍ତି ସେ ପୋଖରୀକି।

ଘଡ଼ିଏ ବେଳ ହେଲା ବେଳକୁ ନାଲମହନ ତେଲେଙ୍ଗୀ ବାଜା, ମହୁରୀ, ଚଡ଼ଚଡ଼ି ନେଇ ଦାଣ୍ଡକୁ ଆସିଯାଏ। ଦାଣ୍ଡ କମ୍ପିଉଠେ। ପ୍ରଥମେ ବାହାରନ୍ତି ପାଣିଗିରି, ସରସର କଡ଼ାତେଲ ଦିହରେ ଲଗାଇ। ଆସନ୍ତି କ୍ଷେତ୍ର ଓତା, ଅନନ୍ତ ଷଡ଼ଙ୍ଗୀ, ଫକୀର ଓତା; ପ୍ରତି ଘରୁ। ଭାଗରୁ ଜଣେ ଜଣେ। ମୁରବୀ ନଥିଲେ, ପୁଅ ବା ନାତି। ଧାଡ଼ିଧରି ଚାଲନ୍ତି ସଡ଼କ ଦେଇ ରଥ ପୋଖରୀକି। ଏଇ ମୁହୂର୍ତ୍ତଟି ପାଣିଗ୍ରାହୀଙ୍କ ଜୀବନର ପରମ ମୁହୂର୍ତ୍ତ। ଅଭିଷେକକୁ ଗଲାବେଳେ ମୟୁରଭଞ୍ଜ ମହାରାଜା ବି ଏତେ ମାନ୍ୟତା ପାଉ ନଥିବେ। ପାଣିଗ୍ରାହୀ ପ୍ରଥମେ ପଶନ୍ତି ପାଣିକି। ଜଙ୍ଘ ପର୍ଯ୍ୟନ୍ତ ଯାଇ ପାଣି ଦି ଚାରି ଟୋପା ମୁଣ୍ଡରେ ଛିଞ୍ଚି ହୁଅନ୍ତି। ବର୍ଷକର ସ୍ନାନ କର୍ମ ଶେଷହୁଏ। ଯେଉଁ ଲୁଗାଟି ତୁଠ ପଥରରେ ଛାଡ଼ନ୍ତି, ତାହା ନାଲମୋହନ ଦଳବଳର ପ୍ରାପ୍ୟ। ନୂଆବେଳେ ତାର ଦାମ ଅଠର ପଇସା ମାତ୍ର। ପୁଣି ଶୋଭାଯାତ୍ରା ଫେରେ। ''ପାଉଁଶ (ପାଆଁଶ) ଜୁହାର'' ଚିତ୍କାର ଭିତରେ ପାଣିଗ୍ରାହୀ ବାଜାବାଲାକୁ ଠେକାଏ ମୁଢ଼ି, ନିଜ ବାଡ଼ିର ଦୁଇ ଆଞ୍ଜୁଳା ପିଆଜ ଓ ହତାଏ ଗୁଡ଼ ଦେଇ ବିଦାକରନ୍ତି।

ଉପର ଓଳି ବିଭିନ୍ନ ଗାଁରୁ–କେନ୍ଦୁଆ, ବଣିକାଟି, ଶଶାନଦୀ, ବାସନଗର, ଏକତାଳି ଓ ପଣ୍ଡାବିଲାରୁ ମକରଧାଉଁଡ଼ି ମନ୍ଦିରକୁ ଆସେ। ସେମାନଙ୍କ ଦାୟିତ୍ୱ ଫକୀର ଓତାଙ୍କର। ବାଜାର ତାଳହେଲା– 'ଯାଡ଼ିଯଁ, ଯାଡ଼ିଯଁ, ଯାଇକିଟି ଝାଁ।' ମକର ଚାଉଳ ବଣ୍ଟରା ହୁଏ, କି ଆନନ୍ଦ !

ଅଫିମ ନିଶାଟା ଧରିଆସୁଛି ଜାଣିପାରି ପଚାରିଲି- ''ପାଣିଗ୍ରାହୀ ମହାଶୟ ! ଆପଣ ଦୟାକରି କହିପାରିବେ କି ଆମ ଗାଁର ନାମ କାହିଁକି ପାନ୍ଧଡ଼ା ହେଲା ? ଆପଣଙ୍କ ଘରେ ପଟା ବା ସମିତି କାଗଜପତ୍ର, ଦାନପତ୍ର ଆଦି ଅଛି ?'' ପାଣିଗ୍ରାହୀଙ୍କୁ ଗଳାସଫା କରିବାକୁ ପଡ଼ିଲା। ସଳଖି ବସି କହିଲେ- ''ବସନ୍ତବାବୁ, ଏ ବଡ଼ ଗୂଢ ପ୍ରଶ୍ନ ପଚାରିଲେ।

ବୋଧହୁଏ କିଛି କାଗଜ ଠାକୁରାଣୀ–ପେଡ଼ି ଭିତରେ ଥିଲା, ମୂଷା କାଟିଦେଲା ବା ଘରପୋଡ଼ିରେ ନଷ୍ଟ ହୋଇଗଲା । ଯାହା କହିବି ଶୁଣ କଥା, ମାନ ନ ମାନ ।" କହିଲେ- "ଜେଜେବାପାଙ୍କ ଜେଜେବାପାଙ୍କ ଜେଜେବାପା, ତାଙ୍କ ଜେଜେଙ୍କ ଜେଜେ ପାଖରୁ ଯାହା ଶୁଣିଛନ୍ତି ତାହା ଏହିପରି– ଗାଁର ନାଆଁ ଥିଲା ଉମାଦେଈପୁର ଶାସନ; ଉମାଦେଈ ବୋଲି କିଏ ମହାରାଣୀ ଏଇ ଶାସନଟି ବସାଇଥିଲେ । ଶହ ଶହ ବର୍ଷତଳେ ଦିନେ ମହାରାଣୀ ଉମାଦେଈ ହାତୀ ପିଠିରେ ଚଢ଼ି ଆମ ଗାଁକୁ ଆସୁଥିଲେ । ତୁମେ ତ ଜାଣ ବସନ୍ତବାବୁ, ଝିଅ ଦେଇସାରି ବାପା କି ମାଆ ଜୋଇଁଘରକୁ ଯାଆନ୍ତି ନାହିଁ । ଏ କଥା ନଜାଣି ନମାନି ମହାରାଣୀ ଆସୁଆସୁ ଯିମିତି ହାତୀ ଗାଁର ସୀମାସରହଦ ପାରହୋଇ ତିନିଗାର ଡେଇଁଲା, ସିମିତି ତା ଗୋଡ଼ ଆଠହାତ ମାଟି ଭିତରକୁ ପଶିଗଲା । ଗୋଟାଏ ବଡ଼ ଗାଡ଼ ବା ଧଡ଼ା ହେଇଗଲା । ପା (ପାଦ) ଦେଲାରୁ, ଧଡ଼ା ହେଲାରୁ ଗାଁର ନାମ ଉମାଦେଈପୁର ବଦଳରେ 'ପାନ୍ଧଡ଼ା' ହେଲା ସେଇ ଦିନଠୁ ରାଣୀଙ୍କ ହୁକୁମରେ । ଏ ଗାଁ ଅନ୍ୟାୟ ଅଧର୍ମ ସହିବ ନାହିଁ । ଆମ ନିଜ ଘର କଥା ଦେଖ । ଠାକୁରାଣୀ ପେଡ଼ି, ଲକ୍ଷ୍ମୀପେଡ଼ି ପୋଡ଼ିଗଲା ପରା ।"

ତାଙ୍କ କଥା ରହିଗଲା । ଅନ୍ଧାର ଭେଦକରି କେତେ ଜଣ ଲୋକ ବଣ ଆରପାରି ଗାଁରୁ ଆସି ପାଣିଗ୍ରାହୀଙ୍କି ଡାକିଲେ । କିଏ କହିଲା- "ଘରକୁ ଆସ, ବରକନ୍ୟା ମେଳ କରିବା", "ଗାଈ ଦୁଇ ଦିନ ହେଲା ହଜିଛି, ଖଡ଼ି କରେଇବି", "ଅଧାକପାଳୀ ହେଉଛି ବହୁଟାର୍, ଇଲାଜ ଦବ ।" ଯିମିତି ମୁଁ ଜାଣିଲି ଏମାନେ ଲୁହାମାଳିଆରୁ ଆସିଛନ୍ତି । ମୋ କଥା ଛାଡ଼ି ପାଣିଗ୍ରାହୀଙ୍କି କହିଲି- "ଏମାନଙ୍କୁ କୁହନ୍ତୁ, କାଲିଆଡ଼କୁ ଗାଁରେ ଯାତ୍ରା କରିବେ । ସେମାନଙ୍କୁ ପରା ଆପଣ ଶିଖାଉଛନ୍ତି ରାମାୟଣ ?" ପାଣିଗ୍ରାହୀ କହିଲେ, "କିରେ ଭଦୁ, ଅଇବନ, କି କହୁଛ ?", "କହିବ ତ ଆଜ୍ଞା, ଆପଣଙ୍କ ଆଶ୍ରିପାଦରେ ଆଇଦ କାଣ୍ଡ'ଟା କରିଦବା । ଗାଁର କଥା, ଦୁଇ ବସ୍ତା ମୁଡ଼ି ହେଲେ ଢ଼େର । ତୁମର ଗୁଟେ ନଲଟନରେ ଦାଣ୍ଡଟା ଆଲ ହେଇଯିବ । ଗୋରୁ ଛାଡ଼ିଲା ବେଳକୁ ଯାତ୍ରା ସରି ଯାଇଥିବ ।" ପାଣିଗିରିଙ୍କୁ ନାଚ, ଗୀତ, ପାଲାଗାଆଣ ସବୁ ଜଣା । ନଟୁଚୋରି, ରାସକ୍ରୀଡ଼ା ଏମିତି ବୁଝାଇଦେବେ ଯେ, କେହି ଉଠି ଯାଇପାରିବେନି । "ନାଗର" ଶବ୍ଦର ଅର୍ଥ ଶ୍ରୀକୃଷ୍ଣ, କାରଣ ସେ ନାଗ ଉପରେ ଚଢ଼ିଥିଲେ । ଏଇ ତାଙ୍କର ବ୍ୟାଖ୍ୟା, ଟୀକା ।

ଲଣ୍ଠନ ଟିକିଏ ତେଜାଇ ବଟୁଆ ଧରି ତଳକୁ ଓହ୍ଲାଇଲେ । ବେଦୀଖୁଣ୍ଟକୁ ଧରି ଟିକିଏ ସଳଖି ବିରକ୍ତି ମିଶା ଟାଣଗଳାରେ ଲକ୍ଷ୍ମୀପେଡ଼ି ଘରପୋଡ଼ିରେ ଭସ୍ମ ହେବାକଥା ଧଇଲେ । "ପାପ ବୋଲି ପାପ, ଘୋର ପାପ । କି ଅନ୍ୟାୟ ! ଅଧର୍ମ । ତୁମେ ଛତିଶ ବର୍ଣ୍ଣର ରଜା । ବଂଶରେ ପାଣିଗିରି ବୋଲାଉଛ, ଏମିତି ଅଟକି ପାରିଲ ନାହିଁ ? ଭୂମିକାଣିଟାକୁ ଷ୍ଟୀ

କରିନେଲ, ହାଣ୍ଡିଆ ପିଇଲ, ମାଦଳ ବଜାଇ ନାଚିଲ। କି କେଲେଙ୍କାରି ! ହାକିମ ପଚାରିଲା- 'ତୁମର ନାଆଁ' ? କହିଲ 'କାଠି ମୁଣ୍ଡା।' 'ବାପର ନାଆଁ ?' ଉତ୍ତର ଦେଲ 'ଫକୀର ମିଶ୍ର।' ସେଇଠି ବିଷ ଖାଇଦେଲନି ? ଭଗବାନ ସବୁ ଦେଖି ଶୁଣି ଚୁପ୍ ରହିବେ ?" ଗୁରେ ଉଆସ ଡ଼ିବିରି ଆଲୁଅରେ ଦଣ୍ଡକେ ଜାଳିଦେଲା। "ଠାକୁର ଠାକୁରାଣୀ, ଦଲିଲ ଦସ୍ତାବିଜ୍ ପେଡ଼ି ସହିତ ପୋଡ଼ିଗଲେ।" କାଠିଆ, ପାଣିଗିରିଙ୍କ ବଡ଼ଭାଇ। ଗାଁରେ ସେ ହିଁ ପ୍ରଥମ ଇଣ୍ଟରକାଷ୍ଟ ବିବାହ କରିଥିଲେ। ବର୍ଣ୍ଣଶଙ୍କରଗୁଡ଼ାଏ ଜନ୍ମ ଦେଇଥିଲେ। ସେ ସମ୍ବନ୍ଧରେ ଗାଁରେ ଉଲ୍ଲେଖନୀୟ ହଇଚଇ ହେଇନି। ଆଜି ହୁଏତ ତାଙ୍କୁ ସମ୍ବର୍ଦ୍ଧନା କରାଯାଇଥାନ୍ତା, ପୁରସ୍କାର ଦିଆଯାଇଥାନ୍ତା। କିନ୍ତୁ ସମସ୍ତେ ଜାଣନ୍ତି, ଦୁଇଭାଇ ଛୁଆପିଲାଙ୍କ ସହିତ ଏକାଠି ବସି କଥାବାର୍ତ୍ତା କରନ୍ତି। କିନ୍ତୁ ପର୍ବପର୍ବାଣି ବାହାଘର ପଇତାଘରରେ କେହି କାହାକୁ ଡ଼ାକନ୍ତି ନାହିଁ।

କୂଅ ପାଖକୁ ଯାଇଛନ୍ତି, ଅଟକି ଗଲେ। କହିଲେ "ବସନ୍ତ ବାବୁ, ତୁମେ ତ କଟକ ଯିବ। ବାରିପଦାରେ ରାଜବାଟୀରେ ପଶିଯାଇ ଗୋଲବାରନ୍ଦାରେ ରାଉତରାୟ ସାହେବଙ୍କୁ ଦେଖାକରି କହିବ- 'ଗହ୍ମାପୂନେଇ ବେଳେ ପାଣିଗିରି ପାନ୍ଧଡ଼ା ଶାସନର ନଡ଼ିଆ, ସଙ୍ଗୀଡ଼ିଏ ପଇତା ନେଇ ଆସିଥିଲେ; ଆପଣ ଚାଉଳବାଲୀ ବିଳାସୀ ସାଙ୍ଗରେ କଣ କଥାବାର୍ତ୍ତା ହେଉଥିଲେ; ଦେଖା ନକରି ଫେରିଗଲେ।' କିନ୍ତୁ ନୀଳଗିରି ରାଜା ସାହେବଙ୍କୁ ଦୂରରୁ ସେ ଦେଖିଛନ୍ତି। ବାବା ! ନୀଳଗିରି ରାଜାସାହେବଙ୍କ କି ଚେହେରା ଅବିକଳ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କ ଆଖଇ। ଭାୟଡ଼ା ପରା। ନୀଳଗିରି ଆମ ମୟୁରଭଞ୍ଜର। ବଡ଼ ଶିକାରି, ଏକା ଗୁଳିକେ ମାରିଦେବା ବାଲା।"

ଆଗରେ ଦଳବଳ ଦେଖି ପାଣିଗିରି ପୁଣି ଅଟକିଲେ। "ବସନ୍ତବାବୁ ! ତୁମର ବାପାଙ୍କୁ ସାବଧାନ କରିଦବ। ଖାଇବ ଖାଇବ ଚାଲୁଣିଏ କାକରା ଖାଇବ ? ବାଙ୍କା କହୁଥିଲା- ସେଦିନ ଚାଲୁଣିଏ କାକରା ଖାଇ, ତା ପରଦିନ ପୁଳେ ପଞ୍ଚସ୍ତଗୀଟା ମିଠାଇ ଖାଇଦେଲେ। ମରିଯିବନି ଏମିତି ଲୋଭୀ ହେଲେ ? ତାଙ୍କ ସାଙ୍ଗରେ ଥିଲି ମୁଁ। କାକରା କିଛି ଖାଇନି, ଦୁଇଦିନ ଯାକ ପ୍ରତିଦିନ ଗୋଟାଏ କରି ଖଜାପଣସ। ଦ୍ୱିତୀୟ ଦିନ ଗୋଟେ ବଡ଼ ପଣସ ନେଇ ଏକା ଖାଇଦେଲି। ଝାଡ଼ା ହେବ ବୋଲି ତୁମର ବାପା କହୁଥିଲେ। ଝାଡ଼ା ହେଲା ନାହିଁ। ମୁଁ ତୁମ ବାପାଙ୍କୁ କେବେ ଡ଼ାକିବି ନାହିଁ, ଓପାସ ରଖିଦେବେ।"



## ॥ ଦୁଇ ॥

ଗାଁ ମୁଣ୍ଡରୁ ବଡ଼ ପାଟିରେ ପାଣିଗ୍ରାହୀ କହିଲେ- "ବସନ୍ତ ବାବୁ ! ପାନ୍ଥଡ଼ା ଗାଁର ନାମ ବିଷୟରେ ଯାହା ଶୁଣିଥିଲି କହିଲି, ତୁମେ ଟିକେ କେବେ ଦେଖାହେଲେ କୃଷ୍ଣ ପାଣିଗିରିଙ୍କୁ କହିବ । ସେ ବି ତୁମପରି ଢେର ପାଠ ପଢ଼ିଛନ୍ତି । କିଏ କହୁଥିଲା, ସେ ଏଠି ଗାଁରେ ରହିପାରିବେ ନାହିଁ । ବିକିଦେଇ କଟକ ଚାଲିଯିବେ । ତାଙ୍କୁ ପଚାରିଲେ, ସେ ବହିପତ୍ର ଦେଖି କହିଦେବେ । ଜାଣିଲେ ମତେ ବି ଜଣାଇବ ତ । ମହାରାଜାଙ୍କୁ ବ୍ରାହ୍ମଣମାନେ ସମସ୍ତେ କହି ରେକର୍ଡ଼ ସଂଶୋଧନ କରିଦେବା ।"

ବାଃ ! ପାଣିଗିରି କେଡ଼େ ମାତବର କଥା ନକହିଲେ ! "ତିନି ବଇଷ୍ଣବ ଘରେ ଥାଉଁ ଥାଉଁ ସମ୍ପତ୍ତି ଖାଇବ ସର !"

କୃଷ୍ଣ ପାଣିଗ୍ରାହୀ । ମୟୂରଭଞ୍ଜର ଶ୍ରେଷ୍ଠ ପ୍ରତିଭା । ମୋର ଅଗ୍ରଜ ପ୍ରତିମ । ୧୯୨୮ରୁ ତାଙ୍କ ସ୍ୱର୍ଗାରୋହଣ ପର୍ଯ୍ୟନ୍ତ ପ୍ରାୟ ଷାଠିଏ ବର୍ଷ ତାଙ୍କ ସହିତ ସମ୍ପର୍କ । 'ଜନ୍ମଗତ ଭାଇ' ଅପେକ୍ଷା ସେ ବଡ଼ । ରକ୍ତଗତ ଭାଇଙ୍କ ସହିତ ସମ୍ପର୍କ ହୁଏତ କ୍ଷତବିକ୍ଷତ, ଛିନ୍ନ; କିନ୍ତୁ କୃଷ୍ଣବାବୁ । ବୈବାହିକ ସମ୍ପର୍କରେ ତାଙ୍କ ପରିବାର ସହିତ ଯୁକ୍ତ ହେଉହେଉ, ବିଯୁକ୍ତ ହୋଇଗଲା । କଟକ ସାଆନ୍ତ ସାହିରେ ତାଙ୍କ ସହିତ ଦିନେ ଦେଖାହେଲା । ପଚାରିଲି "କୃଷ୍ଣବାବୁ ! ଆପଣଙ୍କ ନାଆଁରେ ପାନ୍ଥଡ଼ାର ଭାଗେ ଜମି ଅଛି । କହିବେ କି, ଗାଁର ନାଆଁ କାହିଁକି ପାନ୍ଥଡ଼ା ?" ଅଭ୍ୟାସଗତ ଭଙ୍ଗୀରେ ମୁଦ୍ରାଦୋଷରେ ସେ ମୁଣ୍ଡକୁ ଜୋର୍‌ରେ କୁଣ୍ଡାଇ ରାମ୍ପି କହିଲେ- "ମୋତେ ଜଣାନାହିଁ । ଆମ ଗାଁର ନାମ ଖିଚିଙ୍ଗ କାହିଁକି ହେଲା, ଐତିହାସିକମାନେ ବହୁ ଗବେଷଣା ପରେ ସ୍ଥିର କଲେ । ନହେଲେ କେବଳ ମୟୂରାଣ୍ଡୋଦ୍ଭବ ହୋଇଥାନ୍ତା । ଖିଲିଞ୍ଜକୋଟରୁ ଖିଚିଙ୍ଗ; ମୟୂରଭଞ୍ଜର ପୂର୍ବତନ ରାଜାମାନଙ୍କ ରାଜଧାନୀ । କିନ୍ତୁ ପାନ୍ଥଡ଼ା ? କେହି ଗବେଷଣା କରିନାହାନ୍ତି ତୁମ ଛଡ଼ା । ପରମାନନ୍ଦ ବାବୁଙ୍କୁ ଥରେ ପଚାରିବ, ଯଦି ସେ କହିପାରିବେ ।"

କି ଆଶ୍ଚର୍ଯ୍ୟ ! ତୁମେ ପ୍ରାଚୀନ ଭାରତ ଇତିହାସରେ ଏମ୍.ଏ. । ରମାପ୍ରସାଦ ନନ୍ଦଙ୍କ ପାଖରେ ଗବେଷଣା କରିଛ । ଆନ୍ତର୍ଜାତିକ ସ୍ତରରେ ତୁମେ ପ୍ରଖ୍ୟାତ । ଅଥଚ... ।

ପରମାନନ୍ଦ ବାବୁ ବି ଖ୍ୟାତିସମ୍ପନ୍ନ । ହେଲେ ତାଙ୍କ ଘର ବୈଦ୍ୟପୁର । ତାଙ୍କ ଗାଁ କୂଅରୁ, ହରିପୁର ଗଡ଼ର ଭଙ୍ଗାରୁଜା ଭିତରୁ ସେ କେତେ କ'ଣ ବାହାର କରି ପ୍ରତ୍ନତତ୍ତ୍ୱବିଦ୍ ବୋଲାନ୍ତି ।

ଛଅ ନଙ୍ଗଳିଆ ପଚାରିଲା ନଅ ନଙ୍ଗଳିଆକୁ, "ଭାଇ, ପାଣି କେତେ ଦୂର ?"

ଉତ୍ତର ଜାଣିଥିଲେ ପ୍ରଶ୍ନଟି ପଚାରିଦେଲା ମାତ୍ରେ ମେଧାବୀ ପିଲାଟିଏ ଯିମିତି ଉତ୍‌ଫୁଲ୍ଲ ହୋଇ ଝାମ୍ପିପଡ଼େ, ପରମାନନ୍ଦ ବାବୁ (ମହାରାଜା ସାହେବ 'ପରମାନ୍ନା' ବୋଲି ତାଙ୍କୁ ଶରଧାରେ ଡାକିଥାନ୍ତି) ସେମିତି ମୋ ପ୍ରଶ୍ନର ଉତ୍ତର ଦେବାକୁ ଆରମ୍ଭ କଲେ। କହିଲେ- "ତୁମେ ଏଯାଏ ନିଜଗାଁରେ ସକାଳୁ ମାଝୀ, ସାନ୍ତାଳ, ଭୂମିଜମାନେ କାମକୁ ବାହାରିଲାବେଳେ ଯାହା କଥାବାର୍ତ୍ତା ହୁଅନ୍ତି ଶୁଣିବ। 'ଆଜି କନ୍‌ଠକୁ ଯାଉଛୁ ?' ଆଉ ଜଣେ କହେ 'ପଧାନ ଘରକେ, 'ପନ୍ଦାଡ଼' ଘେରିତେ।' ସେ ବାଡ଼ ଘେରିବାକୁ ପଧାନ ଘରକୁ ଯାଉଛି। ଏଇ 'ପନ୍ଦାଡ଼' ଅର୍ଥ ତାଙ୍କ ଭାଷାରେ 'ଜଙ୍ଗଲ'। ତୁମ ଗାଁଟି ଜଙ୍ଗଲଘେରା ହୋଇଥିବାରୁ ତା ନାଆଁ ପନ୍ଦାଡ଼ା, ପନ୍ଧାଡ଼ା ବା ପାନ୍ଧଡ଼ା। ପାନ୍ଧଡ଼ାମାନେ ଜଙ୍ଗଲଘେରା ଗାଁ।" ବାଃ, କି ପ୍ରତ୍ନତାତ୍ତ୍ୱିକ ଜ୍ଞାନ ! ଶତସହସ୍ର ଧନ୍ୟବାଦ ପରମାନନ୍ଦଜୀ ! ଆପଣଙ୍କ ବାସଭବନ ସମ୍ମୁଖ ରାସ୍ତାକୁ ବାରିପଦାବାଲା 'ପରମାନନ୍ଦ ମାର୍ଗ' ନାମକରଣ କରିଛନ୍ତି। କଟକ ସାଆନ୍ତ ସାହି ପାଖ ଖଣ୍ଡେ ଛୋଟ ରାସ୍ତାକୁ 'କୃଷ୍ଣଚନ୍ଦ୍ର ମାର୍ଗ' ନାଆଁ ଦେଲେ ମନ୍ଦ କ'ଣ ହୁଅନ୍ତା ?

ଛାଡ଼ନ୍ତୁ। ଏତେ ଦିନ ଧରି ଗବେଷଣା ପରେ ମନ ମାନିଲା ନାହିଁ। ପକ୍‌କା କରିବା ପାଇଁ ଇଚ୍ଛାହେଲା ପରମାନନ୍ଦଜୀଙ୍କ ମତକୁ। ତାଙ୍କରି ଖିଅଧରି ଆଗେଇଲି। ଦିନେ ପୁରୁଣା ପୋଖରୀହୁଡ଼ାରେ ବସି ଗାଁ ଗଣ୍ଡା, ଚଉହଦୀ, ସୀମା ସରହଦ, ପାହାଡ଼ ପର୍ବତ, ନଈନାଳ ପୋଖରୀ ଗାଡ଼ିଆମାନଙ୍କ କଥା ଗୋଟା ଗୋଟା କରି ହେଜିଲି। ପରମାନନ୍ଦଙ୍କ ଭାଷ୍ୟର ପ୍ରମାଣ ବା ଟୀକାପାଇଁ ନୂଆ ଦିଗନ୍ତ ଫିଟିଲା।

ଗାଁ ଚାରିପଟେ ସାତ ସାତୁଟା ପୋଖରୀ, କୌଣସିଟିରେ ପାଣି ନ ଥାଏ ଖରାଦିନକୁ। ପୁରୁଣା ପୋଖରୀ, ବଡ଼ତଳିଆ, ରଥପୋଖରୀ, କିଆପୋଖରୀ, ବିଲପୋଖରୀ, ବଣ ପୋଖରୀ (ସ୍କୁଲର ପୂର୍ବକୁ ଲାଗି)। ପୂର୍ବ ଦିଗର ବଣ ଏଇଠୁ ଆରମ୍ଭ। ପୋଖରୀଗୁଡ଼ାକ ଲଗାଲଗି। ପୁରୁଣାପୋଖରୀ ତୋଟା, ବାସିଆଶୋଳ ତୋଟା, ଗଡ଼ସିନ୍ଦୁରୀ ତୋଟା, ବିନ୍ଧାଣିସାହି ତୋଟା, ପୂଆତୋଟାଗୁଡ଼ିକରେ ଅତି କମ୍‌ରେ ଶହେ ଆମ୍ବଗଛ ଥିଲା। ପ୍ରତ୍ୟେକ ଗଛର ନାମ ଥିଲା- ଢେ଼ଙ୍ଗୀ, ପାଣିଶୁଢ଼ି, ବୁଢ଼ୀଗଛ, ବାରମାସୀ, ନେଡ଼ି, କଦଳିଆ, ଶିଳପୁତା, ନାକୋଇ, ମାଙ୍କଡ଼ଗାଣ୍ଠିଆ, କାଠୋଇ, ଛେଳିଶିଙ୍ଘୀ, ଯାଦୁ, ହଳଦିଆ, ସିନ୍ଦୂରି- ଏସବୁ ଗୋଟିଏ ତୋଟାର ଗଛ। ପୋଖରୀ, ତୋଟା, ବିଲ, ଶୂଳ, ପତଡ଼ା ତାପରେ ଜଙ୍ଗଲ। ପାନ୍ଧଡ଼ା ଉଚ୍ଚ ପ୍ରାଥମିକ ସ୍କୁଲର ଟିଣଛାତ ଉପରୁ ଦେଖିଲେ ଜଣାଯିବ ଗାଁଟିକୁ ପନ୍ଦାଡ଼ ପରି ଘେରି ରହିଛି ଜଙ୍ଗଲ।

ଗାଁର ପଶ୍ଚିମ ଜଙ୍ଗଲରେ ଭାଲୁଡୁଙ୍ଗୁରି, ବାଘନଗର, ଖଡ଼ିପାହାଡ଼ୀ; ଉତ୍ତରରେ

ବାଘଝମ୍ପ, ଏକଡ଼ାଳି, ପାଣିଶୋଳ; ପୂର୍ବରେ ଶଣାନଦୀ, ବାଘିଆଶୋଳ; ଦକ୍ଷିଣକୁ କେନ୍ଦୁମୁଣ୍ଡି (ବାଚସ୍ପତି ପ୍ରସନ୍ନ ଦାଶଙ୍କ ଘର) ବାଦୁଡ଼ିଘେରା, କେନ୍ଦୁଆ, ହାତୀଆ ପଥର। ସମସ୍ତ ନାଆଁ ସ୍ଥାନରେ ଜଙ୍ଗଲ ଜନ୍ତୁଜାନୁଆର, ବଣ, ଫଳ ସଂଶ୍ଲିଷ୍ଟ। ଏବେ ବି ମନେ ପଡୁଛି- ପିଲାଦିନେ ଆମେ ସବୁ ଜାମୁକୋଳି, ଚାର, ଭୁରୁଡୁ, କେନ୍ଦୁ, ବୁଦାକୋଳି ଖାଇଛୁ କିଆପୋଖରୀ ତଳ ଜଙ୍ଗଲରୁ। ଛତୁ, କାଙ୍କଡ, ବରକୁନ୍ଦୁରୀ ଆଦି ସଂଗ୍ରହ କରିଛୁ ବାପା, ନନାଙ୍କ ସାଥିରେ ଆଉଟିକେ ଭିତରକୁ ଯାଇ। ପୂଜାଛୁଟିରେ ଜହ୍ନରାତିରେ ବାଡ଼ତଳ ଗୋବରଗଦାରେ ଭାଲୁ ଉଇପୋକ ଖାଉଥିବାର ଦେଖିଛୁ। ପିଲାଦିନେ ପାଳଗଦା ପାଖରେ ଆମ ଗାଇଗୋଟାକୁ ବାଘ ରକ୍ତଶୋଷି ଖାଇଥିବାର ଦୃଶ୍ୟଟା ଦେଖିଛି। ବାପା ଭୁଲି ଯାଇଥିଲେ ତାକୁ ଗୁହାଳରେ ପୂରାଇବାକୁ। କେତେ ବରଷ ତଳେ ଦେଖିଛୁ କାଦୁଅରେ ଲୋଟିହୋଇ ଆଠ ଦଶଟା ଧାନ କଳେଇ ପିଠିରେ ପକାଇ ଦନ୍ତା ହାତୀଟାଏ ଗାଁର ପୂର୍ବ ମୁଣ୍ଡରୁ ପଶ୍ଚିମ ମୁଣ୍ଡଯାକେ ଦି'ମାଇଲ ରାସ୍ତା ଦିନ ୭ଟାବେଳେ ଅତିକ୍ରମ କରିବାର। ମିଶ୍ରଣ (ମୟୂରଭଞ୍ଜର ଓଡ଼ିଶା ସହିତ) ବର୍ଷ ଦିନ ଦଶଟାବେଳେ ଗୋଟାଏ ବଡ଼ ଭାଲୁକୁ ଗାଁ ଲୋକେ ଧନୁତୀର, ଠେଙ୍ଗା ଟାଙ୍ଗିଆରେ ମଦୁଆ ଅବସ୍ଥାରେ ବାଡ଼େଇପିଟି ମାରି ଦେଇଛନ୍ତି। ଥରେ ଅଖାଣି ଶିକାର ବେଳେ ଦିନ ଦି'ପହରେ ଗୋଟାଏ ମହୁଲ ଗଛ ମୂଳରେ ପଲେ ହରିଣ ଶୋଇ ପାକୁଳି କରୁଥିବାର ଗ୍ରୀଷ୍ମଛୁଟିରେ ଦେଖିଛୁ। ଯେଉଁଠି ହରିଣ ପଲ ଭୋଳ ମାଟି ଖାଇ ଜମିରେ ବଡ଼ ଖାତ କରିଥିଲେ, ସେଇଠି ଜାଲ ପକାଇ କେତେ କେତେ ମାଛ ନ ଧରିଛୁ। ଏହି ଗାଁର ନାଆଁ ପାନ୍ଧଡ଼ା ନ ହୋଇ ଉମାଦେଈପୁର ହେବ କେମିତି ?

ଆଜି ବଣ, ତୋଟା ସବୁ ସଫା। ଜନ୍ତୁଜାନୁଆର କଥା ଛାଡ୍, କୋକିଶିଆଳ, ନେଉଳ, ବିଲମୂଷା ବି ନାହାନ୍ତି। ଯାଯାବରମାନେ ଚମଡ଼ା ଲୋଭରେ ଫୋଟକା, ବିଷଦେଇ ସେମାନଙ୍କ ବଂଶ ନିଃଶେଷ କରି ଦେଇଛନ୍ତି। ସଞ୍ଜରେ ହୁକେ ହୋ ଡ଼ାକ ନାହିଁ। ଆଶ୍ରା ଅଭାବରେ ବଗପଲ ଅଗଣା, ଘରଡ଼ିହର ଛୋଟ ଛୋଟ ଆମ୍ବ, ତିନ୍ତୁଳି, ଜାମୁଗଛରେ ରହି ବଂଶବୃଦ୍ଧି କରୁଛନ୍ତି ଏବଂ ଗାଁକୁ ଦୁର୍ଗନ୍ଧମୟ କରୁଛନ୍ତି। ଇଲାକା ଏମିତି ନଣ୍ଡା ହୋଇ ଯାଇଛି ଯେ, ଘରଛାତ ଚାଳରୁ ସୁବର୍ଣ୍ଣରେଖାର ବାଲି ଦିଶୁଛି। ଛଅମାଇଲ ଦୂର ବାଙ୍ଗିରିପୋଷି ଘାଟୀର ଦ୍ୱିତୀୟ ମୋଡ଼ ଭାଙ୍ଗିଲାବେଳକୁ, ବାସ୍ ଭିତରୁ କୋଡ଼ିଏ କିଲୋମିଟର ଯାକେ ବଳଙ୍ଗ ନଈର ପଥୁରିଆ କୂଳ ସହିତ କୁଳିଅଣା, ବାରିପଦା ଦିଶିଯାଏ।

ଗାଁ ଲୋକେ ଏବେ କହୁଛନ୍ତି, "ଆଉ କଳାହାଣ୍ଡିଆ ମେଘ ବା ମାନଗଡ଼ିଆ ମେଘ ଆସୁନି। ଜଙ୍ଗଲରେ ନିଆଁ ବି ଦିଶୁନି।" କୁଆଡୁ ଦିଶିବ ? ବଣ, ଗଛବୁରୁଛ ଥିଲେ ସିନା

ମେଘ ଆସିବ। ଗଛବୁରୁଛ ଥିଲେ ସିନା ପତର ପଡ଼ିବ, ନିଆଁ ଜଳିବ। ଖାଲି ପଥରରୁ ନିଆଁ କାହିଁରେ ଲାଗିବ ? ଘରବାଡ଼ିରେ କାହାରି ଶାଗପଟାଳି ନାହିଁ, ବାଡ଼ ବି ନାହିଁ। ଚୋରାରେ ଏବେ ହିଟର ଲଗାଇ କାଠର ଅଭାବ ମେଣ୍ଟାଉଛନ୍ତି ଲୋକେ। କେହି କବି ଜନ୍ମିଲେ ମଧୁବାବୁଙ୍କ ଋତୁ ବର୍ଣ୍ଣନା, ପ୍ରକୃତିବର୍ଣ୍ଣନା ପଢ଼ି ବୁଝିପାରୁ ନାହାନ୍ତି କାବ୍ୟ କବିତାରେ। ଦଶବାର କୁଣ୍ଡମୋଟ ପ୍ରାୟଶଃ ଲମ୍ବା ବିଶାଳ ଶାଳ୍ମଳୀ ତରୁଟିଏ ଗାଁର ପୂର୍ବମୁଣ୍ଡରେ ଭୂତପ୍ରେତ ବ୍ରହ୍ମରାକ୍ଷସଙ୍କୁ ଧରି ଠିଆହୋଇଛି। ମୋଟାମୋଟି ପାଞ୍ଚଡ଼ା ଏବେ ଏକ "ନିରସ୍ତ-ପାଦପଦେଶ", ଏକ ଈଶ୍ୱର ପରିତ୍ୟକ୍ତ ଅଞ୍ଚଳ।

ଆମେ ଶାସନୀ ବ୍ରାହ୍ମଣ, 'ବାଟକାଟିଆ' ନୋହୁଁ; ଆମେ ଯାଜପୁରୀ ବ୍ରାହ୍ମଣ, ପୁରୀଆ ନୋହୁଁ। ଆମର ଯାଜପୁର ପାଞ୍ଜି, ଜଗନ୍ନାଥ ପାଞ୍ଜି ନୁହେଁ। ଉମାଦେଈ ହୁଅନ୍ତୁ ବା ଆଉ ଯେ କେହି ହୁଅନ୍ତୁ, ସେ ଯେତେବେଳେ ବ୍ରାହ୍ମଣ ଶାସନଟିଏ ବସାଇ ପୁଣ୍ୟ ଅର୍ଜନ କରିବାକୁ ଇଚ୍ଛା କଲେ, କୁଆଡ଼େ କହିଥିଲେ- "ହେ ଯାଜପୁରାଗତ ବ୍ରାହ୍ମଣ ଗୋସେଇଁମାନେ, ଆପଣମାନେ ସ୍ଥାନ ନିରୂପଣ କରନ୍ତୁ, ମୁଁ ନିଷ୍କର ଶାସନଟିଏ ଦାନ ଦେବି।" ମୁରବୀମାନେ ବଳଙ୍ଗନଦୀ କୂଳରେ ଦୁଇତିନୋଟି ସ୍ଥାନ ଦେଖିଥିଲେ। ଶେଷରେ ଏଇ ସ୍ଥାନଟି ନିରୂପଣକଲେ। କାରଣ, ଏ ସ୍ଥାନଟି ଉଭୟ ସୁବର୍ଣ୍ଣରେଖା ଓ ବୁଢ଼ାବଳଙ୍ଗ କୂଳରୁ ଛଅ ଛଅ ମାଇଲ ଦୂର। ପ୍ରଳୟ ହେଲେ ବି ସେମାନେ ନିରାପଦ। ଯଦି କେବେ ବୋମା ଆକାଶରୁ ପଡ଼େ, ତେବେ ବାଦୁଡ଼ିଘେରାର ଗୁମ୍ଫାସବୁ ରହିଛି। ଗାଁଟିରେ ପାଣିର ଏତେ ଅଭାବ ଯେ, ପାଣିଆଁ ବା ନିପାଣିଆଁ କୌଣସି ପ୍ରକାର ଗହମ ଫଳିବାର କେବେ କେହି ଦେଖି ନାହାନ୍ତି। ମାଟି ଶୁଙ୍ଘି ପୂର୍ବ ପୁରୁଷେ ଏମିତି ସ୍ଥାନ ନିରୂପଣ କଲେ ଯେ, କେତେ ହଜାର ଫୁଟ ଡ୍ରିଲିଂ କରି ମଧ୍ୟ ଜଳସେଚନ ବିଭାଗ ପାଣିର ବାସନା ବି ପାଇଲାନାହିଁ ସେ ବର୍ଷ। ଗାଁରେ ଦୁଧ ଟୋପାଏ ମିଳେ ନାହିଁ, ହୁଏ ନାହିଁ ମଧ୍ୟ। ଲୋକଗୁଡ଼ାକ ଅଧିକାଂଶ ମଡ଼ା, ଶୁଖିଲା, ପ୍ରାଣହୀନ; କିନ୍ତୁ ଦୀର୍ଘାୟୁ। ତଥାପି ଲୋକମାନଙ୍କର ଗାଁ ପ୍ରତି ଏତେ ମୋହ ଯେ, ଜଣେ ଅଧେ ବଡ଼ ବଡ଼ ସହରରେ ସୁଖସ୍ୱାଚ୍ଛନ୍ଦ୍ୟରେ ରହିଥିଲେ ମଧ୍ୟ କହିଥାନ୍ତି- ହା ହନ୍ତ ! ତଥାପି ଜନ୍ମବିଟପୀକ୍ରୋଡ଼େ ମନୋଧାବତି।

ଗାଁର ଅଧିଷ୍ଠାତା ଦେବତା ପାରେଶ୍ୱର। ମାଇନର ସ୍କୁଲଟି ମଧ୍ୟ ପାରେଶ୍ୱରଙ୍କ ନାମରେ। ଅନ୍ୟାନ୍ୟ ଠାକୁର ଠାକୁରାଣୀଙ୍କ ନାଆଁ କାଳୀଗିରିହାଣୀ, ଦରଗଡ଼ଶୀଳା, ସୁଆଁପାଟ। ବଡ଼ାମଶାଳ ତ ରହିଛି ପଧାନଙ୍କ ଘର ଆଗ ଅଶ୍ୱତ୍ଥ ଗଛମୂଳେ। ଏବେ ଅଶ୍ୱତ୍ଥ ଗଛ ଭାଙ୍ଗିଯିବା ପରେ ଖରାବର୍ଷାରେ ରାସ୍ତାକଡ଼ରେ ବଡ଼ାମ ଗଡ଼ଗଡ଼ଉଛନ୍ତି।

ଦିହୁରି ବାଘନଗରରୁ ଗୁରୁବାରକୁ ଗୁରୁବାର ଆସି ଫୁଲସିନ୍ଦୂର ଦେଇ ସଳଖେଇ ଦିଏ। ସୁଆଁପାଟ ଘୋର ବଣଭିତରେ ଥିଲେ। ଏବେ ଗୋଟିଏ ଗଛଇଲାକାରେ; ବୋଧହୁଏ ବରଗଛ, ନହେଲେ କିଏ କାଟିନେଇ ଜାଳି ଦେଇଥାନ୍ତା। ଠାକୁରାଣୀଙ୍କ ପାଖରୁ ବରପାଇଁ ବସିବା ଆହ୍ୱାନ କରି ଦେଇଥିଲେ ହଲର ମିଶ୍ରେ, ବସନ୍ତ ଶତପଥୀଙ୍କ ଭିଣୋଇ କୈଳାସ ଚନ୍ଦ୍ର ମିଶ୍ର; ହଲର ଥିବାରୁ ଏ ନୂଆ ନାଆଁ। ଏବେ ଛାତଟିଏ କରିଦେଇଛନ୍ତି ମୋହିନୀ ହୋତା, ଗାଁର ଜନୈକ ସୁପର ଏ କ୍ଲାସ କଣ୍ଟ୍ରାକ୍ଟର। ସୁଆଁପାଟ ଠାକୁରାଣୀ। ଜାନ୍ତାଳ ଅବ୍ୟର୍ଥ ଫଳଦିଏ, ଯଦି ସହସ୍ର କୁମ୍ଭ ପାରେଶ୍ୱର ମହାଦେବଙ୍କ ପାଖରେ ଏକ ସମୟରେ ହୁଏ। ପୂଜା, ବଳି ସରୁନସରୁଣୁ ପାହାଡ଼ ପରି କଳାହାଣ୍ଡିଆ ମେଘ ମାଡ଼ିଆସେ। ପାନ୍ଧଡ଼ା ସୀମା ଭିତରେ ମୂଷଳଧାରାରେ ବରଷେ। ବାଘଝାମ୍ପରେ ବିନ୍ଦୁବିସର୍ଗ ନାହିଁ।

ଗାଁର ବିରାଟ ସଂସ୍କୃତି, ଐତିହ୍ୟ। ଆମେ କନୌଜ ଦେଶରୁ ଆସିଛୁଁ, ଦଶାଶ୍ୱମେଧ ଘାଟ ଆମରି ପୂର୍ବପୁରୁଷଙ୍କ ସ୍ମୃତିରେ। ଯାଜପୁରର ବରାହ ମୂର୍ତ୍ତି ଆମରି। ବ୍ରତ ଉପନୟନ ଶେଷରେ ବଳରାମ ସୁଭଦ୍ରା ଜଗନ୍ନାଥଙ୍କ ପରେ ଦଶ ସହସ୍ର ବ୍ରାହ୍ମଣ ଗୋସେଇଁଙ୍କୁ ପାଣିପାଦାର୍ଘ୍ୟ ଦେଇଥାଉଁ। ଗାଁ ବଗାଳ ସାହି, ଭୁମିକ ସାହିରେ ଛଉ ଆଖଡ଼ା ଅଛି। ନାତି ଦିଲୀପ, ତାଣ୍ଡବ ନାଚରେ ରାଜ୍ୟରେ ଖ୍ୟାତି ଅର୍ଜିଛି। ଏଇ ଦୁଇ ସାଇରେ ଯାତ୍ରାନାଚ ଅପେରା ବି ଥିଲା। ଧୁମୁଷା, ମାଦଳରେ କାଠିଆ ଭୂମିକର ଘର ସାହି ଉଠୁଥିଲା ପଡୁଥିଲା। ବ୍ରାହ୍ମଣ ସାହିର ସ୍ତ୍ରୀଲୋକେ କାନ୍ଥରେ ଏଡ଼େ ସୁନ୍ଦର ଝୋଟି ଧାନଶୀଷା, ପଦ୍ମଫୁଲ ଲେଖି ପାରୁଥିଲେ ଯେ, କାନ୍ଥରେ ଦୋଅକ୍ଷରି ଲେଖିବାପାଇଁ ଜାଗା ନଥିଲା।

ଗାଁଟି ସାଢ଼େ ଚଉଦଭାଗୀ ଶାସନ। ଅଧା ଭାଗଟି ବୋଧହୁଏ ପାଣିଗ୍ରାହୀଙ୍କର, ତାଙ୍କ ପୂର୍ବପୁରୁଷ ଦାନ ଗ୍ରହଣ କରିଥିବାରୁ ଦକ୍ଷିଣା ବାବଦ। ପ୍ରତି ଭାଗ ୧୪୦ ମାଣ, ସେ ଭିତରୁ ଶହେମାଣ ଜଙ୍ଗଲ। କାଳକ୍ରମେ ଜଙ୍ଗଲସବୁ ସରକାର ନାମମାତ୍ର ମୂଲ୍ୟ ଦେଇ ନେଇଗଲେ। ବ୍ରାହ୍ମଣଗୋସେଇଁମାନେ ଜଙ୍ଗଲ ସ୍ୱତ୍ତ୍ୱ ହରାଇଲେ। ନିଷ୍କର ଜମିରେ ଏମିତି ଶେଶ୍ ବା କର ବସିଲା ଯେ, କର ଆଉ ଖଜଣା ସମାନ ସ୍ତରକୁ ଆସିଗଲା। ଯାହା ଜମି ଅଛି ସେସବୁ ବିଭିନ୍ନ କିସମର। ଭଲ ଜମି କହିଲେ ପାଞ୍ଚମାଣ। ଶାସନଟି ଭଜପିଣ୍ଡା ସର୍ବସ୍ୱ।

ଏବେ ଏବେ ତିିରିଶ ଚାଳିଶ ବର୍ଷ ଭିତରେ ପାଞ୍ଚ ନମ୍ବର ଓ ଛଅ ନମ୍ବର ରାଜପଥ ପୋଖରି ଛକ ଜାମଶୋଳ ଘାଟ ଦେଇ ଯାଇଥିବାରୁ, ପାନ୍ଧଡ଼ା ବମ୍ବେ କଲିକତା ମାନ୍ଦ୍ରାଜ ସହିତ ସଂଯୁକ୍ତ ଓ ସଂପୃକ୍ତ ହୋଇପାରିଛି ଏବଂ ଭାରତୀୟ ସଂସ୍କୃତି ଓ ସଭ୍ୟତାର ସଂସ୍ରବରେ ଆସିଯାଇଛି।

ବିହାର ବଙ୍ଗଳା, ଓଡ଼ିଶାର ତ୍ରିସୀମାଳି ଏ ଗାଁ ବମ୍ବେଛକ (ଝାଡ଼ପୋଖରିଆ ଛକ)ର କଲେଜଟି 'ସୀମାନ୍ତ କଲେଜ'। ଗାଁର ଡୋମ (ହରିଜନ) ମାନେ ବାଉଁଶର ସୁନ୍ଦର ସୁନ୍ଦର ପାଛିଆ, କୁଲା, ଛିଞ୍ଚଣା, ଟୁକୁଲି, ଜାଳି ଭାରନେଇ ଏକାଦିନେ ବଣଜଙ୍ଗଲ ରାସ୍ତା ଦେଇ ଟାଟାନଗର ଯା'ଆସ କରିପାରନ୍ତି। ଆଗରୁ ଅକ୍ଳେଶରେ ଗୋରୁମହିଷାଣି ଯାଉଥିଲେ। ଟାଟାର ଖାଦାନ ଉଠିଗଲାରୁ ଏବେ ବ୍ୟବସାୟ ମାନ୍ଦା। ଗାଁ ଦେଇ ଯାଇଥିବା ବାଙ୍ଗିରିପୋଷି (୬ ନମ୍ବର ରାଜପଥ) ଶୀର୍ଷା ସଡ଼କ ଦେଇ ଚାଉଳ, ମୁଗ, ବିରି, ବିକିବାକୁ ଏବଂ ତେଲ ଓ ତେଜରାତି ଚିଜ ଆଣିବାକୁ ଚାକୁଳିଆ ଯାଉଥିଲେ ଏବଂ ସୁବର୍ଣ୍ଣରେଖାରେ ଜାମଶୋଳା ଘାଟଦେଇ ଚାଲି ଚାଲି ଏବେ ବି ଲୋକେ ଖଡ଼ଗପୁର ଯାଉଛନ୍ତି ବେପାର ବଣିଜ ଉଦ୍ଦେଶ୍ୟରେ।

ତ୍ରିସୀମାଳିରେ ଅବସ୍ଥିତ ପାଉଣ୍ଡଡ଼ା ତ୍ରିଭାଷୀ। ତିନୋଟି ରାଜ୍ୟର ଭାବ, ଭାଷା, ସଂସ୍କୃତି ନିରନ୍ତର ଆଦାନପ୍ରଦାନ ହେଉଛି। ଗାଁର ମଣ୍ଡଳସାହିର ସୀତାନାଥ ମଣ୍ଡଳ, ପୂର୍ଣ୍ଣ ମଣ୍ଡଳ, ଆଦିତ୍ୟ ମଣ୍ଡଳ ଓ ନିତ୍ୟାନନ୍ଦ ମଣ୍ଡଳ ଏତେ ସୁନ୍ଦର ଓଡ଼ିଆ କହନ୍ତି, ଯାହା ଶୁଣିଲେ କଟକ ପୁରୀର ଲୋକେ ଲଜ୍ଜିତ ହେବେ। ଡୋମମାନେ ଯିମିତି ହିନ୍ଦୀ କହନ୍ତି, ଟାଟାନଗରବାଲା ଶୁଣିଲେ ତାଙ୍କୁ ବିହାରୀ ଭାଇ ବୋଲି ଗଣିବେ। ଆଉ ବଙ୍ଗଳା ? ପିଲାଦିନୁ ଏ.ଟି ଦେବ, ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, କୁମେଲିଆର ଆତ୍ମକାହାଣୀ ଆମେ ପଢ଼ିଛୁଁ। ଗାଁର ଦୋକାନୀ ଗୋବିନ୍ଦ ନନ୍ଦ 'ହିତବାଦୀ' ବଂଗଳା ସାପ୍ତାହିକ ପତ୍ରିକା ଆଣୁଥିଲେ। କଲିକତାବାଲା ଆମକୁ ପଚାରନ୍ତି- 'ଆପ୍‌ନି ବାଙ୍ଗାଲୀ ନାକି ?' ମୟୂରଭଞ୍ଜର ଭାଷା ଏକ ପକ୍ଷରେ ଏହି ତିନି ଭାଷା, ଅନ୍ୟପକ୍ଷରେ ଆଦିବାସୀ ଭାଷାର ସମ୍ମିଶ୍ରଣ।

ପାଣିଗ୍ରାହୀ ବହୁତ ଦୂର ଚାଲି ଗଲେଣି ଡ୍ରିଜ୍ ଲଣ୍ଡନ ଧରି। କ୍ଷେତ୍ରମୋହନ ହୋତା, ଡ଼କ୍‌ଟର କୃଷ୍ଣଚନ୍ଦ୍ର ପାଣିଗ୍ରାହୀ, ପରମାନନ୍ଦ ଆଚାର୍ଯ୍ୟ ବି ଗଲେଣି ପାଉଣ୍ଡଡ଼ା ଛାଡ଼ି, ତାଙ୍କ ଗାଁ ଗଣ୍ଡା ଛାଡ଼ି, ବଣଜଙ୍ଗଲ ତୋଟା ଜୀବଜନ୍ତୁ ଚଢ଼େଇବଟା ନେଇ। ଟଗର, କନିଅର ଫୁଲର ମହକ ନାହିଁ ଗାଁରେ। ତଥାପି ମୃତ୍ୟୁ ବେଳକୁ ବାରମ୍ବାର କାହିଁକି କେଜାଣି ଅଜବ ଗାଁ ପାଉଣ୍ଡଡ଼ା ମନେପଡ଼ୁଛି।



# ।। ତିନି ।।

ଗାଁର ନାଆଁ ଉମାଦେଇପୁର, ଡ଼ାକନାଆଁ ପାଦ୍ଧଡ଼ା । ଏ ଗାଁର କୁଳବୃଦ୍ଧଙ୍କ ନାଆଁ ହରି ଶତପଥୀ, ଡ଼ାକନାଆଁ ବାଘମୁଣ୍ଡି ବୁଢ଼ା । ଯେଉଁ ଗାଆଁରୁ ସିଏ ଆସିଥିଲେ ବା ଯେଉଁ ଗାଆଁ ସହିତ ତାଙ୍କର ଜୀବନବ୍ୟାପୀ ଘନିଷ୍ଠ ସଂପର୍କ, ତାର ନାଆଁ ଯମୁନାଦେଇପୁର, ଡ଼ାକ ନାଆଁ ବୁଢ଼ୀଖମାରୀ । ଜଙ୍ଗଲଘେରା ଓ ବାଘଭାଲୁ ଭରା ପାଦ୍ଧଡ଼ା ଗାଁର ମୁରବୀପାଇଁ ବାଘମୁଣ୍ଡି ନାଆଁଟି (ବାଇମୁଣ୍ଡି ପରି) କେଡ଼େ ମାନେ, କେଡ଼େ ସମୀଚୀନ, କେଡ଼େ ସୁନ୍ଦର !

ବୁଢ଼ାଟି ଗେଡ଼ା, ମୁହଁଟି ଚକା, ମୁଣ୍ଡଟି ଗୋଲ । ଆଜିକାଲି ଦିନେ ଦିନେ ଟିଭିରେ ଗାନ୍ଧୀ ବୁଢ଼ାର ତୂମ୍ବକ ରୂପଟି ଯେମିତି ସାପ ପରି ରେଖାଟିଏ ଟାଣି ଚଷମାଟି ଲଗାଇ ରଖି ଦିଆଯାଏ, ସେମିତି ମୋଟାମୋଟି ହରିଆ ଅଜାର ମୁଣ୍ଡଟି । ଦୁଇଅଣିଆ ଚଷମାଟି (ବୁଢ଼ା ତାକୁ ପ୍ରଚକ୍ଷୁ କୁହେ) ମସିଆ ସୂତାରେ କାନରେ (କେବେକେବେ ଗୋଟିକରେ) ଲଟକା ହୋଇଥାଏ । କାଚ ଭିତର ଦେଇ ଜୁଳୁଜୁଳୁ ଚାହେଁ । ମୁଣ୍ଡରେ ଧଳା ଚୂଳର ଜଟ, ଅଗରେ ଜାହାକୀ ଗୁଆପରି ଗଣ୍ଠି । ଖୁରରେ ଜଟର ଚାରିପଟ ରାମ୍ପି ଦିଆଯାଇଛି । ଓସାରିଆ କପାଳରେ ଖଡ଼ିପାହାଡ଼ରୁ ଅଣା ତିଳକମାଟିରେ ତ୍ରିପୁଣ୍ଡ୍ରକ ତଳକୁ ସତୀ ବୋଲାଉଥିବା ବୟସ୍କ ସ୍ତ୍ରୀ ଯିମିତି ଅଧୁଲି ପ୍ରମାଣ ସିନ୍ଦୂର ନାଏ, ସିମିତି ଏକ ବଡ଼ ତିଳକ । ଛାତିରେ ଧଳା କମ୍ବଳ ପରି ବୋଝାଏ ଚୂଳ । ତା'ପରେ ଗୟାରୁ ଆନୀତ ରୁଦ୍ରାକ୍ଷମାଳା, ତା ଉପରେ ନାମାବଳି ସେଇ ଗୟାର । ବାଘକୁ (ଧଳା) ଉପମାନ କରି ୟାଙ୍କୁ ଯଦି କେହି ବଣୁଆ ଲୋକ ବାଘମୁଣ୍ଡି ବୋଲି ଡ଼ାକିଲା, ତାକୁ ସାହିତ୍ୟିକ ଛଡ଼ା ଆଉ କଣ କୁହାଯିବ ?

ଏ ବୁଢ଼ାଟି କେବେ କେଉଁଠୁ ଉଡ଼ିଆସି ଏଠି ବସା ବାନ୍ଧିଲା, ତାହା ସେ ନିଜେ ଜାଣେ । ତାହାରି ମୁହଁରୁ ବାପା ଶୁଣିଛନ୍ତି, ସେ ନଅଙ୍କ ବେଳକୁ ଗାଁରେ ଥିଲା । ତା ବାପ ନାଆଁ ମହାଦେବ, ମାଆ ନାମ ପାର୍ବତୀ । ଛେଉଣ୍ଡ ପିଲାଟାକୁ ଖଡୁ ଶତପଥୀ ବୋଲି କିଏ ଜଣେ ମହାତ୍ମା ଆଣିଥିଲେ, ପାଳିଥିଲେ । ଅତି କମ୍‌ରେ ଏଗାର ବର୍ଷ ପର୍ଯ୍ୟନ୍ତ ହରିଆ ଲଙ୍ଗଳା ହୋଇ ବୁଲୁଥିଲା । ଖଡୁ ଶତପଥୀ କୁଆଡ଼େ ତାକୁ ପଇତା କରିଥିଲେ । ଖଡୁ ଶତପଥୀ ହୁଏତ (ଯଦି ସେ ନିଜେ ପଢ଼ିଥିବେ !) ତାକୁ ଖଡ଼ି ଛୁଆଁଇ ଥିଲେ । ଗାଁର ସ୍କୁଲଟି ୧୮୮୯ରେ ସ୍ଥାପିତ । ପିଲାଟି ସେତେବେଳକୁ ପ୍ରାୟ ତିରିଶ ବର୍ଷ ହୋଇଥିଲା । ତେଣୁ ସେ ଘରେ ନିଜେ ନିଜେ ପଢ଼ିଥିବ । ଖଡୁ ଶତପଥୀ ମରିଯିବାରୁ ପିଲାଟି ପୁଣି ଛେଉଣ୍ଡ ହେଲା । କିନ୍ତୁ ଏଇ ଛେଉଣ୍ଡ ଲଙ୍ଗଳା ପିଲାଟି ଦେଢ଼ଣ ମାଣ ପାଦ୍ଧଡ଼ା ଶାସନର ଭାଗେ ନିଷ୍କର ଜମିର ମାଲିକ । ହେଲେ, ଘର ନାହିଁ ଦୁଆର ନାହିଁ । ଖାଲି ମକୁନ୍ଦା ଫେର୍‌ଫାର୍‌ । ମାଗିଯାଚି ବଞ୍ଚିବା ସାର ।

ଆସିଲା ୧୮୬୬ । ନଅଙ୍କ ଦୁର୍ଭିକ୍ଷ । ଖତୁ ଶତପଥୀ ଆଉ ନାହାନ୍ତି । କିନ୍ତୁ ଯିବା ଆଗରୁ ସେ ପିଲାଟିକୁ ଦି ହାତରୁ ଚାରିହାତ କରି ଦେଇଥିଲେ, ବୁଢ଼ୀଖମାରିର ବିଦ୍ୟାଧର ଦାଶଙ୍କ ଟିକି ଝିଅ ସତ୍ୟଭାମା ସହିତ । ଭାଗ୍ୟ ଭଲ, ସତ୍ୟଭାମା ଦେବୀ ହରିହର ଦେବଙ୍କ ପାଖକୁ ଆସିବାକୁ କେତେ ବର୍ଷ ବାକି ଥାଏ । ଗୌରୀ କନ୍ୟା । ଅଷ୍ଟବର୍ଷା ଭବେତ୍ ଗୌରୀ ।

ଦିନେ ପିଲାଟିଏ ପିଣ୍ଡାରେ ବସି ପଢୁଥାଏ ସୁରଧରି "ସତୁରି ବରଷ ତଳେ ଓଡ଼ିଶାରେ ପଡ଼ିଥିଲା ଘୋର କାଳ,··· ଲୋକେ ମଲେ ମାଳ ମାଳ । ସନାତନ ନାମେ ବାଳକଟିଏ ସେ ଦୂର ଗାଁ-ଗଣ୍ଡା ବୁଲି; ମାଆ ଭାଇ ପାଇଁ ଭିଖ ମାଗୁଥିଲା କାନ୍ଧରେ ପକାଇ ଝୁଲି ।" ଜଣେ କିଏ ପଚାରିଲା- "ହରିଆ ଅଜା, ତୁମେ ନଅଙ୍କରୁ କିମିତି ବଞ୍ଚିଲ ? ଝୁଲି ପକାଇ ? ଭିଖ ମାଗି ?" ବଡ଼ ପାଟିରେ ଅଜା ଆରମ୍ଭ କଲେ "କିଏ ତୁମ୍ଭଙ୍କୁ ଭିଖ ଦବ ହେ ! ଆପେ ବଂଚିଲେ ବାପ ନାଆଁ । ମୁଁ ବରାବର ଭୂୟାଁ ବାଥୁଡ଼ି ସାହି, ବାଘନଗର, ଖଡ଼ିପାହାଡ଼ି, ନୁହା ମାଳିଆ ବୁଲି ବୁଲି ମାଗୁଥିଲି ବୋଲି ସେମାନେ ମୋତେ ବ୍ରାହ୍ମଣ ବୋଲି ଗୋଟେ ମୁଠେ ଦେଉଥିଲେ । ଘଡ଼ିଏ ଦାଣ୍ଡରେ ଠିଆ ହୋଇ ରଡ଼ି ଛାଡ଼ିଲେ, ଗୋଟାଏ କି ଦୁଇଟି ଚାଉଳ କେହି ଥିଲାବାଲା ଦେଲା ତ ଡେର । ଦିନଯାକ ତିନିଟା ଗାଁ ବୁଲିଲେ ମୁଠାଏ ଚାଉଳ । ସଞ୍ଜ ହେବା ପୂର୍ବରୁ କାଠିଝାଟି ଗୁଣ୍ଡାଇ ଠେକିରେ ବସାଇ ଦିଏଁ । ପେଜ ତୋରାଣି ମିଶାଇ ଖାଇ ଦିଏଁ । କାହା ପିଣ୍ଡାରେ ଶୋଇପଡ଼େ । ତରକାରୀ କହିଲେ କଅଁଳ ଅଶ୍ୱତ୍ଥ ପତ୍ର । ଠେକିଟା ଗମାରି ଗଛର ତିନି ଫାଙ୍କୁଡ଼ିଆ ଡାଳରେ ରହିଥାଏ, ପରଦିନ ସକାଳ ପାଇଁ । କେଉଁ ଦିନ କୁଆ ଖାଇଦିଅନ୍ତି, ତଳେ ବି ଦିନେ ଅଧେ ପକାଇ ଦିଅନ୍ତି । ମାଆ, ନା ଭାଇ ? କେତେ ଗଲେ, କେତେ ମଲେ, କିଏ ମଲା ଗଲା ରହିଲା, ବୁଝୁଛି କିଏ ?"

ହରିଆ ପିଲାଟି ଦୁର୍ଭିକ୍ଷରୁ ବର୍ତ୍ତିଗଲା । ନାମକୁ ଶହ ଶହ ମାଣ ଜମି ଓ ଜଙ୍ଗଲର ମାଲିକ । "ସ୍ୱସ୍ତି ଶ୍ରୀ ମୟୂରାଣ୍ଡୋଭବ ଶ୍ରୀ ଶ୍ରୀ ମହାରାଜା..." ଗାଇ, ଗହ୍ମାପୂର୍ଣ୍ଣମୀ ଦିନ ପାଣିଗ୍ରାହୀ ଜରିଆରେ ନଡ଼ିଆ, ପଇତା ଭେଟିଟି ରାଜବାଟୀର ରାଉତରାୟ ସାହେବ ପାଖରେ ପହୁଞ୍ଚାଇଲେ ଜମିର ତୁମ୍ଭେ ନିରଙ୍କୁଶ ମାଲିକ, ଜମି ଚାଷ କର ବା ନକର । ହରି ଶତପଥୀଙ୍କ ଜମି ଅଛି; କିନ୍ତୁ ନା ଅଛି, ଗୋରୁ, ଗୋବର, ବିହନ ନା ଅଛି ଲଙ୍ଗଳ । ଲୋକେ କଉତୁକରେ କହନ୍ତି- "ହରିଆ ଅଜାଙ୍କ ବିଲରେ ପଦ୍ମ ଫୁଲ ଫୁଟିଛି ।" ଅର୍ଥାତ୍ ବିଲରେ ହଳ, ଚାଷ ଅଭାବରୁ ପଦ୍ମ, କଇଁ, ବାଳୁଙ୍ଗା, ଘାସ ଜନ୍ମିଛି । ଚାଷ ତିନି ପୁରୁଷରେ ଆମର ହେଲା ନାହିଁ । ବାପାଙ୍କ ଅମଳରେ ଯଦି ଚାଷ ହେଲା, ତେବେ ତେର ପୌଟି ଅମଳକୁ ଅଠର ପୌଟି କରଜ ।

ପାଠ ଟିକିଏ ବେଶି ପଶିଗଲା ଚାଷ ଭିତରକୁ। ତା' ଛଡ଼ା ଯଜନ ଯାଜନରେ କେକେ ବ୍ୟସ୍ତ ରହିଲେ। ବାପା ହୁଏତ କର୍ମକାଣ୍ଡ ଶିଖିଲେ, ପୂଜାପଣାରେ ବ୍ୟସ୍ତ ରହିଲେ। କେକେଙ୍କ ଅକ୍ଷର ବର୍ତ୍ତୁଳ। ସେ ତାଳପତ୍ର ଆଉ ଲେଖନ ଯକ୍ଷଧନ କଲେ। ହିଡ଼ମୁଣ୍ଡରେ ତାଳପତ୍ର ଛତା ପୋତି ସକାଳରୁ ସଂଧ୍ୟା ପୋଥି ଲେଖିଲେ। କେଉଁଠୁ ପୋଥି ମାଗିଆଣି ରାମାୟଣ, ମହାଭାରତ, ଭାଗବତ, ଚରକ, ଶୁଶ୍ରୁତ, ବିହାରୀ କର୍ମକାଣ୍ଡ, ଅମରକୋଷ, ବିବାହ, ବ୍ରତ, ବନ୍ଦାପନା, ବେତାଳ ପଞ୍ଚବିଂଶତି ଆଦି ପୋଥି ଲେଖିଲେ। ବାପ ପୁଅଙ୍କ ଜୀବନବ୍ୟାପୀ ଯୁଗ୍ମ ପ୍ରଚେଷ୍ଟାର ଏସବୁ ଫଳ। ଏବେବି ରାମାୟଣ, ମହାଭାରତ ଓ ଭାଗବତଗାଦି ଠାକୁର ଘରେ ରଘୁନାଥ, ରାଧାକୃଷ୍ଣ ମୂର୍ତ୍ତି ସହିତ ପୂଜା ପାଉଛନ୍ତି। ପୂଜାପଣାର ସରଞ୍ଜାମ ମଧ୍ୟ ଆଜିଯାକେ ରହିଛି। ବାପା ଭଲ କାଠମିସ୍ତ୍ରୀ ଥିବାରୁ ଘରର କାଉଁଳି କବାଟ ସହିତ ଶ୍ରୁବ, ଶ୍ରୁଚ, ପ୍ରଣିତା ଆଦି ହୋମାଦି ଉପକରଣ କରିଥିଲେ।

ପୋଥିପତ୍ର ଲେଖାରେ ପାଗଳ ହୋଇ ଯୁବକ ହରିହର ଏକାବେଳେକେ ପାସୋରି ଯାଇଥିଲେ ଯେ, ଅଭିଭାବକ ଖୁଡୁ ଶତପଥୀ ତାଙ୍କୁ ବୁଢ଼ୀଖମାରର ସତ୍ୟଭାମା ନାମ୍ନୀ ଗୌରୀ କନ୍ୟାଙ୍କୁ ଏକଦା ତାଙ୍କ ସହିତ ଛନ୍ଦି ଦେଇଥିଲେ। ହରିହରଙ୍କ ତପସ୍ୟା ଭଙ୍ଗ ହେଲା। ତା'ପରେ କୁଡ଼ିଆରେ କୁଆଁ କୁଆଁ ଶବ୍ଦ। ପିଲାର ନାଆଁ ଦିଆଗଲା କୃଷ୍ଣଚନ୍ଦ୍ର। କିନ୍ତୁ ଶ୍ୱଶୁର ନିଃସନ୍ତାନ। ଜୋଇଁଙ୍କର ତ କୃଷ୍ଣଚନ୍ଦ୍ର ଅଛି ! କି ଅଜବ କଥା। ଶ୍ୱଶୁର ନିଜ ଝିଅର ପୁଅକୁ ପୋଷ୍ୟପୁତ୍ର କରିବେ ? ଇଏ ନା ଧର୍ମ, ନା ଆଇନ ମାନିବ ? ହରିହର ପୁଅକୁ ଶ୍ୱଶୁରକୁ କିନ୍ତୁ ଦେଇଦେଲେ। କୃଷ୍ଣଚନ୍ଦ୍ର ଶତପଥୀ, କୃଷ୍ଣଚନ୍ଦ୍ର ଦାଶ ବୋଲାଇ ବୁଢ଼ୀଖମାରୀରେ ବଢ଼ିଲା। ବର୍ଷ ବର୍ଷ ବିତିଲା, ହରିହରଙ୍କ ଝିଅ ଜନ୍ମିଲେ, ପୁଅ ନାହିଁ। ଝିଅଟିଏ ଛ'ମାଇଲ ଦୂର ଜଗନ୍ନାଥ ଖୁଣ୍ଟ (ସାତକଡି ହୋତାଙ୍କ ଗାଁ)ରେ ବାହାହୋଇ ଯେଉଁ ଝିଅ ଜନ୍ମ କଲା, ତାର ନାତି ହେଲେ ପ୍ରଖ୍ୟାତ ନିହାର ରଞ୍ଜନ ହୋତା ଓ ମନୋରଞ୍ଜନ ହୋତା। ଅବଶେଷରେ ପୂଜାପଣା ପରେ ବୁଢ଼ା କାଳରେ ପୁଅଟିଏ ହେଲା।

ଭୋଳାନାଥ, ମୋ ବାପା। କେତେ ବର୍ଷ ପରେ ବୁଢ଼ୀଖମାରୀରେ କୃଷ୍ଣଚନ୍ଦ୍ର ଓ ତଦୀୟ ପତ୍ନୀ ଅକାଳ ମୃତ୍ୟୁରେ ପଡ଼ିଲେ। ହରିହର ସେମାନଙ୍କ ପୁତ୍ର ତଥା ନିଜ ନାତି, ଉମାକାନ୍ତକୁ ଘରେ ଆଣି ରଖିଲେ। ଛେଉଣ୍ଡ ନାତି ଟୋକାଟି କେଉଁଠି ବା ରହିବ ! ଉମାକାନ୍ତ ଦାଶ ବୋଲାଉଥିଲେ ମଧ୍ୟ ଏଇ ମୋ ରକ୍ତର ଦଦେଇ, ବାପାଙ୍କ ପୁତୁରା, ମୋ ବଡ଼ ଭାଇ, ନନା। ମୋ ମା' ପେଟର ଭାଇକୁ ମଧ୍ୟ ମୁଁ ଏତେ ସ୍ନେହ ଶ୍ରଦ୍ଧା କରିନଥାନ୍ତି। ଜିଜି (କେକେ) ବାପାଙ୍କ ଉଦାରତା, ସରଳତା ଓ ବୋକାମିପାଇଁ ତାଙ୍କ ପୁଅ ଭୋଳାନାଥ ଅଶାନ୍ତି, ଦୁଃଖ ଭୋଗିଲେ। ମାଲିମୋକଦମା ହେଲା। ଆମେ ଜିତିଲୁ। କିନ୍ତୁ ମୋ

ଅନୁରୋଧରେ ବାପା ନନାକୁ ପ୍ରାୟ ପାଞ୍ଚମାଣ ଜମି ଛାଡ଼ିଦେଲେ। ସେ ବୁଢୀଖମାରୀର ନିଜ ଭାଗ ମଧ୍ୟ ପାଇଲା। ନନାର ବାହା ପଇତା ସବୁ ବୁଢ଼ା କରିଥିଲା। "ଝିଅର ପୁଅ ପୋଷ୍ୟପୁତ୍ର ହୋଇପାରେନା", ସେମାନେ ଯୁକ୍ତି କଲେ। ଦିବ୍ୟସିଂହ ପାଣିଗ୍ରାହୀ, ସେବକାର ଷ୍ଟେଟ ଓକିଲ, ଦର୍ଶାଇଲେ ଆମ ତରଫରୁ ଯାହା ହୋଇଯାଇଛି, ହୋଇଯାଇଛି- ଇଂରାଜୀରେ ଯାହାକୁ 'factum valid' କହନ୍ତି। ଯାହାହେଉ, ଆମ ଭିତରେ ଆଉ ତିକ୍ତତା ରହିଲା ନାହିଁ। ମୋକଦ୍ଦମା ନିଷ୍ପତ୍ତି ହେଲାବେଳକୁ ବୁଢ଼ା ଚାଲିଗଲେଣି। ଜମି ପାଞ୍ଚମାଣ ତାଙ୍କ ନାତିକୁ ଦିଆଗଲା ଶୁଣିଥିଲେ ସେ ଦୁଃଖ କରିଥାନ୍ତେ, ଯିମିତି ବାପା ଦୁଃଖ କଲେ, କାରଣ ସେ କାଳରେ ଗୋଷ୍ଠଦେ ପୈତୃକ ଜମି ସେମାନେ ଦେଇ ପାରିବେ ନାହିଁ, ଯିମିତି ଦୁର୍ଯ୍ୟୋଧନ ସୂଚ୍ୟଗ୍ର ପରିମାଣ ଜମି ଦେଲା ନାହିଁ, ବରଂ ସବଂଶ ନାଶଗଲା।

ହରି ଶତପଥୀ ଥିଲେ ଖଣ୍ଡମଣ୍ଡଳର କବିରାଜ। ବୈଦ୍ୟରାଜ। "ହରି ଶତପଥୀ ବଇଦରାଜ, ଘଡ଼ି ଘଡ଼ି ତାଙ୍କ ଶମନ ତେଜ।" ଏ ପଦକ ଅତି କମ୍‌ରେ ପଚାଶ ବର୍ଷ ଧରି କଥାକଥାକେ ରୋଗୀମାନେ କହୁଥିଲେ। କଣ ତା'ର ଅର୍ଥ କିଏ ଜାଣେ ? ସକାଳ ପାହିଲା ବେଳକୁ ଘର ସାମନା କୂଅ ପାଖରେ ଗୁଡ଼ାଏଲୋକ ଆସନ୍ତି। ସମସ୍ତଙ୍କ ହାତରେ ବାଉଁଶ ଧଣ୍ଡିରେ ପାଣି (ପରିଶ୍ରା)। ବଇଦରାଜ ବାହାରି ଗୋଟି ଗୋଟି କରି ପାଣି ଦେଖନ୍ତି। ଭଙ୍ଗା ଖପରାରେ ବାଉଁଶ ଧଣ୍ଡିରୁ ପାଣି ଢଳାଯାଏ। ତେଲ ବସିରହେ ବା ମାତିଯାଏ ନାନା ରଙ୍ଗ ଧରି। ବଇଦରାଜ ମନେ ମନେ ନୋଟ୍‌କରନ୍ତି ପ୍ରତିଟିର ପ୍ରକୃତି ବିକୃତି। ତାପରେ ଜଣ ଜଣଙ୍କର ନାଡ଼ି ଦେଖନ୍ତି ବା ଲକ୍ଷଣ ଶୁଣନ୍ତି। ତାପରେ ଗୋଟାଏ ମୁଣିରୁ ବଟିକା ବାହାରକରି ଅନୁପାନ ବତାନ୍ତି। କିଏ ପଇସାଏ, କିଏ ଦୁଇ ପଇସା ଫିସ୍ ଦିଅନ୍ତି, କିଏ ଫଳମୂଳ, ପନିପରିବା ଦିଏ, ଆଉ କିଏ କିଛି ଦେଇପାରିବନି କୁହେ। ରୋଗୀ ଦେଖିସାରି ଚିତା-ଚୈତନ ହୋଇ କେକେ ଗାଁଗଣ୍ଡା ବାହାରିଯାନ୍ତି। ଫେରିଲାବେଳକୁ ଚୂଡ଼ା, ଉଖୁଡ଼ା, କେବେ ଚାଉଳ, ଜାଉଁଳିକରି ଫେରନ୍ତି। ଯେବେ ଧାନ ଆଣନ୍ତି, ଅସୁବିଧା ହୁଏ। ତାଙ୍କ ସ୍ତ୍ରୀ ସଂଗେସଂଗେ ଧାନ ଉଷେଇ ଖପୁରିରେ ତତାନ୍ତି, ଢ଼େଙ୍କିରେ କୁଟନ୍ତି; ଚାଉଳ ହେଲେ ଭାତ ବସେ, ପେକପାଣି କରି ସଜନା ଶାଗ ସହିତ ପଂକ୍ତି ଭୋଜନ ହୁଏ। ଜହ୍ନ ଆଳୁଅ ଥିଲେ ଭଲ। ନଥିଲେ ଗବ ଫଳ; ତା'ବି ନଥିଲେ ବାଡ଼ିରୁ କାଠିକୁଟା ଆଣି ନିଆଁ ଜଳାଯାଏ। ଅଗଣାରେ କାଠି ଝାଟି ହଲାଇ ଆଲୁଅ ହୁଏ। କିଛି ଅସୁବିଧା ବିଭ୍ରାଟହେଲେ, କେକେମାଆର ପିଠିରେ କାଠଫାଳିଆ ବସେ; ଅଣ୍ଟାଭଙ୍ଗା ପରିଶ୍ରମ ସାଙ୍ଗକୁ ପିଠିବଙ୍କା ମାଡ଼।

ବୁଢ଼ା ନିଜେ ଜଙ୍ଗଲକୁ ଯାଇ ହରିଡ଼ା, ବାହାଡ଼ା, ଅଁଳା ଆଦି ଫଳ; ଚିମାଡ଼ୁ (ଅନନ୍ତମୂଳ), ଗାଇଣ, ଚିରେଇତା ଆଦି ଲତା ଗୁଳ୍ମ ସଂଗ୍ରହ କରନ୍ତି ଓ ବଟିକା, ଚୂର୍ଣ୍ଣ ଆଦି ତିଆରିକରି ମୁଣିରେ ପୁଟୁଳାକରି ରଖନ୍ତି । ରୋଗୀ ଅନୁପାନ ସଂଗ୍ରହ କରିପାରିଲେ ହେଲା । ଲୋକଙ୍କ ବଇଦ ଉପରେ ବିଶ୍ୱାସ ଥିଲେ ସବୁ ରୋଗ ଭଲହେବ । ଥରେ ବାପ ପୁଅଙ୍କ ଆଖିଧଇଲା । ଆଖି ଖୁବ୍ ଖେଞ୍ଚିଲା । ଘରେ ଦୁହିଁଙ୍କ ଛଡ଼ା ଆଉ କେହି ନାହିଁ । ଦୁହେଁ ନିଷ୍ପତ୍ତି କଲେ, ଆଖିରେ କଣ୍ଟାମଞ୍ଜି ବା ଅଗରାର ହଳଦିଆ କ୍ଷୀର ଲଗାଇବେ ଏବଂ ପରସ୍ପର ଆଖିରେ ମଧ୍ୟ ଲଗାଇଦେଲେ ପଡ଼ିଆର ଅଗରାବୁଦା ପାଖକୁ ଯାଇ । ପ୍ରାୟ ଅନ୍ଧ ହୋଇ, ଧରାଧରି ହୋଇ, ଘରେ ପହଞ୍ଚିଲେ ଦୁହେଁ ରାସ୍ତା ବାରିବାରି । ଆଖି ଭୀଷଣ ପୋଡ଼ିଲା, ଫୁଲିଗଲା । ଅଗଣାରେ ଓଳିଆଟାଏ ଥୁଆ ହୋଇଥାଏ । ତାକୁ ଧରିଧରି ଚାରିପାଖ ଦୁହେଁ ଘୁରୁଘୁରୁ କାନ୍ଦି କାନ୍ଦି "ମରିଗଲିରେ ବାପା", "କି କରିବାରେ ଭୋଳା" "ମରିଯିବା, ଆଉ ବଞ୍ଚିବାନି" କହୁଥାନ୍ତି । ପାଣି ପାଇଲେ ସିନା ଧୋଇଦିଅନ୍ତେ । ପାଣି ଦେବ କିଏ ? କିମିତି କେଜାଣି ରକ୍ଷା ପାଇଲେ । ଆଉ ସେ ଔଷଧ କବିରାଜ ଲଗାଇ ନାହାନ୍ତି, କି କେଉଁ ରୋଗୀକି ଦେଇ ନାହାନ୍ତି ।

ଏହି ବନୌଷଧି ସଂଗ୍ରହ କାଳରେ ବୁଢ଼ା ଭୂତ ଭେଟିଥିଲେ । ତାଙ୍କ ବାଲ୍ୟ ସାଥୀ ଜଗନ୍ନାଥ ଶାଳ-ଦାନ୍ତକାଠି ଭାଙ୍ଗୁଭାଙ୍ଗୁ ଟିକିଏ ଦୂରରେ ଯାଇ ଯିମିତି ଅଦୃଶ୍ୟ ହୋଇଛନ୍ତି, ସେମିତି ପୋଡ଼ା ପୋଡ଼ା ଗନ୍ଧ ଭୁରୁ ଭୁରୁ ହୋଇ ବଡ଼ ନିଘଞ୍ଚ ଶାଳବୁଦା ଦେଇ ଆସିଲା । ଆର ପାଖରେ ଗେଡ଼ା ଆଉ ଗୋରା ମଣିଷଟାଏ ଚାଲିଯାଉଛି । ଚୂଳ ପୋଡ଼ାପୋଡ଼ା କୁଞ୍ଚିକୁଞ୍ଚିକା । ମୁହଁରେ ପାଉଁଶ । ଡାକିଲେ ଶୁଣିଲା ନାହିଁ । ବେଳ ଉଦୁ ଉଦିଆ ଖରାଦିନିଆ ଦି'ପହର । ଯିମିତି ତେରଛେଇ ସେ ବୁଢ଼ାଙ୍କୁ ଚାହିଁଛି, ତାଙ୍କ ହାତରୁ ଚେରମୂଳ ଦାନ୍ତକାଠିସବୁ ପଡ଼ିଗଲା, ଦିହରୁ ଝାଳବହିଲା । ବୁଢ଼ା ପଇତା ଦି'ପଟକୁ ମିଳାଇ, ଗଣ୍ଠିକି ଗଣ୍ଠି ଯୋଡ଼ି, ଯିମିତି ଗାୟତ୍ରୀ ମନ୍ତ୍ର, 'ଓଁ ଭୁ ର୍ଭୁବ ସ୍ୱ' ଆରମ୍ଭ କରିଦେଲେ, ଭୂତ ତାଙ୍କୁ ଡ଼ରିମରି ଉଭେଇଗଲା । ଆଉ ଥରେ- ବଣପୋଖରୀ ପୁରୁଣାପୋଖରୀର ଦୁଇ ଶିମୁଳି ଗଛରେ ଦୁଇଗୋଡ଼ ଥୋଇ ବ୍ରହ୍ମରାକ୍ଷସ ତାଙ୍କୁ ଛେକିଥିଲା । "ଗାୟତ୍ରୀ ସାବିତ୍ରୀ ମନ୍ତ୍ର ଆଗରେ ପିଶାଚ ନା ରାକ୍ଷସ, ଡ଼ାହାଣୀ ନା ଚିରଗୁଣୀ, କେହି ତିଷ୍ଠିବେ ନାହିଁ ।" – ବୁଢ଼ା କହନ୍ତି । ସାପକାମୁଡ଼ା ବି ଗୁଣିଗାରେଡ଼ିରେ ଭଲ କରନ୍ତି । ଗୋଟାଏ ଦୁଧିଆ ଗୋଖରକୁ ହାତରେ ଧରି ଚାଳରୁ ଟାଣି ଆଣିଥିଲେ । ବୁଢ଼ା ଭସ୍ମ ମଧ୍ୟ ପ୍ରସ୍ତୁତ କରନ୍ତି । ଶତପୁଟିତ ଲୌହଭସ୍ମ ସୁବର୍ଣ୍ଣଭସ୍ମର ଗୁଣକରେ । ବାପ ପୁଅ ମିଶି ଚାରିହାତ ଗହିର ଗାଡ଼ କରନ୍ତି, ଦୁଇଦୁଇ ହାତ ଲମ୍ବ, ଓସାର । ଭଙ୍ଗା କରେଇକୁ ଟୁକୁରା ଟୁକୁରା କରି ଲୁହା ଚକଟି

ବାହାର କରନ୍ତି। ଶଗଡ଼େ ଅନ୍ଦାଜ ଘଷି ସଂଗ୍ରହ ହୁଏ। ଲୁହାଟୁକୁରା ଗୋରୁ ମୂତରେ ଭିଜେ। ତାକୁ ପ୍ରସ୍ତ ପ୍ରସ୍ତ କରି ଥୋଇ ନିଆଁ ଲଗାଇ ଦିଆଯାଏ। ଥରେ ପୋଡ଼ିଲେ ପୁଟେ ହୁଏ। ଏମିତି ଥର ଥର କରି ଶହେ ଥର ପୁଟ ଦେଲେ ଶତ ପୁଟିତ ଲୌହଭସ୍ମ ହୁଏ। ନିଜ ଆଖିରେ ଚାରିପାଞ୍ଚ ବର୍ଷ ବୟସ ବେଳେ ମୁଁ ଦେଖିଛି, ଏଇ ଖୁବ୍ ଫାଇନ୍ ନାଲିଗୁଣ୍ଡ। ମୁଠାଏ ନାଲିଗୁଣ୍ଡ ପାଇଁ ଶହେ ଶଗଡ଼ି ଘଷି। ବିଲକୁ ଧାନ ପାଇଁ ଯିବାକୁ ଗୋବର କାହିଁ ? ବିଲରେ କଇଁ-ପଦ୍ମ ଫୁଟିବାରେ ବିଚିତ୍ରତା କ'ଣ ?

ଭସ୍ମପାଇଁ ଅନୁପାନ ପ୍ରାୟ ମହୁ। ଗୋଟାଏ କଳା ବଡ଼ ବୋତଲରେ ମହୁ ରଖି, ଶାଳପତ୍ର ଖିଲ ବନ୍ଦକରି, କାଛରେ ଲୁହାକଣ୍ଟାରେ ଖୁବ୍ ଉଚ୍ଚରେ ଲଟକାଇ ଦିଆଯାଇଥାଏ। ପାଣିପାଗ ପ୍ରଭାବରୁ ଦିନେ ମାଛି ଅନ୍ଧାର ବେଳେ ବୋତଲରୁ ମହୁ ଫୁଗୁସି ଫୁଲିଉଠିଲା। ପ୍ରଥମେ ପାନଖିଲ ପରି ପତର ଠିପିର ତଳେ ପଡ଼ିଲା। ତା'ପରେ ବୋତଲ ଦେଇ ମହୁ ତଳେ ପଡ଼ିଲା ସେଇ ଠିପି ପାଖରେ। ଠପ ଠପ ଶବ୍ଦରେ ମହୁ ଝରି ପଡୁଛି, ଫେଣ ଜମା ହେଉଛି। ଜେଜେଙ୍କୁ ଭଲ ଦିଶେନାହିଁ। ତାଙ୍କୁ ଜଣାଗଲା ଛୋଟ ଚିତି ସାପ ଗୁଡ଼େଇ ହୋଇ ଶୋଇଛି। ପାଟି ଟକ୍ ଟକ୍ କରୁଛି ଓ କ୍ରମେ ଆଗେଇ ଚାଲିଛି। ବୁଢ଼ାର ଚିତ୍କାରରେ ବାପା ଓ ନନା ଧାଇଁ ଆସିଲେ ଠେଙ୍ଗା ବାଡ଼ି ଧରି। ମାଆ ଡିବିରି ଆଲୁଅ ଆଣିଲା। ନନା ଶାଳପତ୍ର ଠିପିକୁ ସାପର ମୁଣ୍ଡ ଭାବି ଜୋର ପାହାରେ ପକାଇଲା। ବୁଢ଼ାର ମୁହଁ, ମୁଣ୍ଡ ମହୁରେ ଅଠା ହୋଇଗଲା। ବୋତଲରୁ ପ୍ରାୟ ଅଧସେରେ ମହୁ ମାଟିରେ ଖେଳିଯାଇଥିଲା। ବୋଧହୁଏ ତା'ପରେ ଜେଜେ କବିରାଜି ଛାଡ଼ି ବୁଢ଼ୀଖମାରୀରୁ ଆଣିଥିବା ଛେଉଣ୍ଡ ନାତିକୁ ସେଇ ପାଠ ପଢ଼ାଇଲେ। ବଗୁଲିଆ ରସିକ ଟୋକାକୁ ବାଗକୁ ଆଣିବା କାଠିକର ପାଠ ହୋଇଥିବ। କିନ୍ତୁ ଏଇ ଜଡ଼ିବୁଟି ସ୍ତରରୁ ନନା ସରକାରୀ ଡାକ୍ତର କମ୍ପାଉଣ୍ଡରଙ୍କ ସାହାଯ୍ୟ, ଦୟା, ଦୁର୍ନୀତିରୁ ଉପର ପାହିଆକୁ ଉଠି 'ଡ଼ାକ୍ତର ବାବୁ' ବୋଲାଇଲା ଏବଂ ତା ନିଜ ପିଲା ଝିଲା ଏବଂ କୁଟୁମ୍ବ, ବିଶେଷ କରି ମୋତେ ଚଳାଇ ନେଲା, ବଞ୍ଚାଇନେଲା।

ଲୌହଭସ୍ମ ପରେ ସେହି ବିରାଟ ଗାଡ଼ରେ ମାଟି ଗୋବର ପୂରାଇ ଗୋଟାଏ ଆମ୍ବ ଗଛ ଲାଗିଲା। ଫଳ ବି ଫଳିଲା। ବୁଢ଼ା ଭାଷାରେ 'ଗୋଦାବରୀ ଆମ୍ବ'। ତିନି ଚାରି ବର୍ଷର ଗଛ। ପ୍ରଚୁର ବଡ଼ ବଡ଼ ଫଳ। ଜେଜେ କହିଲେ, 'ମୁଁ ପୋତିଛି, ବାରିପଦାରୁ ଟାକୁଆ ଆଣି।' ବାପା କହିଲେ, ସେ ପୋତିଛନ୍ତି କମ୍ମୁ ବୁଢ଼ୀ ଘରୁ ପୁଆ ଆଣି। ଭାତ ଖାଇବା ବେଳର କଳି ସରିଲା ରାତି ବେଳକୁ। ନିଷ୍ପତ୍ତି ହେଲା, ସଡ଼କ ଧାର ପଡ଼ିଆର 'ବେଲୁର' ଗଛଟି ଜେଜେଙ୍କର, ଭସ୍ମକୁଣ୍ଡ ଗଛ ନନାର, ଦେଶୀ କାଳୀ ଗଛଟି (ଘର

ଡ଼ିହଗ) ବାପାଙ୍କର। ଏଇଟି ମାଆର ନିଷ୍ପତ୍ତି। ସମସ୍ତେ ମାନିଗଲେ। ସମସ୍ତେ ଖୁସି। ବହୁକୁଟୁମ୍ବୀ ଘରେ ଆମେ ଖୁବ୍ ଗରିବ ଥିବାରୁ ଧାନ ଚାଉଳ ବିକି ଚଉକିଦାର ହରେକୃଷ୍ଣ ମଣ୍ଡଳ ଘରୁ ଦୁଇ ଅଣାରେ ତୋଟାପଲ୍ଲୀ ଆମ୍ବ ଗୋଟିଏ ଆଣୁ, କେବଳ ମାଆ ତାକୁ ଚଉଦ ଭାଗ କରିପାରେ। ନିଜପାଇଁ ଟାକୁଆରୁ ଛେଲି ପତର ରଖିଥାଏ। ତାକୁ ବି ମୋର ଆଖିର ଲୋଭ ଦେଖି ମୋ ପାଟିରେ ପକାଇଦିଏ, "ତୁ ଖାଆ, ମୁଁ ଆଉ ଥରକୁ ଖାଇବି" କହି।

ବାଘମୁଣ୍ଡି ବୁଢ଼ା ଏଯାକେ ଗୁମ୍ଫାରେ ବୋଧହୁଏ ରହିଥିଲା। ପୋଥିପତ୍ର ଲେଖାଲେଖି କଲାରୁ ଠାକୁରଘର ବା ଭାଗବତ ଘର କଥା ମନେପଡ଼ିଲା। ଘର ତୋଳାହେବ। ଦିନବେଳେ ଫୁରୁସତ କାହାକୁ ନାହିଁ। ପୁଅ ପୋଥିଲେଖାରେ ବ୍ୟସ୍ତ। ଅପର ପ୍ରାଇମେରୀ ସ୍କୁଲରେ ସେ ପଢ଼ିଥିଲେ। କେକେ ତାଙ୍କୁ ଅକ୍ଷର ଲେଖା ଶିଖାଇଥିଲେ ନିର୍ଦ୍ଦୟ ହୋଇ। ଆଙ୍ଗୁଠିଗୁଡ଼ାକୁ ଛେଚାଯାଏ, ଅକ୍ଷର ଗୋଲ ନହେଲେ। ବୁଢ଼ା ମନେମନେ ପୁଅକୁ ପୋଥିଲେଖାରେ ଲଗାଇବ ଠିକ୍ କରି ଏ ବ୍ୟବସ୍ଥା କରିଥିଲା। ବାପା ଉପଯୁକ୍ତ କିସମର ତାଳପତ୍ର ସଂଗ୍ରହ କରନ୍ତି, ଶୁଖାନ୍ତି, ଚାପାଦେଇ ରଖନ୍ତି, କାଟି ସାଇଜ କରନ୍ତି, କଣା କରନ୍ତି, ଡୋର ଲଗାନ୍ତି, ନଡିଆ ଖୋଳ ପୋଡ଼ି ଅଙ୍ଗାର ପାଣିରେ ପତର ପୋଛିପାଛି ସଫା କରନ୍ତି। ଖୋଳ ଲେଖା ସରିଲେ କାଠପଟା ଦି'ଖଣ୍ଡିରେ ଡୋର ବାନ୍ଧି ରଖନ୍ତି। ବାକି ସମୟ କର୍ମକାଣ୍ଡ, ଠାକୁର ପୂଜା ପଦ୍ଧତି ମୁଖସ୍ଥ କରନ୍ତି। ଧାର କରଜ ଆଣି ମାଣେ ଅଧେ କମି ଚାଷର ବ୍ୟବସ୍ଥା କରନ୍ତି। ବୁଢ଼ା ତେଣେ ସ୍ନାନ ସାରି ତିଳକଚିତା ହୋଇ, ତମ୍ବା ତୁଳସୀ, ଚରଣୋଦକ ଧରି ବାହାରି ଯାନ୍ତି। ଧାନ, ଚାଉଳ, ଚୁଡ଼ା, ଦକ୍ଷିଣା ରୂପେ କାଉଁଳିରେ ବାନ୍ଧି ସଞ୍ଜକୁ ଫେରନ୍ତି। ସେତେବେଳେ ଭୂଯାଁ ବାଥୁଡ଼ି ହାତରୁ ମୁଢ଼ି ଖାଇବା ମନା। ପାଣି ପିଇବା କଥା ଛାଡ଼।

ରାତିରେ ନୂଆଘର କାଛ ଦିଆଯାଏ ଜହ୍ନ ଆଲୁଅରେ। କୂଅରୁ ପାଣି କାଢ଼ି ମାଟି ଭିଜା ହୁଏ। ପଖାଳ ଖାଇସାରି କେକେ, ଜିଜି, ବାପା ମାଟି ଚକଟି ପେଣ୍ଡୁ କରନ୍ତି। କାଛ ଉଠିଗଲେ କାଦୁଅ ବଲକୁ ବାପା ଉପରକୁ ଫୋପାଡ଼ନ୍ତି। ବୁଢ଼ା ଲୁହା ତରବାରୀରେ କାଛ କାଟେ। ଜିଜି କାଛ ଶୁଖିଗଲେ ଲିପାପୋଛା କରେ। ରୋଗୀମାନେ ପାଞ୍ଚବିଡ଼ା ଦଶବିଡ଼ା ଛାଉଁଣିପାଇଁ ନଡ଼ା ଦିଅନ୍ତି, ବୈଦ୍ୟରାଜଙ୍କୁ। ବଣ ବାଟଦେଇ ଆସିଲା ବେଳେ ସେମାନେ ଦରକାର ମୁତାବକ କାଠ ମଧ୍ୟ ଆଣି ଦିଅନ୍ତି। ଲାଖରାଜ ଜଙ୍ଗଲ। ନିଜ କାଠ। ବାପା ତ ନିଜେ ମିସ୍ତ୍ରୀ। ଝାଲେ ଡ଼ିଜାଇନବାଲା କାଉଁଳି କବାଟ ଦିନରାତି ଲାଗି କରିଦେଲେ। ଶାଳ ପିଆଶାଳ କେନ୍ଦୁ ବା ଶିଶୁକାଠ ହେଲେ ଧଳା, ନାଲି କଳା ରଙ୍ଗ ମିଳିଗଲା। ବାପାଙ୍କ ଆଖିରେ ପରଳ ପଡ଼ିଗଲା। ଅଗ୍ନିବାରଣ ହେଲା। ଝରକା ନାହିଁ, କାଛରେ

ଗୋଟା ଗୋଟା ଠଣା । କବାଟ ବନ୍ଦ ହେଲେ ଅନ୍ଧକୂପ । ଗୋଟାଏ ନୁହେଁ ଯୋଡ଼ାଏ ଢ଼ାବୁଆ ଘର । ମାଟିର ଅଭାବ ନାହିଁ; ଶ୍ରମର ଅଭାବ ନାହିଁ । ଏବେ କାନ୍ଥ ଭଙ୍ଗା ହେଲାରୁ ଦେଖିଲୁଁ ବଜ୍ର ପରି କାନ୍ଥ ଠିଆ ହୋଇଛି, ପାଣି-ପବନ ଖରା-ବର୍ଷା ସହି ପଚାଶ ସତୁରି ବର୍ଷ । ମାଟି ମାଡ଼ିବା, ରେଜା କାମ ଜେଜେମାଆର; ସୁପରଭାଇଜର ଜେଜେ ଖୋଦ, ବାପା ଆର୍କିଟେକ୍ଟ, ଇଞ୍ଜିନିୟର ଓ ଡିଜାଇନର । ଯେତେବେଳେ ବାପା କାଦୁଅ ସରପଟ ହୋଇ ପେଣ୍ଡୁ ଫୋପାଡ଼ନ୍ତି, ଜେଜେ ଉପରେ କାନ୍ଥ ଉପରୁ ସେସବୁ ଧରି ନିଅନ୍ତି- ସେତୁବନ୍ଧର ହନୁ ନଳ ଉପାଖ୍ୟାନ ମନେପଡ଼େ ।

ବାଡ଼ିରେ ଛୋଟ ଛୋଟ ଯୋଡ଼ିଏ ଶାଗତଳା । ଗୋଟିଏ ବାରମାସୀ ସଜନା ଛୁଇଁଗଛ, ଗୁହାଳ ପଛକୁ ବଗିଚା । ମୁଣ୍ଡିକାଟି ସଜନା, କିଛି ଆତବୁଦା, ଗୋଟାଏ ବାଇ ବେଲଗଛ (ପତ୍ରପାଇଁ) । ବାରମାସୀ ଛୁଇଁ ଗଛଟି ଏବେ ବି ଅଛି । ଯେତେଥର କଟା ହେଲେ ବି ପୁଣି ଗଜାଏ । ପୁତ୍ରବଧୂ ଆସିବାପାଇଁ ଘର ପ୍ରସ୍ତୁତ । ବୁଢ଼ାବୁଢ଼ୀ ତତ୍ପର । ଦୁଇଦିନ ହେଲା ହଳଦିଆ ପତ୍ର ସମୁଧି ଘରୁ ଆସିଛି । ଫଗୁଣକୁ ବହୂଅଣା ବା ବନ୍ଧାପନା ବା 'ପୁନର୍ବିବାହ' ଦିନ ଧାର୍ଯ୍ୟ ।

ବହୁ ଆକାଙ୍କ୍ଷିତ ଠାକୁରଘର ହେଲା । ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ତିନିଠାକୁର ରୀତିରେ ବାଁ ପାଖରେ ଭାଗବତ ଗାଦି, ମଝିରେ ଖଟୁଲିରେ ଆଣ୍ଠୁଆଗୋପାଳ, ରାଧାକୃଷ୍ଣ ପିତଳ ମୂର୍ତ୍ତିମାନଙ୍କ ସହିତ ରଘୁନାଥ, ମହାଦେବ ଆଦି ଗୋମତୀ ନଈରେ ପୋକ କାଟିଥିବା ପଥର ମୂର୍ତ୍ତିମାନ, ତାପରେ ମହାଭାରତ ଗାଦି । ରାମାୟଣ ଲେଖା ଚାଲିଛି । ସଞ୍ଜରେ ଧୂପଦୀପ ଦିଆଯାଏ । ଶଙ୍ଖ ବାଜେ । ଅଗରା ତେଲରେ ପିଲିସଜ ଭରି ଦିଆଯାଏ । "ଦୀପ ଲଗାଇ ଦିଅ, ଦୁଇପଲ ଗାଇ ଦିଅ ।" ରାଜାଲୋକା ଗାଁରେ ଆମରି କୁଟୁମ୍ବ ପାଞ୍ଚଘର ଅଛନ୍ତି । ଛୁତିକା ମୃତିକା ଖବର ମିଳିଲେ ଅନ୍ୟ କାହାକୁ ଡକାଯାଏ । "ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ, ପଦ୍ମ ଗଳିତ ମକରନ୍ଦ, ସେ ମକରନ୍ଦ ପାନ କରି, ଆନନ୍ଦେ ବୋଲ ହରି ହରି ।" ତା'ପରେ ଭୋଗ । ତିନିଟା ପିତଳ ଥାଳିଆରେ ଟୋପାଏ ଲେଖାଏଁ ଗୁଡ଼, ନ ହେଲେ ଦି'ଚାରିଟା ଚୁଡ଼ା । ଆମପାଇଁ ସେତିକି ଢ଼େର ।

ଏଇ ପୋଥି ସଂକ୍ରାନ୍ତ ଆଉ ଦିନକର କଥା । ନୂଆ ଘର ତିଆରି ହେଉଁ ହେଉଁ ଗୋଟାଏ ମେଲା ବାହାରି ପଡ଼ିଲା, ଯହିଁରେ ପରବର୍ତ୍ତୀ କାଳକୁ ଜେଜେ ଖଟ ପକାଇ ଧୁନି ଦିବାରାତ୍ର ଜାଳି ଶୋଇଲେ, ଉଠାବସା କଲେ । ଆପେ ଆପେ ଘର ଆଲ୍କାତରା ରଙ୍ଗ ନେଲା । ଖରାଦିନ ଦି'ପହର ବେଳେ ଗାଁଯାକର ବୟସ୍କା, ବିଧବା ଆସନ୍ତି ପୋଥି ଶୁଣିବା ପାଇଁ । କେବେ ରାମାୟଣ, କେବେ ଭାଗବତ, କେବେ ମହାଭାରତ ଗାଦି ବସେ । ପୋଥି

ବଢ଼ିଲେ ପିଠାପଣା ହୁଏ ଏବଂ ଶ୍ରୋତାମାନେ ଭୋଗ ଖାଆନ୍ତି। ଏଇଟି ଗାଁର ଘରୁଆ ଭାଗବତ ଟୁଙ୍ଗି। ଏଠାକୁ ଆସୁଥିବା ସବୁଦିନିଆଁ ଶ୍ରୋତା ହେଲେ ଉରବୁଢ଼ୀ (ଆଜନ୍ମ ବିଧବା, ଏକେଲା ଥା'ନ୍ତି, ଟୁଙ୍ଗିରେ ପିଠାପଣାରେ ସାହାଯ୍ୟ କରନ୍ତି, ପିଲାପିଲି ଜନ୍ମ କରାଇବାରେ, ଦୁଇହାତ ପାପୁଲିରେ ଫରସେପ୍ ଡେଲିଭାରିରେ ସିଦ୍ଧହସ୍ତ, ଦିହରୁ ରସୁଣ ଓ ଅଳୁଡ଼ିଶାଳର ଗନ୍ଧ ବାହାରେ ପାଖ ଦେଇ ଚାଲିଗଲେ), ଗଦା ଷଡ଼ଙ୍ଗୀର ମାଆ, (ଯା'ଙ୍କୁ ପେଡ୍ରିୟାଟ୍ରିକ୍ସ ଆସେ), ତାଙ୍କ ଶାଶୂ (ପିହୁଳା ସ୍ପେଶାଲିଷ୍ଟ), ନାନା ମାଆ (ତାଙ୍କ ସ୍ୱାମୀ ନାରଣ ମିଶ୍ରେ ଧନୀ, ସର୍ଦ୍ଦାର ଥିଲେ), ବାଘମୁଣ୍ଡି ବୁଢ଼ାର ଗାର୍ଲ ଫ୍ରେଣ୍ଡ ଏବଂ ତାଙ୍କର ଦୁଇ ବିଧବା ଝିଅ ଓ ଅନ୍ୟମାନେ।



## ॥ ଚାରି ॥

ଦିନକର କଥା। ଖରାଦିନ ଦି'ପହର ଗଡ଼ି ଯାଇଥାଏ। ପବନ ଆଦୌ ନାହିଁ। ଯେତେ ପୋଛିଲେ, ସେତେ ଝାଳ। ଗୋରୁଗାଈ, ଚଢ଼େଇଚଟା ସମସ୍ତେ ଆଉଟୁପାଉଟୁ। ଗାଁ ଶୂନଶାନ, ନିରବ ଓ ନିସ୍ତବ୍ଧ। କେବଳ ଆମ ଦାଣ୍ଡଘର, ମେଲା ବା ଅତିଥି ଅଭ୍ୟାଗତ ଓ ରୋଗୀଙ୍କପାଇଁ ଉଦ୍ଦିଷ୍ଟ କୋଠରୀ କୋଳାହଳମୟ। ବୁଢ଼ାଙ୍କ ଲେଖା ପୋଥି ପଢ଼ାଯିବ। ଗାଁର ଯେତେ ବିଧବା ଓ ବୁଢ଼ାବୁଢ଼ୀ ପୁଣ୍ୟ ଅର୍ଜନପାଇଁ ଉପସ୍ଥିତ। ରାମାୟଣ ଗାଦି ବସିଚି। ଆରଣ୍ୟକାଣ୍ଡ ପର୍ଯ୍ୟନ୍ତ ଗଲାଣି। ଆଗରୁ ହରିବଂଶ ଗାଦି ବସିଥିଲେ। ଗାଁର ଜଣେ ପେସାଦାର ପାଠକ ପଢୁଥିଲେ। "ହରି ବଅଁଶ ପଢ଼ି ନଜାଣିଲେ ନିରିବଅଁଶ।" ପଢ଼ିଲାବେଳେ ହୁଡ଼ିବା କଥା ନୁହେଁ ବା ଭୁଲ ପଢ଼ିବ ଉଚିତ ନୁହେଁ। ଶ୍ରୀ ଚଣ୍ଡୀପାଠ ବିଷୟରେ ବି ଏମିତି ବିଶ୍ୱାସ, ଧାରଣା ଏବେ ବି। ଯେତେବେଳେ ସ୍ତ୍ରୀଲୋକେ ଆମ ଭାଗବତ ଟୁଙ୍ଗିରେ ଶାସ୍ତ୍ର ଶୁଣନ୍ତି, ଗାଁର ମରଦେ ଯା ତା ଥଣ୍ଡାଳିଆ ଡାବୁଆ ଘରେ ବ୍ରେ, ବିନ୍ତି, ମାଗଣ, ଛ'ଜଣିଆ ତାସ ଖେଳରେ ମାତନ୍ତି। ଖୁବ୍ ହରିହାଟ ହୁଏ।

ଜେଜେ ଅନ୍ଧାର କଣରେ ଛିଣ୍ଡା ଖଟଟିରେ ହାତକୁ ତକିଆ କରି, ସଭାପତି ପରି ଝୁଲା ପକେଇ, ଖଟରେ ପଡ଼ିଥାନ୍ତି। ପାକୁଆ ପାଟିରେ ଛେଚାପାନ ପକାଇ ପାକୁଳି କରୁଥାନ୍ତି। ଗତକାଲି ନନାର ପାଳି ଥିଲା, ତା ପୂର୍ବଦିନ ବୁଢ଼ା ନିଜେ ପଦେ ଦୁଇପଦ ଗାଇ ଆଉ କାହାକୁ ଖେଦା ଧରାଇଥିଲେ। ଆଜି ବାପାଙ୍କ ପାଳି। ଚାରିହାତ ଡ଼ୋରିଆ ଗାମୁଛା ପିନ୍ଧି, କୁଶମଣିଣାରେ ବସି, ସେ ପଢୁଥାନ୍ତି। ଦୀପ ଜଳୁଥାଏ, ମାଆ ଶଙ୍ଖ ଫୁଙ୍କେ, ଦୀଘ

ସଳିତାକୁ ମଝିରେ ମଝିରେ ଖୁଣ୍ଟେ। 'ବିପ୍ର ବଳରାମ ଦାସ' ନାଆଁ ଆସିଲେ ସମସ୍ତେ ଏକ ସ୍ୱରରେ 'ହରିବୋଲ' ଦିଅନ୍ତି, ଶଙ୍ଖ ତିନିଥର ବାଜେ। ନୂଆ ଅଧ୍ୟାୟରେ ସୂର୍ପଣଖାର ନାସାକର୍ଣ୍ଣ ଛେଦନ ହେବ। ବୁଢ଼ା ଉଠିଆସିଲେ ଆଲୁଅକୁ। ସମସ୍ତେ ବିଭୋର। ବାପାଙ୍କ ପାଖରେ ପୃଥୁନାଥ ମିଶ୍ରଙ୍କ ମାଆ ବସିଥାନ୍ତି। ତାଙ୍କୁ ଭଲ ଶୁଭେ ନାହିଁ। ହଠାତ୍ ସେ ଭୋ ଭୋ ହୋଇ କାନ୍ଦିଲେ। ବାପାଙ୍କୁ ଆଶ୍ଚର୍ଯ୍ୟ ଲାଗିଲା। ସୂର୍ପଣଖାର ନାକକାନ କଟା ହେବ। ଖୁସି ହେବାର କଥା ଶ୍ରୋତା। ଖୁଡ଼ୀ କାନ୍ଦିଲେ କାହିଁକି ? ବାପାଙ୍କ ମୁହଁରୁ ବାହାରିଲା- "ଖୁଡ଼ୀ କାନ୍ଦିଲେ ଯେ ?" ଖୁଡ଼ୀ କହିଲେ- "ବାପା, ମୋତେ କିଛି ଶୁଭେନି, ଶାସ୍ତ୍ରର ନିଆଁ ଚୁଲି କିଛି ବୁଝେନି। ଦେଖିଲି ତୁମ ବାପାଙ୍କ ଆଖିରୁ ଲୁହ ଝରୁଛି। ମୋତେ କାନ୍ଦ ମାଡ଼ିଲା, କାନ୍ଦିଲି।" ବାପା ତାଙ୍କ ବାପାଙ୍କୁ ପଚାରିଲେ- "ବାପା ! କାନ୍ଦୁଛ କାହିଁକି ?" ଗଦ୍‌ଗଦ୍ ସ୍ୱରରେ ବୁଢ଼ା କହିଲେ- "ପୋଥି ପଢ଼ା ହେଉଥିଲା ବେଳେ ମୁଁ ଭାବୁଥିଲି, କେତେ କଷ୍ଟ କରି କେତେ ଦୂରରୁ ପୋଥି ଆଣି ସେକାଳରେ ଲେଖିଥିଲି ବୋଲି ଆଜି କେତେ ଲୋକ ଆମ ଘରେ ବସି ପୋଥି ପୁରାଣ ଶୁଣୁଛନ୍ତି। ମୋତେ ଏତେ ଖୁସି ଲାଗିଲା ଯେ, ମୁଁ କାନ୍ଦ ସମ୍ଭାଳି ପାରିଲି ନାହିଁ।"

ସୂର୍ପଣଖାର ନାକକାନ ଛେଦନ ହେଲା, ଅଧ୍ୟାୟ ସରିଲା ଏବଂ ବେଳ ଗଡ଼ି ଆସିଲା। ଜଳକଷ୍ଟ ଗାଁରେ ବହୁ ଭୂଆସୁଣୀ ଗରାକଳସି ଧରି ଅଧମାଇଲିଏ ଦୂର ବେଡ଼ା ଚୁଆକୁ ସାଙ୍ଗସାଥୀ ହୋଇ ଯିବାର ବେଳ ପାଖ ହୋଇ ଆସିଲା।

ଜିଜିବାପା (ଜେଜେ)ଙ୍କ ପ୍ରଶଂସା ଗାଇବାକୁ ଏଥର ଉଠିଲେ "ନାନାମାଆ"। ଯାଙ୍କ ନାଁ "ନାନାମାଆ" କାହିଁକି ହେଲା କେହି ଜାଣନ୍ତି ନାହିଁ। ନାନାମାଆ ଆରମ୍ଭ କଲେ, "ହରିମାମୁଙ୍କୁ ଯିଏ ପିଲାଦିନେ ଦେଖିଛି, ସେ ତାଙ୍କ ଗୁଣଗ୍ରାମ ଜାଣେ। ମୁଁ ଶାଶୂଘରକୁ ଆସିଲାଦିନୁଁ ତାଙ୍କୁ ଚିହ୍ନିଛି, ଜାଣିଛି। ମାମୁଙ୍କ କି ଚେହେରା ! ଥାଳିପଟ ପରି ମୁହଁ, ମୁଣ୍ଡରେ ଜଟ। ଭାରି କଉତୁକିଆ କଥା କହନ୍ତି। ମାମୁଁ ଆମର ନାଟୁଆପିଲା ଥିଲେ। "ଝଟଝଟ ମାରେ ବିଜୁଳି" ଗୀତ ଗାଇଗାଇ ଗୁଟିପ ନାଚୁଥିଲା ବେଳେ ଗୋରୁଗାଇ ଠିଆ ହୋଇ ଯାଉଥିଲେ। 'ସୁଭଦ୍ରା ହରଣ'ରେ ସେ ସୁଭଦ୍ରା ହୋଇଥିଲେ। ଆଜି ସିନା ଦାନ୍ତ ପଡ଼ିଗଲା, ଗାଲ ପଶିଗଲା, ନହେଲେ ସେ ସାକ୍ଷାତ କନ୍ଦରପ ପରି ଦିଶୁଥିଲେ।" "ସତରେ ହରିମାମୁ କେଡ଼େ ସୁନ୍ଦର ଦିଶୁଥିଲ ହେ ! ଯାତ୍ରାରେ, ସୁଆଙ୍ଗରେ ଗଳା ତୁମର କୋକିଳ ପରି ଥିଲା। ମୋର ସବୁ ମନେପଡୁଛି।" ଜେଜେଙ୍କ ଦାନ୍ତ ପଡ଼ି ପଶିଯାଇଥିବାରୁ ଓଠ ଶୋଇଥିବା ବେଳେ ଫୁଲି ଫୁଲି ଉଠୁଥାଏ ବୋଲି କଥାଛଳରେ କେବେ ବାପା କହୁଥିବାର ଶୁଣିଛି। କମାରଶାଳର ଚୁଲି ଫେଁ... ଫ ଶବ୍ଦ କଲାପରି ତାଙ୍କ ନିଃଶ୍ୱାସ ପ୍ରଶ୍ୱାସ।

କେଳେଙ୍କ ପାଖକୁ ଘୁଞ୍ଚିଯାଇ ଭାଣିଜୀ ପଚାରିଲେ- 'ମାମୁ ତୁମେ ତ ଗୁଣୀ, ଜ୍ଞାନୀ ଲୋକ, ସବୁ ଜାଣ; କହିପାରିବ ମୋ ସାରୀଟା ମୁହଁରୁ ସବୁ କଥା ଫୁଟୁଛି- "ଖରଖର ମୁଢ଼ି ଭାଜ; ମାଆ, ଭାତ ଦେ; କିଏ ବେ ଶଳା ? ଯା ଯା ଭିକ ମିଳିବ ନାହିଁ" ସବୁ କହୁଛି, କିନ୍ତୁ ରାମନାମ କହି ପାରୁନି। କହୁଛି- ଟାମ୍ ଟାମ୍- ପାପୀଟା। କଣ କରିବି ?' ମାମୁ ପଚାରିଲେ- "ଭାଣିଜୀ, ତୁମେ କଣ ବୋଲି ତାକୁ ଶିଖାଅ ?" ଭାଣିଜୀ ଉତ୍ତରିଲେ, "ମାମୁ ତୁମେ ତ ଜାଣ ମୋର ଦେଢଶୁର, ଶଶୁର, କକାଶୁର, ମାଈଁ, ଶାଶୂ, କେତେ ନି କେତେ। ରାମ, କୃଷ୍ଣ ଯାହା ପଡେଇଲେ କାହାର ନା କାହାର ଗୁରୁଜନ ନାଆଁର ଅକ୍ଷର ପଡ଼ିଯାଏ। ଶାଶୂ, ଶଶୁର, ଦେଢ଼ଶୁର ମୁଣ୍ଡ ଦେଖିଦେଲେ ପୋଡ଼ିବ ନାହିଁ ବୋଲି ମୁଁ ସବୁବେଳେ ମୁଣ୍ଡରେ ଓଢ଼ଣା ଦେଲି; ସିମିତି ଠାକୁର ଠାକୁରାଣୀଙ୍କ ନାଆଁ ଜୀବନରେ ଧରିପାରିଲି ନାହିଁ, ଚଢ଼େଇକି ଶିଖାଇ ପାରିଲି ନାହିଁ, କଣ କରିବି ? ନାଁ ଧରିଲେ କିଭ ପୋଡ଼ିଯିବ, ଫାଟିଯିବ, କଣ କରିବି ? ମୁଁ ଆସିଲା ଦିନଠାରୁ ତାକୁ ପଢ଼ାଉଛି ସୁରଧରି 'ନଡ଼ରେ ନଙ୍ଗା (ପଡ଼ରେ ଗଙ୍ଗା) ନଇକୁଣ୍ଠନାସୀ (ବୈକୁଣ୍ଠବାସୀ) ନାହା ବହେତ ନଙ୍ଗା (ଯାହା ବହେତ୍ ଗଙ୍ଗା) ତାହା ନାପନାଶୀ (ପାପନାଶୀ); ନଡ଼ରେ ନଙ୍ଗା ନୃଷ୍ଣ ନୃଷ୍ଣ ଟାମ୍ ଟାମ୍।' ମାମୁ, ମୋତେ ନରକ କୁଣ୍ଡ, ଶିମୂଳି କଣ୍ଟାରୁ ଉଦ୍ଧାର କର।" ମାମୁ କହିଲେ- "ଭାଣିଜୀ, ଦୋଅକ୍ଷରୀ, ଲମ୍ବାକଥା ଛାଡ଼ି ଏକାକ୍ଷରୀ ମନ୍ତ୍ର ଶିଖାଅ କ, ଅ, ଟ ଏକାଦିନକେ ଶିଖିଯିବ।"

ଏଇ ପୋଥି ସଂକ୍ରାନ୍ତ ଆଉ ଦିନକର କଥା। ବୁଢ଼ା ମରିବାକୁ ଆଉ କେତେ ବର୍ଷ ଥାଏ, ପାଞ୍ଚ କି ଛଅବର୍ଷ। ମୁଁ ସ୍କୁଲର ଶେଷ ବର୍ଷରେ ବା କଲେଜର ପ୍ରଥମ ବର୍ଷରେ ପଢୁଥାଏଁ। ଭାତ ଖାଇସାରି ଶୀତଦିନିଆ ଉଚ୍ଚ ପିଣ୍ଡାରେ ବସି ସୂର୍ଯ୍ୟ-କିରଣ ଉପଭୋଗ କରୁଥାଏଁ। ବାପା ତାଳପତ୍ର ପୋଥିସବୁ ଖରାରେ ଖଟ ଖଣ୍ଡିକରେ ଥୋଇ ପୋଛାପୋଛି କରି ହେପାଜତ କରୁଥାନ୍ତି। ନନା ଖଟ ଖଣ୍ଡିକରେ ଶୋଇ 'ବାରୁଣୀ' ପତ୍ରିକାର ପୁରୁଣା ସଂଖ୍ୟା ପଢୁଥାଏ। କେଳେବାପା ସାହିତ୍ୟିକ ପରିବାରର। ଏସବୁ କାମ ତଦାରଖ କରୁଥାଆନ୍ତି। ମୁଁ ମଶିଣାରେ ବସି ବହି ଓଲଟ ପାଲଟ କରୁଥାଏଁ। ବୁଢ଼ା ବାପାଙ୍କୁ ପଚାରିଲା- "ଭୋଳାରେ ! ତୋର ଏ ପୁଅ କି ପାଠ ପଢୁଚି ? ମୁଁ ତ କିଛି ଜାଣିପାରିଲି ନାହିଁ। ଯେତେବେଳେ ଦେଖିବ, ବହି ମେଲାକରି ବସିଛି, ଇଁ ନାହିଁ କି ଚୁଁ ନାହିଁ, ପଠାଣିଆ ନୁଙ୍ଗି ପିନ୍ଧିଛି, ପରଜାପତିଆ ନିଶ ସାଙ୍ଗକୁ ଗୋଛାକୁ ଗୋଛା ବିଡ଼ି ଟାଣି ଚାଲିଛି। କଥାରେ ଅଛି, କାକରାବୀ, ବକଧ୍ୟାୟୀ, ଘୋଷବନ୍ତ ବଳବନ୍ତ। ୟାର ମୁହଁରୁ ଭାଷା ଫୁଟିବାର ମୁଁ ଶୁଣିନାହିଁ। କି ପାଠ ପଢୁଛି ? ତୁ ଭଲା ଜାଣୁ ସେ ଇନ୍ଦ୍ରାଜିଥ ପାଠ କିମିତି ?" ବାପା କହିଲେ- "ମୁଁ ଇଂରାଜୀ ପଢ଼ିଛି ଯେ କହିବି। ତାରି ପାଖରୁ ଅକ୍ଷର ଶିଖି ଏବେ ଇଂରାଜୀ ଦସ୍ତଖତ୍ ଜାଣିଛି।"

ବୁଢ଼ାର କଣ ଖିଆଲ ପଶିଲା, ଶୁଖୁଥିବା ପୋଥିରୁ ଗୋଟାଏ ଆଣି ଡ଼ୋର ଫିଟାଇ ଖେଦାଏ ମୋ ଆଡ଼କୁ ବଢ଼ାଇ ଦେଇ କହିଲା- "ପଢ଼୍ ତ ଦେଖେଁ, କି ପାଠ ପଢୁଛୁ ଜାଣେଁ।" ଜୀବନରେ ପ୍ରଥମ ଥରପାଇଁ ଦେଖିଲି ତାଳପତ୍ରଲେଖା ଅକ୍ଷର। କେଡ଼େ ଗୋଲ, ସୁନ୍ଦର, ଧାଡ଼ି କେଡ଼େ ସଳଖ। ଓଜନିଆ ଲୁହା ଲେଖନକୁ ଧରି ତାଳପତ୍ରରେ ଅକ୍ଷର ଖୋଦେଇ ପାଇଁ କେତେ ଟାଣ ବଳୁଆ ଆଙ୍ଗୁଳିର ଦରକାର'! ଦାନ୍ତକାଠି, ମୟୂର ପରରେ କାଗଜରେ ଅକ୍ଷର ଲେଖିଛୁଁ। ଏ ପୋଥିରେ ବିଚିତ୍ର ଅକ୍ଷର। 'ଅସ୍ତି' ଲେଖା ହୋଇଛି 'ଯସ୍ତି' ରୂପରେ। ରହିରହି ପଢ଼ିଲି "ଅସ୍ତି ଗୋଦାବରୀ ତୀରେ ପାଟଳୀପୁତ୍ର ନାମ ନଗରୀ। ତତ୍ର ଚ ରାଜା ଗନ୍ଧର୍ବସେନୋ ନାମଃ।" ବୁଢ଼ା ଗଦଗଦ ହୋଇ କହିଲେ, "ହେଇ ତ ଟୋକା ସଂସ୍କାର (ସଂସ୍କୃତ)ବି ପଢ଼ିପାରୁଛି !" ସେତିକିବେଳେ ମୁଁ ମନ୍ତବ୍ୟ କଲି- "ଜେଜେ, ପାଟଳୀପୁତ୍ର ନାମ ନଗରୀ ହବନି, ନଗରମ୍ ହବ।" କଣ କହିଲୁ ? ବୋଲି ଚିତ୍କାର କରି ମୋ ହାତରୁ ପୋଥି ଖେଦା ଛିଣ୍ଡାଡ଼ି ନେଇ କହିଲେ- "ରଖ ରଖ ପୋଥି ଖେଦା, କାଲ୍‌କା ଯୋଗୀମେ ଜଟା ! ଶଳା ଇନ୍ଦ୍ରାଜିତ୍ (ଇଂରାଜୀ) ପଢୁଛି ନା ବାଳ ପଢୁଛି।"

ବାପାଙ୍କ ଆଡ଼କୁ ଚାହିଁ କହିଲେ- "ଭୋଳାରେ ! ତୁ ଆଜି କଟକ ଚାଲିଯା, ପେଡ଼ି ପେଟେରା ସବୁ ସ୍କୁଲକୁ ନେଇ ଆସିବୁ। ଇନ୍ଦ୍ରାଜିତ (ଇଂରାଜୀ) ପଢ଼ିଲେ ଧର୍ମ କର୍ମ ସଂସ୍କାର ସବୁ ଯିବ ! କହୁଛି କଣ ନା ଭୁଲ ଅଛି ହାତଲେଖା ପୋଥିରେ ! କିଭ ପଚିଯିବରେ ଟୋକା ! ମୁଁ ଆଜି କହି ଯାଉଛିରେ ଭୋଳା ! ଦେଖିବୁ ମୁଢ଼ି ମୁଠାକରେ ମୋ ଅନ୍ତେ ଏ ଶଗଡ଼େ ପୁଥି ବିକ୍ରି ହବ ! ମୁଁ ତ ଖେଦା ସଜାଡ଼ି ପାରିଲି ନାହିଁ।" ବୁଢ଼ା ସେଦିନ ଥୁରୁ ଥୁରୁ ହାତ ଆଙ୍ଗୁଳିରେ ପୋଥିକି ପୂର୍ବାବସ୍ଥାକୁ ଆଣିଲେ।

ଜେଜେଙ୍କ ପ୍ରାୟ ପଚାଶ ବର୍ଷ ତଳର ଏ ଭବିଷ୍ୟତବାଣୀ ବେପ୍ରମାଣ କରିବାକୁ ବହୁ ଚେଷ୍ଟା କରିଛି। ଏ ଭିତରେ ଆମେ ତିନି ଭାଇ ଅଲଗା ଅଲଗା ରହୁଛୁ। ସାନଭାଇ ପାଖରେ ପୋଥିଗାଦିମାନେ (ବାପା ଓ ଜେଜେ ପୋଥିମାନଙ୍କୁ ଖଟୁଲିରେ ଏମିତି ସଜାଇ ଶାଳୁକନାରେ ରଖିଥିଲେ ଯେ, ତିନି ଠାକୁର ପରି ସେମାନେ ଦିଶୁଥିଲେ) ରହୁଥିଲେ। କ୍ରମେ ତତ୍ତ୍ୱାବଧାନ ଅଭାବରେ ଏବଂ କାଳର କୁପ୍ରଭାବରେ ପତ୍ରଗୁଡ଼ିକ ନଷ୍ଟ ହୋଇ ଯାଇଥିବାର ଜଣାଗଲା। ଶାନ୍ତିନିକେତନର ପ୍ରଫେସର ବନ୍ଧୁ ଡକ୍ଟର ଖଗେଶ୍ୱର ମହାପାତ୍ରଙ୍କ ସହାୟତାରେ ନାମଜାଦା ସଂଗ୍ରହାଳୟକୁ ସେମାନଙ୍କୁ ଅନ୍ତର କରିବାର ସବୁ ପ୍ରୟାସ ବ୍ୟର୍ଥହେଲା। ଏ ଭିତରେ ଜେଜେବୋପା, ଜିଜିମାଆ ଯେଉଁ ବିରାଟ କାଛ-ଘର କରିଥିଲେ, ସେସବୁକୁ ଭାଙ୍ଗି ପୁନର୍ବିନ୍ୟାସ କରାଗଲା। ଅଗତ୍ୟା ଠାକୁର ଘରେ ଧାନଗୁଣ୍ଡ ମୂଷାମାଟିଭରା ଆଟୁ ତଳେ ଗତ କେତେ ମାସ ରହି, ସେମାନଙ୍କ ଶ୍ୱାସରୁଦ୍ଧ ହୋଇ

ଆସିଥିଲା । ଅର୍ଦ୍ଧ ଶତାବ୍ଦୀରୁ ଅଧିକକାଳ ଠାକୁର ରୂପେ ପୂଜାପାଇ, ଆମ ପରିବାରର ସୃଷ୍ଟି ସ୍ଥିତି ପ୍ରଳୟର ମୂକସାକ୍ଷୀ ହୋଇଥିବା ପୋଥିଙ୍କୁ ଦାଣ୍ଡକୁ ଆଣିବାକୁ କେହି ସାହସ କଲେନି । ଲକ୍ଷ୍ମୀପୂଜା ଦିନ ହଠାତ୍ ବଡ଼ ପୁଅ ଗାଁକୁ ଗାଡ଼ି ନେଇ ପାରାଦୀପରୁ ଆସିଲା । ଅବସର ଓ ସୁବିଧା ପାଇ ପୋଥିପତ୍ର ସବୁ ଓ ଆନୁଷଙ୍ଗିକ ଆସବାବପତ୍ର ମୋ ପାଖକୁ ବାଲେଶ୍ୱରକୁ ନେଇ ଆସିଛି, କେଉଁଠି ସୁସଂରକ୍ଷିତ କରିବାପାଇଁ। ଯେତେବେଳେ ସେମାନଙ୍କ ସହିତ ଗାଡ଼ିରେ ବସିଥିଲି, ମୋତେ ଜଣାଗଲା, ଯିମିତି କେଳେ, ବାପା, ମୁଁ ଓ ମୋ ପୁଅ, ଚାରି ପୁରୁଷ ଏକାଠି ବସିଚୁଁ ଗାଁର ପୂର୍ବସୂରୀ ଓ ସଂସ୍କୃତିକୁ ଧରି । ଏ ପୋଥି ସବୁ "precious lifeblood of a master mind", ନହେଲେ (କାରଣ କେକେ ନିଜେ ଲେଖକ) ମଧ୍ୟ ଏକଥା ମୁଁ ଅନୁଭବ କରୁଛି ଯେ "He who touches the book touches a man।" କାରଣ ବାପା ଆଉ କେଜେବାପା ଝାଳ, ନାଳ, ରକ୍ତ ଦେଇ ସେସବୁ ଉତାରିଛନ୍ତି ।

ବୁଢ଼ା ଭାରି କଉତୁକପ୍ରିୟ, ହରଷିଆ। ନିଜେ ହସନ୍ତି ନାହିଁ; ଅନ୍ୟକୁ ହସାନ୍ତି କଥାରେ କଥାରେ। ଅତି ପ୍ରିୟ ଚିଜ ଚୂନ ଓ ଦୋକତା, ଖଇନି ଶସ୍ତା ଓ ଫଳପ୍ରଦ। ଭାଣିଜୀ ନାନାମାଆଙ୍କ ସାର୍ଟିଫିକେଟ ବଳରେ ଆମେ ତାଙ୍କୁ ନାଟୁଆ, ଗାୟକ, କହିପାରୁଁ। ସେ କବି, ନାଟ୍ୟକାର ମଧ୍ୟ। ତାଙ୍କ 'ସୁଭଦ୍ରା ହରଣ ସୁଆଙ୍ଗ'- ଯହିଁରେ ସେ ନିଜେ ସୁଭଦ୍ରା ହୋଇଥିଲେ, ତା'ର ପ୍ରଥମ ଧାଡ଼ି ହେଲା "ଅଇଲେ ଦେଖ ଭୋଳା ମହେଶ।" ଶିବ ଆସରକୁ ପଶିଲା ବେଳେ ଏଇ ଗୀତଟି ଗାଇ ଗାଇ ଛଣପଟରେ ଜଟାଜୁଟ ବାନ୍ଧି ନାଚି ନାଚି ଆସନ୍ତି । ସେ କାଳର କୁଆଳିଆ ଟୋକାଏ ପଦକର ଲାଳିକା କହିଥିଲେ- 'ଅଇଲେ ଦେଖ, ଭୋଳା ବାପାଙ୍କ ଇଶ" ଏହାର ଅର୍ଥ – ଭୋଳାନାଥଙ୍କ ଇଶ ହେଲେ ନିଜେ ସୁଆଙ୍ଗ ରଚୟିତା ହରିହର, ତାଙ୍କ ଇଶ ଅର୍ଥାତ୍ ହରିହରଙ୍କ ଇଶ ହେଲେ ମହାଦେବ ଶତପଥୀ। ଅର୍ଥାତ୍ ଭୋଳାନାଥଙ୍କ ବାପାଙ୍କ ବାପା ମହାଦେବ ପ୍ରବେଶ କରୁଛନ୍ତି। ପରବର୍ତ୍ତୀ ପଂକ୍ତି ହେଲା "କର୍ପୂର ଚନ୍ଦନ ଛାଡ଼ି ଗୋଟିଯାକ ପାଉଁଶ।" ହରି ଶତପଥୀଙ୍କ ପରି ମୋ ବାପା, ଦଦେଇପୁଅ ଉମାକାନ୍ତ ନନା ସମସ୍ତେ ନାଚଗୀତ ପ୍ରିୟ। ଘରେ ଯେଉଁ 'ବୈଦେହୀଶ ବିଳାସ' ଥିଲା ତାକୁ ଜଣକ ପରେ ଜଣେ ପଢ଼ି ଛିଣ୍ଡାଇ ଦେଇଥିଲେ। ଏବେ ବି ସେ ଛିଣ୍ଡା ବହି, ଘରେ ଖୋଜିଲେ କେଉଁଠି ଥିବ।

କେକେବାପା କରିତ୍‌କର୍ମା ପୁରୁଷ। ସେ କଣ ନ ଜାଣନ୍ତି, କଣ କରି ନପାରନ୍ତି ? ସେ ଚାଲି ଚାଲି ଗୟା ଯାଇ ପିତୃପୁରୁଷଙ୍କୁ ବାଲିପିଣ୍ଡ ଦେଇଛନ୍ତି। ଅବିଶ୍ୱାସ୍ୟ ଦୁଃସାହସ କେକେଙ୍କର। ତାଙ୍କର ବା ବିପଦ କଣ ? କୌପୀନବନ୍ତଃ ଖଳୁ ଭାଗ୍ୟବନ୍ତଃ। ଲୁଟତରାଜ

ପ୍ରଶ୍ନ ନାହିଁ, ତାଙ୍କୁ ମାରି ଚୋର ଡ଼କାୟତ କିଛି ପାଇବେ ନାହିଁ। ଆକେବାକେ ଖାଦ୍ୟ ଖାଇଲେ ସିନା କଲେରା ହବ। ଗୟାରୁ ଭୁଟ କମ୍ବଳଟିଏ ଆଣିଥିଲେ। ପିଲାଦିନେ ମୁଁ ଦେଖିଛି, ବାକେ ତୁଳାରେ ତିଆରି ସେ ଡ଼ାଙ୍କିହବା ଚିଜଟି; ଗୟା ଯାତ୍ରୀମାନଙ୍କ ଦିହରେ ଏବେବି ଦେଖିବାକୁ ମିଳେ। ଗୟା ଗଲେ କଣ ଗୋଟାଏ ଫଳ ଜୀବନଯାକ ଛାଡ଼ିବାକୁ ପଡ଼େ। ଜେଜେ କୋଳି ଛାଡ଼ିଥିଲେ। କିନ୍ତୁ ଯେବେ କୋଳି ଖାଇଲେ, କହନ୍ତି- 'ମୁଁ ବରଗଛର କୋଳି (ଯାହା ଚଢ଼େଇଚଟା ଖାଆନ୍ତି) ଛାଡ଼ିଛି ସିନା, ବରକୋଳି ନୁହେଁ।' ରୁଦ୍ରାକ୍ଷମାଳଟିଏ ଆଣିଥିଲେ, ପୁଣ୍ୟ କାମରେ ତାକୁ ବେକରେ ଲମ୍ବାଇଥାନ୍ତି। ବାପା ବି କେବେ କେବେ ବ୍ୟବହାର କରୁଥିଲେ। ଜେଜେ ଚାଲି ଚାଲି ପୁରୀ ମଧ୍ୟ ଯାଇଥିଲେ ତେର ଦିନରେ। ଗୟା ଯାଇଥିଲେ ଅଠର ଦିନରେ। ଗାଁରୁ ବାରିପଦା (୧୬ ମାଇଲ) ଏକା ଦିନରେ ଯାଉଥିଲେ। ମୋର ମନେପଡୁଛି, ସନୁ ମୂଲିଆ କାନ୍ଧରେ ବସି ପିଲାଦିନେ ତାଙ୍କ ସାଙ୍ଗରେ ମାମୁଁ ଘରକୁ ଯାଇଥିଲି ଏବଂ ଘରକୁ ଫେରିବା ରାସ୍ତାରେ ଅନ୍ଧାରିଖାଇରେ ଗାଧୋଇ ଚୂଡ଼ା ଓ ପଣସ ଖାଇଥିଲି।

ମୋ ଜାଣିବାରେ ବୁଢ଼ାର ଗୋଟିଏ ଦୁର୍ବଳତା ଥିଲା। ପ୍ରତିଦିନ ଭୋର ସକାଳେ କେହି ନ ଦେଖିବା ସ୍ଥାନରେ ଗଳି କଣରେ ଦୁଇ ପାପୁଲି ଭିତରେ ପିକା ଟାଣନ୍ତି। ଗୋଟାଏ ଶୁଖିଲା ଶାଳପତ୍ରରେ ମତିହାରୀ ଦୋକତାପତ୍ର ମୋଡ଼ି ବାପା ପିକାଟାଏ କରିଦେଲେ, ସାତ ଆଠଦିନ ଯାଏ। କେହି, ଏପରି କି ତାଙ୍କ ପୁଅ ଯେ ପିକା ତିଆରି କରିଛନ୍ତି; ମୋ ମାଆ ଯେ ଶାଳପତ୍ର ଓ ଦୋକତାପତ୍ର ଦେଇଛନ୍ତି, ସେମାନେ ବି ତାଙ୍କୁ ସେହି ଅବସ୍ଥାରେ ଦେଖିବେ ନାହିଁ। ତାଙ୍କ ବ୍ରାହ୍ମଣତ୍ୱରେ ଆଞ୍ଚ ଆସିବ, ମାନ ସମ୍ମାନ ଚାଲିଯିବ। ଦିନରେ ମାତ୍ର ଥରେ ଟାଣନ୍ତି। ଅଣ୍ଡା, ଲୁଙ୍ଗି, ନିଶ, ବିଡ଼ି, ସିଗାରେଟ୍ ସେ ସହି ପାରନ୍ତି ନାହିଁ। ଜଣେ ଡ଼ୋମପିଲା ସ୍କୁଲରେ ଯଦି ପଢୁଛି ବୋଲି ଜାଣିଲେ, ସେ ଆମକୁ ଲୁଗା ବଦଳାଇବାକୁ କହନ୍ତି ସ୍କୁଲରୁ ଫେରିଲାବେଳକୁ। ବିନା ପଇସାରେ ବିତରଣ କରୁଥିବା ପାଦ୍ରିଙ୍କ ହାତର ବହି ଘରକୁ ନେଲେ ଚିରି ଫୋପାଡ଼ି ଦେବାକୁ କହନ୍ତି।

ଯାନବାହାନ କହିଲେ, ଜେଜେ ମୟୁରଭଞ୍ଜର ଲାଇଟ ରେଲୱେ ଛଡ଼ା ଆଉ କିଛି ଦେଖି ନାହାନ୍ତି। ଛଅ ମାଇଲ ବାଟ ଚାଲି ଚାଲି ଯାଇ ବୁଢ଼ାମରା ଷ୍ଟେସନରେ ରେଳ ଧରିବାପାଇଁ ଅତି ବେଶି ହେଲେ ଜୀବଦଶାରେ ଛ ସାତ ଥର ଯାଇଥିବେ। ବାରିପଦାରେ ମେଟ୍ରିକ୍ ପଢୁଥିଲା ବେଳେ ତାଙ୍କର ଫଟୋ ଉଠାଇବାର ବ୍ୟବସ୍ଥା କରିଥିଲି। "ନା, ନା, ଆମର ସେ ଫଟୋ ଉଠାଇବାର ଦରକାର ନାହିଁ। ତିନି ଟଙ୍କା ପଡ଼ିବ। ମୁଁ କେଉଁ ବଡ଼ଲୋକ ଯେ ଫଟୋ ଉଠିବ। ଶହେ ସେର ଚାଉଳ ନ କିଣି ଛବି କିଣିବି !" ସେ

ବାରିପଦା କ୍ୱଚିତ୍ ଯାଆନ୍ତି; ଫଟୋ ଉଠିବ କେମିତି ? ଥରେ ସେ ଯାଇଥିଲେ, କିନ୍ତୁ ପୋଲ ତଳ ରାସ୍ତାରେ ନଯାଇ ଉପରେ ଚାଲିଯାଇ ଜେଲଖାନା ଫାଟକ ପାଖରେ ପହୁଞ୍ଚିଲେ; ବହୁ କଷ୍ଟରେ ତାଙ୍କୁ ଖୋଜିପାଇଲୁଁ ସଂଜବେଳେ। ସେ ଦିନ ଆମେ ସମସ୍ତେ ରେଳ ଫେଲ ହେଲୁଁ; ପାଣ୍ଡଡ଼ା ଫେରି ପାରିଲୁ ନାହିଁ।

ବୁଢ଼ାଙ୍କର ମାତ୍ର ଗୋଟାଏ ଘର ଯଜମାନ। ରଥବୁଢ଼ାଙ୍କ ଘର, କେନ୍ଦୁଆରେ ଭାରି ଧନୀ। ବୁଢ଼ାକୁ ଭାରି ମାନନ୍ତି। ସଂକ୍ରାନ୍ତି ଦିନ ବୁଢ଼ା ଚାଉଳ ପଡରେପାଇଁ ଯାଆନ୍ତି ଏବଂ ଖାଇ ଶୋଇ ବେଳବୁଡ଼କୁ ଘରକୁ ଫେରନ୍ତି, ଯାଉଁଳିରେ ଚୁଡ଼ା ଚାଉଳ ବାନ୍ଧି। ତାଙ୍କୁ ଯଜମାନ ନକହି, ବନ୍ଧୁବାସଘର କହିବା ଉଚିତ। ବୁଢ଼ାଙ୍କ କୀର୍ତ୍ତି କହିଲେ- ସଡ଼କ କଡ଼ରେ ବର ଅଶ୍ୱତ୍ଥ ଚାରୋଟି ମହାବୃକ୍ଷ। ସେ ନିଜେ ରୋପଣ କରିଥିଲେ ଏବଂ ସେମାନଙ୍କୁ ବାହା ମଧ୍ୟ କରାଇଥିଲେ। ନିଜେ ପୋଖରୀ ନ ଖୋଳିଲେ ମଧ୍ୟ ରଥବୁଢ଼ାଙ୍କୁ କହି ଆମ ଗାଁରେ ବଡ଼ ପୋଖରୀଟିଏ ଖୋଳାଇଥିଲେ। ସେ ପ୍ରାୟ ଅଶୀବର୍ଷ ତଳର କଥା। ଏବେ ବି ଲୋକେ ରଥ ପୋଖରୀ ବ୍ୟବହାର କରୁଛନ୍ତି। କାରଣ, ପୋତି ହୋଇଯାଇଥିଲେ ମଧ୍ୟ ଖରାଦିନରେ ବେକେ ପାଣି ମହିଖୁଣ୍ଟ ଦୀପଦଣ୍ଡୀ ପାଖରେ ଥାଏ। ରଥବୁଢ଼ା ପୁଣ୍ୟାତ୍ମା; ବିଲରେ ବୁଲୁବୁଲୁ ସାପକଣ୍ଟ ମାଡ଼ି ଗୋଟାଏ ଗୋଡ଼ କଂଘ ପର୍ଯ୍ୟନ୍ତ ହରାଇ ଅଥର୍ବ ହୋଇ ଯାଇଥିଲେ।

ଜେଜେମାଆଙ୍କୁ ମୁଁ ଦେଖିନାହିଁ। ଜେଜେବାପା ମୁହଁରୁ ବି ମୁଁ କେବେ ତାଙ୍କ ନିନ୍ଦା ପ୍ରଶଂସା ଶୁଣିନାହିଁ। ନିଜର ସ୍ତ୍ରୀର ପ୍ରଶଂସା ଘରେ ହେଉ ବା ବାହାରେ ହେଉ, ଶାସ୍ତ୍ରନିଷିଦ୍ଧ ବୋଧହୁଏ ସେ କାଳରେ। ମୋର ଜନ୍ମ ହୋଇ ସାରିଚି ବା ହେବାକୁ ଅଛି, ଜେଜେମାଆ ଚାଲିଗଲେ। ମୋତେ ଦେଖିଛନ୍ତି କି ନାହିଁ ଜାଣେନି।

ଯାହା ତାଙ୍କ ବିଷୟରେ ଜାଣିଛି- ତାହା ବାପାଙ୍କ ମୁହଁରୁ। ସେ ଥିଲେ ସଫେଦ୍ ଗୋରୀ। ଜେଜେ ମଧ୍ୟ ଚକ୍‌ଚକ୍ ଗୋରା। ତାଙ୍କ ତଳିପେଟ ଧଳା ହଳଦିଆ ମିଶା ରଙ୍ଗର। ଦିହ ସବୁବେଳେ ଖରାତରା ସହି ଓ ପଙ୍କୁଆ ପାଣିରେ ଗାଧୋଇ କଳା ରଙ୍ଗ ନେଇଥିଲା। ମୋ ଜାଣିବାରେ ଜେଜେମାଆଙ୍କ ଦୁଇ ପୁଅ, ଦୁଇ ଝିଅ। ପ୍ରଥମ ପୁଅ କୃଷ୍ଣଚନ୍ଦ୍ରଙ୍କୁ ଜେଜେ ପୋଷ୍ୟପୁତ୍ର କରିଦେଇଥିଲେ, ଯାହା ପରବର୍ତ୍ତୀ କାଳରେ ବିଭ୍ରାଟ ସୃଷ୍ଟି କରିଥିଲା ପରିବାରରେ। ସାନପୁଅ (କୋଡ଼ପୁଛା) ମୋ ବାପା। ଝିଅକୁ ଜଗନ୍ନାଥଖୁଣ୍ଟରେ ବାହା ଦେଇଥିଲେ, ଯାହାର ନାତିମାନଙ୍କ ମଧ୍ୟରେ ନିହାରରଂଜନ ଓ ମନୋରଂଜନ ହୋତା ଆମ ଗାଁ ପାଣ୍ଡଡ଼ାର। ଜିଜିମାଆ କହିଲେ ମୋର ଯାହା ଧାରଣା, ତାହା ହେଲା

ଖୁବ୍ ଗୋରୀ ସ୍ତ୍ରୀଟିଏ, କାଠଫାଳିଆରେ କେକେ ପାଖରୁ ପିଠିରେ ମାଡ଼ ସହିପାରେ, ସମୟ ଅସମୟରେ ନାନା ଅଡୁଆ କାମ କରିପାରେ, ଛୁଆ ପାଳିପାରେ, 'ସ୍ୱାମୀ ପରମ ଦେବତା' ସିଲେଇରେ ଲେଖି କାନ୍ଥରେ ଝୁଲାଇ ନପାରିଲେ ମଧ୍ୟ, କାମରେ ସେଇଆ କରିପାରେ।

କେକେମାଆଙ୍କ ଜ୍ୱର ହେଲା। ସେତେବେଳକୁ ଆମ ଘର ଠିକ୍‌ଠାକ୍ ଅବସ୍ଥାକୁ ସେ ଆଣିଦେଇଥାଏ। ବୁଢ଼ାକୁ ସେ ଆଉ ଅଡୁଆ ହେବନାହିଁ। ଯଜନ, ଯାଜନ, ପୋଥି ଲେଖାରେ ସ୍ୱାମୀର କିଛି ଅସୁବିଧା ହବନି। ପରିଶ୍ରମୀ ସହନଶୀଳା ପୁତ୍ରବଧୂଟିଏ ଘର ସମ୍ଭାଳି ନବ।



## ।। ପାଞ୍ଚ ।।

କେକେମାଆଙ୍କ ଯେଉଁ ଜ୍ୱର ହେଲା ତାହା ମାରାତ୍ମକ। ଏବେ ଆମେ ତାକୁ ନିମୋନିଆ କହୁଛୁଁ। ବଇଦରାଜ ଜିଜିବାପାଙ୍କ ଭାଷାରେ ସାନ୍ନିପାତିକ ଜ୍ୱର। ବୈଦ୍ୟରାଜ ହୋଇ ମଧ୍ୟ ଶମନତେଜର ବଶୀଭୂତ ହେଲେ। ବୁଢ଼ୀଙ୍କ ଶେଷ ମୁହୂର୍ତ୍ତଗୁଡ଼ିକର ବର୍ଣ୍ଣନା ବାପାଙ୍କ ମୁହଁରୁ ଏହିରୂପେ ଶୁଣିଛି- ଯାହା କାନ୍ଦ କାନ୍ଦ ହୋଇ ସେ କହିଯାଉଥାନ୍ତି–

"ବାପା ଢ଼େର ଚେଷ୍ଟା ଚରିତ୍ର କଲେ ମାଆଙ୍କୁ ବଞ୍ଚାଇବାପାଇଁ। ପାଖରେ ବସି ନାଡ଼ି ଥରକୁ ଥର ଦେଖୁଥାନ୍ତି। ମୁହଁରେ ଦୁଃଖ ଓ ନୈରାଶ୍ୟର ଚିହ୍ନ। ଥରକୁ ଥର ଉଠିଯାଉଥାନ୍ତି ବିକଳ୍ପ ବ୍ୟବସ୍ଥା ଅବଲମ୍ବନ ଉଦ୍ଦେଶ୍ୟରେ। ଚରକ ଶୁଶ୍ରୁତ ପୋଥିରୁ ଆରମ୍ଭ କରି ଠୁଣଠୁଣିକିଆ ଯା'କେ, ଯେତେଯେତେ ପୋଥିଜ୍ଞାନ ଅର୍ଜିଥିଲେ ତା ସହିତ ଜଡ଼ିବୁଟି, ଗୁଣିଗାରିଡ଼ି, ଛଡ଼ାଣ, ପାଚନ, ଏପରିକି ଶେଷ ଔଷଧ ସ୍ୱର୍ଣ୍ଣଘଟିତ ମକରଧ୍ୱଜ ମାଆ ଉପରେ ଅନୁପାନ ବିଶେଷରେ ପ୍ରୟୋଗ କଲେ। ମାଆକୁ ବାପା କେଡ଼େ ଭଲପାଉଥିଲେ ଏଇ ସମୟରେ ଜାଣିଲି, ଦେଖିଲି।"

ଭିଜା ଆଖିରେ ବାପା କହିଯାଉଥାନ୍ତି- "ମା'ର ଦେହ କ୍ରମେ ଖୁବ୍ ଖରାପ ଆଡ଼କୁ ଗଲା। କୌଣସି ଔଷଧ କାମ ଦେଲାନାହିଁ। ମୁଁ ଥରକୁଥର ଠାକୁରଙ୍କୁ ନମସ୍କାର କରୁଥାଏଁ। ତ୍ରିନାଥମେଳା, ସତ୍ୟନାରାୟଣ ପୂଜା ସହଣି କରୁଥାଏଁ। ପାରେଶ୍ୱର ବାବାଙ୍କ ପାଖରେ ସହସ୍ରକୁମ୍ଭ କରିବି ବୋଲି ମନସ୍ଥ କରିଥାଏଁ। ଦିନେ ଉପରବେଳା ମାଆ ମୋତେ ପାଖକୁ ଯିବାପାଇଁ ଠାକିଲା, ପ୍ରାୟ ଫିଟୁ ନଥିବା ଗଳାରେ କହିଲା- 'ବାପା ଆଉ ବଂଚିବି ନାହିଁ, ମୋ ଦିହକୁ କିଏ କଣ୍ଟାଛାଟରେ ପିଟୁଛି ଯିମିତି। ବାପାକୁ ଡ଼ାକ। ମୋତେ ବହୁତ ଖରାପ ଲାଗୁଛି। ତୋ କୋଳକୁ ନେ। ଛାତିରେ ମୁଣ୍ଡଟା ରଖ।' ମୁଁ ତାକୁ ଉଠାଇ ଆଣି

କୋଳରେ ବସାଇ ଛାତିରେ ଆଉଜାଇଲି, ମୁଣ୍ଡ ପିଠି ଆଉଁଶା ଆଉଁଶି କଲି। ଅତରଛ ହୋଇ ବାପାକୁ ଡାକିଲି। ମା'ର ଅବସ୍ଥା ଦେଖି ବାପା ଆଉ ନାଡ଼ି ବି ଦେଖିଲେ ନାହିଁ, କହିଲେ- 'ଠାକୁର ଖଟୁଲି ପାଖରୁ ଗଙ୍ଗାଜଳ ଶିଶିଟା ଆଣ।' ଭୋ ଭୋ କାନ୍ଦି ବାପା ଭଙ୍ଗା ଗଳାରେ ବର୍ଣ୍ଣନା ଶେଷକଲେ। 'ମାଆ ମୋ ଛାତିରେ ମୁଣ୍ଡ ରଖି, ବାପାଙ୍କ ହାତକୁ ମୁଣ୍ଡ ଉପରେ ରଖି ଶେଷ ନିଃଶ୍ୱାସ ଛାଡ଼ିଲା। ଗଙ୍ଗାଜଳ ଟୋପା ତଣ୍ଟି ପହୁଞ୍ଚିଛି କି ନାହିଁ ପାଟି ବନ୍ଦ ହୋଇଗଲା, ନିଃଶ୍ୱାସ ରହିଗଲା, ଆଖି ଦି'ଟା ବୁଢ଼ାଙ୍କ ପାଦ ଉପରେ।''

ଜେଜେମାଆ ଶଙ୍ଖାସିନ୍ଦୂର ପିନ୍ଧି ହଳଦୀମଖା ଦିହରେ ଅହିଅ ଡେଙ୍ଗୁରା ବଜାଇ ବାଘିଆଶୋଳ ଶ୍ମଶାନକୁ ଚାଲିଗଲେ। ତାଙ୍କ ପୁଣ୍ୟଫଳରେ ଆମ ଘରେ ବିଧବା ନାହାନ୍ତି। ସମସ୍ତେ ତାଙ୍କ ପୁଣ୍ୟଫଳରେ ସ୍ୱାମୀମାନଙ୍କୁ ଅଧା ଆୟୁଷ ଦେଇ ଚାଲିଯାଇଛନ୍ତି ସ୍ୱାମୀମାନଙ୍କ ଆଗରୁ।

ଜିଜି ଚଳିଲେ କାଳବଳେ, ଜେଜେ ରହିଲେ ମହୀତଳେ। ବର୍ଷେ ଅଧେ ନୁହେଁ ଚବିଶ ପଚିଶ ବର୍ଷ, ମୁଁ ବି.ଏ. କ୍ଲାସରେ ରେଭେନ୍‌ସା କଲେଜରେ ପଢୁଥିବାଯାକେ। ତାଙ୍କ ସାଙ୍ଗକୁ ରହିଲେ ମୋ ବାପା, ତାଙ୍କ କୋଡ଼ପୋଛା ପୁଅ ଭୋଳାନାଥ ଏବଂ ମୋ ପନ୍ଦର ଷୋଳ ବର୍ଷ ବୟସର ଆସନ୍ନ ବା ସଦ୍ୟପ୍ରସବା ମାଆ ରୁକ୍ମିଣୀ, ଯାହାର ଶଶୁରଙ୍କ ଦିଆ ଶରଧା ନାଆଁ କାନ୍ଦୁରୀ। ଆଉ ରହିଲା ଦଦେଇଙ୍କ ପୁଅ ପନ୍ଦର ଷୋଳ ବରଷର ଉମାକାନ୍ତ ନନା, ଯାହାକୁ ବୁଢ଼ା ଛେଉଣ୍ଡ ଅବସ୍ଥାରେ (ବୁଢ଼ାଙ୍କ ନିଜ ଝିଅ ଜୋଇଁର ପୋଷ୍ୟପୁତ୍ର) ବୁଢ଼ୀ ଖମାରୀକୁ ଆଣି ପରିବାରଭୁକ୍ତ କରି ମୋକଦମା, ଅଶାନ୍ତିର ମଞ୍ଜି ରୋପିଗଲେ।

ଆଉ ରହିଲେ ବୁଢ଼ାଙ୍କ ବାଲ୍ୟ ଯୌବନର ବନ୍ଧୁ, ସାଙ୍ଗସାଥି କେତେଜଣ। ସେମାନଙ୍କ ଭିତରେ ଏକନମ୍ବର ହେଲେ ଜଗନ୍ନାଥ ନନ୍ଦ। ମୋର ମନେପଡ଼େ ତାଙ୍କ ବୁଢ଼ାକାଳର ଚେହେରା। ଗୋରା ତକତକ, ଗେଡ଼ା, ଆର୍ଯ୍ୟଋଷି ପରି ଦିଶନ୍ତି ରୁଦ୍ରାକ୍ଷମାଳ ବେକରେ ପକାଇଲେ। ତାଙ୍କ ବୁଢ଼ୀ ଚମ୍ପାଗୋରୀ, ଦେବୀ ପରି ଚେହେରା, ଲାଲିଧଡ଼ିର ମଠାଶାଢ଼ୀ ପିନ୍ଧିଥିବା ଦେଖିଲେ ଭକ୍ତିଭାବର ସଞ୍ଚାର ହୁଏ, ପାଷାଣ୍ଡର ମଧ୍ୟ। ଖଣ୍ଡମଣ୍ଡଳରେ ଶହେ ବର୍ଷରେ ଏମିତି ଦମ୍ପତି ଦେଖାଯାଇନାହିଁ। ଅଗାଧ ସମ୍ପଦ ନନ୍ଦବଂଶର। ଦୁଇତିନିଟା ମରେଇ; ଶହଶହ ପାରା ଦିନରାତି "ପାକ୍‌ପାକୁମକୁମ୍, ଭଆସ ପାଚେରୀ ଦୁଁ" କହୁଥାନ୍ତି। ଦିନରାତି ଲୋକଭିଡ଼।

ଅଚଳାଚଳ ସମ୍ପତ୍ତିର ଅଧିକାରୀ ଥାଇ ଜଗନ୍ନାଥ ଅପୁତ୍ରିକ, ନିଃସନ୍ତାନ। ତେଣୁ ଧାର୍ମିକ। ପୋଥିପତ୍ର, ଧର୍ମଶାସ୍ତ୍ରରେ ବିଶ୍ୱାସ ନାହିଁ; ବିଶ୍ୱାସ ଦାନଧ୍ୟାନରେ, ଅତିଥି ସେବାରେ। ଗାଁ ମୁଣ୍ଡର ଘରପାଖର ବରଗଛକୁ ଲାଗି ତାଙ୍କ 'ବଙ୍ଗଳାଘର'। କଟକ

ଯାଜପୁର ଅଞ୍ଚଳରୁ ବନ୍ୟା ପ୍ରପୀଡ଼ିତ ଯେଉଁ ବ୍ରାହ୍ମଣ ଗୋସେଇଁମାନେ ଦିନଯାକ ଗାଁଗଣ୍ଡା ବୁଲି ଭିଖମାଗନ୍ତି, ସେମାନଙ୍କ ପାଇଁ ଏଇଟି 'ସରାଇ', ଧର୍ମଶାଳା । ଜଗନ୍ନାଥ ସେମାନଙ୍କୁ 'ସିଦା' ଦିଅନ୍ତି; ରୋଷେଇବାସେଇ ବ୍ୟବସ୍ଥା କରି ଦିଅନ୍ତି । ଶିବ ମନ୍ଦିରଟିଏ ଗାଁ ମୁଣ୍ଡରେ ଗଢ଼େଇଛନ୍ତି । ପାଖରେ ପାଣିନିଅଣ୍ଟ ଅଞ୍ଚଳପାଇଁ ସତୁରି ଅଶୀ ଫୁଟ କୂଅଟିଏ ମନ୍ଦିରକୁ ଲାଗି ଖୋଳାଇଛନ୍ତି । ଖାଇବା ପୂର୍ବରୁ କୁଆମାନଙ୍କୁ ମୁଠା ମୁଠା ଅନ୍ନ ବିତରଣ କରନ୍ତି । 'କାକବଳି' ଦିଅନ୍ତି ଘରେ ଏବଂ ପୋଖରୀ ତୁଠରେ ତର୍ପଣ ସାରି । ଯେଉଁ ତୁଠରେ ସେ ତର୍ପଣ କରନ୍ତି, ତାରି ପାଖରେ ଲମ୍ବା ତାଳ ଗଛଟାଏ । ଭୂମିଜ ସାହି ଲୋକେ କହନ୍ତି ସେଠି ଗୋଟାଏ 'ତାଳଗଛିଆ' ଭୂତ ଅଛି । ସେଇ ଭୂତଟା ନିଆଁ ଚାଲୁଣି ରୂପରେ ପୁରୁଣା ପୋଖରୀ ଶିମୁଳି ଗଛକୁ ଡ଼ିଏଁ; ସେଇଠୁ 'ବଡ଼ତଳିଆ' ପୋଖରୀର ଲାଲକଇଁ ଉପରେ 'ଛାଏଁ ଛାଏଁ' କରି ପଡ଼େ । ଉଦୁଉଦିଆ ଦି'ପହରେ ଯିଏ ତା'ହାବୁଡ଼ରେ ପଡ଼ିବ, ରକ୍ତବାନ୍ତି କରି ମରିବ । ମୋର ବୟସ ଯେତେବେଳେ ଛଅ ବରଷ, ସେତିକିବେଳେ ଏସବୁ କଥା ମାଆ ମୁହଁରୁ ଶୁଣିଥିଲି । ଜଗନ୍ନାଥଙ୍କ ସ୍ତ୍ରୀ (ନନ୍ଦବୁଢ଼ୀ) ଦିନେ ମୋତେ ତାଙ୍କ ବାଡ଼ି ଗୋଲାପ ଗଛରୁ ଟୁକୁଲିଏ କଡ଼ ଦେଇଥିଲେ, ଲଙ୍ଗଳା ହୋଇ ତାଙ୍କ ଘରକୁ ଯାଇଥିଲାବେଳେ । କାହିଁକି ସେ ବୁଢ଼ୀ ମୋତେ ଭଲପାଉଥିଲେ (ସେ କ'ଣ ଜାଣିଥିଲେ ଦିନେ ନା ଦିନେ ତାଙ୍କର ଆମର ବନ୍ଧୁତା ହେବ ?) ମୁଁ ଜାଣି ପାରୁନଥିଲି । ମୁଢ଼ି, ଗୁଡ଼, ଆରିସା ପିଠା ବି କେବେ କିମିତି ଦେଉଥିଲେ । ଧର୍ମକାର୍ଯ୍ୟ ରୂପେ ଜଗନ୍ନାଥ ଅନ୍ତତଃ ଦଶଟି ତାଳଗଛ, ଗୋଟିଏ ବଡ଼ ବେଲ, ପିତୃପୁରୁଷଙ୍କୁ ପିଣ୍ଡଦେବାପାଇଁ ଲୋଡ଼ାହେଉଥିବା ପତ୍ର ପାଇଁ ପଣସଗଛ (ଆମ ଗାଁରେ ପଣସଗଛ ଅନେକ ଦେଖି ନାହାଁନ୍ତି । ଗୁଡ଼ାଏ ଆମ୍ବଗଛ (ମହୁସୋଡ଼ି ଆମ୍ବ ଛୋଟ କିନ୍ତୁ ମହକ ଓ ସ୍ୱାଦ ଅପୂର୍ବ) ଓ ଯୋଡ଼ିଏ ବଉଳ ଗଛ ପୋତିଥିଲେ । ଅନେକ ଗଛ ମରିଗଲାଣି, କିନ୍ତୁ 'ରାଜସ୍ଥାନୀ' ବେଲଗଛରେ ଏବେ ବି ବଡ଼ ବଡ଼ ବେଲ ଫଳୁଛି ।

ଖୁବ୍ ବୁଢ଼ା ହେଲାବେଳକୁ ସେ ବାହାରକୁ ବାହାରନ୍ତି ନାହିଁ । କେବଳ ବାଡ଼ି ଖଣ୍ଡିକର ସାହାଯ୍ୟ ନେଇ ସ୍ନାନତର୍ପଣ ପାଇଁ କିଆ ପୋଖରୀ ଘାଟକୁ ଯା'ନ୍ତି । ସେଠି ବଗିଚାଟିଏ ଅଛି । କଦଳୀ, ଗୟ୍ଲକୋଳି, କମଳା, ଅଏଁଳା ଆଦି ଗଛ ଅଛି । ଯୋଡ଼ିଏ କଞ୍ଚନ ଫୁଲଗଛ (ଲାଲି ଓ ଧଳା) ମୋର ଅଦ୍ୟାପି ମନେପଡୁଛି । ଗାଁରେ ସେ ଗଛ ଆଉ ନାହିଁ, ପାଖଆଖରେ ଦେଖିନି ଗଲା ପଚାଶ ବର୍ଷ ହେଲା । ମୋତେ କଞ୍ଚନ ଫୁଲ ଭାରି ଭଲ ଲାଗେ । ପଦ୍ମଫୁଲ ପରି ମିଠା ମହକ ।

"ଜଗନ୍ନାଥ କିନ୍ତୁ ପ୍ରାଗେବ ଯୌବନ ଦଶାୟାମତି ଦୁର୍ବୃତ୍ତ" ଥିଲେ । ସେ କୁଆଡ଼େ

ବଡ଼ ଶିକାରୀ ଥିଲେ। ଜେଜେବାପାଙ୍କ ସହିତ ସଂପ୍ରୀତି ଏଇ ଶିକାର ଯୋଗୁଁ। ସେମାନେ କାଳି ବନ୍ଧୁକ ବ୍ୟବହାର କରୁଥିଲେ। ସେ ଯନ୍ତ୍ରଟି କି ପ୍ରକାର ମୁଁ ଦେଖିନାହିଁ। ନିଆଁ ଲଗାଇ ଫୁଟାଇବାକୁ ପଡ଼େ। ଥରେ ଦୁଇ ଶିକାରୀ ଫେରିବା ବାଟରେ ଭାଲୁ ହାବୁଡ଼ରେ ପଡ଼ିଗଲେ। ଭାଲୁ ଜଗନ୍ନାଥଙ୍କୁ ଛାଡ଼ି ହରିହରଙ୍କୁ ଧଇଲା। କାଳି ବନ୍ଧୁକରେ ନିଆଁ ସଂଯୋଗ କରୁଁକରୁଁ, ଭାଲୁ ଜେଜେଙ୍କ ଆଡ଼କୁ ମାଡ଼ିଆସିଲା। -ଦୁଇ ଗୋଡ଼ରେ ଛିଡ଼ାହୋଇ ଏବଂ ନଖ ଖଟ୍ ଖଟ୍ କରି। ଅଗତ୍ୟା ଜେଜେ ବନ୍ଧୁକ ଆଗକୁ ତା ମୁହଁରେ ଗୁଞ୍ଜିଦେଲେ। ଭାଲୁ ମୁହୂର୍ତ୍ତକେ ବନ୍ଧୁକନଳୀ ଦୁଇଖଣ୍ଡ କରିଦେଲା ଓ ଥୁ ଥୁ ଶବ୍ଦରେ ଫେଣ ଛେପରେ ଶିକାରୀର ଦିହମୁଣ୍ଡ ଧଳା କରିଦେଲା। ଜିଜିବାପାଙ୍କ ଭାଷାରେ "କଣ୍ଡୁ ଅଛି, କିନ୍ତୁ ଭାଲୁ ଛେପର କଣ୍ଡୁ ବିଛୁଆତିକୁ ବଳିଯିବ। ବନ୍ଧୁକ ଫିଙ୍ଗିଦେଇ ଜଗନ୍ନାଥ ଜଗନ୍ନାଥ ଚିତ୍କାର କରି ଧାଇଁଲି ଯେ ଧାଇଁଲି, ଏକା ବେଳେକେ ବିଲପୋଖରୀ ପାଣି ଭିତରେ ପଶିଗଲି। ଘଡ଼ିଏ ଦୁଇଘଡ଼ି ବୁଡ଼ିରହିବାରୁ କଣ୍ଡୁ କମିଲା। ଲଙ୍ଗଳା ବାତଳା ହୋଇ ଘରେ ପହୁଞ୍ଚିଲି। ବାବା ! ତା'ର ଛାତିର ଧଳା ଦାଗଟା ଏବେ ବି ମୁଁ ଦେଖିପାରୁଛି। ଛିଡ଼ାହେଲା ବେଳକୁ ମୁଁ ତା'ର ଛାତିଏ।"

ଜେଜେ ହରିହର ଏବଂ ଜଗନ୍ନାଥ ଶିକାରୀ ଜୀବନ ଆରମ୍ଭ କରିଥିଲେ ଘରଚଟିଆରୁ। ଶୀତଦିନ ସଞ୍ଜବେଳେ ଘରଚଟିଆମାନେ ଚାଳରେ ଗାତ କଣାକରି ରହିଥାଆନ୍ତି। ଶିକାରୀ ଚୁପ୍‌କରି ଦ୍ୱାରମୁହଁ ବନ୍ଦକରି ହାତ ପୂରାଇ ଆଣ୍ଠା ନେଇଥିବା ଚଟିଆକୁ ଧରିଆଣେ ଏବଂ ସହକାରୀ ଶିକାରୀ ହାତକୁ ବଢ଼ାଇଦିଏ। ଅଗଣାରେ ଗୋଟାଏ ଖଇଚାଲୁଣିରେ ତାକୁ ଢଙ୍କାଇଦିଏ। ସକାଳକୁ ଶିକାରୀମାନେ ଆସି ଦେଖନ୍ତି ଚଟିଆ ଗୋଟିଏ ବୋଲି ନାହିଁ। ସମସ୍ତେ ଦୋଷ ଦିଅନ୍ତି ହରିକୁ। ତା'ରି ଅଗଣାରେ, ତା'ରି ଦାୟିତ୍ୱରେ, ତା'ରି ଚାଲୁଣିରେ ଚଢ଼େଇସବୁ ଥିଲେ। ଗଲେ କୁଆଡ଼େ ? ସମସ୍ତେ କୁହନ୍ତି, ହରିଆ ରାତିରେ ପୋଡ଼ି, ଲୁଣଦେଇ ସବୁ ଚଟିଆ ଖାଇଦେଇଛି। ହରିଆ ଦରିଦ୍ରତମ ଭୋଖା ବୋଲି ଏ ଅପବାଦ ଅଠା ତା ମୁଣ୍ଡରେ ବୋଳାଯାଏ। ଏ କଥା କେହି କହିଲା ବେଳେ ଜେଜେବୁଢ଼ା ମୁରୁକି ହସେ। କାଳକ୍ରମେ ଜଗନ୍ନାଥ ହୋମ, ଯଜ୍ଞ, କୂଅ, ଦେଉଳତୋଳା, ତିଳତର୍ପଣ, ଦାନଧ୍ୟାନ ଆଡ଼କୁ ଗଲେ। ହରିହର ତାଳପତ୍ର ପୋଥି ଲେଖା ଓ ଆୟୁର୍ବେଦ, କର୍ମକାଣ୍ଡ ଯଜନଯାଜନ ଆଡ଼କୁ ଯାଇ ପରସ୍ପର ଠାରୁ ଏତେ ଦୂରେଇଗଲେ ଯେ, ଦୁହେଁ ବୁଢ଼ାକାଳରେ ଏକତ୍ର ଭେଟି କଥାବାର୍ତ୍ତା କରିବାର କେହି କ୍ୱଚିତ ଦେଖିଛି।

ଜଗନ୍ନାଥ ନନ୍ଦଙ୍କ ତଳ ଭାଇ ସୀତାନାଥ ନନ୍ଦ। ଗାଁ ମଝିରେ ଆମ ଘର ସାମନାସାମନି ତାଙ୍କ ଘର। ଦାଣ୍ଡର କୂଅ ଯାହା ଦୁଇଘର ମଝିରେ ବ୍ୟବଧାନ।

ପଥରବନ୍ଧା ଗଭୀର କୂଅଟି ସାରା ଗାଆଁକୁ ପାଣି ଯୋଗାଏ। ସୀତାନାଥଙ୍କ କୃତି ଏଇ କୂଅ; ଅନ୍ୟ ଏକ ଗାଁର କିଏ ଜଣେ ବ୍ରାହ୍ମଣଭକ୍ତ ତାଙ୍କର ପ୍ରରୋଚନାରେ ଏ କୂଅ ତଡ଼ାଇଥିଲା; ଯାହାର ଚାନ୍ଦନୀ ନାହିଁ, କି ଘେର ନାହିଁ। ବର୍ଷକରେ ଷଣ୍ଢ ଗୋଟାଏ ଯୋଡ଼ାଏ ଲଢ଼େଇ ଲାଗି ଯ୍ୟଁରି ଭିତରେ ପଡ଼ନ୍ତି। ପ୍ରାୟ ମୁମୂର୍ଷୁ ଅବସ୍ଥାରେ ସେମାନଙ୍କୁ ଦଉଡ଼ି ଏବଂ ଚଡ଼ା ସାହାଯ୍ୟରେ ଉପରକୁ ଅଣାଯାଏ। ଦାଣ୍ଡରେ ଯାତ୍ରାସୁଆଙ୍ଗ କି ପାଲାଗାଉଣ ହେଲେ, ରାତିଯାକ ଶଗଡ଼ଗାଡ଼ି ଦେଇ କୂଅକୁ ଢ଼ଙ୍କାଇ ରଖାଯାଏ।

ସୀତାନାଥ ନନ୍ଦ ଗାଁର ପଧାନ। ସମସ୍ତେ ତାଙ୍କୁ ପଧାନ ବୁଢ଼ା ଡାକନ୍ତି। ସେ ବଡ଼ଭାଇ ପରି ଧାର୍ମିକ ବା ସମାଜସେବକ ନୁହନ୍ତି। ବଡ଼ଭାଇ ନିଃସନ୍ତାନ, ସେ କିନ୍ତୁ ନିଃସନ୍ତାନ ନୁହନ୍ତି; ତାଙ୍କର ତିନିଝିଅ, ଗୋଟାଏ ପୁଅ ମଧ୍ୟ ଥିଲା, ଅକାଳରେ କୁଆଡ଼େ ମରିଗଲା। ଉଚ୍ଚ ପିଣ୍ଡାରେ କମ୍ବଳ ପାରି, ପଧାନୀ -ସିରସ୍ତା ମେଲାଇ ଯେତେବେଳେ ବସିଥାନ୍ତି, ତାଙ୍କୁ ଦେଖିଲେ ଡ଼ରମାଡ଼େ। କଷାଫଳ ହୀରାକଷ ମିଶା କାଳି ଦୁଆତରେ ସୋଲଠିପି ମରା ହୋଇଥାଏ। ପଧାନୀ କାମ ସରିଗଲେ ସେ ବଣ ଆଡ଼କୁ ଛୋଟ କୁରାଢ଼ୀ ଧରି ବାହାରି ଯାନ୍ତି ଏବଂ ଫେରିଲାବେଳେ ମୁଠାପୂରା ଶାଳଗକୁଡ଼ିଟାଏ କାନ୍ଧରେ ପକାଇ, ତାଙ୍କ ବିଲପୋଖରୀରେ ଗାଧୋଇ ଘରକୁ ଫେରନ୍ତି। ଫେରିଲାବେଳେ, ଲମ୍ବାଚଉଡ଼ା ମଣିଷଟି କପାଳରେ ଗୋଟିଏ ଆଖିଥିବା 'ଇଉଲିସିସ୍' ଗଳ୍ପର ସାଇକ୍ଲପ୍ସ୍ (cyclops) ରାକ୍ଷସ ପରି ଦିଶନ୍ତି। ଖଟା ଓ ମିଠା -ତାଙ୍କର ଉଭୟ ସମାନ ପ୍ରିୟ। ଚାଲୁଣିଏ ଗଛପାଚିଲା ଆତ ଏକା ଗ୍ରାସରେ ଶେଷ କରିଦେବେ, ନହେଲେ ପଣସର ପଥୁରିଏ ମଣ୍ଡ ସହିତ ଚୁଡ଼ା ମିଶାଇ ଖାଇଦେବେ। ଦିନେ ପଥୁରିଏ ତିନ୍ତୁଳି ମଣ୍ଡବି ଖାଇ ପଥୁରିକି କୂଅ ପାଖରେ ବସି ଧୋଉଥିବାର ମୁଁ ଦେଖିଛି। ସୀତାଶାଳି ଚାଉଳର ଦିବ୍ୟ ଅନ୍ନ ତାଙ୍କର ପ୍ରିୟ ଭୋଜନ, ମାଛ ମାଂସ ନୁହେଁ। ପଞ୍ଝୁହତା ମରଦ, ନାକ ଲମ୍ବା, କାନ ବଡ଼ ବଡ଼; ଚୂଳ ଉଠିଛି ସେଥିରେ। ଭାତ ଖାଇସାରି ସେ ତାସ ଖେଳନ୍ତି ପିଲାଙ୍କ ସାଙ୍ଗରେ। ତାଙ୍କ ବାଡ଼ିରେ ଗୋଟିଏ ଆମ୍ବଗଛ, ଯହିଁରେ ପ୍ରାୟ ବର୍ଷଯାକ ଫଳ ଝୁଲୁଥାଏ। ଖୁବ୍ ଖଟା। କେବେ ପାଚେନାହିଁ ସେ ଆମ୍ବ। ମାର୍ଗଶିର ମାସରେ ବି ଛୋଟ ଗଛଟାରେ ଝଙ୍କାଏ ଦିଝଙ୍କା ଆମ୍ବ ବାହାରିବ। ପିଲାଦିନେ ଏଇ ଆମ୍ବ ଓ ଆତ ଲୋଭରେ ତାଙ୍କ ଘରକୁ ନାନା ଆଳରେ ଯାଉଥିଲି, କାଳେ ମିଳିଯିବ। ପଧାନୁଣୀ ମୋର ସମ୍ପର୍କିତ, ରାଜାଲୋକା-ଶତପଥୀ ବଂଶର ଝିଅ। ତାଙ୍କ ତିନି ଝିଅଙ୍କ ମଧ୍ୟରୁ ସାନଟି ସହିତ ବର୍ଣ୍ଣବୋଧର 'ଭାଲୁ' ଯାକେ ପଢ଼ିଥିଲି। ପଧାନ ବୁଢ଼ା ପଧାନୀ କାମ ଜଗନ୍ନାଥଖୁଣ୍ଟିଆର କନୈକ ଟୋକାକୁ ଶିଖାଇ, ତାଙ୍କ ମଝିଆଁ ଝିଅକୁ ତାକୁ ଦେଇ, ଘରେ ରଖିଲେ। ଏଇ ଆଗନ୍ତୁକ ଟୋକାଟି ପରବର୍ତ୍ତୀ କାଳରେ ଗାଁର ମାଲିମୋକଦମା ଆଣି ଗାଁର ଶାନ୍ତି ନଷ୍ଟକଲା ବୋଲି ବିରୋଧୀ ଦଳ

କହୁଥିଲେ। ପଧାନ ବୁଢ଼ାଙ୍କ ଚାଳରେ ବଡ଼ଭାଇ ପୋଷିଥିବା ଦୁଇଟି ମୟୂର ରାତିରେ ଶୋଇଥିବାର ମୁଁ ଦେଖି ଖୁସି ହୁଏଁ। ସେମାନଙ୍କ ଛାଇ ଜହ୍ନରାତିରେ ତଳେ ପଡ଼ିଲେ ଏବଂ ବାଘ ସେଇ ଛାଇରେ ଗୋଡ଼ ମାଡ଼ିଲେ ମୟୂର କୁଆଡ଼େ ତଳେ ପଡ଼ିଯାଏ ଏବଂ ବାଘ ତା ଉପରେ ଝାମ୍ପିପଡ଼େ। ସେଥିପାଇଁ ସେମାନେ ଗଛରେ ନ ବସି ଘର ଚାଳରେ ବସନ୍ତି ବାଘ ଭୟରେ।

ସୀତାନାଥଙ୍କ ଅନୁଜ ଶଙ୍କର ନନ୍ଦଶର୍ମା, କାବ୍ୟସାଂଖ୍ୟତୀର୍ଥ, ବିରାଟ ପଣ୍ଡିତ, ମୟୂରଭଞ୍ଜର ସର୍ବଶ୍ରେଷ୍ଠ ଖ୍ୟାତନାମା ପୁରୁଷ। ସୁତରାଂ ଗାଁରେ ତିନି ବୁଢ଼ା। ନନ୍ଦ ବୁଢ଼ା, ପଧାନ ବୁଢ଼ା ଏବଂ ପଣ୍ଡିତ ବୁଢ଼ା। ପଣ୍ଡିତ ବୁଢ଼ା କାଶୀ ବା ବନାରସ, କେଉଁଠି ମହାରାଜା ଶ୍ରୀରାମଚନ୍ଦ୍ରଙ୍କ କୃପାଦୃଷ୍ଟିରେ ବୃତ୍ତିଭୋଗୀ ଛାତ୍ରରୂପେ ସାହାଯ୍ୟ ପାଇ ସାଂଖ୍ୟ ପାସ୍ କରିଥିଲେ ଏବଂ ପଣ୍ଡିତ ବୁଦ୍ଧିନାଥ କାବ୍ୟତୀର୍ଥଙ୍କ ସହିତ (ସେ ମହାରାଜାଙ୍କଠୁ ଆମ ଗାଁରେ ଶାସନ ଭାଗଟିଏ ପାଇ ନିଷ୍କର ଜମି ଉପଭୋଗ କରୁଥିଲେ) ରାଜସଭା ମଣ୍ଡନ କରୁଥିଲେ। ଅନର୍ଗଳ ସଂସ୍କୃତରେ ବକ୍ତୃତା ଦେବାର ମୁଁ ନିଜେ ଶୁଣିଛି। ସାଂଖ୍ୟଦର୍ଶନ ତାଙ୍କୁ ନିରୀଶ୍ୱର କରିଦେଇଥିଲା। ସେ କେବେ ମନ୍ଦିରକୁ ଯାଆନ୍ତି ନାହିଁ। ମନ୍ଦିର ପିଣ୍ଡାରେ ଗରମ ପାଣିରେ ଶୀତଦିନରେ ଗାଧୁଅନ୍ତି। ଜୀବନଯାକ ବାରିପଦାରେ ଅମ୍ବିକା ମନ୍ଦିର ପାଖରେ, ଟିଚର୍ସ ମେସ୍‌ରେ ବା ବୋର୍ଡ଼ିଂ ସୁପରିଟେଣ୍ଡେଣ୍ଟଙ୍କ କ୍ୱାଟର୍ସରେ ତାଙ୍କର କଟିଛି। ଖାଲି ଦେହ, ଗେଞ୍ଜି ବା ସାର୍ଟ ଘୋଡ଼ାନ୍ତି ନାହିଁ। କେବେ କେବେ ମଠାଚାଦରଟିଏ ଦିହ ଢ଼ାକେ। ବାରିପଦା ହାଇସ୍କୁଲର ହେଡ଼ପଣ୍ଡିତ ରୂପେ ସେ କାର୍ଯ୍ୟକରି ୧୯୩୨ ସାଲ ବେଳକୁ ରିଟାୟାର କରିଥିଲେ। 'ଘୃତହୀନଂ କୁଭୋଜନଂ' ନୀତି ତାଙ୍କର। ମାଛ ମାଂସ ତାଙ୍କର ପ୍ରିୟ ଖାଦ୍ୟ। ଗାଁରେ ଗ୍ରୀଷ୍ମଛୁଟିରେ ଛେଳି ହଣାହେଲେ ସେ ବଡ଼ ଡ଼େକଚି ବା ହଣ୍ଡାଟିଏ ଧରି ବସନ୍ତି। ଅତି କମ୍‌ରେ ପାଞ୍ଚ କିଲୋ ମାଂସ ନ ମିଳିଲେ ସେ ରାଗିମାଗି ଘରକୁ ଫେରି ଆସନ୍ତି। ଭୋର୍ ସକାଳୁ ଉଠି ମନ୍ଦିର ପିଣ୍ଡାରେ ବା ପଧାନଙ୍କ ପିଣ୍ଡାରେ ବସି ଚମ୍ପୂ ତାରସ୍ୱରରେ ଗାଆନ୍ତି। 'ଝଗଡ଼ି ମାତ୍ର ହେଲ ହେ ଶ୍ୟାମ', 'କି ହେଲାରେ' ଗୀତରୁ 'କ୍ଷମାନୁକମ୍ପାଧରହେ' ପର୍ଯ୍ୟନ୍ତ ଚମ୍ପୂର ସମସ୍ତ ଗୀତ ମୁଖସ୍ଥ। ନିଃଶ୍ୱାସ ବଳାଇ ପଢ଼ିଲେ, ଘରକୁ ଫେରନ୍ତି ଏବଂ ଦିନଯାକ ଥରକୁ ଥର ଭୋଜନର ବ୍ୟବସ୍ଥା କରନ୍ତି। ପୋଖରୀରେ ବଡ଼ ବଡ଼ ରୋହି ଭାକୁଡ଼, ଯାହାର ଗୋଟିକ ଓଜନ କୋଡ଼ିଏ ସେରରୁ ଊର୍ଦ୍ଧ୍ୱ।

ନନ୍ଦ ବୁଢ଼ା, ପଧାନ ବୁଢ଼ା, ପଣ୍ଡିତ ବୁଢ଼ା- ସମସ୍ତେ ଜେଜେବାପାଙ୍କଠୁଁ ସାନ, ମାତ୍ର ସେମାନଙ୍କ ଆଭିଜାତ୍ୟ ଓ ସ୍ୱାଭିମାନ ବାଘମୁଣ୍ଡି ବୁଢ଼ାର ନଥିଲା କି ସମ୍ପଦ ନଥିଲା। ବୁଢ଼ା

ସେଥିପାଇଁ ସେମାନଙ୍କଠାରୁ ନିଜକୁ ଅଲଗା ରଖି ହୀନମନ୍ୟତାର ଶିକାର ହୋଇଥିଲା । କିନ୍ତୁ ସେ ଯେ 'ବୈଦ୍ୟରାଜ' ଥିଲା ଏବଂ ନିଜକୁ ଆର୍ଯ୍ୟସଂସ୍କୃତିର ଦାୟାଦ ବୋଲି ବିବେଚନା, ଏପରିକି ଗର୍ବ କରୁଥିଲା, ଏଥିରେ ସନ୍ଦେହ ନାହିଁ ।

ସବୁବେଳେ ବାହାରେ ରହୁଥିବାରୁ, ପଣ୍ଡିତ ବୁଢ଼ାଙ୍କୁ ଗାଁରେ ଖୁବ୍ କମ୍ ଲୋକ ଦେଖିଥିଲେ, ଜାଣିଥିଲେ । ସେ କଥାବାର୍ତ୍ତା କ୍ୱଚିତ କରନ୍ତି । ମାମୁଲି କଥା ପଦେଅଧେ କେବେ କିମିତି ମୂଲିଆପାନିଆ ଶ୍ରେଣୀର ଲୋକଙ୍କ ସାଙ୍ଗରେ ହୁଅନ୍ତି– "ବିଲରେ ଖାଈ କିଏ ବସେଇଛି କିରେ ?" "ଆଜି ଖାସି କିଏ କାଟିବ ?" "ହାଟରେ ମାଂସ ମିଳେ ?" ସାକ୍ଷାତ୍ ଚାର୍ବାକ୍ ମହର୍ଷି ପରି ଦିଶନ୍ତି । ମରିଗଲେ ସବୁ ଶେଷ; ତେଣୁ ଖାଅ, ପିଅ, ଆନନ୍ଦ କର, ଗାଅ । 'ଠ ବର୍ତ୍ତୁଳ ଚନ୍ଦ୍ରାନନା' ଦିନେ ପିଣ୍ଡାରେ ବସି ଗାଉଥାନ୍ତି । ମୁଁ ବାରିପଦା ହାଇସ୍କୁଲରେ ତାଙ୍କ ପୁଅ ସହିତ ପଢୁଥାଏଁ । ପାଖକୁ ଡ଼ାକି ବକ ଯୁଧିଷ୍ଠିରକୁ ପଚାରିଲା ପରି ପଚାରିଲେ- ତୃଣରାଜ ମାନେ କ'ଣ ? ଭାବିଲି 'ତୃଣ' ମାନେ ଘାସ । ଘାସର ରଜା କିଏ ? ସଡ଼କପାଖ ବାଉଁଶବୁଦାକୁ ଦେଖି ଅନ୍ଦାଜରେ କହିଦେଲି- 'ବାଉଁଶ' । ଠିକ୍, ବହୁବର୍ଷ ପରେ, ମୁଁ ପିଲାଝିଲାର ବାପା ହେବା ପରେ, ସେଇଠି ପଣ୍ଡିତ ବୁଢ଼ା ପଚାରିଲେ "ବସନ୍ତ, ତୁମେ କେତେଥର ଜନ୍ମିଲଣି ?" ମୁଁ ଘାବଡ଼େଇ ଯାଇ ଅଡୁଆପ୍ରଶ୍ନର ଉତ୍ତର ଦେଲି 'ଥରେ' । "ଠିକ୍ ହେଲାନି । ଠକିଗଲ" କହି ବୁଝାଇଲେ- "ତୁମର ପୁଅ କେତୋଟି ଜାଣିବାକୁ ଚାହୁଁଥିଲି ।" ମୁଁ ତାଙ୍କୁ ଭାରି ସମ୍ମାନ କରୁଥିଲି । ସେ ମୋର ଶଶୁରଙ୍କ ବାପା ଏବଂ ମୁଁ ସ୍ୱେଚ୍ଛାଧୀନ ବିଷୟ ରୂପେ ସଂସ୍କୃତ ନେଇଛି ଏବଂ ତାଙ୍କ ସାନ ପୁଅ ମୋ କ୍ଲାସଫ୍ରେଣ୍ଡ । ଦୁଃଖର କଥା, ତାଙ୍କ ମୃତ୍ୟୁପାଇଁ ମୁଁ ପରୋକ୍ଷରେ ଦାୟୀ । ବଡ଼ ବଡ଼ ମାଛ ଥିବା ତାଙ୍କ ରଥପୋଖରୀରେ ବନଶୀ ପକାଉଁ ପକାଉଁ ଗୋଟାଏ ଦଶ ବାରସେରର ଭାକୁଡ଼ ଧରିଲି ଏବଂ ସିଧା ନେଇ ତାଙ୍କ ପାଖରେ ପହଞ୍ଚିଲି । ମତେ ମଝିଖଣ୍ଡଟା ଦେଇ ବାକିତକ ସେ ରଖିଲେ ଏବଂ ଚର୍ବିଳ ମାଛ ଖାଇବାରୁ ଯେଉଁ ପେଟରୋଗ ଧଇଲା, ଚାରିପାଞ୍ଚ ଦିନରେ ସେ ଜଗନ୍ନାଥ ଓ ସୀତାନାଥଙ୍କ ସହିତ ମିଳିତ ହେଲେ କିଆପୋଖରୀ ତଳ ଶଶ୍ମାନରେ ।

ନନ୍ଦବଂଶର ତ୍ରିମୂର୍ତ୍ତିଙ୍କୁ ଦରିଦ୍ର ଭିଖାରି ବାଘମୁଣ୍ଡି ବୁଢ଼ାଙ୍କ ସହିତ ଯୋଡ଼ିବାର ଯୁକ୍ତି ଓ ଯଥାର୍ଥ୍ୟ ଏହି ଯେ, କାଳ ଦିନେ ନା ଦିନେ ଏ ଦୁଇ ବଂଶକୁ ଏହା ଏକତ୍ର କରିବ ବିବାହ ସୂତ୍ରରେ, ନାତୁଣୀ ଓ ନାତି ସ୍ତରରେ ।



## ॥ ଛଅ ॥

ନନ୍ଦବଂଶର ପଣ୍ଡିତ ବୁଢ଼ାଙ୍କ ଚାଣକ୍ୟ ଦର୍ଶନ 'ଘୃତହୀନଂ କୁଭୋଜନଂ' ସହିତ ମନେପଡ଼େ ରାଧାନ୍ନାର 'ମତ୍ସ୍ୟହୀନଂ କୁଭୋଜନଂ' ନୀତି। ରାଧାନ୍ନା ବୁଢ଼ାଦଳର ନୁହେଁ, ସେ ମୋ ବାପାଙ୍କଠାରୁ ଅଳ୍ପ ସାନ। ଗାଁ ପୂର୍ବମୁଣ୍ଡରେ ତା ଘର। ରାସ୍ତାକଡ଼ରେ, ତିନିଫାଙ୍କୁଡ଼ିଆ ବିରାଟ ଅଶ୍ୱତ୍ଥ ଗଛକୁ ଲାଗି, ଯାହାର କୋଟରରେ ଭୂତପ୍ରେତ କିସମର ଗୋଟିଏ 'ଗୁଗୁଦ' ଥାଏ। ସଞ୍ଜବେଳେ ଗଛ ପାଖଦେଇ ଗଲାବେଳେ, ବିରିପିଠଉ ପରି ବାସ୍ନା ଆସେ। ରାତିଯାକ ସେ ଏଘର, ସେଘର ବୁଲେ ଏବଂ ଦହିହାଣ୍ଡିରେ ହାତ ମାରିଦେଲେ ଦହି ବସେ ନାହିଁ, ଲାଳୁଆ ହୋଇଯାଏ, ନଷ୍ଟ ହୋଇଯାଏ। ତା ମାଆ ଏସବୁ ଗାଁର ପିଲାଝିଲାଙ୍କ ଆଗରେ କହନ୍ତି।

ରାଧାନ୍ନାର ପୂରାନାଆଁ ରାଧାମୋହନ ଷଡ଼ଙ୍ଗୀ। ଡାକ ନାଆଁ ଶଙ୍ଖା। ଏ ଦୁଇ ଭାଇ ପ୍ରାୟ ନିରକ୍ଷର। ଦୁଇଭାଇଙ୍କ ମୁହଁରେ ସଦାସର୍ବଦା ଗୋଟିଏ କଥା। 'ମତ୍ସାନି ସର୍ବଭକ୍ଷାଣି'। ୟା'ର ଅର୍ଥ – ମାଛ ଖାଇଲେ ପୃଥିବୀର ସବୁ ଭଲ ଜିନିଷ ଖାଇଲୁ ବୋଲି ବୁଝିବ। ଅତଏବ ଦୁଇଭାଇଙ୍କ ମୁଣ୍ଡ ଭିତରେ ସବୁବେଳେ ମାଛ ଚିନ୍ତା। କେଉଁଠି କି ମାଛ ମିଳୁଛି, କି ଉପାୟରେ ସେ ସବୁ ମିଳିବ, କି ଯନ୍ତ୍ର ବ୍ୟବହାର କଲେ ସେ ସବୁ ଧରିହେବ, ସେ କଥାବାର୍ତ୍ତା ଛଡ଼ା ଅନ୍ୟ କିଛି ନାହିଁ। ମୋ ନନା (ଦଦେଇ ପୁଅ) କବିରାଜି ଆରମ୍ଭ କଲେ ମଧ୍ୟ ସେମାନଙ୍କ ସହିତ ମାତି ବିଭିନ୍ନ ପୋଖରୀ, ବନ୍ଧ, ଗାଡ଼ିଆ, ଭୋଳଖାଣିଆ (ଯେଉଁ ଖଣା ହରିଣୀମାନେ ମାଟି ଖାଇ କରିଛନ୍ତି), ନଇ ନାଳ କିଛି ବାଦ ଦିଅନ୍ତିନି। ପୋଳୁହ, ଝିମିରି, ଗିରା଼ଜାଲ, ମଥାଭଉଁରୀ ଜାଲ, ଫାଶିଆରୀ ଜାଲ, ବନିଶୀ, ଗେନ୍ତେଇ ଜାଲ, ଯାହା ଖୋଜିବ ତାଙ୍କ ଘରେ, ନ ହେଲେ ଆମ ଘରେ। ପିଲାଟିଦିନୁ ମୁଁ ଏମାନଙ୍କ ସଂଗରେ ମିଶି ମାଛ ଗୋଟାଇବା ଖାଳୋଇ ଦାୟିତ୍ୱରେ ରହି ମାଛୁଆ ହୋଇଗଲି। କାହିଁକି କେଜାଣି, ମୋର ମାଛ ପ୍ରତି ଏତେ ଲୋଭ (ଖାଇବା ପାଇଁ ଯେତେ ନୁହେଁ ଧରିବା ପାଇଁ) କହିପାରିବି ନାହିଁ। ରାତି, ଦିନ, ଖରା, ବର୍ଷା, ଶୀତ, ଅନ୍ଧକାର, ବଜ୍ର, ବିଦ୍ୟୁତ୍‌କୁ ଖାତିର ନକରି ମାଛ ଧରିବାକୁ ବାହାରିପଡ଼େ। ରାତିରେ ମାଛ ଧରିବା ସ୍ୱପ୍ନ ଦେଖେଁ। ଖରାରେ ଦେହ କଳା ହୋଇଯାଏ। ମୋର ମୀନରାଶି, ସେଇଥିପାଇଁ ମାଛ ସାଂଗରେ ମୋର ପଟେନାହିଁ ବୋଧହୁଏ। ଜୀବନରେ ଅଠରବର୍ଷ କାଳ ମାଛଧରାରେ କଟିଛି। କଲିକତାର ଭେରୋନା କଂପାନୀର ବନ୍‌ଶୀରେ ଅଠର ସେର ଓଜନର ଭାକୁଡ଼ କରଞ୍ଜିଆ ଖଳୁରୀ ସାଗରରୁ ଧରିଛି, ମାତ୍ର ଚାରିଟଙ୍କା ଖଜଣାଖାନରେ ପଇଠ କରି।

ରାଧାନ୍ନା ଭାରି ପୁରୋଦ୍ରଷ୍ଟା । ଦୈବାତ୍ ମାଛ କେଉଁଦିନ ନମିଳିଲେ ('ମାଛ, ମିଛ' ବୋଲି କଥା ଅଛି) ଉପରକୁ ଚାହେଁ ଏବଂ ଦେଖେ, ସେ ଟଙ୍ଗାଇଥିବା ଶହ ଶହ ଭଙ୍ଗା ବାଉଁଶିଆ, ପାଛିଆ, ଟିଣ, ଝୁଡ଼ି ଚାଳରେ ଝୁଲୁଛି । ବଣୁଆ ପାରା ବସାବାନ୍ଧି ବଂଶ ବୃଦ୍ଧି କରୁଛନ୍ତି । ପାରାଛୁଆର ମାଂସ ଓ ବାଡ଼ିର ସାରୁ ମିଶିଲେ ଅପୂର୍ବ ଝୋଳ ହୁଏ । ଘରର ମୁରବି ହିସାବରେ ସେ ଏକା ଖାଇଲେ ଅନ୍ୟମାନେ ଖାଇବା ପରି ହେଲାବୋଲି ବୁଝିବାକୁ ହେବ । ଯେଉଁ ପନ୍ଦର ଷୋଳଟା ହଂସ ପୁରୁଣା ପୋଖରୀରେ ଖେଳୁଥାନ୍ତି, ସେମାନେ ମଧ୍ୟ ରାଧାନ୍ନାର । ହଂସ ମାଉଁସ ଆଇଁଷିଆ; ଖାଇବାକୁ ଭଲ ଲାଗେ ନାହିଁ ବୋଲି ଦିନେ କେବେ ତାକୁ କହିଥିଲି । ସେ ମୋତେ ଚୂନା-ରୋଟି ଆଉ ହଂସ ମାଉଁସର ଝୋଳ ଘରକୁ ଡ଼ାକି ପେଟେ ଖାଇବାକୁ ଦେଇଥିଲା । ଭାରି ଉଦ୍ୟୋଗୀ ମଣିଷଟି । ଯେଉଁଠି ଉର୍ବର ଆବାଦଯୋଗ୍ୟ ଜମି ଟିକିଏ ପାଇଲା, ତାକୁ ସେ ନିକର କରିନେଇ ଶାଗମାକୁଡ଼ି ଲଗାଏ । ବଥୁଆ, ପାଳଂଗ, ପିଡ଼ିଂଗ, କୋଶଳା, ମେଥି ଆଦି ବିବିଧ ପ୍ରକାରର କେହି ଦେଖି ନଥିବା ଉଭିଦ ଲଗାଏ । ବିନା ଘେରରେ କିଛି କିଛି ଫସଲ ପାଏ, ବାଣ୍ଟେ ମଧ୍ୟ ପ୍ରିୟପ୍ରୀତିଙ୍କ ମଧ୍ୟରେ । କେବଳ ମହାଦେବଙ୍କ କଳାଷଣ୍ଢକୁ ଜବଦ କରିପାରିଲେ ହେଲା ।

ରାଧାନ୍ନାର ଜମିଜାଇଗା କମ୍ । ମାଣେ ଦି'ମାଣ ହେବ । ତହିଁରୁ ଯାହା ମିଳେ ବହୁକୁଟୁମ୍ବୀ ଘରକୁ ତାହା ନିଅଣ୍ଟ । ରତିଲା, ପଣ୍ଡାବିଲା, କପାଡ଼ିହା ଆଦି ଦୂର ଗାଁରେ କେତେଗୁଡ଼ିଏ ଯଜମାନ ଘର । ସଂକ୍ରାନ୍ତି, ପୂନେଇ, ଅମାବାସ୍ୟାରେ ଚିତାଚଇତନ ହୋଇ ଖୁବ୍ ପତଳା ଚାରିଅଣିଆ ଓଢ଼ଣି ପକାଇ ରାଧାନ୍ନା ସକାଳୁ ବାହାରିଯାଏ, ସଞ୍ଜକୁ ଆସେ । ବଡ଼ପେଟଟାକୁ ବୋହି ଏତେଦୂର ଯିବା ଆସିବା ତା ପକ୍ଷରେ କଷ୍ଟକର କାମ । କଣେ ମୂଲିଆକୁ ସାଙ୍ଗରେ ନିଏ ।

ଶୁଣାଣିରେ କେବେ ଦିନେ ସେ ବଳଂଗ ନଈକୂଳ ଆନ୍ଦୋଳା ବୋଲି ଗାଁରେ ମାଷ୍ଟର ଥିଲା । ମାଷ୍ଟର ହେବାର କି ଯୋଗ୍ୟତା (ଚେହେରା ଛଡ଼ା) ତାର ଥିଲା ତାହା ଶିକ୍ଷା ବିଭାଗକୁ ଜଣା । କିରଣୀ ଛଟା ଅକ୍ଷରରେ ସେ ଦସ୍ତଖତ କରେ । ଗାଁ ସ୍କୁଲରେ ନିମ୍ନ ପ୍ରାଇମେରୀ ବା ଅପର ପ୍ରାଇମେରୀ ପାସ କରିଥିବାର ପ୍ରମାଣ ନାହିଁ । କାହିଁକି କେତେ ବେତନରେ ସେ ସେଠାକୁ ଯାଇଥିଲା, ସେ କଥା ତାକୁଇ ଜଣା । ଦିନେ ସମସାମୟିକ କେତେକ ଯୁବକ ବନ୍ଧୁଙ୍କୁ ତାଙ୍କ ଇତିହାସ ଏହିମତେ ଝଂଗେଇ ଝଂଗେଇ କହିଥିଲା- ବିନା ପଇସାରେ ତିନିମାସ ରହିଲି; ମୋତେ ଚାକିରି ଭଲ ଲାଗିଲା ନାହିଁ । ଉପରିସ୍ଥ କର୍ମଚାରୀ ବି କେହି ଆସିଲେ ନାହିଁ । ଦିନେ ରେଜେଷ୍ଟ୍ରି ଖାତା ଉପରେ ଲେଖିଲି 'କେହି ନ ଆସିବାରୁ ମୁଁ ଏଇ ରେଜେଷ୍ଟ୍ରି ଖାତା ଉପରେ ଚାରଜ୍ ଦେଇ ଚାଲିଗଲି,' ଦସ୍ତଖତ କରି ଖାତା ଖଟ

ଉପରେ ରଖିଦେଇ ଚାଲି ଆସିଲି।" ଆଗାମୀ ଯୁଗର ସ୍କୁଲ ଶିକ୍ଷକଙ୍କ ହିତ ଉଦ୍ଦେଶ୍ୟରେ ସେ ପ୍ରଥମ ସହିଦ୍ କୁହାଯିବ।

ଶଙ୍କାନ୍ନା ମୋଠୁଁ ଢେର ବଡ, ତାକୁ ମୋର ମାଛୁଆ ଗୁରୁ ବୋଲି କହିବି। ତିନି ଘଣ୍ଟାରେ ଯଦି ମୁଁ ବନ୍‌ଶୀରେ ତିନୋଟି କେରାଣ୍ଡି ଧରିପାରେଁ, ସେ ମୋ ବନଶୀ ନେଇ ଘଣ୍ଟାକରେ ତିରିଶ କେରାଣ୍ଡି ଧରିଦେବ, ଅଥଚ ଭାଗ ନେବ ନାହିଁ। ମହାତ୍ମା ଲୋକ। ଗହ୍ମା ପୂନେଇଁ ଦିନ ଯେଉଁ କେତୋଟି ଶେଷ ପାଚିଲାତାଳ କିଆପୋଖରୀ ତାଳଗଛରେ ଝୁଲୁଥିଲା, ତାକୁ ଚଡିଯାଇ କାଟି ଆଣିଥିଲା ଶଙ୍କାନ୍ନା। କିନ୍ତୁ ଓହ୍ଲାଇଲାବେଳେ ଯେଉଁ ଶୁଖିଲା ବାହୁଙ୍ଗାକୁ ଆଶ୍ରା କରିଥିଲା ତାହା ଖସିଗଲା ଏବଂ ଠୁକ୍ କରି ଜଙ୍ଘହାଡଟି ଦି ଖଣ୍ଡ ହୋଇଗଲା। କରିତକର୍ମା ଶଙ୍କାନ୍ନା ଦରିଦ୍ରତମ ଅଥର୍ବ ଅବସ୍ଥାରେ ଘର ଆଗ ଖଟିଖଣ୍ଡିକରେ ଆରାମରେ ଶୋଇଥିବାବେଳେ, କାହାକୁ ଖାତିର କରେନାହିଁ। ତା ପୁଅମାନେ ଏବେ ବେଶ୍ ରୋଜଗାର କରୁଛନ୍ତି। ଚିନ୍ତା ନଥିବା ଲୋକ ସେଇ ଜଣକ।

ଦୁର୍ଘଟଣାର ପୂର୍ବକଥା। ଦିନେ ଶଙ୍କନ୍ନା ଆସି ମୋତେ କହିଲା, "ବସନ୍ତ ! ସିନ୍ଦୂରଗୌରା ପୋଖରୀରେ ବଡ଼ ବାଳିଆଟାଏ କେମିତି ରହିଯାଇଛି, ଘରୁ ଗେଣ୍ଡେଇ ଜାଲଟା ଧରି ଆ।" ଆମ ଘରେ ଜାଲ ଅଛି ମୁଁ ଜାଣେନି। ଶଙ୍କନ୍ନା କିନ୍ତୁ ଜାଣେ, ଜଗନ୍ନାଥ ଖୁଣ୍ଟାର କୈଳାସନ୍ନା ଆଣିଥିଲା ସେ ଜାଲ; ରଖିଦେଇ ଯାଇଛି, କେବେ ଆଉ ଥରେ ଆସିଲେ ନେଇଯିବ। ମୁଁ ଘରେ କାହାକୁ ନ କହି ଜାଲ ଆଣିଲି। ବେଳ ଏଗାରଟା ହେବ। ପୋଖରୀରେ ଆଣ୍ଠୁଏ ପାଣି। ମୁଁ ବି ମାଛର ଝଲକ ଦେଖି ପାରିଲି। ଜାଲ ଫିଟାଇ ଗେଣ୍ଡେଇକୁ ପୋଖରୀର ଏପାଖ ସେପାଖ ବସାଇ ଦେଲୁଁ। ମୁଁ ଗୋଟାଏ ପଟୁ ସେ ଅନ୍ୟପଟୁ ବାଡ଼ିଧରି ଏପାଖରୁ ସେପାଖ ହ୍ୟାତ୍ ହ୍ୟାତ୍ କରି ଉତ୍‌ପାତ କଲୁଁ। ଦୁଇମିନିଟ୍ ଭିତରେ ମଝିଜାଲର ସୋଲ ଦପ୍‌ଦପ୍ ହେବାକୁ ଆରମ୍ଭ କଲା, "କୁଆଡ଼େ ଯିବ ? ଲାଗିଛି। ଶଳା ଏତେଦିନ ଲୁଚିଛପି ବୁଲୁଥିଲା।" ମାଛ ଫିଟାଇବାକୁ ଦୁହେଁ ଜାଲ ମଝିରେ ପହଞ୍ଚିଲୁ। ସାରା ଜାଲ ଗୋଟାଏ ସ୍ଥାନରେ ଗୋଛାଇ ହେବାକୁ ଚାଲିଲା। "ନିଶ୍ଚେ ପୁରୁଣା ବାଳିଆ, କାଦୁଅରୁ ଆଜି ବାହାରିଛି, ପାଣି ଶୁଖିଯାଉଛି ନା !" ଶଙ୍କାନ୍ନା କହିଲା। ଜାଲ କେତେବେଳେ ବାଆଁ କେତେବେଳେ ଡାହାଣକୁ ଫିଟୁଥାଏ; ବନ୍ଦ ହେଉଁ ହେଉଁ ଅପେକ୍ଷାକୃତ ସ୍ଥିର ହେଲା। ଶଙ୍କାନ୍ନା ପ୍ରଥମେ ପାଣି ଭିତରେ ଜାଲକୁ ଅଣ୍ଡାଳି ଦୁଇ ହାତରେ ମୁଠାଇ 'ମାଛ'ର ମଝି ଗଣ୍ଡିରେ ଜାବୁଡ଼ି ଧରି କହିଲା, "ବଡ଼ ବାଳିଆଟା ! ଛିଡ଼ା ହୋଇଛୁ ଜଣ, ଆସି ତୁ ଲାଞ୍ଜପଟେ ଧର।" ମୁଁ ଗଲି ଏବଂ ବୋଲ ମାନି ଧରିଲି। ଛାତି ଧଡ଼ପଡ଼ ହେଉଥାଏ। ଧୀରେ ଧୀରେ ଶଙ୍କାନ୍ନା ମାଛକୁ ପାଣିଉପରକୁ ଯେମିତି ଟେକିଛି, ମୁଁ

ଦେଖିପାରିଲି କଳାଧଳା ପଣାପାଲିଆ ଦାଗ। ଶଙ୍କାନ୍ନା ସେହି ମୁହୂର୍ତ୍ତରେ 'ବାବାରେ' ଚିତ୍କାର କରି ଜାଲ ଫୋପାଡ଼ି ଦେଇ ହିଡ଼ଆଡ଼କୁ ଜୀବନ ବିକଳରେ ଧାଇଁଲା। ମୁଁ ବି ସେଇଆ କଲି। ଦୁହେଁ କିଂକର୍ତ୍ତବ୍ୟବିମୂଢ଼ ହୋଇ ଛିଡ଼ା ହୋଇଛୁ ଦେଖିଲୁଁ ଉଦ୍ଧାରକର୍ତ୍ତା ରାଧାନ୍ନା ଛତା ଫୁଟାଇ ଖଣ୍ଡେ ଦୂରରେ। ସେ ଆସି ପ୍ରଥମେ ଏତେ ଜୋର୍ ହସିଲା, ଯେମିତି ତାର ହାଣ୍ଡିପରି ପେଟ ନାଚିନାଚି ଫାଟିଯିବ। ସେ କହିଲା, "ମାଛ ତ ଲାଗିଛି ଜାଲରେ, ଯାଅ ଦୁହେଁ ଆଗ ଜାଲକୁ ରକ୍ଷାକର, ପରେ ମାଛ ଖାଇବ।" ନିଜେ ଆମକୁ ନେଇ ଜାଲ ମୁଣ୍ଡକୁ ଧରି ଘୋଷାରି ମାଛ ଓ ଜାଲକୁ ପୋଖରୀ ହିଡ଼କୁ ଆଣିଲା। ଜାଲରେ ଛନ୍ଦିହୋଇ 'ମାଛ' ମୋଡ଼ିମାଡ଼ି ହୋଇ ଡେଉଁଥାଏ ଏବଂ ଜାଲ ଛିଣ୍ଡାଉଥାଏ ଦାନ୍ତରେ। ପାଖରେ ଯୋଡ଼ାଏ ମୂଲିଆ କୋଦାଳ ଧରି ଛିଡ଼ାହୋଇ ଏ ସଂଗ୍ରାମ ଦେଖୁଥିଲେ। ରାଧାନ୍ନା କଥାରେ କୋଦାଳରେ ଛେଚିଦେଲେ ମୁଣ୍ଡକୁ। ଜାଲ ଖଣ୍ଡେ ବି ଉଡ଼ିଗଲା। ବାଳିଆ-ଫାଳିଆ କିଛି ନୁହେଁ, ଗୋଟାଏ ଅତିକାୟ ଧଣ୍ଡ। ବର୍ଷା ଦିନରେ ସାରା ଇଲାକାର ଛୋଟ ମାଛ ଖାଇ ଏଇ ପୋଖରୀରେ ଆଶ୍ରା ନେଇଥିଲା। ପ୍ରାୟ ଚାରି ପାଞ୍ଚ ସେର ଓଜନର 'ମାଛ' ତା' ପେଟରେ।

ଧଣ୍ଡର ପାଟି ତସର ସୂତାର ଜାଲରେ ଛନ୍ଦି ହୋଇଥିଲା। ନ ହେଲେ ଆମର ଆଙ୍ଗୁଳି ଗୋଟାଏ ଯୋଡ଼ାଏ ଛିଣ୍ଡାଇ ନେଇଯାଇଥାନ୍ତା। ରାଧାନ୍ନା କହିଲା, "ତୁମେ ଦୁଇଜଣ ଏତିକି ବୋକା ! କେମିତି ଭଲା ଭାବିଲ ଗାଡ଼ିଆର ଆଣ୍ଠୁଏ ପାଣିରେ ଏଡ଼େ ବଡ଼ ବାଳିଆ ଖେଳୁଛି ବୋଲି ! ମାଛ ହୋଇଥିଲେ ମୋ ହାବୁଡ଼ରୁ ବର୍ତ୍ତିଥାନ୍ତେ ?"

ବଡ଼ ଛୁଟିରେ ଘରକୁ ଆସିଥାଏ। ପୁରସ୍କାର ସ୍ୱରୂପ ଗୋଟିଏ ଦୁଇଶେଲିଆ ଟର୍ଚ୍ଚ ପାଇଥାଏ। ଦାମ ତିନିଟଙ୍କା ଦୁଇ ଅଣା ବେଟାରୀ ସହିତ। ଦିନେ ସଂଜବେଳରେ ରାଧାନ୍ନା ତାକୁ ଦେଖିଲା ଏବଂ କହିଲା "ବସନ୍ତ, ଆ, ହରଡ଼ ଚଢ଼େଇ (ଗ୍ରୀନ ପିଜିଅନ ବା ଶାଗୁଆ ପାରା) ଶିକାରକୁ ଯିବା।" ମୁଁ ହଁ ଭରି ଅଢ଼େଇଟଙ୍କିଆ ପୂରା ପଶମର ଲାଲିମିଲ ସ୍ୱେଟର ଘୋଡ଼ି ବାହାରି ପଡ଼ିଲି। ବଗାଳ ସାହିର ଦି'ଜଣ ଶିକାରୀ ଧନୁ ତୀର ଘେନି ସାଂଗରେ ଆସିଲେ। କିଆ ପୋଖରୀ ତଳ ଜଂଗଲର ଗୋଟିଏ ଅଶନଗଛ ମୂଳରେ ରାଧାନ୍ନାର ଆଦେଶ ମୁତାବକ ନୂଆ ବେଟାରୀ ଥିବା ଟର୍ଚ୍ଚ ପକାଇଲି, ଦେଖିଲି ଯୋଡ଼ିଏ ହରଡ଼ ଚଢ଼େଇ ପତ୍ର ସହିତ ମିଶିଯାଇ ପାଖକୁ ପାଖ ଲାଗି ବସିଛନ୍ତି। ମାହାଣା ନାମର ଟୋକା ଶର ବିନ୍ଧିଲା। ଚାରୋଟି ମୁଦ୍ରିତ ଆଖି ଫିଟିଯାଇ ଲାଲଚିଆ ଦିଶିଲା। ସାଏଁକିନା ଶର ପତ୍ରଭେଦ କରି ଶୂନ୍ୟକୁ ଚାଲିଗଲା। ପରବର୍ତ୍ତୀ ଶର କିନ୍ତୁ ଜଣକ ଛାତିରେ ବାଜିଗଲା। ଚଢ଼େଇ ଓ ଶର ଲଗାଲଗି ହୋଇ ଅଳ୍ପଦୂରରେ ପଡ଼ିଲେ। ଟର୍ଚ୍ଚ ପକାଇ ରାଧାନ୍ନା ନିଜେ ଘେନି

ଆସିଲା । ସେଦିନଠୁଁ ମୁଁ କେବେ ହରଡ଼ ମାଂସ ବା ଅନ୍ୟ ଚଢ଼େଇର ମାଂସ ଖାଇନି, କୁକୁଡ଼ା ମାଂସ ଛାଡ଼ି । ଯେଉଁ ଦୃଶ୍ୟ ସେଦିନ ଦେଖିଲି, ଆଉ କିଛି ଲାଭ ନ ହେଲେ ମଧ୍ୟ ଏତିକି ବୁଝିଲି କାହିଁକି ପୃଥିବୀର ଆଦ୍ୟ ଶ୍ଲୋକ 'ମା ନିଷାଦ' ଋଷି ମୁହଁରୁ ବାହାରିଥିଲା ।

ରାଧାନ୍ନାଙ୍କୁ କିନ୍ତୁ ଅଚିରେ ପ୍ରାୟଶ୍ଚିତ୍ତ କରିବାକୁ ପଡ଼ିଲା । ତାର ଫେରିଲା ରାସ୍ତାରେ ଚମାରଶାଳ ଜମିଆଡ଼କୁ ସେ ଯେମିତି ଟର୍ଚ୍ଚ ପକାଇଛି, ଦେଖିଲା ପାରେଶ୍ୱରଙ୍କ କଳାଷଣ୍ଢ ଅନ୍ଧାର ଶୀତରାତ୍ରିର ସୁଯୋଗ ନେଇ କେରା କେରା କ୍ଷୀର ଖାଇଥିବା ଧାନଶିଷା କଁର କଁର ଶବ୍ଦରେ ଟାଣି ବାହାର କରୁଛି । ଗୋବର ପଡ଼ିଥିବା ସ୍ଥାନରେ ଧାନ ବେଶି ବଢ଼ିଛି। ଫଳା ଧାନର ଗଛ। ଷଣ୍ଢର ଆଖି ଦେଖିଦେବା ମାତ୍ରେ ରାଗିମାଗି ରାଧାନ୍ନା ତଡ଼ାଗୋଟାକରେ ଗୋଡ଼ାଇ ଗୋଡ଼ାଇ ବାଡ଼େଇଲା ତଡ଼ା ଭାଙ୍ଗିଯିବା ଯାକେ ।

ପରଦିନ ରାତି । ଷଣ୍ଢ ପ୍ରତିଶୋଧ ନେଲା ପରି ସନ୍ଧ୍ୟାକ ଶାଗଚଳିକୁ ମାଡ଼ି, ଗୋବର ସହିତ ଏକାକାର କରିଦେଲା । ଯେକୌଣସି ଲୋକର ଛାତି ଫାଟିଯିବ ସେ ଦୃଶ୍ୟ ଦେଖିଲେ । ତହିଁ ପରଦିନ ଦିନ ଦଶଟାବେଳେ ରାଧାନ୍ନା ଶାଗତଳା ପାଖରେ ଜମା ହୋଇଥିବା ଗୋବରଗଦା ପାଖରେ ବସି ଭାବୁଥାଏ, କେମିତି ମହାଦେବଙ୍କ ଷଣ୍ଢର ମୁନିଆ ଶିଙ୍ଗ ଦୁଇଟା ଭାଙ୍ଗି ଦେବ । କିନ୍ତୁ ହଠାତ୍ ସେଇ କଳା ଷଣ୍ଢ ତା ମନକଥା ଜାଣିଲା ପରି ମାଡ଼ି ଆସିଲା ତା ଆଡ଼କୁ । ଅତର୍କ ହୋଇ ହାଣ୍ଡିପରି ତା ଦେହ ଉପରେ ଛିଡ଼ା ହୋଇ ଶିଙ୍ଗ ସାହାଯ୍ୟରେ ହିରଣ୍ୟକାଶ୍ୟପର ପେଟକୁ ବିଦାରିବା ଚେଷ୍ଟାରେ ରହିଲା । ଭାଗ୍ୟ ଭଲ ସେ ତା ନାଭିରେ ଶିଙ୍ଗ ମୁନକୁ ଲଗାଇ ପାରିଲା ନାହିଁ ଚର୍ବିଳ ତେଲିଆ ଚମଡ଼ା ଯୋଗୁଁ । ଗାଁର ଲୋକ ଦୋକାନରୁ ଫେରୁଥିଲେ । ସେମାନଙ୍କୁ ଦେଖି ଷଣ୍ଢ ଅନ୍ୟମନସ୍କ ହୋଇଗଲା । ରାଧାନ୍ନା ବଂଚିଗଲା । ମାତ୍ର ତାର ବାଁ ହାତ ପାପୁଲି ଉପରେ ଜୋର ଆଘାତ ପାଇ ସେ ପାଞ୍ଚ ଛଅମାସ ଭୋଗିଲା । ଜଡ଼ା ତେଲ ଓ ଭଜା ବାଲି ବାନ୍ଧି, ହାଡ଼ଭଙ୍ଗା ଶିକୁର ଲେପଦେଇ ମଧ୍ୟ ଭଲ ହେଲାନାହିଁ । ଅବଶେଷରେ ମୁଁ ତାକୁ ଭଲ କଲି । ଦିନେ ଖେଳଛୁଟିରେ ବୋର୍ଡ଼ିଂକୁ ଯାଇ ଦେଖିଲି ରାଧାନ୍ନା ମୋ ଖଟରେ ଶୋଇପାଇଛି । ଚେତାପାଇ ସେ କହିଲା- "ବସନ୍ତ, ହାତର ଏ ବଥାଟା ମୋର ଗଲା ନାହିଁ ।" ଆମର ତିନି ଚାରିମାସ ପୂର୍ବେ ବୋର୍ଡ଼ିଂରେ ଇଲେକ୍‌ଟ୍ରି ଆଲୁଅ ଲାଗିଥାଏ । କି ବୁଦ୍ଧି ! ଦୁର୍ବୁଦ୍ଧି ବାହାରିଲା । ମୁଁ ସୁଇଚ୍ ଫିଟାଇ ପେନ୍‌ସିଲ ମୁନ ଭିତରେ ଲଗାଇଲି । ଅନ୍ୟପାଖରେ ଖେଳ କୌତୁକରେ ରାଧାନ୍ନାକୁ ବାଆଁ ହାତ ଆଙ୍ଗୁଳି ଲଗାଇବାକୁ କହିଲି । କଣ ହେବ ନ ଜାଣି ସେ ଯେମିତି ଛୁଇଁଚି, ହାତଟା ଏତେ ଜୋର୍‌ରେ ଧକ୍‌କା ଖାଇଲା ଯେ ମୁଣ୍ଡଟା ମଶାରି ବାଡ଼ରେ ପିଟି

ହୋଇଗଲା । ଜୀବନରେ କେବେ ଆଉ ସେ ହାତର କଷ୍ଟ ବା ଯନ୍ତ୍ରଣା ଭୋଗିନାହିଁ । 'ବସନ୍ତ ଭଲ କରିଦେଲା' ବୋଲି ସେ କହିବାର ମୁଁ ଶୁଣିଛି ।

ରାଧାନ୍ନାର ସାନପୁଅ ସହିତ ମୋ ସାନ ଭଉଣୀର ବିବାହ ପ୍ରସଙ୍ଗ ଉଠାଇଥିଲି । ମାତ୍ର ବାପା ଏତେ ରକ୍ଷଣଶୀଳ ଯେ, ଆଦୌ ରାଜି ହେଲେ ନାହିଁ । "ରାଧାନ୍ନା ପଣ୍ଡାଘରୁ ଦେଉଳସାହିରୁ ବାହା ହୋଇଛି; ତେଣୁ ତଳ ସାହିଆ ହୋଇ ଯାଇଛି ।" ସେବେ 'ପଣ୍ଡା', 'ପାଣି' ଘରୁ 'ହୋତା', 'ଶତପଥୀ', 'ମିଶ୍ର', 'ଆଚାର୍ଯ୍ୟ' ବାହା ହେଉ ନଥିଲେ । ମୁଁ ଯେବେ ମୋ ଝିଅକୁ 'ପାଣି' ବଂଶରେ ବାହାଦେଲି, 'ନନ୍ଦ' ବଂଶର ମୋ ଶ୍ୱଶୁର କହିଲେ "ବସନ୍ତ, ତୁମେ ପଣ୍ଡା ପାଣିକୁ ଖସିଗଲ ।" ମୋ ଭଉଣୀକୁ ବାପା ପାତ୍ର ନପାଇ ଉଚ୍ଚଶ୍ରେଣୀ ବୋଲାଉଥିବା ଦରିଦ୍ରତମ କୃଷ୍ଣକାୟ ପାତ୍ରକୁ ସମର୍ପଣ କଲେ । ଭଉଣୀ ଅକାଳରେ ହାର୍ଟ ଏଟେକ୍‌ରେ ଦୁଃଖ ଭୋଗି ମଲା । ଏବକାର ଅସବର୍ଣ୍ଣ ବିବାହ ବାପାଙ୍କ ହାର୍ଟ ସହିପାରି ନଥାନ୍ତା ।

ଘାସିନନା, ତୁ ଭାବିଛୁ ମୁଁ ତତେ ଭୁଲି ଯାଇଛି ! ନା, ନା ! ତୁ ବି କଣ କମ୍ କରିତ୍-କର୍ମା ! ଛୁଆ ସାଂଗରେ ଛୁଆ, ପିଲା ସାଂଗରେ ପିଲା, ଡିର୍ଲା ସାଂଗରେ ଡିର୍ଲା । କେତେ ସହଜରେ ଶୀଘ୍ର ତୁ ମିଶିଯାଇପାରୁ ଲୋକଙ୍କ ସାଂଗରେ । ତୁ କେଡ଼େ ବଡ଼ ଲୋକର ପୁଅ ! 'ନାନା ମାଆ' ଯେମିତି, ତୋ ମାଆ ସିମିତି ଗାଁ ସାରାର ମାଆ । ଯାତ୍ରା, ନାଚ, ସୁଆଙ୍ଗ କାହିଁରେ ସେ ଉପସ୍ଥିତ ନାହିଁ । ହରିମାମୁଁଙ୍କ ସୁଭଦ୍ରାବେଶ, ଗୀତ ନାଚ, ରାମାୟଣ ଓ ଭାଗବତ ପାଠ ସେ ସବୁ ଦେଖିଛନ୍ତି, ଶୁଣିଛନ୍ତି । ସବୁ ଠିକ୍; କିନ୍ତୁ ସେ ଚଢ଼େଇଟାର 'ଟାମ୍ ଟାମ୍'କୁ 'ରାମ୍ ରାମ୍' କରିପାରିଲେନି । ତୁମର ସରଦାରି ଚାଲିଗଲା, ଅଫିମ ଦୋକାନ ଭାଙ୍ଗିଗଲା, ତିନି ଭଉଣୀ ବିଧବା ହୋଇଗଲେ । ତୋ ବାପ କେଜେ ବହୁ ଆଗରୁ ଚାଲିଯାଇ ତୋତେ କର୍ଥଳ ଅବସ୍ଥାରେ ଅକ୍ଷରଶୂନ୍ୟ ଅବସ୍ଥାରେ ଛାଡ଼ିଗଲେ । ଗାଁର ବୁଢ଼ାବୁଢ଼ୀ କଥା ହୁଅନ୍ତି- ସରଦାର ଘର ବଡ଼ ଧନୀ; ଅଫିମ ଖାଇ ସଂପତ୍ତି ଉଡ଼ାଇ ଦେଲେ, ନହେଲେ ସାତଦିନକୁ ସାତଦିନ ପଟିଆରେ ଟଙ୍କାଗୁଡ଼ାକୁ ଖରାରେ ଶୁଖାଇ, ପାଦରେ ଧାନ ଘାଣ୍ଟିଲା ପରି ଘାଣ୍ଟୁଥିଲେ । କେହି ଦୁଧ ବିକ୍ରିପାଇଁ ଆସିଲେ ନିଦରେ ବହୂଝିଅ କହୁଥିଲେ- "ସେଇଠି ଦୁଧହାଣ୍ଡି ଅଛି ଢ଼ାଳିଦେ; କଣରେ ଚାଳରେ ଶାଳପତ୍ରରେ ମୋଡ଼ାହୋଇ ପଇସା ଅଛି, ନେଇ ଯା ।" କି ଥିଲ, କି ହେଲ ! ଘର ଭାଙ୍ଗିଗଲା, କିନ୍ତୁ ଉଣିଶହାତ ଉଚ୍ଚ ମାଟିକାନ୍ଥ ଖରାବର୍ଷାରେ କୋଡ଼ିଏ ବର୍ଷ ଛିଡ଼ା ହୋଇଥିବାର ମୁଁ ଦେଖିଛି ।

ଘାସିନନା ! ତୋର ନାଆଁ ବି ବଦଳିଗଲା । ଦ୍ୱାରିକାନାଥ ମିଶ୍ର 'ଘାସି' ବୋଲି ଅସ୍ପୃଶ୍ୟ ଜାତିର ନାଆଁ ନେଲା । ହଁ ମ; ସେନାପତି ବି ପଠାଣ ନାଆଁ ଫକୀର ନେଇଥିଲେ

ତ ! ଅସ୍ପୃଶ୍ୟ ନାମକୁ ଯମ ଛୁଇଁବ ନାହିଁ ବୋଲି ବାପା ନାରଣ ମିଶ୍ରେ ଆଉ ମାଆ 'ନାନାମାଆ' ଦେଇଥିଲେ ଏ ନାମ ! ଦୁଃଖ ଭୁଲିବାକୁ ଅଫିମ ଟେଳାଟି ଉପରେ ନିର୍ଭର କରି ଆଉ କେତେ ଦିନ ତୁ ବଂଚିଥାନ୍ତୁ ?

ଧର୍ମରେ ସତ କହୁଛି ଘାସିନନା ! ତୋର ସୁରମା ଲଗା ବଡ଼ ବଡ଼ ଆଖି ଦିଟା ମନେ ପଡ଼ିଯାଉଛି । ଆଉ ତୋର ସେଇ ଡ଼ିଗିତବଲା ଆଉ ପଖୁଆଜଟା ! ରସିକତାରେ ତୋଠୁଁ ବଳି ଗାଁରେ କିଏ ଅଛି ? ସଂସ୍କୃତି, ପରଂପରା ବୋଲି ଯେଉଁ ବଡ଼ ବଡ଼ କଥା ତାକୁ କେତେ ବର୍ଷ ତୁ ପାଣିଗିରି ସହିତ ମିଶି ବଂଚାଇ ରଖି ନଥିଲୁ ? "ଝଟ ଝଟ ମାରେ ବିଜୁଳି" ଗୀତ ଗାଇ, ନାଚି, ବଗାଳସାହିର ବୃନ୍ଦାର ପୁଅକୁ କିଏ ନାଚଗୀତ ଶିଖାଉଥିଲା ? କଣ କିଛି ପାଉଥିଲୁ ? ଧାନ ନା ଚାଉଳ ମୁଠାଏ ? ପାଣିଗିରି ସାଙ୍ଗରେ ସୁର ଦେଇ - 'ବିଧୁବଦନୀ ବାରବଧୂ ଆସିଛି' ପଦଟି ଗାଉଥିଲା ବେଳେ ତୋର ଆଖି, ମୁହଁଭଙ୍ଗୀ, ଆଙ୍ଗୁଳିର ଗତିପ୍ରଗତି ସ୍ୱର୍ଗର ବିଦ୍ୟାଧରୀ ଦେଖି ନଥିବେ । କେଉଁ ଯାତ୍ରା, ତାମସା, ସୁଆଙ୍ଗରେ ତୁ ନଥାଉ ? ଭୋକେ ଓଡ଼ିଆ ଗୀତ ଗାଏ ସତ, ଅଫିମ ନିଦ ମାଡୁଥିଲେ ବି ତୁ ଶୋଉନା । ଡ଼ାକିଦେଲେ ଚାଲିଯାଉ ।

ତୁ କାହିଁକି ମୃଦଙ୍ଗ, ପଖୁଆଜ, ଢ଼ୋଲକ, ଡ଼ିଗିତବଲା ଏତେ ପାଗଲା ହୋଇ ବଜାଉଥିଲୁ ? ଦିନଯାକ ଭୂଯାଁ ସାହି, ଭୂମିଜ ସାହି ଘୂରାଫେରା କରି ଦି ଚାରିଅଣା ପଇସାପାଇଁ ଲାଗିଥିଲୁ ? ବଟିକାଏ ଅଫିମପାଇଁ ଗାଁର ରାଧାଗୋବିନ୍ଦ ଦୁଇଭାଇ ସତକଥାକୁ ମିଛ କରୁଥିଲେ, କିନ୍ତୁ ତୁ ସେଇ ବଟିକାଟିପାଇଁ ମିଛକୁ ସତ କରି ସାକ୍ଷୀ ଦେଉଥିଲୁ । ଗାଁରେ ସେଦିନ ଥିଲୁ, କିନ୍ତୁ ବାରିପଦାର ହାକିମ ଆଗରେ କିମିତି ପ୍ରମାଣ କରିଦେଲୁ ସେଦିନ କୁଳିଅଣା ହାଟକୁ ଯାଇଥିଲୁ ବୋଲି ?

ଆଜି ତୋ ଘରଦ୍ୱାର କମି କାଇଗା କିଛି ନାହିଁ । ତୋରି ଜାଗାରେ ମୋ ଭିଣୋଇ-ଘର ପ୍ରସ୍ତେ ଉଆସ ଛିଡ଼ା । ଗାଁରେ ଗୀତବାଦ୍ୟ ନାହିଁ । ରାଜେନ୍ଦ୍ରାସନ ସର୍ଦାରିରୁ କେତେ ତଳକୁ କେଡ଼େ ଶୀଘ୍ର ଆସିଗଲୁ ? ତୋ ଆଖିରୁ ସୁରମା ଲିଭିଗଲା । କେବଳ କରମଙ୍ଗା ଗଛଟି ଅଛି । ତୋର 'ନାନାମାଆ', ବିଧବା ଦୁଇ ଭଉଣୀ, ଭଣଜା କୁଆଡ଼େ ଗଲେ ? ତୋର ଝିଅ ଧଳଭୂଇଁରେ କେଉଁଠି ହୁଏତ ଥିବ। ଦୁଃଖ କରନା ଘାସିନନା ! ତୁ ଦ୍ୱାରକାନାଥ। ମନେପକା "ଯଦୁପତେ କ୍ୱଗତା ମଥୁରାପୁରୀ ।" ଆହୁରି ମନେପକା "ଜଳେ ଦ୍ୱାରକା ନାଶ ଯିବ ।"



## ।। ସାତ ।।

ବାଷଠି ସାଲର କଥା । ମୁଁ ସେତେବେଳେ ବାଲେଶ୍ୱରର ପୁରୁଣା ଷ୍ଟାଡ଼ିୟମ୍ ଓ କାଳିମନ୍ଦିର ସଂଲଗ୍ନ ଘରଟିଏ ଷାଠିଏ ଟଙ୍କାରେ ଭଡ଼ା ନେଇଥାଏଁ । ମୋପାଇଁ କଲେଜ ପାଖ; ପିଲାଝିଲାଙ୍କପାଇଁ ଜିଲ୍ଲାସ୍କୁଲ ଓ ଖେଳପଡ଼ିଆ ପାଖ । ଗାଈଟିଏ ବି ରଖିଥାଏ, ସାନପୁଅ (ମୁନୁ) କ୍ଷୀର ଖାଇବ ବୋଲି । ଚାକିରି ଆରମ୍ଭରୁ ସବୁଦିନ ମୋ ପାଖରେ ଗାଈଟିଏ ଥାଏ । ଏପରିକି ପାରଳାଖେମୁଣ୍ଡିରେ ଥିଲାବେଳେ ତେୟାନବେ ଟଙ୍କାରେ ଯେଉଁ ବୁଢ଼ୀ ଗାଈଟିଏ କିଣିଥିଲି, ତାକୁ ଦେଖିବାପାଇଁ ଲୋକେ ଆସୁଥିଲେ । ଅସ୍ଥିଚର୍ମସାର ପ୍ରାଣୀଟି, କିନ୍ତୁ ପହ୍ନାରେ ଅଢ଼େଇ ସେର କ୍ଷୀର । ସ୍ତ୍ରୀର ମୃତ୍ୟୁ ପରେ ବି ଏଇ ବାଲେଶ୍ୱରରେ ଯୋଡ଼ାଏ ଗାଈ ରଖିଥିଲି । ଯୋଡ଼ିକଯାକ ମାସେ ବ୍ୟବଧାନରେ ମରିଗଲେ । ଯାହାର ସ୍ତ୍ରୀ ନାହିଁ, ସେ ଏତେ ଲକ୍ଷ୍ମୀଛଡ଼ା ଯେ, ତା ପାଖରେ ଗାଈ ବି ବଂଚିଲେ ନାହିଁ ।

ମୁଁ ଯେଉଁଠି ଥିଲେ ବି (ଏପରିକି ଅଗମ୍ୟ ପାରଳାଖେମୁଣ୍ଡି) ବାପା ଯାଇଥିଲେ ଏବଂ ସେଠାରୁ ଲାଲି ଆତର ମଂଜି ଆଣି ପାନ୍ଧଡ଼ାରେ ଲଗାଇଥିଲେ ଏବଂ ଫଳ ମଧ୍ୟ ଖାଇଥିଲେ । ନିଜେ ମଂଜି ପୋତି ତାର ପାକଲା ଫଳ ଖାଇଲେ (ଆମ୍ବ ହେଉ ବା ଆତ ହେଉ) ସ୍ୱର୍ଗପ୍ରାପ୍ତି ହୁଏ ବୋଲି ତାଙ୍କର ଧାରଣା ।

ଥରେ ସେ ବାଲେଶ୍ୱର ଆସିଥାନ୍ତି । ନାତି ନାତୁଣୀଙ୍କି ବିଶେଷତଃ ସୌଭାଗ୍ୟ, ସୁଧା ଓ ସରଳା (ସାନଭାଇରଝିଅ)କୁ ଭାରି ଭଲ ପାଆନ୍ତି । ଥଟ୍ଟାତାମସା, ହସଖେଳରେ ଘର ଜମିଉଠେ । ସରଳା ଓଡ଼ିଆରେ ଏମ୍.ଏ. (ଘରୋଇ ଭାବରେ) ବା ଓଡ଼ିଆ ପାସ୍ ନେଇ ବି.ଏ. ପଢୁଥାଏ । ତା ପାଖରେ 'ଓଡ଼ିଆ ଲୋକଗଳ୍ପ ସଞ୍ଚୟନ' ବୋଲି ସ୍ଥୂଳ ପୁସ୍ତକଟିଏ ଥାଏ । ବାପା ରଙ୍ଗରସପ୍ରିୟ । ଦିନେ ତିନିଭଉଣୀ ବାପାଙ୍କ ସହିତ ବସିଥାନ୍ତି । ଚାରିଜଣିଆ ବ୍ରେ ଖେଳ ଚାଲିଥାଏ । ବାପାଙ୍କୁ କୂଟକପଟ ଆସେନି, ଭଲ ଦିଶେନି । ଅନ୍ୟମାନେ ଚୋରିବିଦ୍ୟାରେ ଧୁରନ୍ଧର । ତାସ ଲୁଚାଇ ଦିଅନ୍ତି । ଥିଲେ ବି ଅନ୍ୟ ତାସ ପକାନ୍ତି । ପ୍ରତିଥର ବାପା ଇସ୍କାପାନ ବିବି ପାଆନ୍ତି । ଚାରି ଛଅପାଳି ବେଳକୁ ବାପା 'ବ୍ରେ' ହୋଇଯାନ୍ତି । ବାପା ହାରିଯାନ୍ତି, ସମସ୍ତେ ହସନ୍ତି, ବାପା ବି ।

ତା'ପରେ ପଢ଼ାହୁଏ 'ଲୋକଗଳ୍ପ' । ନାନା ଉପାୟ କରି ମିଛସତ ବହିରୁ ପଢ଼ି ଜଣକ ପରେ ଜଣେ ଦାଦିଙ୍କୁ ହସାନ୍ତି । କିଏ ଚା' ଆଣିଦିଏ, ଆଉକିଏ କଡ଼ା ଗୁଣ୍ଡି ଦିଆ ପାନକୁ ବୁଢ଼ା ଆଙ୍ଗୁଳିରେ ପାପୁଲିରେ 'ମଷ୍‌ଟି' ବୁଢ଼ାକୁ ଦିଅନ୍ତି । ତାଙ୍କର ମଜଗୁଲ ଅବସ୍ଥା ଆସିଯାଏ ପାନ ପାକୁଳାଇଲେ । ତା'ପରେ ଗପ । ନାନା ଉଦ୍ଭଟ କଥା ଓ କାହାଣୀ । ବିଚିତ୍ର

ଲୋକଭାଷା । 'ରାଜାରାଣୀ ବେହେ' ହୋଇଗଲେ।" ବାପା ଖୁସି ହୋଇ ପଚାରନ୍ତି 'ବେହେ' ଶବ୍ଦର ଅର୍ଥ କ'ଣ ? ସୁଧା କହେ 'ବେହେ' ମାନେ 'ବାହା', ଏତିକି ବୁଝିପାରୁନ ? ଖିଅ ଧରିନେଇ ସରଳା ପଚାରିଲା, ଦାଦି ତୁମେ ତ ବାହା ହୋଇଥିଲ, ତମ ବାହାଘର କଥା କୁହ, ଶୁଣିବା।"

ବାପା ଗମ୍ଭୀର ହୋଇଗଲେ। ଆରମ୍ଭ କଲେ "ଆମ୍ଭର କି ବାହାଘର ରେ ? ପୁତୁଳି ଖେଳ କଥା। ବର କନିଆକୁ ହାତଗଣ୍ଠି ପକାଇ ଯୋଡ଼ି ଦେବା କଥା। ବାଜା ନା ରୋଷଣି, ଘୋଡ଼ା ନା ଗାଡ଼ି, ପାଲିଙ୍କି ନା ସବାରି ? ତୁମକୁ ଶୁଣିବାକୁ ଭଲ ଲାଗିବ ନାହିଁ।" ସମସ୍ତେ ଏକାସ୍ୱରରେ କହି ଉଠିଲେ, ହଁ ଲାଗିବ, ତୁମେ ଗୋଟି ଗୋଟି କରି କହିଯାଅତ ? ମୂଳରୁ ଶେଷ ଯାଏ।

କଥା ବାଉଁରାଇବାପାଇଁ ବାପା ପଚାରିଲେ- "ଆଚ୍ଛା ସେ ଗଳ୍ପରେ ଅଛି ପିଢ଼ାଟି ତା ପିଚାରେ ଲାଗି ରହିଲା। ଏସବୁ ତୁମେ ବିଶ୍ୱାସ କର ?" ଖୁବ୍ ଜୋରରେ ପ୍ରସ୍ତେ ହସିଗଲେ ବାପା। "ମୋ କଥା ବି ସେମିତି ହବ। ତୁମେ ମୋଟେ ବିଶ୍ୱାସ କରିବନି।" "ହଁ ହଁ ବିଶ୍ୱାସ କରିବା; ତୁମେ କୁହ ତ।"

ବାପା ବାହାରକୁ ଚାଲିଗଲେ ପାନସିଠା ପକାଇବାକୁ। ଫେରିଆସି ଟିକିଏ ଅସମ୍ଭାଳ ହୋଇ ବସିବାରୁ, ସରଳା ତାଙ୍କ ଲୁଗାପଟା ଟାଣିଓଟାରି ଦେଇ କହିଲା- "ଦାଦି ତୁମେ ଅସଭ୍ୟ, ଆମ ଆଗରେ ଏମିତି ହୋଇ ବସୁଛ ?"

ବାପା ଆରମ୍ଭ କଲେ- 'ମରିବାକୁ ପ୍ରାୟ୍ ସାତ ଆଠବର୍ଷ ଥାଏ। ଅନବରତ ମାଆ ବାପାଙ୍କୁ ନେହୁରା ହୋଇ କହିଲା- "ମୁଁ ଆଉ କେତେଦିନ ବଞ୍ଚିବି, ଭୁଲାର ବାହାଘରଟା କରିଦିଅ। ତାର ପନ୍ଦର ପୂରି ଷୋହଳ ଚାଲିଲା। ମୁଁ ଆଉ କେତେଦିନ ଖଟିବି ? ଘର କାମ ତ ସରିଗଲା। ବହୂରନ୍ଧା ଭାତ କେତେଦିନ ହେଲେ ଖାଇଥାଏଁ।" ବାପା ଟିକେ କାଠପଥୁରିଆ ଲୋକ। ପୋଥିଲେଖା, କବିରାଜି ଛାଡ଼ି ବାହାଫାହା କଥା ବୁଝାବୁଝି ଯୋଗାଡ଼ଯନ୍ତ କରିବା ତାଙ୍କୁ ଅଡୁଆ। ଅତିଷ୍ଠ ଅସ୍ତବ୍ୟସ୍ତ ମାଆ କଲାରୁ, ସେ ଶେଷରେ ଦିନେ ବାହାରିଲେ ଠାକୁରଙ୍କୁ ଜୁହାର ହୋଇ ଦକ୍ଷିଣକୁ।

ବାପାଙ୍କ ପୃଥିବୀରେ ତିନି ଚାରୋଟି ଗାଁ। ପାଛଡ଼ା; ଯେଉଁଠି ଗୋଟିଏ ମାତ୍ର ଝିଅକୁ ବାପା ଦେଖିଥିଲେ। ମାତ୍ର ଝିଅଟି ଚାରି ପାଞ୍ଚ ବର୍ଷର। ଗୌରୀକନ୍ୟା ହେବାକୁ ତିନିବର୍ଷ ଅଛି। ରାଜାଲୋକା; ସେଠି ସମସ୍ତେ କୁଟୁମ୍ବ। ବିବାହ ନିଷେଧ। ଜଗନ୍ନାଥଖୁଣ୍ଟ; ଯେଉଁଠି ଦିଆ ଘର; ଆଣିବା ଶାସ୍ତ୍ର ନିଷିଦ୍ଧ। ଅନ୍ୟ ଗାଆଁଟି ବୁଢ଼ୀଖମାରି, ଯେଉଁଠି ମୋ ଭିଣୋଇ

ଘର। ଯେଉଁ ଭିଣୋଇଙ୍କ ପିଲାଝିଲା ନ ହେବାରୁ ବାପା ଆଗପଛ ନ ବିଚାରି (ବୋଧହୁଏ ଶାସନଭାଗ ପାଇବା ଆଶାରେ) ବଡ଼ପୁଅକୁ ପୋଷାପୁଅ କରିଦେଇ ଶାସ୍ତ୍ରନିଷିଦ୍ଧ ଆଇନଗର୍ହିତ କାମ କରିଥିଲେ। ମୁଁ ବହୁବର୍ଷ ପରେ ଜନ୍ମିଲାରୁ ଶତପଥୀ ବଂଶ ରହିଲା। ସେଇ ବୁଢ଼ୀ ଖମାରୀରେ ନିଜ ଜୋଇଁଙ୍କ ସାମନା ଘରେ ଜଣେ ନାରଣ ମିଶ୍ରଙ୍କ ବଡ଼ଝିଅକୁ ବାପା କେବେ ଦେଖିଥିଲେ ଓ ଝିଅଜୋଇଁଙ୍କ ସହାୟତା ଓ ଅନୁମୋଦନ କ୍ରମେ ପାତ୍ରୀ ମୋ ପାଇଁ ଠିକଣା କଲେ। ବାପା ଖୁସି ଯେ ଶାସନୀ ବ୍ରାହ୍ମଣ ଘରେ ବନ୍ଧୁସ୍ତି କଲେ ଓ ଝିଅ ଗୌରୀକନ୍ୟା।'

"ଜିଜିର ନାଆଁ କଣ ଗୌରୀ, ସେ କଣ ଗୋରା ରଙ୍ଗର ଥିଲା ?" ସରଳା ପଚାରିଲା।

'ସେ ଗୌରୀ କନ୍ୟା। ଶ୍ଳୋକରେ ଅଛି, "ଅଷ୍ଟବର୍ଷା ଭବେତ୍ ଗୌରୀ, ନବବର୍ଷ ଚ ରୋହିଣୀ, ଦଶମେ କନ୍ୟକ ପ୍ରୋକ୍ତା।" ତାଠୁ ବେଶି ବୟସର ହେଲେ "ରଜସ୍ୱଳା"। କନ୍ୟା ଖୋଜାରେ ସଫଳ ହୋଇ ବାପା ଯେଉଁଠି ସେଇଠି "ଅଷ୍ଟ ବର୍ଷା ଭବେତ୍ ଗୌରୀ" ଆରମ୍ଭ କରନ୍ତି। ଯାହାର ଅର୍ଥ କନ୍ୟା ଚାରିପ୍ରକାର : ଆଠବର୍ଷର ଝିଅ ଗୌରୀ, ନଅବର୍ଷର ଝିଅକୁ ରୋହିଣୀ, ଦଶବର୍ଷର ଝିଅକୁ କନ୍ୟା, ତା ଉପରେ କନ୍ୟାକୁ 'ରଜସ୍ୱଳା' ବୋଲାଯାଏ। "ଗୌରୀ" କନ୍ୟା ବିବାହପାଇଁ ଉପଯୁକ୍ତ। ଗୌରୀ କନ୍ୟା ଦାନ କଲେ, ଧର୍ମ ଗ୍ରହଣ କଲେ ଧନ୍ୟ।'

ଆଖିମିଟିକା ମାରି ସୌଭାଗ୍ୟ ପଚାରିଲା, "ଦାଦି, ଆମେ କେଉଁ ଶ୍ରେଣୀର ? ଗୌରୀ ନା ରୋହିଣୀ ?"

"ମୁଁ କିମିତି କହିବି ? ତୁମେ ନିଜେ ନିଜେ ଠିକ୍ କର।"

"ହଉ, ହଉ, ଆମେ ବର ଆସିଲେ ତାକୁ ପଚାରିବା ଷୋଳ ସତର ବର୍ଷର ଝିଅକୁ କେଉଁ ଶ୍ରେଣୀର କନ୍ୟା ବୋଲିବା ? ଏଥର ବାହାଘର କଥା କୁହ। ତୁମକୁ ବାହା କରାଇବାପାଇଁ କେତେ ବରଯାତ୍ରୀ ଯାଇଥିଲେ ? କନ୍ୟାକୁ ବାହାଘର ଆଗରୁ ଦେଖିଥିଲ କି ନାହିଁ ? ଫଟୋ ଉଠିଥିଲା ?"

"ଏତେ ପ୍ରଶ୍ନର ଉତ୍ତର ମୁଁ ଏକାଥରକେ ଦେଇପାରିବି ନାହିଁ; ଶୁଣ, ଚୁମ୍ବକରେ ମୁଁ ଯାହା କହିଯାଉଚି। ବାହାଘର ଦିନ ଭୋର ସକାଳୁ ଶୁଭବେଳ ଦେଖି ବାପା, ମୁଁ, ଆଉ ପଚା ବାରିକ ବାରିପଦା ହୁଡ଼ି ତଳ ବୁଢ଼ୀଖମାରୀକୁ ବାହାରିଲୁଁ। ବେଳବୁଡ଼କୁ ସେଠି

ପହଞ୍ଚିଗଲୁଁ । ରାତିରେ ବାହାଘର । ବାଜାବାଲା ଡୋଲିଆ ଶଶୁର ଘର ବ୍ୟବସ୍ଥା କରିଥିଲେ ।"

"ପ୍ରଶେସନ ?"

"ପ୍ରଶେସନ ମୁଁ ବୁଝେନି । ଆଠ ଦଶ ଜଣ ବରଯାତ୍ରୀ, ଭିଣୋଇ ଓ ପଚା ବାରିକ ସମେତ ।"

"ଏ ବାରିକଟି ପଚା ନୁହେଁ କି ସଢ଼ା ନୁହେଁ । ତା ନାଆଁ ପ୍ରକୃତରେ ପଞ୍ଚାନନ । ଏ ସାଧୁ ନାଆଁରେ ଲୋକେ ଡାକି ନ ପାରି ଚୁମ୍ବକରେ ତାକୁ ପଞ୍ଚୁ ବୋଲି ଡାକିଲେ । କାଳକ୍ରମେ ତା କାମର ଅବନତି ଲକ୍ଷ୍ୟକରି ତାକୁ ପଚା ବାରିକ ବୋଲି ଡାକିଲେ । ଯେକୌଣସି ପୂଜାପାର୍ବଣରେ, ବିବାହ ବ୍ରତରେ ବ୍ରାହ୍ମଣ ସହିତ ଧୋବା ଓ ବାରିକ ଲୋଡ଼ାଯାନ୍ତି । ମାତ୍ର ଆମ ପାଙ୍କଡ଼ାରେ ସେକଥା ନାହିଁ । ଯୁଗ ଯୁଗ ଧରି ସେ ଗାଁରେ ଧୋବା ନାହିଁ କି ବାରିକ ନାହିଁ । ଧୋବା ଆସେ ମାଇଲେ ଦୂର କେନ୍ଦୁଆରୁ, ନହେଲେ କୋଶେ ଦୂର କଟରା ନଇକୂଳର ଚନ୍ଦନପୁରରୁ । ଭଣ୍ଡାରି ଆସେ ସେଇ କେନ୍ଦୁଆରୁ, ନହେଲେ ସେଇ କୋଶେ ଦୂର ଏକଡାଳି ଗାଁରୁ । କେନ୍ଦୁଆର ବାରିକ ଖୁବ୍ ଧନୀ, ଖାନଦାନ, ଭଦ୍ର ଏବଂ ନମ୍ର । କିନ୍ତୁ ସେ ନିଜେ କାହା ଘରକୁ ଯାଏ ନାହିଁ କ୍ଷୌରକର୍ମ କରିବାକୁ । ତା'ର ଚାର୍ଜ ବେଶି, ଡବଲ । ଦୁଇ ପଇସା ଦାଢ଼ି କାଟ, ଚୂଳ କାଟ । କିନ୍ତୁ ପଚା ବାରିକ ପଇସାଟିରେ ଉଭୟ କାଟେ । ଖୁରର ଦାଢ଼ ନ ଥାଏ । ଫିଟିକିରି ପାଣି ଲାଗିଲେ ଗାଲ ଲଙ୍କାମରିଚ ଦେଲା ପରି ପୋଡ଼େ । ହାତ ବୁଲାଇଲେ ଖପରାରେ ଫୁଟାପାଣି ଦେଇ ରାମ୍ପିଥିବା ଛେଳିଚମଡ଼ା ପରି ଲାଗେ । ନନ୍ଦ ଘର ବାରିକ ବରକୁ ବାରିକ; ଆମର ପଚା ବାରିକ । ବରକୁ ବାରିକଘର କେହି ବାରିକାଣୀ ନଖ କାଟିବାକୁ ବା ଅଳତା ଘିନାଇବାକୁ ଆସନ୍ତି ନାହିଁ । ହରଷମୁହାଁ ପଚା ବାରିକର ସ୍ତ୍ରୀ ସଦର୍ପରେ ଏକୁଟିଆ ଯା'ଆସ କରିପାରେ ।" ଅଳ୍ପ ହସି ବାପା କହିଗଲେ- ବାପାଙ୍କ ଇସ୍‌ପେଶିଏଲ ଚୂଳକଟା ପଚା ଦେଇ ସମ୍ଭବ । ବେଲାରେ ମୁଣ୍ଡ ଡଙ୍କାଇ ଘୋଡ଼ାଇ ଖୁରରେ ବଳକା ଅଂଶ ରାମ୍ପିଦେଲେ ଚୂଳକଟା ଶେଷ । କଟଟା ସିମିତି ଥାଏ ଗଣ୍ଠି ସହିତ ।"

"ଦାଦି, ତୁମ ବାହାଘର କଥା କହୁଚ ନା ବାରିକର ଚୂଳକଟା ବର୍ଣ୍ଣନା କରୁଛ ? କୁହ ତୁମକୁ ବରବେଶ କଲା କିଏ ? ସେଇ ପଚା ବାରିକ ନା ଆଉ କିଏ ?" ସୌଭାଗ୍ୟ ପଚାରିଲା ।

"ବରବେଶ ! ନଅଗଜି ଲାଲିଧଡ଼ିର ହଳଦିଆ ଧୋତି ନିଜେ ପିନ୍ଧିଲି, ଚାରିଅଣିଆ

ଜାଲି ଓଢ଼ଣିଟିଏ ପକାଇଲି, ଆଉ ଗୁଆ ଅରୁଆଚାଉଳ ଧରି ବାହାରି ପଡ଼ିଲି। ପଚା ବାରିକ ସିନ୍ଦୂର ଜକଜକ କଲା। ଢୋଲ ଚଡ଼ଚଡ଼ି ବାଜିଲା। ବାପା ପଢ଼ିଲେ "ମଙ୍ଗଳଂ ଭଗବାନ ବିଷ୍ଣୁମ୍"; ଫେର ପଢ଼ିଲେ "ଧେନୁର୍ବସ୍ତ୍ରା ପ୍ରଯୁକ୍ତା" ଶ୍ଳୋକ। ପଚାଶ ଶହେ ହାତ ଦୂର ଶଶୁରଘର ଆଡ଼କୁ ପୋଖରୀ ହୁଡ଼ା ମହାଦେବ ମନ୍ଦିର ଦେଇ ଚାଲିଲେ ବରଯାତ୍ରୀ।"

"ଗର୍ବରେ ତୁମର ଛାତି ଫୁଲି ଉଠୁଥିବ, ନୁହେଁ ଦାଦି ?"

"ସତର ମାଇଲ ରାସ୍ତା ଚାଲି ଚାଲି ଯାଇ ଅବସ୍ଥା ଦିଗଣ୍ଡା ଦିକଡ଼ା। ଛାତି ଫୁଲିବ ନା ଗୋଡ଼ ଫୁଲିବ ? କାନ୍ଧ ମାଡୁଥାଏ, ଭୋକରେ।"

"କ'ଣ କ'ଣ ରୋଷଣି, ବାଣ, କରିଥିଲ ? କୁମ୍ଭି, ଚରକି, ହାବାଳି ?"

"ବହୁତ, ବହୁତ। ଆମ ତରଫରୁ ଶୂନ। ବାଣ ଦାୟିତ୍ୱ କନ୍ୟା ପକ୍ଷର। ବଜାରିଆ ନ ହେଲେ ବି ବଜାରପାଖିଆ ଲୋକ ତ ! ମୋର ବଡ଼ ଶଳାଠୁଁ ବଳି ଫିରକୂଳିଆ, ଫାଜିଲ ଟୋକା କମ୍ ଥିବେ। ତାର ଯେତେ ସାଙ୍ଗ ସମସ୍ତଙ୍କୁ ଏକଜୋଟ କରି ବାଣ କରିଥିଲା। ଦାଣ୍ଡ ମଝିରେ ଝଙ୍କା ବଉଳ ଗଛରେ ବାଣ ଟଙ୍ଗା ଯାଇଥିଲା। ଗାଁର ଯେତେଯେତେ କଳା ଛୁଡାହାଣ୍ଡି ଗୋବର ଖଣାରେ ପଡ଼ିଥିଲା, ସବୁକୁ ନେଇ ଗଛ ଡାଳରେ ଝୁଲେଇ ଦିଆଯାଇଥିଲା। ଆମେ ପହୁଞ୍ଚିଲା ବେଳକୁ ହାଣ୍ଡିସବୁର ଦଉଡ଼ି କାଟି ଦିଆଗଲା। ଠୋଠା ଢ଼ୋଡ଼ା ହୋଇ ସେମାନେ ବମ୍ ପରି ଫାଟିଲେ। ମୁଣ୍ଡି ଛାଞ୍ଚୁଣିରେ ନିଆଁ ଜଳାଇ ଚରକି କୁମ୍ଭି କରାଗଲା। ବାଉଁଶ ଛୋଟ ଛୋଟ କାଟି ବିଡ଼ାକରି ନିଆଁ ଲଗାଇବାରୁ ଦିହୁଡ଼ି ବା ମଶାଲ ହେଲା। ବାଉଁଶ ଗଣ୍ଠି ଏକାବେଳେ ଫୁଟିବାରୁ କଦମଝାଡ଼ ପରି ଜଣାଗଲା। ସେସବୁ ସାଙ୍ଗକୁ ଧୁମ୍‌ଷା ଢ଼ୋଲ ଚଡ଼ଚଡ଼ି ଶବ୍ଦ। ମାନ ଅପମାନ କଥା ନଭାବି ଆମେ ସମସ୍ତେ ବଜାରିଆଙ୍କ ସହିତ ଯୋଗଦେଲୁ।"

"ବାହାଘର ତା'ହେଲେ ଖୁବ୍ ଜମିଥିଲା ନା ?"

"ଏଥର ଖିଆ ପିଆର ବ୍ୟବସ୍ଥା କର। ବାହାଘର ତ ସରିଲା। ବାର ବାଜିଲା। ଭାତ ରାନ୍ଧୁଛି କିଏ ? ସେଇ ବିଧବା ସ୍ତ୍ରୀ ଲୋକଟା ? ସେ କି ଜାତିର ସ୍ତ୍ରୀ ? ମୁଁ ତା ହାତରନ୍ଧା ଭାତ ଖାଇବି ନାହିଁ। ତରକାରି ଖାଇବି।"

ସୁଧା କହିଲା, "ଦାଦି, ତୁମେ ଜାତିଫାତି ମାନୁଛ ଏ କାଳରେ ବି ? ଜାତିଫାତି ଆଜିକାଲି ନାହିଁ ପରା ! ତୁମେ ଡରନି। ସିଏ ତିଅଣ ତରକାରି କରି ଭାତର ପାଣି ଡେକ୍‌ଚିରେ ବସାଇବ। ଚାଉଳ ଧୋଇ କରି ରଖିଥିବ। ପାଣି ଫୁଟିଲେ ମୋତେ ଡ଼ାକିବ; ମୁଁ ଚାଉଳ ପକେଇବି। ଗାଳିବି ମୁଁ। ମୁଁ ବାଢ଼ିଦେବି।"

"ଦେଖ୍ ଯାହା କହୁଛୁ ସିମିତି କରିବୁ । ବ୍ରହ୍ମଗଣ୍ଠି ମୋର ଅଛି । ମାରା ହୋଇଯିବ । ଦେବତା ବ୍ରାହ୍ମଣ, ପୂର୍ବପୁରୁଷଙ୍କୁ ନ ମାନିଲେ ଅମଙ୍ଗଳ ହେବ ।"

"ବାହାଘର ଗପ ଖଣ୍ଡିଆ କରନି । ଶେଷ ହେଲେ ବାଢ଼ି ଦେବି, ଖାଇବ । କନିଆ କଥା କୁହ ।"

"କନିଆକୁ ତାର ମାମୁ କାଖକରି ବେଦିକୁ ଆଣିଲେ । ହାତଗଣ୍ଠି ପରେ ଖଇପୋଡ଼ା ବେଳେ ଯେତିକି ଦେଖିଲି, ଜାଣିଲି କନିଆଁ ମୋ ଜଙ୍ଘେ ଉଚ୍ଚ, ମୁହଁ ଗୋଳିଆ, ରଙ୍ଗ ହଳଦିଆ । ଲାଲି ଧଡ଼ିର ଛ'ଗଜି ଁଦଶଣିଆ ଶାଢ଼ୀ ପିନ୍ଧିଛି । ପତଳା ସାଇକର ।"

"ବ୍ଲାଉସ୍ ?" ସୁଧାର ପ୍ରଶ୍ନ ।

"ଜୀବନରେ ସେ ବ୍ଲାଉସ୍ ବୋଲି କି ଜିନିଷ ଜାଣିନି । ଥରେ ଫଟୋ ଉଠାଇଲା ବେଳେ ତୋ ମାଆର ବ୍ଲାଉସ୍ ପିନ୍ଧିଥିଲା । ଦିହ ଢଙ୍କାଇବା ପାଇଁ ।"

"ବରକନ୍ୟା ଫେରିଲେ କେବେ ?"

"କାଦଖେଳି, ଅଷ୍ଟମଙ୍ଗଳା ପରେ ।"

"କାଦଖେଳି କ'ଣ ?"

"ସିଏ ମୋ ପାଦରେ ମେଞ୍ଚେ କାଦୁଅ ଦେଲା, ମୁଁ ତା ମୁହଁରେ ମେଞ୍ଚେ ବୋଳିଦେଲି ।"

"ବରକନ୍ୟାର ମୁହାଁମୁହିଁ ଭେଟହେଲା କେବେ ? ଏକାଠି ଶୋଇଲ କେବେ ? ହନିମୁନ୍ ଶାସ୍ତ୍ରରେ ମନାଅଛି ।"

"ଦାଦି, ଆମେ ପୁଅ ନୋହୁ କି ଝିଅ ନୋହୁଁ, ନାତୁଣୀ; ନିର୍ଭୟରେ କହିଯାଅ । ହନିମୁନ୍ କେବେ ହେଲା ? ହନି ମାନେ ମହୁ, ମୁନ୍ ମାନେ ଜହ୍ନ ।"

"ହନିମୁନ୍ କି ଜିନିଷ ମୁଁ ବୁଝେନାହିଁ । ମହୁ ଘର କାଛରେ ଗୋଟା ବୋତଲରେ ଥିଲା । ଆମର ଘର ଅମୁହାଁ । ଗୋଟିଏ ଦୁଆର, ଝରକା ନାହିଁ । ଚନ୍ଦ୍ର କି ସୂର୍ଯ୍ୟ କାହାରି ଆଲୁଅ ପଡ଼େନାହିଁ, ପବନ ବି ପଶେ ନାହିଁ । ବାପା, ମା, ମୁଁ ଆଉ ତମର ଜିଜି ସେଇ ଘରେ ଅନ୍ଧାରରେ ଶୋଉଁ । ଯଦି ଆମେ ଫୁସୁରୁ ଫାସୁରୁ ହେଲୁଁ ବା କାଚ ଝମଝମ ହେଲା ତେବେ ସକାଳକୁ ବେହିଆ, ନିର୍ଲଜ ଆଦି ଗାଳି । କେହି ଜଣେ ଯାଅ, ଭାତ ଗାଳିଦିଅ ନରମ ହୋଇଯିବ । ମୁଁ ଟିକିଏ ଚାଉଳିଆ ଭାତ ଖାଏଁ ।"

ସେତେବେଳକୁ ବିଧବା ସ୍ତ୍ରୀଲୋକଟି ଭାତଗାଳି ଚୁଲିରୁ ଓହ୍ଲାଇ ତଳେ ଢଙ୍କାଇ ଦେଇଛି । ସୁଧା କିଛି କରିନି, ଗପ ଶୁଣୁଛି ।

"ଯାଉଛି ବ୍ୟସ୍ତ ହୁଅନି। ଖାଲି କହିଦିଅ କେବେ ତୁମର କନିଆ ଘରକୁ ଆସିଲା ?"

"ହଳଦିଆ ପତ୍ର ଆସିବାର ତିନି ଚାରିମାସ ପରେ। ସେତେବେଳେ ଜିଜିର ଚଉଦ ବର୍ଷ। ଭାଉଥୁର ନେଇ ଆସିଲା।"

"ହଳଦିଆ ପତ୍ର କ'ଣ ?"

"ତାଳପତ୍ରରେ ହଳଦୀ ଦେଇ ଶୁଭ ଖବର ଆମ ଘରକୁ ଶଶୁରଘର ଜଣେଇଦେଲେ- ବହୂ ଘରଯୋଗ୍ୟା ହେଲା। ଏଥର ଭଲଦିନ ଦେଖି ନେଇଯାଅ ଏବଂ ବନ୍ଦାପନା ହୋମ ଆଦି କରିପାର। ଦିନ ଧାର୍ଯ୍ୟ ହେଲା; ତୁମ ଜିଜି ଆମଘରକୁ ଆସିଲା।"

"ତୁମେ ଖୁବ୍ ଖୁସି ?"

- "ଖୁସି ! ଘରେ କାନ୍ଦବୋବାଳି। ତୋର ଜିଜି ଏତେ ଗେହ୍ଲୀ ଯେ, ଆମ ଘରେ ପାଦ ଦେଲାମାତ୍ରେ ଭୋ ଭୋ ହୋଇ କାନ୍ଦିଲା, କେହି ବନ୍ଦ କରିପାରିଲେ ନାହିଁ। ବାପା ତାର ନାଁ କାନ୍ଦିରି ଦେଲେ ଏବଂ ମରିବାଯାକେ ସେଇ ଗୋଟାଏ ଡ଼ାକ ତାଙ୍କର କାନ୍ଦିରି କାନ୍ଦିରି।"

"ଜିଜିକୁ ଆମେ ଦେଖିଛୁ। ଲମ୍ବାମୁହାଁ; ତନୁପାତଳୀ, ଗୋରୀ। ଆସିଲାବେଳେ ବହୂହୋଇ ଭାରି ସୁନ୍ଦରୀ ଦିଶୁଥିବ, ନୁହେଁ ?"

"ହଁ, ମୋ ଆଖିକୁ ତ ଭାରି ସୁନ୍ଦର। ହେଲେ ବସନ୍ତ ଜନ୍ମ ହେଲାପରେ ସେ ପତଳା ହେବାକୁ ଲାଗିଲା। ନରଦା, କ୍ଷୀରଦା, ପ୍ରସନ୍ନ, କମଳା, ସନ୍ତୋଷ ଜନ୍ମ ହେବା ପରେ ଅସ୍ଥିଚର୍ମସାର ହୋଇଗଲା। ମୋର ସେଇ ଅବଶୋଷ ଯେ, ତା ଦିହରେ ପୁଳାଏ ମାଂସ ନ ଥିଲା। ଖାଲି ଅସ୍ଥିଚର୍ମ।" ଆଖିରେ ପାଣି ଜମି ଆସିଲା ତାଙ୍କର। ଉଠିବସିଲେ, "ବାରଟା କି ଗୋଟାଏ, ହେଲାଣି। ଭାତ ବାଢ଼। ପଛେ ଆଉ ଯାହା ଶୁଣିବାର ଶୁଣିବ। ଭାତ ଦିଅ, ଭାତ ଦିଅ" କହିକରି ସାନପୁଅ ମୁନୁ କୁଆଡୁ ଧାଇଁଆସି ଭିଡ଼ାଓଟାରା କଲା ସୁଧାକୁ।

ସମସ୍ତେ ଏକାଠି ଖାଇବାକୁ ବସିଲେ। ଚଳୁ ସାରି ବାପା ପ୍ରଥମେ ଗୁଣ୍ଡାଏ ପାଟିକୁ ପୂରାଇଲେ ଏବଂ ପୁଣି ଆରମ୍ଭ କଲେ "ଆଉ ଟିକିଏ ଏତିକିବେଳେ କହିଦିଏଁ। ବାହାଘର ପରଦିନ ଶଳାମାନେ କୁଆଡୁ ଗୋଟାଏ ଦଳଖିଆ ଟଟୁଘୋଡ଼ା ଘେନି ପହଞ୍ଚିଗଲେ। ବଡ଼ଶଳା କହିଲେ- "ଜମାଇବାବୁ ଘୋଡ଼ାରେ ଆସି ନାହାନ୍ତି, ତାଙ୍କୁ ଆଜି ଘୋଡ଼ା ଚଢ଼ାଇବା।" ମୁଁ ଯେତେ ନାଁ କଲେ, ହାତଗୋଡ଼ ଛିଞ୍ଚାଡ଼ିଲେ ବି, ସେମାନେ ମାନିଲେ ନାହିଁ, ଜୋରଜବରଦସ୍ତ ଘୋଡ଼ା ପିଠିରେ ବସାଇଲେ। ମୁଁ ଜୀବନ ବିକଳରେ ଘୋଡ଼ାଚୂଳ ମୁଠାଇ

ଧରିଥାଏଁ। ଘୋଡ଼ାର ଲଗାମ ନାହିଁ, ପିଠିରେ ଖାଲି ହାଡ଼ ଉପରେ ବସିଥାଏଁ। ଘୋଡ଼ାକୁ ବାପଙ୍ଗ ଛଡ଼ିରେ ବାଡ଼େଇ ଦେଲାରୁ ସେ ଧାଇଁଲା। ଚିପଟ ନଇ ପାଖରେ ଘୋଡା ପିଠିରୁ ଖସିପଡ଼ି ଘରକୁ ଫେରିଲି।" ମେରୁଦଣ୍ଡ ଯେଉଁଠି ସରିଛି, ସେଇଠି ସୁଧାର ହାତକୁ ନେଇ ବୁଲାଇ ଦେଖାଇଦେଲେ "ଦେଖିଲୁ ? ପଚାଶ ବର୍ଷ ହେଲା ଗୁଆପରି ସେ ଜାଗାଟା ଫୁଲି ରହିଛି, ବାହାଘର ଘୋଡ଼ାଚଢ଼ାର ଚିହ୍ନ।" ଖିଲିଖିଲି ହସି ଉଠିଲେ ସମସ୍ତେ।



## ।। ଆଠ ।।

ବାପା ନାତୁଣୀମାନଙ୍କର ଚାଲାକି ବୁଝି ପାରିଲେ ନାହିଁ ଏବଂ ନିର୍ବିକାରରେ ଅକାତି ବିଧବା ହାତର ରନ୍ଧା ଭାତ ଖାଇଲେ। ସବୁ ତିଅଣ ତର୍କାରୀ ଭଲଲାଗିଲା; ମାତ୍ର ଏତେ ଗୁଡ଼ାଏ ଏତେ ପ୍ରକାରର ରନ୍ଧା ତାଙ୍କୁ ଅଡୁଆଲାଗେ। ଗରମ ଭାତ, ଟିକିଏ ପାଣିଆଁ ମୁଗଡାଲି, ଆଉ ବାଇଗଣ ସିଝା ହେଲେ ହେଲା। ସକନାଛୁଇଁ, କଦଳୀ, ସାରୁ ସିଝାରେ ଲୁଣ କଞ୍ଚାଲଙ୍କା ଚକଟି ଖାଇବା ପୈତୃକ ଖାଦ୍ୟ ଅଭ୍ୟାସ ଓ କୌଳିକ ପରମ୍ପରା।

ଓପର ଓଳି ବୈଠକ ମୋ'ରି ଖଟଉପରେ ବସିଲା। ବାପା ଚିତ୍‌ପଟାଙ୍ଗ ହୋଇ କେତୁଟା ନିଃଶ୍ୱାସ ନେଇଛନ୍ତି କି ନାହିଁ, ସମସ୍ତେ ତାଙ୍କ ଦେହକୁ ଲାଗି ବସିଲେ। ସୁଧାର ବରାଦରେ ଟୁନୁ ଭିଖା ଦୋକାନକୁ ପାନ ପାଇଁ ଧାଇଁଗଲା। ପଛରୁ ତାକୁ ମନେ ପକାଇ ଦିଆଗଲା, 'ଗୁଣ୍ଡ ଗୁଆ, ମୁକୁନ୍ଦି ଜରଦା ଦିଆ ପାନ; ମନେ ରଖିଥା।' ସବା ସାନ ପୁଅ ଦାଦିର ଛାତିର ବାଳ ଗୁଡ଼ାକୁ ପୁଞ୍ଜା ପୁଞ୍ଜା ଧରି ଟାଣୁଥାଏ; ବାପା ଉଃ ଆଃ କରୁଥାନ୍ତି। ପାକୁଆ ପାଟି ମେଲାକରି ସେ ଦେଖିଲା, ଗୁମ୍ଫାରେ ସିଂହ ବାଘ ଜାଳେ ଲୁଚିଥିବେ। ବାପା ଛଟପଟ, ଅତିଷ୍ଠ ହେବାକୁ ଆରମ୍ଭ କଲେ, ବସ୍ ବେଳ ହୋଇ ଆସୁଛି ବୋଲି। ରାତି ହୋଇଯିବ ଗାଁ ପହୁଞ୍ଚିବାବେଳକୁ। ଗୋଟାଏ ଗାମୁଛାରେ କେତୁଟା ଆମ୍ବ, ଗୋଟାଏ ଗେଞ୍ଜି ଓ ଧୋତିର ବୁଜୁଳା ସେ କେତେବେଳୁ ବାନ୍ଧି ରଖିଛନ୍ତି। "ତୁମେ ଆଜି ଯାଇପାରିବ ନାହିଁ, ତୁମକୁ ଆଜି ଛାଡ଼ିବ କିଏ ?" "ଆଗ 'ବହୂ ଅଣା' କଥା କୁହ, କିଜିଙ୍କ ସହିତ ଦେଖା ସାକ୍ଷାତ୍, ମିଳନ କଥା କୁହ; ସିନେମା ସରିବ କେମିତି ?" "ତୁମେ ଶୋଇଥାଅ, ଆମେ ଗୋଡ଼ହାତ ଚିପିଦେଉଛୁଁ।" ସମସ୍ତେ କୁତୁରୁ କୁତୁରୁ କରିବାକୁ ଆରମ୍ଭ କଲେ, କିନ୍ତୁ ବାପାଙ୍କର କୁତୁକୁତି ନାହିଁ, ଏକାବେଳେକେ କାଠ; ଦିହଯାକ, ତଳିପା ତଳ, କାଖତଳ କାହିଁ ସ୍ପର୍ଶଶକ୍ତି ନାହିଁ। "ଛାଡ଼, ମୁଁ ଆଉ ରହିପାରିବି ନାହିଁ, ଘରେ ଅନେକ ଝଞ୍ଜଟ୍।"

ସମସ୍ତେ ଏକାସ୍ୱରରେ କହିଲେ "ସନ୍ତୋଷ କକା ବୁଝିବେ।" ପାନ ଆସିଗଲା; ସରଳା ପାପୁଲିରେ ଭଲ କରି ନାଷ୍ଟି ତାଙ୍କ ପାଟି ଭିତରେ ପୂରାଇଦେଲା। "ଏଥର କୁହ, ଜିଜିଙ୍କ କଥା, କିମିତି ଆସିଲେ, କେତେ କ'ଣ ଆଣିଥିଲେ, ଖିଆପିଆ କିମିତି ହେଲା ?"

କଡ଼ା ଗୁଣ୍ଡି, କିମାମ ଫଳରେ ବାପାଙ୍କ ହାକୁଟି ଉଠିଲା। ପାଣି ଗିଲାସେ ପିଇ ଆରମ୍ଭ କଲେ- "ମୁଁ ଠିକେ ଠିକେ କହିଯାଉଛି, କଥା ନ ଲମ୍ବାଇ। ଠିକ୍ ତିନି ବାଜିଲେ ମୁହୂର୍ତ୍ତେ ରହିବି ନାହିଁ।"

ବାପା ଆରମ୍ଭ କଲେ। "ଏ କୋଠରୀରୁ ସେ କୋଠରିକି ସବୁ ଦିଶୁଥାଏ, ଶୁଭୁଥାଏ ସକାଳ ବୈଠକରେ ବାପା ଯେଉଁ ଘରେ ବସିଥିଲେ, ମୁଁ ସେଇଠି ବସି ସବୁ ଶୁଣୁଥାଏ- ହଳଦିଆ ପତ୍ର ଯିମିତି ଆସିଲା ବାପା ସିମିତି କଗବନ୍ଧୁ ଦାସ ପାଖକୁ ଚାଲିଲେ, 'ବଧୂ ଆଗମନ'ର ଶୁଭଦିନ ନିର୍ଘଣ୍ଟ କରିବା ପାଇଁ। ଦିନ ଧାର୍ଯ୍ୟ ହେଲା ଏବଂ ବାପା ନିଜେ ବହୂ ଆଣିବାପାଇଁ ବୁଢ଼ୀଖମାରୀ ଗଲେ। ବହୂ ବଳଦ ଗାଡ଼ିରେ ଆସିଲା, ସାଙ୍ଗରେ ତା'ର ସାନ ଭାଇ; ଯେଉଁ ଭାଇ ବିବାହ ବେଳେ ମୋତେ ଘୋଡ଼ାପିଠିରେ ବସାଇ ପିଚାହାଡ ଜଖମ କରିଦେଇଥିଲା। ନଅଜଣ ଭାରୁଆ ଚାଲି ଚାଲି ଆସିଲେ, ବାପା ବି ସେମାନଙ୍କ ସହିତ ଆଗରେ ଚାଲିଥାଆନ୍ତି, ଶୋଭାଯାତ୍ରାରେ।"

"ପ୍ରଥମ ଭାରରେ ଦହି ମାଛ। ଦ୍ୱିତୀୟ ଭାରରେ ଶିଳ ଶିଳପୁତା, ଟୁକୁଲି, ଫୁଲଚାଙ୍ଗୁଡ଼ି ଏବଂ ହୋମ ଜିନିଷ; ତା'ପରେ ଚାରିଟା ଭାରରେ ଚୂଡ଼ା ଉଖୁଡ଼ା ହାଣ୍ଡି, ଫେଣି, ଗଜା, ଜଲବି, ଗୁଡ ମିଠାଇ, ଚିନି ମିଠାଇ, ଶେଷ ଭାରରେ ପେଡ଼ି ଗୋଟାକରେ ବାସନକୁସନ ଓ ଲୁଗାପଟା କିଛି। କନିଆ ମଠାଶାଢ଼ୀ ପିନ୍ଧିଥିଲା, ଜାଲି ଜାଲି ନାଲି ନକଲି ଝୋଟ-ଶିଲ୍କ ଉପୁରାଣ ପକାଇଥିଲା। ଅସଲ ଜିନିଷଟି ବହୂ ପାଖରେ ରଖିଥିଲା। ଚାରିପାଞ୍ଚଟି ଟଙ୍କା ସହିତ କେତେକ ଅମୂଲ୍ୟ ଜିନିଷ; ପିଠି ବାଉଁଶରେ ବୁଣା ଖେମାଟିଏ। ଅଣ୍ଟେଇ ପେଡ଼ିଟି ବଡ଼ ପେଡ଼ି ଭିତରେ ଥିଲା। ଛଅଟି ପୁଅ ଝିଅଙ୍କ ଔଷଧ ବାକ୍ସ ସେଇ ଖେମାଟି।"

"ଦାଦି, ପେଡ଼ି, ଖେମା କ'ଣ ?"

"ପେଡ଼ି ହେଲା ବାଉଁଶ ପାଡିଆର ଟ୍ରଙ୍କ୍; ଖେମାଟି ପାନ୍ଥଡ଼ାରେ ଏବେ ବି ଅଛି, ଗଲେ ଦେଖିଆସିବ।"

"ଦାଦି, ଯଉତୁକ କ'ଣ ଆଣିଥିଲା ଜିଜି ?"

"ଏଇତ ଯଉତୁକ।"

"ଗହଣା ଗାଣ୍ଠି ?"

"ଗହଣା ସବୁ ଆଣିଥିଲା । ନାକକୁ ସୁନାର ବସଣି, ନୋଥ, ଦଣ୍ଡି, ନୋଲକ; ବେକକୁ ରୂପା ଚମ୍ପାକଡ଼ି, ବାହୁରେ ବାକୁ, ହାତରେ ବଟଫଳ, ପିଠାକୁ ପରୁଆତ, ଅଣ୍ଟରେ ସାପସୂତା, ଗୋଡ଼ରେ ଗାଡୁଆ, ଯାହା ଯେଉଁଠି ପିନ୍ଧିବାକୁ ସବୁ ଆଣିଥିଲା ତୁମର କିକି । ସୁନା ଭରି ପନ୍ଦର ଟଙ୍କା । ଏତେ ଦାମ ଦେଇ ସୁନା ଗହଣା କିଏ ଦବ ଝିଅକୁ ? ରୂପା ଭାରି ପାଞ୍ଚଅଣା । ଦିହମୁଣ୍ଡ ତରା ପରି ଧଳା ଦିଶୁଥିଲା ।"

"କିକି ତ ଖୁବ୍ ସୁନ୍ଦରୀ; ସିନେମା ଷ୍ଟାର ପରି ଦିଶୁଥିବ ?"

"ମୋତେ ଖୁବ୍ ସୁନ୍ଦରୀ ଦିଶୁଥିଲା, ଆଉ କାହାକୁ କି ଦିଶୁଥିବ ମୁଁ କହିପାରିବି ନାହିଁ । ଗୋଲଗାଲ ଡ଼ଉଲଡ଼ାଉଲ, ଗୋରୀ ଝିଅଟି ଭଲ ଦିଶୁଥିଲା ସେତେବେଳେ ।"

"ବହୂ କେତେବେଳେ ପହଞ୍ଚିଲା ? ଆସିବା ପରେ କ'ଣ ହେଲା ?"

"ବହୂକୁ ମାଆ ଘରକୁ ନେଲା । ସୂର୍ଯ୍ୟ ବୁଡ଼ିବାକୁ ଘଣ୍ଟାଏ ଅଧେ ଥାଏ । ତା'ପରେ ହୋମ ହେଲା । ବାପା ନିଜେ ତାଙ୍କ ନିଜ ଲେଖା ତାଳପତ୍ର ପୋଥିରୁ ବନ୍ଦାପନା କାମ ଗୋଟି ଗୋଟି କରି ବହୁ ସମୟ ଧରି ଚଳାଇଲେ । ଅଧସେରେ ଘିଅ ହୋମ ହେଲା ।"

"ତୁମକୁ ଭାରି ଅସ୍ତବ୍ୟସ୍ତ ଲାଗୁଥିବ ତ ! ମଧୁଶଯ୍ୟା କିଏ ତିଆରି କଲା ?"

"ଆମର କି ମଧୁଶଯ୍ୟା ! ତୁମ ସମୟ ଆମ ସମୟ ଢ଼େର ଫରକ୍ । ଆମର ନା ଖଟ ନା ପଲଙ୍କ ! ଶଶୁର ଘର ଯେଉଁ ମଶିଣାଟି ଦେଇଥିଲେ ସେଇଟି ଆମର ଶେଯ । ହୋମ ପରେ ସେଇ ମଶିଣା ସବୁ । ଆମେ ସବୁ ପଶୁ ବୋଲି ଜାଣ । ଦରିକା ନାହିଁ, ଝରକା ନାହିଁ, ଆଠ ହାତରେ ଷୋହଳ ହାତ ମାଟି-କାଛ ଘର । ଅନ୍ଧଦୂପରେ ମାଆ ବାପା, ଆମେ ଦୁହେଁ । ଭାଗ୍ୟକୁ ଫଗୁଣ ମାସ, ନ ହେଲେ ଗରମରେ ଆମେ ଦୁହେଁ ସିଝି ଯାଇଥାନ୍ତୁ । ରମାକାନ୍ତ ପିଣ୍ଡାରେ ଶୋଇଥାଏ ।"

"ଦାଦି, ଖିଆପିଆ ତ ବଢ଼ିଆ ହୋଇଥିବ ?"

"ବାପାଙ୍କୁ ଲୋକେ କୃପଣ କହନ୍ତି । ପ୍ରକୃତରେ ତାଙ୍କର ସଂପଦ କହିଲେ ବାଡ଼ିରେ ଦି'ଚାରିଟା ସଜନା ଗଛର ଶାଗ, ଆଉ ବୋଝେ ତାଳପତ୍ର ପୋଥି । ଖାଇବା ପାଇଁ ଚୂଡ଼ା, ଉଖୁଡ଼ା, ଦହି, ଫାଳେ ଫାଳେ ମିଠାଇ, ଜିଲାବି, ଫେଣି, ଗୋଟିଏ ଯୋଡ଼ିଏ କାକରା, ସୋଲା ବୋଇତାଳୁର ତରକାରୀ, ମୁଢ଼ି, କାକୁଡ଼ି ଓ ଟୋପାଏ ଟୋପାଏ ସରୁଆ ଘିଅ । ମାଛ ବା ମାଂସପାଇଁ ମୋର ଶଳାଙ୍କ ପ୍ରରୋଚନାରେ ବନ୍ଧୁବାସ ଅଳି କରୁଥିଲେ । ବାପା କହିଲେ ପିତୃପୁରୁଷଙ୍କ ଶ୍ରାଦ୍ଧ ସହିତ ଦେବାଦେବୀଙ୍କ ହୋମ କାର୍ଯ୍ୟ ପରେ ଜୀବହତ୍ୟା ବା ମାଛ ମାଂସ ଶାସ୍ତ୍ର ନିଷିଦ୍ଧ ।"

"ଦାଦି ଥକିଯିବେଣି। ଦିଅ, ଆଉ ଖଣ୍ଡେ ପାନ ଦିଅ। ପଙ୍ଖାଟା ବି ଛାଡ଼ିଦିଅ।"

ବାପା ପୁଣି ଆରମ୍ଭ କଲେ- "ବାସ୍ ଫେଲ ହେଲେ ତୁମେ ଦାୟୀ; ମୋତେ ଉସୁକାଇ ଏ ପର୍ଯ୍ୟନ୍ତ ଆଣିଲଣି। ମୋ ବାହାଘରରେ ଗୀତ ବନ୍ଧା ହୋଇ ନଥିଲା କିନ୍ତୁ ପୁନର୍ବିବାହରେ ଆମ ଗାଁର ଆଶୁକବି ବିଶୁ ଧୋବା ଗୋଟାଏ ବ୍ୟଙ୍ଗ ଗୀତ ବାନ୍ଧିଥିଲା। ମୋର ପୂରା ମନେ ନାହିଁ; ତେବେ ଶୁଣ କେଇପଦ।" ବାପା ସୁର ଧରି ଗାଇଲେ ଚଉପଦୀ-

ନନା, ଏ କି ବିବେଚନା
ଚାରି ଥାଉଁ କଲ ଊଣା ।
ପୁତ୍ର ପୁନର୍ବିଭାଘର କଲ ନନା ଫଗୁଣର
ଊଣିଶେ ଏକ ତାରିଖ ଶୁଭେ ମଙ୍ଗଳ ରଚନା ।୧।
ଅଇଲା ନବମ ଭାର ଭାର ବିଧିରେ ଅଠର
ସେ ଭାର ଦ୍ରବ୍ୟ କି ହେଲା ଦେଖିତେ ହେଲା ସପନା ।୨।
ବିଦେଶୀ ବସି ଆଶାରେ ରାତି ପାହିଲା ପିଣ୍ଡାରେ
କୁକୁଡ଼ା ଡାକୁ ନ ଡାକୁ ଚଳିଲା ଦିଗ ଦକ୍ଷିଣା ।୩।

"ଏହାର ଅର୍ଥ- "ହେ ବ୍ରାହ୍ମଣ ଗୋସାଇଁ, ତୁମର ଏ କି ବିଚାର ? ବୁଦ୍ଧି ଥାଇ (ଚାରି ଥାଉଁ) ଏ କି ଊଣା କଲ ? ପୁଅ ବାହାଘରରେ ନଅ ଭାର କିନିଷ ଆସିଥିଲା; ସେ ସବୁ କୁଆଡ଼େ ଉଭେଇ ଗଲା, ନଅ ଭାର ନୁହେଁ ଅଠର ଭାର ସହିତ ସମାନ। ରାତିଯାକ ଆଶାରେ ଉଜାଗରରେ ବସି ଏ ବିଦେଶୀ କୁକୁଡ଼ା-ଡ଼ାକକୁ ଶୁଣି ଘରମୁହାଁ ଧାଇଲା। ଫଗୁଣ ଊଣିଶ, ଇଂରାଜୀ ଏକ ତାରିଖ ଦିନ ବହୂଅଣା।"

ଏ ଘରୁ ପାଟି କରି କହିଲି "ବାପା, ତୁମେ ଘରମୁହାଁ ଧର, ତିନି ବାଜିଲାଣି। ବସ୍ ଫେଲ୍ ହେବ ନିଶ୍ଚୟ। ଆଚ୍ଛା ବାପା, କ୍ଷେତ୍ର ଓତା ମୁହଁରୁ ଆଉ ଗୋଟାଏ ଶିବୁର ଗୀତ ଶୁଣିଥିଲି। ତୁମର ମନେ ଅଛି ? "ଆଠଅଣା ଅଧା ସୁକି / ଧୁରା ଦୋଅଣିକି ରଖି, / ଯେ ବୋଲନ୍ତି ଦେଖି ଦେଖି / ତାକୁ ବୋଲାନ୍ତି ଗୁଆଁର" ଗୀତର ମୂଳ ଧାଡ଼ି, "ଆପୁ ଭକ୍ଷିଲ କିମ୍ପାଇଁ।"

ମୁଁ ଶିବୁ ବୁଢ଼ାର ଟୁଙ୍ଗିକି ଯାଇଛି ପିଲାଦିନେ। ଯୋଡ଼ା ବଉଳ ଗଛ ପାଖକୁ ତାର କୁଡ଼ିଆ। ସେ ଲୁଗା କାଚେ ନାହିଁ ! ସରଦାର ଘରୁ ଭରିଏ ଦି'ଭରି ଅଫିମ ଆଣି ଛୋଟ ଛୋଟ ପଇସାକିଆ, ଦିପଇସା ଗୁଲି କରେ ଓ ରେଜା ବେପାର କରେ। ସରଦାର ଘର ଓଜନରେ କିମିତି ଠକାନ୍ତି, ତାହା ଶିବୁ ନଜର କରି ଏ ଗୀତ ତାଙ୍କରି ଉଦ୍ଦେଶ୍ୟରେ ରଚିଥିଲା। ଓତା ବୁଢ଼ା କହିବାର ଶୁଣିଛି।

"ଦାଦି ତୁମେ ଆଉ ଅଫିମ କଥା କୁହନି, ନିଦରେ ଆମର ଆଖି ବନ୍ଦ ହୋଇ ଯାଉଛି।"

"ଆରେ ମଣି, ତୁମର ତ ସିନେମା ଦେଖା ଅଭ୍ୟାସ; ମୁଁ ସିମିତି ଗପ କୁଆଡୁ କହିପାରିବି; ଯେଉଁଠି ପ୍ରେମ ଥିବ, ଧସ୍ତାଧସ୍ତି ଥିବ। ମୋ ଗପ ମନଗଢ଼ା କଥା ନୁହେଁ, ଆମ ଜୀବନର କଥା, ଘରର କଥା, ଅଙ୍ଗେ ନିଭାଇବା କଥା। ବେଶ୍ ସେଇ ମୋଟା ବହିଟା ଆଣ ପଢ଼ିଦେବି। ଯେତେଯେତେ ଗାଲୁ ଗପ।"

"ରାଗିଯାଉଛ ଦାଦି ? କୁହ ଆଉ ଗୋଟେ ଘରୁଆ ଗପ, ଯାହା ଇଣ୍ଟରେଷ୍ଟିଙ୍ଗ ହବ।"

ଦାଦି ପୁଣି ଅନୁରୋଧ ରକ୍ଷା କରି ଆରମ୍ଭ କଲେ ଆଉ ଏକ କଥା। "ତୁମର କିକି ଆମ ଘରକୁ ଆସିଲା ପରେ ଆମେ ହେଲୁଁ ପାଞ୍ଚକଣ; ବାପା ମାଆ, ଆମେ ଦୁହେଁ; ଆଉ ପୁତୁରା ଉମାକାନ୍ତ। ଉମାକାନ୍ତ ମୋଠୁଁ ଆଠ ଦଶ ବର୍ଷସାନ। ମୋ ବଡ଼ ଭାଇ କୃଷ୍ଣଙ୍କ (ଯେ ବିଦ୍ୟାଧର ଦାସଙ୍କ ପୋଷ୍ୟପୁତ୍ର ହୋଇ ଯାଇଥିଲେ) ପୁଅ। ଅଳ୍ପ ବୟସରେ ମା' ବାପଛେଉଣ୍ଡ ପିଲାକୁ ବାପା ଘରେ ଆଣି ରଖିଲେ ଏବଂ ପାଳିଲେ। ଏଇ ସମୟରେ ଘରର ସ୍ଥାନ ଅଭାବ ହେବାରୁ ଦାଣ୍ଡ ଘରଟି ତିଆରି ହେଲା। ଉମାକାନ୍ତକୁ ବାପା କୌଳିକ କବିରାଜି ବିଦ୍ୟା ନିଜେ ପଢ଼ାଇଲେ। ମାଆ ମରିବା ପୂର୍ବରୁ ଉମାକାନ୍ତକୁ ବାହା କରାଇଥିଲା ଦାଣ୍ଡ ଆରପାଖର ନନ୍ଦ ଘରୁ। ଝିଅଟି ସୁନ୍ଦରୀ କାମାତୁରା। ଗାଁର ସାରୁପତ୍ରିଆ ଦଳଙ୍କ ନଜର ତାରି ଉପରେ।

ଉମାକାନ୍ତ ରସିକ ଟୋକା। ଗୋରା ସଫାସୁତୁରା। ବାପା ତାକୁ ଫଟା ରସିକ ବୋଲି ଡ଼ାକନ୍ତି। ନହେଲେ 'କାନ୍ତ', 'ବିଣିନି' ଚୁମ୍ବକ ନାଁରେ ସମ୍ବୋଧନ କରନ୍ତି। ସେ ମୁଣ୍ଡର ଚୂଳକୁ ବଙ୍କେଇ ବଙ୍କେଇ ସେଥିରେ ଯୁଇଫୁଲ ଖଞ୍ଜେ। ସୁର ଧରି 'ଶୁଣୀଳ ମାଳତୀ' 'ଅମର ବିଳାସ' ସୁଆଙ୍ଗରୁ ଗାଏ। ମାଛଧରାରେ ବ୍ୟସ୍ତ। ପ୍ରକୃତି ବି ଆଇଁଷିଆ। କବିରାଜି ବି ଆରମ୍ଭ କରିଛି। ମୁଁ ବିଲବାଡ଼ି କଥା ବୁଝେ। ବାପା ପୋଥି ଲେଖନ୍ତି, ତୁଳସୀପତ୍ର ନେଇ ମାଗିବାକୁ ଗାଁ ଗାଁ ବୁଲନ୍ତି।

"ଏ ବହୂଟି ଘରକୁ ଆସିବା ସଙ୍ଗେ ସମସ୍ୟା ବଢ଼ିଲା। ଚବିଶ ଘଣ୍ଟା ଯାକୁ ଜଗିବ କିଏ ? ସ୍ୱାମୀ ତା ଧନ୍ଦାରେ, ସ୍ତ୍ରୀ ତା ଧନ୍ଦାରେ। ସଞ୍ଜ ହେବାକୁ ଦୁଇଘଣ୍ଟା ଥିବ, ନୂଆ ବହୂ ବେଶବସନ ହେବାରେ ଲାଗିଯିବ। ଚୂଳକୁ ପାତେଇ, ମହମ ଦେଇ, ତେଲ ଚକଚକ କଲାପରେ ସିନ୍ଦୂର ମଣ୍ଡଳ କପାଳରେ ବସିବ, ତା' ଚାରିପାଖରେ ଛୋଟ ଛୋଟ ବିନ୍ଦୁ

ବସାଯିବ ଚନ୍ଦନ ସହିତ। ହାଡ଼କଟା ଗଳିର ଷ୍ଟୀଟିଏ ପରି ବହୂ ଆମର ଦିଶନ୍ତି। ଚାଳ, ବାଡ଼, ପିଣ୍ଡା, କୋଳି ଗଛ ଯେଉଁଠି ଦେଖିବ ସାରୁଟୋପିଆ ଦଳର ବରକନ୍ଦରାଜ। ରାତିଯାକ କବାଟ ଧଡ୍‌ଧଡ୍, ଜଞ୍ଜିର ଖଡ୍‌ଖାଡ୍। ନିଦ ଥରକୁ ଥର ଭାଙ୍ଗେ। ଦିନକର ଘଟଣା। ଶୁକ୍ଳ ପକ୍ଷର ପଞ୍ଚମୀ ଜହ୍ନ ଚାଳ ତଳକୁ ଖସିଯାଉଥାଏ। ଡ଼ିଙ୍କିଲାଞ୍ଜ ପାଖରେ କାନ୍ଥ କଣକୁ ଲାଗି ଚୁପଚାପ୍ ମୁଁ ବସିଥାଏ, ସାରୁଟୋପିଆଙ୍କୁ ଜଗି। ପଖାଳର ନିଶା ଧରି ଆସୁଛି। ଦେଖିଲି, ନିଜେ ଅଇଁଠା ବାସନ ଧୋଇବାକୁ ଅଗଣାର ସଜନାମୂଳକୁ ଛାୟାମୂର୍ତ୍ତି ପରି ତୁମ ଜିଜି ଆସୁଛି। ଉମାକାନ୍ତ ଓ ତାର ବହୂ ଶୋଇବାକୁ ଦାଣ୍ଡଘରେ ପଶିଲେଣି। ମୁଁ ଅପେକ୍ଷା କରୁଥାଏଁ ତୁମର ଜିଜି କବାଟ ତାଟି ବନ୍ଦକରି ଡ଼ାଁବୁଆ ଘରକୁ ପଶିଲେ ମୁଁ ଯିବି। ହଠାତ୍ ଭୁଷଭାଷ୍ କରି ଜୁଆଣ ମୂର୍ତ୍ତିଟିଏ ଧାଇଁ ଆସି ତୁମ ଜିଜିକୁ ଜାବୁଡ଼ି ଧରିଲା। ଅତର୍କ୍ଷା ହୋଇ ଯିମିତି 'ଧାଇଁଆସ' ବୋଲି ଚିତ୍କାର କରିଛି, ମୁଁ ସେମିତି 'କିଏବେ ଶଳା' କହି ଝାମ୍ପିପଡ଼ିଛି ପିଣ୍ଡା ତଳକୁ। ଲୋକଟା ବି ଜାଣିପାରିଲା, ଇଏ ସିଏ ନୁହେଁ, ତା' ନିଜ ନାନୀ ଏବଂ ଗୁହାଳ ଘରଦେଇ ଜୀବନ ବିକଳରେ ମକାବାଡ଼ି ଭିତର ଦେଇ ଅଦୃଶ୍ୟ ହୋଇଗଲା। ସକାଳୁ ଦେଖିଲା ବେଳକୁ ବେଁ ଓସାରରେ ବେକେ ଲେଖାଁ ବଢ଼ିଥିବା ମକାଗଛ ସବୁ ମଇପଟା ହୋଇ ଶୋଇଯାଇଛି। ପରେ ଜଣାଗଲା, ଟୋକାଟା ତାର ଦୂର ସଂପର୍କିତ ଆତ୍ମୀୟ ଭାଇ ଭାଗବତିଆ।"

"ତାକୁ ସେଇଠି ଛେଦା ଛେଦା କରି ହାଣି ପକାଇ ଦେଲନି ?" ସୁଧା ବଡ଼ ବଡ଼ ଆଖି କରି କହିଲା।

"ଶୁଣ, ତୁମର ଏଇ ବହୂଟିର ଗୁଣଗ୍ରାମ, ମହିମା; ଯାହା କହି ନପାରେ ବେଦବ୍ରହ୍ମା। ଥରେ ମୁଁ, ବସନ୍ତର ମାଆ, ଆଉ ବାପା ଗାଡ଼ିରେ ଚଢ଼ି ବୁଢ଼ାଖମାରୀ ଯାଉଥାଉଁ ଶଶୁରଙ୍କ ଶୁଧଘରକୁ ସାତ ଆଠ ଦିନ ପାଇଁ। ଦୋକାନ ଘରେ ଅଖାଏ ମୁଢ଼ି, ଦୁଇ ଚାରି ବିଡ଼ା ପିଆଜ, ଆଉ କଲକତୀ ପାହିଆ କୁନ୍ଦାଏ ଗୁଡ଼ ରଖିଦେଇ ଯାଇଥିଲୁଁ ପୁତୁରା ଓ ତା ବହୂ ପାଇଁ, ଯିମିତି ସେମାନେ ହଇରାଣ ହେବେ ନାହିଁ। ସାତଦିନ ପରେ ଆସି ଦେଖିଲା ବେଳକୁ ଘରର ଧ୍ୱସ୍ତମାସ୍ତ (ଧ୍ୱସ୍ତ-ବିଧ୍ୱସ୍ତ) ଅବସ୍ଥା। ଦୋକାନ ଘରେ ଘରର ସବୁ ଶେଯ, କାନ୍ଥ ତକିଆ ମୁଠୁଣିଏ ଉଚ୍ଚରେ ପଡିଛି, ଘରଯାକ ପିଆଜ ରସୁଣ ଚୋପା। ତକିଆରୁ ତୁଳା ବାହାରି ଘରଯାକ ଉଡୁଛି। ଗୁଡ଼କନ୍ଦା ଖାଲି, ଶୁଖିଲା ଠଣ୍‌ଠଣ୍। ଆଠ ଦିନ ଧରି ସାରୁଟୋପିଆ ଟୋକାଙ୍କ ନାଟକୀର୍ତ୍ତନ। ଲକ୍ଷ୍ନୌର ବାଇଜୀଙ୍କ ନାଚ- କବାଲିରେ ଘର ହପ୍ତାଏ କାଳ ଉଠିଥିଲା ପଡୁଥିଲା।"

"ତାକୁ ଧକ୍କା ଦେଇ ବାଡ଼େଇ ପିଟି ଘରୁ ବାହାର କରିଦେଲନି ?" ପୁଣି ପୁଧା ପଚାରିଲା ।

"ବାହାର କରିବା ଦରକାର ପଡିଲାନି । କଥାରେ ଅଛି 'କେତକି ଫୁଟିଲେ ବନେ ସକନୀ ଗୋ ବାସ ଚହଟଇ ନାହିଁକି ?' ଗାଁରେ ତ ବାସ ଚହଟିଥିଲା । ଏଥର ଗାଁ ବାହାରକୁ ଗଲା । ଆମ ଇଲାକାରେ ଜଣେ ସରଦାର ଥିଲା । ନାଆଁ ଖାରାପ ଦାସ । ତାଙ୍କର ନାଆଁ ଏମିତି ହେବାର କାରଣ, ସେ ଖରାପ କାମ କରି ସରଦାରି ପାଇଥିଲେ କୁଆଡ଼େ । ଶ୍ରୀନାଥ ଭଞ୍ଜ ମହାରାଜ ଖିଆଲରେ ଦିନେ କହିଲେ- "ଯିଏ ଲୋକ ଲଙ୍ଗଳା ହୋଇ ଅମ୍ବିକା ମନ୍ଦିର ଠାରୁ ଜଗନ୍ନାଥ ମନ୍ଦିର ପର୍ଯ୍ୟନ୍ତ ବଡ଼ ଦାଣ୍ଡରେ ଦଉଡ଼ିଯିବ ତାକୁ ସରଦାରି ଦେବି ।"

ସଙ୍ଗେ ସଙ୍ଗେ ଦାସେ ପିନ୍ଧାଲୁଗାକୁ ଫିଟାଇ, ମୁଣ୍ଡରେ ବାନ୍ଧି ଜଗନ୍ନାଥ ମନ୍ଦିରରୁ ଅମ୍ବିକେଇ ମନ୍ଦିର ଧାଇଁଲେ । ଆଖିବୁଜି ଧାଇଁଲେ ଲଜ୍ଜା କ'ଣ ? ତିନିଶ ମାଣ ଜମି ସହିତ ବଡ଼ ଇଲାକର ସର୍ଦାରି ସେ ପାଇଲେ । କାଳକ୍ରମେ ପକ୍କା କୋଠାର ଉଆସ ହେଲା । ମୋଟା ମୋଟି ହୋଇ ପେଟୁଆ ଲୋକ । ଦିହରେ ଜଡ଼ାତେଲ ଘଷାଇ, ନାହିରେ ସିନ୍ଦୂର ଦେଇ, ସେ ଗୋଡ଼କୁ ଛନ୍ଦି ଗାଁ'ମୁଣ୍ଡ ଦେବତାଳି ବଡ଼ ପୋଖରୀରେ ପ୍ରତିଦିନ ଛଅ ଘଣ୍ଟା ଭାସୁଥିଲେ । ପ୍ରବଳ ପରାକ୍ରାନ୍ତ ଲୋକ । ଜୁଆଣ ଜୁଆଣ ପୁଅମାନେ ବି ସେମିତି । ଜଣକର ବଳୁଆ ଘୋଡାଟାଏ ବି ଥିଲା । ଜଣେ ଶିମଳା ମହାଦେବ ମନ୍ଦିର ଗଡ଼ିଯାଇଛନ୍ତି । ସେମାନଙ୍କ ନାମ ଶୁଣିଲେ ଗର୍ଭିଣୀ ଗାଈ ବାଟ ଛାଡ଼ିଦିଏ । ଦୁର୍ବାର ଜଣକୁ ଜଣେ । ସ୍ତ୍ରୀଲୋକେ ସେମାନଙ୍କ ଡରରେ ଘରୁ ବାହାରନ୍ତି ନାହିଁ ।

"ତାଙ୍କରି ଲୋକେ ଦିନବେଳେ ସବୁ ଯୋଗାଡଯନ୍ତ କରି ମଝି ରାତିରେ ଆମ ଘରକୁ ଆସିଲେ । ପାଚେରୀ କଣରେ ବାପା ଲଗାଇଥିବା ଗୟ୍ଯକୋଳି ଗଛରେ ଚଡି ଚାଳରେ ବସି ସେମାନେ ସଙ୍କେତ ଦେଲେ । ବହୂରାଣୀ ଘର ଛାଡ଼ି ଦାଣ୍ଡକୁ ବାହରି ପଡିଲେ ।

"ଦାଦି, ପ୍ରୀତ୍ ନା ଜାନେ ରୀତ୍ ।"

"ଇଏ କି ପ୍ରୀତ୍ ବେ । କୁକୁର ବିରାଡ଼ିଙ୍କ ପ୍ରୀତ୍ ଯାଠୁ ଭଲ ।"

"ସିଏ ଯାହାହେଉ ଆମ ଆଗରେ କହିଲ, ଆଉ କେଉଁଠି କହିବ ନାହିଁ ଘରର, ବଂଶର ଏ କଳଙ୍କ କଥା ।"

"କୋର୍ଟ କଚେରୀରେ ପଡ଼ି ଦାଣ୍ଡରେ ଗଡ୍‌ଗଡ୍ ଯାହା ହେଲା, ତାକୁ କିଏ ଲୁଚେଇବ ? ବାପା ଓ ମୁଁ ଚପ୍‌ଚାପ ରହିଥାନ୍ତୁ । ହେଲେ ଗାଁ ଲୋକେ ମକଦମାପାଇଁ

ମତାଇଲେ। ସତକଥାକୁ ମିଛ କରିବାବାଲା ରାଧାଗୋବିନ୍ଦ, ମିଛ କଥାକୁ ସତ କରିବାବାଲା ଘାସି ମିଶ୍ର, ପୃଥୁନାଥ ମିଶ୍ର ଏବଂ ରାଧା ଷଡ଼ଙ୍ଗୀ ବାହାରି ପଡ଼ିଲେ। ଆମେ ବାପ ପୁଅ କୋର୍ଟ କଚେରୀକି ଡରି ରଫା କରିନେଲୁଁ। ଚାରିଶ ଟଙ୍କା ଆମେ ପାଇଲୁଁ। ଯେଉଁମାନେ ଆମକୁ ମୋକଦ୍ଦମାକୁ ମୁହାଁଇଥିଲେ ଏବଂ ସାକ୍ଷୀ ଦେବେ ବୋଲି କହିଥିଲେ, ସେମାନେ ଦୁଇଶ ନେଲେ। ତା'ପରେ ମନ ନ ମାନିବାରୁ ଆଉ ଟଙ୍କା ନଦେଲେ ଏକଘରିଆ କରିବେ କହିଲେ। ଆମେ ତାଙ୍କରି କଥାରେ କୁଳତ୍ୟାଗୀ ପ୍ରାୟଶ୍ଚିତ୍ତ କଲୁଁ ଏବଂ ଭୋଜନ ଓ ଦକ୍ଷିଣା ଦେଲୁଁ। ଲାଭ ଦଶ ବାର ଟଙ୍କା ମାତ୍ର ହେଲା। ବହୂରାଣୀ କେତେଦିନ ପରେ ବାରିପଦା ଗଲେ ଏବଂ ସେଠାରେ କନୌଜ ବିହାରୀ ଘରେ ରହି ବିହାରକୁ ଚାଲିଗଲେ।"

"କେତେ ମାସ ପରେ ମୋର ଶାଶୂଙ୍କ ପରାମର୍ଶରେ ଉମାକାନ୍ତ ପୁଣି ବାହାହେଲା ଛେଳିଆ ଗାଁରେ। ଖୁଡିଶାଶୂ ଓ ବହୂ ଅନେକ ବର୍ଷ ସୁଖରେ ରହିଲେ ଏବଂ ଆମରି ଘରେ ଥିଲାବେଳେ ସେମାନଙ୍କ ଦୁଇ ପୁଅ ଦୁଇ ଝିଅ ଜନ୍ମ ହୋଇଥିଲେ। ତୁମରି କିଜି କହୁଥିଲା- ବହୂର ପ୍ରତିଟି ଅଙ୍ଗ ପ୍ରତ୍ୟଙ୍ଗ ସୁନ୍ଦର ନହେଲେ ବି ମୁହଁଟି ସୁନ୍ଦର, କଥାରେ ମଧୁରତା, କଳୋହୀ ନୁହେଁ, ଠିକ୍ ଓଲଟା ପ୍ରକୃତିର ଅନ୍ୟ ବହୂଠୁଁ।"

"ଦାଦି, ଠିକ୍ ସିନେମା ଗପ ପରି ତୁମର କଥାଟା। ଧନ୍ୟବାଦ। ଯିବ ? 'ବେଦିଂ ବିଉଟି' ଦେଖିବାକୁ ? "ଆର୍ଦ୍ର ବସନା ସୁନ୍ଦରୀ" କି ? ରାତି ଅଧିଆ ଛବି।"

"ଧେତ୍ ! ମୋର ଘରକୁ ଯିବା ବନ୍ଦ କରିଦେଲ; ଖୁବ୍ ଚଲାକ୍ ତୁମେ ସବୁ।"



## ॥ ନଅ ॥

ଶ୍ରୀ ଶ୍ରୀ ପୁନଚନ୍ଦ୍ର ଭଞ୍ଜଦେବ ମହାରାଜାଙ୍କ ଅ୪ଙ୍କ ଶ୍ରୀମତ୍ସାଳିବାହନ ନୃପତେ ଶକାବ୍ଦ ୧୮୩୫..ସ୍ନ ୧୩୨୦ ସାଲ ସୌରମାନ ମିଥୁନ ମାସସ୍ୟ ତ୍ରୟୋଦଶ ଦିବସକୁ... କୃଷ୍ଣପକ୍ଷ ସପ୍ତମୀ ଗତେ ଅଷ୍ଟମୀ ତିଥୌ ବୃହସ୍ପତି ବାସରେ... ଶ୍ରୀ ମୟୂରଭଞ୍ଜ ଉପରଭାଗ ପ୍ରଗନା... ଶ୍ରୀ ଭୁଲାନାଥ ଶତପଥୀଙ୍କ ପ୍ରଥମ ପାଣିଗୃହିଣୀ ପ୍ରଥମ ଅଂଶେ ପୁତ୍ର ଜାତ....

(ମୟୂରଭଞ୍ଜକୁ ସ୍ୱତନ୍ତ୍ର ସାର୍ବଭୌମ ରାଷ୍ଟ୍ର ବୋଲି ବ୍ରିଟିଶ ସରକାର ସ୍ୱୀକାର କରଥିବାରୁ ତତ୍କାଳୀନ ମହାରାଜାଙ୍କ ସିଂହାସନାରୋହଣ ବର୍ଷକୁ ଅଙ୍କ ରୂପେ ଗ୍ରହଣ

କରାଯାଇ ଗଣକମାନେ ଜନ୍ମଜାତକ ପ୍ରସ୍ତୁତ କରିଥାଆନ୍ତି। ମିଶ୍ରଣ ପରଠାରୁ ପୁରୀ ରାଜାଙ୍କ ଅଙ୍କ ପ୍ରଚଳିତ। ୧୯୪୯ ପରେ ମୋର କନିଷ୍ଠ ପୁତ୍ରର ଜାତକରେ ପୁରୀ ରାଜାଙ୍କ ନାମ ଓ ଅଙ୍କ। ଅନ୍ୟ ସାତ ପୁତ୍ର କନ୍ୟାଙ୍କ ଜାତକରେ ପ୍ରତାପଚନ୍ଦ୍ର ଦେବଙ୍କ ନାମ)

ରାଜାଲୋକାରେ ଆମ ପରିବାରର ଗଣକ ଜଗବନ୍ଧୁ ଦାସେ। ସେ ଆମର ବନ୍ଧୁ ମଧ୍ୟ। ଗଣାଗୁଛା, ବିବାହ ମେଳ, ଜାତକ ତିଆରି କାମ ତାଙ୍କର ଉପୁରି, ସଉକି କାମ, ବିନା ପଇସାରେ। ତାଙ୍କର ଗଣନା ନିର୍ଭୁଲ। ହାତ ଦେଖି ଯାହା କହିଦେବେ ବା ଜାତକରେ ଯାହା ଲେଖିଦେବେ, ତାହା କପାଳ ଲିଖନ ଠାରୁ ନିର୍ଭୁଲ। ଜେଜେବୁଢ଼ା ତାଙ୍କ ଭୁଷା ଦୋକାନକୁ ଯାଆନ୍ତି, ସଉଦାପତ୍ର ଆଣନ୍ତି। ପାଖ ଘରର କୁଟୁମ୍ବ ହେଲେ ଲୋକନାଥ, ପୃଥୁନାଥ, ପୀତାମ୍ବର, ଗୋବିନ୍ଦ ଏବଂ ସୂର୍ଯ୍ୟାନନ୍ଦ। ପୀତାମ୍ବର ଓ ସୂର୍ଯ୍ୟାନନ୍ଦଙ୍କ ଛଡ଼ା ଅନ୍ୟମାନେ ଅପୁତ୍ରିକ। ସମସ୍ତେ ଖାନ୍‌ଦାନ୍; ଦି'ଜଣଙ୍କ ପକ୍କା କୋଠା। ଜଣେ ଫରେଷ୍ଟର, ଗଣ୍ୟମାନ୍ୟ ଲୋକ, ବିପୁଳ ସମ୍ପତ୍ତିର ଅଧିକାରୀ। ଜନୈକ ଖତୁ ଶତପଥୀ ଜେଜେବାପାଙ୍କୁ ପାଳିଥିଲେ, ପଇତା କରିଥିଲେ। ସେଇ ମୂଳ ଧନୀବଂଶରୁ ଖସିଆସି ଆମେ ଯେ କିମିତି ଏତେ ଦରିଦ୍ର ନିର୍ଦ୍ଧନ ହେଲୁଁ, ସେଇ କଥା ଭାବୁଛି।

ସୁପ୍ରଶସ୍ତ କପାଳରେ ତ୍ରିପୁଣ୍ଡ୍ରକ ଆଙ୍କି ଜଗବନ୍ଧୁ ଦାସେ ସକାଳେ ସକାଳେ ଦୋକାନରେ କାଷ୍ଠାସନରେ ବସିଥାନ୍ତି, ଜେଜେବାପା ପହୁଞ୍ଚିଗଲେ ଏବଂ କାଳବିଳମ୍ବ ନକରି କହିଗଲେ "ଜଗବନ୍ଧୁ, ଆମ ଭୁଳାର ପୁଅଟିଏ ହୋଇଛି; କାଲି ତା'ର ଏକୋଇଶା ଗଲା। ଲୋକନାଥ ବା ପୃଥୁନାଥ ଘରୁ ଖବର ପାଇଥିବ। ନିଅ, ଏଇ ଚିରକୁଟ୍‌ରେ ଭୁଳା ପୁଅ ଜନ୍ମକାଳର ଟିପଣା ଲେଖିଦେଇଛି। ଜାତକଟିଏ କରିଦେବ। କେବେ ଆସିଲେ ନେଇଯିବା।" ଜଗବନ୍ଧୁ କାଗଜ ଟୁକୁରା ନେଇ ପଇସା ରହୁଥିବା ଖଟୁଳିର ଖୋପରେ ରଖିଦେଲେ। "ବେଳ କାଳ ଦେଖି କରିଦେବି" କହିଲେ।

ଜେଜେ ତାପରେ ଦୋକାନ ସଉଦା କରିବସିଲେ। କହିଲେ, "ଜଗବନ୍ଧୁ, ମୋତେ ପାନ ଛଦାମେ, ଗୁଆ ଛଦାମେ, ଗୁଣ୍ଡି ଖଇର ମିଶାଇ ଛଦାମେ, ଆଉ ମୋଚିହାରୀ ଦୋକତା ଛଦାମେ; ଗାଏମୋଟ ପଇସାକର ସଉଦା ଦିଅ।" ଜଗବନ୍ଧୁ ବରାଦ ମୁତାବକ ସବୁ ସଉଦା ଗୋଟି ଗୋଟି କରିଦେଲେ। ସଉଦା ଜାନିରେ ବାନ୍ଧିସାରି ପଇସାଟି ଅଣ୍ଟିରୁ ବାହାର କରି ଜେଜେବାପା ଘରମୁହାଁ ହେବାକୁ ଯାଉଛନ୍ତି, ରହିଯାଇ ମନ୍ତବ୍ୟ କଲେ- "ଆଚ୍ଛା ଜଗବନ୍ଧୁ, ତୁମର ପାନପତ୍ର ସବୁ ବରକୋଳି ପତ୍ର ପରି, ଗୁଆସବୁ ଚଟିଆ ଡିମ୍ବ ପରି କାହିଁକି ?" ଜଗବନ୍ଧୁ ରାଗିଯାଇ କହିଲେ- "ପଇସାଟିକର ଗରାଖ। ଅଦାବେପାରୀ, କାହାକ ଖବର

ଜାଣି କି ଲାଭ ପାଇବ ? ତୁମେ ସିଧା କଲିକତା ଚାଲିଯାଅ; ସେଠି ପାଇବ କୁଲେଇ ପ୍ରମାଣ ପାନପତ୍ର; ଆଉ ପାହାଡ଼ିଆ କେନ୍ଦୁ ପ୍ରମାଣ କାହାକୀ ଗୁଆ।" ବୁଢ଼ା ଗାଁମୁହାଁ ଧରିଲେ। କେତେଦିନ ପରେ ବାପା ଆସି ଯେଉଁ ଜନ୍ମ ଜାତକଟି ନେଇଯାଇଥିଲେ, ତାହା ପ୍ରାୟ ଅକ୍ଷତ ଅବସ୍ଥାରେ ପ୍ରାୟ ଅଶୀବର୍ଷ ଧରି ରହିଛି। ସେଥିରେ ଯେତିକି ଅଂଶ କଣେ ପେସାଦାର ଗଣକ ସାହାଯ୍ୟରେ ପଢ଼ି ପାରିଲି, ତାହା ଉଦ୍ଧାର କରି ଏ ପରିଚ୍ଛେଦ ଆରମ୍ଭ କରିଛି।

ମୋର ଜନ୍ମଦିନ ଓ ତାରିଖ ହେଲା ଜୁନ୍ ଛବିଶ ଊଣିଶ ଶହ ତେର; ଆଷାଢ଼ ତେର ଦିନ ଗୁରୁବାର। ଜଗବନ୍ଧୁ ଦାସଙ୍କ ତିଆରି ଜାତକ ଆଉ ସରକାରୀ ପଞ୍ଜିକାର ପାର୍ଥକ୍ୟ ଅଛି। ମୋର ସରକାରୀ ଜନ୍ମଦିନ ମେଟ୍ରିକୁଲେସନ ସାର୍ଟିଫିକେଟ ଅନୁଯାୟୀ ଜୁଲାଇ ପହିଲା ୧୯୩୨ ଦିନକୁ ସତର ବର୍ଷ ପାଞ୍ଚମାସ। ପେନ୍‌ସନ୍ (ପଞ୍ଚାବନ ବର୍ଷରେ) ହିସାବ ବେଳକୁ ପନ୍ଦର ଦିନ କଟିଗଲା ଫେର।

ଜନ୍ମଜାତକ, ଜନ୍ମତାରିଖ କଥା କହୁଁ କହୁଁ ଜନ୍ମଦିନ କଥା ମନେପଡ଼ିଲା। ଗୁରୁବାର ରାତି ଅଧରେ ପ୍ରବଳ ବର୍ଷାସ୍ୱର ଭେଦି ଯେଉଁ ଶଙ୍ଖଶବ୍ଦ ବାସମୁଣ୍ଡି ବୁଢ଼ା ଘରୁ ଶୁଭିଲା। ତାହା ଯେ ଶୁଣିଛି ସେ ଅବଶ୍ୟ ଜାଣିଛି ଯେ ବୁଢ଼ାର ନାତି ହୋଇଛି, ଭୋଳାନାଥ ଶତପଥୀର ପୁଅ ହେଲା।

ପଡୁଆଁ ପୁଅ।

ବ୍ରାହ୍ମଣସାହିର କେହି ଉଠୁ ନଉଠୁଣୁ ଦକ୍ଷିଣ ଦିଗର ଡ଼ୋମସାହିରୁ ଏକାବେଳେକେ ବାଜା, ମହୁରୀ, ଢ଼ୋଲ, ଚଡ଼ଚଡ଼ି ବାଜି ଉଠିଲା ଏବଂ ସଡ଼କରୁ ଦାଣ୍ଡଦେଇ ଆମ ଘରଆଡ଼କୁ ମାଡ଼ିଆସିଲା ଛୋଟ ଶୋଭାଯାତ୍ରାଟିଏ। ଜାଡ଼ିଝାଁ, ଜାଡ଼ିଝଆଁ, ଖିଟିଖିଟି ଝାଁ। କି ଆନନ୍ଦ, କି ଉତ୍ସାହ, କି ଚିତ୍କାର ! ସମସ୍ତଙ୍କ ମୁହଁରେ "ବାସମୁଣ୍ଡି ବୁଢ଼ାର ନାତି ହେଇଛି।"

ସମସ୍ତଙ୍କ ଆଗରେ ଲାଲମୋହନ ତେଲେଙ୍ଗା। ଡ଼ୋମସାହିର ନେତା, ଗୁରୁ। ଧର୍ମାତ୍ମା ଲୋକଟି। ଗୋରୁମାଂସ ଖାଏ ନାହିଁ। ବ୍ରାହ୍ମଣ ଗୋସାଇଁ ଦେଖିଲେ "ପାଉଁଶ (ପାଆଁଶ) କୁହାର।" ଗାଁର ଡ଼ୋମମାନେ ବ୍ରାହ୍ମଣମାନଙ୍କ ଆଶ୍ରିତ। ତାଙ୍କ ଜମିଜାଇଗା ନେଇ ବଦଳରେ ଖଟଣି ଖଟନ୍ତି। ମକର ସଂକ୍ରାନ୍ତି ଦିନ ସକାଳେ ପାଣିଗ୍ରାହୀ ଓଗେର ବ୍ରାହ୍ମଣ ଗୋସାଇଁ ଭାଗୀଦାରମାନଙ୍କୁ ବାଜା ମହୁରୀ ବଜାଇ ବଜାଇ ରଥ ପୋଖରୀକି ଗାଧୋଇ ନିଅନ୍ତି। କାହା ଘରେ ପୁଅ ଜନ୍ମିଲେ ବାଜା ମହୁରୀ ବଜାଇ ଶୁଭ ମନାସନ୍ତି;

ମୁଢ଼ି ଚୁଡ଼ା ଜଳଖିଆ ଓ ଶିରିପା ମାଗନ୍ତି । ବିବାହ-ବ୍ରତରେ ବ୍ରାହ୍ମଣମାନେ ସେମାନଙ୍କୁ ଗୁଆ ଦେଇ ନିମନ୍ତ୍ରଣ କରନ୍ତି । ମଙ୍ଗଳକୃତ୍ୟମାନଙ୍କରେ ସେମାନଙ୍କର ଢ଼ୋଲ, ଚଡ଼ଚଡ଼ି ବାଜା, ମହୁରୀର ବନ୍ଦାଣ ହୁଏ, ଧୂପଦୀପ ନୈବେଦ୍ୟ ହୁଏ ଏବଂ ପିଠାପଣା ଶିରିପା ଦିଆଯାଏ ।

ବାଘମୁଣ୍ଡି ବୁଢ଼ାକୁ ଏ ସବୁ ପ୍ରମାଦ । କାହାକୁ କିଛି ଦେବାକୁ ପଡ଼ିଲେ ବୁଢ଼ା ଅଶ୍ୱସ୍ତି ଅନୁଭବ କରନ୍ତି, ଚିଡ଼୍‌ଚିଡ଼୍ ହୁଅନ୍ତି । ଦେଣା ପାଉଣା ସେ ନିଜେ ନିଷ୍ପତ୍ତି କରିବାପାଇଁ ଦଳର ମୁରବୀ ଲାଲମୋହନ ତେଲେଙ୍ଗା, ବୋଲକରା ଘାସି ତେଲଙ୍ଗା; ଚନ୍ଦାମୁଣ୍ଡିଆ ଝାମ୍ପଲା କୁଅଁର ଏବଂ ଅରକ୍ଷିତ ଗୋଛାଏତକୁ ଗୁହାଳ ଆଡ଼କୁ ଡ଼ାକିନେଇ କହିଲେ- "ଆଉ ବାଜା ଢ଼ୋଲ ଏତେ ଜୋରରେ ପିଟାପିଟି କରନାହିଁ, ଫାଟିଫୁଟି ଯିବ । ସେତିକି ଥାଉ । ମୁଁ ଜରୁରି କାମରେ ଭୂମିଜ ସାହି ଯାଉଛି । ଯିଏ ତୁମକୁ ମୁଢ଼ି-ଭୁଜା ଦେଇଥାନ୍ତା ବା ଚୁଡ଼ା ଉଖୁଡ଼ାର ବ୍ୟବସ୍ଥା କରିଥାଆନ୍ତା, ସେ ତ ନିଜେ ପୂଆତି । ନହେଲେ, ଏକୋଇଶିଆ ଗଲେ ସେ ସବୁ ବ୍ୟବସ୍ଥା କରିବା । ଶୁଭ ଦିନରେ ଖାଲି ହାତରେ ତୁମକୁ ଫେରାଇବି ନାହିଁ । ବାଡ଼ିରେ ଚାରିଚାରିଟା ସଜନାଗଛ ଅଛି । ଶାଗଗୁଡ଼ାକ ଏତେ ମିଠା ଯେ, ମୁଁ କାହାକୁ ଡ଼େଙ୍ଗା ବା ଡ଼ାଳେ ଦିଏ ନାହିଁ । ତୁମେ ଜଣକା ପାଞ୍ଚ ଛଅ ଡ଼େଙ୍ଗା ଲେଖାଏଁ ଘରକୁ ନେଇଯିବ, ତଳର ପାକଳ ଡ଼ାଳ ଦେଖି । ମୁଁ ଭୁଲାକୁ କହିଦେଉଛି, ସେ ପେଡ଼ିରୁ ଶିରିପା ବାହାରକରି ଲାଲମୋହନକୁ ଦେବ । ଯଦି ଆମ୍ବଡ଼ା କାହାରି ଦରକାର, ତେବେ ବାଣ୍ଟି ମିଶ୍ରର ତଳବାଡ଼ିରୁ ଯୋଡ଼ାଏ ଗଛରୁ ଯେତେ ସେଛା ଦରକାର ନେଇଯିବ; କେହି ପାଟି ଫିଟାଇବେ ନାହିଁ ।" ବାଣ୍ଟି ମିଶ୍ରଙ୍କ ସହିତ ତାଙ୍କର ପଟେ ନାହିଁ ।

ବାପାଙ୍କୁ ପାଖକୁ ଡ଼ାକି ଜେଜେ କହିଲେ, "ଭୁଲା, ମୁଁ କାଠିଆ ଭୂମିଜଘରକୁ ଯାଉଛି ଛେଳିଦୁଧ ଶାମୁକାଏ ଖଣ୍ଡେ ଆଣିବି, କଅଁଳା ଛୁଆକୁ ଢ଼ୋକେ ଢ଼ୋକେ ଦେଇଦେବା, ଏକୋଇଶିଆ ପର୍ଯ୍ୟନ୍ତ । ତୁ ଟିକେ କାନ୍ଦିରିକୁ ପଚାର, ଅଳେଇପେଡ଼ି ବାପଘର ଦେଇଥିଲେ କି ନାହିଁ; ଯଦି ଦେଇଥିବେ ତେବେ ରାନ୍ଧୁଣି ଘର କାନ୍ଥରେ ଯାହା ଯାହା ଲେଖିଛି, ଯୋଗାଡ଼ କରି ପେଡ଼ିରେ ରଖିଦବୁ ଗୋଟି ଗୋଟି କରି । ଅଁଳା, ବାହାଡ଼ା, କଷାଫଳ, ଶୁଣ୍ଠି, ପିପ୍ପଳୀ, ବାଇବିଡ଼ଙ୍ଗ, ମୁଥା ପରି ମାମୁଲି ଅନୁପାନ ମୋର କବିରାଜ ପେଡ଼ିରେ ଥିବ । ଦେଖିବୁ କଚିମ ଖୋଳ, ହରିଣ ଶିଙ୍ଗ, ରକ୍ତଚନ୍ଦନ ଅଛି କି ନାହିଁ ।" ବାପା କହିଲେ- "ତୁମେ ଏତେ ବ୍ୟସ୍ତ, ହଇରାଣ ହରକତ ହୁଅନି, ପୂଆତି ନିଜେ ଶଙ୍କାର ମାଆ, ଗଦାର ମାଆ, ପଧାନ ବୁଢ଼ୀଙ୍କି ପଚାରି ଉଚାରି ସବୁ ଖୋଜାଖୋଜି କରି ରଖିଛି ଆଗରୁ । ମାଆ ଥିଲାବେଳେ ସେ ଅଳେଇ ପେଡ଼ି କଥା ପ୍ରଥମେ ମନେ ପକାଇଥିଲା । ପୁରୁଣା

ଗୁଆଘିଅ, ମହୁ, ଅନ୍ତମୋଡ଼ା ଯୋଗାଡ଼ କରି ପୁଆତି ନିକେ ଅନ୍ତୁଡ଼ିଶାଳର ପାଖରେ ରଖିଥିବାର ମୁଁ ଜାଣେ।"

ଗୋପି ମିଶ୍ରଙ୍କ ଗଳିଦେଇ ବୁଢ଼ା ଭୂମିକ ସାହି ଆଡ଼କୁ ମୁହାଁଉଛନ୍ତି, ବ୍ରାହ୍ମଣସାହିର ଫେଚେକା ସାରୁଟୋପିଆ ଦଳ କିଳିକିଳା ନାଦ କରି ଦାଣ୍ଡକୁ ବାହାରି ପଡ଼ିଲେ ଠେଙ୍ଗା, ବାଡ଼ି, ଅର୍ଗଳ ତଡ଼ା, ହୁଡୁକା, ବାଉଁଶ ଯେ ଯାହା ପାଇଲା ହାତରେ ଧରି। ଏଗୁଡ଼ାକ ରାତିସାରା ଉଜାଗର ରହିଥିବାରୁ ଡ଼େରିରେ ଉଠନ୍ତି। "ହରିଆ ଅଜାର ନାତି ହେଇଛି" ସ୍ୱର ସମସ୍ତଙ୍କ ମୁହଁରେ। ଡ଼ୋମମାନେ ଯିମିତି ବାଜା, ଢ଼ୋଲ, ମହୁରୀ, ଚଡ଼ଚଡ଼ିରେ ଆନନ୍ଦ ଜଣାଇଲେ ସାରୁପତ୍ରିଆ ଟୋକାଏ ହୃଦୟର ଆନନ୍ଦ ଉଲ୍ଲାସ ପ୍ରକାଶକଲେ ଅଜାଙ୍କ ଚାଳ ବାଡ଼େଇ, ମିଠେଇ ଜଲିପି ପାଇବା ଆଶାରେ।

ଭୂମିକ ସାହିରୁ ଫେରି କେଜେ ଆସି ଯିମିତି ଦେଖିଲେ ଯେ ପ୍ରାୟ ଦଶହାତ ଚାଳରେ କୁଟା ନାହିଁ କି ରଳା ନାହିଁ, ସେ ନାନା ଅସଭ୍ୟ ଭାଷାରେ କହିଗଲେ। "ଶଳେ ଏ ସାରୁଟୋପିଆ ଦଳ ଗାଁ ଉଚ୍ଛନ୍ନ କରି ଦେବେ; ବହୂ ଝିଅ ଗାଁରେ ୟାଙ୍କ ଜାଳାରେ ରହିପାରିବେ ନାହିଁ। ଆଷାଢ଼ ମାସରେ କେଉଁଠୁ ବତା କୁଟା ପାଇବା ଯେ ଚାଳ ଛାଇବା। ଏଇ ଶଳେ ଦୋକାନ ଘରେ ପଶି ଶେଯପଟା ସବୁ 'ଭିଣଭିତାନ୍' କରି ଦେଇଥିଲେ। ଚାରି ପାଞ୍ଚଟା ଦିନ ବୁଢ଼ୀଖମାରୀ ଚାଲିଯାଇଥିଲୁଁ ଯେ, ଗୁଡ଼କୁଦା ଶେଷ କରିଦେଲେ। ଘରର ଭୁଆସୁଣୀକୁ ଉଜୁଡ଼େଇ ଘରୁ ବାହାରକୁ ନେଇଗଲେ। ଦିନଯାକ ତାସ ପିଟିବେ, ସଞ୍ଜ ହେଲେ ମୁଣ୍ଡରେ ସାରୁଟୋପି ଲଗାଇ ବାଡ଼ିବୁଦା ବୁଲିବେ। ଅନ୍ଧାରକଣା ମହିଆର ଘର ଛାତ ଛପର ଉଠାଇ ତାର ବହୂକୁ ଉଜାଡ଼ ଏଇମାନେ କରିଦେଲେ। ଶଳାଙ୍କୁ ଏକୋଇଶିଆକୁ ଯଦି ମୁଠାଏ ମୁଢ଼ି ଦେଇଛି ଦେଖିବ।"

ନରତା (ନଅଦିନ) ଆସିଲା। ମାଆ ଅନ୍ତୁଡ଼ିଶାଳରୁ ପଦାକୁ ବାହାରିଲା ଏବଂ ମାମୁଲି କାମଦାମ ବି କଲା। ଯେଉଁ ଚବିଶ ଘଣ୍ଟିଆ ଧୂନିଁଧୂଆଁ ବାହାରୁଥିଲା, ତାହା ବନ୍ଦ ହେଲା। ନାହି ସହିତ ଧୂନି ପାଉଁଶ ପଦାକୁ ଗଲା। ଧୂଆଁରେ ଶ୍ୱାସରୁଦ୍ଧ ହୋଇ କଅଁଳା ଛୁଆଟି ମଲା ନାହିଁ କିମିତି ତାହା ଗବେଷଣା ସାପେକ୍ଷ। ପରବର୍ତ୍ତୀ କାଳରେ ବାପାଙ୍କ ମୁହଁରୁ ଶୁଣିଛି, ମାଆର କିଛି କଷ୍ଟ ହୋଇ ନାହିଁ ମୋତେ ଜନ୍ମ ଦେବାରେ। ବୁଢ଼ା ପାନେ ଦି'ପାନ ମକରଧ୍ୱଜ ଘଟିତ ଔଷଧ ଦେବାରେ ପୁଆତିର ଦିହ ଶୀଘ୍ର ଶୁଖିଗଲା ଓ ସ୍ୱଚ୍ଛନ୍ଦରେ ବୁଲାବୁଲି କରିପାରିଲା। ଶୁଣିଛି, ପିଲା ଜନ୍ମ ହେବାକୁ ଦି ଚାରିଦିନ ଥାଏ, ସେ ଫର୍ଲଂ ଦୂର ବେଢ଼ାରୁଆ, ରଥ ପୋଖରୀ ତଳ ଚୁଆରୁ ଗରାରେ ପାଣି କାଖରେ ଆଣିଛି। ନଅମାସ ହେବା ଯାକେ ଢ଼ିଙ୍କିରେ ଚୂନା କୁଟିଛି।

ପୁଅଝିଅଙ୍କୁ ଦେଖିବାପାଇଁ ଆସିଥିଲେ ଗିରୀଶର ମାଆ ଓରଫ କ୍ଷେତ୍ର ଓ ତାଙ୍କ ସ୍ତ୍ରୀ, ଶଙ୍କର ମାଆ, ଗଦା ଷଡ଼ଙ୍ଗୀର ମାଆ, ଘାସିର ମାଆ (ଯାହାଙ୍କ ଶାଗୀଟି ଟାମ୍ ଟାମ୍ କହେ ରାମରାମ ପରିବର୍ତ୍ତେ), ପୃଥୁର ମାଆ। ଏମାନେ ସମସ୍ତେ ଶିଶୁ ଚିକିତ୍ସା ଡ଼ିପାର୍ଟମେଣ୍ଟର। ଧାଈମାନଙ୍କ ମାଲିକାଣୀ ଉର ବୁଢ଼ୀ। ତାଙ୍କର ସ୍ୱାମୀ ନାହିଁ, ପିଲାଝିଲା ନାହିଁ। ଅଛି ଗାଁ ମଝିରେ ଗୋଟିଏ ଟୁଙ୍ଗୀ। ଥରେ ତହସିଲଦାର ଆସି ତାଙ୍କ ପ୍ରକୃତନାଆଁ ଗାଁ ଜାଣିବାକୁ ଚାହିଁଲେ। କେହି କହିପାରିଲେ ନାହିଁ। ଯେଉଁ ଦୁଇ ଭାଇ ସତ କଥାକୁ ମିଛ କୋର୍ଟକଚେରୀରେ କରିପାରନ୍ତି, ସେମାନଙ୍କ ମଧ୍ୟରୁ ସାନ ରାଧାକାନ୍ତ ମିଶ୍ରେ ସଦମ୍ଭେ କହିଲେ- "ଉର୍ବଶୀ ବେୱା" ଲେଖି ଦିଅନ୍ତୁ। ସେ ଯାହେଉ, ଉରବୁଢ଼ୀ ଯିମିତି ହେଉ ଜନ୍ମ କରାଇ ପାରନ୍ତି। ଯଦି ମାଠିଆଏ ଜଡ଼ାତେଲ ଘଷାଘଷି ପରେ ପିଲାଝିଲା ନ ବାହାରିଲେ, ତେବେ ସେ ପରସେପ ଡ଼େଲିଭରି ମଧ୍ୟ କରିପାରେ। ନଖ ବଢ଼ି ରହିଥିବା ପାପୁଲି ଦୁଇଟିକୁ ପୂରାଇ ଛୁଆକୁ ପେଟ ଭିତରୁ ଟାଣି ଆଣିପାରେ। ଉରବୁଢ଼ୀ ଏଇ କାମ କରୁଥିବାରୁ ତାପାଖ ଦେଇ ଚାଲିଗଲେ ରସୁଣିଆ ଗନ୍ଧ ଦିହରୁ ବାହାରେ। ପିଠାପଣା କରିବାରେ ସେ ଆଗ୍ରହୀ। କେହି ନଡ଼ାକିଲେ ବି ସେ ଆପେ ଆପେ ଚାଲିଯାଏ ଲୋକଙ୍କ ଘରକୁ। ନର୍ସ ଓ ସେବିକା ରୂପରେ ଉର୍ବଶୀ ଅଦ୍ୱିତୀୟା। ଷ୍ଟିଚ୍ ନାହିଁ, ସେପଟିକ୍ ନାହିଁ। ମେଜିକ୍ ହାତ। ସ୍ୱାଭାବିକ ନହେଲେ ମଧ୍ୟ ନିରାପଦ, ସହଜ ପ୍ରସବକ୍ରିୟା। କେକେବାପା, ଚିଫ୍ ମେଡ଼ିକେଲ ଅଫିସର ଥିବାରୁ "ଘଡ଼ି ଘଡ଼ି ତାଙ୍କ ଶମନତେଜ।"

ଆମେ ସମସ୍ତେ ଭୂମିଷ୍ଠ ହୋଇଛୁ, ଅର୍ଥାତ୍ ଜନ୍ମିଲା ମାତ୍ରେ ଛୁଅଦିଆ ଭୂଇଁରେ ପଡ଼ିଛୁଁ। ହାଣ୍ଡିଶାଳରେ ବା ଢ଼ିଙ୍କିଶାଳରେ ପୁଅଝିଅ ବି ଛୁଅଦିଆ ଭୂଇଁରେ (ଥାଳି ବା ପତର ନିଷେଧ) ଥଣ୍ଡା ନାଲି ବଗଡ଼ା ଚାଉଳର ଭାତ ଖାଇଛି କୁନ୍ଦୁରି ସିଝା, ଆଳୁ ସିଝା ସହିତ। ଡ଼ାଲି ମନା, ଶାଗ ମନା, ଖଟା ମନା, ମାଛ ମନା, ସବୁ ମନା, ଦୁଧ ଦହି ବି। ପେଟ ଯେତେ ଖାଇପାର। ବାରଣ ନ ମାନିଲେ ଛୁଆର ପେଟ କାଟିବ, ମୋଡ଼ିହବ, ଫମ୍ପେଇବ, ଅମ୍ବଳ ହବ, ଶାଗୁଆ ଛିଟିଛିଟିଆ ପତଳା ଝାଡ଼ା ହେବ। ମାଆର ନାଡ଼ ଉପରେ ଛୁଆର ଜୀବନ ନିର୍ଭର କରୁଛି ପରା।

କିନ୍ତୁ କେକେବାପା ମୋ ତଳ ସାନ ଭଉଣୀକୁ ଶମନ ହାବୁଡ଼ରୁ ବର୍ତ୍ତାଇ ପାରିଲେ ନାହିଁ। ଦୁଇ ଅଢ଼େଇ ବର୍ଷର ଛୁଆଟି। ନାଆଁ ତାର ଥିଲା ନରଦା। ମଳିଛିଆ ରଙ୍ଗ। ମୋ ପଛେ ପଛେ ଧାଇଁଥାଏ, ପିଠି ବଙ୍କେଇ ତାର ପେଟ ଫମ୍ପାଇଲା। ଯେତେ ଯେତେ ଔଷଧ ଅନୁପାନ ଜାଣିଥିଲେ, ସବୁ ପ୍ରୟୋଗ କଲେ ବୈଦ୍ୟରାଜ। ପାରିଲେ ନାହିଁ। ମୋର ମନେ ପଡୁଛି, ପେଟ ତାର ଫାମ୍ପିଯାଇଛି, ଅଣ୍ଟାରେ ରେଶମୀ ସୂତା, ମାଆ କୋଳରେ ଶୋଇଛି।

ମାଆ କାନ୍ଦୁଛି, ବାପା କାନ୍ଦୁଛନ୍ତି, କେଜେ ମୁଣ୍ଡରେ ହାତଦେଇ ବସିଛନ୍ତି। ସକାଳେ ବାପା କୋଦାଳିଟାଏ ହାତରେ ଧରି ବାଘିଆଶୋଳ ବଣ କଡ଼କୁ ଚାଲିଗଲେ ଭଉଣୀଟିକି ଛାତିରେ ଜାବୁଡ଼ିଧରି। ଗୋଟାଏ ମହୁଲ ଗଛ ମୂଳରେ ପୋତିଦେଲେ। ସେଇଟା ବିଧି। କ୍ଷୀର ଝରୁଥିବା ଗଛ ମୂଳରେ ପୋତିଲେ ସାତଦିନ ଧରି ଟୋପାଏ ଲେଖାଏଁ କ୍ଷୀର ଦେଇହବ। ସେ ମା' କ୍ଷୀର ଖାଉଥିଲା ତ ! ଅଭାବ ଜାଣି ପାରିବନି।

ମା' ପାଖରୁ ଶୁଣିଛି, ବାପା କୁଆଡ଼େ ମୋତେ ନରତା ଦିନ ପ୍ରଥମେ ଦେଖିଲେ। ମା' ଛୁଆକୁ ଗାଧୋଇ, ନିଜେ ମଧ୍ୟ ଗାଧୋଇ ବସିଥାଏ ଛୁଆକୁ କୋଳରେ ଧରି। ବାପା ପାଖକୁ ଯାଇ ନିକିଟେଇ ପୁଅକୁ ଦେଖିଲେ। ମାଆ ଆଡ଼କୁ ତା'ପରେ ଚାହିଁ ପଚାରିଲେ- ଛୁଆର କାନଟା ଠୋଲା ହେଲା କିମିତି। ମା' କହିଲା, ଛୁଆ ଦିହରେ ଥିଲାବେଳେ ଗ୍ରହଣ ହେଲା। ଚୁପ୍‌ଚାପ୍ ଧୀରସ୍ଥିର ହୋଇ ଗ୍ରହଣ କାଳରେ ନ ବସି, ମିଳିମିଳାପାଇଁ ବିଛାହୋଇଥିବା ନିମପତ୍ରରୁ ଗୋଟାଏ ଧରି ଠୋଲା କରୁଥିଲି। ଛୁଆଟା ସେଥିପାଇଁ ଗ୍ରହଣିଆ ହୋଇଯାଇଥିବ। ବାପା ପୁଣି ପଚାରିଲେ- "ଛୁଆର ଆଖିଟା ଟେରା ହୋଇନାହିଁତ ? ମତେ ସେମିତି ଦିଶୁଛି। ମୋର ବାଆଁ ଆଖିଟା ସାମାନ୍ୟ ଟେରା ତ।"

"ତୁମେ ଡ଼ରନି, ସବୁ ଜନ୍ମହେଲା ଛୁଆଙ୍କ ଆଖି ସେମିତି। ହଉ ଆମର ଛୁଆ ଟେରା, ଠୋଲାକାନିଆ। ପାରେଶ୍ୱର ମହାଦେବ ଯାହା ଦେଇଛି, ସେଇ ଢ଼େର।"

ଏକୋଇଶିଆ ଆସିଲା। କେଜେବାପା ଗୟାରୁ ଆଣିଥିବା ରୁଦ୍ରାକ୍ଷମାଳ ବେକରେ ଲମ୍ବାଇ ଗାଁ ପଶ୍ଚିମ ମୁଣ୍ଡ ପାରେଶ୍ୱର ମନ୍ଦିରରେ ଟିକିଏ ଦୁଧ ଢ଼ାଳି, ପଞ୍ଚାମୃତ ଭୋଗ ଦେବାକୁ ଏବଂ ସହସ୍ର କୁମ୍ଭଟିଏ ମନାସିବାକୁ ଚାଲିଗଲେ। ଗେଡ଼ା ବୁଢ଼ାଟି, ଛାତି ମୁଣ୍ଡର ଚୂଳ ଝୋଟପରି ଧଳା, ମୁଣ୍ଡରେ ଜଟ, ଅଗରେ ଗଣ୍ଠି, ଦିହଯାକ ତିଲକ ମାଟିର ତିଳକ। ଧଳା ଦାଗମୟ ବାଘୁଆ ଦିହ। ସାକ୍ଷାତ ବାଘମୁଣ୍ଡି ବୁଢ଼ା। "ଅଇଲେ ଦେଖ ଭୋଳା ବାପାଙ୍କ ଈଶ"- ତାଙ୍କରି ସୁଭଦ୍ରାହରଣ ସୁଆଙ୍ଗର ଧାଡ଼ିକୁ ମନେପକାଇ ଦିଏ।

ବାପା ତେଣେ ଦୁଆର ଦୁଆର ବୁଲି ମୁରବୀମାନଙ୍କୁ କହିଦେଇ ଆସିଲେ, ଆଜି ପୁଅର ଏକୋଇଶିଆ, ସତ୍ୟନାରାୟଣ ପୂଜା, ପାଲା ହବ। ଛୁଆପିଲା ସମସ୍ତେ ଆସିବେ। ବାପପୁଅ ଦୁହେଁ ଆଖପାଖ ଗାଁ ବାଘଝମ୍ପା, ପଢ଼ାଣିଆ, ଗୋଷାଣିପାଳ, ଖଂସାପାଳରୁ ଖୋଜିଖାଜି ମାଗିଯାଚି କେତେଫଣା ପାଚିଆ କଦଳୀ ଯୋଗାଡ଼ କରିଥିଲେ। ସମୁଦ୍ରକୁ ଶଙ୍ଖେ ପଣା। ଚାଉଳ ଚୂନା ଢ଼ିଙ୍କିରେ କୁଟା ହେଲା। ମାଆ ଆଣିଥିବା ଛୋଟ ପିତଳ ହଣ୍ଡାରେ ହଣ୍ଡାଏ ଶିରଣି ହେଲା। କଦଳୀ ଚୋପା ଛଡ଼ା ହେବା ପରଠାରୁ ଛୁଆମାନଙ୍କ

ଆଗି ସେହି ହଣ୍ଡା ଉପରେ। ଅନ୍ୟମାନଙ୍କ ନାକ କଦଳୀ ଓ କର୍ପୂର ମହକରେ। ତ୍ରିନାଥମେଳାପାଇଁ ତିନୋଟି ପଇସା ସିନା, ସତ୍ୟପୀର ପୂଜା କିନ୍ତୁ ଖର୍ଚ୍ଚସାଧ୍ୟ।

ମାଆ ସିନ୍ଦୂର କଜଳ ହୋଇ, ଗହଣାଗାଣ୍ଠି ନାଇ, ବାପଘରୁ ଆଣିଡିବା ଉପୁରାଣ ମଠାଶାଢ଼ୀ ପିନ୍ଧି (ଏଇ ଶାଢ଼ୀ ପିନ୍ଧି ସେ ସୁଦଶା, ଗୁରୁବାର ଲକ୍ଷ୍ମୀପୂଜା କରେ), ପିତଳ ହାତୀ ପେଟରେ ପଇସାଏ ଦୁଇପଇସା ଗଳାଏ। ସେ ସବୁ ପଇସା କେବେ କେମିତି ଅଭାବ ପଡ଼ିଲେ ବାପା କାଢ଼ି ନିଅନ୍ତି। ପୂଜାସ୍ଥଳୀରେ ଝୋଟି ଲେଖିଲା। ବାପା ଓଦା ଗାମୁଛା ପିନ୍ଧି ରଘୁନାଥ ମୂର୍ତ୍ତିକି ଖଟୁଲିରୁ ଉଠାଇ ପିଢ଼ାରେ ରଖିଲେ, ଶାଳୁ କନା ଉପରେ କେକେ ଭାବ ଗଦ୍‌ଗଦ୍ ହୋଇ କହିଲେ, "ଏ ମୂର୍ତ୍ତିକୁ ଗୋମତୀ ନଦୀର ପୋକମାନେ ପଥରରୁ କାଟିଛନ୍ତି। ଚକ୍ରଚିହ୍ନ ଅଛି।" ପିଢ଼ା ତଳକୁ ଦନା ବା ଖଲି ଉପରେ କାଛକଟା ଖଣ୍ଡାଟି ଥୁଆ ହୋଇଥାଏ। ସତ୍ୟପୀର ପୂଜାପରା। ହିନ୍ଦୁ-ମୁସଲମାନଙ୍କ ମିଳିତ ପୂଜା। ଯେଉଁ ପାଲା ପଢ଼ାଯାଏ ତାହା ବଂଗଳା, ଓଡ଼ିଆ ଭାଷାର ବିଚିତ୍ର ସମାବେଶରେ ଲେଖା। "କହେ କବିକର୍ଣ୍ଣ ପାଲା ହଇଲ ସଂପୂର୍ଣ୍ଣ; ଆନନ୍ଦ ସାଗରେ ହରିବୋଲ ସର୍ବଜନ।" ପିଲାମାନେ ଶୋଇଯିବେ ବୋଲି ସବୁଠୁ ଛୋଟ ପାଲା ହାରାଚାନ୍ଦ ପାଲା ପଢ଼ାଗଲା। ସାରୁପତ୍ରିଆ ଟୋକାଏଁ ପଦ୍ମୁଛି ଏମିତି ବିଭ୍ରାଟ କଲେ ଯେ, ପାଲା ଦଶ ପନ୍ଦର ମିନିଟରେ ସରିଗଲା। ଶିରିଣିରେ ଗଞ୍ଜା ଭାଙ୍ଗ ପଡ଼ି ନଥିବାରୁ ସେମାନେ ବିକ୍ଷୋଭ କରୁଥିଲେ।

ନାଆଁ ଦେବାରେ ଡେରି ହେଲା। ବାପା କହିଲେ "ଗାଁରେ ସମସ୍ତଙ୍କ ନାଆଁ ଠାକୁରଙ୍କ ନାମ। ଠାକୁର ନାଆଁ ଛଡ଼ା ଯାହା ଦବ ଦିଅ।" କେକେ ରାଗିଗଲେ, କହିଲେ- "ଦେବତା ନାଁ ଯଦି ଗନ୍ଧାଉଛି, ତେବେ ପଶୁର ନାଁ ଦିଅ। ଜାମ୍ବବାନ୍, ହନୁମାନ୍, ବଳିବର୍ଦ୍ଧ।" ସାରୁଟୋପିଆ ଦଳ କହିଲେ, "କାମଦେବ ଦିଅ, ନହେଲେ ମଦନ ବା ଲିଙ୍ଗରାଜ।" ବାପା ଉତ୍ୟକ୍ତ ହୋଇ କହିଲେ, "ମୋ ପୁଅର ନାମ ହବ ବସନ୍ତ କୁମାର।" ପୂଜକ ବାଘ୍ମ ଶତପଥୀ (ବିରାଟ ଗୁଣୀ, ଗୋଖୁର ହାତରେ ଧରି ପାରନ୍ତି, ସାପକାଟି ଫୁଙ୍କି କରି ଭଲ କରିଦେବେ) ଛୁଆର କାନରେ ତିନିଥର 'ବସନ୍ତ' କହିଦେଲେ। ଏକୋଇଶିଆ ନାମକରଣ ଉତ୍ସବ ଶେଷହେଲା। 'ହରିବୋଲ' କହିଲେ କେକେ ବଢ଼ପାଟିରେ।



## ॥ ଦଶ ॥

ଏକୋଇଶିଆ ପରଦିନ ସକାଳେ ବାପା ରାଜାଲୋକା ଚାଲିଲେ, ଜଗବନ୍ଧୁ ଦାସଙ୍କ ଘରୁ ପୁଅର ଜାତକ ଆଣିବାପାଇଁ। ଅପୂର୍ବ ଅନିନ୍ଦ୍ୟ ଅକ୍ଷରରେ ଦାସେ ଯେଉଁ ଜାତକ କରିଥିଲେ, ତାହା ଲିଖନ ସାହାଯ୍ୟରେ ତାଳପତ୍ରରେ ଲେଖା ଏବଂ ବୁଢ଼ା ଆଙ୍ଗୁଳିରେ ଯଥେଷ୍ଟ ବଳ ବା ଜୋର ନଥିବାରୁ ଅକ୍ଷରଗୁଡ଼ିକ ଏଣେତେଣେ ବେବାଗିଆ ହୋଇ ଯାଇଛନ୍ତି। ଏବେ ତ କରଣୀ ଛଟାଅକ୍ଷର, ଦୁଜେ ବେକଲ୍ଲୋଲ। ଜନୈକ ଆଧୁନିକ ଗଣକ ସାହଯ୍ୟରେ ଯେତିକି ପଢ଼ାହେଲା ସେତକ ଦେଇ ପୂର୍ବ ପରିଚ୍ଛେଦଟି ଆରମ୍ଭ ହୋଇଛି। "ଶ୍ରୀ ପୂର୍ଣ୍ଣଚନ୍ଦ୍ର ଭଞ୍ଜଦେବ ମହାରାଜାଙ୍କ ୪ ଅଙ୍କ.....।"

ଜେଜେ ପଚାରିଲେ- "ପୁଅର ଜାତକ ଦେଖି ଜଗବନ୍ଧୁ ଭଲମନ୍ଦ କିସ କହିଲେ ?" ବାପା କହିଲେ- "ଏମିତି ଜାତକ ଖଣ୍ଡମଣ୍ଡଳରେ କୌଣସି ପୁଅଝିଅର ସେ କରି ନଥିଲେ। ଜାତକରୁ ଯେଉଁ ଫଳ ସେ ଦେଖିଲେ, ସେଥିରୁ ଜାଣିଲେ, ପୁଅର ପାଠ ଛଡ଼ା ଆଉ କିଛି ହେବ ନାହିଁ। 'ଯତ୍ର ଆୟ୍ ତତ୍ର ବ୍ୟୟ୍'- ଅର୍ଥ ଆୟ୍ ବ୍ୟୟ୍ ସମାନ; ଦୁଃଖ ଯେତେ ସୁଖ ସେତେ। ଖୁବ୍ ଚଲାକ ହବ, ଖୁବ୍ ମୂର୍ଖ ବୁଦ୍ଧିହୀନ ବି ହେବ ବଡ଼ କାଳକୁ, ଦୁଃଖଆନନ୍ଦ ହସ କାନ୍ଦ ସମାନ ସମାନ।" ବୁଢ଼ା ଜହିଲେ- "ସାରୁଟୋପିଆ ନହେଲେ ହେଲା।" ମାଆ କହେ- ତା କୁନିପୁଅର ମୁହଁ ତା ବାପାଙ୍କ ପରି; ବାପା କହନ୍ତି ପୁଅର ମୁହଁ ତା ମାଆଙ୍କ ପରି ଲମ୍ବାଳିଆ ହେବ; ଜେଜେ କହନ୍ତି ନାତିଟା ମାଙ୍କଡ଼ମୁହାଁ, ପାତିମୁହାଁ ହେବ।

ଯାହା ମୁହଁ ପରି ଠୋଲାକାନିଆର ମୁଁହ ହେଉନା କାହିଁକି, ପାଣ୍ଡଡ଼ା ଗାଁରେ ନହେଲା ନାହିଁ ଶତପଥୀ, ପରିବାର, ବଂଶରେ ଏମିତି ଚାଞ୍ଚଲ୍ୟ ସୃଷ୍ଟି ଓ ସଂଚାର କରିଥିଲା- ଯାହା ପରବର୍ଷ ଆରମ୍ଭ ହେବାକୁ ଥିବା ମହାସମର ବା ୧୯୧୭ ସାଲ୍‌ର ସାନ୍ତାଳ ମେଳି କରି ପାରି ନଥିଲା। ମହାସମର କହିଲେ- ପାଣ୍ଡଡ଼ାରେ ଗୋବିନ୍ଦ ନନ୍ଦଙ୍କ ଦୋକାନକୁ କୃତ୍ତିବାସ ପୋଷ୍ଟମେନ୍ କରିଆରେ ବାଙ୍ଗିରିପୋଷି ଦେଇ ଆସୁଥିବା ସାପ୍ତାହିକ ବଙ୍ଗଳା 'ହିତବାଦୀ' ପତ୍ରିକାରେ କେତୋଟି ଯୁଦ୍ଧର ଛବି। ସାନ୍ତାଳମେଳି କହିଲେ- ବାରିପଦା ହାଇସ୍କୁଲର ସ୍ୱନାମଧନ୍ୟ ବଙ୍ଗାଳୀ ଏସିଷ୍ଟେଣ୍ଟ ହେଡ଼ମାଷ୍ଟର ଇନ୍ଦୁଭୂଷଣ ଦାସଗୁପ୍ତଙ୍କ ଦଶମ ଶ୍ରେଣୀ ଛାତ୍ରଙ୍କୁ କହିବା ମୁତାବକ "ସାନ୍ତାଲରା ଗୁଜୁରି ମାର୍କେଟର (ପୂର୍ବେ ଜେଲଖାନା ଥିଲା) ନରସିଂ ମାରୱାଡ଼ିର ଯତ ସବ୍ ଆଟା, ନୁନ୍ , ଜିରା ପାଶେର କୂଆର ଭିତରେ ଫେଲେ ଦିଲ।" ଗାଁ ଗଣ୍ଡାରେ ଯୁଦ୍ଧ ବା ମେଳିର ପ୍ରଭାବ କାହିଁ ? ବିଲକୁ ଯଥାବିଧି ହଳ, ଦାଆ ଗଲା। କୂଅ-ପୋଖରୀକୁ କଳସୀ-ହାଣ୍ଡି ଗଲା। କିନ୍ତୁ ଏ ପିଲାଟି

(‘ଏ ପିଲାଟି କିଏରେ / ଦେଖିଲେ ମୁଖ, ଘୁଞ୍ଚଇ ଦୁଃଖ / ଲବଣୀ ପିତୁଳାଟିଏରେ’- ଏଇ ଗୀତ ଗାଇ ମାଆ ଖେଳାଏ) ଶତପଥୀ ବଂଶର ପ୍ରଦୀପ, ପୁତ୍ ନାମକ ନରକରୁ ପିତା-ମାତାଙ୍କ ତାରକ, ବଂଶ ଉଦ୍ଧାରକ। ଭାବି ଆଶା, ଆକାଙ୍‌କ୍ଷାର ପ୍ରତୀକ। ପୁଅ ଦିହର ସ୍ପର୍ଶ ଚନ୍ଦନଠାରୁ ଅଧିକ ଶୀତଳ, ସୁଗନ୍ଧମୟ; ଶ୍ଲୋକରେ ଅଛି- ଜେଜେ କହନ୍ତି ଥରକୁ ଥର।

ଶତପଥୀ ବଂଶର ଅଖଣ୍ଡ ପୁଣ୍ୟର ସଦ୍ୟପ୍ରାପ୍ତ ଏଇ ଅମୂଲ୍ୟ ଫଳକୁ ମାଆ ରକ୍ତ ଦେଇ, ବାପା ଝାଳଦେଇ ଏବଂ ଜେଜେ ଲାଳଦେଇ (ବୁଢ଼ାମାନଙ୍କର ‘ଲାଳାଃ ସ୍ରବନ୍ତି ନିତ୍ୟଶଃ’) ବଢ଼ାଇବାକୁ ଲାଗିଲେ। ସେ କାଳରେ ଥିଲା ନା ଜନ୍ମଘୁଁଟି, ନା ହୋମିଓପ୍ୟାଥି, ନା ଏଲୋପ୍ୟାଥି। ଥିଲା କେବଳ ‘ଜାର୍‌ମଲିନ’ : ଜ୍ୱରର ଯମ; ‘ଫିଭାର୍ କିଓର୍’ : କୁଇନାଇନ୍ ଗୁଣ୍ଡ ବା ବଡ଼ି, ଆଉ ଚର୍ମରୋଗପାଇଁ- ଡ଼ୋଲ ଏଣ୍ଡ କୋଃର ଯାଦୁମଲମ- ‘କଣ୍ଡୁଦାବାନଳ’। ନା ଥିଲା ମାଖିବା ସାବୁନ୍, ନା ଲୁଗାକଚା ପାଉଡ଼ର ‘ନିର୍ମା’। ଡ଼ାକ୍ତଖାନାରେ ଥିଲା ହଜମି, ଆଲ୍‌କାଲାଇନ୍, କଫ ମିକ୍‌ସଚ୍‌ର୍।

ଷଠିମାଆଙ୍କ କୃପାରୁ ଡ଼ିବିରି ଆଲୁଅ ଓ ଅଗରାତେଲ ଦୀପରେ ଛୁଆଟି ଟେରା ଆଖିରେ ଚାହିଁ ପାରିଲା; ମୁଷ୍କୁରେଇଲା, ହସିଲା ଏବଂ କୁରୁଳିଲା, କୁନିପାଟିରୁ ଲାଳ ଗଡ଼େଇଲା, ବାନ୍ତି କଲା ଏବଂ କୁଆଁ କୁଆଁ କାନ୍ଦୁ କାନ୍ଦୁ ମା, ଅମା ଭାଷିଲା ଏବଂ କ୍ରମେ ଅଧାଠିଆ ବି ହେଲା। ଚିତ୍ ହୋଇ ଶୋଇ ବାପା, ଜେଜେଙ୍କ ଛାତିରେ ମୂତିଲା। ଦୁହିଁଙ୍କଯାକ ଛାତିରେ ଗୁଡ଼ାଏ ବାଳ। କେବେ କେମିତି ପିଲାଟି କୁକର୍ମ କଲେ, ଜେଜେ ଚିତ୍କାର୍ କରନ୍ତି- “କାନ୍ଦିରି, ଧାଇଁଆ, ତୋ ପୁଅ ଛାତି ଓଦା କରିଦେଲା, ତୋ ପୁଅ ଛାତିକି ହଳଦିଆ କରିଦେଲା, ପାଣି ଲୋଟାଏ ଆଣ।” ଏମିତି ବାରମ୍ବାର ହେଲାରୁ ବାପ ପୁଅ ଦୁହେଁଯାକ କଇଁଚିରେ ଯେ ଯାହା ଚୂଳକୁ ମୂଳେଇ ମୂର୍ଚ୍ଛେଇ କାଟିଦେଲେ। ଦୁହେଁଯାକ ହାତକୁ ଦୋଳିକରି ଛୁଆକୁ ଖେଳାନ୍ତି, ମାଆ ଯେତେବେଳେ କୂଅ କି ପୋଖରୀ ଯାଏ, ବା ଭାତ ଗାଳେ, ରୋଷେଇ ଘର କାମ ଛାଡ଼ି ଯାଇପାରେ ନାହିଁ।

କୋଇଲିମାନେ ଯିମିତି ପଞ୍ଚମ ସ୍ୱରରେ ଗୀତଗାଇ ଆମ୍ବବଉଳକୁ ଆଖିଦୃଶିଆ ଆମ୍ବ କଷିରେ ପରିଣତ କରନ୍ତି- ମାଆ, ବାପା, ଜେଜେ, ନନା ଧୈବତାଦି ସ୍ୱରରେ ଗୀତଗାଇ କଟିଛୁଆକୁ ବଢ଼ାଇ ଚାଲିଲେ। ମାଆ ଗାଇଲା- “ହାତୀ ଝୁଲୁଥାଏ ବନସ୍ତ ଭିତରେ ବାଆପାଣି ଖାଇବାକୁ”, ନହେଲେ “ଉଡ଼ିଯାନ୍ତି ବଗପଲ ହୋଇ ଗୋଟି ଗୋଟି”। ବାପା ଗାଆନ୍ତି- “ବକେ ବସିଥିଲା ଧ୍ରୁବ ଉପରେ”, ନହେଲେ “ବନ୍ଦଇ ଦୀନବାନ୍ଧବ ହରି”। ଜେଜେ ଗାଆନ୍ତି- “ଭଜୁ କିରେ ମନ ଗୋବିନ୍ଦ ଗୋପାଳ” ବା “ଗରୁଡ଼ ଥମ୍ବକୁ ସୁନ୍ଦର

ଦିଶଇ ନବଘନ ଶାମ କାଳିଆ"। ନନା ଗାଏ- "ବିଧୁବଦନୀ କାହା ବଧୂ ଆସୁଛି" ବା "ଦିନେ ଶୋଇଥିଲା ଚନ୍ଦ୍ରକିରଣେ"। ନନାର ଗୀତ ଶୁଣିଲେ କେକେ ପାଟିକରି କହେ- "ଦେଖନା, ଭଟନାଗର, ହଟ ନାଗରଙ୍କ ଗୀତ।" ହେଲେ ଏଇ ରସିକଛୋଡ଼, ବିସନୀ ଟୋକାଟି ମୋ କାଣିବାରେ ଘର ଚଳେଇଛି, ମୋତେ ପଢ଼ିବାରେ ସାହାଯ୍ୟ କରିଛି।

ଆଉ ଟିକିଏ ବଡ଼ ହେଲାରୁ ସମସ୍ତେ ଗୀତ ଛାଡ଼ି ଗପ ଧଇଲେ। ମାଆ କହିଲା- ବୁଢ଼ାଚିଙ୍ଗୁଡ଼ି କଥା। "ବୁଢୀ ଖାଇଲା ଚିଙ୍ଗୁଡ଼ିମାଛ, ବୁଢ଼ା ଖାଇଲା ପିଚା ମାଉଁସ।" ବାପା ଆଣ୍ଠୁ ବଙ୍କେଇ ତଳିପାକୁ ଆସନ କରି ହଲେଇ ହଲେଇ ଗାଆନ୍ତି; ଗୁଗୁପାଞ୍ଚି, ଦହିପାଞ୍ଚି ଖେଳାନ୍ତି, ଶେଷ କରନ୍ତି 'ସମସ୍ତେ ଖାଇଲେ ଟିକେ ଟିକେ ବସନ୍ତ ମାଇଲା ମକା।' କେକେ ଭୂତ ବ୍ରହ୍ମରାକ୍ଷସର କଥା କହନ୍ତି- "ଦିନେ ଦାନ୍ତକାଠି, ପତର ଆଣିବାକୁ ବଣକୁ ଯାଇଥିଲି; କିମିତି ପୋଡ଼ାଗନ୍ଧ ଆସିଲା।"

ପିଲାଟି କ୍ରମେ ଅପାଠୁଆ ହେବା ସଙ୍ଗେ ସଙ୍ଗେ ଉତ୍‌ପାତିଆ ବି ହେଲା। ଆଣ୍ଠୁ ଗଣ୍ଠି ପଡ଼ି ହୁଣ୍ଡୁରି ଛିଡ଼ାଇଲା; ଧୂଳି ଧୂସରିଆ ହୋଇ କାଛୁକୁଣ୍ଡିଆ, ଅନ୍ଧାର-ଜଳୁଜୁଳି ବା ଏକଜିମା ଭୋଗିଲା। ଦିନରାତି ପୁରୁଣା ଅଗରା ତେଲ, ନିମ ତେଲ ଲଗାଇ ମାଆ କାଛୁ କୁଣ୍ଡିଆ ଭଲକଲା; ନହେଲେ ମହାପ୍ରସାଦ କୁଣ୍ଡି ଲଗାଇ ନଳୀ ଗୋଡ଼ର ଏକଜିମା ଭଲ କଲା; କିନ୍ତୁ ମହୁଲନେଠା (ମହୁଲ ଭାଜି ଚାଉଳଭଜା ସାଙ୍ଗରେ ଢ଼ିଙ୍କିରେ କୁଟିଲେ ଯେଉଁ ଚିଙ୍ୱିଂଗାମ୍ ହୁଏ) ଖାଇ ଖୁସିରେ ତେଇଁ ତେଇଁ ଦିନେ ପଧାନଘର ଉଚ୍ଚପିଣ୍ଡାରୁ, ଖସି ଓଠରେ ଯଉଁ ଖଣ୍ଡିଆ ହେଲା, ତାହା ଜୀବନଯାକ ରହିଲା। ସପୁରୀଗଛ ଲଗାଇବ ବୋଲି ସାବଳରେ ଗାତ ଖୋଳୁଁ ଖୋଳୁ ବାଁ ଗୋଡର ବୁଢ଼ାଆଙ୍ଗୁଳି ନଖ ସାରା ଜୀବନପାଇଁ ଦି'ଫାଳ କଲା। ନନା ଜାଲ, ପୋହଳ ଧରି ମାଛ ଧରିବାକୁ ବାହାରିଲେ, ପତଳା ପିତଳ ଲୋଟାଟି ଧରି ପଛେ ପଛେ ଚାଲିଲା ଖରା, ବର୍ଷାରେ। ଦିନ ଦି'ପହରେ କୁନି, ନିନି, ହଂସୀ, ତିଳକୁ ନେଇ ଡ଼ାବୁଆ ଉପରେ ବରକନ୍ୟା ଖେଳ ଖେଳିଲା, ଯାହା ଫଳରେ ଢ଼ପ ଢ଼ପ ଶବ୍ଦରେ କେହି ଶୋଇ ପାରିଲେ ନାହିଁ। ବୁଢ଼ା ମନ୍ତବ୍ୟ ଦେଲେ- "ଭୁଲାରେ, ତୋ ପୁଅ ସାଗୁପତ୍ରିଆ ହେବ ବଡ଼କାଳକୁ।" ଥରେ କାନରେ ଆତ ମଞ୍ଜିଟିଏ ପୂରାଇ ଦେଲା ଯେ କମାର ଶାଳକୁ ଯାଇ ଚେପି କମାରର ସାହାଯ୍ୟ ନେବାକୁ ପଡିଲା ବାପାଙ୍କୁ। ଗୋଟି ଡ଼ାବଳର 'ଅଡ଼ିଦଡ଼ି ଘୁରନ୍ ଚାଉଳ ଚମ୍ପା ଝେକ୍ ଲଙ୍କା' ଖେଳ ବଡ଼ ବଡ଼ ସାଙ୍ଗ ସହିତ ଖେଳି ନାକ ଫଟାଇ ରକତ ଝରଝର ହୋଇ ଥରେ ଘରକୁ ଫେରିଲା। ବାଲ୍ୟଲୀଳାର ଆଦି ଅଛି, ନା ଅନ୍ତ ଅଛି ? ମାନଗଡ଼ିଆ କଳାମେଘ ଯେତେବେଳେ ଝଡ଼ବର୍ଷା ସହିତ ମାଡ଼ିଆସେ, ସେତେବେଳେ ତାଳପତ୍ରର ଗୋଟାଏ ଗୋଲ ଚକତି କରି, ନହେଲେ

କାଠଚମ୍ପା ଫୁଲକୁ ଶାଳପତ୍ରର ଫୁଙ୍ଗାରେ ବାଉଁଶ ଖଡ଼ିକା ଦେଇ ପୂରାଇ ବା ଡ଼ୋମସାହିର ରଙ୍ଗୀନ ଫିରିଫିରା ଧରି କେତେବେଳେ ପବନ ତରଫା ଦୌଡ଼ୁଥାଏ। ତେଣେ ମା' କେତେବେଳେ ଆତଙ୍କିତ ଆଶଙ୍କିତ ହୋଇ ଠିଆ ହୋଇ ରହିଥାଏ, କାଳେ ପୁଅ ପଡ଼ିଯାଇ ଖଣ୍ଡ ଖଣ୍ଡ ହୋଇଯିବ।

ଏଭିତରେ ୧୯୧୪ ସାଲ ବିଶ୍ୱଯୁଦ୍ଧ ଆରମ୍ଭ ହୋଇଯାଇଛି; ୧୯୧୭ ସାଲ୍‌ର ମୟୂରଭଞ୍ଜ ସାନ୍ତାଳ ମେଳି ବାମନଘାଟିରୁ ବାରିପଦାକୁ ବ୍ୟାପି ଯାଇଛି। ଏହି ସମୟରେ ଅକା ମରିଗଲେ। ଜେଜେ, ବାପା, ମାଆ ଶୁଦ୍ଧିକ୍ରିୟାକୁ ବୁଡ଼ୀଖମାରୀ ଚାଲିଲେ। ନନା ଘର ଓ ଦୋକାନ ଜଗିଲା। ଏହି ସମୟରେ ସାରୁଟୋପିଆଙ୍କ ଦୌରାତ୍ମ୍ୟ, ଚକ୍ରାନ୍ତରେ ଓ ସହାୟତାରେ ଭାଉଜ ଅପହୃତା ହେଲେ। ଦୋକାନ ଧ୍ୱସ୍ତମାସ୍ତ ହେଲା। ଦିନେ ବଳଦଗାଡ଼ିରେ ସନୁ ମୂଲିଆ ମାଆକୁ ଓ ମୋତେ ମାମୁ ଘରକୁ ନେଇ ଯାଉଥାଏ। ଏଇଟା ମୋର ବସା ଛାଡ଼ି "ଖଣ୍ଡିଉଡ଼ା" ଦେବାର ପ୍ରଥମ ପ୍ରଚେଷ୍ଟା। ମୋଟର ଗାଡ଼ି (ଜୀବନରେ ପ୍ରଥମ ଦେଖିଲି, ଶୁଣିଲି) ଗୋଟାକରେ ବନ୍ଧୁକଧାରୀଗୁଡ଼ାଏ ଗୋରା ସାହେବ (ଏତେ ଗୋରା ଯେ ଗାଡ଼ି ଭିତରଟା ଲାଲ୍ ଦିଶୁଥାଏ) ଦେଖି ମାଆ କହିଲା- "ପଲଟନ, ପଲଟନ ଦେଖ।" ଯା'ର କେତେଦିନ ଆଗରୁ କାଖରେ କାନ୍ଧରେ ବସି ସେଇ ମାମୁଘରକୁ ରେଳରେ ଯାଇଥିଲି। ସାତ ଆଠ ମାଇଲ ଦୂର ବୁଢ଼ାମରା ଷ୍ଟେସନକୁ ଚାଲି ଚାଲି ଯାଇ ଟ୍ରେନ୍ ଧରିଥିଲି। ଧୋତି ପିନ୍ଧି (ଖାଲି ଦେହ, ସାର୍ଟ, ଗେଞ୍ଜି କିଛି ନାହିଁ) ବାହାଦୁରୀ ଦେଖାଇ ଧାଉଁ ଧାଉଁ ଷ୍ଟେସନର ଶହେହାତ ଦୂରରେ ପଡ଼ିଗଲି ଯେ, ଓଠ ଫାଟିଗଲା। ମାମୁଘରେ ପହଞ୍ଚିଲା ବେଳକୁ ମହନ ମାମୁ, ରଜନୀ ନନା ହସିଲେ। ଥଟ୍ଟା କଲେ। ଓଠ ଫୁଲିଯାଇ ମୁଁ ମାଙ୍କଡ଼ମୁହାଁ ପରି ଦିଶୁଥାଏ।

ତଥାପି ମୋତେ ବୁଡ଼ୀଖମାରୀର ମାମୁଘର ଭାରି ଭଲ ଲାଗୁଥିଲା ଏ ସମୟରେ। ପାଟ୍ଟଡ଼ା ମୋର ପିତୃଭୂମି (ବାପାଙ୍କ ଜନ୍ମସ୍ଥାନ); ବୁଡ଼ୀଖମାରୀ ମୋର ମାତୃଭୂମି (ମାଆର ଜନ୍ମସ୍ଥାନ)। ସେଠି ମୋର ମାଆର ମାଆ, ବୁଢ଼ୀ ଆଈ ଥାଏ। ମୋତେ ଭାରି ଶରଧାରେ ପାଳେ। ପାଟ୍ଟଡ଼ାକୁ ମୁଁ ଡ଼ରେ। ମାମୁଘର ମାପାଇଁ ଯିମିତି, ମୋପାଇଁ ବି ସିମିତି। ମାମୁଘର ଯିବି କହିଲେ- କେଡ଼େ ଖୁସି, ଗାଁକୁ ଯିବା କହିଲେ ରେଳରେ ଚଢ଼ିବା ଛଡ଼ା ଆଉ ଆନନ୍ଦ ନାହିଁ। ଖାଲି ବଣଜଙ୍ଗଲ, ବାଘ ଭାଲୁ, ଡ଼ାହାଣୀ ଚିରଗୁଣୀ।

ଗୀତ ଗାଇ ସଞ୍ଜବେଳେ ଶୁଆଉ ଶୁଆଉ ବା ଗପ କହୁଁ କହୁଁ ମାଆ, ବାପା, ଜେଜେ ଯାହା କହିଥାନ୍ତି- ସେସବୁ ମୋ ମନରେ ଥାଏ ଓ ସେ ସବୁକୁ ମୁଁ ସତ ବୋଲି ଭାବେ। ଗାଁର ପ୍ରତିଟି ଗଛ, ପୋଖରୀ, ଠାକୁରାଣୀ ଇତ୍ୟାଦିରେ ଭୂତପ୍ରେତ, ଡ଼ାହାଣୀ, ଦେବତା

ଜଡ଼ିତ। ପୁରୁଣା ପୋଖରୀ ହିଡ଼ପାଖ ବଡ଼ ଶିମୁଳି ଗଛରେ ଗୋଟାଏ ଗୋଡ଼ ଏବଂ ବଣ ପୋଖରୀର ଉତ୍ତର କୋଣ ଗଛରେ ଆଉ ଗୋଟିଏ ଗୋଡ଼ ରଖି ଜହ୍ନରାତିରେ ବ୍ରହ୍ମରାକ୍ଷସ ଛିଡ଼ା ହୋଇଥାଏ। ଜେଜେବାପା ବ୍ରହ୍ମ ଗଣ୍ଠିକି ଯୋଡ଼ି ଗାୟତ୍ରୀ ମନ୍ତ୍ର ପଢ଼ି ତା ଗୋଡ଼ତଳେ ଆସନ୍ତି ବୋଲି କିଛି ହୁଏନି ତାଙ୍କର। ଆଉ କେହି ସେବାଟ ଦେଇ ସେତେବେଳେ ଆସିଲେ, ରକ୍ତବାନ୍ତି କରି ମରିଯିବ। ବଗାଳ ସାହି ବାଇନର ବାପ ସେମିତି ମଲା। କିଆପୋଖରୀ କୋଣରେ ତାଳଗଛରେ ତାଳଗଛିଆ ଅଛି। ଶଙ୍ଖାର ଗୋଡ଼ ଭାଙ୍ଗିଲା ସେଇ ଗଛରୁ ପଡ଼ି। ଉଦୁଉଦିଆ ଦି'ପହରେ ସେ ଚାଲୁଣି ହୋଇ ରଥ ପୋଖରୀରେ ଗାଧାଏ। ଜମ୍ବୁବୁଢ଼ୀ, ଭରବୁଢ଼ୀ ନିଜେ ଆଖିରେ ଦେଖିଛନ୍ତି ତାକୁ; ସୁଦର୍ଶନ ଚକ୍ରପରି ଛାଏ ହୋଇ ପାଣିରେ ପଡ଼ିବାର। ବଡ଼ତଳିଆ ପୋଖରୀ ବି, ସିମିତି ଦେବତାଳି ପୋଖରୀ। ଲାଲି କଇଁ ଲକ୍ଷଲକ୍ଷ ଫୁଟିଥିଲାବେଳେ ଯେ ସେଠାକୁ ଯିବ, ସେଇ ରକ୍ତବାନ୍ତିରେ ମରିଯିବ। ଦାମା ବୁଢ଼ା, କାଳନ୍ଦୀ ବୁଢ଼ା ପରି ବଗାଳ ସାହିର ଗୁଣୀ ବି ଭଲ କରିପାରିବେ ନାହିଁ। ଚୁରୁଦ ଚିରଗୁଣୀ ଷଢ଼ଙ୍ଗୀ ଘର ପାଖ ବଡ଼ ଅଶ୍ୱତ୍‌ଥ ଗଛରେ ଥାଆନ୍ତି। ସେମାନେ ବାହାରିଲେ ବିରିଗନ୍ଧ ଚାରିଆଡ଼େ ଖେଳିଯାଏ; ଦୁଧ ଦହି ଲାଳୁଆ ହୁଏ; ବସେନି। ଚିରଗୁଣୀ ଡ଼ାହାଣୀମାନେ ଦପ୍ ଦପ୍ ହୋଇ ମଶାଣିରେ ଜଳନ୍ତି ଏବଂ ଛାଞ୍ଚୁଣୀ ପିନ୍ଧି ଅଧାଲଙ୍ଗଳା ହୋଇ ଗୁହ ଖାଆନ୍ତି। ମାଣଭଞ୍ଜ, ବାଘଝମ୍ପା, ଶଶାନଦୀରୁ ଗୋଟାଏ ଗୋଟାଏ ବୁଢ଼ୀ ଭିଖ ମାଗିବାକୁ ଆସନ୍ତି; ଛୁଆମାନେ ଖାଉଥିବାର ଦେଖିଲେ ଲାଗିଯାନ୍ତି। ସଞ୍ଜବେଳକୁ ଘର ଅସ୍ଥିର, କଅଁଳା ଛୁଆଙ୍କ ବାନ୍ତି ଆରମ୍ଭ ହୋଇଯାଏ। ଗାଁରେ ପୂର୍ବପଟେ ମଶାଣି। ପ୍ରତି ଶାଳ ଗଛ ମୂଳରେ ମଡ଼ା ପୋଡ଼ା ହୋଇଛନ୍ତି। ଦରପୋଡ଼ା ଗଛସବୁ ଦେଖିଲେ ଭୂତପ୍ରେତ ଦିଶିଯାନ୍ତି। ବାପାଙ୍କ ସାଙ୍ଗରେ ସେ ରାସ୍ତା ଦେଇ ଗଲାବେଳେ ଏପାଖ ସେପାଖ ଚାହିଁ ଛୁଆମାନେ ଚାଲନ୍ତି। ଚାରିବର୍ଷ ବେଳେ ପାଳଗଦାରେ କଲରା ପତରିଆ ବାଘ ଅଧା ଖାଇଥିବା ଛଡ଼ାଗାଇର ମୁହଁ ମନେ ପଡ଼ିଯାଉଛି। ଗାଁରେ ସବୁବେଳେ ଡ଼ରଭୟ ଲାଗେ; ଚାରିଆଡ଼େ ଭୂତପ୍ରେତ, ବାଘଭାଲୁପାଇଁ। ଶୁଖିଲା ଠୋ ଠୋ ଭୂମି।

ବାରିପଦା ହୁଡ଼ି ତଳ ଗାଁ ବୁଢ଼ୀଖମାରୀ। ମୋର ମାମୁଘର କେଡ଼େ ଭଲ ! ସେଠି ବି ବାଘଭାଲୁ ଅଛନ୍ତି; କିନ୍ତୁ ରଜାଙ୍କ ବାଘଘରରେ, ବଡ଼ ବଡ଼ ଲୁହାବାଡ଼ ଭିତରେ। ଦିଟା ମହାବଳ, ପଟାହାଡ଼ିଆ ବାଘ। ସଞ୍ଜହୋଇ ଆସିଲେ ଗର୍ଜନ। ଦି'ଟା ଭାଲୁ; ଗୁଡ଼ ରୁଟି ଖାଆନ୍ତି। ତାଙ୍କ ଚୂଳକଟା ହୁଏ। ମହାରାଜା ଆସିଲେ ସେମାନଙ୍କୁ ବଡ଼ ପାଚେରୀ ଦିଆ ଖୋଲାଯାଗାକୁ ଛଡ଼ାହୁଏ। ସାନମାମୁ ସାଙ୍ଗରେ ଥରକୁ ଥର ଯାଇ ଦେଖେଁ। ଡ଼ରମାଡେ ନାହିଁ। ମାମୁଘରୁ ଖୁବ୍ ପାଖ ତ।

ସକାଳେ ଗଛମୂଳରେ ବୁଲିଲେ ପାଚିଲା ପଣସର ମହକ ଆସେ। ମାମୁ ସାଙ୍ଗେ ସାଙ୍ଗେ ଘରୁ ଶିକାଟିଏ, ଝୁଡ଼ିଟିଏ ଧରି ଆସିଯାଆନ୍ତି ଏବଂ ସେସବୁ ଧରି ଚଢ଼ି ଯାଆନ୍ତି। ପାଚିଲା ପଣସଟିକୁ ଖୋଜି ପାଇଲା ମାତ୍ରେ, ଦାଆରେ ମୂଳକାଟି ଝୁଡ଼ିରେ ରଖନ୍ତି ଏବଂ ଧୀରେ ଧୀରେ ଗଣ୍ଠିଦେଇ ତଳକୁ ଛାଡ଼ନ୍ତି। ମୁଁ ଝୁଡ଼ିକି ସମ୍ଭାଳି ନିଏଁ, ରଜନୀ ନନା ସାଙ୍ଗରେ। ସରଗର ଏଇ ଫଳଟିକୁ ଗଛରୁ ଓହ୍ଲାଇବାଠୁଁ ଆନନ୍ଦ କାହିଁରେ ଆଉ ନାହିଁ।

ଘରକୁ ଜେଜେବାପା ଓ ସାନୁ ବିନ୍ଧାଣୀ ସାଙ୍ଗରେ ଫେରିଲା ଦିନ କିଛି ଚୁଡ଼ା ଆଉ ଏମିତି ପଣସଟିଏ ପାଥେୟ ନେଇଥାଉଁ। ସାନୁ ବିନ୍ଧାଣୀର କାନ୍ଧରେ ଚଢ଼ିବା କଷ୍ଟ ବାଧେ ନାହିଁ ମୋତେ; କାରଣ ପଣସଟି ଚୂଡ଼ା ସହିତ ଗଣ୍ଠିଲିରେ ରହିଛି। ଦିନ ଦି'ପହର ବେଳକୁ କାଠଶିରସି ପୋଲ ବା ଧେଡୁଆ ଖାଳ ପହୁଚିଲେ, ଗାଧୁଆ ପାଧୁଆ କରି ବୁଢ଼ା ଚିତା ଚଇତନ ହୁଅନ୍ତି ଏବଂ ପଣସ ଭଙ୍ଗା ହୁଏ। ଚୁଡ଼ାପଣସ ପେଟେ ଖାଇ, ଖାଳର ଗୋଳିଆପାଣି ପିଇଦେଲେ, ନୂଆ ଦମ୍ ଆସିଯାଏ ଏବଂ ବେଳବୁଡ଼କୁ ଜଗନ୍ନାଥଖୁଣ୍ଟ ପହଞ୍ଚିଯାଉଁ କାନ୍ଦୁରୁ ଷଡ଼ଙ୍ଗୀ ଘରେ। କେଡ଼େ ଗୋରା ! କେଡ଼େ ବଡ଼ ଝୁଲା କାନ ତାଙ୍କର।

ଭୋର୍ ସକାଳ ହେଲା ମାତ୍ରେ ଉଠିପଡ଼ୁଁ। ଆଖି ମଳି ମଳି ଆକାଶକୁ ଚାହିଁ ଦେଖେଁ- ଗୋଟିଏ ବିରାଟ ତରା। ଏତେ ବଡ଼ ତରା ସେ ଦିନପରଠୁଁ ମୁଁ କେବେ ଦେଖିନି। ସେଇ ତରାଟିକୁ  ସେଦିନ ଦେଖିଥିଲି ବୋଲି ଦୁଇ ଅଡେଇ ବର୍ଷ ପରେ 'ପ୍ରଭାତ' କବିତାଟି ପଢ଼ିଲାବେଳେ ଭଲକରି ବୁଝି ପାରିଲି ସେଇ ଦୁଇଟି ଧାଡ଼ି –

"ତାରାଟିଏ ଦେଖେ ପୂର୍ବ ଦିଗରେ
ହୀରାମୁଣ୍ଡା ପରି ଦିଶେ ତେଜରେ"

ଘରେ ପହଞ୍ଚିଲେ ମାଆ; ମାମୁଘରେ ଥିଲେ ଆଈ। ଏଇ ଦୁହେଁ ପିଲାଦିନକୁ ସ୍ନେହମୟ, ଆନନ୍ଦମୟ କରିଦିଅନ୍ତି- ଗୋଟାଏ ସ୍ୱର୍ଗରୁ ଆଉ ଏକ ସ୍ୱର୍ଗକୁ ଅଦଳ ବଦଳ କରି।



## ॥ ଏଗାର ॥

ଦିନେ ସଂଜବେଳେ ଜେଜେ ନୂଆଗୀତଟିଏ ଗାଇଲେ- "ଖେଳୁଆଡ଼ ବୁଦ୍ଧି ଛାଡ଼ରେ ବାବୁ / ଖଡ଼ି ଛୁଇଁଲେ ତୁ ପାଠ ପଢ଼ିବୁ।" କେତେ ପେଞ୍ଚପାଞ୍ଚରେ ବୁଡ଼ାଅଛି, ତାହା ଜାଣିବାକୁ ଡେ଼ରିହେଲା ନାହିଁ। ପରଦିନ ସକାଳେ ଜେଜେ ଖଡ଼ିପାହାଡ଼ି ବାହାରିଗଲେ ଏବଂ ଫେରିଲେ ଜାଉଁଳିଟିଏ ଧରି। ମୁଁ ଭାବିଥିଲି- ଚୁଡ଼ା, ଉଖୁଡ଼ା, ହୁଡୁମ୍ବ ଆଣିଛନ୍ତି; କିନ୍ତୁ ଫିଟାଇଲା ବେଳକୁ ଗୋଟିଏ ପାଖରେ ଦି' ଆଞ୍ଜୁଳା ତିଳକମାଟି, ଅନ୍ୟ ପାଖରେ ବଡ଼ ବଡ଼ ଓଜନଦାର ଖଡ଼ି। ଚିତା ଚଇତନପାଇଁ ଶଙ୍ଖ ପରି ଧଳା ମାଟି ତାଙ୍କର, ମୋପାଇଁ ଖଡ଼ି ଗୋଛାକ। ସେଦିନ ସଞ୍ଜବେଳେ ବୁଡ଼ା ପାଖରେ ଶୁଆଇ ସ୍ୱରଧରି ପଢ଼ାଇଲେ- କହ 'ନମୋ ଗଣେଶ', ମୁଁ 'ନମୋ ଗଣେଶ', କହିଲେ- ହୁଁ କରନ୍ତି, ତାପରେ କହନ୍ତି- 'ବିଘ୍ନେଶ'। ଉଚ୍ଚାରଣ କରିବା କଷ୍ଟହେଲେ ପୁଣି କହନ୍ତି- 'ବିଘ୍ନେଶ'। ସେ ଦିନ ସଂଜରେ ଲାଗିପଡ଼ି ମୋତେ ପ୍ରାୟ ଶିଖାଇଦେଲେ "ନମୋ ଗଣେଶ ବିଘ୍ନେଶ, ଗିରିଜାନନ୍ଦନ ପ୍ରଭୋ; ମମ ବିଘ୍ନନିହତ୍ୟାଶୁ, ସର୍ବସିଦ୍ଧି ପ୍ରଦୋଭବ।"

ପରଦିନ ଗୁରୁବାର। ଜେଜେଙ୍କ ମୁହଁରେ ବିଦ୍ୟାରମ୍ଭେ ଗୁରୁଶ୍ରେଷ୍ଠ। ମାଆ ଖୁବ୍ ବ୍ୟସ୍ତ ହୋଇ ଗୋବର ଛୁଞ୍ଚଦେଇ ଠାକୁର ଘର ନିର୍ମଳକଲା। ଗାଧୋଇ ପାଧୋଇ ମଠାଶାଢ଼ୀ ପିନ୍ଧିଲା। ଘଟପୂଜା ହେବ। ବାପା ଆମ୍ବଡ଼ାଳ, ଫୁଲ-ବେଲପତ୍ର ଆଣିଲେ। ସଅଳ ସଅଳ ମୋତେ ଗାଧୋଇ ମାଆ ଲୁଗା ପିନ୍ଧାଇଦେଲା। କୋଠିକୋଟିକା ପତଳା କରିଆଟିଏ। ପିନ୍ଧିବା ନ ପିନ୍ଧିବା ସମାନ। ଜେଜେ ନିଜେ ଆରମ୍ଭ କଲେ ପୂଜା, "ଓଁ ଶ୍ରୀ ଗଣେଶାୟ ନମଃ, ଗଣେଶାଦି ପଞ୍ଚଦେବତା ପୂଜା।" ପୂଜା ଚାଲିଥାଏ, ଜେଜେଙ୍କ ବରାଦ ମୁତାବକ ଗୋମୟଂ, କାଞ୍ଚନଂ, ଧାନ୍ୟଂ ଆଦି ଶ୍ଳୋକାନୁରୂପ ଚିଜ ବାପା ଗୋଟାଏ ଥାଳିରେ ସଜାଉଥାନ୍ତି। ପୂଜା ଶେଷରେ ସମସ୍ତେ ଜୁହାର କଲେ; ମୁଁ ବି ଘଟ ପାଖରେ ମୁଣ୍ଡିଆ ମାରିଲି। ତାପରେ ଜେଜେବାପା ବିଭିନ୍ନ ଚିଜ୍ ରଖିଯାଇଥିବା ଥାଳିଟି ମୋ ଆଗରେ ଥୋଇ କହିଲେ- "ନେ ଏଇଠୁ ଗୋଟିଏ ଉଠା।" ମୁଁ କୁଆଡ଼କୁ ନ ଚାହିଁ ସିଧା ଖଡ଼ିଟିକୁ ଉଠାଇଲି, ଯେମିତି କିଏ ମୋତେ ଶିଖାଇ ଦେଇଛି। ସମସ୍ତେ ଖୁସିହେଲେ। ମୋର ଭଲ ପାଠ ହବ ବୋଲି। କେତେ ବର୍ଷପରେ ସାନଭାଇ ପ୍ରସନ୍ନର ଯେତେବେଳେ ଏମିତି ଖଡିଛୁଆଁ ହେଲା, ସେ ଉଠାଇଲା ମାଆର ନାକ ଫୁଲକୁ। ମୁଁ ତାକୁ ଆଗରୁ ଖଡ଼ି ନହେଲେ ପୋଥିକୁ ଉଠାଇବାକୁ କହିଥିଲି। ମୁଁ ରାଗିଯାଇ ଚାପୁଡ଼ାଏ ପକାଇଲି ତାକୁ। ଚକଚକିଆ ସୁନାର ଲୋଭ ସମ୍ଭାଳି ପାରିଲା ନାହିଁ ସେ।

ତା'ପରେ ଜେଜେଙ୍କ ଆଜ୍ଞାରେ ବାପା ଚାରୋଟି ମଣ୍ଡଳ ଭୂଇଁରେ କାଟିଲେ। କେଡ଼େ ଗୋଲ୍ ଗୋଲ୍ କଂପାସ୍‌ରେ କାଟିଲା ପରି। ବାପାଙ୍କ ଡ୍ରଇଁ ହାତ ଭଲ ଥିଲା। ଅକ୍ଷର ମଧ୍ୟ ବର୍ତ୍ତୁଳ, ସୁନ୍ଦର। ବୁଢ଼ା ମୋ ହାତ ମୁଠାକୁ ଜାବୁଡ଼ି ଧରି ଖଡ଼ିରେ ସେହି ଚାରୋଟିମଣ୍ଡଳ ଉପରେ ବୁଲାଇ ଦେଲେ। ମୋର ଖଡିଛୁଆଁ ହେଲା। ତା'ପରେ ମଣ୍ଡଳ ତଳେ ବାପା ଲେଖିଲେ, "ସିଦ୍ଧିରସ୍ତୁ।" ସେଇ ଅକ୍ଷର ମଡ଼ାଇବାପାଇଁ ମୋ ପକ୍ଷରେ କଷ୍ଟହେଲା। ସେଦିନ ମୋ ଛାତି କୁଣ୍ଡେମୋଟ। ମୁଁ ସେ ଉତ୍ସବର ହିରୋ ତ !

ବିଦ୍ୟାରମ୍ଭର ପରଦିନ ସକାଳେ ମୁଢ଼ି, ଦୁଧ, ଗୁଡ଼ ଖାଇ, ଘରେ ତିଆରି ଅଖାଚଟର ଚାରିକଣିଆ ଆସନ ଧରି ପିଣ୍ଡାକୁ ଗଲି। ବାପା ପୁଣି ମଣ୍ଡଳ ଲେଖିଲେ। ମୁଁ ବୁଲାଇବାକୁ ଲାଗିଲି ଖଡ଼ି ତା ଉପରେ। ମୋ ପାଖରେ ବସିଥାଏ ଗଦା ଷଡ଼ଙ୍ଗୀ, ରାଧାନ୍ନାର ପୁଅ। ସେ ବାରିପଦା ଟୋଲ୍‌ରେ ସଂସ୍କୃତ ପଢ଼ିଥିଲା ମାମୁଁ ଘରେ ରହି। ଗାଁକୁ ଅଧାପାଠିଆ ହୋଇ ଫେରିଆସିଲା ଏବଂ ଜେଜେଙ୍କ ତତ୍ତ୍ୱାବଧାନରେ ଅମରକୋଷ ପଢ଼ିଲା। ଜେଜେ 'ସନ୍ଥ' ଦିଅନ୍ତି। ଅନ୍ୟାନ୍ୟ କାମ ସହିତ (ରୋଗୀ ଦେଖିବା, ବଟିକା ତିଆରିକରିବା, ପୋଥିଲେଖିବା, ଖଟରୁ ଓଡ଼ଷ ଝାଡ଼ିବା) ଶିଷ୍ୟର ପଢ଼ାପଢ଼ି ତଦାରଖ କରନ୍ତି, ବିନା ମୂଲ୍ୟରେ। ଗଦା ଆରମ୍ଭ କରେ, 'ଯସ୍ୟ ଜ୍ଞାନ ଦୟାସିନ୍ଧୁନଗାଧ ସ୍ୟାନ ଘାଗୁଣାଃ।' ବୁଢ଼ା କହନ୍ତି- 'ଅମରକୋଷ; ଆଉ ସବୁ ପାଠ ଚାଳରେ ଖୋସ।'

ଗଦା ଧାଡ଼ିକୁ ଧାଡ଼ି ମୁଖସ୍ଥ କରିଚାଲେ, ପଚିଶଟି ତେନ୍ତୁଳି ମଞ୍ଜି ସାହାଯ୍ୟରେ। କେବେ କେମିତି ସେଥିରୁ ଦୁଇ ଚାରିଟା ନିଆଁରେ ପୋଡି ଖାଇଦିଏ। ଯଦି ଗଦା କ୍ଷୀଣସ୍ୱରରେ ଗୁଣୁଗୁଣେଇ ପଢ଼େ, 'ଅମରା ନିର୍ଜରା ଦେବାଃ; ତ୍ରିଦଶା ବିବୁଧା ସୁରାଃ।' ତେବେ ଜେଜେ ରୋଗୀର ନାଟିକା ଦେଖୁ ଦେଖୁ ଚିତ୍କାର କରନ୍ତି- ପାଟିକରି ପଢ଼। 'କାକରାବୀ, ବକଧ୍ୟାୟୀ।' ଯଦି ଭଲକରି ପଢ଼ିପାରି ଘୋଷିପାରିଲ, ତେବେ କୁହନ୍ତି "ଘୋଷବନ୍ତଂ ବଳବନ୍ତମ୍।" ଶେଷରେ କୁହନ୍ତି- "ଅମରକୋଷ... ଆଉ ପାଠ ସବୁ ଚାଳରେ ଖୋସ।" ତେନ୍ତୁଳିମଞ୍ଜି ଦଶଥର ଗଦା ପକାଇଲାବେଳକୁ ମୋର ସେ ଧାଡ଼ିଟି ଅକ୍ଳେଶରେ ମନେ ରହିଯାଏ ଏବଂ ସେହି ସ୍ୱର୍ଗବର୍ଗ ସରିଲା ବେଳକୁ ମୁଁ ସାରା ବର୍ଗଟି ଗାଇଯାଏ। ସଞ୍ଜବେଳେ ଜେଜେଙ୍କ ସାଙ୍ଗରେ ଶୋଇଲା ବେଳେ ମୁଁ ମଣ୍ଡଳ କାଟୁଁ କାଟୁଁ ଅ, ଆ, (ସରିଅ ସରିଆ, ହ୍ରସ୍ୱଇ ଦୀର୍ଘଈ) ଆଦି ଫଳା ଶିଖିଯାଉଥାଏଁ। ସକାଳେ ଖଡ଼ି ସାହାଯ୍ୟରେ ଜେଜେ ଓ ସଂଧ୍ୟାବେଳେ ବାପା ଗୀତ ସାହାଯ୍ୟରେ ('ଅ ଗଲେ ପଢ଼େ ଆ; ଶିଶୁ ଡାକେ ମାଆ ମାଆ'। 'ହ୍ରସ୍ୱଇ ଦୀର୍ଘଈ, ପଡ଼ି ହସ ହିହି'। 'ଟ ଠ ଡ଼ ଢ଼ ମୂର୍ଦ୍ଧେଣ,/ ଘରେ ଦେଖୁଛ ଚାରିଟା କୋଣ'। ଶେଷକୁ, 'ଅନୁସ୍ୱାର, ବିସର୍ଗ, ଚନ୍ଦ୍ରବିନ୍ଦୁ,/ ଆକାଶରେ

ଦେଖ ତାରା ବିନ୍ଦୁ') ଫଳା ଶିଖାନ୍ତି। ମାଆ ନିରକ୍ଷରା; ତଥାପି ସେ ଗାଏ, କେବେ କେମିତି ପଖାଳ ବାଢ଼ିବା ଆଗରୁ- "ଉଡ଼ିଯାନ୍ତି ବଗପଲ ହୋଇ ଗୋଟି ଗୋଟି, ବୋଇତଟି ଭାସିଚାଲେ କଳାପାଣି କାଟି; ଘୁଉ ଘୁଉଁ ଗରଜୁଛି ଦରିଆ ଲହଡି, ଧନ ମୋ ଯାଉଛି ଚାଲି ବୋଇତରେ ଚଢ଼ି, ବୋଇତ ଉପରେ ବାନା ଉଡ଼େ ଫତ ଫତ, ବୋଇତ ଭରି ଆଣିବ ଧନଦଉଲତ।" ମାଆ କେତେ କ'ଣ ନ ଜାଣେ ! ମଗୁଶିର ମାସ ଆସିଲେ ଖଳାବାଡ଼ିରେ, ଠାକୁରଘରେ, ଦାଣ୍ଡପିଣ୍ଡା ଓ କାନ୍ଥରେ କେତେ କେତେ ଧାନଶୀଷା, ପଦ୍ମଫୁଲ ନ ଆଙ୍କେ ! ଶିରୀଶର ମାଆ, ପଦୁର ମାଆ, ଅନନ୍ତ ଷଡ଼ଙ୍ଗୀର ବହୂ, ସୁଶୀଳା ନାନୀ- ସମସ୍ତେ ଜଣେ ଜଣେ କଳାକାରଣୀ; ପ୍ରତିଯୋଗିତା ଚାଲେ। ବାପା ବଡ଼ ବଡ଼ ଫୁଲର ନକ୍‌ସା କାନ୍ଥରେ ଆଙ୍କିଦିଅନ୍ତି- ଡାଳ ପତ୍ର ସହିତ; ମାଆ ଝୋଟି ମଡ଼ାଏ ତା' ଉପରେ। ଆମର କାନ୍ଥଟା ସୁନ୍ଦର ଦିଶେ। ହେଲେ, କ୍ଷେତ୍ର ଓ ତାଙ୍କ କାନ୍ଥ ପରି ଆମର କାନ୍ଥ ସୁନ୍ଦର ହୋଇପାରେ ନାହିଁ। ଶିରୀଶର ମାଆକୁ ମୋ ମାଆ ସବୁଥିରେ ପଚରା ଉଚରା କରେ; ବଡ଼ ବୋଲି ମାନେ। ଖଳା ମଝିରୁ ଲକ୍ଷ୍ମୀପାଦ ସବୁ ଲମ୍ବି ଆସିଥାଏ ଆଟୁଘର, ଠାକୁରଘର ପର୍ଯ୍ୟନ୍ତ। ଆଜିକାଲି ଯିମିତି ହାଟ ବଜାରରେ କଟା ଟିଣରେ ଲକ୍ଷ୍ମୀପାଦ, ହାତୀ, ପଦ୍ମଫୁଲର ଫର୍ମା ମିଳୁଛି, ଯଦି ମାଆ ବଞ୍ଚିଥାନ୍ତା। ତେବେ ତହିଁରୁ ବୋରାଏ ବା ଝଙ୍କାଏ ତାକୁ ଦିଅନ୍ତି ଝୋଟି ଆଙ୍କିବାପାଇଁ।

ମାଆର ଗୁଣ କେତେ ବଖାଣିବି ? "ବ୍ରହ୍ମାଣ୍ଡ ମାଳ ମାଳ ହୋଇ; ତା'ଲୋମ କୂପେ ବିରାଜଇ।" ମାଆ ଶାଗତଳା କରେ । ଭେଣ୍ଡି, ନାଡୁକା, କଦ୍ଳିମଞ୍ଜି ପୋତେ। ବାପା କାଙ୍କଡ଼ ଗଛରେ ରଞ୍ଜା ପୋତନ୍ତି। ସଞ୍ଜ ସକାଳ ବିତେ ଠାକୁରଘର କାମରେ। "ଉତ୍ତିଷ୍ଠ ତିଷ୍ଠ ଗୋବିନ୍ଦ" ଠାରୁ "ରାଧାୟ୍ୟ ସହ ଗୋବିନ୍ଦ ! ଶୟନଂ କୁରୁ ମନ୍ଦିରେ" ପର୍ଯ୍ୟନ୍ତ। ନନା, ବାପା, ଜେଜେ ଯିଏ ଯେତେବେଳେ ଠାକୁର ଘରେ ଥାଆନ୍ତି, ପଢ଼ି ଦିଅନ୍ତି। ଶିକାରୁ ଚୁଡ଼ା ଚୁମୁଟାଏ ବା କୁନ୍ଦାରୁ ଗୁଡ଼ ଟୋପାଏ ଭୋଗ ଦିଅନ୍ତି। ପିଠାପଣାରେ ମାଆକୁ ବଳିଯିବ କିଏ ? ସକାଳେ ପାଠ ପଢ଼ିବାକୁ ବସିବା ପୂର୍ବରୁ, ଉପରବେଳା ପଢ଼ା ସରିଲେ- ଅଧିକାଂଶ ଦିନ ମୂଢ଼ି ଚୁଡ଼ା ଅଭାବରେ ଯେଉଁ ଚିତଉ, ଚକୁଳି, ପୋଡ଼ପିଠା, ଏକପତ୍ରିଆ ଉଷୁନା ଚାଉଳର ଶାଳପତ୍ର ଏଣ୍ଡୁରି ମାଆ ଦିଏ, ତା'ରି ଆଶାରେ ସିନା ମୁଁ ଏତେ ମନଦେଇ ପାଠ ପଢ଼େଁ। ଘିଅପିଠା ଆମ ଘରେ ଦୁର୍ଲଭ। ମାଆ କିନ୍ତୁ ତାଳବଡା, କାକରା ଓ ଆରିସା କରିବାରେ ଗାଁରେ ତିନି ନମ୍ବର ବୋଲି କହିବି। ତିଅଣରେ ମାଆର ହାତର ତୁଳନା ନାହିଁ। ଶାଗଖରଡ଼ା, ଚିଙ୍ଗୁଡ଼ି ପତୁଆ, ପୋସ୍ତପୋଡ଼ା ମନେପଡ଼ିଲେ, ଆଜିର ଏ ବୁଢ଼ା ପାଟିରୁ ଲାଳ ଝରୁଛି। ମାଛ ଝୋଳ ମାଆ ସେତେ ଭଲ କରିପାରେ ନାହିଁ। ମାଂସ

ଜୀବନଯାକ ମାଆ ଖାଇନାହିଁ, ଛୁଇଁନାହିଁ ମଧ୍ୟ। ନନା ମାଂସ କରେ। କୁକୁଡ଼ା, ଏପରିକି କୁକୁଡ଼ା ଅଣ୍ଡାର ବ୍ରାହ୍ମଣ ସାହିରେ ପ୍ରବେଶ ନାହିଁ। ନିଶ ବା ଲୁଙ୍ଗିର ପ୍ରଚଳନ ନାହିଁ। ପଇତା ହୋଇଥିବା ପିଲା ବ୍ରାହ୍ମଣ ଭୋଜନକୁ ମୁରବୀମାନଙ୍କ ସହିତ ଧାଡ଼ିହୋଇ ଯାଇପାରେ। ବିବାହ ବ୍ରତକୁ ଯିବ ସିନା; ଶୁଦ୍ଧି ଘରକୁ ଯାଇପାରିବ ନାହିଁ। "ବାପ ଥିଲା ପୁଅ" ପକ୍ଷରେ ମଧ୍ୟ ସେହି ବାରଣ। ଶୁଦ୍ଧିଘରୁ ଆସିଥିବା ଚୁଡ଼ା, ଭଜୁଡ଼ା, ଜଲବୀ, ମିଠେଇ ପ୍ରଥମେ ଅଗ୍ନିରେ ଦେବା ପରେ ପିଲାଝିଲାଏ ଖାଇବେ। ମାଆ ହାତରେ ସେ ସବୁ ବାଣ୍ଟିବା ଦାୟିତ୍ୱ।

ଠାକୁର ଘରେ ପଶିବା ମନା। ମାଆ ଠାକୁର ଘର ଦାୟିତ୍ୱରେ। ମାଆର ବି ତିନି ଠାକୁର। ଭଗବତ ଗାଦି, ରାମାୟଣ ଗାଦି ଓ ମହାଭାରତ ଗାଦିରେ ବାପା ଓ ଜେଜେଙ୍କ ହାତ ଲେଖା ପୋଥି ସବୁ ଏମିତି ସଜାଇ ରଖାଯାଇଥାଏ ଯେ, ଶାଲୁ କନା ଢ଼ଙ୍କାଇ ଦେଲେ ସେମାନେ ତିନି ଠାକୁର ପରି ଦିଶନ୍ତି। ମଝିରେ ଖଟୁଲୀଟିଏ। ସେଥିରେ ରାଧାକୃଷ୍ଣଙ୍କ ଆଙ୍ଗୁଳି ପ୍ରମାଣ ପିତଳ ମୂର୍ତ୍ତି, ଗୋମତୀ ନଦୀର ପୋକକଟା ପଥରର ରଘୁନାଥ ମୂର୍ତ୍ତି ଓ ଗୋଟାଏ ଗଣେଷ ମୂର୍ତ୍ତି। ଏତେ ଚନ୍ଦନ ଯେ ଜାଣିହୁଏ ନାହିଁ- ସେଇଟି କାଠ, ପଥର ନା ମୃତ୍ତିକାର। ଉତ୍ତର କୋଣକୁ ବାଉଁଶ ପାତିଆର ପେଡି। ଭିତରେ ଲକ୍ଷ୍ମୀ। ତିନି କି ଚାରିମୂର୍ତ୍ତି ହାତୀ, ପିତଳର। ପିଠିରେ କଣା; ଯେଉଁ କଣାଦେଇ ମାଣବସା ଗୁରୁବାର ବା ସୁଦଶା ବ୍ରତରେ ମାଆ ଛୋଟ ଛୋଟ ମୁଦ୍ରା, ଯଥା- ସୁକି, ଦୋଅଣି, ଅଧୁଲି ପର୍ଯ୍ୟନ୍ତ ପକାଏ। ଟଙ୍କା ଭିତରକୁ ଯାଇପାରେ ନାହିଁ। ଅଭାବରେ, ପଇସା ନିହାତି ଦରକାର ପଡିଲେ, ବାପାମାଆ କଳିଲାଗନ୍ତି ଏବଂ ସୁରକ୍ଷିତ ମୁଦ୍ରା ବାପା ଲୁଣ୍ଠନ କରିଥାନ୍ତି। ଅମଙ୍ଗଳ କେବେ ସେଥିପାଇଁ ଘଟିନାହିଁ ବିହ୍ୱକରେ।

ଗଦା ମୋଠାରୁ ବୟସରେ ଖୁବ ବଡ଼। ତା ବାପାକୁ ମୁଁ ରାଧାନ୍ନା ଡାକେ। ତାକୁ ମୁଁ ଯିମିତି 'ଗଦା' ବୋଲି ଡାକେ, ସେ ମୋତେ 'ବସନ୍ତ' ବୋଲି ଡାକେ, ତୁ ତା ବେ ବା କରେ। ପଢ଼ାପଢ଼ିରେ ଦୁହିଁଙ୍କ ରାସ୍ତା ଫରକ। ସେ ପଢ଼େ ଅମରକୋଷ, କର୍ମକାଣ୍ଡ। ମୁଁ ପଢ଼େଁ ଫଳା, ପଣିକା ଓ ବର୍ଣ୍ଣବୋଧ। ଆମର ମେଳ ତେନ୍ତୁଳି ମଞ୍ଜି ଆଣିଥାଏ, ପଚିଶଟି ଅଗଲା ରଖି ଶ୍ଳୋକ ମୁଖସ୍ଥ କରେ। ମୁଁ କିଛି ମାଆକୁ କହି ଚୁଲିରେ ପୋଡ଼ି ଆଣିଲେ- ଦୁହେଁ କୁଡୁ କୁଡୁ କରି ଖାଉଁ।

ସେ ଯେମିତି ସ୍ୱର୍ଗବର୍ଗ, ପାତାଳବର୍ଗ ସାରି କ୍ରମେ ବନୌଷଧିବର୍ଗ ପଢ଼ିଲା; ମୁଁ ଫଳା, ପଣକିଆ ସାରି ବର୍ଣ୍ଣବୋଧ ଧଇଲି ଏବଂ 'ଅଖ' 'ରଖ' 'ଓଉ' 'ଓଟ' ଦେଇ 'ପ୍ରଜାପତିଟି ହରଷରେ, ବସିଛି ଫୁଲର ଉପରେ' ଯାଏଁ ଗଲି। କିନ୍ତୁ ଗଦା ତେନ୍ତୁଳି ମଞ୍ଜି

ଗଣି ଗଣି ଯେତିକି ମୁଖସ୍ଥ କରେ, ମୁଁ ତାଠୁଁ ଶୁଣି ଶୁଣି ସେତିକି ମନେରଖେ ।

ଖରାଛୁଟିରେ ଶଙ୍କରାନନ୍ଦ ସାଂଖ୍ୟତୀର୍ଥ ଗାଁକୁ ଆସିଥାନ୍ତି, ତାଙ୍କ ପରିବାର ସହିତ । ଦିନେ ଆମ ପିଣ୍ଡାରେ ପଢୁଥାଉଁ, ସେ ତାଙ୍କ ସାନପୁଅ ନାରଣକୁ ଘେନି ତାଙ୍କ ଭାଇ ସୀତାନାଥଙ୍କ ପିଣ୍ଡାରେ ବସିଲେ । ଗଦା ବାରିପଦାରେ ମାମୁଘରେ ରହି ସଂସ୍କୃତ ଟୋଲରେ ପଢ଼ିଲା ପରି ପଣ୍ଡିତ ମହାଶୟ ମଧ୍ୟ ତାଙ୍କରି ପାଠ ନିଜ ପୁଅକୁ ପଢ଼ାଉଥାନ୍ତି, ସେଇ ବରିପଦା ଟୋଲ୍‌ରେ । ପଣ୍ଡିତ ମହାଶୟ ପୁଅକୁ ପାଖରେ ବସାଇ ଆରମ୍ଭ କଲେ- "ଅମରକୋଷ" ଉପରେ ଚାଲେ ଦୁଇ ଚାଟଙ୍କ ଯୁଦ୍ଧ; "ହୁଁ- ଆରମ୍ଭ କର ନାରଣ; 'ଯସ୍ୟଜ୍ଞାନ ଦୟାସିନ୍ଧୁ';" ନାରଣ ଧାଡ଼ିଏକୁ ଗଦା ଧାଡ଼ିଏ । ଗଦା କେତେବେଳେ ଫେଲ୍ ମାରେ, ନାରଣ ବି କେତେବେଳେ ଫେଲ୍ ମାରେ । ଦୁହେଁ ଯେଉଁଠି ଫେଲ୍ ମାରନ୍ତି- କେକେ ମୋତେ ଚାହିଁ ଚିତ୍କାର କରନ୍ତି- "ତୁ ଆମର ପୂରଣ କରିପାରିବୁ ?" ମୁଁ ସଙ୍ଗେ ସଙ୍ଗେ ଗାଇଦିଏ ସୁର ଧରି । ଶଙ୍କର ପଣ୍ଡିତଙ୍କ ମୁହଁ ଫିକାପଡ଼ିଯାଏ । ପିଣ୍ଡାରେ ଦର୍ଶକ କୃଷ୍ଣ ମିଶ୍ର, ପୃଥୁ ମିଶ୍ର, କ୍ଷେତ୍ର ଓତା, "ବାଃ, ବାଃ ସାବାସ୍‌ରେ ବଚକାନି"- କହିଉଠନ୍ତି ।

ଏ ଘଟଣାର କିଛିଦିନ ପରେ ଏଇ ଦୁଇଜଣିଆ ଚାହାଳି ଭାଜିଗଲା । ଗଦାର ବାପା ରାଧାନ୍ନା, ଯେ କି ଦିନେ ରେକେଷ୍ଟ୍ରିରେ ଚାର୍ଜ ଦେଇ ଚାକିରି ଛାଡିଥିଲା, ସେ ପୁଅକୁ ଏକ ଯୁଗପ୍ରବର୍ତ୍ତକ କରିଦେଲା । ସାରସକଣା ଶନିବାର ହାଟରେ ପାନ ବିଡ଼ି ଦୋକାନ କରିବା ସଂସ୍କୃତ ଅମରକୋଷ ପଢ଼ିବା ଅପେକ୍ଷା ଅଧିକ ମୂଲ୍ୟବାନ ଓ ଲାଭଜନକ ହେବ ବୋଲି ବାପପୁଅ ବିଚାରକଲେ । ପାନ ପଇସାରେ ପାଞ୍ଚଖିଲ, ବିଡ଼ି ପଇସାରେ ବାରଟା, ଇଞ୍ଜିନ ମାର୍କା ବା ଗୋଲାପ ସୁନ୍ଦରୀ ମାର୍କା ଚକ୍ରଧରପୁରିଆ ବିଡ଼ି । ଗଦା ଗାଁରେ ଆଲି ଖେଳର ପ୍ରବର୍ତ୍ତକ । ହୋତା ଘର ଗଳି, ଆମ ଘର ଗଳି, ପଧାନ ଘର ଗଳିରେ ଏ ଖେଳ ଚାଲେ । ଏତେ ଭିଡ଼ ଜମେ ଯେ, ସ୍ତ୍ରୀଲୋକେ କୂଅ ପୋଖରୀକି ଯିବା ଅସମ୍ଭବ ହୁଏ । ଖେଳାଳିମାନଙ୍କ ମଧ୍ୟରେ ମୁଁ କନିଷ୍ଠତମ । ଗଦାକୁ ମୁଁ ପାଠରେ ହରାଇଥିବାରୁ ମୋ ଆଲିକୁ ସେ କୋରରେ ଟାଙ୍ଗି ଫଟାଇଦିଏ । କାନ୍ଦି କାନ୍ଦି ଘରକୁ ଫେରେଁ । ଥରକୁଥର ବାରିପଦା ମାମୁଘରକୁ ଯାଇ ଷ୍ଟକ ରଖିଥାଏ ଗଦା । ପଇସାଟିଏ ପାଇଲେ ଗୋଟାଏ ଅଲି ଦେଇଦିଏ । ଲୁଙ୍ଗି ପିନ୍ଧିଥିବା ବଂଗଦେଶର ବରିଶାଲର ଏକ ପଠାଣ ଆଲି ମିଆଁ ପାଖରୁ କିଣିଥିବା ତମ୍ବାପାରା, ଗିରାବାଜ ପାରା, ଲୋଟଣି ପାରାଙ୍କ ଖେଳ ବାପପୁଅ ମିଶି ଘରପାଖ ପଡ଼ିଆରେ ଦେଖାନ୍ତି ବା ହିଡ଼ମିଚା, ପିଡ଼ିଙ୍ଗ, ବାରମାସୀ, ଧନିଆ ପରି ବିଭିନ୍ନ ଶାକସବଜି ବା ଉଦ୍ଭିଦର ପ୍ରଦର୍ଶନୀ କରନ୍ତି । ପର୍ବ ପର୍ବାଣୀ, ଯାନିଯାତ୍ରା, ସଭାସମିତି ହେଲେ ଡ଼ାକୁଆ କାମ ଗଦାର । ଖୁବ୍ ସାମାଜିକ ମେଳାପି ପିଲାଟି । ଆମର କେହି ନୁହେଁ,

କିନ୍ତୁ ଆତ୍ମୀୟ ବନ୍ଧୁବାସ ଅପେକ୍ଷା ପ୍ରିୟ। ଗାଁରେ ଯେଉଁ ପାଞ୍ଚ ସାତଜଣଙ୍କ ମୁହଁ ବସନ୍ତରୋଗରେ ଜାଲିଚଟୁ ପରି ହୋଇଯାଇଥିଲା, ସେ ଭିତରେ ଗଦା ଜଣେ। ଏବେ ପୁରିଆ ଗଉଡ଼ ଛଡ଼ା ବସନ୍ତାଙ୍କିତ ମୁଖମଣ୍ଡଳ ଆଉ କାହାରି ଗାଁରେ ନାହିଁ ଏବଂ ସେ ରୋଗଟି କେଡ଼େ ଭୀଷଣ, ଭୟଙ୍କର ଓ ମାରାତ୍ମକ- ଜାଣିବାର ଚିହ୍ନ ବା ସନ୍ତକ ଗାଁରେ ତାହାରି କେବଳ ଅଛି। ତାସ ଖେଳର ପ୍ରବର୍ତ୍ତକ ନହେଲେ ମଧ୍ୟ ବିବିଧ ପ୍ରକାର ଖେଳର ଉତ୍ସାହୀ ଶିକ୍ଷକ ଓ ଉଦ୍ୟୋକ୍ତା ହିସାବରେ ଗଦା ଗୁରୁଦେବ। ଚାକିରୀ ବାକିରୀ ନକରି ବାରିପଦାରେ ଯା'ଘରେ ରୋଷେଇ, ତା'ଘରେ ବାସେଇ କରି ସେ ଯେବେ ଛୁଟିପାଏ- ଗାଁକୁ ବୁଲିଆସେ, ଜମେଇ ଦିଏ। ତା' ବାପାଙ୍କୁ ସେ ଭାରି ମାନେ। ଘଡ଼ିଏ ରାତି ହେଲାବେଳକୁ ଗାଁ ମୁଣ୍ଡରୁ ବେ ଗଦା ! ବିଧାତା ତୋତେ ଛାଡ଼ିଲାଣି, ଆ' ଘରକୁ ଆ, ମାଆ କେତେବେଳ ତୋତେ ଚାହିଁ ବସିଥିବ ? ଡ଼ାକ ଶୁଣିଲାମାତ୍ରେ ତାସ୍‌ଫାସ୍ ଫୋପାଡ଼ି ଦେଇ ନିରୀହ ନିଷ୍ପାପ ଜୀବଟି ପରି ଗଦା ଆଜ୍ଞାମାନେ। ଯାହାର ଦିନେ ଗୋଷ୍ଠଦେ ଜମି ପ୍ରାୟ ନଥିଲା ଆଜି ତାରି ଦାୟାଦ ଗାଁର ଅଧେ ମାଡ଼ିଯାଇଛନ୍ତି ଏବଂ ତାରି ନାତି ଗାଁର ପ୍ରଥମ ଟି.ଭି. ଏଣ୍ଟିନା ତାଳେ ଉଚ୍ଚକୁ ଟେକିଛି ଗାଁ ମୁଣ୍ଡରେ। ସାରଳାମଣ୍ଡପରେ ବସି ମଧ୍ୟ ମୋର ଏଣ୍ଟିନା କିନ୍ତୁ ହାତ ପହୁଞ୍ଚରେ; ଯେ କେହି ଗେଣ୍ଟୁ ଓପାଡ଼ିଦେବ ତାର।

ତେନ୍ତୁଳିମଞ୍ଜିର ଚାଟଶାଳୀ ଛାଡ଼ି, ସାରସକଣା ହଟଗୋଳ ଅବିଦ୍ୟାଳୟରେ ଯୋଗ ଦେବା ପୂର୍ବରୁ ସାଙ୍ଗ ଗଦା ଯେଉଁ ଯୋଡ଼ିଏ ଶ୍ଳୋକ ମୋତେ ଅବଦାନ ଦେଇଥିଲା, ସେ ଦୁଇଟି ଆଜିଯାଏ ନିର୍ଭୁଲ ମନେ ଅଛି। ଦୁଇଟିଯାକ ମେଜିକ୍ ଶ୍ଳୋକ। ଦିନେ ସେ କହିଗଲା- "ବସନ୍ତ, ଏ ଶ୍ଳୋକର ଅର୍ଥ କହିପାରିବୁ ? ନାଦାନାରା ନାକ୍ତିନାତି, ରାବେରାକ୍ଷ, ରାମୁରାଙ୍ଗ, ୟରାୟରାଣପଣତା।" ମୁଁ କଣ, ମୋ ବାପଙ୍କ କେକେ କେହି କହିପାରିବେ ନାହିଁ। ପରାଜୟ ସ୍ୱୀକାର କରନ୍ତେ, ତଳ ଓପର କରି ସେଇ ଅକ୍ଷରଗୁଡ଼ିକ ଲେଖି ପଙ୍‌କ୍ତିରୂପେ ସଜାଇ ପଢ଼ିଲା- "ନାରାୟଣ ପରାବେଦା, ନାରାୟଣ ପରାକ୍ଷରା; ନାରାୟଣ ପରାମୁକ୍ତି, ନାରାୟଣ ପରାଙ୍ଗତି।" ଅନ୍ୟ ଶ୍ଳୋକଟି ସେମିତି ଷୋଳ ଅକ୍ଷରି ଶ୍ଳୋକ, ଚାରିଧାଡ଼ିଆ, ଏମିତି ପଢ଼ିଗଲେ ଷୋଳଟି ନିରର୍ଥକ ଅକ୍ଷର; ମାତ୍ର ଉପର ତଳ ଯୋଡ଼ି ପଢ଼ିଲେ- ଆଠଟି ଦୋ ଅକ୍ଷରି ଶବ୍ଦର ସମାହାର; ଏଡ଼ାଲ୍‌ଟର ଏଡ଼ାଲ୍‌ଟ ବି ବୁଝିପାରିବ ନାହିଁ। ସେଇଟି ବି ମନେଅଛି; କିନ୍ତୁ କାହାକୁ କେବେ ସେ ମେଜିକ ଶ୍ଳୋକ କହିନାହିଁ, କି କାଛବାଡ଼ରେ ଲେଖିନାହିଁ। ଜୟ ଗଦାଧର, ତୁ ମହାଗୁରୁ ମୋର। ଅଗୁରୁବିଦ୍ୟାର ବି !

ଏଥର ମୋର ବିଦ୍ୟାଳୟ ସ୍ଥାନ ପରିବର୍ତ୍ତନ ହେଲା ପଧାନଘର ଭିତର ଅଗଣା

ପିଣ୍ଡାକୁ । ଶିକ୍ଷକ ବଦଳ ହେଲେ । ଉମାକାନ୍ତ ନନା ହେଲା ନୂଆ ମାଷ୍ଟର । ସାଥୀହେଲେ ପଧାନ ଝିଅ, ଯେ ଅଳ୍ପଦିନ ପରେ ନୂଆ ଯୁବକ ପଧାନଙ୍କୁ ସ୍ୱାମୀ ରୂପେ ପାଇବ ଏବଂ ସ୍କୁଲ ପୁଣି ଭାଙ୍ଗିଯିବ । ଜୀବନରେ ଏଇ ହେଲା ସହଶିକ୍ଷାର ଆରମ୍ଭ । ଜଣେ ପୁଅ, ଜଣେ ଝିଅ; ଛାତ୍ର ସଂଖ୍ୟା ଦୁଇ । ଅନ୍ତତଃ ତେରବର୍ଷପରେ ରେଭେନ୍‌ସା କଲେଜରେ ପୁଣି କ୍ଲାସରେ ଝିଅଙ୍କ ସହିତ ବସିଲି, ଯାହାଙ୍କ ସାଙ୍ଗରେ ପଦେକଥା ହୋଇନି, କି ଦି'ହାତ ପାଖକୁବି ଯାଇନି ।

ଏଇଠି ପଢ଼ିଲି ପୁଣି ବର୍ଣ୍ଣବୋଧ, (ଅଖ ରଖ ଆଇ ଉଇ) ଆଉ ଏକ ଦୁଇ, ଦୁଇକେ ଦୁଇପଣ, ଦୁଇ ଦୁଣେ ଚାରି । ବଡ଼ ବିରକ୍ତିକର । ପାଠରେ ରଙ୍ଗନାହିଁ, ରସନାହିଁ । ଅରଣା ମଇଁଷି ରହିଛି ଅନାଇ, ପେଚା ରାବିଲା ରାତ୍ରି କାଳେ, ଆମ୍ଭ ଜନ୍ମଭୂମି ଉତ୍କଳ ଦେଶ । ମୋ ଜନ୍ମଭୂମି ତ ମୟୂରଭଞ୍ଜର ପାଣ୍ଡଡ଼ା । ସେତେବେଳେ ଉତ୍କଳ ନାହିଁ, କି ଓଡ଼ିଶା ନାହିଁ ।

ମନନାନୀ ସାଙ୍ଗରେ ପଢ଼ିଲି ବର୍ଣ୍ଣବୋଧର ପ୍ରଜାପତି ବା ଭାଲୁ ପାଖରୁ । ନନା ବେଶି ବେଳଯାଏ ବସିପାରେନି, କବିରାଜି ଶିଖେ । ଜେଜେ ପାଖରୁ ଆମର ପଢ଼ା ଅଳ୍ପକେ ସରିଯାଏ । ବାପା ଓ ଜେଜେ, ମୋର ଅଗ୍ରଗତିରେ ବିଷଣ୍ଣ ଭାବ ଦେଖାନ୍ତି । ପଢ଼ା ହେଉ ବା ନହେଉ, ମୋତେ ପଧାନ ଘର ଭାରି ଭଲ ଲାଗେ । ପଧାନୁଣୀ ରାଜାଲୋକର ଆମ ଶତପଥୀ ବଂଶର ଝିଅ । ସୂର୍ଯ୍ୟାନନ୍ଦ ଶତପଥୀଙ୍କ ଭଉଣୀ । ଗୌରୀ, ହରଷିଆ ଏବଂ ଦୟାବତୀ । ମନନାନୀ ବି ସିମିତି ସ୍ନେହୀ, ଧୀରା, ଅଳ୍ପଭାଷିଣୀ । ପଢ଼ାପଢ଼ିରେ ଭଲ ନୁହେଁ । ଲାଜକୁଳୀ, ବିନମ୍ରା । ପଧାନଘର ବହୂ ହେବାକୁ ସୁଯୋଗ୍ୟା ।

ପଢ଼ାପଢ଼ି ସରିଲେ ମୁଁ ତାଙ୍କ ବାଡ଼ିବଗିଚାକୁ ଯାଏ । ତାଳଗଛରୁ ତିନି ମଞ୍ଜିଆ ତାଳଟିଏ ବରଡ଼ା ଦେଇ ଶବ୍ଦ କରି ତଳେ ପଡ଼ିଲେ, କୁଣ୍ଢାଇ ଆଣି ତାଙ୍କ ଘରେ ଦିଏ । ବାରମାସୀ ଆମ୍ବ ଖୁବ୍ ଖଟା ହେଲେ ମଧ୍ୟ ଖାଏଁ । ଆତ ଏତେ ଫଳେ ଯେ, ଗଛରେ ରହି ପାକଳରୁ ଫାଟିବା ଅବସ୍ଥାକୁ ଆସେ । ଅମୃତ ପରି ଲାଗେ । ପଧାନ ବୁଢ଼ା ପଣସ ଓ ତେନ୍ତୁଳି ଭକ୍ତ; ଆତ ତାଙ୍କୁ ଭଲ ଲାଗେନି । କମ୍ବଳଟିଏ ପାରି ଚେକ ପାଉତି କାଟୁଥିଲା ବେଳେ, ମୁଁ ବୁଢ଼ାଙ୍କ ପାଖରେ ବସି ତାସ ଗୋଟାଇ ଆଣି ତାଙ୍କ ହାତକୁ ବଢ଼ାଇ ଦିଏଁ । ପିଲାଙ୍କ ସାଙ୍ଗରେ ବି ଖେଳନ୍ତି ।

ଶନିବାର ଦିନଟି ଆମ ଗାଁ ଗୋଟାଏ ପ୍ରକାର ହାଟରେ ପରିଣତ ହୁଏ । ଯଦିଚ ହାଟ ନାହିଁ, ତଥାପି ସପ୍ତାହକ ପାଇଁ ଗାଁର ପାନ, ପନିପରିବା କିଣାବିକା ସକାଳ ଓଳି ଚାଲେ । ସେଦିନ ଗାଁର ଉତ୍ତରରେ ପାଞ୍ଚ ଛଅ ମାଇଲ ଦୂରରେ ସାରସକଣାରେ ବଡ଼ହାଟଟାଏ ବସେ । ଗୋରୁଛେଳି ହାଟ ମଧ୍ୟ । ଆମ ଗାଁର ଡ଼ୋମମାନେ ପାଛିଆ, ଟୁକୁଲି, ବିଞ୍ଚଣା

ନିଅନ୍ତି; ମାହାଲିମାନେ ଢ଼ୋଲି, ବୁରୁଣି, ବାଉଁଶିଆ ଆଣନ୍ତି। ଗାଁ ସ୍କୁଲ ଦେଇ ଯେଉଁ ସଡ଼କଟି ବାଙ୍ଗିରିପୋଷି (ହାଣଦା)ରୁ ସୁବର୍ଣ୍ଣରେଖାକୂଳ ଶୀର୍ଷାକୁ ଯାଇଛି, ସେଇ ସଡ଼କର ସ୍କୁଲ ସମ୍ମୁଖ ଆମ୍ବଗଛ ମୂଳରେ ସନିସରିବା ହାଟ ଆପେ ଆପେ ବସିଯାଏ। ଆମ ଗାଁ ନିପାଣିଆ। ଚାରିମାଇଲ ଦୂର ଗୋଷାଣିପାଳ, ବେଲବରିଆରୁ ବୋଇତକଖାରୁ, ବାଇଗଣ, କଦଳୀ, ମଞ୍ଜା, କାକୁଡ଼ି ଆଦି ତାକା, ଠସଠସିଆ ଫଳମୂଳ ଚାଷୀମାନେ ହାଟକୁ ଭାରରେ ବୋହି ସେଇ ସଡ଼କଦେଇ ଯାଆନ୍ତି। ଗାଁର ବ୍ରାହ୍ମଣ ଗୋସାଇଁମାନେ ଝଙ୍କା, ବୁରୁଣି ଧରି ପହଞ୍ଚନ୍ତି। କି ସୁନ୍ଦର ହୃଷ୍ଟପୁଷ୍ଟ, ତାକା, କଳାଧଳା, କଣ୍ଟାଳିଆ ବାଇଗଣ ! ମୁଢ଼ି, ବାଇଗଣ ପୋଡ଼ା, ଘଣାପୋଡ଼ା ସୋରିଷ ତେଲ, ବାଡ଼ି ପିଆଜ, କାକୁଡ଼ି, ପୃଥିବୀର ସର୍ବଶ୍ରେଷ୍ଠ ଖାଦ୍ୟ। ମୁଁ, ବାପା ବା ଉମାକାନ୍ତ ନନା ସାଙ୍ଗରେ ସ୍କୁଲ ପାଖ ସଡ଼କକୁ ଯାଏଁ; ବାଉଁଶିଆ ଧରି ପଇସାକର (ସେରେ) ବା ଦୁଇ ପଇସାର ବାଇଗଣ ଧରି ଫେରେ। କେଢ଼େ ଭାରି ! ପୋକରା ବୁଢ଼ା ବାଇଗଣ ପଇସାକୁ ଦି'ସେରେ।

ତା'ପରେ ହାଟ ବସେ ପଧାନଘର ଗଳିରେ। ରାକାଲୋକାର ପାନୁଆ ଦଦେଇ, ଗୋବିନ୍ଦ ଶତପଥୀ ପାନ ଭାରଟି ମୂଲିଆ କାନ୍ଧରେ ଆଣି ପହଞ୍ଚୁଯାନ୍ତି। ତାହୁଁ ତାହୁଁ କ୍ଷେତ୍ର ନନ୍ଦ, ଫକୀର ଓତା, ଗୋବିନ୍ଦ ନନ୍ଦ, ଗୋବିନ୍ଦ ମିଶ୍ର, କୃଷ୍ଣ ମିଶ୍ର ପ୍ରମୁଖ ବ୍ରାହ୍ମଣ ଗୋସାଇଁମାନେ ଆସିଯାଆନ୍ତି। କିଏ କଡ଼ାଏ (୫୦ଟା) କିଏ ବା ଦୁଇକଡ଼ା ନିଅନ୍ତି। ବଛାବଛି କଲାବେଳେ କୋଳିପତ୍ର ପରି ଯେଉଁ ଛୋଟ ପାନ ବାଦ୍ ବା ବଦଳ ହୁଏ, ସେହିସବୁ ପାନ କେବେ ବା ବାପା ଗୋଟାଇ ଆଣନ୍ତି। ଯେଉଁମାନେ କଡ଼ା ଦରିଆ କିଣନ୍ତି ନାହିଁ, ସେମାନେ ସସ୍ତାହସାକ ଗୋବିନ୍ଦ ନନ୍ଦ ଦୋକାନରୁ ଅଧଲାଏ, ପଇସାଏ, ଏପରିକି, ଛଦାମ ଦରିଆ କିଣନ୍ତି। ଆମର ଗୋଟାଏ ପାନ ଚାରି ବା ଛଅ ଟୁକୁରା ହୁଏ। ମାଆ ବା ଉମାକାନ୍ତ ନନାର ସ୍ତ୍ରୀ ପାନ ଖୁବ୍ କମ୍ ଖାଆନ୍ତି। ପାନ ଅଭାବେ, ଗୁଣ୍ଡି ଚୂନ, ନ ହେଲେ ମତିହାରୀ ଦୋକତା। ବାପା, କେବେ ଖାଆନ୍ତି।

ପାନ ବିଷୟରେ କିଛି କହିଲେ ମୋର ମନେପଡ଼େ ପଧାନୁଣୀଙ୍କ କଥା। ଗୋବିନ୍ଦ ଦଦେଇ ତାଙ୍କ ଭାଇ ହୋଇଥିବାରୁ ବଛା ବଛା ପାନ ତାଙ୍କୁ ଦିଅନ୍ତି ଏବଂ ବିକ୍ରିବଟା ପରେ ତାଙ୍କ ଘରେ ଭାତ ଖାଇ ହାଟମୁହାଁ ହୁଅନ୍ତି। ତାଙ୍କ ଦିହ ପାକଲା ଆମ୍ବ ପରି ଗୋରା। ପ୍ରଚୁର ସ୍ୱାସ୍ଥ୍ୟ। ତାଙ୍କର ବା ତାଙ୍କ ଭାଇ ପୃଥୁ ଦଦେଇ ଏବଂ ଲୋକନାଥ ଦଦେଇଙ୍କ ପୁଅ ନାହିଁ। ରାକାଲୋକ ଷ୍ଟେସନରୁ ଓହ୍ଲାଇ ତାଙ୍କ ଘର ଦେଇ ଗଲେ ଯାହାହେଉ ଖାଇବାକୁ ମିଳେ। ସେବେ ଲୋକେ ଦେବାପାଇଁ ଆଗ୍ରହୀଥିଲେ ଏବଂ ଦେଇ ଆନନ୍ଦ ପାଉଥିଲେ। ମୁଁ ତାଙ୍କ ଘରେ ନଖାଇ କେବେ ଘରକୁ ଫେରେନାହିଁ।

ପଧାନୁଣୀବୁଢ଼ୀ ନିଜେ ଗୁଣ୍ଡି ତିଆରି କରୁଥିଲେ ଏବଂ ଗୁଣ୍ଡି ତିଆରି ଏକ କଳା ତାଙ୍କ ହାତରେ ଥିଲା । କିଆଖଇର ବର୍ଷଯାକ ତାଙ୍କ ଘରେ ଥାଏ । ଶାମୁକା ଚୂନ ବା କଲିଚୂନ କରନ୍ତି ଗୋବର ଘଷି ପୋଡ଼ି । ଭାରି ସଫାସୁତୁରା, ପରିଷ୍କାର ପରିଛନ୍ନ ସେ । ପାନ ଖାଇଥିଲେ ତାଙ୍କ ଓଠଟି ଭାରି ସୁନ୍ଦର ଦିଶେ । ପାନଖିଲ ପାଟିରେ ପକାଇ ଚୋବାଇ ଦେଲେ, କିଆଖଇର ଓ ଅନ୍ୟାନ୍ୟ ମସଲାର ମହକ କୋଠରିରେ ଭରିଯାଏ । ମୁଁ ପାଖରେ ଥିଲେ ମୋତେ ସେ ଡ଼ାଳଚିନି ବା ଯଷ୍ଟିମଧୁ ଟିକିଏ ଦିଅନ୍ତି । ପଧାନ ବୁଢ଼ାର ପାଟିରୁ ପାନ କେତେବେଳେ ଛାଡ଼ ହୁଏନାହିଁ । ଅଳ୍ପଦିନରେ ମୋର ସହଶିକ୍ଷା ଓ ଚାଟଶାଳୀ ପାଠ ଶେଷ ହେଲା । ମନନାନୀର ଜଗନ୍ନାଥ ଖୁଣ୍ଟିଆର ଦୁଆରି ବୋଲି ଜଣେକ ଟୋକା ସାଙ୍ଗରେ ବାହାଘର ହୋଇଗଲା । ବାହା ହେବା ଝିଅର ପାଠପଢ଼ା କଣ ? ଲାଜ କଥା, ପୁରୁଷ ଛୁଆ ସହିତ ବସି ପାଠ ପଢ଼ିବ ! ମୁଁ "ଭାଲୁ ପ୍ରଜାପତି" ପୃଷ୍ଠାରୁ "ଉତ୍ତର ଦିଗେ ବୃକ୍ଷ ଡ଼ାଳେ, ପେଚା ରାବିଲା ରାତ୍ରିକାଳେ" ପର୍ଯ୍ୟନ୍ତ ଯାଇଥାଏଁ । ପୁଣି ବିଦ୍ୟାରମ୍ଭ ଆଉ କେଉଁଠି, ଆଉ କାହା ସାଙ୍ଗରେ । କେଜେ ସଞ୍ଜବେଳେ ପାଖରେ ଶୁଆଇ ଯାହାହେଉ ଗାଉଥାନ୍ତି, ଗପ କହୁଥାନ୍ତି ପଖାଳ ବଡ଼ା ହେବାତକ ।



## ।। ବାର ।।

କେତେଦିନ ତଳେ ଗାଁକୁ ଯାଇଥିଲି । ମାଆ ବାପା ଜେଜେଙ୍କ ପାଦ ଯେଉଁଠି ପଡ଼ିଛି ବା ହାତ ଯେଉଁଠି ଲାଗିଛି- ସେଇ ଗାଁ, ଘରର ସ୍ପର୍ଶ ପାଇବାକୁ ଯେତେ ଯେତେ ବୁଢ଼ା ହେଉଛି- ସେତେ ସେତେ ମନବଳୁଛି । ଯେତେ ସୁଖସୁବିଧା ରାଜବାଟୀରେ ପାଉଥିଲେ ବି, ଜନ୍ମ ବିଟପୀକ୍ରୋଡ଼କୁ ଚଢ଼େଇର ମନ ଯିମିତି ଧାଏଁ, ମୋର ସିମିତି ହେଉଛି । ଶୁଣିଲି ଗାଁ ସ୍କୁଲ ଶତବାର୍ଷିକୀ ପାଇଁ ଆଲୋଚନା, ଆୟୋଜନ ଜୋର୍‌ସୋର ଚାଲିଛି । ହଠାତ୍ ମୋର ମନେ ପଡ଼ିଲା- ସ୍କୁଲ ସାମନା ସଡ଼କ କଡ଼ର କାଠପଟାରେ ଲେଖା ଅକ୍ଷରଗୁଡ଼ିକ- "ପାନ୍ଥଡ଼ା ଉଃପ୍ରାଃ ସ୍କୁଲ, ସ୍ଥାପିତ ୧୮୮୯ ।" ଏଇଟି ବାପାଙ୍କ ଯୁବାକାଳର କାଠଖୋଦେଇ କାମ । ସେତେବେଳେ ସେ ସୁନ୍ଦର କାଠକବାଟ ଜରିପାରୁଥିଲେ । ସୁନ୍ଦର ନକ୍‌ସା କାମ । ପିଆଶାଳ, ଶିଶୁ, ଶାଳ ଓ କଇମ ଆଦି ନାନା ରଙ୍ଗର କାଠ ଯୋଡ଼ି ଏତେ ସୁନ୍ଦର ଲତା ଫୁଲ ଓ ଫଳ ମେଳ କରିଦିଅନ୍ତି ଯେ, ଆଖିଲାଖି ରହେ । ଅତି ବେଶି ନିଷ୍ଠା ଓ ଆଗ୍ରହ ଯୋଗୁଁ ତାଙ୍କ ଆଖିରେ ପରଳ ପଡ଼ିଲା ଏବଂ ଜୀବନର ଶେଷ କାଳରେ ଚକ୍ଷୁ କେମ୍ପରେ ଗୋଟିଏ ଆଖି ହରାଇଲେ ମଧ୍ୟ ।

କେବଳ ମୋର୍ ନୁହେଁ- ଏ ସ୍କୁଲଟି ବାପା, କେକେ, ନନା, ଭାଇ ଭଉଣୀ ଏପିରିକି ମୋ ସ୍ତ୍ରୀର୍ ବାଲ୍ୟ ବିଦ୍ୟାଳୟ, ଯାହାର ଖ୍ୟାତି ବଣକଙ୍କଲିଆ ରାସ୍ତା ଦେଇ ବାରିପଦା, ବିଶୋଇ, ବାଙ୍ଗିରିପୋଷି, କୁଳିଅଣା ଆଦି ଦୂର ସ୍ଥାନରୁ ମଧ୍ୟ ଛାତ୍ର ଆକର୍ଷଣ କରି ପାରୁଥିଲା; ସେଇ ସ୍କୁଲର ପୁରୁଣା ନଥିପତ୍ର ଅଣ୍ଡାଳିବାର କୌତୁହଳ ସମ୍ବରଣ କରି ନପାରି ଅଫିସକୁ ଚାଲିଗଲି ଏବଂ ମୋର କୁଟୁମ୍ବ ରାକାଲୋକାର ଜନୈକ ଶତପଥୀ ବଂଶର ହେଡ୍‌ପଣ୍ଡିତଙ୍କ ସାହାଯ୍ୟରେ ଯାହା ଅକସ୍ମାତ୍ ପାଇଲି- ତାହା ମୋ ଦିହରେ ପୁଲକ ଆଣିଦେଲା ।

ଫୁଲସ୍କେପ୍, ପୁରୁଣା, ପତଳା ବାଦାମୀ କାଗଜର ଲଗ୍‌ବୁକ୍‌ର ପ୍ରଥମ ପୃଷ୍ଠାରେ ଲେଖା ହୋଇଛି ସ୍କୁଲର ଇତିହାସ । ସଂକ୍ଷିପ୍ତ ହେଲେ ମଧ୍ୟ ଯଥେଷ୍ଟ ମୋପାଇଁ ।

ଅତ୍ର ପାଞ୍ଚଡ଼ା ଶାସନରେ ୧୮୮୯ ମସିହାରେ ନିଃପ୍ରାଃ ସ୍କୁଲ ସ୍ଥାପିତ ହେଲା । ଏହି ସ୍କୁଲର ଶିକ୍ଷକ ପଦରେ ପ୍ରଥମତଃ ଶ୍ରୀ ସାରଦା ପ୍ରସାଦ ରାୟ ନିଯୁକ୍ତହୋଇ ଆସିଥିଲେ । ଦୁଇବର୍ଷ ମଧ୍ୟରେ ସୁନ୍ଦର ସାଧାରଣ ପାଠୋନ୍ନତି ଓ ବାର୍ଷିକ ଫଳ ଉତ୍ତମ ହେବାରୁ ୧୮୯୧ ମସିହାରେ ଏହା ଅଃପ୍ରାଃ ସ୍କୁଲରେ ପରିଣତ ହେଲା ଏବଂ ଉକ୍ତ ସାରଦା ପ୍ରସାଦ ରାୟ ହେଡ୍‌ପଣ୍ଡିତ ପଦରେ ନିଯୁକ୍ତ ହେଲେ । ଏହି ସମୟରେ ହେଡ୍‌ପଣ୍ଡିତ.ବେତନ ୮ ଟଙ୍କା ଥିଲା । ୧୮୯୮ରେ ପୁଣି ପୂର୍ବୋକ୍ତ ହେଡ୍‌ପଣ୍ଡିତ ସାରଦା ପ୍ରସାଦ ରାୟଙ୍କୁ ସ୍କୁଲକୁ ପଠାଯାଇଥିଲା.... । ଏହି ସମୟରେ ଦ୍ୱିତୀୟ ପଣ୍ଡିତମାନଙ୍କ ବେତନ ୩ ଟଙ୍କା । ୧୯୦୫ ମସିହାରେ ଶ୍ରୀ ଅର୍ଜୁନ ମହାପାତ୍ର (ବାପାଙ୍କ ସହପାଠୀ) ୨ୟ ପଣ୍ଡିତ ପଦରେ ନିଯୁକ୍ତ ହୁଅନ୍ତି । .....ଏଥିମଧ୍ୟରେ ଶ୍ରୀ ବୃନ୍ଦାବନ ମିଶ୍ର (ଆମ ପଡ଼ିଶା, ଯେ ମୋ କାନ ଟାଣିଟାଣି ପାଞ୍ଚଡ଼ା ଉମାଦେଇପୁର କେଉଁ ନାଆଁଟା ଠିକ୍ ଶିଖାଇଥିଲେ) ବ୍ରାହ୍ମଣଘାଟୀ ବଡ଼କେଦମ ସ୍କୁଲରୁ ବଦଳିହୋଇ ଦ୍ୱିତୀୟ ଶିକ୍ଷକ ପଦରେ ଏହି ସ୍କୁଲକୁ ଆସିଲେ । ....ପ୍ରାୟ ୧୯୦୪ ମସିହାରେ ସ୍ୱର୍ଗୀୟ ଶ୍ରୀମଦ୍ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଦେଓ ରାୟବାହାଦୁରଙ୍କ ଆଦେଶକ୍ରମେ ଏହି ସ୍କୁଲ ପକ୍‌କା ଗୃହରେ ପରିଣତ ହେଲା । ସର୍ବପ୍ରଥମେ ଖଡ଼ଦ୍ୱାରା ଉପର ଛପରବନ୍ଦୀ ହୋଇଥିଲା । କେତେ ବର୍ଷ ପରେ ଟିଣଦ୍ୱାରା ଛପରଲି କରାଗଲା । ୧୯୧୭ ମସିହାର ଝଡ଼ବତାସରେ ସମସ୍ତ ଟିଣ ତଳକୁ ଖସି ପଡ଼ିଲା । ଉକ୍ତ ସାଲରେ ଏହି ଟିଣଦ୍ୱାରା ଗୃହଉପର ଛାଉଣି କରାଯାଇଛି । ଶ୍ରୀ ସାରଦା ପ୍ରସାଦ ରାୟ ହେଡ୍‌ପଣ୍ଡିତ ବୃଦ୍ଧ ହୋଇ କାର୍ଯ୍ୟ କରିବା ପକ୍ଷେ ଅସମର୍ଥ ହେବାରୁ ୧୯୨୦ ମସିହାରେ ତାହାଙ୍କୁ ଟେଷ୍ଟରୁ କେତେ ଟଙ୍କା ରିୱାର୍ଡ୍‌ଦେଇ କାର୍ଯ୍ୟରୁ ବଞ୍ଚିତ କରାଯାଇଅଛି । ....ତତ୍‌ପରେ ୧୯୨୧ ମସିହା ଫେବୃଆରି ମାସରେ ଶ୍ରୀ ଭଗବାନ ମହାପାତ୍ରଙ୍କୁ ହେଡ୍‌ପଣ୍ଡିତ ପଦରେ ନିଯୁକ୍ତକରି

ପଠାଗଲା। ୧୯୨୪ରେ ୬ ଜଣ ପରୀକ୍ଷାର୍ଥୀ ମଧ୍ୟରୁ (ମୁଁ ଜଣେ) ପାଞ୍ଚଜଣ ପାସ୍ କରିଥିଲେ; ଏଥିମଧ୍ୟରୁ ୧ ଜଣ (ସ୍ୱୟଂ ଲେଖକ) ବୃତ୍ତି ପାଇଥିଲା।

ଲଗ୍ ବୁକ୍‌ର ସ୍ୱଳ୍ପଦାମୀ ବାଦାମୀ କାଗଜରେ ସଂକ୍ଷେପରେ ସ୍କୁଲର ଇତିବୃତ୍ତ ଅନୁଷ୍ଠାନ ପକ୍ଷରେ ଯେତେ ମୂଲ୍ୟବାନ, ମୋ ପକ୍ଷରେ ତାଠୁ ବେଶି। କାରଣ ଏହାଭିତରେ ମୁଁ କେତେ କଣ ଦେଖିପାରୁଛି, ମନେପକାଇ ପାରୁଛି। ସ୍କୁଲ ସାମନା ସଡ଼କ କଡ଼ରେ ଦୁଇଟି ପୁରୁଣା ଆମ୍ବଗଛ। ଗୋଟିଏ ଲମ୍ବା, ଅନ୍ୟଟି ଦିଫାଙ୍କୁଡ଼ିଆ, ଗେଡା, ସ୍କୁଲବଗିଚା ଭିତରକୁ ବଙ୍କେଇ ହୋଇ ପଶିଯାଇଛି। ଅନ୍ୟଦୁଇଟି ସ୍କୁଲ ସୀମା ଉପରେ। ପତ୍ରଗହଳ। ମିଠା, ଚେପ୍‌ଟା, ଛୋଟ ଫଳ।

କେବେ କିମିତି ପାକଲା ଆମ୍ବଟାଏ ଲୁଚାଚୋରାରେ ଠପ୍‌କିନା ପଡ଼ିଗଲେ, ଅମୃତ ଫଳଟାଏ ପାଇଗଲି ଭାବେ। କୁମ୍ଭାଟୁଆ, କପୋତ, ହଳଦୀ ବସନ୍ତ ଏଇଗଛରେ ବସନ୍ତି। କୋଇଲି କୁହୁ କୁହୁ କରେ, କିନ୍ତୁ ଦେଖା ଦିଏନାହିଁ। ଆମ୍ବଗଛ ମୂଳରେ ଯୋଡ଼ାଏ କନିଅର ଗଛ। ମଲ୍ଲୀବୁଦା ଛଡ଼ା ଟଗର ଓ ଝରା ମନ୍ଦାର ଗଛ ବଗିଚାରେ। ପୂର୍ବପଟେ ବାଗବଗିଚା-ଯହିଁରେ ବର୍ଷା ଦିନରେ ଜହ୍ନି, ଭେଣ୍ଡି, ମିଠା ଲାଲି ଖଡ଼ା ଏବଂ ଶୀତ ଦିନରେ କୋବି, ମୂଳା, ଗାଜର ହୁଏ। ସ୍କୁଲ ହତାଟି ଏକରେ ବା ଦେଢ଼ ଏକର। ଗାଁ ବାଲାଏ ମୂଲିଆ ମଜୁରି ଦେଇ ଲାଖରାଜ ଜଙ୍ଗଲରୁ ଖୁଣ୍ଟ-ଝଟା ଆଣି ବର୍ଷକୁ ବର୍ଷ ବାଡ଼ ଘେରବନ୍ଦୀ କରନ୍ତି। ପିଲାଏଁ ବଣ ପୋଖରୀରୁ କଳସୀ, ମାଠିଆରେ ପାଣି ଆଣି ଶାକସବଜି, ଗେଣ୍ଡୁଫୁଲ ଉପୁଜାନ୍ତି। ଫସଲ ମୁଖ୍ୟତଃ ହେଡ଼ପଣ୍ଡିତ ସାରଦା ମାଷ୍ଟରଙ୍କ ଭୋଗ। ମାନ୍ୟଗଣ୍ୟ ଲୋକେ ବୁଦାଏ ଅଧେ କୋବି ହେଡ଼ପଣ୍ଡିତଙ୍କ କୃପାରୁ ପାଇଥାନ୍ତି।

ଲଗ୍ ବୁକରେ ଯେଉଁ ସାରଦା ପ୍ରସାଦ ରାୟ ଓ ଶ୍ରୀ ଭଗବାନ ମହାପାତ୍ରଙ୍କ ନାମୋଲ୍ଲେଖ ରହିଛି, ସେମାନେ ଉଭୟ ମୋର ବାଲ୍ୟଗୁରୁ। ସେ ଦୁହିଁଙ୍କ ଅମଳରେ ମୁଁ ଅପର ପ୍ରାଇମେରୀ ପାସ୍ କରିଛି ଏହି ଅନୁଷ୍ଠାନରୁ। ସାରଦା କାର୍ଯ୍ୟରୁ ବଂଚିତ ହେବାରୁ କେତେ ମାସ ଥାଏ ମୁଁ ସ୍କୁଲରେ ପ୍ରବେଶ କଲି। ନିମ୍ନ ପ୍ରାଇମେରୀ ପାଠ ତାଙ୍କ ପାଖରେ ହୁଏତ ମୁଁ ଦିନଟିଏ ପଢ଼ିଛି।

ସ୍କୁଲରେ ଯୋଡ଼ାଏ କୋଠରି। ବଡ଼ କୋଠରିରେ ନିମ୍ନ ପ୍ରାଇମେରୀ ପିଲାଏ ପଢ଼ନ୍ତି। ଝିଅ ପିଲା ସ୍କୁଲରେ ପଢ଼ିବାରେ ମୋର ମନେ ନାହିଁ। ବଡ଼ କୋଠରିରେ ଖଡ଼ିରେ ପିଲାମାନଙ୍କ ଘର ଆଙ୍କି ଦିଆଯାଏ। ଅ ଆ ପାଠରୁ- ଏକ କେ ଏକ ପଣ, ଦୁଇ ଦୁଣେ ଚାରିପଣ ମଧ୍ୟ ଦେଇ ପିଲାଏଁ ବର୍ଣ୍ଣବୋଧ, ଶିଶୁବୋଧ, କଥାବଳି ପଢ଼ନ୍ତି। ଏ ସବୁ

ଭୁଇଁପାଠ। ତାପରେ ସାନ କୋଠରିକି ପ୍ରମୋଶନ ପାଆନ୍ତି। ସେଠି ବେଞ୍ଚରେ ବସନ୍ତି। ଭୂଇଁରୁ ବେଞ୍ଚକୁ ଯିବା ଅର୍ଥ, ନିମ୍ନରୁ ଉଚ୍ଚପ୍ରାଥମିକକୁ।

ମାତ୍ର କେତେଦିନ ପୂର୍ବରୁ ମୁଁ ସ୍କୁଲରେ ଭର୍ତ୍ତି ହୋଇଥାଏଁ, ଗାଁ ପାଠ ବା ପିଣ୍ଡାପାଠ ସାରି। ସେ ପାଠର ଗୁରୁ ହେଲେ ଜେଜେ, ବାପା, ନନା। ଚାଟ କହିଲେ ମୁଁ ଏକା। ଗଦା ଷଡ଼ଙ୍ଗୀ ଅବଶ୍ୟ ଦୂରରେ ବସି ଅମରକୋଷ ଘୋଷୁଥାଏ ଆମ ପିଣ୍ଡାରେ। ନନା ପଢ଼ାଏ ପଧାନ ଘରେ- ମୋତେ ଆଉ ମନନାନୀକୁ। ଗାଁରେ ଚାଟଶାଳୀ ନଥିବାରୁ ଏ ଦୁଇଦିନିଆଁ ପାଠର ହଠାତ୍ ପରିସମାପ୍ତି। କାରଣ ମନନାନୀ ବାହା ହୋଇଗଲା।

ଠାକୁରଘରେ ମୁଣ୍ଡିଆ ମାରି ସ୍କୁଲକୁ ଗଲି। ପରିଧାନ କରିଆ, ଗାମୁଛା, ଖାଲି ଦହି। ଚଟ ଆସନ, ସିଲଟ, ପେନ୍‌ସିଲ, ବର୍ଣ୍ଣବୋଧ ବହିଟିଏ ଧରି ସ୍କୁଲକୁ ଚାଲିଥାଏଁ କାନ୍ଦ କାନ୍ଦ ହୋଇ, ଆଖିରୁ ଲୁହ ଝରାଇ। ମାଡ଼କୁ ଦେବତା ଡରେ। ଛଅ ସାତ ବର୍ଷର ପିଲା ନାନା ଆଳ ଦେଖାଇ ଲୁଚିଛପି ରହିଯାନ୍ତି। ସ୍କୁଲକୁ ଯାଆନ୍ତି ନାହିଁ। ଥରେ ସାନଭାଇ ପ୍ରସନ୍ନ ଏକ ଅଗଭୀର ବିଲ-କୂଅରେ ନୀଳକଇଁ ପତର ଢ଼ାଙ୍କି ହୋଇ ପାଣି ଭିତରେ ରହିଥିଲା। ହରି ନନ୍ଦ ଓ ପୂର୍ଣ୍ଣ ମିଶ୍ର ରାମ ଗଉଡ଼ର ସାହାଯ୍ୟ ନେଇ, ବାଡ଼ି ପଛ ପଟ ବାଉଁଶ ବୁଦାରେ ଦୋଳି ଟାଙ୍ଗି ସ୍କୁଲ ସମୟତକ କଟାଉଥିଲେ ସାରଦା ମାଷ୍ଟରଙ୍କ ଡ଼ରରେ। ସେଇ ସାରଦା ମାଷ୍ଟର ଥରେ ହରି ନନ୍ଦଙ୍କ ଚଇତନ ଚୁଟି ଗୋଛାକ ସମୂଳେ ଉପାଡ଼ି ଦେଇଥିଲେ, ଭୂଇଁରୁ ଉପରକୁ ପ୍ରିୟ ଛାତ୍ରକୁ ଉଠାଇବାର ଚେଷ୍ଟା କରି। ହରିଆ ତଳେ ପଡ଼ିଗଲା ଅଚେତ ପ୍ରାୟ ହୋଇ। ଅନେକ ଛାତ୍ର ଏ ପ୍ରକାର କଠୋର ଦଣ୍ଡ ଭୋଗିଛନ୍ତି ତାଙ୍କ ହାତରୁ। ବାପାଙ୍କ ହାତଗଣ୍ଠିକି ଜେଜେ ଛେଚାଛେଚି କରି (ଅକ୍ଷର ବର୍ତ୍ତୁଳ ଓ ସୁନ୍ଦର କରିବାପାଇଁ) ବଙ୍କା ଟଙ୍କା କରିଦେଇଥିଲେ। ସାରଦା ମାଷ୍ଟର ତା'ଉପରେ କାରସାଦି କରିବାରୁ ଅଙ୍ଗୁଳି ଗଣ୍ଠି ଜୀବନଯାକ ସଳଖ ହୋଇ ପାରିଲା ନାହିଁ। ଜେଜେବାପା ହେଡ଼ପଣ୍ଡିତଙ୍କୁ ଭଲ କଳଗିଆ ଦେଇ ନ ପାରିବାରୁ ବାପାଙ୍କୁ ଏ ପ୍ରାୟଶ୍ଚିତ କରିବାକୁ ପଡ଼ିଥିଲା।

ଥରେ ବଙ୍କିମ ଚକ୍ରବର୍ତ୍ତୀ ନାମକ ଜନୈକ ସ୍କୁଲ ଇନ୍‌ସପେକ୍‌ଟର ଗସ୍ତରେ (ବଳଦ ଗାଡ଼ିରେ ଶୋଯସାରି, ପୃଥୁଳ ଦିହକୁ ତା' ଉପରେ ,ଥୋଇ) ଆସି କ୍ଲାସ ଅନୁକ୍ରମରେ ପରୀକ୍ଷା କରୁଥନ୍ତି। ମୁଁ ଶିଶୁ ଶ୍ରେଣୀରେ 'ବର୍ଣ୍ଣବୋଧ'ର ଐକାର ବନା ପଢ଼ୁଥାଏ। ମୋ ସାଙ୍ଗରେ ପଢୁଥାଏ ଜଇଳାସ (ଡାକନା 'ଜଇ') ବୋଲି ପିଲାଟି। ତା ବାପା ତାକୁ କାଖ କରି ଦିନେ ପାହାଡ଼ ପର୍ବତ ଦେଖାଉଥାନ୍ତି ("ଦେଖ୍‌ରେ ବାପା ବାଦୁଡ଼ିଘୋଲା, ହେଇ ଦେଖ ବିଦୁଉଣ୍ଡାର ଘାଟି, ଆହୁରି ଦେଖ ମାନଗଡ଼ ପାହାଡ଼")। ଏତିକିବେଳେ ବିଜୁଳି ଓ ବଜ୍ର ମେଘରୁ ଖସିଲା। ମୁଁ ଘଡ଼ଘଡ଼ିକୁ ଡରେ। ଧାଇଁଯାଇ ଜଇର ବାପାଙ୍କୁ କୁଣ୍ଢାଇ ପକାଇଲି।

ସେ ତାଙ୍କ ବାଡ଼ିରେ ମୋତେ ବାଡ଼ିଏ ପକାଇଲେ । ଅଳ୍ପଦିନ ପରେ ସେ ମରିଗଲେ । ମୋର ଧାରଣା- ସିଏ ମୋତେ ବାଡ଼େଇ ଥିଲେ. ବୋଲି ଏମିତି ହେଲା । କଇ ମୋଠୁଁ ବର୍ଷେ ଦେଢ଼ବର୍ଷ ବଡ଼ । ବିଧବା ମା । କାଛ ନାଇଁ କି ଚାଳ ନାହିଁ; ଧନ ନାଇଁ କି ଜନ ନାହିଁ ।

ଆମେ ଦୁହେଁ ଭାରି ସାଙ୍ଗ । କଇ ପଢ଼ାପଢ଼ିରେ ନ ଥାଏ । ସେ କେବଳ ଶନିବାର ଦିନଟି ସ୍କୁଲକୁ ଆସେ, କେବଳ ମାଷ୍ଟରଙ୍କୁ ଜଣେଇବା ପାଇଁ-କିଏ କେଉଁଠି ତାସ ଖେଳୁଛି, ଗୋଲି ଖେଳୁଛି ବା ବନ୍‌ଶୀ ପକାଉଛି । ବାଘ୍ନ ଦଦେଇ (ଗୁଣିଗାରେଡ଼ି ବଳରେ ସେ ଗୋଖୁରସାପକୁ ଦେହରେ ଗୁଡ଼ାଉଥିଲେ, ସାପକାଟିର ମୁର୍ଦ୍ଦାରକୁ ଜୀବନଦାନ ଦେଉଥିଲେ)ଙ୍କ ସାନ ପୁଅ ଜମା ଆଉ ମୋତେ, ଆମ ଦୁହିଁଙ୍କି ଚୌକିଦାର କରି ନିଜେ ଥାନାବାବୁ ବୋଲାଉଥାଏ । ଦିନେ ତା'ରି ଆଦେଶରେ ଆମେ ଦୁହେଁ ବଣଭୋଜି କଲୁଁ । ଚୁଲିହାଣ୍ଡିକୁ ସଫାକରି ଭାତହାଣ୍ଡି କଲୁଁ । ଘରେ ଚାଉଳ ଆଣି ଭାତ କଲୁଁ । ଏବଂ, ସଜନା ଶାଗକୁ ତରକାରି କଲୁଁ । ଘରେ ନଖାଇ ଖଳାରେ ତିନିଟା ବେଳେ କଦଳୀପତ୍ରରେ ଫିଷ୍ଟ ଖାଇଲୁଁ । ସଞ୍ଜବେଳକୁ ତିନି ଘରେ ବାନ୍ତି ଉପରେ ବାନ୍ତି । ବଗାଳ ସାହିର ତିନ୍ତୁଳିମୂଳ ଘରୁ ଗୁଣିଆ କାଳିନ୍ଦୀ ବଗାଳ ଆସି ଫୁଙ୍କାଫୁଙ୍କି କରି ଲୁଣମନ୍ତରା ଦେଇ ଆରୋଗ୍ୟ କଲା । ତା'ପରେ ଥାନାବାବୁ ଜମ୍ବୁରୁ ଶତପଥୀ ଓ କଇ ଆଉ ବଇ ଦୁଇ ଚଉକିଦାରଙ୍କ ଫିଷ୍ଟ ହୋଇନାହିଁ ।

ଦୁଇ ଚଉକିଦାର ଆଜି ଛିଡ଼ା ହୋଇଛନ୍ତି ଆଉ ଏକ ଇନ୍‌ସ୍‌ପେକ୍ଟରଙ୍କ ସାମନାରେ । ବଙ୍କିମ ଚକ୍ରବର୍ତ୍ତୀ ସ୍କୁଲ ଇନ୍‌ସ୍‌ପେକ୍ଟର; ଭୀଷଣ ମୋଟା । ଖଟରେ ଶେଯ, ଗେରଦା ତଳିଆ ଉପରେ ଚିତ୍ ପଟାଙ୍ଗ ହୋଇ ପଡ଼ି, ଗୋଡ଼ତଳେ ଛିଡ଼ା ହୋଇଥିବା ଦୁଇଛାତ୍ର କଇ ଏବଂ ବଇଙ୍କୁ ପରୀକ୍ଷା କରୁଥାନ୍ତି । ମୋତେ ସାହେବ ପଚାରିଲେ, ବନାନ କର ଶୈଶବ । ମୁଁ ଠିକ୍ କହିଥିଲି; କିନ୍ତୁ ତାଲବ୍ୟ 'ଶ' ସ୍ଥାନରେ ଦନ୍ତ୍ୟ 'ସ' କହିଦେଲି । ସାଙ୍ଗ କଇକୁ ପଚାରିଲେ, "ତୋମାର ନାମ କନ ?" କଇ ସିମିତି ସଦମ୍ଭେ କହିଛି କଇଳାସ ବୋଲି- ସାହେବ ଉଦଣ୍ଡେ ପଚାରିଲେ, ବନାନ କର "ତୋମାର ନିଜେର ନାମ କଇଳାସ ।" ମୁହୂର୍ତ୍ତେ ଡେରି ନକରି ସାଙ୍ଗ କହିଲା, 'କରେ ଆକାର, ବରେ ଆକାର, ଚରେ ଆକାର ।' ହେଡ୍‌ପଣ୍ଡିତ ବାରଣ୍ଡାରେ କବାଟ ଓ କାନ୍ଥକୁ ଆଉଜି ଛାତ୍ରଦ୍ୱୟଙ୍କ କରାମତି ଦେଖୁଥିଲେ, ଶୁଣୁଥିଲେ । ସାହେବ ସିମିତି କ୍ଳାନ୍ତ ହୋଇ ଭୋଜନକୁ ପ୍ରସ୍ଥାନ କଲେ, ସାରଦା ପ୍ରସାଦ କଇକୁ କାନ ଧରି ଟାଣିନେଇ ଖରାରେ ଛିଡ଼ା କରାଇ ଦେଲେ ଏବଂ ଟଗରବୁଦା ମୂଳୁର ଇଞ୍ଚେ ବହଳ ଜୁମ ସାହିର ବାଆଁଶପାତିଆ କଇର ପିଠିରେ ଏତେ ଜୋରରେ ବାଡ଼େଇଲେ ଯେ, ପିଠି ଫାଟି ଝରଝର ରକତ ବାହାରିଲା ଏବଂ ବିଚରା କଇ ଠାଏଁ ଏକ

କରିପକାଇଲା । ଏଇ ହେଲା ସାରଦା ମାଷ୍ଟରଙ୍କ ରୁଦ୍ରମୂର୍ତ୍ତି। ଘରକୁ ଫେରି କାନ୍ଦିକାନ୍ଦି ମାଆ, ବାପା, ନନା, ଜେଜେ ସମସ୍ତଙ୍କ ଆଗରେ କଇର ଦୁଃଖ କଥା କହିଲି ଏବଂ ଆଉ ଇସ୍କୁଲ ଯିବି ନାହିଁ ବୋଲି ଜିଦ୍ ଧଇଲି। ବାପା ପ୍ରବୋଧ ଛଳରେ କହିଲେ,- "ତୁ ଡ଼ରନି ବାପା ! ସେ ବୁଢ଼ା ଯଦି ତୋ ଦିହରେ କେବେ ହାତ ଦବ, ସେଇଦିନ ତାର ମୋର ପଡ଼ିବ।" ନିଶୁଆବୁଢ଼ା ମୋ ପିଠିରେ ଦାଗ ରଖି ଦେଇଛି; ନଳୀଗୋଡ଼ର ଏ ଶିରଟାକୁ ମୋଟା କରି ଦେଇଛି।

ସେ କାଳର ଅନ୍ୟ ଜଣେ ସାଙ୍ଗ ଛୋଟା ଗଦା। ଗଦାଧର ନନ୍ଦ। ଗଦାଧର ଷଡ଼ଙ୍ଗୀ ଠାରୁ ପୃଥକ୍ କରିବାପାଇଁ ତା ନାମ ପୂର୍ବରୁ ଛୋଟା ଯୋଡ଼ାଯାଏ। କିଏ ତାକୁ ଛୋଟା ଗଦା ଡାକେ ତ, ଆଉ କିଏ ଭାଲୁଗୋଡ଼ିଆ ଗଦା ଡାକେ। ମୋ ସହିତ ଅମରକୋଷ ପଢୁଥିବା, ଆଲି ଖେଳୁଥିବା ଗଦାଠାରୁ ଇଏ ପାଠରେ ଧୁରନ୍ଧର। ତୃତୀୟ ଶ୍ରେଣୀ ଯାକେ ମୋ ସହିତ ପଢ଼ିଥିଲା ଏବଂ ଅଙ୍କରେ ଚାଳିଶରୁ ଚଉଦ ରଖି ପାସ୍ କରିଥିଲା। ମୁଁ ତେର ରଖି ଫେଲ୍ ହୋଇଥିଲି ଏବଂ ଡବଲ ପ୍ରମୋଶନରୁ ବଞ୍ଚିତ ହୋଇଥିଲି। ସେ ଦୋକାନୀ ଗୋବିନ୍ଦ ନନ୍ଦଙ୍କ ସାନଭାଇ। ଖୁବ୍ ନିରୀହ, ଗୁଣୁ ଗୁଣେଇ କଥା କହେ। ଦୋକାନୀ ମୋତେ ଶାଳପତ୍ରରେ ଗୁଡ଼ ଦିଅନ୍ତି ବିନା ପଇସାରେ।

ଗୋବିନ୍ଦନନା ଧନୀ। ତାଙ୍କ ଘରେ ପୂଜାପଣା ପିଠାପଣା ବହୁତ ହୁଏ। ଭାରି ଧୁମଧାମରେ ଦୁର୍ଗାପୂଜା ହୁଏ ତିନି ଚାରି ଦିନ ଧରି। ବୁଢ଼ୀଖମାଗୀରୁ ମୋ ସାନଆଈ ଆସେ। ସେଇ କେତେ ଦିନ ମୋର ତାଙ୍କ ଘରେ କଟେ। ଓଡା ବୁଢ଼ା, ତାଙ୍କ ସ୍ତ୍ରୀ ଶିରୀଶର ମାଆ, ମୋ ସାଙ୍ଗ ରାଜ ତାଙ୍କ ଘରଲୋକ ବୋଲି ଗଣାଯାନ୍ତି।

ବଡ଼ ମାଣପତ୍ରରେ ସିନ୍ଦୂରରେ ଠାକୁରାଣୀଙ୍କ ଆଖି ଆଉ ମୁହଁ ଆଙ୍କି, ମାଠିଆରେ ଥୁଆ ହୁଏ। କଖାରୁ ବଳି ପଡ଼େ। ପ୍ରତିଦିନ ଫୁଲଫଳ ଛଡ଼ା ହଜାରେ ଆଠ ବେଲପତ୍ର ଆମେ ଦୁହେଁ ସଂଗ୍ରହ କରୁଁ। ମୁଁ ବେଲ ଗଛରେ ଚଢ଼ି ପତ୍ର ତୋଳେଁ। ପ୍ରତିଦିନ ଖିରିପିଠା ପାଏଁ।

ରାତି ପାହିଲେ ଦଶହରା। ଗଇଣ, ଦୁଦୁରା, ଚାକୁଣ୍ଡା ଆଦି ଦଶ ଜାତିର ଫୁଲ ଫଳ ପୂକାରେ ଲାଗିବ। ତା'ଛଡ଼ା ଦୁର୍ଗାଦେବଙ୍କ ବିସର୍ଜନ ପୂଜା। କଥାହେଲା, ଛୋଟାଗଦା ଆସି ମୋତେ ବଡ଼ି ଭୋରରୁ ଡାକିବ। ମାଆକୁ କହିଲି, ସେ ବି ଡାକିଦବ। ଛୋଟାଗଦା ତା ସମୟରେ ଆସି ମୋତେ ଯିମିତି ଡ଼ାକିଛି- ଧଡ଼ପଡ଼ହୋଇ ଉଠିବସିଲି ଏବଂ ଖଟ ତଳେ ଥିବା ଫୁଲଜାଲି ଧରି ବାହାରିଗଲି ଦାଣ୍ଡକବାଟଟି ଆଉକାଇଦେଇ। ମାଆ ଜାଣିପାରିଲାନି।

ଜହ୍ନ ବୁଡ଼ି ଆସୁଛି। ଭାବିଲୁଁ ସକାଳ ଅଳ୍ପକେ ହବ। ସବୁ ଫୁଲ ଦୁହେଁ ତୋଳି ଆଣିବା। ଆଉ କେହି କଢ଼ଟିଏ ବି ପାଇବେ ନାହିଁ। ସ୍କୁଲ ଫାଟକର ତଡ଼ା ଫିଟାଇ ଭିତରକୁ ଗଲୁଁ। ରାସ୍ତା କଡ଼ ଝୁରା ମନ୍ଦାର ଗଛରେ ଦେଖିଲୁଁ ଫୁଲ ନାହିଁ, ଖାଲି-କଢ଼। କିଏ ତୋଳି ନେଇଗଲା ଭାବିଲୁଁ। ମଲ୍ଲୀ, ଟଗର, କନିଅର କେହି ଫୁଟି ନାହାନ୍ତି। ସମସ୍ତଙ୍କ କଢ଼ ଅବସ୍ଥା। ମୋତେ ଜଣାଗଲା- ଆସିଲାବେଳେ ବଡ଼ ପଡ଼ିଆରେ ମୁଁ ଭୂତ ପଛେ ପଛେ ଆସିଛି, ଯିମିତି ଭୂତ ମୋତେ ଶେଯରୁ ଉଠାଇ କୁଆଡ଼େ ନେଇ ଯାଉଛି ଅଚେତ ଅବସ୍ଥାରେ। ଚେତା ଆସିଲେ ରକ୍ତବାନ୍ତିକରି ମରିବି। ଦଣ୍ଡେ ଘଡ଼ିଏ ଗଲା। ସକାଳ ହେଲା ନାହିଁକି ଫୁଲମାନେ ଫୁଟିଲେ ନାହିଁ। ବଡ଼ କୋଠରିଟା ଖୋଲାଥାଏ। ପଶିଲୁଁ। କବାଟ ବନ୍ଦ କରିଦେଲୁଁ। ଚଟାଣରେ ଶୋଇଗଲୁଁ। ସକାଳେ ଉଠି ଫୁଲ ତୋଳିବା। କିଟିମିଟିଆ ଅନ୍ଧାର। ମେଘଟାଏ କୋରରେ ଆସି ବର୍ଷା ପିଟିଲା। ଟିଣଛାତରେ ବଡ଼ ବଡ଼ ଟୋପାର ଶବ୍ଦ ଆମକୁ ଭୀତତ୍ରସ୍ତ କଲା। କୁଣ୍ଢାକୁଣ୍ଢି ହୋଇ ଶୋଇଲୁଁ ଏବଂ ନିଦ ହୋଇଗଲା। ସକାଳୁ ଉଠି ଦେଖିଲୁଁ ପ୍ରଚଣ୍ଡ ଖରା। ଗଛରେ ଫୁଲ ନାହିଁ କି ଛୋଟ କଢ଼ ବି ନାହିଁ। ବାପା ଆମକୁ ଖୋଜି ଖୋଜି ଆସିଗଲେ। କଢ଼ା ଆଖିରେ ଆମ ଦୁହିଁଙ୍କୁ ଚାହିଁ କହିଲେ- "ବୁଡ଼ିଯାଉଥିବା ନବମୀ ଜହ୍ନକୁ ସୂର୍ଯ୍ୟୋଦୟ ବୋଲି ଭାବି ମଝି ରାତିରେ ଫୁଲ ପାଇଁ ଯାଇଥିଲ। ଫୁଲ ସିନା ସକାଳେ ଫୁଟିବ। ଆମର ଫୁଲ ଦରକାର ନାହିଁ, ଆଉ କେବେ ସେମିତି ଯିବ ନାହିଁ।"

ଏହାପରେ ଯେଉଁ ଶୋକାବହ ଅନୁଶୋଚନାମୟ କରୁଣ ଦୁର୍ଘଟଣା ଘଟିଲା, ତାହା ଜୀବନର ସମସ୍ତ ଦୁଃଖଠୁ ବି ବଳିଗଲା। ବାପା ବିଲକୁ ଯାଇ ଚାଷକାମ ତଦାରଖ କରନ୍ତି ଏବଂ ଗୋରୁଗାଈପାଇଁ ପ୍ରଚୁର ପରିମାଣରେ ମିଳୁଥିବା ଘାସ ହିଡ଼ରୁ ଦାଆରେ କାଟି ବଡ଼ ବୋଝଟିଏ ମୁଣ୍ଡାଇ ଘରକୁ ଫେରନ୍ତି। ଦିନେ ସଞ୍ଜବେଳକୁ ବାପା ଘାସବୋଝକୁ ଅଗଣାରେ ରଖିଦେଇ ମାଆକୁ ବରାଦକଲେ, ସଳିତାଟିଏ ଆଉ ଟିକିଏ ଦୁଧ ଆଣିବାପାଇଁ। ମାଆ ବରାଦୀ ଦ୍ରବ୍ୟ ନେଇ ପହୁଞ୍ଚନ୍ତେ ବାପା ଅଣ୍ଟିରେ ସାବଧାନରେ ପୂରାଇ ଥିବା ଛୋଟ ମୂଷା ପରି ଜୀବଟିଏ ବାହାର କଲେ। କନାରେ ପୋଛାପୋଛି ପରେ ଚୁଲିରେ ସେକା ସେକି କରି ସଳିତାକୁ ଦୁଧରେ ବୁଡ଼ାଇ  ସେ ଜୀବ ପାଟିରେ ଦେଲେ। ଜୀବଟି ସକସକ ହେଲା ଏବଂ ଅବସ୍ଥାର ଉନ୍ନତି ହେବାରୁ ଢ଼ୋକେ କ୍ଷୀର ପିଇ ପାରିଲା ଥାଳିଆରୁ। ଜୀବଟିକୁ ଆମେ ଦେଖିଲୁଁ। ଲୋମ ପ୍ରାୟ ନାହିଁ, ଦିହ ଲାଲି ଦିଶୁଛି। ବାପା କହିଲେ- "ବାଟରେ କମାରଶାଳ ପାଖରେ କେତେଜଣ ଛେଳି ବଗାଳ ଯନ୍ତର ବେକରେ ଦୂବଘାସ ବାନ୍ଧି ପାଣିରେ ବୁଡ଼ାଉଥିଲେ। ମୁଁ ଯନ୍ତକୁ ଘେନି ଆସିଲି, ବଞ୍ଚିବ କି ନାହିଁ ନେଉଳଛୁଆଟିର ଆଖି

ଫିଟିନଥିଲା ।" ବାପା, ନନା, ମାଆର ଆଦର ଯତ୍ନରେ କେବଳ ଯେ ବଞ୍ଚିଲା ତାହା ନୁହେଁ, ଅତି ଅଳିଅଳ ହୋଇ ବଢ଼ିଲା । ମୁଁ ତାକୁ ମୋ ନିଜସ୍ୱ ସଂପଦ ଭାବି ପାଳିଲି । ଗେଣ୍ଡା କେରାଣ୍ଡି କିଛି ଆଣି ତାକୁ ଦେଲି । ମୁନିଆ ଦାନ୍ତ ମୋ ଆଙ୍ଗୁଳିରେ ଧୀରେ ଧୀରେ ଚାପେ, କାଟେ ନାହିଁ । ଗାଁର ପିଲାଝିଲାଏ ତାକୁ ଦେଖିବାକୁ ଆସିଲେ । ରାତିରେ ସମସ୍ତେ ଶୋଇଯିବା ବେଳେ, ତାକୁ ଗୋଟାଏ କନାପୁଟୁଳା ନରମ ଉଷୁମ ଶେଯରେ ଶୁଆଇ ଡଙ୍କାଇ ଦେଇ, ଗୋଟାଏ ଝଙ୍କାରେ ଏବଂ ଶିଳପୁଆଟାଏ ଚାପାଇ ଦେଉଁ.... । ଶୀତ ଦିନରେ କାଳେ ତାକୁ ଶୀତ ଲାଗିବ ବୋଲି, ତାକୁ ନେଇ ମୋ ପାଖରେ ଶୁଆଇଲି । ଉଷୁମ ପାଇ ରାତିଟି ଯାକ ଜଙ୍ଘ ସନ୍ଧିରେ ଶୋଇଥାଏ । ସକାଳୁ ଉଠି ମୋ ସାଙ୍ଗରେ ଖେଳେ । ଦିନେ ଦେଖିଲି- ପିଠିପଟେ ଚେପ୍‌ଟା ହୋଇ ଶୋଇଛି । ଯେତେ ହଲାଇଲେ ଆଉଁଷିଲେ ବି ହଲଚଲ ନାହିଁ । ଛନଜା ପଶିଲା । ଏକାବେଳେ ଥଣ୍ଡା କାହିଁରୁ କଣ ହେଲା ଜାଣିଲି ନାହିଁ । ଛାତିରେ ଶୁଆଇ ଠାକୁରଙ୍କୁ ଜୁହାର କରି ପାରେଶ୍ୱର ମହାଦେବ, ଘର ଠାକୁରମାନଙ୍କୁ, ଏପରିକି ସିମଳାର ପ୍ରତ୍ୟକ୍ଷ ମହାଦେବଙ୍କୁ ଡାକିଲି ଓ ସହଣି ମନାସିଲି । କେହି ଶୁଣିଲେ ନାହିଁ ଧ୍ରୁବ ପ୍ରହ୍ଲାଦର ପ୍ରାର୍ଥନା । ସକାଳୁ ଉଠି, ଝଙ୍କା ତଳେ ତାକୁ ରଖିଦେଇ, ଅଖିଆ ସ୍କୁଲକୁ ଚାଲିଗଲି । କୋହକାନ୍ଦରେ ଭରପୁର ଛାତିଟା ଫାଟିଯିବା ପରି ଲାଗୁଥାଏ । ଆଠୁଟା ବେଳକୁ ନନା ସ୍କୁଲରେ ପହଞ୍ଚିଲା । କିଛି ନଜାଣିଲା ପରି ଠିଆ ହୋଇଗଲି । "କିରେ ! ନେଉଳଟାକୁ ମାରିଦେଲୁ ।" ନନା ଯେମିତି ଏକଥା କହିଛି ମୁଁ ଜୋରରେ କାନ୍ଦି ଉଠିଲି । ଦୁହେଁ ଘରକୁ ଫେରିଲୁ, କଥାବାର୍ତ୍ତା ନାହିଁ । ସେଦିନ ଘରେ ରୋଷେଇ ନାହିଁ । ସମସ୍ତଙ୍କର ଉପାସ । ଏମିତି ବି ଆଉ ଗୋଟିଏ ଦିନ ଆସିଥିଲା, ଯେଉଁ ଦିନ ମୋ ସାନ ପୁଅ ସ୍ୱୟମ୍ଭୁ ପାଣିରେ ବୁଡ଼ି ମରିଗଲା ।

ମୁଁ ମନେ ପକାଉଛି । ସାରଦା ମାଷ୍ଟରଙ୍କୁ, ଯେଉଁ ନାଆଁ ସେ ଅଞ୍ଚଳରେ ବିଖ୍ୟାତ । ୧୮୮୯ ସାଲରୁ ୧୯୨୦ ସାଲ ପର୍ଯ୍ୟନ୍ତ ପ୍ରାୟ ଚାଳିଶ ବର୍ଷ ସେ ମୋ ସ୍କୁଲର ଶିକ୍ଷକତା କରି, ତିନି ପୁରୁଷଙ୍କୁ ପାଠ ପଢାଇ, ବଣଜଙ୍ଗଲିଆ ପାନ୍ଧଡା ଗାଁର ଅଜ୍ଞାନ ତିମିରାନ୍ଧଙ୍କ ଜ୍ଞାନାଞ୍ଜନ ଶଳାକାରେ ଚକ୍ଷୁ ଉନ୍ମିଳିତ କରିଛନ୍ତି ଏବଂ ଯଥାର୍ଥରେ ପୁରୁଣା ଗୁରୁ ବୋଲାଇଛନ୍ତି । ବର୍ଦ୍ଧମାନ ବାଙ୍କୁଡ଼ା ବା ବିରିଶାଲ ଏଇ ବଙ୍ଗାଳୀ ଶିକ୍ଷକଙ୍କ ଗାଁ । ତାଙ୍କୁ ଆଦିଗୁରୁ ଶଙ୍କରାଚାର୍ଯ୍ୟ, ନହେଲେ ସାରଦାଚାର୍ଯ୍ୟ ବୋଲାଯାଇ ପାରେ । ୟାଙ୍କ ମହିମା ଅପାର, ଅନନ୍ତ । ବାଘ ପରି ଚେହେରା, ଆଖି ଦୁଇଟା ଜଳେ, ନିଶ (ସେ ମୁଛ କହନ୍ତି) ବହଳିଆ ମୁଛାଏ । ସେ ନିଶ ମୁହଁଟାକୁ ଭୟଙ୍କର କରିଦିଏଁ । ସେଇ ଜୁଆଳିଆ ନିଶର ଏକମାତ୍ର କାମହେଲା ପେଜ, ତୋରାଣି, ପାଣି କାଠିକୁଟା ଆଦି ଆବର୍ଜନା ଦୂରକରିବା ।

ନିନ୍ଦୁକମାନେ, ବିଶେଷତଃ ଯେଉଁମାନେ ଜୋର୍ ମାଡ଼ଖାଇ ଅପର ପ୍ରାଇମେରୀ ପାସ୍‌କରି ପାରିନାହାନ୍ତି, ସେଇମାନେ ନାନା କଥା ଯୁକ୍ତିରେ କହିଥାନ୍ତି। ସିଏ କୁଆଡ଼େ ଅଧା ବଙ୍ଗାଳୀ ବା ଦେଢ଼ ବଙ୍ଗାଳୀ, ପାସ୍ କଣ ଜଣାନାହିଁ। 'ଣ' କହିପାରନ୍ତି ନାହିଁ, କି 'ଳ' ଉଚ୍ଚାରଣ କରିପାରନ୍ତି ନାହିଁ। "ବ୍ୟବସାୟ୍ କଣ ?" ପଚାରିଲେ ସେ ହୁଏତ କହି ପାରନ୍ତି- ଚାଷ ଆଦି।

ତାଙ୍କର ଯୋଡ଼ିଏ ସ୍ତ୍ରୀ । ପ୍ରଥମ ସ୍ତ୍ରୀ ସ୍ୱଜାତି। ପୁଅର ନାଆ ଶିରୀଶ। ନମ୍ର, ବିନୀତ, ସୁଶ୍ରୀ ଓ ଭଦ୍ର। ସେ ବି ସ୍କୁଲମାଷ୍ଟର। ପ୍ରଥମ ସ୍ତ୍ରୀର ଅକାଳ ମୃତ୍ୟୁ ପରେ ସାରଦାପ୍ରସାଦ ଦ୍ୱିତୀୟ୍ ବାର୍ ପରିଣୟ୍‌କଲେ। ଦ୍ୱିତୀୟ୍ ପକ୍ଷର ଆଉ ତିନିପୁତ୍ର, ଏକ କନ୍ୟା। ବଡ଼ ପୁଅର ନାମ 'ଗଗ' ଅର୍ଥ ବିଷ୍ଣୁ, ଗୁହ। ସାନ ପୁଅ ହେମ, ଯାହା ସାଙ୍ଗରେ ଆମେ ଦୁହେଁ ତାଙ୍କ ଘର ପାଖ ତିନ୍ତୁଳି ଗଛ ମୂଳରେ ଖେଳାଖେଳି କରୁଥିଲୁଁ; ଏବଂ ଯାହାକୁ ମୁଢି ଦେଇ ମୁଁ ବଗିଚାକୁ ଓଲକୋବି ବା ମୂଳା ଆଣିଥିଲି। ଏଇ ହେମ ୧୯୫୨ ସାଲରେ ବରିପଦାର ମୋ ନୂଆଘରୁ ଚୋରି କରିବାର ଚେଷ୍ଟାକରି ଜେଲ ଗଲା ସିନା, କିନ୍ତୁ ଜୀବନରେ କୋର୍ଟ କଚେରୀ ମୋତେ ସେ ଦେଖାଇଲା। ପରେ ଯେତେବେଳେ ଥାନା ବାବୁଠାରୁ ଶୁଣିଲି ଯେ, ସେ ତାର ଭାଉଜକୁ ଖୁବ୍ ଭଲପାଏ ଏବଂ ଗହଣା ଗାଣ୍ଠି ଚୋରିକରି ତାକୁ ଦିଏ; ମୋତେ ଭରି ଦୁଃଖ ଲାଗିଲା। ସାରଦା ମାଷ୍ଟର୍ କରଣି ଛଟା ଅକ୍ଷରରେ ନାମ ସହିକରନ୍ତି। ହଷ୍ଟେଲ୍‌ପାଇଁ ନିର୍ଦ୍ଦିଷ୍ଟ ଘରେ ଡିଙ୍କି ରହେ, ଧାନବିଡ଼ା ରହେ, ପିଟାହୁଏ, ଅମଳହୁଏ, ଏପରିକି ବେଙ୍ଗଳା ବୁଲେ। ବଡ଼ ବଡ଼ ମାଝି ଓ କୋହ୍ଲ ଛାତ୍ରମାନେ ଏ କାମ କରନ୍ତି, ବଗିଚା କାମ ସହିତ। ସେ କାଳରେ ଶିକ୍ଷା ବିଭାଗ ସୁପରିଣ୍ଟେଣ୍ଡେଣ୍ଟ ବର୍ଷକେ ଥରେ, ସବ୍‌ଇନିସ୍‌ପେକ୍‌ଟର ତିନି ଚାରି ମାସରେ ଥରେ ଏବଂ ଇନିସ୍‌ପେକ୍‌ଟିଂ ପଣ୍ଡିତ ମାସ୍‌କେ ଥରେ ସ୍କୁଲ ଭିଜିଟ୍ କରନ୍ତି। ପଣ୍ଡିତମାନେ ଚାଲିଚାଲି, ଏବଂ ଇନ୍‌ସ୍‌ପେକ୍‌ଟର ଓ ସୁପରିଣ୍ଟେଣ୍ଡେଣ୍ଟ ବଳଦଗାଡ଼ିରେ କରିଥାନ୍ତି। ଉପରିସ୍ଥ କର୍ମଚାରୀଙ୍କ ଗସ୍ତକୁ ସାରଦା ମାଷ୍ଟରଙ୍କ ଭାରି ଡ଼ର। ସେମାନେ କେହି ଆସିବାର ଶୁଣିଲେ ବା ଦେଖିଲେ, କୋତରା ଘୋଡ଼ାଇହୋଇ ଶୋଇଯାଆନ୍ତି। ସେ ଚାଲିଗଲେ ଫୁଟାଣି ବାହାରେ। କହନ୍ତି- "ସାଇବ କନ କହୁଥିଲା ବେ ? ଏଥର ତାକୁ ପାଠ ପଢ଼େଇ ଦେଲି। ଶଲା କହୁଛି କନ ନା, ହମେତ ଦିସ୍‌ମିସ୍ କରିଦବ ! ମୋ ବାଲ ବଙ୍କା କରିଦବ ! ଶଲା।"

ସ୍କୁଲରେ ଯୋଗଦେଇ ବର୍ଣ୍ଣବୋଧ, ପଣକିଆ ସାରିଥାଏ। ପ୍ରତିଦିନ ସ୍କୁଲ ଛୁଟି ହେବା ଆଗରୁ ମାନସାଙ୍କ ହୁଏ। ଦ୍ୱିତୀୟ୍ ମାଷ୍ଟର ବୃନ୍ଦାବନ ମିଶ୍ର (ଆମ ଘରକୁ ଲାଗି ତାଙ୍କ ଘର) ଏସବୁ ଦାୟିତ୍ୱରେ ଥାନ୍ତି। ପାଖ ପଡ଼ିଶା ହେଲେ ମଧ୍ୟ ସ୍ନେହଶ୍ରଦ୍ଧା ସିମିତି ମୋ ପ୍ରତି

ନଥାଏ । ମୋ କାନ ଦୁଇଟା ଉପରେ ତାଙ୍କର ଆଖି । ଟାଣିଟାଣି, ମୋଡ଼ି ମୋଡ଼ି, ଲାଲ କରିଦିଅନ୍ତି । ଥରେ ଥରେ ଭାବେ- ଭଗବାନ କାନଦୁଇଟା, ଚଇତନ ଚୁରକି, ଆଙ୍ଗୁଳି ଦେଇ ନଥାନ୍ତା କି ! ଘରକୁ ଗଲେ ଜେଜେବୁଢ଼ା କୁହେ- "ସ୍କୁଲରେ ଉଢ଼ାଙ୍କ, ଫେଢ଼ାଙ୍କ, ନଳ, କାଣିନଳ, ପଦିକା, ଦିସ୍ତ କେବେ ଆଉ ପଢ଼ାହେବ ? ତୁ ଗଜମୂର୍ଖ ହେବୁ। ଇସ୍କୁଲରେ ପଢ଼ା ନ ହେଲା ତ ନାହିଁ, ଘରେ ହେଲେ ମୋ ପାଖରୁ ଶିଖ୍ । ମାଣ, ଗୁଣ୍ଠ, ବିଶ୍ୱା, କଡ଼ା, ଗଣ୍ଡା ନଶିଖିଲେ ମଣିଷ ହବୁ କେମିତି ?" ବାପାଙ୍କୁ କୁହେ- "ଭୁଜା, ୟାକୁ ଇସ୍କୁଲରୁ ଉଠାଇ ଆଣ; ଆମର ସେ ପାଠ ଦରକାର ନାହିଁ।"

ଦିନେ କାହିଁକି କେଜାଣି ଅକସ୍ମାତ୍ ଆଦିଗୁରୁ ସାରଦାଚାର୍ଯ୍ୟ ଆମ ବଡ଼ କୋଠରୀକି ପଶି ଯାଇ, ହାତରୁ ଶିଲଟ ଛଡ଼ାଇ ନେଇ, ଲେଖିଗଲେ :- ୨୨)୨୨୦( , ୨୩)୨୩୦ ( , ୨୪)୨୨୦( , ଏବଂ ୨୫)୨୫୦( ଏବଂ କହିଲେ "ହରଣ କର ଏ ଚାରୋଟି, ମୁଁ ଆସୁଛି ଦେଖିବି।" ମୁଁ ଭାରି ଖୁସି । ପଣକିଆରେ ମୁଁ ଉଧୀ; ଡାକିଗଲି ତେଇଶି ଦଶେ ଦୁଇଶ ତିରିଶ, ବାଇଶ ଦଶେ ଦୁଇଶ କୋଡ଼ିଏ ଇତ୍ୟାଦି ଏବଂ ସଙ୍ଗେ ସଙ୍ଗେ ଲେଖିଗଲି

୨୨)୨୨୦(୧୦, ୨୩)୨୩୦(୧୦, ୨୪)୨୪୦(୧୦, ଏବଂ ୨୫)୨୫୦(୧୦
୨୨୦ ୨୩୦ ୨୪୦ ୨୫୦

ଦଣ୍ଡେ ପରେ ଆଦିଗୁରୁ ଫେରି ଆସି ସ୍ଲେଟ ମୋ ହାତରୁ ନେଇ ଦେଖିଲେ । ତାଙ୍କ ସୂତାଲଗା ନିକେଲ ଫ୍ରେମର ଚଷମା ଭିତର ଦେଇ ତେବରା ଆଖି ଦୁଇଟା ଜଳିଲା, ନିଶ-ମୁଛ ମୂଷା, କଣ୍ଟିଆ, ବିରୁଡି ନିଶ ପରି ଋଣରଣ ହେଲା । ୟାପରେ ମୁଁ ଜାଣି ପାରିଲି ନାହିଁ କେତେବେଳେ କଣ ହେଲା । ଆଚାର୍ଯ୍ୟଙ୍କର ପ୍ରତ୍ୟେକଟି ବଜ୍ର ଚପେଟାରେ ଆଖିରୁ ତାରା ନିଆଁ ବାହାରିଲା ଏବଂ ମୁଁ ତଳେ ପଡ଼ିଗଲି । ପାଣିଛିଞ୍ଚା ଖାଇ ଚେତାଅଚେତା ଅବସ୍ଥାରେ ଜାଣିଲି, ମୁଁ ହରଣେ କି ମାରାତ୍ମକ ଭୁଲ କରିଛି । ଭାଗଫଳ ଠିକ୍ ଅଛି; କିନ୍ତୁ ଅଙ୍କ ଭୁଲ ରହିଛି । କେତେଗୁଡ଼ାଏ ଶୂନ (ଚାରିଟା) ଲେଖିନାହିଁ । ୨୩)୨୩୦(୧୦

୨୩
୦
୦

ସେଥିପାଇଁ ଚାରୋଟି ଚାପୁଡ଼ା, ଦୁଇ ଗାଲରେ ଦୁଇଟି ଲେଖାଏଁ ମୋଟା ମୋଟା ଆଙ୍ଗୁଳିର ଦାଗ । ତାପରେ ଚାରିଦିନ ଜର । ଘରେ କାନ୍ଦବୋବାଳି । ବାପା ତାଙ୍କ ପ୍ରତିଜ୍ଞା ରକ୍ଷା କଲେ । ମୋର ପ୍ରାଥମିକ ଶିକ୍ଷା ଶେଷହେଲା । ଆଦିଗୁରୁ ଶ୍ରୀ ରାୟ୍ ମଧ୍ୟ ରିଟାୟାର୍ଡ ପାଇ ଶିକ୍ଷକ ଜୀବନ ଶେଷକଲେ ।

ଲଗ୍ ବୁକର ରେକର୍ଡରୁ ଜାଣିଲି, ମୁଁ ମୟୂରଭଞ୍ଜ ଭିତରେ ପ୍ରଥମ ହୋଇ ବୃତ୍ତି ପାଇଥିଲି। ୧୯୨୪ରେ ଏବଂ ତାର ନଅ ବର୍ଷ ପରେ ଢା ୧୩।୧୨।୩୩ ସାଲରେ ଦୁଇଟି ଝିଅ ନିମ୍ନ ପ୍ରଥମିକ ପରୀକ୍ଷାପାଇଁ ଶୀର୍ଷା କେନ୍ଦ୍ରକୁ ପ୍ରେରିତ ହୋଇ କୃତକାର୍ଯ୍ୟ ହୋଇଥିଲେ। ସେମାନଙ୍କ ନାମ ଶ୍ରୀମତୀ ଅନ୍ନପୂର୍ଣ୍ଣା ଦେବୀ, ଶ୍ରୀମତୀ କମଳାଦେବୀ। ଅନ୍ନପୂର୍ଣ୍ଣା ମୋ ସ୍ତ୍ରୀ, କମଳା ମୋର କନିଷ୍ଠ ଭଉଣୀ। ଆଜିକୁ ତିରିଶ ଚାଳିଶ ବର୍ଷ ହେଲା ଉଭୟେ ସ୍ୱର୍ଗତା।



## ॥ ତେର ॥

ସାରଦା ମାଷ୍ଟର ଆମ ଗାଁ ଛାଡ଼ି ଅଳ୍ପ ଦିନ ପରେ ଘର, ଜିହ୍ନବାଡ଼ି ବିକିଦେଇ ବାରିପଦା ଚାଲିଗଲେ ବଡ ପୁଅ ପାଖକୁ। ବାଡି ପଛପଟୁ 'ବେ ଗଗ, ବେ ଗଗ' ଅନୁକ୍ଷଣ ଡାକ ଆଉ ଶୁଣାଗଲା ନାହିଁ, କି "ବାପା ମରିଗଲି ଏ ମାଆ ମରିଗଲି" ଚିତ୍କାର ସ୍କୁଲ ଚାଲିଥିବା ସମୟରେ ଘନଘନ ଶୁଭିଲା ନାହିଁ। ସାରଦା-ଯୁଗର ଅବସାନ ହେଲା। ଏକ ସ୍ମରଣୀୟ ଯୁଗ। ଡ଼ିକେନ୍‌ସଙ୍କ 'ଡେଭିଡ୍ କପାରଫିଲ୍‌ଡ' ଯୁଗ ଅଥବା ଆମ ଫକୀରମୋହନଙ୍କ ଚାଟଶାଳୀ ଯୁଗ। କିନ୍ତୁ ଯେ ଯାହା କହିଲେ ମଧ୍ୟ, ବୁଢ଼ା ମାଷ୍ଟରଙ୍କ ଅମଳରେ ସତୁରି ଅଶି ଜଣ ପିଲା ପାସ କରିଥିଲେ ଏବଂ ପ୍ରାୟ ପନ୍ଦର ଜଣ ଛାତ୍ର ବୃତ୍ତି ପାଇଥିଲେ। ସାରଦା ପ୍ରସାଦ ରାୟଙ୍କ ଆତ୍ମାର ସଦ୍‌ଗତି ହେଉ।

ବସନ୍ତ ଆସିଲା। କିଆ ପୋଖରୀରେ ପଦ୍ମପତ୍ର ମାଡ଼ିଗଲା ଏବଂ ମହୁରାଳିମାଛ ମହାରୁ ଛିଟିକି ପତ୍ର ଉପରେ ପଡ଼ି ଡେଇଁଲେ। ନନ୍ଦବୁଢ଼ାଙ୍କ ପୋଖରୀଘାଟର ଦୁଇଟା କଞ୍ଚନ ଗଛରେ ଉଭୟ ଲାଲି ଓ ଧଳା ଫୁଲ ପେଛା ପେଛା ଫୁଟିଲା ଓ କୋଳିଗଛରେ ମାଡ଼ିଥିବା ମାଳତୀ ଫୁଲର କଡ଼ା ମହକରେ ନାକ ବନ୍ଦହେବାପରି ଲାଗିଲା। "ଅଇଲେ ସରସ୍ୱତୀ ନିର୍ମଳ ବର୍ଣ୍ଣେ, ରତ୍ନ-କୁଣ୍ଡଳ ବିଭୂଷିତ କର୍ଣ୍ଣେ; ଗଳାରେ ଗଜମୋତି ମୁକୁତା-ହାର; ଦିଅ ମା ସରସ୍ୱତୀ ବିଦ୍ୟାଭଣ୍ଡାର" ଗାଇ ପୁଷ୍ପାଞ୍ଜଳି ଦେଲୁଁ। ପରଦିନ ଆମ୍ବଡ଼ାଳ, ନଡ଼ିଆ, ଘଟଟିଏ ମୁଣ୍ଡେଇ, ଧାଡ଼ି ବାନ୍ଧି ଦଶ ପନ୍ଦରଜଣ ପିଲ-। "ବନ୍ଦଇ ହରି, ଦେବ ମୁରାରି, ଶ୍ରୀଲକ୍ଷ୍ମୀ ଦେବୀଙ୍କ କାନ୍ତ", ନହେଲେ "ବରଷକେ ଥରେ ଆମ ମାଗୁଣି, ଭଲା ଭିଆଇଲେ ସାରଙ୍ଗପାଣି" ଗୀତ ତୁହାକୁ ତୁହା ଗାଇ ଗାଁ ଗାଁ ବୁଲି ପଇସା ମାଗିଲେ କିଏ ପଇସାଏ କିଏ ଅଧଲାଏ ଦିଅନ୍ତି। ଦୁଇ ତିନିଦିନ ବୁଲିଲେ ଟଙ୍କାଏ ମସାଏ ହୁଏ। ମାଷ୍ଟର ଆଞ୍ଚା ନିଅନ୍ତି, ରଖନ୍ତି। ଦିନେ କେବେ ଫିଷ୍ଟ ହୁଏ। ଦ୍ୱିତୀୟ ମାଷ୍ଟର ବୃନ୍ଦାବନ ମିଶ୍ରଙ୍କ ଅମଳ

ଆସିଲାରୁ ମୁଁ ସ୍କୁଲରେ ପୁଣି ଯୋଗଦେଲି ଏବଂ ଘଟ ଧରି ମାଗିବାକୁ ମଧ୍ୟ ଯାଇଥିଲି। ନନା କବିରାଜ ଥିବାରୁ କୁଣ୍ଡଳବଣି, ବଣକାଟି, ଗୋଷାଣିପାଳ, କେନ୍ଦୁମୁଣ୍ଡି, କେନ୍ଦୁଆ ଆଦି ପାଖଆଖର ଗାଁ ଲୋକଙ୍କ ଚିହ୍ନା। ସେ ଆମ ସାଙ୍ଗରେ ଯାଇଥାଏ ଏବଂ ଭିକ୍ଷା ମଗାଇ ଦିଏ। କେନ୍ଦୁଆର ରଥବୁଢ଼ା, ବରଜୁ ବାରିକ, ବଣକାଟିର ଲୋକମାନେ ଚାଟମାନଙ୍କୁ ଭୁଜାଚୁଡ଼ା ଜଳଖିଆ କେବେ କିମିତି ଦିଅନ୍ତି। ଗୀତ ନ ଆସିଲେ ବା ଭୁଲିଗଲେ 'କୁକ୍କୁଟ, କୋଇଲି, କଜ୍ଜଳପାତି;/ କାକ ରାବ ଦେଲେ ପାହିଲା ରାତି' ବି ଗାଉଁ। ସେକାଳରେ ଆମ ଗାଁରେ ସରସ୍ୱତୀଙ୍କ ଫଟୋ ବା ଛବି କିଛି ନଥିଲା। କେହି କାଦୁଅରେ ମୂର୍ତ୍ତି ତିଆରି କରି ପାରୁନଥିଲେ। ଗାଁରେ କାହା ଦେଇ ଗୀତ ହେଉନଥିଲା ମଧ୍ୟ।

ଏମିତି ସମୟରେ ନୂଆ ହେଡ଼ପଣ୍ଡିତ ଆସିଲେ। ନାଆଁ ଭଗବାନ ମହାପାତ୍ର। ଇଂରାଜୀରେ ଦସ୍ତଖତ କରନ୍ତି, ସୁନ୍ଦର ଓ ପରିଷ୍କାର ଅକ୍ଷର। ଘର କୁଆମରା। ଆମ ଗାଁରୁ ବହୁତ ଦୂର, ବାଲେଶ୍ୱର ଆଡ଼େ। ସେ ମୋ ଦୃଷ୍ଟିରେ ସାକ୍ଷାତ ଭଗବାନ। ତାଙ୍କ ଚେହେରା ଦେଖି ମୋତେ ଖୁସି ଲାଗିଲା। ସ୍କୁଲକୁ ଯିବାକୁ ଇଚ୍ଛାହେଲା। ସେ ଆମ ସମସ୍ତଙ୍କୁ ବହୁତ ଭଲପାଇଲେ। ତାଙ୍କ ଗାଁ ପାଖ ଛେଳିଅଣାରେ ଆମ ବନ୍ଧୁବାସ ଥିବାରୁ ସେ ଆମ ପରିବାର ସହିତ ପ୍ରାୟ ମିଶିଗଲେ। ନିଜଗାଁକୁ ଗ୍ରୀଷ୍ମଛୁଟିରେ ଯାହା ଯାଆନ୍ତି। ପାଣ୍ଡଡ଼ାରୁ ବାରିପଦା, ବାରିପଦାରୁ ବେତନଟୀ ରେଳରେ। ବେତନଟୀରୁ ଚାଲିକରି ବଳଙ୍ଗ ପାରିହୋଇ କୁଆମରା। ସେଠି କୁଆଡ଼େ ମାଇନର ସ୍କୁଲ ଅଛି। ତାଙ୍କୁଇ ଦେଖିଦେଖି ଜୀବନରେ ଏତିକି ଜାଣିଛି, ମାଷ୍ଟର ଯେତେ ଦୂରରେ ସେତେ ଭଲ, ଯେତେ ପାଖରେ ସେତେ ଓଲଟା। ନୂଆ ହେଡ଼ପଣ୍ଡିତ ସ୍କୁଲରେ ରହନ୍ତି। ବୋର୍ଡ଼ିଂରେ ଖାଆନ୍ତି ଏବଂ ସବୁବେଳେ ପିଲାଙ୍କ ପଛରେ, ନହେଲେ ବଗିଚାରେ। ନାକପୁଡ଼ା ବଡ଼ ବଡ଼। ମୁଛ ନାହିଁ। ମାଗୁର ବର୍ଣ୍ଣିଆ। ଉତ୍ତମ ସ୍ୱଭାବ।

ସେ ଯୋଗ ଦେବାର ଆଠ ଦଶ ଦିନ ଭିତରେ ଆମେ ସରସ୍ୱତୀ ପୂଜା ବେଳେ ମାଗିଥିବା ପଇସାରେ ସ୍କୁଲରେ ଦିନେ ରାତିରେ ଫିଷ୍ଟ ହେଲା। ପୁରି ଓ ଲୁଚି ଭିତରେ ତଫାତ୍ ବହୁତ ଦିନ ପରେ ଜାଣିଲି। ଲୁଚି ଏବଂ ବୁଟ ଡ଼ାଲି; ଗାଁରେ ଅଲଭ୍ୟ ଏ ଦୁଇ ଚିଜ। ରାଜାଲୋକାରୁ ପିଲାମାନେ ସଉଦା ନେଇ ଫେରୁଫେରୁ ଡେରି ହେଲା ଏବଂ ରାତି ଆଠଟାଯାଏଁ ଭୋଜି ବ୍ୟବସ୍ଥା ହୋଇ ପାରିଲାନାହିଁ। ଅନେକ ପିଲା ଲୁଚି ବେଲିଲେ, କିନ୍ତୁ ଗୋଟାଏ ଛୋଟ କଡ଼ାରେ ଲୁଚି ଶୀଘ୍ର ହୋଇପାରିଲା ନାହିଁ। ମୋ ପରି ଅନେକ ପିଲା ଭୂଇଁରେ କୁଙ୍କୁଡ଼ିକାଙ୍କୁଡ଼ି ଶୋଇଗଲେ। ହେଡ଼ପଣ୍ଡିତ ଯେତେ ଯାହା ଉପାୟ କଲେ ମଧ୍ୟ ମୋ ନିଦ ଭାଜିପାରିଲେ ନାହିଁ। ଅଗତ୍ୟା ନନା କାଖେଇ ମୋତେ ଶୋଇବା ଅବସ୍ଥାରେ

ଘରକୁ ଆଣିଲା । ପରଦିନ ସକାଳେ ମା କାନ୍ଦକାନ୍ଦ ହୋଇ ମୋତେ କହିଲା, "ବାପା ! ତୁ ନିଘୋଡ଼ ନିଦରେ ଶୋଇଲୁ, ତୁ ଖାଇଲୁ ନାହିଁ ବୋଲି ତୋର ମାଷ୍ଟରବି ଖାଇଲେ ନାହିଁ ।" ହେଡ଼ପଣ୍ଡିତ ଓପାସରେ ଶୋଇବା ଘଟଣା ଚାରିଆଡ଼େ ପ୍ରଘଟ ହେଲା ଏବଂ ଅଭିଭାବକ ଓ ଛାତ୍ରମାନଙ୍କୁ ସେ ଏକାବେଳେକେ କିଣିନେଲେ ।

ଏହି ସମୟରେ ସେ ଆମ୍ଭମାନଙ୍କୁ ବାଦୁଡ଼ିଘେରା ଜଙ୍ଗଲକୁ ଗଛବୁରୁଛ, ପାହାଡ଼ପର୍ବତ ଦେଖାଇବାକୁ ନେଇଗଲେ । ଦୁଇ ମାଇଲ-ଦୂର ସ୍ଥାନ । ଭାତ ଖାଇସାରି ଗଲୁଁ । ସାଙ୍ଗରେ ଥିଲେ ସିଂହଭୂମିର ଈଶ୍ୱର ହୋତା; ଜଣୈକ ଦେଶପ୍ରେମୀ, ଖଦଡ଼ ପରିହିତ କର୍ମୀ । ଗାଁର କେତେଜଣ ଯୁବକ ବି ଥିଲେ । ଜଙ୍ଗଲ ଦେଇ ଗୋଟାଏ ଛୋଟ ପାହାଡ଼ ଉପରକୁ ଚଢ଼ିଗଲୁଁ । ଦି'ଚାରିଟା ବଡ଼ବଡ଼ ଗୁମ୍ଫା, ଅନ୍ଧାରୁଆ । କେତୁଟା ବାଦୁଡ଼ି, ଚମଚଟା ଫଡ଼୍‌ଫାଡ଼୍ ହୋଇ ଉଡ଼ିଲେ । ଭିତରେ ଗୋରୁ ହାଡ଼ ପଡ଼ିଥିବାର ଦେଖିଲୁଁ, ଡ଼ର ମାଡ଼ିଲା । ସେଠି କୁଆଡ଼େ ବାଘ ରହେ । ଜୀବନରେ ଏଇଟା ପ୍ରଥମ ସାହସିକ କାମ ମୋର । ହେଡ଼ପଣ୍ଡିତ ଅମଳରେ ସ୍କୁଲବାଡ଼ ଘେରାହେଲା, ଛପର ହେଲା, ବଗିଚା ହେଲା; ଏପରିକି ମଝିରେ ମଝିରେ ଅଭିଭାବକ ମାନଙ୍କର ମିଟିଂ ହେଲା ସ୍କୁଲ ସଂପର୍କରେ । ପିଲାମାନେ ଡ଼ାକୁଆ ।

ସ୍କୁଲପାଇଁ ଏବଂ ମୋ ପକ୍ଷରେ ଏକ ନୂଆ ଯୁଗ ପରି ଲାଗିଲା । ମୋ କାମ ହେଲା ସକାଳେ ହେଡ଼ପଣ୍ଡିତଙ୍କ ଜଳଖିଆପାଇଁ ଅଧବେଲାଏ ବତୁରା ସୋଲାର ଚୋପା ଛଡ଼ାଇବି । ଯେବେ ପାଳି ପଡ଼ିବ ଘରୁ ମୁଡ଼ି, ପିଆଜ, ଘିଅ ବା ରୁଟି, ଗୁଡ଼ ହେଡ଼ପଣ୍ଡିତପାଇଁ ଆଣିବି । ସ୍କୁଲ ବେଳରେ ଘରୁ ଗୋଟାଏ ଲୋଟାରେ କଳସୀରୁ ପାଣି ହେଡ଼ପଣ୍ଡିତ ପାଇଁ ଆଣିବି । ଏତିକି ସେବାକରି ହେଡ଼ପଣ୍ଡିତଙ୍କ ବାତ୍ସଲ୍ୟ ସ୍ନେହ ପାଇଲି । ତାଙ୍କ ପ୍ରତି ମୋର ଅତୁଟ ଭକ୍ତି ଜନ୍ମିଲା । ଯେଉଁ ତିନିଚାରିଜଣ ଶିକ୍ଷକ ମୋ ଜୀବନକୁ ତିନୋଟି ସ୍ତରରେ ଧନ୍ୟ କରିଛନ୍ତି, ସେମାନେ ୟୁ.ପି.ରେ ଭଗବାନ ମାଷ୍ଟର, ମି.ଇ.ରେ ବୈକୁଣ୍ଠନାଥ ମିଶ୍ର ଏବଂ ହାଇସ୍କୁଲରେ ରାମକୃଷ୍ଣ ନନ୍ଦ ଏବଂ ହେଡ଼ମାଷ୍ଟର ମଧୁସୂଦନ ବିଶ୍ୱାଳ ।

ନୂଆ ହେଡ଼ପଣ୍ଡିତ ଯୋଗଦେବା ବର୍ଷ ମୋ ପକ୍ଷରେ ପାଠପଢ଼ାରେ ଏକ ବଡ଼ ସମସ୍ୟାର ସମୟ । ଦ୍ୱିତୀୟରୁ ତୃତୀୟକୁ ଡ଼ବଲ ପ୍ରମୋଶନ ପାଇବାକୁ ଆଶା ଥିଲାବେଳେ, କେବଳ ସେକେଣ୍ଡ ପଣ୍ଡିତ ବିରୋଧିତା କଲେ । ମୁଁ ଅଙ୍କରେ ଏକ ତୃତୀୟାଂଶ ୪୦ ରୁ ୧୩ ରଖିପାରିଥିଲି । ସାଙ୍ଗ ଛୋଟା ଗଦା ୧୪ ରଖିଥିବାରୁ ତୃତୀୟାଂଶ ପାଇ ଉପରକ୍ଲାସକୁ ଉଠିଗଲା । ଗାଁରେ ଲୋକେ କହିଲେ ଗଦା ଉଠିଗଲା, ବସନ୍ତ ଫେଲହେଲା । ବାପା କାନ୍ଦିଲେ । କିମିତି କଣ ହେଲା ଜାଣେ ନାହିଁ ।

ମୋର ମନେ ପଡୁଛି- ମୁଁ 'ଶିଶୁବୋଧ' ଛାଡ଼ି 'କଥାବଳି' ପଢ଼ିଲି। "ଦିନେ ଜଙ୍ଗଲରେ ବିଲୁଆମାନେ ଗୋଟିଏ ହାତୀକୁ ଦେଖି ବିଚାର କଲେ, ଯଦି ଏହାକୁ ମରାଯାନ୍ତା... ମିଛୁଆକୁ କେହି ବିଶ୍ୱାସ କରନ୍ତିନାହିଁ, ...ମୁଖ ଧୁଅ, ବୁଲିଯିବାରେ ଆସ..." ଛାଡ଼ି 'କଥାବଳୀ' ପ୍ରଥମଭାଗ (ତିନୋଟି ଗଛର କଥା, ମର୍କଟ ଓ ବଣିକ କଥା, ବର୍ଦ୍ଧମାନ ନଗରର ଦୁଇ କୃପଣ କଥା, ମେଘବରଷିଲା ଟପରଟପର୍) 'ପଢ଼ିଲି, ଏବଂ ୧୯୨୩ ସାଲରେ ନୂଆ ସାହିତ୍ୟ ବହି (ମଧୁରାଓଙ୍କ ସାହିତ୍ୟ) ସବୁ ପଢ଼ିଲି। ସାନ କୋଠରୀରେ, ବେଞ୍ଚରେ ବସି ଛଅଜଣ ପଢ଼ିଲୁ ଭଗବାନ ମାଷ୍ଟରଙ୍କ ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ। ଗୋଡ଼ ହଲାଇ ହଲାଇ 'ଆସଇ ବସନ୍ତ ଶିଶିର ଅନ୍ତେ' 'କ୍ରମେ ମଧୁ ଅନ୍ତେ' 'ଶୀତ ଅନ୍ତେ ପୁଣି ଆସିବ ମଧୁମୟ ବସନ୍ତ' ଏକସ୍ୱରରେ ପାଟିକରି ଗାଇବାରୁ ନୂଆ ପୁଲକ ଆସିଲା.... କାର୍ତ୍ତିକେଶ୍ୱର ମହାନ୍ତି ନାଁରେ ପିଲାଟିଏ 'ଢ଼' ଉଚ୍ଚାରଣ କରିପାରେ ନାହିଁ। 'ଢ଼' 'ଳ' ହୋଇଯାଏ। 'ଶିଶିର' କବିତାଟି ଆବୃତ୍ତି କରୁଁ କରୁଁ ଗାଇଲା- 'ବାଳମାନଙ୍କରେ ଫୁଟିଚି ସୋମଫୁଲ ଧବଳ'। ହେଡ଼ପଣ୍ଡିତ ଯେତେଥର କହିଲେ ବି ସେଇ 'ଳ', 'ଢ଼', ହେଲାନାହିଁ। କ୍ଲାସରେ ପ୍ରଥମ କରି ଆମେ ସାରଙ୍କ ସାଙ୍ଗରେ ହସିଲୁ।

ପରୀକ୍ଷା ପାଖ ହେଲାରୁ ହେଡ଼ପଣ୍ଡିତ ଦିନରାତି ପଢ଼ାଇଲେ। ଗୋଟିଏ ଲଣ୍ଠନକୁ ଘେରି କରି ବସୁଁ, ପାଳି କରି ଲଣ୍ଠନ ନେଉଁ। ଆମ ଉପର କ୍ଲାସର ପିଲାଏ ଯେଉଁ ସାହିତ୍ୟ ବହି ପଢୁଥିଲେ, ସେଥିରେ ଥିଲା 'ମହୀରୁହ କୁଳେ ତୁହି ଅଟୁରେ ବକୁଳ, ବର୍ଣ୍ଣେ ଫଳେ ବର୍ଣ୍ଣେ ପୁଣି ଅଟୁରେ ମଞ୍ଜୁଳ'। ସେବେ ସବୁ ପାଠ ମୁଖସ୍ଥ। 'ଜିହ୍ୱାଗ୍ରେଣ ସରସ୍ୱତୀ'। ପଦ୍ୟ ହେଉ, ଗଦ୍ୟ ହେଉ- ସବୁ ମୁଖସ୍ଥକରି ଗଡ଼ଗଡ଼ କହିଗଲେ ବା ଲେଖିଗଲେ, ହେଲା। ସ୍ଥାନୀୟ କେହି ନାମୀ ଲୋକ ସ୍କୁଲକୁ ଆସିଲେ, ହେଡ଼ପଣ୍ଡିତ ମୋତେ ତାଙ୍କ ଆଗରେ ପରୀକ୍ଷା କରନ୍ତି। "କହିଯା ଗଙ୍ଗା ନଦୀ କୂଳର ସହର ସବୁର୍ ନାଆଁ ଏବଂ ଦେଖାଇଯା ମେପରେ ସେସବୁ।" ମୁଁ ଗଡ଼ଗଡ଼ କରି କହିଯାଏ- "ହରଦ୍ୱାର୍, ବିଜନୌର୍, କାନ୍ୟକୁବ୍‌ଜ, କାନପୁର୍, କାଶୀ, ଗାଜିପୁର୍, ବକ୍‌ଷାର୍, ପାଟନା, ମୁଙ୍ଗେର୍, ଭାଗଲପୁର୍, ଗୟା, କଲିକତା" ପଟାପଟ ଦେଖାଇଯାଏ। ହେଡ଼ପଣ୍ଡିତ ମୋତେ ନେଇ ଗର୍ବକରନ୍ତି ଏବଂ ସମସ୍ତଙ୍କ ଆଗରେ କହନ୍ତି- "ଏଥର ଆମ ସ୍କୁଲ ମୟୂରଭଞ୍ଜରେ ଫାଷ୍ଟ ହବ।" 'ରାମ ବନବାସ' 'ଜୟ ମା ଜନମଭୂମି' ସ୍ତବ ଆଦି ଯେ କୌଣସି ପଦ୍ୟ ଅକ୍ଲେଶରେ ମୁଁ ଆବୃତ୍ତି କରେ। ୧୯୨୪ ନଭେମ୍ବର ୨୪ ତାରିଖରେ ଅପର ପ୍ରାଇମେରୀ ପରୀକ୍ଷା, ବାରିପଦାରେ। ବ୍ରାହ୍ମଣ ପିଲା ଅଭାବରେ ନନା ଆମ ସାଙ୍ଗରେ ରୋଷେଇ ଦାୟିତ୍ୱରେ

ଗଲା । ସଞ୍ଜବେଳେ ଅନେକ ସ୍କୁଲରେ ହେଡ଼ପଣ୍ଡିତ ମତେ ଦେଖିବାପାଇଁ ଆସିଲେ ଭଲପିଲା ବୋଲି । ସକାଳୁ କଥା ଅନ୍ୟ ପ୍ରକାର । ବୋଇତକଖାରୁ, ବିଙ୍ଗୁଡ଼ି ଓ ସୋରିଷ ତେଲ ସାଙ୍ଗକୁ କିରାସିନି ମିଶା ନନାର ରୋଷେଇ ସାଙ୍ଗକୁ ନଈର ବାଲିଚୁଆର ପାଣି ପିଇ ସକାଳ ଛଅଟା ବେଳକୁ ମୋର ଅବସ୍ଥା ଖରାପ । ଚେତା ବୁଡ଼ିଗଲା । ପ୍ରାୟ ଆଠଟା ବେଳକୁ ଆଖି ଫିଟାଇ ଦେଖିଲି ହେଡ଼ପଣ୍ଡିତ, ନନା ଓ କେତେଜଣ ହେଡ଼ପଣ୍ଡିତ ମୋତେ ଘେରି ଦୁଃଖରେ ବସିଛନ୍ତି । ପରୀକ୍ଷା ଦେଇ ପାରିବି ନାହିଁ । କିନ୍ତୁ ଆଶ୍ଚର୍ଯ୍ୟ ! ନନାର କବିରାଜି ବଟିକା କାମଦେଲା । ନଅଟା ବେଳକୁ ଆଶାଫେରିଲା । ସାଙ୍ଗମାନଙ୍କ ସାଙ୍ଗରେ ଚାଲିଲି ବାରିପଦା ହାଇସ୍କୁଲ ହଲ୍‌କୁ । ସ୍ଥାନ ଧରି ବସିଯାନ୍ତେ ନନା ପୁଣି ବଟିକାଟିଏ ଦେଇ ଫେରିଗଲା । ସାହିତ୍ୟ ପରୀକ୍ଷାରେ କେତୁଟା ପ୍ରଶ୍ନ ମନେପଡ଼ୁଛି । ବ୍ୟାଖ୍ୟାପାଇଁ ପଡ଼ିଥିଲା । "ଯେଉଁ ସବୁ ଗୁଣ ଯୋଗେ ଲୋକ ପୃଥିବୀରେ ସୁନାମ ରଖେ, ସେହି ସବୁ ଗୁଣ ଅର୍ଜନ କରିବା ପ୍ରତ୍ୟେକ ଲୋକର ବାଞ୍ଛନୀୟ" ଏବଂ "ଯମରାଜ ସାବିତ୍ରୀଙ୍କର ଅଲୌକିକ ପତିବ୍ରତା ଓ ପାତିବ୍ରତ୍ୟ ଦେଖି ପ୍ରସନ୍ନ ହୋଇ କହିଲେ- ତଥାସ୍ତୁ, ପତି ସାଙ୍ଗରେ ତୁମର ଯୋଗ କଦାପି ବିଛିନ୍ନ ନହେଉ ।" ପଞ୍ଚମ ଶ୍ରେଣୀର ପ୍ରଶ୍ନ ! ପ୍ରଶ୍ନ ଯାହା ହେଉ, ଉତ୍ତର ଦେବାରେ କଷ୍ଟ ନାହିଁ । ସବୁ ମୁଖସ୍ଥ, ଏ ଦୁଇଟି ବାକ୍ୟ, ଯଥାକ୍ରମେ- 'ପ୍ରଭୁପରାୟଣତା' ଓ 'ସାବିତ୍ରୀ ସତ୍ୟବାନ' ଗଳ୍ପର ଶେଷାଂଶ । ପୂର୍ବାପର ସମ୍ପର୍କ ଦେବାକୁ ଯାଇ ଆରମ୍ଭକଲି ଦୁଇଗଳ୍ପର ଆରମ୍ଭରୁ "ଅଷ୍ଟ୍ରିୟା ଦେଶରେ...." ଏବଂ "ମଦ୍ର ଦେଶରେ ଅଶ୍ୱପତି ନାମରେ ଜଣେ ନରପତି ଥିଲେ" । ଲେଖା ଚାଲିଛି ପୃଷ୍ଠାକୁ ପୃଷ୍ଠା; ନନା ଦେଇଥିବା ନିଶା ଔଷଧର ପ୍ରକ୍ରିୟା ମଧ୍ୟ ବଢ଼ି ଚାଲିଛି । କନୈକ ନିରୀକ୍ଷକ କୌତୁକରେ କହିଲେ- "ତୁ ସବୁ କାଗଜ ସାରିଦେବୁ ଦେଖୁଛି ।" ଦୁଇଟି ପଦ୍ୟାଂଶ ଥିଲା- 'ଅସାଧୁ ହୁଅଇ ସାଧୁ ସାଧୁର ସାଙ୍ଗରେ, ନିର୍ମଳ ପଙ୍କିଳ ଜଳ ନିର୍ମଳା ଯୋଗରେ' ଏବଂ 'ତୋର ମଙ୍ଗଳ ବିଧାନ, କରିଅଛି ମରଣକୁ ଅମୃତ ସୋପାନ ।' 'ଡ୍ରୋପ୍ ଟେଷ୍ଟ' ପରି ପରୀକ୍ଷାରେ ଯଦି ଏଭଳି ପଦ୍ଧତି ପ୍ରଚଳିତ ଥାଆନ୍ତା, ତେବେ ସେଦିନ ମୁଁ ଧରାପଡ଼ି ପରୀକ୍ଷା ହଲରୁ ବହିଷ୍କୃତ ହୋଇଥାନ୍ତି । ତହିଁ ପରଦିନ ଗଣିତ ପରୀକ୍ଷା । (ଯେ କୌଣସି ପାଞ୍ଚୋଟି ପ୍ରଶ୍ନର ଉତ୍ତର ଦିଅ) । ମୁଁ ସାତୋଟି ଯାକ ଅଙ୍କ ଘଣ୍ଟାକରେ କଷି ଉପରେ ଲେଖିଦେଲି "(ଯେ କୌଣସି ପାଞ୍ଚଟି ପ୍ରଶ୍ନର ଉତ୍ତର ଲେଖ)" । ଡ୍ରଇଂ ମୋ ଦେଇ ହୁଏ ନାହିଁ । କେବଳ 'ବେଲ' ଓ 'ପପେୟା' ଆଙ୍କିପାରେ । ପାଖ ପିଲାଠୁଁ କମ୍ପାସ ମାଗି ଗୋଲକରି ବେଲ ଆଙ୍କିଦେଇ ଉପର ପାଖରେ ଟିକିଏ ଖଣ୍ଡିଆକରି ଡେମ୍ଫ କରିଦେଲି । ସେଇ ଢ଼େର । ମେପ୍ ଦେଖାଇବାରେ ମୁଁ ରଥୀ । ପନ୍ଦରଟିଯାକ ସ୍ଥାନ ସାଙ୍ଗେ ସାଙ୍ଗେ ଦେଖାଇ ଦେଲି । କେବଳ ଆମ ଗାଁ ଦେଖାଇ ପାରିଲି ନାହିଁ । ମେପରେ 'ଉମାଦେଇପୁର' ଥିଲା, 'ପାନ୍ଧଡ଼ା' ନ ଥିଲା ।

ପରୀକ୍ଷା ସରିଲା । ହେଡ଼ପଣ୍ଡିତଙ୍କ ମନରେ ଖଟକା ରହିଗଲା । ମୋର ପରୀକ୍ଷା ପୂର୍ବରୁ ଅଚେତ ଅବସ୍ଥା ଯୋଗୁଁ । ଯେଉଁ ମାସଟିଏ ବ୍ୟବଧାନ ରହିଲା ଫଳ ବାହାରିବାକୁ, ସେହି ସମୟକୁ ଦିନବେଳେ ହେଡ଼ପଣ୍ଡିତ ଓ ସଞ୍ଜବେଳେ କେକେବୁଢ଼ା ଦଖଲକଲେ ।

ବୈଶାଖରେ ମୋର ଉପନୟନ ସରିଥାଏ । ଗର୍ଭାଷ୍ଟମରେ ପଇତା ପଡ଼ିବା କଥା । ଏଇଟି ଆମ ଘରର ବଡ଼ ଉତ୍ସବ । ଯେତେ ବନ୍ଧୁବାନ୍ଧବ, କୁଳକୁଟୁମ୍ବ ଆସିଥିଲେ, ତାହାର କେବେ ପୁନରାବୃତ୍ତି ହୋଇନାହିଁ । ଦେବାନେବା ଆତ୍ମୀୟତାରେ ଅନ୍ତରାୟ ହୁଏନାହିଁ । ଖିଆଖୋଇ ହୁଏ; ହସକଉତୁକ ହୁଏ । ବାସି ଦିନଟି ରହି ବନ୍ଧୁବାନ୍ଧବ ଫେରିଯାଆନ୍ତି ଯେଝାଘରକୁ । ମୋତେ ଲଣ୍ଡା ହେବାକୁ ପଡ଼ିଲା, ଚୁର୍କି ରହିଲା । ଫାଶିଆରେ କାନ ଫୁଟାଇଲେ ବାପା । ଠିକ୍ ଭାବରେ କରିପାରିଲେ ନାହିଁ; ବାଁ କାନ ବହୁତ କଷ୍ଟଦେଲା । ହାତରେ ବଡ଼ବଡ଼ ରୂପାବଳା । ଗୋଡ଼ରେ କଠଉ । ଗୁରୁ ମନ୍ତ୍ର ଦେଲାବେଳେ, ଓଢଣିରେ ଘୋଡଏଇହୋଇ କେତେ କଣ ଘଟିପାରେ ବୋଲି ରଙ୍ଗପରାକାରୀମାନେ ଡରାଇଲେ । କିଛି ସିମିତି ହେଲାନାହିଁ । ଉପନୟନରେ ଭିକ୍ଷା ଆକାରରେ ଥାଳିରେ ଏଗାରଟଙ୍କା ଆଠଣା ପଡିଥିଲା । କଣ ଦେବାକୁ ପଡ଼ିବ ବୋଲି ବନ୍ଧୁବାନ୍ଧବ ଅନୁପସ୍ଥିତ ହେଉନଥିଲେ । ଉପନୟନ ବେଳେ ଚାରିଆଡ଼େ ହଳଦିଆ ଧୋତି ଓ ଲାଲି ଧଡ଼ିର ଶାଢ଼ୀ । ଋଷି ଗଲା ବେଳେ ବ୍ରହ୍ମଚାରୀଙ୍କୁ (ମୋତେ) ମାମୁଁ ପଚାରିଲେ- "ଭଣଜା ତମେ କେତୋଟି ବାହା ହବ ?" ମୁଁ କହିଥିଲି- 'ସାତୋଟି' ।

ଉପନୟନର କାଦଖେଳି ସରିଛି କି ନାହିଁ, କେକେବାପା ମୋତେ ଚଳୁମନ୍ତ୍ର (ଓଁ ପ୍ରାଣାୟ ନମଃ, ପାନାୟ ନମଃ) ଗାୟତ୍ରୀ ମନ୍ତ୍ର (ଭୁର୍ଭୁବସ୍ୱ ତତ୍ ସବିତୁଃ ବରେଣ୍ୟ....) ଠାକୁରପୂଜାର ବିବିଧ ମନ୍ତ୍ର ଶିଖାଇ ଦିନେ ପୂଜା କରାଇଦେଲେ । ରଘୁନାଥ ମୂର୍ତ୍ତି, ରାଧାକୃଷ୍ଣ ମୂର୍ତ୍ତିଙ୍କୁ ଧଇଲା ବେଳେ ହାତଥରୁଥାଏ ଏବଂ ଦିହରେ ଭୟ ପଶୁଥାଏ । ତାପରେ ମୁଁ ଠାକୁରଘରକୁ ପ୍ରାୟ ପଶିନାହିଁ, ପୂଜାଅର୍ଘ୍ୟ ତ ଦୂରର କଥା ।

ହେଡ଼ପଣ୍ଡିତଙ୍କ ଆଖି ମୋ ଉପରେ ବହୁଦିନୁ ରହିଛି । ଚତୁର୍ଥ ଶ୍ରେଣୀକୁ ଉଠିବା ସଂଗେସଂଗେ ମୋତେ ଇଂରାଜୀ ଫଳା ଶିଖାଇ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ ଛବି ଥିବା 'ଫାଷ୍ଟ ବୁକ ଅଫ୍ ରିଡିଂ' ଧରାଇଲେ । ବି ଏ ବେ, ବିଇ ବି, ବି ଆଇ ବାଇ, ବିଓ ବୋ, ବି ଇଉ ବ୍ୟୁ, ବି ଓ୍ୱାଇ ବାୟ । ଏମିତି ପଢୁଁ ପଢୁଁ ଆଗେଇ ଗଲି One morn I met a lame man close to my farm. He had not gone far when his stick broke. ଏ ବହି ସାଙ୍ଗେ ସାଙ୍ଗେ ପଢ଼ିଲି Nelson's Indian Readers' Primer । ଛୋଟ ନାଲି ବହିଟି; ବହୁତ ସୁନ୍ଦର ସୁନ୍ଦର ଛବି । A man, A mat, A man on a mat. A cat,

A cat on a mat. ପ୍ରତି ଶବ୍ଦପାଇଁ ଛବି। ମାକ୍‌ମିଲାନ କଂପାନୀଙ୍କ ଛପା ବହି, ବିଲାତି ମହକ। କେଡ଼େ ସୁନ୍ଦର ସୁନ୍ଦର କଥା। "Little Tommy Tucker / white bread and butter". "Mary had a little lamb", "Jack and Jill went up the hill", "where are you going my pretty maid... I am going a-milking..... may I come with you ?" ପୁଅ-ଝିଅ, ଚଢ଼େଇଚଟା, ଫଳଫୁଲର ଛବି।

ଘରେ ବସି ପାଟିକରି ପଢ଼ିଲା ବେଳେ, ବାପା ମଧ୍ୟ ଇଂରାଜୀ ପ୍ରତି ଆଗ୍ରହୀ ହେଲେ। ସେ ହାଟରୁ ତ୍ରିଭାଷୀଟିଏ ଆଣି ହିନ୍ଦୀ ଓ ବଂଗଳା, ଓଡ଼ିଆ ସାହାଯ୍ୟରେ ଶିଖୁଥିଲେ। ମୋ ପାଖରୁ 'ଫାଷ୍ଟ ବୁକ୍' ନେଇ ଅକ୍ଷର ଶିଖାଶିଖି ଆରମ୍ଭ କଲେ। ମୋତେ ପଚାରିଉଚାରି ଏବଂ କ୍ରମେ ଅକ୍ଷର ଶିଖିଗଲେ। ୱାନ ଟୁ ଥ୍ରୀ ଯେତେବେଳେ ଇଚ୍ଛା କହିଲେ। ଇଂରାଜୀରେ ନାଆଁ ଦସ୍ତଖତ ତାଙ୍କ ଶିକ୍ଷାର ମୂଳ ଲକ୍ଷ୍ୟ। ମୁଁ ଛଟା ଅକ୍ଷରରେ ମୋ ନାଆଁ କାନ୍ଥରେ ଲେଖିବାରୁ, ସେବି ଶିଖି ସେଇ କାନ୍ଥରେ ତାଙ୍କ ନାଆଁ ଲେଖିଲେ। କାନ୍ଥଯାକ Basanta Satpathy ଓ Bholanath Satpathy। କାନ୍ଥରେ ମାଆ ଲୁଛ ଦିଆଇଥାଏ। ମଗୁଶିର ମାସରେ ଝୋଟି ଲେଖିବ। ଜେଜେବାପା କାନ୍ଥଯାକ ବାପ-ପୁଅଙ୍କ ଲେଖା ଦେଖି ଚିତ୍କାର କଲେ- "କାନ୍ଦିରି, ଆ ଦେଖିବୁ କିଏ ତୋ କାନ୍ଥଯାକ ଝୋଟି ଲେଖି ଦେଲାଣି।" ମାଆ ଆସି ଦେଖି କହିଲା- "ଇଏ ଆଉ କାହା କାମ ହେବ। ସେଇ ଦୁଇ ପାଠୁଆ ବାପପୁଅଙ୍କ ଛଡ଼ା।" ତେଣେ ବୁଢ଼ା ନିଜେ ତାଳପତ୍ରରେ କାମ ଚଳାଇ ଭାଗବତ, ହରିବଂଶ, ରାମାୟଣ, ମହାଭରତ ଗାଦି ଦାଣ୍ଡଘରେ ବସାଇ ପାରାୟଣ ବ୍ୟବସ୍ଥା କରିଥାଏ ଏବଂ ଦିନବେଳା ବୈଠକଖାନାଟି ବିଧବା ବୁଢ଼ୀ, ସାଇର ତିର୍ଲା, ଅଣ୍ଡାପିଲ୍ଲାରେ ଭରପୂର। ନନା ତେଣେ ବୈଷ୍ଣବ ପାଣିଙ୍କ "ହରିଶ୍ଚନ୍ଦ୍ର" ସାଙ୍ଗକୁ "ନାବକେଳି", "ନଟୁଚୋରି", "କପଟପାଶା" ସୁରଧରି ଗାଉଥାଏ ପିଣ୍ଡା ଖଟରେ ଶୋଇ। ଘର ସାହିତ୍ୟରୋଳରେ ଭରପୂର। ବିଲରେ ତେଣୁ ପଦ୍ମ-କଇଁ ଫୁଟୁଛି; ବର୍ଷାହେଲେ ଠାକୁରଘରେ, ଆଟୁ ଉପରେ ପାଣି ପଡୁଛି ଛପର ଅଭାବରେ।

ସୁବିଧାସୁଯୋଗ ପାଇଥିଲେ ବାପା ସାହିତ୍ୟିକ ହୋଇଥାନ୍ତେ, ପାଠଶାଠ ନ ଜାଣିଥିଲେ ବି। ମୁଁ ଆଇ.ଏ, ବି.ଏ. କ୍ଲାସରେ ସଂସ୍କୃତ ଶ୍ଳୋକ ବଡ଼ ପାଟିରେ ସୁର ଧରି ଗାଇବାର ଶୁଣି, ସେ ମୋଠାରୁ ଲେଖିନେଇ କାଳିଦାସଙ୍କ ଅଭିଜ୍ଞାନ ଶକୁନ୍ତଳାର ପାଞ୍ଚୋଟି ଶ୍ଳୋକ- "ଯା ସୃଷ୍ଟି ସ୍ରଷ୍ଟୁରାଦ୍ୟା..... ଅନାଘ୍ରାତ ପୁଷ୍ପ ପାତୁଂନ ପ୍ରଥମଂ" "ଯାସ୍ୟତ୍ୟଦ୍ୟ" ଏବଂ "ଶୁଶ୍ରୁଷସ୍ୱ ଗୁରୂନ୍" (ଜର୍ମାନୀର ବିଖ୍ୟାତ କବି Goethe ଯେଉଁ ଶ୍ଳୋକକୁ ଦୁନିଆଁର ଅମୂଲ୍ୟ ସଂପଦ ବୋଲି କହିଥିଲେ) ମୁଖସ୍ଥ ରଖି ଯ୍ୟାକୁତାକୁ ଅଟକେଇ ବୁଝାଉଥିଲେ।

ଦିନେ ସଂଜବେଳେ ହେଡ଼ପଣ୍ଡିତ ଟ୍ରେନରୁ ରାଜାଲୋକା ଷ୍ଟେସନରେ ଓହ୍ଲାଇ ସିଧା ଆମ ଘରେ ପହଞ୍ଚିଲେ ଏବଂ ବାପାଙ୍କୁ କହିଲେ- ମୁଁ ଯାହା ଆଶା କରିଥିଲି ସେଇୟା ହେଲା । ବସନ୍ତ ମୟୂରଭଞ୍ଜରେ ଫାଷ୍ଟ ହୋଇଛି । ବୃତ୍ତି ପାଇବ । ମୁଁ ଏତେ ଖୁସି ହେଲି ଯେ, କିଛି ନ କହି ହେଡ଼ପଣ୍ଡିତଙ୍କ ମୁହଁକୁ ଚାହିଁରହିଲି । ଯେ ଭଗବାନ, ସେ ଭଗବାନ । ବାପା ଆନନ୍ଦରେ ଠାକୁର ଘରକୁ ଯାଇ ମୁଣ୍ଡିଆମାରି, ଦୀପ ଲଗାଇ ଦୁଇପଦ ଗାଇଦେଲେ- 'ଗୋବିନ୍ଦ ଗୋବିନ୍ଦ ଗୋବିନ୍ଦ; ପଦୁଁ ଗଳିତ ମକରନ୍ଦ ।'

ପରଦିନ ସକାଳୁ ଇଲାକାରେ ଶୁଣିବାକୁ ମିଳିଲା- "ବାଘମୁଣ୍ଡି ବୁଢ଼ାର ନାତି, ଭୋଳା ଶତପଥିର ପୁଅ ଇଉ.ପି. ପାସ କରିଛି, ମୟୂରଭଞ୍ଜରେ ଫାଷ୍ଟ ହୋଇଚି, ବୃତ୍ତି ପାଇବ ।" କେତେ ଲୋକ ମୋତେ ଦେଖିବାକୁ ଆସିଥିଲେ, ଆଶ୍ଚର୍ଯ୍ୟ ହେଲେ, ଏତେ ବକଟେ ପିଲା କିମିତି ଏତେ ବଡ଼ କାମ କରିପାରିଲା ।

ସଂଜରେ ଆମ ଘରେ ବିଚାର ବିମର୍ଶ ହେଲା । ଉପସ୍ଥିତ ଥିଲେ ହେଡ଼ପଣ୍ଡିତ, କେକେ, ବାପା, ନନା, ମୁଁ । ଦହିମୁହାଁ ଖୁଣ୍ଟକୁ ଆଉଜି ମାଆ ଛିଡ଼ା ହୋଇଥାଏ । ବସନ୍ତ ପଢ଼ିବ କି ନାହିଁ, ପଢ଼ିଲେ କେଉଁଠି ପଢ଼ିବ, ଶୀର୍ଷାରେ ନା ବାରିପଦାରେ ? ମୋ ଇଚ୍ଛା ବାରିପଦାରେ ପଢ଼ିବି । ବଡ଼ ସ୍କୁଲ, ମାମୁଘର ପାଖରେ । ଗାଁର ହରି, ଶିରୀଶ, ନାରଣ, ପଦୁ ଆଦି କେତେ ଜଣ ପିଲା ଅଛନ୍ତି, ଅନେକ ଦେଖିବାର ଅଛି, ବୁଲିବାରେ ଅଛି । ଅନ୍ୟମାନଙ୍କ ବିଚାର, ଟଙ୍କାଦେଇ ହବନି । ସାତ ଟଙ୍କାରେ ଶୀର୍ଷା, ଦଶଟଙ୍କାରେ ବାରିପଦା । ପାଞ୍ଚଟଙ୍କା ବୃତ୍ତି । ଅକୁଳାନ, ନିଅଣ୍ଟ ହେବ । ମୁଁ ଶୀର୍ଷା ଯିବାକୁ ନାରାଜ ଅନ୍ୟ ଏକ କାରଣରୁ । ସେଠି ରଘୁନାଥ ରଣା ହେଡ଼ମାଷ୍ଟର । ସାରଦା ହାବୁଡ଼ରୁ ରଣା ହାବୁଡ଼କୁ । ରଣାକୁ ଗର୍ଭିଣୀ ଗାଇ ବାଟ ଛାଡ଼ିଦିଏ । ଗୋଟେ ପିଲାର ମୁଣ୍ଡରେ ନଙ୍ଗଳା ଶିଲଟ ବାଡ଼େଇ ମାରିଦେଇଛି କୁଆଡ଼େ । ଖୁବ୍ କ୍ରୋଧୀ । ଶିରୀଶ ହୋତା ମାତ୍ର ଦୁଇଦିନ ରହି ପେଡ଼ିପେଟାରା ଧରି ଘରକୁ ପଳାଇଆସିଲା ଏବଂ ବାରିପଦାର ବନ୍ଧୁବାସ ଘରେ ରହି ମାଇନର ପଢ଼ିଲା । ଶୀର୍ଷାରେ ମୋର ଚିହ୍ନାପରିଚୟ ଥିବା ପିଲା ସଂଖ୍ୟା ଶୂନ । ମୁଁ ସକସକେଇ କାନ୍ଦିବାକୁ ଆରମ୍ଭକଲି । ମାଆ କହିଲା- "ହେଡ଼ ପଣ୍ଡିତଂକୁ ପଚାର, ସିଏ ଯାହା କହିବେ, ତାଇ ହେବ ।" ହେଡ଼ପଣ୍ଡିତ କହିଲେ "ସେ ଶୀର୍ଷାରେ ପଢ଼ିବ ।"



## ।। ଚଉଦ ।।

ମାର୍ଚ୍ଚ ଦୁଇ ତାରିଖ, ଉଣେଇଶ ଶହ ପଚିଶ ସାଲ। ଏକ ସ୍ମରଣୀୟ ଦିନ। ସାର୍ଟିଫିକେଟ ଅନୁସାରେ ମୋର ବୟସ ଦଶବର୍ଷ ତିନିମାସ।

ଶୀର୍ଷା ମାଇନର ସ୍କୁଲକୁ ଯାତ୍ରାପାଇଁ ପେଡ଼ିପେଟରା ଦିନକ ଆଗରୁ ପ୍ରସ୍ତୁତ। ଡ଼ୋମସାହିରୁ ପେଟି ବାଉଁଶର ପେଡ଼ିଟିଏ ଆସିଛି। ମୁଢ଼ି, ଚୁଡ଼ା, ଚିନି, ପିଆଜ ଓ ଖିଲକାତିରେ କଟା ବିଡ଼ାଏ ଶାଳ ଦାନ୍ତକାଠି। କନ୍ଥାଟିଏ, ଝୋଟରେ ଘରବୁଣା ସତରଞ୍ଜି, ଛୋଟ କଂସାଥାଳି, ପିତଳ ବେଲା ଏବଂ ଗୋଟିଏ ଅଧିକା ଧୋତି ଓ ଦାନୁଆ ଗାମୁଛା। ଏଇ ହେଲା ସାଜସରଂଜାମ। ପଢ଼ା ସରିଥିବା ବହି କେତେଖଣ୍ଡି। ସହଳ ସହଳ ଗାଧୁଆ ପାଧୁଆ ସାରି, ଠାକୁରଙ୍କୁ ମୁଣ୍ଡିଆ ମାରି ବାହାରିପଡିଲୁଁ ଭାତ ଖାଇ। ବାପା କେତେବେଳେ ପାରେଶ୍ୱର ମନ୍ଦିରକୁ ଯାଇ, କ୍ଷୀର ଟୋପେ ମହାଦେବଙ୍କ ମୁଣ୍ଡରେ ଦେଇ ଆସିଥାନ୍ତି। ଟିକି ଚଢେଇ ଆଜି ପ୍ରଥମ ବସା ଛାଡ଼ି ଅନନ୍ତ ଗଗନ ପାଇଁ ଖଣ୍ଡିଉଡ଼ା ଦେବ। ବାଡି ପଛପଟ ରାସ୍ତା ଦେଇ ପ୍ରଶେସନ ବାହାରିଲା।

ମୋର ପରିଧାନ ହେଲା ତିନି ପିସ୍ତଲ ମାର୍କା ବାଇଗଣୀ ଧଡ଼ିର ଛଅଗଜୀ ମାନ୍‌ଚେଷ୍ଟର ଧୋତି। ପଢୁଆଁ ହିସାବରେ ପ୍ରଥମାଷ୍ଟମୀରେ ସେଇଠି ପିନ୍ଧିଥିଲି। ବିନା ଗଞ୍ଜି, ବିନା ଶାର୍ଟରେ ବେକ ବନ୍ଦ ହାଟକିଣା ରେଡ଼ିମେଡ୍ କୋଟ। ମୁଣ୍ଡରେ ଚଇତନ ଚୁରକି, ହାତରେ ମୋଟା ରୁପା ବଳା, ଆଙ୍ଗୁଳିରେ ରୁପା ମୁଦି, କାନରେ ନୀଳ ରଙ୍ଗର କାଚବସା ସୁନାଫୁଲ। ଚପଲ ବା ଯୋତାର ପ୍ରଚଳନ ନାହିଁ। ପଇତାଘରର କଠଉ ହଳକ ଥିଲା। ମାତ୍ର ମାଡ଼ି କରି ଏତେ ଦୂର ପିଲାଲୋକ ଯାଇପାରିବି ନାହିଁ। କୁଅକୁ ସମ୍ଭାଳି ମୁଁ ଛାଲିଛି।

ଆଗରେ ନନା; ତା ପଛକୁ ମୁଁ; ମୋ ପଛକୁ ବାପା। ନନାର ହାଫ୍ ଶାର୍ଟଟି ବାରିପଦା ଖଲିଫା ତିଆରି। ବାପାଙ୍କ ଫୁଙ୍ଗୁଳା ଦିହରେ ପତଳା କାଲି ଜାଲି ଓଢ଼ଣିଟିଏ। ଯଜନଯାଜନରେ, ବନ୍ଧୁବାସିଆରେ ବା ସଭାସମିତିରେ ତାଙ୍କରଏଇ ପୋଷାକ। ଗରମ ହେଲେ ତାକୁ ମୋଡ଼ି ମାଡ଼ି କାନ୍ଧରେ ପକାଇଦିଅନ୍ତି। ବାପାଙ୍କ ପଛକୁ କାଲା (ଗଣେଶ୍ୱର) ଭାରୁଆ। ଭାରର ଗୋଟାଏ ପାଖରେ ସବେଇ ଦଉଡ଼ିରେ ହାତବୁଣା ଖଟ, ଅନ୍ୟ ପାଖରେ ପେଡ଼ି ଓ ଦୁଇ ପାଖ ଓଜନ ସମାନ ରଖିବାପାଇଁ ଗୋଟାଏ ଡ଼ିମା ପଥର ରଖି ମୋ ସହିତ ପାଦ ସମାନ ପକାଇ ଚାଲିଛି; ସଡ଼କ ଧଇଲେ ଆମଠୁ ମାଇଲେ ଆଗେଇ ଯିବ। ସବା ଶେଷକୁ ଭାରୁଆ ମହେଶ୍ୱର ଦି ବୋଝ କାଠର ଭାର ରଖି ଚାଲିଛି। ପେଡ଼ି ଭିତରେ ବୋଧହୁଏ କିଛି ଚାଉଳ ଅଛି। ଶୀର୍ଷା ବୋର୍ଡ଼ିଂରେ ମାସକୁ ପିଲାପିଛା ଦେୟ ଯୋଡ଼ିଏ ଟଙ୍କା,

ତା ଛଡ଼ା ଟଙ୍କାଏ ଟିଉସନ ଫି, ସବୁ ବିଷୟ ମାଷ୍ଟରମାନେ ପଢ଼ାନ୍ତି ଦୁଇବେଳା ଏବଂ ଟଙ୍କା ଭାଗ କରି ନିଅନ୍ତି, ଜଣକା ଚାରି ପାଞ୍ଚଟଙ୍କା ଭାଗ ପଡୁଥିବ।

ପନ୍ଦର ସେର ଚାଉଳ, ଆଉ ଦି ବୋଝ ଲେଖାଏ ଜାଳକାଠ, କାରଣ ଶୀର୍ଷାରେ କାଠ ମିଳେନାହିଁ। ସୁବର୍ଣ୍ଣରେଖା ନଈରେ ବନ୍ୟା ଆସିଲେ ପହଁରାଳି ଭେଳାକରି କାଠ ମଝିନଈରୁ ଛାଣିଆଣନ୍ତି।

ଗୁହାଳ ଦୁଆର ବନ୍ଧକୁ ଧରି ମାଆ ଛିଡ଼ା ହୋଇଥିଲା। ଯିମିତି ତା ଆଖିରେ ଲୁହ ଧାର ଦେଖିଲି, ଭୋ କରି କାନ୍ଦି ପକାଇଲି ଏବଂ ବାପା ଓ ନନାଙ୍କ କଡ଼ା ଚାହାଣି ଦେଖି ନିଜକୁ ସମ୍ଭାଳିନେଲି। ଜେଜେବୁଢ଼ା  ବଗାଳ ସାହି ଦାଣ୍ଡ ଦେଇ ଆମ ସାଙ୍ଗରେ ପହୁଞ୍ଚିଲା ଏବଂ ମୋତେ ଅଟକାଇ ଶ୍ଳୋକଟାରେ ପଢ଼ିଲା- "କୁର୍ବନ୍ତୁ ତେ ମଙ୍ଗଳମ୍" ଏବଂ ପରେପରେ ଶୁଭମଙ୍ଗଳ ଶ୍ଳୋକ- "ଧେନୁର୍ବତ୍ସପ୍ରଯୁକ୍ତା.... ଦୃଷ୍ଟ୍ୱା ଶ୍ରୁତ୍ୱା ପଠିତ୍ୱା ଫଳମିହ ଲଭତେ।"

ଆଗେଇ ଚାଲିଲୁ। ରାସ୍ତା ଅନନ୍ତ ପରି ମୋତେ ଜଣା ପଡୁଥାଏ। ଛଅ ମାଇଲ ରାସ୍ତା କିନ୍ତୁ ମୋ ପକ୍ଷରେ ବହୁତ, ବହୁତ ଦୂର। କୁଞ୍ଚଟା ଛନ୍ଦିହୋଇ ଯାଉଥାଏ। ଥରେ ଝୁଣ୍ଟି ପଡ଼ିଲି। କୁଞ୍ଚକୁ ଫିଟାଇ ଅଣ୍ଟାରେ ଗୁଡ଼ାଇଦେଲି। ବାଁ ପାଖରେ ରଥ-ପୋଖରୀ। ଛିଣ୍ଡା ଗାମୁଛାରେ ଲୋଟାଲୋଟା ଚିଙ୍ଗୁଡ଼ି ଏଇଠି ଧରିଛି, ରାକା ଓଡା ସାଙ୍ଗରେ। ଗାଁ ସଡ଼କ ପୋଲତଳ ଖଣାରେ କେତେ କେତେ ନିଶୁଆ କଣ୍ଟିଆ, ମାଗୁର ଏବଂ ତୋଡ଼ି। ବନ୍ଶୀରେ ସହଜରେ ଧରିହୁଏ। ପାଣିଶୋଳ ଡୁଙ୍ଗୁରି; କଷାଫଳ ଏଇଠୁ ନେଲେ ମାଆ ଶାମ୍ବ ଦଶମୀରେ ସୂର୍ଯ୍ୟଙ୍କୁ ହଳଦୀପାଣି ଅର୍ଘ୍ୟ ଦିଏ। ମାଟିଆଳି ଡ଼ିପାରେ କେତେ ଉଇଛତୁ, ବାଲିଛତୁ, ଶିକୁଳାଛତୁ, ଆଣ୍ଠୁଆଛତୁ ଆଷାଢ଼ ମାସରେ ଫୁଟେ। ଏଇ ଆଗରେ ବାଘଝମ୍ପ; ଗାଁ ମୁଣ୍ଡରେ ଖଇରା ତାଳ ଗଛଟା। ମଣ୍ଡଳ ଘର ଗଛ। ଅଳ୍ପ ମୂଠା, ଗୁଡ଼ ଦେବାକୁ ପଡ଼େ। ପଛରେ ଯେଉଁ ଆମ୍ବ ତୋଟା, ତାହା ରାଜାଲୋକା ସର୍ଦ୍ଦାର ଘର । କେହି ବାଟଗଲା ଲୋକ ତଳେ ପଡ଼ିଥିବା ଆମ୍ବକୁ ଛୁଅନ୍ତି ନାହିଁ। ଆଠ ମାଇଲ ଖୁଣ୍ଟ ପାଖରେ ଏକଡ଼ାଳି; ପଚା ବାରିକ ଘର। ଏକଡ଼ାଳିର ଛଉ ଭାରି ବିଖ୍ୟାତ। ଦଶ ମାଇଲ ଖୁଣ୍ଟ ପର୍ଯ୍ୟନ୍ତ ଗାଁଗଣ୍ଡା ନାହିଁ, ଜନମାନବଶୂନ୍ୟ ସଡ଼କଟି। ଭାଲୁବସା ଖାଳରେ ପୋଲ ନାହିଁ। ଆଣ୍ଠୁଏ ଜଂଘେ ପାଣି ଆସିଲେ ଲୁଗାପଟା କାନ୍ଧରେ ରଖି ପାରିହେବାକୁ ପଡ଼େ। ତାପରେ ବୀରସିଙ୍ଗା ଡୁମ୍ବୁରି। ମେଘନାଳ ବା ଅଭ୍ର ଭରପୂର ସେ ଡୁମ୍ବୁରିରେ। ସେଇଠୁ ଛିଡ଼ା ହୋଇ ଚାହିଁଲେ ପ୍ରାୟ ମାଇଲିଏ ବିଲ। ଗଛ ବୁରୁଛ କିଛି ନାହିଁ। ଧାନକଟା ମାସେ ଦିମାସ ଆଗରୁ ସରିଥିବାରୁ ଇଲାକାଟା ରୁକ୍ଷ ଦିଶୁଛି। ମୁଁ ପ୍ରତି ଜାଗା ଉପରେ ଲକ୍ଷ୍ୟ ରଖୁଛି। କାରଣ ଶନିବାରିଆ ଘରକୁ ଆସିଲେ ମୋତେ ଏକୁଟିଆ ଆସିବାକୁ ପଡ଼ିବ। ସ୍କୁଲଘର ଯୋଡ଼ାଏ

ଲମ୍ବା ପାହାଡ଼ ପରି ଦିଶୁଛି; ଚାଳଛପର ଘର। ଗୋଟାଏ ଇଉକାଲିପଟାସ୍ ଗଛ ଆକାଶକୁ ଛୁଇଁଛି। ସ୍କୁଲ ପହଞ୍ଚିବାକୁ ଦୁଇଶ ଗଜ ଅଛି, ଚାଉଁରିଆ ପୋଖରୀହୁଡ଼ା ପଡ଼ିଲା। ପୋଖରୀ ମଝିରେ ମନ୍ଦାଏ ଲାଲିକଇଁ ଏବଂ ଠିକ୍ ମଝିରେ ଗୋଟାଏ ବଡ଼ କଇଁଫୁଲ। ଏଇଟି ଦେବତାଳି ପୋଖରୀ। କେତେଲୋକ ଦିପହରେ କଳାଝିମିରି ଶାଢ଼ୀ ପିନ୍ଧିଥିବା ଠାକୁରାଣୀ ହାବୁଡ଼ରେ ପଡ଼ି ରକ୍ତବାନ୍ତିକରି ମରିଛନ୍ତି। ଘରକୁ ଯିବାବେଳେ ମୋତେ ଏଇଠି ପଇତା ଗଣ୍ଠି ଦୁଇଟାକୁ ଏକାଠିକରି ଯିବାକୁ ପଡ଼ିବ। କେତେଗୁଡ଼ାଏ ମୁଗ କିଆରି ପାରହେବା ପରେ ସ୍କୁଲରେ ପହୁଞ୍ଚିଲୁ। ଗୁଡ଼ାଏ ତାଳ, ବାବୁଲକଣ୍ଟା ଏବଂ ଗମାରୀ ଗଛ, ଚିକିଟା ଟାଣୁଆ ମାଟି, ବର୍ଷାଦିନରେ ଗୋଡ଼ ଖସିଯାଏ।

କ୍ଲାସ ବୋଧହୁଏ ଚାଲିଥାଏ। ହେଡ଼ମାଷ୍ଟରଙ୍କ ଅଫିସକୁ ଲାଗି ବୋର୍ଡ଼ିଂ ପିଣ୍ଡାରେ ଭାରଥୁର ନେଇ ସମସ୍ତେ ବସିଲୁ। ବସିବସି ଦେଖିଲୁ- ଏକ ନାହିଁ ନଥିବା ଦୃଶ୍ୟ। ସ୍କୁଲ ବାରଣ୍ଡା ତଳକୁ ଦଶପନ୍ଦରଟା ମଲ୍ଲୀଗଛ। ଅଗ କଟାହୋଇ କଅଁଳ ପତ୍ର-କଢ଼ ବାହାରୁଛି। ଚାରି ପାଞ୍ଚୋଟି ଛେଳି ଛୁଆ ସହିତ କୁଆଡୁ ଧାଇଁ ଆସି ଯିମିତି ମଲମଲକରି ଖାଇବା ଆରମ୍ଭ କରିଛନ୍ତି- ପିଅନ କପିଳର ଚିତ୍କାରରେ ସ୍କୁଲର ଛାତ୍ର ଶିକ୍ଷକ ସମସ୍ତେ ଧାଇଁଆସି ସେମାନଙ୍କୁ ଘେରିଗଲେ ଏବଂ ଅଫିସରୁ ପବେଇ ଦଉଡ଼ି ବିଡ଼ା ଆଣି ବାଁ-ଡ଼ାହାଣ, ଡ଼ାହାଣ-ବାଁ କରି ଗୋଡ଼ସବୁ ଛନ୍ଦିଦେଲେ। ଜୀବଗୁଡ଼ାକ ଭୂଇଁରେ ଖରାରେ ପଡ଼ି ଭେଁ ଭେଁ ରଡ଼ି ଛାଡୁଥାନ୍ତି ଛଟପଟ ହୋଇ। ଛୁଆଗୁଡ଼ାକ ମେଁ ମେଁ କରି ଇସ୍କୁଲ କମ୍ପାଉଥାନ୍ତି। ଅଧଘଣ୍ଟାଏ ସ୍କୁଲ ବନ୍ଦ। ହେଡ଼ମାଷ୍ଟର ଅଫିସରୁ ଉଠିଆସି ପିଅନକୁ ହୁକୁମ କଲେ ଚାରିଟାଯାକେ ସେମାନଙ୍କୁ ସେଇ ଅବସ୍ଥାରେ ରଖି, ବୋର୍ଡ଼ିଂରୁ ଚାଉଳ ଆଣି ଅଧସେର ଲେଖାଏଁ ପ୍ରତ୍ୟେକକୁ ଖୁଆଇ ପାଣି ପିଆଇ ଛାଡ଼ିଦେବ। ବାପା କହିଲେ- ଲୋକଟା କେଡ଼େ କଡ଼ା, ନିର୍ଦ୍ଦୟ, ପଶୁଜୀବ ଗୁଡ଼ାକ କଣ ଜାଣନ୍ତି; ଚାଉଳ ପେଟରେ ଫୁଲିଯିବ, ମରିଯିବେ।

ଏତିକିବେଳେ ଜଣେ ମୋଟାସୋଟା ଲୋକ୍ ପାଖଦେଇ ଯାଉଁଯାଉଁ ମୁରୁମୁରୁ ହୋଇ କହିଲେ- "ପାଷାଣ୍ଡ ଚଣ୍ଡାଳ"। ବୋର୍ଡ଼ିଂ ପିଣ୍ଡାକୁ ଉଠିଯାଇ ସେ ଦୁଇଜଣ ଭାରୁଆଙ୍କୁ ଡାକି କହିଲେ- "କାଠବୋଝ ନେଇ ସେଇ କାଠଗାଦିରେ ସାଇତି ଦିଅ।" ହେଡ଼ମାଷ୍ଟରଙ୍କ ଅଫିସ ଭିତରୁ କପିଳ (ଗେଡ଼ା, ମୋଟା, ନିଶବାଲା, ଅଧୋଡ଼ା) ପିଅନ ଜରିଆରେ ଡାକରା ପାଇ ବାପା ଓ ମୁଁ ଭିତରକୁ ଗଲୁଁ। ହେଡ଼ମାଷ୍ଟର ରଘୁନାଥ ରଣା। ଯାହାକୁ କହନ୍ତି- ସ୍ୱନାମଧନ୍ୟ। ସାପ ପରି ପତଳା, ଦଂଶିବା ଶକ୍ତି ଅପରିସୀମ। ଘର ଗାଁ ମୁଣ୍ଡରେ। ଆଗରୁ ସେ କରଞ୍ଜିଆ ଆଡ଼େ ଥିଲେ। କୁହାବୋଲା, ଧରାଧରି କରି ଗାଁ ସ୍କୁଲକୁ

ଆସିଛନ୍ତି । ବୟସ ମଧ୍ୟମ । ଜିଭରେ ସବୁବେଳେ 'ବଦମାସ' ଶବ୍ଦଟି । ବଦମାସ ପିଲା, ବଦମାସ ପିଅନ, ବଦମାସ ଛେଳି । ହାତ ସବୁବେଳେ କାହାକୁ ବାଡ଼େଇବାପାଇଁ ଛଟପଟ ।

ସେ ଆଗରୁ ଜାଣିପାରିଥାନ୍ତି- ମୁଁ ଭଲପିଲା, ସେଣ୍ଟରରେ ଫାଷ୍ଟ ଏବଂ ବୃତ୍ତି ପାଇବି । ବାପା ମୋତେ ତାଙ୍କ ଆଗରେ ଛିଡ଼ାକରାଇ ପାସ ସାର୍ଟିଫିକେଟଟି ତାଙ୍କ ହାତକୁ ବଢ଼ାଇଦେଲେ । ସେ ସଙ୍ଗେ ସଙ୍ଗେ ସାର୍ଟିଫିକେଟ୍ ଓଲଟାଇ ପଛପଟେ ଲେଖିଦେଲେ Admitted into class V ଏବଂ ବାପାଙ୍କୁ କହିଲେ "ମୁଁ ଏ ପିଲାକୁ କ୍ଲାସ ଫାଇଭ୍‌ରେ ନେଲି । ଇଂରାଜୀ ପଢ଼ିନାହିଁ । ଆମର ଏଠି କ୍ଲାସ ଫୋରରୁ ପଢ଼ାହୁଏ ଇଂରାଜୀ ।" ମୁଁ ଯେ ଇଂରାଜୀ ଭଗବାନ ମହାପାତ୍ର ପାଖରେ ଦୁଇବର୍ଷ ପଢ଼ିଛି, ତାହା ସେ ଅସ୍ୱୀକାର କଲେ । ବାପା ଓ ନନା ଦୁହେଁ ମିଶି ବିଚାର ବିମର୍ଶ କଲେ । କିଛି କହିଲେ ନାହିଁ । କିଏ ଭଲ ପଢ଼ିଲେ ଡବଲ ପ୍ରମୋଶନ ପାଏ, କିନ୍ତୁ ମୁଁ କ୍ଲାସ ଫାଇଭରେ ମୟୂରଭଞ୍ଜ ଷ୍ଟେଟରେ ଫାଷ୍ଟ ହୋଇ ପୁଣି ଶୀର୍ଷାରେ ସେଇ କ୍ଲାସ ଫାଇଭରେ ପଢ଼ିବି ! କିନ୍ତୁ ରଘୁନାଥ ରଣାଙ୍କୁ କିଏ ଉତ୍ତର ଦବ ? ଦୁଃଖ ଲାଗିଲା । ମୁଁ ଫେର 'ସାହିତ୍ୟ କୁସୁମ' ପଢ଼ିବି 'ସାହିତ୍ୟ ପ୍ରସଙ୍ଗ' ନୁହେଁ; ପୁଣି ଐକିକ, ତ୍ରୈରାଶିକ ପଢ଼ିବି, ଭଗ୍ନାଂଶ ନୁହେଁ । (ରଘୁନାଥ ରଣା ଷାଠିଏ ବର୍ଷ ହେଲା ମଲେଣି, ମୋ ପାଖରେ ତାଙ୍କ ବେଦର ଗାର Admitted into class V ସହିତ ମୟୂରଭଞ୍ଜ ଷ୍ଟେଟ U.P. Pass Certificate ରହିଛି । ମୁଁ ବୃତ୍ତିଭୋଗୀ ଛାତ୍ର ବୋଲି ଦରମା ଛାଡ; କେବଳ ଗେମ୍ ଫି ଦୁଇପଇସା ମାସକୁ ଦେବି ତିନି ଅଣା ସ୍ଥାନରେ । ଯେଉଁସବୁ ବହି ପଢୁଥିଲି ସେଇ ସବୁ ପଢ଼ିବି । ସାଙ୍ଗକୁ 'ଜ୍ୟାମିତିକ ସଂଜ୍ଞା ପ୍ରକରଣ' ବୋଲି ଚୁଟକି ବହିଟିଏ, ଯାହାର ଆରମ୍ଭ- "ବିନ୍ଦୁ - ଯାହାର ଅବସ୍ଥିତି ଅଛି; ଦୈର୍ଘ୍ୟ, ପ୍ରସ୍ଥ, ବେଧ ନାହିଁ", ଯେଓ୍ୱା ଗାଣ୍ଡୁ (ଯେଓ୍ୱା ଅର୍ଥାତ୍ ପିଠିକୁଜ ବା ଇଂରାଜୀରେ hunchback) ପ୍ରତି ଶବ୍ଦ ଅବୋଧ୍ୟ । ବାପା ଓ ନନାଙ୍କ ଦୁଃଖ ଯେ ମାଇନର ପାସ କରିବାକୁ ଯେଉଁଠି ଦୁଇ ବର୍ଷ ଲାଗିଥାନ୍ତା ସେଠି ତିନିବର୍ଷ ଲାଗିବ । ବୃତ୍ତି ଦୁଇବର୍ଷ; ଅଧିକା ବର୍ଷଟିଏ ସେମାନଙ୍କୁ ଦେବାକୁ ପଡିବ । ରଘୁନାଥ ରଣା ଖୁସି ଯେ, ପିଲାଟାକୁ ମୂଳରୁ ପାକଳକରି ଛାଡ଼ିଦେଲେ ଭବିଷ୍ୟତକୁ ଭଲ ପଢ଼ିବ । ମୁଁ ବିଜ୍ଞାନ ନପଢି, ଇତିହାସ, ସଂସ୍କୃତ, ଦର୍ଶନ ଇତ୍ୟାଦି ବିଷୟରେ ଏମ୍.ଏ. ନପଢ଼ି, ଇଂରାଜୀରେ ଏମ୍.ଏ. ପଢ଼ିବା ମୂଳରେ ରଣାଙ୍କ ଏଇ ନିଷ୍ପତ୍ତି ।

ଖରା ପଡ଼ିଲା । ଦୁଇ ନମ୍ବର କୋଠରୀରେ ଗୁଣ୍ଡି ହୋଇ ମୋ ଖଟଟି ପଡ଼ିଛି । ଯେଞ୍ଜାଗାଣ୍ଡୁ ("ଯେଞ୍ଜା" ଅର୍ଥାତ୍ ପିଠିକୁଜ, ଇଂରାଜୀରେ hunchback) ପିଲେଇ କରିଥିବା କନ୍ଥାଟି ପଡ଼ିଛି ଖଟ ଉପରେ । ତକିଆ ନାହିଁ କି ଚାଦର ନାହିଁ । 'ସାଂ ସ୍ଥିଂ ସ୍ଥିରୋଭାବ'

କରିଦେଇ ବାପା ଓ ନନା ବାହାରିଲେ ଘରକୁ ଫେରିବାପାଇଁ। ମୂଲିଆ ଭାରୁଆ ଦୁହେଁ କାଠବୋଝ ଯଥା ସ୍ଥାନରେ ସାଇତିଦେଇ, ଖାଲି ଭାରଧରି ଚାଲିଗଲେ; ମୁଁ ଜାଣିପାରିଲି ନାହିଁ। ଯିବା ପୂର୍ବରୁ ବାପା କହିଲେ- "ମୁଁ ହେଡ଼ ପଣ୍ଡିତଙ୍କୁ ବୋର୍ଡ଼ିଂ ମାଲିକଙ୍କୁ ମାସକ ପଇସା ଦେଇ ଯାଇଛି। ଦୁଇମାସର ବୃତ୍ତି ଶୀଘ୍ର ଆସିଯିବ। ହାତଖର୍ଚ୍ଚ ଆଠଅଣା ନେ, ପାଖରେ ରଖିଥିବୁ।" ଯିମିତି ଦେଖିଲି ଦୁହିଁଙ୍କ ଆଖି ଛଳଛଳ, ଖୁବ୍ କୋହ ଉଠିଲା ଏବଂ ଭେଁ ଭେଁ କରି କାନ୍ଦିଲି। ସେମାନେ ପଛକୁ ନଚାହିଁ ଚାଲିଲେ ଘର ଆଡ଼କୁ, ଚାଉଁରିଆ ପୋଖରୀ ହିଡ ଦେଇ ବୀରସିଙ୍ଗା ଢୁଙ୍ଗୁରି ଆଡ଼କୁ, ଯେଉଁଠି ସୂର୍ଯ୍ୟ ମାନଗଡ ପାହାଡ଼ ଦେଇ ବୁଡ଼ିବାକୁ ଉଦ୍ୟତ। ସେମାନେ ଅଦୃଶ୍ୟ ହୋଇଗଲେ। ଭେଁ। ମା'କୁ ମନେ ପଡ଼ିଲା; ଭେଁ। ସାନ ଭଉଣୀ କ୍ଷୀର, ସାନ ଭାଇ ପ୍ରସନ୍ନକୁ ମନେ ପଡ଼ିଲା, ଭେଁ।

"ସାଧୁଆ, ଘଣ୍ଟ ଦେ"। ଠଣ ଠଣ ବାଜି ଉଠିଲା ବୋର୍ଡ଼ିଂ ଘଣ୍ଟ; ହାତକିଆ ରେଳଲାଇନ୍ ଲୁହାଖଣ୍ଡରେ ବଡ଼ ଲୁହାକଣ୍ଟାର ପିଟା ଶବ୍ଦ। "ଲଣ୍ଠନ ଲଗାଅ।" ଲଣ୍ଠନ ଗୋଟାଏ ଦୁଇଟା କୋଠରୀରୁ ବାହାରିଲା। ତାପରେ "ଏ ବସନ୍ତା !" ଯେଉଁଆଡୁ ଡାକ ଆସିଲା ସେ ଆଡ଼କୁ ଧାଇଁଲି। ମୋ ନାଁ ଧରି ଏ ଈଶ୍ୱର-ପରିତ୍ୟକ୍ତ ଦୁନିଆଁରେ ଯେ ଡାକିଲେ, ସେ ହେଲେ ହେଡ଼ପଣ୍ଡିତ, ବୋର୍ଡ଼ିଂ ସୁପରିଣ୍ଟେଣ୍ଡେଣ୍ଟ ବୈକୁଣ୍ଠନାଥ ମିଶ୍ର। ହେଡ଼ମାଷ୍ଟରଂକୁ ଲକ୍ଷ୍ୟକରି 'ପାଷଣ୍ଡ, ଚଣ୍ଡାଳ' ବୋଲି ଯେ ମୁରୁମୁରୁ ହୋଇ କହିଥିଲେ। ମୁଁ ପାଖରେ ପହୁଞ୍ଚିଲା ମାତ୍ରେ ମୋ ହାତକୁ ପୁଟୁଳାଏ ତୁଳସୀ ବଢ଼ାଇ ଦେଇ କହିଲେ- "ଆ, ମନ୍ଦିରକୁ ଆ।"

ଫରକଟା ଗୋଡ଼ିଆ ଖର୍ବକାୟ ନୀଳାଞ୍ଚଳ ପଣ୍ଡା ନାମକ ପୂଜାରୀକୁ ତୁଳସୀ ପୁଟୁଳା ବଢ଼ାଇ ଦେଇ, ହେଡ଼ପଣ୍ଡିତ ହାତ ଯୋଡ଼ି ଶ୍ଳୋକପରେ ଶ୍ଳୋକ ଏକନିଷ୍ଠ ହୋଇ ଗାଇବାକୁ ଲାଗିଲେ। 'ଧ୍ୟେୟଂ ସଦା ପରିଭବଘ୍ନ' 'ଦେବାନୁଦ୍ଧରତେ ଜଗନ୍ତୀ ବହତେ....,' 'ବନ୍ଦେ ମୁକୁନ୍ଦମରବିନ୍ଦଂ....' ଏବଂ ଶେଷ ଶ୍ଳୋକର ପଯ୍ୟର 'ବନ୍ଦେ ମୁଁ ମୁକୁନ୍ଦ ପଦ୍ମଚରଣ।' ବୋର୍ଡିଂକୁ ଫେରି ସେଇଦିନ ସନ୍ଧ୍ୟାରେ ମୋତେ ତାଙ୍କ ମୋଟା ଖାତାଟି ଦେଇ କହିଲେ- "ଏଇ ନେ ଖାତା, ଏହାର ଶେଷ ପୃଷ୍ଠା ଗୁଡ଼ାକରେ ତିନିଟା ଶ୍ଳୋକ ଓ ତାର ପଯ୍ୟର ଲେଖାଅଛି। ଉତାରି ନେଇ ମୁଖସ୍ଥ କରିବୁ। କାଲି ସଞ୍ଜରେ ମନ୍ଦିରରେ ମୋ ସାଙ୍ଗରେ ଗାଇବୁ।" ପଚାରିଲେ- "ତୋର ସ୍ତବ କବିତା ମୁଖସ୍ଥ ଅଛି ଯଦି ତେବେ କାଲି ସକାଳ ପ୍ରାର୍ଥନାରେ ତୁ ଆଗେ ଗାଇବୁ, ଅନ୍ୟମାନେ ପାଳି ଧରିବେ।" ଯେଉଁ ତିନିବର୍ଷ ଶୀର୍ଷାରେ କଟାଇଲି, ପ୍ରତିଦିନ ସଞ୍ଜେ-ସକାଳେ ପ୍ରାର୍ଥନା ଦାୟିତ୍ୱ ମୋର।

ସେଦିନ ରାତି ନଅଟାରେ ବାରମିଶା ଚାଉଳର ରଙ୍ଗ ଭାତ ଓ ଅର୍ଦ୍ଧ୍ୟଜଳ ମଶୁରି ଡାଲି ଏବଂ ବାଲି ଗରଡ଼ା ମଟର ଝୋଳ ଖାଇ ଶୋଇଲି। ପରଦିନ ଭୋର ସକାଳୁ ଉଠି ପିଲାମାନଙ୍କ ସାଙ୍ଗରେ ସୁବର୍ଣ୍ଣରେଖା ନଈକୁ ଗଲି। ମାଆ ଦେଇଥିବା ଦାନ୍ତକାଠିରେ ଦାନ୍ତ ଘଷୁଥାଏଁ ଏବଂ କାନ୍ଦୁଥାଏଁ ଘରକଥା ମନେ କରିକରି। କୃଷ୍ଣ ବୋଲି ବିରିଖ (ବୃକ୍ଷଭାନୁ ପର)ର ଗୋଟିଏ ଅଷ୍ଟିଚର୍ମସାର ପିଲା ମୋର ସାଙ୍ଗ ଏବଂ ସେ ମୋତେ ଆଶ୍ୱାସ ଦେଉଥାଏ। ସେ ବି ବହୁତ କାନ୍ଦୁଥିଲା ମୋରି ପରି ଘରମୁହାଁ (homesick) ହୋଇଥିବାରୁ। ନଈର ବିସ୍ତାର ଓ କତା ବା କୂଳବନ୍ଧ ଦେଖି ମୋର ଫାକାଶି ଉଡ଼ିଗଲା। ପ୍ରାୟ୍ ଶହେ ଫୁଟ ତଳେ ପାଣି। ଗାଧୋଇବାପାଇଁ, ଶୌଚପାଇଁ ଏବଂ ବଗିଚା କାମପାଇଁ ସେତିକି ଦୂର୍ ଯିବାଆସିବା କରିବାକୁ ପଡ଼ିବ। ଏଠି ରଥପୋଖରୀ ବା କିଆପୋଖରୀ ନାହିଁ। ପୁଣି ଭେଁ କରି କାନ୍ଦ ବାହାରିଲା। ଯେତେବେଳେ କାନ୍ଦେ, ଘର ଆଡ଼େ ମୁହଁକରି କାନ୍ଦେ। ମାଆ କାଳେ ଶୁଣିବ ତା ପୁଅର ଦୁଃଖ।

ପ୍ରାର୍ଥନା ପରେ (ମୋ ଜୀବନର ପ୍ରଥମ ସମୂହ ପ୍ରାର୍ଥନା) ହେଡ଼ମାଷ୍ଟର ରଣା ଡାକିଲେ। ସିଏ ଅଁଳା ଗଛମୂଳେ ଖଟଟିଏ ପକାଇ ବସିଥାନ୍ତି। ଥରକୁ ଥର ଫଁ ଫଁ (ଫଁ ଫଁ) ନାକ କରୁଥାନ୍ତି। ଖଟ ପାଖରେ ମୁଁ ଯିମିତି ପହୁଞ୍ଚିଛି, ପାଖ ଶମୀବୃକ୍ଷର ହଳଦିଆ ଫୁଲଟିଏ ଧରି ପଚାରିଲେ- "What is this ?" ମୁଁ ପଟାପଟ ଉତ୍ତର ଦେଲି- "This is a flower"। କହିଲେ- ପଛକୁ ଘୁଞ୍ଚିଯାଆ। ଖଣ୍ଡେ ଦୂର୍ ଘୁଞ୍ଚି ଘୁଞ୍ଚି ଯିବାପରେ ସେ ପଚାରିଲେ- ସେଇ ଫୁଲଟି ଧରି, "What is this ?" ମୁଁ ଯିମିତି କହିଛି- "This is a flower" ଖୁବ୍ ପାଟିକରି କହିଲେ- "Wrong"; ଦଣ୍ଡେ ପରେ କହିଲେ, 'ତତେ Class V ରେ ଭର୍ତ୍ତି କରି ମୁଁ ଠିକ୍ କରିଛି। ଅପର ପ୍ରାଇମେରୀରେ ଇଂରାଜୀ ପଢ଼ା ହୁଏ ନାହିଁ। ଏମ୍‌:ଇ:ରେ ଆମର ଏଠି Class IV ରେ ପଢ଼ାଯାଏ। "This" "That" ର ବ୍ୟବହାର ଜାଣେ ନାହିଁ ଏ ପିଲା, କଣ ନା କେନ୍ଦ୍ରରେ ଫାଷ୍ଟ ହୋଇ ବୃତ୍ତି ପାଇଛି। ଭଲକରି ମନଦେଇ ଇଂରାଜୀ ପଢ଼। ନହେଲେ ଫେଲ ହୋଇ ମରିବୁ।' ସେ ଦିନ ମାଡ଼ ମାରି ନାହାନ୍ତି, ରକ୍ଷା। ପଞ୍ଚମରୁ ଷଷ୍ଠକୁ ଉଠିଲାବେଳେ ଇଂରାଜୀରେ ଅଠାବନ ରଖିଥିଲି; ସାଙ୍ଗ ସାଧୁ ଓ ସଙ୍ଗୀତ ଆର୍ତ୍ତବଲ୍ଲଭ ଅଶିରୁ ଉର୍ଦ୍ଧ୍ୱ ନମ୍ବର ରଖିଥିଲେ। ଇଂରାଜୀରେ କମ୍ ନମ୍ବର ରଖି ମଧ୍ୟ ଫାଷ୍ଟ ହୋଇଥିଲି ସେଥର।

ଷଷ୍ଠ ଶ୍ରେଣୀରେ ହେଡ଼ମାଷ୍ଟର ରଣା ଆମକୁ ଜ୍ୟାମିତି ପଡାଇଲେ। ଜ୍ୟାମିତିକ ସଂଜ୍ଞାପ୍ରକରଣରୁ 'ବିନ୍ଦୁ'ର ସଂଜ୍ଞା.ଅବୋଧ୍ୟ ଭାଷାରେ ପଢ଼ି ବିଷୟଟି ପ୍ରତି ବୀତସ୍ପୃହ ହୋଇଥିଲି। ପ୍ରଥମ ଉପପାଦ୍ୟ ରଣାଙ୍କ ପାଖରୁ ପଢ଼ି ପରବର୍ତ୍ତୀ କ୍ଲାସରେ ଅଗ୍ନି ପରୀକ୍ଷାର

ସମ୍ମୁଖୀନ ହେଲି। "ଗୋଟିଏ ସରଳରେଖା ଅନ୍ୟ ଏକ ସରଳରେଖା ଉପରେ ଦଣ୍ଡାୟମାନ ହୋଇ ଯେଉଁ ଦୁଇ କୋଣ ଉତ୍ପନ୍ନ କରେ। ତାହା ଏକତ୍ର ଯୋଗେ ଦୁଇ ସମକୋଣ ସଙ୍ଗେ ସମାନ।" ଗୋଟିଏ ସରଳରେଖାକୁ ଅନ୍ୟ ଏକ ସରଳରେଖା ଉପରେ ଛିଡ଼ା କରାଇ ପାରିଲି ବ୍ଲାକବୋର୍ଡ଼ରେ, ମାତ୍ର କୋଣ ଦୁଇଟାକୁ ଦୁଇ ସମକୋଣ ସହିତ ସମାନ ବୋଲି ପ୍ରମାଣ କରି ପାରିଲି ନାହିଁ। ମୁଖସ୍ଥ କରିଥିଲି < କଖଗ, < କଗଖ ହୋଇଗଲା। ଉପପାଦ୍ୟ ହେଲା, ନାହିଁ ସମ୍ପାଦ୍ୟ ବି ହେଲାନାହିଁ। ସାଧୁ, ଆର୍ତ୍ତ ଚଟାପଟ କରିଦେଲେ। ହେଡ଼ମାଷ୍ଟର ମୋ ଆଡ଼କୁ ଭିଡ଼ି ଆସିଲେ ଏବଂ ଡଷ୍ଟରରେ ଛଟାଙ୍କିଏ ଓଜନ ଚକଖଡ଼ି ଗୁଡ଼ାଇ ମୁଣ୍ଡର ତାଳୁରେ ଠୋ ଠୋ ପିଟି ଦେଇଗଲେ ଯେ, ମୁଁ ଆକୁଳ ହୋଇ କ୍ଲାସ ବାହାରକୁ ଚାଲିଗଲି ଚିତ୍କାର କରି କରି। ପାଖ କ୍ଲାସରୁ ହେଡ଼ପଣ୍ଡିତ ବାହାରି ଆସି ଦେଖିଲେ, ମାତ୍ର କିଛି କହିପାରିଲେ ନାହିଁ। ପର କ୍ଲାସରେ ମୋର ସମ୍ପାଦ୍ୟରେ ଅବସ୍ଥା ସିମିତି। ସେଦିନ ମୁଣ୍ଡର ଚୂଳକୁ ଧରି କାନ୍ଥରେ ଏଡ଼େ ଜୋର ବାଡ଼େଇ ଦେଲେ ଯେ, ମୁଁ ତଳେ ପଡ଼ିଗଲି ଏବଂ ପାଣି ମରାମରି ପରେ ସାଷ୍ଟମହେଲି। ଶନିବାରରେ ଘରକୁ ଯାଇ କହିଲି ମୋ ଦୁଃଖ। ବାପା ନୀରବରେ ଦୁଃଖକଲେ, କିନ୍ତୁ ନନା ନଛୋଡ଼ବନ୍ଧା। କାହ୍ନୁଚରଣ ମହାପାତ୍ର (ଭଗବାନ ମହାପାତ୍ରଙ୍କ କକା) ସବ୍ ଇନସ୍ପେକ୍ଟର ଆଗରେ ହେଡ଼ମାଷ୍ଟରଙ୍କ ବିରୋଧରେ ଆପତ୍ତିକଲା ନନା ଏବଂ ଇନ୍‌କ୍ୱାରି ମଧ୍ୟ ହେଲା। ମୁଁ ଭାବିଲି, ଏଥର ରଣା ମୋର ସର୍ବନାଶ କରିଦେବ। କିନ୍ତୁ ଯାହାକୁ ରଖିବେ ଅନନ୍ତ। ରଣାକୁ ବାତ ଧଇଲା। ଶୁଶ୍ରୂଷା ଅଭାବରୁ ସେ ବୋର୍ଡିଂରେ ଆଶ୍ରାନେଲେ। ନଇ ଆରପାଖ ବେରେନ୍ଦା ମୌକାରୁ ଡାକ୍ତର ତଥା କବିରାଜ ରୋଗୀ ଦେଖି ପାଞ୍ଚନ ଓ ମାଲିସତେଲର ବ୍ୟବସ୍ଥା କଲେ। ମୁଁ ଦିନେ ପେଡ଼ି ଫିଟାଉ ଥାଏଁ, ଦୈବାତ୍ ହାତବାଜି ପାଞ୍ଚନ ହାଣ୍ଡି ଓଲଟି ଔଷଧ ଇଡ଼ି ହୋଇଗଲା। 'ବଦମାସ ପିଲା' ଚିତ୍କାର କରି ହେଡ଼ମାଷ୍ଟର ମରିଯାଉଥିବା ହାତ ଆଙ୍ଗୁଳିରେ ମୋ ଗାଲରେ ଦୁଇ ଥାପ୍ପଡ ଲଗାଇଲେ। ଏ ଘଟଣାର ଦୁଇ ଦିନ ପରେ ରୋଗୀଙ୍କୁ ବାରିପଦା ସ୍ଥାନାନ୍ତର କରାଗଲା। ଦିନେ ସଞ୍ଜରେ ସେକେଣ୍ଡ ମାଷ୍ଟର ବାରିପଦାରୁ ଫେରି ଖବର ଦେଲେ ଯେ, ରଣାଙ୍କ ଶବସତ୍କାର ବାରୁଣୀ ଘାଟରେ ହୋଇଯାଇଛି ସେଇଦିନ। ସେ ନିଜେ ହେଡ଼ମାଷ୍ଟର ହେବେ। ଆତ୍ମାର ସଦ୍‌ଗତିପାଇଁ ପ୍ରାର୍ଥନା କଲାବେଳେ, ପିଲାଏ ଓ ଶିକ୍ଷକମାନେ ଯେତେ ଚେଷ୍ଟା କଲେ ମଧ୍ୟ 'ଯୁଗ'ର ଅବସାନ ହେଲାପରି ଶୀର୍ଷାରେ 'ରଣା ଯୁଗ'ର ଆକସ୍ମିକ ପରିସମାପ୍ତି ଘଟିଲା। କେବଳ ହେଡ଼ପଣ୍ଡିତ ଦୁଃଖକରି କହିଲେ "ଲୋକଟା ଚାଲିଗଲା।"

କେତେ ମାସ ଆଗରୁ ତାଙ୍କର ଗାଁମୁଣ୍ଡ ମୋଚିସାହି ପାଖ ଘରଟା ପୋଡ଼ି ପାଉଁଶ

ହୋଇଯାଇଥିଲା । ଘରପୋଡ଼ିକି ମୁଁ ଭାରି ଡ଼ରେଁ । ଶୀର୍ଷାରେ ଦିଥର ଘର ପୋଡ଼ି ଦେଖିଛି, ଭାରି ଭଲ ଦିଶେ । କିନ୍ତୁ ଠୋ-ଠୋ ଡୋ-ଡୋ ଶବ୍ଦକୁ ଡରମାଡ଼େ । 'ଘରପୋଡ଼ିର ଦୃଶ୍ୟ' ପ୍ରବନ୍ଧ ଲେଖିବାକୁ ସହଜ ହୁଏ । ଶୀର୍ଷା ଓ କଚମ୍ବିଲା ଦୁଇ ଗାଁର ମିଶ୍ରଣରେ ଶୀର୍ଷା । ଘରପୋଡ଼ି ହେଲେ ଶୀର୍ଷା ପୋଡ଼ିଯାଏ, କିନ୍ତୁ କଚିମ୍ବିଲା ସୀମାରେ ଅଗ୍ନି-ଦେବତା ଅଟକି ଯା'ନ୍ତି । ଦୁଇଥର ଦେଖିଛି- ଗୁହିଆ ଦୋକାନୀ ଘର କେବେ ପୋଡ଼େନାହିଁ । ଯଦିଓ ସୁଜି, ନଡ଼ିଆ ବହୁତ ଚଢ଼ା ଦାମରେ ଦିଏ, ତଥାପି ଚାନ୍ଦା ଉଠାଇ ମୋହନଭୋଗ ବା କୋରା ଖାଇବାକୁ ବାହାରୁଁ ଆମେ ଚାରିଜଣ ସାଙ୍ଗ ।



## ॥ ପନ୍ଦର ॥

ରଘୁନାଥ ରଣାଙ୍କ ଅନ୍ତେ ସେକେଣ୍ଡ ମାଷ୍ଟର ବୈକୁଣ୍ଠନାଥ ବଣା ହେଡ଼ମାଷ୍ଟର ହେଲେ । ଅପର ପ୍ରାଇମେରୀ ସ୍ତରରେ ନୃଶଂସ ସାରଦା ରାୟଙ୍କ ପରେ ଛାତ୍ର-ବତ୍ସଳ ଭଗବାନ ମହାପାତ୍ରଙ୍କ ଆଗମନ ମୋ ପକ୍ଷରେ ଯେପରି ନବଯୁଗର ପ୍ରବର୍ତ୍ତନ କରିଥିଲା, ରଘୁନାଥ ରଣାଙ୍କ ପରେ ସ୍ଥାନୀୟ ବୈକୁଣ୍ଠଙ୍କ ନିଯୁକ୍ତି ମାଇନର ସ୍କୁଲରେ ସେତିକି ହିତକାରୀ ଓ ମଙ୍ଗଳଦାୟକ ହୋଇଥିଲା । ଦୁଇ ବୈକୁଣ୍ଠ, ହେଡମାଷ୍ଟର ବୈକୁଣ୍ଠନାଥ ବଣା ଓ ହେଡ଼ପଣ୍ଡିତ ବୈକୁଣ୍ଠନାଥ ମିଶ୍ର ଏକତ୍ର ହୋଇ ମୋତେ ଶିର୍ଷା ମାଇନର ସ୍କୁଲରୁ ସମଗ୍ର ରାଜ୍ୟର ମାଇନର ସ୍କୁଲମାନଙ୍କ ମଧ୍ୟରେ ମଧ୍ୟଇଂରାଜୀ ପରୀକ୍ଷାରେ ଶୀର୍ଷସ୍ଥାନରେ (ବୈକୁଣ୍ଠରେ) ଉପନୀତ କରାଇଥିଲେ ।

ବୈକୁଣ୍ଠ ବଣା ଆଇ.ଏ । ଗେଡା, ମାଗୁରବର୍ଣ୍ଣିଆ, ନୀତିବାନ । କଲିକତାରୁ ଇଂରାଜୀ ପତ୍ରିକା Anand Bazar Patrika ଡ଼ାକରେ ମଗାଇ ପଢ଼ନ୍ତି । ଯୁବକ । ନୂଆ ବାହା ହୋଇଥାନ୍ତି ସେଇ ଗାଁରୁ । ମୋତେ ସବୁବେଳେ ଇଂରାଜୀ ପଢ଼ାନ୍ତି, ଏପରିକି ନଈକି ଗଲାବେଳେ । ଖୁବ୍ ସ୍ନେହୀ, ମୋରି ପରିକ୍ଷାଫଳ ଉପରେ ନୂଆ ହେଡ଼ମାଷ୍ଟରଙ୍କ ପରୀକ୍ଷା ହେବ । ଜୀବନ ସାରା ମୋ ପରୀକ୍ଷା ଫଳରେ ସେ ଆନନ୍ଦ ଓ ଗର୍ବ ଅନୁଭବ କରୁଥିଲେ, ଏବଂ ଯେ କୌଣସି କ୍ଷେତ୍ରରେ ମୋର ଉନ୍ନତି, ଅଗ୍ରଗତି ତାଙ୍କୁ ଉଲ୍ଲସିତ କରୁଥିଲା ।

ହେଡ଼ପଣ୍ଡିତ ବୈକୁଣ୍ଠନାଥ ମିଶ୍ର ମୋପାଇଁ ଏକ ମହାତ୍ମା, ମହାପୁରୁଷ । ମୋର ସାହିତ୍ୟ ପ୍ରୀତି, ସାହିତ୍ୟଜ୍ଞାନ ମୂଳରେ ତାଙ୍କରି ଶିକ୍ଷା ଓ ଦୀକ୍ଷା । ତାଙ୍କ ଘର ପୁରୀ ଜିଲ୍ଲାରେ । ରେଭେନ୍ସା କଲେଜର ତତ୍କାଳୀନ ଫିଜିକସ୍ ପ୍ରଫେସର ନାରାୟଣ ମିଶ୍ରଙ୍କ

ସେ ଭାଇ। ମୟୂରଭଞ୍ଜରେ ଡ୍ରିଲ ମାଷ୍ଟର ହିସାବରେ ତାଙ୍କର ନିଯୁକ୍ତି। ସାରା ମୟୂରଭଞ୍ଜ ରାଜ୍ୟର ସ୍କୁଲମାନଙ୍କର ସେ ଡ୍ରିଲ ଶିକ୍ଷକ। ଭର୍ଣ୍ଣାକ୍ୟୁଲାର ଟ୍ରେନିଂ ପାସ୍। ମାସକୁ ଦରମା ଦଶଟଙ୍କା। ଶୀର୍ଷାରେ ହେଡ଼ପଣ୍ଡିତ ନିଯୁକ୍ତି ପରେ ଦରମା ମାସକୁ ପନ୍ଦର ଟଙ୍କା।

ବୋର୍ଡ଼ିଂର ପୂର୍ବମୁଣ୍ଡ କୋଠରୀଟି ତାଙ୍କରି। ସେ ବୋର୍ଡ଼ିଂର ତତ୍ତ୍ୱାବଧାରକ। ତେଣୁ ଖାଇବା ଖର୍ଚ୍ଚ ତାଙ୍କୁ ଦେବାକୁ ପଡ଼େନି। ମେସର ଯାବତୀୟ ପଦାର୍ଥ- ଡ଼ାଲି, ଲୁଣ, ତେଲ, ଚାଉଳ, ପନିପରିବା ସେଇ ଘରେ ଥୁଆ। ମହେଶ୍ୱର ପଣ୍ଡା ପୂଝାରି, ରାନ୍ଧୁଣୀ। ସମସ୍ତ ମେସ୍ ବ୍ୟାପାର ସେ ଦୁହେଁ ବୁଝନ୍ତି। ଥରେ ମହେଶ୍ୱରର ପିଠିରେ ଯାଦୁ ହୋଇ ମାଡ଼ିବାକୁ ଲାଗିଲା। କଣେ କାବୁଲିବାଲା ଔଷଧ ବିକାଳି ପାଖରୁ ଜାମଅର୍କ ନେଇ ଯମିତି ପିଠିରେ ଲଗାଇଛି, ଦୁଇ ଦିନରେ ବିଚାରାର ପିଠି ପୋଡ଼ି ଘାଆହୋଇ ଫାଟି ରସ ଝରିଲା। ପିଲାମାନେ ଆଠଦିନ ଧରି ରୋଷେଇବାସ ବଡ଼ାବଡ଼ି କଲେ। ପନିପରିବା ଅଭାବ ଜାଗାରେ ହେଡ଼ପଣ୍ଡିତ କୋଠରୀ ପାଖ କୋଳି ଗଛର ଫଳକୁ ତେନ୍ତୁଳି ସହିତ ମିଶାଇ ହାଣ୍ଡିଏ ଆଚାର ମୁଣ୍ଡ ଉପରେ ଝୁଲାଇଥାନ୍ତି। ନଇକୂଳର ଚାରି ପାଞ୍ଚ କିଲୋ ଓଜନର ବଣୁଆ ଓଲୁଅ ପୋଡ଼ି ଲେମ୍ବୁ ଦେଇ ଖାଆନ୍ତି, ପେଟକୁ ହିତ ବୋଲି। ହେଡ଼ପଣ୍ଡିତଙ୍କ ସ୍ୱାସ୍ଥ୍ୟ ଏହି ଖାଦ୍ୟରେ ମଧ୍ୟ ଉତ୍ତମ ଏବଂ ତିନି ବର୍ଷରେ ଥରେ ଦାନ୍ତବଥା ଛଡ଼ା ଅନ୍ୟକିଛି ରୋଗ ହେବାର ଦେଖିନି। ଆରେ ଦାନ୍ତବଥାଟା ଟିକିଏ ବେଶି ହେଲା; ଗାଲ ଫୁଲିଗଲା। କଟ୍‌କଟ୍ ଧକ୍‌ଧକ୍। ଧୈର୍ଯ୍ୟବାନ ହୋଇ ମଧ୍ୟ ସହିପାରିଲେ ନାହିଁ। ଖଟରେ ଶୋଇଥାନ୍ତି ଏବଂ ଆମ ପଢ଼ାପଢ଼ି ତତ୍ତ୍ୱ ନେଉଥାନ୍ତି। ରଘୁନାଥ ମାଝୀ ବୋଲି ଆମ ଉପରକ୍ଲାସର ପିଲାକୁ ଡ଼ାକିଲେ। ରଘୁନାଥ ଛାତ୍ର ହେଲେ ମଧ୍ୟ ଜଣେ ଶିକ୍ଷକ ପରି ଚେହେରା। ଆମେ ଆଶ୍ଚର୍ଯ୍ୟ ହେଉଁ ଯେ, ସେ ବିବାହିତ ଓ ତାର ଏକ ପୁଅ ଅଛି, ଯାହାପାଇଁ ସେ ଛୁଟିରେ ଶିଲଟ ଓ ବର୍ଣ୍ଣବୋଧ ବହି ନିଏ। ତାର ତକିଆ ଖୋଳରେ 'ସୁଶୀଳ' ନାଁ ସିଲେଇ ହୋଇଛି। ଏଇଟି ତା ପୁଅର ନାମ। ଗୋଟାଏ ଡ଼ଙ୍ଗାରେ କଳନ୍ତା ଅଙ୍ଗାର ରଖି, ଲମ୍ବା ହଳଦୀ ଗୋଟାକ ଅଗରେ ନିଆଁଧାସ ଦେଇ ରଘୁନାଥ ହେଡ଼ପଣ୍ଡିତଙ୍କ କଳଦାନ୍ତରେ ଜାକୁଥାଏ। ଆମ ଭିତରୁ କାହା ଇଙ୍ଗିତରେ ଥରେ ସେ ଦାନ୍ତରେ ନ ଜାକି ତାଙ୍କ ମାଢ଼ିରେ ବସାଇଦେଲା। ହେଡ଼ପଣ୍ଡିତ ରଘୁକୁ ମାଡ଼ଦେବା ଦୂରେ ଥାଉ, ଭର୍ତ୍ସନା ମଧ୍ୟ କଲେ ନାହିଁ। ଆମକୁ ଆଶ୍ଚର୍ଯ୍ୟଲାଗିଲା।

ପିଲାମାନଙ୍କ ଘରୁ ଯେବେ ଯାହା ଆସେ, ସ୍ୱତଃପ୍ରବୃତ୍ତ ହୋଇ ସେମାନେ ତାଙ୍କୁ ଜଳଖିଆ ରୂପେ ଦେଇଥାନ୍ତି। ଯାହା ଦେଲେ ଖୁସି। କ୍ଲାସକୁ ଗଲେ ଜାମା ବା ଗେଞ୍ଜି ବା ଓଢଣି ପକାନ୍ତି; ନହେଲେ ଉପର ଦେହ ସଦା ସର୍ବଦା ଅନାବୃତ। କଠଉ ମାଡନ୍ତି। ଛାତିର

ଦରପାକଲା ଗୁଡାଏ ଚୂଳ ତାଙ୍କ ପ୍ରଶସ୍ତ ଛାତିକୁ ବେଶ୍ ମାନେ । କପାଳରେ ଚିତା ଥାଏ, ବାହୁରେ ମଧ୍ୟ । ଗ୍ରୀଷ୍ମ ଓ ପୂଜାଛୁଟିରେ ଗାଁକୁ ଯାନ୍ତି । ଲିଙ୍ଗରାଜ ବୋଲି ତାଙ୍କର ଗୋଟିଏ ପୁଅ । ଏଇ ସୁସ୍ଥ ସବଳ ପିଲାଟି ଥରେ ବାପାଙ୍କ ସହିତ ଆସି କଣ ପଡାପଡି କରୁଥିଲା । ମୋତେ ହେଡ୍‌ପଣ୍ଡିତ ଭଲପାଇବାର କାରଣ, ମୁଁ ତାଙ୍କ ପୁଅ ବୟସର ଏବଂ ମୋତେ ଦେଖି ପୁଅକୁ ଭୁଲିଯାଉଥିଲେ । ଗ୍ରୀଷ୍ମଛୁଟିରେ ଗାଁରୁ ଫେରିଲାବେଳେ ଆମପାଇଁ ଆଣିଥାନ୍ତି ବୋଝେ ବେତ ଏବଂ ପୁଟୁଳାଏ ବେତକୋଳି, ଯାହା ଆମେ କେବେ ଦେଖି ନଥିଲୁଁ । କୋଳି ଖୁସିରେ ଖାଉଁ ଏବଂ ବର୍ଷଯାକ ଭୁଲଭଟକାପାଇଁ ବେତମାଡ ଖାଉଁ ।

ପିତୃପକ୍ଷରେ ସେ ତିଳତର୍ପଣ କରନ୍ତି । ସାହାଯ୍ୟ କରିବାପାଇଁ ମୋତେ ସାଙ୍ଗରେ ନିଅନ୍ତି । ଭୋଦୁଅ-ଆଶ୍ୱିନ ମାସ, ବଢିବଢି ଆସୁଥାଏ ସୁବର୍ଣ୍ଣରେଖା । ପାଣି ପାଖରେ ଆମେ ବସିଥାଉଁ ପ୍ରାୟ ମୁହାଁମୁହିଁ ହୋଇ । ମୁଣ୍ଡ ଉପରେ ପଚାଶ ଷାଠିଏ ହାତ ଉଚ୍ଚ ବିରାଟ ପାଚେରୀ ପରି ନଇ ତଟ ଝୁଲି ରହିଛି । ବର୍ଷଣମୁଖର କଳା ମେଘ ଛାଇହୋଇ ରହିଛି ଆକାଶ ଯାକ । ଢେଉଁ ଢେଉଁ ଫେନିଳ ନଦୀଜଳର ପ୍ରବାହ ବହିଆସୁଛି ପଛଆଡୁ, ଯିମିତି ଆମକୁ ଭସାଇ ନେଇଯିବ 'ସିନ୍ଦୂର ଗହୀର'ର ଅତଳ ଗଣ୍ଡ ଭିତରକୁ । ସାର ବସିଛନ୍ତି ପୂର୍ବକୁ ମୁହଁକରି । ଆଗରେ ବଟୁଟିଏ । ମୁଁ ମାତ୍ର କେତେ ମାସ ହେଲା ଯଜ୍ଞୋପବିତ ଗ୍ରହଣ କରିଛି । କାନରୁ ରୁପା ଫାଶିଆ କଡା ହୋଇ ସୁନାଫୁଲ ନାଇଛି । ସକାଳୁ ଉପାସ । ଦିହ ଥରୁଥାଏ । ଛାତି ଧଡପଡ କରୁଥାଏ ଭୟରେ । ଆଗରେ ବିଶାଳ ମୂର୍ତ୍ତି । ଗୁରୁଗମ୍ଭୀର ସ୍ୱରରେ ମନ୍ତ୍ର ପଢୁଥାନ୍ତି । କହୁଥାନ୍ତି- "ପିତରଃ ତୃପ୍ୟନ୍ତାମ୍" "ମାତରଃ ତୃପ୍ୟନ୍ତାମ୍" ମୁଁ ତିଳତଣ୍ଡୁଳ ସୁଅରେ ପକାଉଥାଏଁ । ଅପୂର୍ବ ପରିବେଶ, ଦିବ୍ୟ ଏ ଅନୁଭୂତି । ବହୁଦିନ ପରେ "ଋଷିପ୍ରାଣେ ଦେବାବତରଣ" କବିତା ପଢିଲାବେଳେ ଯେଉଁ ଭାବାବେଶ ଆସିଥିଲା, ମୁଁ ସେ ସମୟରେ ତାହା ଅନୁଭବ କରିଥିଲି । କ୍ରମାଗତ ତିନୋଟି ବର୍ଷ ଏଇ ଅନୁଭୂତି ପିତୃତୁଲ୍ୟ ସାର୍ ବାରମ୍ବାର ମୋତେ ଆଣି ଦେଇଛନ୍ତି; ମାତ୍ର ମୁଁ ଏଡେ ପାଷଣ୍ଡ ଯେ; ବାପା, ମାଆ, ଜେଜେଙ୍କ ନାଁରେ ଥରେ ହେଲେ ଗଙ୍ଗା, ଗୟା, ଗୋଦାବରୀ ବା କିଆପୋଖରୀ ତୁଠରେ ବସି ତର୍ପଣ କରିନାହିଁ ।

ଏହି ପଣ୍ଡିତ ତିନୋଟି ବର୍ଷରେ ଧର୍ମଭାବ ସହିତ ସାହିତ୍ୟପ୍ରୀତି ଜାଗ୍ରତ କରି ସାହିତ୍ୟିକତାର ମୂଳଭିତ୍ତି ତଥା ପିଣ୍ଡ ଥାପନା କରିଛନ୍ତି ମୋର ମନ ଓ ହୃଦୟ ଭିତରେ । ଇଞ୍ଚେ ମୋଟ ବନ୍ଧେଇ ଖାତାଟିଏ ତାଙ୍କ ଜ୍ଞାନଭଣ୍ଡାର । ବହୁଦିନର ସାଧନା ଓ ପ୍ରସ୍ତୁତି ସେଥିରେ ନିହିତ । ସେଇଟି ତାଙ୍କର ଲେସନ୍ ନୋଟ ବୋଲାଯିବ । ବର୍ଣ୍ଣଶୁଦ୍ଧିଠାରୁ ଆରମ୍ଭ କରି ବ୍ୟାକରଣଗତ କଠିଣ ଓ ଜଟିଳ ପ୍ରଶ୍ନର ସମାଧାନ ସେ ମୋତେ ଶିଖାଇଛନ୍ତି ।

ସମଗ୍ର ମଧୁସୂଦନଙ୍କୁ ମୋ ଅଗକିଭରେ ସେ ଥୋଇଛନ୍ତି । ପରବର୍ତ୍ତୀ କାଳରେ ବ୍ୟାକରଣ ମୋତେ ପଢିବାକୁ ପଡିନାହିଁ । ପଞ୍ଚମ ଓ ଷଷ୍ଠ ଶ୍ରେଣୀରେ ସର୍ବସାର ବ୍ୟାକରଣ ମୁଖସ୍ଥ ଥିଲା । ବି.ଏ. କ୍ଲାସ ପର୍ଯ୍ୟନ୍ତ ଆର୍ତ୍ତବାବୁ ଓ କାଶୀବାବୁଙ୍କ ପାଖରେ ସଂସ୍କୃତ ପଢିବା ପରେ ଯଦି କଣେ ସାହିତ୍ୟିକ ନ ହେବ, ତେବେ ତାକୁ ଆବେଗ ତଥା ସାଙ୍ଗୀତିକତା ବିହୀନ ପଶୁ ବୋଲି କୁହାଯିବ । ମନେ ରଖିବାକୁ ସୁବିଧା ହେବ ବୋଲି ସେ ବ୍ୟାକରଣ ସୂତ୍ର କବିତାରେ ଲେଖି ଦିଅନ୍ତି । ସଂଯୋଜକ ଅବ୍ୟୟର ଉଦାହରଣ -

"ଓ, ଆହୁରି, ହେଁ, ତଥା, ମଧ୍ୟ, ପୁଣି, ପୁନଃ,
ଏବଂ, ଅପି, ବି, ସୁଦ୍ଧା, ସଂଯୋଜକ କାଣ ।"

ଗୀତରେ ଅନ୍ୟ କେତୋଟି ଅବ୍ୟୟ :-

କି ଅବା, କିମ୍ବା, ନତୁବା, ନୋହିଲେ, (ବିଯୋଜକ)

ଅଥବା :- ହେତୁବୋଧକ- ଯେହେତୁ, ହେତୁକି, ଇତ୍ୟାଦି ।

ଉପସର୍ଗ, କାରକ, ବିଭକ୍ତି ଆଦି ସବୁ ପଦ୍ୟାନୁବନ୍ଧ -

ପ୍ର, ପରା, ଅପ, ସମ, ନି, ଅଧି, ସୁ, ନୀର
ଉତ, ପରି, ପ୍ରତି, ଅବ, ଅନୁ, ଦୁର
ବି, ଅବି, ଅତି, ଉପ, ଆ, (ଆଦି)

ଏମିତି ଆହୁରି କେତେ ଶ୍ଲୋକ, ପଦ୍ୟ, ଗୀତ । ପ୍ରତ୍ୟେକ କବିତା, ବୁଝ ନ ବୁଝ, ମୂଳରୁ ଶେଷ ପର୍ଯ୍ୟନ୍ତ ଅବିକଳ ମୁଖସ୍ଥହେବା ପରେ ବ୍ୟାଖ୍ୟା ଓ ବିଶ୍ଳେଷଣ ହେବ । 'ନଦୀପ୍ରତି' କବିତାର 'ଗିରିବର ନନ୍ଦିନୀ ଅଟୁ ତୁହି ତଟିନୀ...' ଠାରୁ ... ଜୁଆର କ୍ରମେ ବାହୁଡିଲା ତୋ ତନୁ କୃଶତା ଭଜିଲା... ଭାଗ୍ୟର ହଟହଟା ଜୀବନେ ତୋହର ଘଟିଲା' 'କିନ୍ତୁ ତୁ ଗଲୁ ଚଳି.... ବିଧାତାର କୃପାରେ.... ପର୍ଯ୍ୟନ୍ତ । ସେହିପରି "ଅନନ୍ତ ଅପାର ତୁହିରେ ମହା ଆକାଶ" ଠାରୁ "ପରମାତ୍ମା ପଦେ" ପର୍ଯ୍ୟନ୍ତ । କାହିଁ ଅଟିକିବ ନାହିଁ, ଗଡଗଡ ଗଡିଯିବ ପଂକ୍ତି ସବୁ । ଅମୃତ ନିସ୍ୟନ୍ଦୀ ହେଡପଣ୍ଡିତଙ୍କ ଗଳା । ଆର୍ଯ୍ୟଋଷିଙ୍କ ଉଚ୍ଚାରଣ ଓ ସୁର । ଦିନକିଆ, ଅଧଦିନିଆ ଛୁଟିରେ ଲାଇବ୍ରେରୀରୁ ସାତକାଣ୍ଡ ରାମାୟଣ ଓ ଅଠର ପର୍ବ ମହାଭାରତ ବାହାର କରି ଆମ୍ଭମାନଙ୍କୁ ପଢିବାକୁ ଦିଅନ୍ତି । ହେଡ଼ପଣ୍ଡିତ ଦିନେଦିନେ ନିଜେ ପଢି ଶୁଣାନ୍ତି ମଧ୍ୟ ଏବଂ ନାଟକୀୟ ରୀତିରେ ବୁଝାଇ ଦିଅନ୍ତି ।

ଦୈବକୁ ସାହିତ୍ୟ ଓ ଅଙ୍କ କେବଳ ପଞ୍ଚମରେ ନୁହେଁ, ଷଷ୍ଠ ଓ ସପ୍ତମ ଶ୍ରେଣୀରେ ମଧ୍ୟ ପଢାଇଲେ । ଏମିତି ଆନନ୍ଦ ଓ ଉତ୍ସାହରେ ପଢାଇବା ଓ ଜୀବନବ୍ୟାପୀ ଅଧ୍ୟୟନ

ଓ ଅଧ୍ୟାପନା ମୁଁ କୁତ୍ରାପି ଦେଖି ନଥିବି । ମୋର ଆନନ୍ଦ ଯେ, ଏଲ.ପି. ପରୀକ୍ଷା ଦେବା ପାଇଁ ଶୀର୍ଷା କେନ୍ଦ୍ରକୁ ପାନ୍ଧଡାରୁ ମୋର କୁନି ସ୍ତ୍ରୀ (ଦଶବର୍ଷ) ହୋଇଥିବା ବେଳେ ହେଡପଣ୍ଡିତ ତାକୁ ଦେଖିଥିଲେ ଏବଂ ଆଶୀର୍ବାଦ ମଧ୍ୟ ଦେଇଥିଲେ, ଯାହା ଫଳରେ ସେ ତିନି ଟଙ୍କିଆ ବୃତ୍ତି ପାଇଥିଲା ।

ପିଲାଙ୍କ ଦିହପା ଖରାପ ହେଲେ, ହେଡପଣ୍ଡିତ ତୁରନ୍ତ ଚିକିତ୍ସା ଓ ପଥିର ବ୍ୟବସ୍ଥା କରିଥାନ୍ତି । ମାଆ ବାପା ଏମିତି ସେବା-ଶୁଶ୍ରୂଷା କରି ପାରିବେ ନାହିଁ । ଶୀର୍ଷାରେ ଡାକ୍ତରଖାନା ନାହିଁ, କି ପୋଷ୍ଟ ଅଫିସ ନାହିଁ । ମୁଁ ଖାଇବାରେ ଲୋଭୀ ହୋଇଥିବାରୁ ବାରମ୍ବାର ପେଟ ରୋଗରେ ପଡେଁ । ଗ୍ରୀଷ୍ମଛୁଟି ପୂର୍ବଦିନ । ଖାଇବାରେ ଅତ୍ୟାଚାର ହେଲା । ପାଞ୍ଚ ଛଅଟା ତାଳସଜ ଦିନ ପାଞ୍ଚୁଟାରେ ଖାଇ, ରାତିରେ ଭାତ ବଦଳରେ ଛଅ ସାତୁଟା ପାକଲା ଆମ୍ବ ଖାଇ ଶୋଇଗଲି । ରାତିଯାକ ଏବଂ ସକାଳେ କଲେରିକ୍ ଡାଇରିଆ, ଯିମିତି ଅପର ପ୍ରାଇମେରୀ ପରୀକ୍ଷାର ପ୍ରଥମ ଦିନ ବାରିପଦାରେ ବୋଇତାଳୁ ଓ ସରୁ ଚିଙ୍ଗୁଡି ଖାଇ ହୋଇଥିଲା । ଲୁଗା, ଶେଯପଟା ଓ ସାରା ଦିହ ମଇଳା ହୋଇଗଲା । ଭୀଷଣ ଦୁର୍ଗନ୍ଧ । ଯାହା ନ କରିବା କଥା, କଲି । ନଇରେ ଗାଧୋଇପାଧୋଇ ଆସିଲି ଏବଂ ବୋର୍ଡିଂ ସାମନା ପଡିଆରେ ଖଟଟିଏ ପକାଇ ଶୋଇଗଲି । ଅନ୍ୟସବୁ ପିଲା ପେଡି ପୁଟୁଳା, ଖଟ ପଟିଆ ବାନ୍ଧି ଘରକୁ ଯିବାକୁ ସକହେଲେ । ହେଡପଣ୍ଡିତ ରାଜାଲୋକା ଷ୍ଟେସନରେ ରେଳ ଧରିବେ ବୋଲି ବାହାରୁଥାନ୍ତି । କିଏ ଜଣେ ମୋ କଥା ତାଙ୍କୁ କହିଦେଲା । ସେ ବ୍ୟସ୍ତ ହୋଇ ପଡିଲେ । ସେ କାଳରେ କୌଣସି ଟେବ୍‌ଲେଟ ବା ଔଷଧ ନଥିଲା । କେବଳ ମହାତ୍ମା ଗାନ୍ଧୀ ମାନବଜାତିର ଅବଲମ୍ବନ । ଦୁଇମୁଠା ଶୁଖିଲା ଜିଆଲଣ୍ଡି ପାଖ ଘରବାଡିର ବାଉଁଶ ମୂଳରୁ ଆଣି, ପଙ୍କରେ ପରିଣତ କରି, ତାକୁଇ ମୋ ପେଟରେ ଲେପିଦେଲେ । ଶ୍ରୀହରି ଧଳ ବୋଲି ବାଙ୍ଗିରିପୋଷି ଯାଉଥିବା ପିଲା ହାତରେ ବାପାଙ୍କ ପାଖକୁ ଖବର ପଠାଇଦେଲେ ଏବଂ ତରବର ହୋଇ ଷ୍ଟେସନମୁହାଁ ହେଲେ । ମୋର କିଛି ଅସୁବିଧା ହେଲାନି । ଘରୁ ବଳଦଗାଡି ଏଗାରଟା ବେଳକୁ ଆସିଗଲା ଏବଂ ପାଳବିଡା ଉପରେ ଶୋଇ, ତିନିଟା ବେଳେ ଘରେ ପହଞ୍ଚିଲି । ମାଆ, ବାପା, ଭାଇ, ଭଉଣୀଙ୍କି ଦେଖିଦେଲା ମାତ୍ରେ, ସବୁ ଠିକ୍ ।

ଗ୍ରୀଷ୍ମଛୁଟି ପରେ ଆସି ପହୁଞ୍ଚି ହେଡପଣ୍ଡିତ ପଚାରିଲେ- "ବସନ୍ତାର କଣ ହେଲା ?" କିନ୍ତୁ ସେକେଣ୍ଡ ମାଷ୍ଟର ହୋ ହୋ ହସି କହିଲେ- "ଯାହା କରିଗଲା, ଶୀର୍ଷା-ବାସୀ ଅଖା ଧୋଉଥିବେ, ଗୁଣ ଗାଉଥିବେ ।" ସେ କହିବାକୁ ଚାହୁଁଥିଲେ- କିମିତି ମୁଁ ଛାଡି ଦେଇ ଆସିଥିବା ଶେଯପଟାକୁ କୁକୁରମାନେ ଗାଁ ଦାଣ୍ଡରେ ନେଇ ଖେଳ ଖେଳି ଗାଁକୁ ଦୁର୍ଗନ୍ଧମୟ କଲେ ।

ଏଇ ସେକେଣ୍ଡ ମାଷ୍ଟରଙ୍କ ନାଁ କ୍ଷେତ୍ରମୋହନ ଦାସପଟ୍ଟନାୟକ। ଅତ୍ୟନ୍ତ ସୁସ୍ଥ, ପହିଲମାନ ଦିହ। "ଖାଅ ପିଅ ଆନନ୍ଦ କର" ୟାଙ୍କର ଜୀବନ-ଦର୍ଶନ। ମାଛମାଂସ ତାଙ୍କର ପ୍ରିୟ ଖାଦ୍ୟ। କୁକୁଡ଼ା ଖାଇଲେ ଲୋକେ ବାସନ୍ଦ କରିବେ; ସେଥିପାଇଁ ରାତିରେ ତିନିଚାରିଜଣ ବୋର୍ଡିଂରେ ଚୋରାରେ ରାନ୍ଧି ଖାଆନ୍ତି। କୁକୁଡ଼ାକୁ 'ସୀତାପତି ବିହଙ୍ଗ', 'ରାମପକ୍ଷୀ' ବୋଲି ତାଙ୍କ ଭିତରେ code ନାଁ ଦେଇଛନ୍ତି। ବନ୍‌ଶୀରେ ମାଛ ଧରିବା ତାଙ୍କର hobby। ସୁବର୍ଣ୍ଣରେଖା ନଦୀଗଣ୍ଡରେ ଘୂଳାଛୁଟି କଟାନ୍ତି। 'ଭାତ କମ୍ ଶାଗ ବେଶି' ତାଙ୍କର ନୀତି। ବାରିପଦାରେ ବୋର୍ଡିଂ ସୁପରିଣ୍ଟେଣ୍ଡେଣ୍ଟ ଥିଲାବେଳେ, ନିଜ ଶାଗତଳାରୁ ବେଲାଏ ଶାଗ ଖାଇବାର ମୁଁ ଦେଖିଛି। ମାଛ ସ୍ଥାନରେ ଯଦି କଇଁଛ ବନ୍‌ଶୀରେ ଲାଗିଲା, ତେବେ ତାଙ୍କର ଆସୁରିକ ଆନନ୍ଦ। ବଡ଼ କ୍ରୂର ଭାବରେ ସେମାନଙ୍କୁ ହତ୍ୟା କରନ୍ତି।

ଶୀର୍ଷାରେ ଭଲ ପଢ଼ୁଥିଲି। ମାଷ୍ଟର ଓ ପିଲାମାନେ ସମସ୍ତେ ମୋତେ ଭଲ ପାଉଥିଲେ। ତଥାପି, କାହିଁକି କେଜାଣି ଥରେ ପାନ୍ଧଡ଼ାକୁ ଆସିଲେ ଆଉ ଶୀର୍ଷା ଆଡ଼କୁ ମନ ମୁହାଁଏ ନାହିଁ। ଗୁରୁବାର ଓଷା ବା ଲକ୍ଷ୍ମୀପୂଜା ଆମ ଇଲାକାର ଜାତୀୟ ପର୍ବ, ମକର ପରି। ବୁଧବାର ଉପର ଓଳି ପାଖରୁ ଗୁରୁ, ଶୁକ୍ର, ଶନି, ରବି ଚାରିପାଞ୍ଚଦିନ ହେଲା। ସୋମବାର ସକାଳୁ ଖାଲି କୋହ ମାଡ଼ିଲା। କାନ୍ଦ ଲାଗିଲା। ଗୁଡ଼ାଏ ଆରିଷା ପିଠା ମାଆ ଶିକାରେ ରଖିଛି। ବାହାରିଲାବେଳେ ମାଗିଲି। କହିଲା- "ପିଠା ଖାଇ କୁଆଡ଼େ ଯାଆନ୍ତି ନାହିଁ।" କହିଲି- "ଦିଚାରିଟା ଦେ, ନେଇଯିବି, ପ୍ରତିଦିନ ଗୋଟାଏ କରି ଖାଇବି।" କହିଲା- "ପିଠା ସାଙ୍ଗରେ ନେଇ ଯାଆନ୍ତି ନାହିଁ।" ବାପା ମୋ ମନକଥା ଜାଣିପାରି କହିଲେ- "ଯାଉଛୁ ନା ବାଲିଙ୍ଗି ଦେଖାଉଛୁ ? ଡେରି ହୋଇଯିବ ଯାଆ ଶୀଘ୍ର।"

ପୁଟୁଳି ଧରି ବାହାରିଗଲି ଭଲ ପିଲାଟି ପରି। ଗଡସୁନ୍ଦରୀ ଆମ୍ବତୋଟାରୁ ପଛକୁ ଫେରି ଦେଖିଲି- ଗାଁ ଦିଶୁନି, ରଥପୋଖରୀ ତାଳଗଛ ଦିଶୁନି। କାନ୍ଦିଲି। ବୁଦ୍ଧି ପାଞ୍ଚିଲି। 'ବାନ୍ତି କରିବି ଏବଂ ଘରକୁ ଫେରି ମାଆକୁ କହିବି- ବାନ୍ତି ହେଲା, ଜରଜର ଲାଗିଲା, ଫେରି ଆସିଲି।' ଆଙ୍ଗୁଳି ତଣ୍ଟି ପର୍ଯ୍ୟନ୍ତ ପୂରାଇଲି, ବାନ୍ତି ହେଲାନାହିଁ। ଡୁମ୍ବରି ପାଖକୁ ଗଲି। ଲାଲି କଅଁଳ ଡାମପତ୍ର ମୁଠାଏ ଚୋବାଇ ଗିଳିଲି। ଖୁବ୍ କଷା। ବାନ୍ତି ହେଲାନି। ଗୁଡ଼ାଏ ଚୋବା ପତର୍ ଓ କିଛି ଛେପ ଗୋଟାଏ ସ୍ଥାନରେ ଜମା କରି ଘରକୁ ଫେରିଗଲି। ମାଆକୁ କହିଲି ଫେରିବାର କାରଣ। ମାଆ ଗମ୍ଭୀର ହେଲେ। ଅଧ ଘଣ୍ଟାଏ ପରେ ନନା ଫେରିଲା ଏବଂ ଯିମିତି ଖିଆପିଆ ସାରିଛି, ବାପା କହିଲେ- "ଉମାକାନ୍ତ ! ବସନ୍ତକୁ

ନେଇଯାଆ ସନୁ ବିନ୍ଧାଣୀକୁ ସାଙ୍ଗରେ ଧରି, ସନ୍ଧ୍ୟା ହୋଇଯିବ ଫେରିବାକୁ ।" ପୁଣି ଚାଲିଲି । ବାଟରେ ନନା ବାନ୍ତି କାଗାକୁ ଯାଇ ଦେଖି ଅଳପ ହସି କହିଲା- "ଜାମପତ୍ର ଖାଇଲେ ବାନ୍ତି ବନ୍ଦ ହୁଏ । ଏକଥା ଜାଣିଥିଲେ ତୁ ଖାଇ ନଥାନ୍ତୁ ।"

ଆଗରେ ବାସଝମ୍ପା, ଗାଁ ମୁଣ୍ଡରେ ଅଶ୍ୱସ୍ଥ ଗଛ, ତାରି ତଳେ ମାଇଲ ପଥର, ଇଂରାଜୀ ସାତ ଅକ୍ଷର । ମୁଁ କହିକହି ଚାଲିଥାଏଁ- "ନନା, ଆଜି ଚାଲ ଫେରିଯିବା, ପହଞ୍ଚିଲା ବେଳକୁ ସ୍କୁଲ ବନ୍ଦ ହୋଇଯାଇଥିବ । କାଲି ସକାଳୁ ଆପେଆପେ ଏକା ଆସିବି ।" ନନା କଡ଼ା ଗଳାରେ କହିଲା- "କାକା କହିଛି, ତତେ ପହଞ୍ଚାଇ ଦେବାକୁ, ନ ପହଞ୍ଚାଇ ଫେରିବି ନାହିଁ ।" ଖୁବ୍ ରାଗିଯାଇ ମୁଁ କହିଲି- "ମୁଁ ଗଲି ନଗଲି ତୁ କିଏ କହିବାକୁ ?" ଚମକି ଉଠି ବୁଲି ପଡ଼ି ନନା କାନ୍ଦକାନ୍ଦ ସ୍ୱରରେ କହିଲା- "କି କହିଲୁ ? ମୁଁ ତୋର କେହି ନୁହଁ ? ହଉ, ଚାଲ, ଘରକୁ ।" ମୁଁ ଜାଣିପାରିଲି, ତାକୁ ଶେଳ ଭେଦିଲା । ସେ ବିଶ୍ୱାସ କରିପାରିଲା ନାହିଁ, ମୋ ମୁହଁରୁ ଏ କଥା ବାହାରିଛି । ସେ ମୋ ମାଆ ପେଟରୁ ଜନ୍ମିତ ଭାଇ ନୁହେଁ ଏ କଥା ମୁଁ କିମିତି ଜାଣିଲି, ଏ କଥା କିଏ ମୋ ମୁଣ୍ଡରେ ପୂରାଇଲା, ତାହା ତାକୁ ବିସ୍ମୟାଭିଭୂତ କଲା । ବାପା ମାଆ ଏ ଘଟଣା ଶୁଣି ଗୁମ୍ମାରି ରହିଲେ । ପରଦିନ ବାପା ନିଜେ ମୋତେ ପହଞ୍ଚାଇଲେ । ବାହାରିବାବେଳେ ମୁଁ ଗୋଟାଏ ଖୁଣ୍ଟକୁ କୁଣ୍ଢାଇ ଅଟକିବାର ଚେଷ୍ଟା କରୁଥିଲି, ମାତ୍ର ଏତେ ଜୋରରେ ବାପା ମୋତେ ଛିଞ୍ଚାଡ଼ି ନେଲେ ଯେ, ମୋ ହାତର ଚମଡ଼ା ଛାଲି ହୋଇଗଲା । ବାଟସାକ କଥାବାର୍ତ୍ତା ନାହିଁ ବାପ ପୁଅର । ଯିମିତି ଦେଖିଦେଲି ଦୂରରେ ଯୋଡ଼ାଏ ଢ଼ୁଙ୍ଗୁରି ପ୍ରମାଣ ସ୍କୁଲ ଓ ବୋର୍ଡ଼ିଂ ଚାଳ ଘର ଏବଂ ଧଳା ବର୍ତୀଖୁଣ୍ଟ ପରି ଇଉକାଲିପଟାସ ଗଛ, କାନ୍ଦିକାନ୍ଦି ବାପାଙ୍କ ଗୋଡ଼ତଳେ ବିଲ ହିଡ଼ଟାରେ ପଡ଼ିଯାଇ କହିଲି- "ବାପା, ଚାଲ ଫେରିଯିବା । ମୁଁ କାଲି ଆସିବି ଭୋର ସକାଳୁ; ଆଜି ଘଣ୍ଟା ବାଜିଯାଇଥିବ, ଯାଇ ଲାଭ ନାହିଁ । ପଣ୍ଡିତ ବୁଢ଼ା ଗୋଛାଏ ବେତ ଆଣିଛି, ମୋ ପିଠି ଫଟେଇ ଦେବ ।" ବାପା କହିଲେ- "ତୁ ମୋତେ ଯାହା କହିବୁ ଦେବି, ମାନିବି, କିନ୍ତୁ ତୋର ପାଠପଢ଼ା ବିଷୟରେ ମୋତେ ଇନ୍ଦ୍ରଚନ୍ଦ୍ର ଯାହା କହିଲେ ବି ମୁଁ ମାନିବି ନାହିଁ ।" ଅଗତ୍ୟା ହେଡ଼ପଣ୍ଡିତ ଆଗରେ ପହଞ୍ଚିଲୁ । ବାପା କହିଲେ କାକୁତି ମିନତିରେ- "ଆଜ୍ଞା, ଘରକୁଟୁରା ପିଲାଟା; ତିନି ଚାରିଦିନ ଅଧିକା ରହିଗଲା । ମାରିବେ ନାହିଁ ତାକୁ, ବେତକୁ ଡରୁଛି ।" ହେଡ଼ପଣ୍ଡିତ- "ବେତ ତାପାଇଁ ମୁଁ ଆଣିନି । ବନାନ ସଂଶୋଧନପାଇଁ ବେତ ବ୍ୟବହାର କରେଁ; ତାର ତ ବର୍ଣ୍ଣଶୁଦ୍ଧି ନାହିଁ ।"

ହେଡ଼ମାଷ୍ଟର ବୈକୁଣ୍ଠ ବଶା ଓ ହେଡ଼ପଣ୍ଡିତ ବୈକୁଣ୍ଠ ମିଶ୍ର ଅହୋରାତ୍ର ମୋ ପଛରେ ଲାଗି ସ୍ନେହଶ୍ରଦ୍ଧା ବଳରେ ମୋତେ ସମଗ୍ର ମୟୂରଭଞ୍ଜ ଷ୍ଟେଟରେ ଫାଷ୍ଟ କରାଇଲେ ଏବଂ

ସବୁ ଆଶଙ୍କା, ଭୟ ଦୂରକରାଇ ବୃତ୍ତି ପାଇବାର ଯୋଗ୍ୟକଲେ। ହେଡପଣ୍ଡିତଙ୍କ ସବୁଠୁଁ ବଡ ଅବଦାନ ହେଲା, ମୋ ମନରେ ସାହିତ୍ୟିକତା ଓ ସାହିତ୍ୟପ୍ରୀତି ଜାଗ୍ରତ କରିବା।

ହେଡପଣ୍ଡିତଙ୍କ ଋଣ ଶୁଝିବା ବା ତାଙ୍କୁ ଦକ୍ଷିଣା ଦେବା ଅଭିଳାଷ ଶୀର୍ଷା ଛାଡିବା ପରେ ଚିର ଜାଗ୍ରତହୋଇ ରହିଲା। ରେଭେନ୍ସା କଲେଜରେ ପଢୁଥିବା ବେଳେ ପ୍ରୋଗ୍ରାମ ଓଡିଆରେ ଛପାଇ ଓ ନାନାବିଧ ପୁରସ୍କାର କିଣି ଗାଉଁଲି କ୍ରୀଡାକୌତୁକ କରାଇଥିଲି। କୋଡିଏଟଙ୍କା ଯଥେଷ୍ଟ। ମାଗିଯାଚି ଏ ଟଙ୍କା ସଂଗ୍ରହ ହୋଇଥିଲା। ହେଡପଣ୍ଡିତଙ୍କୁ ପୁରସ୍କାର ବିତରଣ କରିବାକୁ ଡାକିଥିଲି। ପଚାଶ ପଞ୍ଚାବନ ବୟସରେ ସେ ନୂଆ କରି ସାଇକେଲ ଚଡା ଶିଖିଥାନ୍ତି। ସାଇକେଲରୁ ଓହ୍ଲାଇବା ମାତ୍ରେ, ବାଜା ମହୁରୀରେ ମାଇଲେ ଦୂରରୁ ତାଙ୍କୁ ସ୍ୱାଗତଜଣାଇ ଶୋଭାଯାତ୍ରାରେ ଆଣିଥିଲୁଁ। ସେ କୃତକୃତ୍ୟ ହେଲେ; ଆମେ ଧନ୍ୟ ହେଲୁଁ। ଆମ ଘରେ ମାଆ ହାତ ତିଆରି ବିବିଧ ପିଠାପଣା ଖାଇ ଶୀର୍ଷା ଫେରିଗଲେ ବେଳବୁଡକୁ, ବେକରେ କାଠଚମ୍ପା ମାଳଟି ପକାଇ। ଆଠ ଦଶଟା ଗାଁ ଲୋକଙ୍କ ପକ୍ଷରେ ସେ ଦିନଟି ସ୍ମରଣୀୟ ଦିନ।

ବହୁ ଦିନ ପରେ ୧୯୫୪ ସାଲରେ (ଶୀର୍ଷା ଛାଡିଲି ୧୯୨୮ରେ) ଅବସର ନେଇ ହେଡପଣ୍ଡିତ ତାଙ୍କ ଜନ୍ମସ୍ଥାନ ପୁରୀରେ କଟାଉଥିଲା ବେଳେ, ମୋତେ କନୈକ ସଙ୍ଗତିସଂପନ୍ନ ଅଧ୍ୟାପକ ଭାବି ବେଶ ଗୋଲ ଗୋଲ ଅକ୍ଷରରେ ଅତି ସ୍ନେହାର୍ଦ୍ର ଭାଷାରେ ଖଣ୍ଡିଏ ବହଳଦାର ମଠା ଚାଦରପାଇଁ ଚିଠି ଦେଇଥିଲେ। ସେତେବେଳେ ମୁଁ ମୁମୂର୍ଷୁ ଅବସ୍ଥାରେ ଦାରିଦ୍ର୍ୟର ଚରମ ସୀମାରେ ଥିଲି। ଚିଠିର ଉତ୍ତର ଦେଲିନାହିଁ। ଜ୍ୟେଷ୍ଠପୁତ୍ରର ଅବଶ୍ୟ କର୍ତ୍ତବ୍ୟ, ପୁଣ୍ୟକର୍ମ, ପିତାମାତାଙ୍କୁ ମୁଖାଗ୍ନି ଦେବା। ତାହା ଦେଇ ନପାରି ଯେତିକ ଅନୁତାପ ଓ ଅନୁଶୋଚନା, ତାଠୁ ବଳି ଅକ୍ଷମଣୀୟ ମୋର ଏ ଅକ୍ଷମତା ଓ ଅବହେଳା।



## ॥ ଷୋଡ଼ଶ ॥

ପୁଣି ହେଡପଣ୍ଡିତଙ୍କ କଥା। ସେ ତାସ ଖେଳନ୍ତି ନାହିଁ, ଧୂଆଁ ଟାଣନ୍ତି ନାହିଁ, କାହା ଘରକୁ ଭୋଜନପାଇଁ ଯାନ୍ତି ନାହିଁ। ସ୍କୁଲରେ ଗଣେଶ ବା ସରସ୍ୱତୀ ପୂଜା କରନ୍ତି ନାହିଁ, କିନ୍ତୁ ପୂଜା ଠିକ୍ ବିଧି ଅନୁସାରେ ଚାଲିଛି କି ନାହିଁ, ଦେଖିବାପାଇଁ 'ପୁରୋହିତ ସର୍ବସ୍ୱ' ବହି ଆଗରେ ରଖି ବସିଥାନ୍ତି ଏବଂ ପୂଜକ ଦୁର୍ବାଦଳ ପଣ୍ଡାଙ୍କୁ ସାହାଯ୍ୟ କରନ୍ତି। ଏଇ ଦୁର୍ବାଦଳ ପଣ୍ଡା ଜଗନ୍ନାଥ ମନ୍ଦିରର ପୂଜକ; ପ୍ରତି ସନ୍ଧ୍ୟାରେ ଯାହାଙ୍କ ସହିତ ଦେଖାହୁଏ ଆମର; ଅର୍ଥାତ୍ ହେଡପଣ୍ଡିତଙ୍କର ଓ ମୋର। ଫରକଟା ଗୋଡ; ଠିଆହେବା ଓ ବସିବା, ଉଭୟ କାମପାଇଁ ଅନୁପଯୁକ୍ତ। ଠାକୁରମାନଙ୍କ ମୁଣ୍ଡକୁ ତାଙ୍କ ହାତପାଏ ନାହିଁ। ଥରେ ସେ ଆସିଥିଲେ ଆମ ସ୍କୁଲକୁ ଗଣେଷ ପୂଜା କରିବାପାଇଁ। ବାଜା ମହୁରି ସହିତ ପୂଜା ଆରମ୍ଭ ହେଲା। "ଓଁ ଶ୍ରୀ ଗଣେଶାୟ ନମଃ। ଗଣେଶାୟ ଆବାହୟାମି, ଗଣେଶ ଅତ୍ରାଗଚ୍ଛ।" ହେଡପଣ୍ଡିତ ପଚାରିଲେ- "ପଣ୍ଡିତେ, 'ଅତ୍ରାଗଚ୍ଛ' କଣ ?" "ଗୋଟାଏ ପ୍ରକାର ଗଛ, ଆମର ମେରୁମଠର ପାଚେରୀ ଧାରରେ ଯାହାକୁ ଯେତେ; ସେ ଦିନ ମୁଁ ବୋଝେ ଆଣି ଗାଈକୁ ଦେଇଥିଲି।" ହେଡପଣ୍ଡିତ ମୋ ଆଡକୁ ଚାହିଁ ପଚାରିଲେ- "ବସନ୍ତ, 'ଅତ୍ରାଗଚ୍ଛ' ସନ୍ଧିବିଚ୍ଛେଦ କର, ଅର୍ଥ କହ।" ମୁଁ କହିଲି- "ଅତ୍ର ଆଗଚ୍ଛ ଅତ୍ରାଗଚ୍ଛ, ଅର୍ଥ ଏଠାକୁ ଆସ।" ଦୁର୍ବାଦଳ ପୂଜାରିକି ହରାଇ ମୁଁ ଅନେକ ଆନନ୍ଦ ପାଇଥିଲି ସେଦିନ।

ମାଇନର ସ୍କୁଲରେ କେତେଗୁଡିଏ ପାଠ୍ୟାତିରିକ୍ତ ବିଷୟ ମନେପଡୁଛି। ସମସ୍ତଙ୍କୁ ବଗିଚା କରିବାକୁ ପଡେ। ଥରେ ଦଶୋଟି ଗଛର ଦାୟିତ୍ୱ ମୋ ଉପରେ ଥିଲା। କଳସୀରେ ସୁବର୍ଣ୍ଣରେଖା (୭୦/୮୦ ଫୁଟ ଯାହାର ତଟ)ରୁ ପାଣି କାନ୍ଧରେ ବୋହିଆଣିବାକୁ ପଡେ। ହେଡମାଷ୍ଟର ରଘୁନାଥ ମାଝୀକୁ ଭଲ ବଡବଡ ଚାରା ଦେଇଥାନ୍ତି। ସେ କୋଦାଳରେ ଯଜ୍ଞକୁଣ୍ଡ ପରି ଗାତ ଖୋଳି ଚାରା ଲଗାଏ; ଟିଣଭାରରେ ସେ ନଈରୁ ପାଣି ଆଣେ। ତାର ବନ୍ଧାକୋବି ଦୁଇସେର ହେଲା ଏବଂ ସେ ପୁରସ୍କାର ପାଇଲା। ମୋର ବନ୍ଧାକୋବିର ବଡ ବଡ ପତ୍ର ହେଲା, ବାନ୍ଧିଲା ନାହିଁ। ଫୁଲକୋବି ଗଛ ଲମ୍ବା ହୋଇ ବଢିଲା, ଫୁଲ ଫୁଟିଲା ନାହିଁ, ଓଲକୋବି ବରକୋଳି ଅବସ୍ଥାରୁ ଫାଟିଗଲା। ମୂଳାଟିଏ ଦୁଇଛଟାଙ୍କି ହୋଇଥିଲା।

ଷଷ୍ଠ ଶ୍ରେଣୀରେ ପୁରସ୍କାର ବିତରଣ ଉତ୍ସବପାଇଁ ଇଂରାଜୀରେ ଅଭିନୟ କରିଥିଲି। "Half the Profit" ରେ। କେଉଟ ଓ ଚପରାସି ଭିତରେ ଅଧା ଲାଭ ସର୍ତ୍ତ ଥିବାରୁ, କେଉଟ କୋଡିଏ ବେତ ମାଛର ଦାମମାଗିଲା ଏବଂ ଚପରାସି ଦଶବେତ ପ୍ରହାର ପାଇଲା। ଜମିଦାରର ବନ୍ଧୁ ପାର୍ଟ ମୋର, ସାଧୁ ଜମିଦାର ଏବଂ ଆର୍ତ୍ତ କେଉଟ। ଆମେ ତିନିହେଁ

କ୍ଲାସରେ ଫାଷ୍ଟ, ସେକେଣ୍ଡ, ଥାର୍ଡ ହେଉଁ। ମୋର ଅଭିନୟ ଭଲ ହେଲାନି। ଡର ମାଡିଲା, ଝାଳ ବହିଲା। କେତେଗୁଡାଏ ଶବ୍ଦ ଭୁଲି, ଅଧାରେ ଅଟକିରହିଲି। ହାସ୍ୟାସ୍ପଦ ନ ହେଲେ ମଧ୍ୟ, ମନରେ ଦୁଃଖ ରହିଗଲା। ଏତେ ଅଳ୍ପ ପାର୍ଟ ମୁଖସ୍ଥ କରି ପାରିଲିନି, ଅଥଚ ଆର୍ତ୍ତ, ସାଧୁ କେତେ ସୁନ୍ଦର ତାଙ୍କର ପାର୍ଟ କରିଗଲେ।

ଦିନେ ଏଗାରଟା ବେଳକୁ ଠଂ ଠଂ ହୋଇ ଘଣ୍ଟ ବାଜିଲା, ଖେଳକଉତୁକ ହେବ। ସ୍ପୋର୍ଟସ କଣ ମୋତେ ଜଣାନାହିଁ। ସାଧୁ, ଆର୍ତ୍ତ ପୁରୁଣା ପିଲା; ସେମାନେ ସଙ୍ଗେ ସଙ୍ଗେ ବାହାଦୁରୀ ଦେଖାଇ, ମାଲକଚ୍ଛା ଭିଡି, ଡିଆଁ ଧାପଡ କରି ପ୍ରାକ୍‌ଟିସ୍ କରିବାକୁ ଲାଗିଲେ। ସେମାନେ ପୁରୁଣା ପିଲା ହୋଇଥିବାରୁ କେଉଁ ଖେଳ କିମିତି ଜାଣନ୍ତି। ମୁଁ ପଡିଆ ଏପଟ ସେପଟ ହୋଇ ପୁରସ୍କାର ଥୁଆ ହୋଇଥିବା ଟେବୁଲ ପାଖରେ ଠିଆହୋଇ ଦେଖିଲି, କେଉଁ ଖେଳପାଇଁ କଣ ପୁରସ୍କାର; ମୋର ଲୋଭ ହେଲା ଗୋଟିଏ ଚିଜରେ, ନିହାଣରେ। ବାପା ମୋର ପକ୍କା କାଠମିସ୍ତ୍ରୀ। ଘରେ ଯୋଡା ଯୋଡା ଯାଉଁଳି କବାଟ ସେ ଲଗାଇଛନ୍ତି। ଏତେ ସୂକ୍ଷ୍ମ କାମ ଯେ, ଅନ୍ୟ ଗାଁର ଲୋକେ ଦେଖିବାକୁ ଆସନ୍ତି, ପଥର ଦିହର କାମ ପରି। ସେଇ କାମକରି ଅକାଳରେ ବାପାଙ୍କ ଆଖିରେ ପରଳ ପଡିଗଲା ଏବଂ ଶେଷ କାଳକୁ ଗୋଟାଏ ଆଖି ନଷ୍ଟ ମଧ୍ୟ ହୋଇଗଲା। ବାପାଙ୍କୁ ସେଇ ନିହାଣଟା ଦେଇ ପାରନ୍ତିକି ! 'ହାଣ୍ଡିପିଟା' ବୋଲି ଗୋଟାଏ ସହଜ ଖେଳରେ ସେଇଟା ପୁରସ୍କାର ଅଛି। ନାଆଁ ଦେଇ ନଥିଲି ଆଗରୁ। ହେଡମାଷ୍ଟର ମୋ ପ୍ରାର୍ଥନା ଶୁଣି, ନାଆଁ ତାଲିକାରେ ମୋ ନାଆଁ ରଖିଲେ। ମୁଁ ଆଖି ବୁଜି କୌଣସି ଏକ ଲକ୍ଷ୍ୟ ପାଖକୁ ବାରମ୍ବାର ଗଲି ଏବଂ ଡକରାବେଳକୁ ପ୍ରତିଯୋଗୀ ଧାଡିରେ ଛିଡାହେଲି। କିନ୍ତୁ ମୋ ପ୍ରତି ଅନ୍ୟାୟ କରାଗଲା। ଅନ୍ୟ ସମସ୍ତଙ୍କ ଆଖି ରୁମାଲ, ଜନା, ତୁଳା ବା ଗାମୁଛାରେ ବନ୍ଧା ହେଲା। କିନ୍ତୁ ମୋ ଆଖିକୁ ଚାରିହାତୀ ଲୁଗାରେ ଜୋର୍‌ରେ କିଏ ଜଣେ ବାନ୍ଧିଦେଲା। ଅନ୍ୟମାନଙ୍କୁ ଥରେ ଦୁଇ ଥର ବୁଲାଇ ଛଡା ଗଲା, ମୋତେ ଆଠ ଦଶ ଥର। ମୁଣ୍ଡ ବୁଲାଇଲା। ତଥାପି ନିହାଣର ଆଶା ନ ଛାଡି ମୁଁ ମାଡି ଚାଲିଲି। ହାଣ୍ଡିଭଙ୍ଗା ଶବ୍ଦ ଶୁଭିଲାବେଳକୁ ମୁଁ ଯାଇ ସ୍କୁଲ ବାଡର କଣ୍ଟାରେ। ଆଖିରୁ ଲୁଗା ଟାଣି ଫିଟାଇଲି। ମୁଁ ପୂର୍ବକୁ ନଯାଇ, ପ୍ରଥମରୁ ପଶ୍ଚିମ ମୁହାଁ ହୋଇଯାଇଥିଲି, ତେଣୁ ଏ ଦୁର୍ଗତି।

କଉତୁକରେ ବି ମୁଁ ସେମିତି। ଦିନେ ରବିବାରିଆ ସାର୍‌ମାନେ ଲାଇବ୍ରେରୀ ପାଖ ପୂର୍ବ ପିଣ୍ଡାରେ ତାସ ଖେଳୁଥାନ୍ତି। ଆମେ କେତେ ଜଣ ପଶ୍ଚିମ ପାଖ ଚାଳରେ ଗୋଟାଏ ବଡ ବିରୁଡିବସା ଦେଖିଲୁଁ। ମୁଁ ବୁଦ୍ଧି ବାହାର କଲି। ଗୋଟାଏ ବାଉଁଶ ବତା ଅଗରେ ଦୁଇଟା ଲାଲ ମରିଚ ବାନ୍ଧି ଜଣେ ବସାରେ ଦେଖାଇଲା, ଏବଂ ଚାରିଛଅଟା ବିରୁଡି ମରିଚରେ

ନାହୁଡ ମାରି ତେଣା ଋଣଋଣ କରୁଥିଲା ବେଳେ, ମୁଁ ଛାଞ୍ଚୁଣିଟାଏ ଧରି ତଳେ ବାଡେଇ ମାରିବାକୁ ଲାଗିଲି। କିନ୍ତୁ ଭଲକରି ମାଡ ତାଙ୍କ ଉପରେ ନ ବସିଲାରୁ ସେମାନେ ଉଡିଆସି ମୋ ନାକ, ଆଖିପତା ଓ ଓଠରେ ଲାଗିଗଲେ। କାନ୍ଦବୋବାଳି ଓ ଚିତ୍କାର ଶୁଣି ହେଡମାଷ୍ଟର ଓ ହେଡପଣ୍ଡିତଙ୍କ ବେତ ଅଣାଇ ମୋତେ ପ୍ରସ୍ତେ ନିର୍ଦ୍ଦୟ ଭାବରେ ବାଡେଇ ଗଲେ। ବିରୁଡି କାମୁଡା ଜ୍ୱାଳା ଓ ଫୁଲା ବେତମାଡଠୁଁ ବଳିଗଲା, କିନ୍ତୁ ମୁଁ ମୁହଁ ଆଇନାରେ ତିନିଦିନ ଦେଖିନାହିଁ। ସେକେଣ୍ଡ ମାଷ୍ଟର ସିମିତି ଶୁଣିଲେ ମୁଁ ନାଟର ଗୋବର୍ଦ୍ଧନ, କହିଲେ "Oh ! that silly little joker"। ମୁଁ ଯେ କଉତୁକିଆ ପିଲା ଥିଲି, ବା ହେବି ସେ ଦିନୁ ସାର୍‌ମାନେ ଜାଣିଥିଲେ।

ଅନ୍ୟାନ୍ୟ ମାଙ୍କଡାମି ମଧ୍ୟ କେତେ ଥର କରିଛି। ହେଡପଣ୍ଡିତଙ୍କ ପାଞ୍ଜିରୁ ବିଜ୍ଞାପନ ଦେଖି ଏବଂ ଇଂରାଜୀ ବ୍ୟାକରଣ ଓ ରଚନା ବହିରୁ ପତ୍ରଲିଖନ ପ୍ରଣାଳୀ ଶିଖି, ଅନ୍ତତଃ ଦୁଇଥର ଚୋରାରେ ପାର୍ଶଲ ମଗାଇଛି କଳନ୍ଧର ସିଟିକୁ। ପ୍ରଥମ ଥର ଭି.ପି.ପି. ଜରିଆରେ "Please supply as per V.P.P." ଇତ୍ୟାଦି ଲେଖି ମଗାଇଛି ଜଳଛବି ସହ ହଜାରେଟି ଜିନିଷ, ଟଙ୍କାଏ ଚାରିଅଣାରେ। କୃତ୍ତିବାସ ପୋଷ୍ଟମେନଠାରୁ ଚୁପେ ଚୁପେ ପାର୍ଶଲ ଖଲାସକରେଁ। ହଜାରେ ଜିନିଷରୁ ମୁଡି ସାଇକର ଲକେନ୍‌ସ୍ ମୁଠାଏ, ପିନ୍‌କଣ୍ଟା ଗୁଡାଏ ଏବଂ ସେମିତି ଅଦରକାରୀ ଜିନିଷ କିଛି। ମାସକର ବୃତ୍ତି ପଇସା ସେଇଥିରେ ଯାଏ। ଯେଉଁମାନେ ଭାଗୀ ହେବେ ବୋଲି କହିଥାନ୍ତି, ସେମାନେ ଜିନିଷ ନିଅନ୍ତି, ପଇସା ଦିଅନ୍ତି ନାହିଁ। ପରେ କଥା ପ୍ରକଟ ହେଲେ, ମାଡଟି ମୁଁ ଖାଏଁ। ମୋର ଖାତା, ବହି ହାତ ପିଠି ସର୍ବତ୍ର ଜଳଛବି।

ଉତ୍ସାହିତ ହୋଇ ଦ୍ୱିତୀୟ ଥର ଭି.ପି.ପି.ରେ ମଗାଇଲି ଟଙେଇ ମରା ଗୋଲେଲ- ଯାହାକୁ ଇଂରାଜୀରେ catapult କହନ୍ତି। ଗୋଟାକ ପ୍ରାୟ ଚାରିଅଣା; ଡଜନେ ମଗାଇଥିଲି, ତିନି ଚାରିଟା ବିକ୍ରି ହେଲା, ବାକି ସବୁ ଘରକୁ ନେଲି। ବଗ, ବଣି, କୁଆ, କାହାକୁ ମାରିବା ତ ଦୂରର କଥା, କାହା ଦେହରେ ବଜାଇ ବି ପାରିଲି ନାହିଁ। ବଡ ବଡ ପିଲାଏ ଜୋରରେ ଟାଣି ଛିଣ୍ଡାଇ ଦେଲେ। ସେଥିରେ ବି ମାସକର ବୃତ୍ତିଟଙ୍କା ଗଲା।

ଥରେ ସାର୍‌ମାନଙ୍କ ସହିତ ମେଣ୍ଟବାନ୍ଧି, ଯୋତା ପାର୍ଶଲରେ ମଗାଇଲୁଁ। ସେତେବେଳେ ହେଡମାଷ୍ଟର ରଣା ସାର୍‌ଙ୍କ ଅମଳ। କାହାରି ସାହସ ହୁଏନି ତାଙ୍କ ସାମନାରେ ଯୋତା ମାଡିବାକୁ। ଚପଲ ନୁହେଁ, ଚଡଉ ଯୋତା, ପୂରା ଯୋତା, କାଠିଆବାଡ ଯୋତା। ପ୍ରାୟ ପନ୍ଦର ହଳ। ହେଡପଣ୍ଡିତ ବି ଆମ ସହିତ ଯୋଗଦେଲେ। ସମସ୍ତଙ୍କ ଗୋଡର ମାପ ସଂଗ୍ରହ ହେଲା, କାଗଜରେ ପାଦରଖି ପେନ୍‌ସିଲ ଦାଗ ମଡାଇ। ବଡମାନଙ୍କର ପାଞ୍ଚଛଅ ହଳ, ବାକି ସବୁ ପିଲାମାନଙ୍କର। ହେଡମାଷ୍ଟର ଯେପରି ଟେର

ନ ପାନ୍ତି, ତାର ବ୍ୟବସ୍ଥା ହେଲା । ହଳକ ପାଞ୍ଚଟଙ୍କା ହିସାବରେ ଆଗତୁରା ପଠାଉଲୁଁ; ଡାକଖର୍ଚ୍ଚ ପରେ ଦିଆଯିବ । ଯୋତା ଏକ ଅମୂଲ୍ୟ, ଅମିଳକ, ଆଶ୍ଚର୍ଯ୍ୟ ଚିଜ; ସୁଦୂର କାଠିଆବାଡରୁ ଆସିବ । ଆଶା, ଆଗ୍ରହ ଓ ଉତ୍କଣ୍ଠାରେ ଅନେକ ଦିନ ଆମର ନିଦ ନାହିଁ । ମାସେ ଗଲା, ଦିମାସ ଗଲା । ଚିଠି ଆସିଲା, କମ୍ପାନୀ ଛିଅର ବାହାଘର । ଶୁଭକାମ ସରିଲେ ସିନା ଯୋତା ତିଆରି ଆରମ୍ଭହେବ । ଯୋତା ନ ଆସିଲା ନାହିଁ, ହେଡମାଷ୍ଟର ଜାଣିଲେ ସର୍ବନାଶ ।

ବହୁ ପ୍ରତୀକ୍ଷା ପରେ ଯୋତା ପାର୍ଶଲ ବାଙ୍ଗିରିପୋଷି ପହଞ୍ଚିଲା । ଦି'ଜଣ ପିଲା ବାର ମାଇଲ ରାସ୍ତା ଚାଲିଚାଲି ଯାଇ ପାର୍ଶଲ ବୋହିକରି ଆଣିଲେ । କବାଟ ବନ୍ଦ କରି ପାର୍ଶଲ ଦେଖାଗଲା । ଏ କଣ ? କାହାର ଯୋତା କିଏ ? ଫିତାକୁ ଫିତା ଯୋଡା ନ ହୋଇ ସବୁ ବୋରାରେ ପୂରାଇ ପଠାଯାଇଛି । ଏତେ ମୂଲ୍ୟବାନ ଯୋତା, ଏତେ ସାଧନା, ତପସ୍ୟାର ଫଳ ! ବଡ ସାନ ହେଲେ ବି ଫେରାଇବା ପ୍ରଶ୍ନ ନାହିଁ । ସାର୍‌ମାନଙ୍କ ସାହାଯ୍ୟରେ ଯିମିତି ହେଉ, ମେଳକଲୁଁ ଏବଂ ଯୋତାସବୁ ବାକ୍ସ, ପେଡି ଭିତରେ ରଖିଦେଲୁଁ । କିଏ କିମିତି ରାତି ଅନ୍ଧାରରେ ମାଡିବା ଚେଷ୍ଟାକଲା । ଦିନେ ସମସ୍ତେ ଯେଝା ଯୋତାକୁ ଗାମୁଛାରେ ବାନ୍ଧି ସେକେଣ୍ଡ ମାଷ୍ଟରଙ୍କ ଘରକୁ ଗଲୁଁ ଏବଂ ତାଙ୍କ ବାଡି ପୋଖରୀ ହିଡରେ ବସି ପରସ୍ପର ସାହାଯ୍ୟରେ ମାଡିଲୁଁ । ମାଷ୍ଟରମାନେ ବି ଆମ ସାଙ୍ଗରେ ଥିଲେ । ମାଡିସାରି ପୋଖରୀ ହୁଡା ତଳକୁ ଯିବାପାଇଁ ଚେଷ୍ଟାକରି, ଦି ଚାରିଜଣ ଖସଡି ଗଡିଗଲେ । ଅବଶେଷରେ ସାର୍‌ମାନଙ୍କ ନେତୃତ୍ୱରେ ଚାରିମାଇଲ ଦୂର ଗୋଟାଏ ଗାଁକୁ ଅଷ୍ଟପ୍ରହରୀ ('ହରେକୃଷ୍ଣ ହରେରାମ ନିତାଇ ଗଉର ରାଧେଶ୍ୟାମ' ଖୋଳ କୀର୍ତ୍ତନରେ ଚବିଶ ଘଣ୍ଟା) ଜପିବାକୁ ଗଲୁଁ । ସେଠି ଦେଖିବାର କିଛି ନଥିଲା । ଚିମୁଟାଏ ଭୋଗ ଖାଇ, ରୁଦ୍ର ବୈଶାଖରେ ଘରକୁ ଫେରିଲୁ ଯୋତାକୁ କାନ୍ଧରେ ପକାଇ । କାରଣ ବିନା ମୌଜାରେ ପାଦରେ ଫୋଟକା ହୋଇ ଫାଟି ଝରଝର ପାଣି ଝରୁଥିଲା ଓ ଭୀଷଣ ପୋଡୁଥିଲା । ଗ୍ରୀଷ୍ମଛୁଟିରେ ଘରକୁ ଯାଇ ନନାକୁ ଯୋତା ହଳକ ଦେଇଦେଲି । ସେ ପ୍ରାୟ ଦଶ ବର୍ଷ ତାକୁ ପିନ୍ଧିଥିଲା । ଏ ଦୁର୍ଘଟଣା ପରେ ମୁଁ ଦଶ ବର୍ଷ ଯୋତା ମାଡି ନାହିଁ ।

ଶୀର୍ଷାରେ ପଢୁଥିଲାବେଳେ ନାଟକ ପ୍ରଥମ ଦେଖିଲି- 'କୋଣାର୍କ' ଓ 'ପର୍ଶୁରାମ ମାତୃହତ୍ୟା' । ହେଡମାଷ୍ଟର ବୈକୁଣ୍ଠ ବଣା, ସେକେଣ୍ଡ ମାଷ୍ଟର କ୍ଷେତ୍ରମୋହନ ଦାସ ପଟ୍ଟନାୟକ, ଥାର୍ଡ ପଣ୍ଡିତ ଈଶ୍ୱର ଚନ୍ଦ୍ର ପାଳ ପାର୍ଟ କରୁଥିଲେ । ପର୍ଶୁରାମ ମାଆକୁ ହତ୍ୟା କଲାବେଳେ ମୁଁ ଖୁବ୍ ରାଗିଥିଲି ପର୍ଶୁରାମ ଉପରେ ଏବଂ ଧରମା ସମୁଦ୍ରକୁ ଡେଇଁପଡିଲା ବେଳେ କାନ୍ଦି ପକାଇଲି । ଗାଁରେ ସୁଆଙ୍ଗ, ପାଲାଗାଆଣ ହେଲେ ଆଗ୍ରହର ସହିତ

ଦେଖୁଥିଲି। ସୁଆଙ୍ଗ ଓ ଯାତ୍ରା ବୁଝିହୁଏ, ପାଲାଗାଆଣ ବୁଝିହୁଏନି। ଗୀତ ବି ସେମିତି ଭଲ ନୁହେଁ। ଥରେ ଶୀର୍ଷାରେ ଶୀତଳା ଗାଆଣ ହେଲା, ଗାଁରୁ ବସନ୍ତ ରୋଗ ଦୂର କରିବା ପାଇଁ। ଫଳ ଓଲଟା ହେଲା। ରାତିକୁ ରାତି ଉଜାଗର ରହିବାରୁ ଲୋକଙ୍କୁ ଜ୍ୱରହେଲା ଓ ପ୍ରତିଦିନ ଗୁଡାଏ ମୂର୍ଦ୍ଦାର ଫୋପଡା ହୋଇଥିଲେ। ଯିବା ଆସିବା ବାଟ ଯୋଗୁଁ ସେଇ ସ୍ଥାନରେ ମୋତେ ଡରମାଡେ ? ଭିକାରି ବ୍ରାହ୍ମଣ କୁଣ, ସେହି ସମୟରେ ମୂର୍ଦ୍ଦାର ପୋଡି, ଶ୍ରାଦ୍ଧ ବା ଶୁଦ୍ଧିକ୍ରିୟା କରି ଶହ ଶହ ଟଙ୍କା କଟକରୁ ତା ଗାଁକୁ ପଠାଉଥିଲା କୁଆଡେ।

କାଠିଆୱାର୍ଡର ଚଡଭ ଯୋଡା ଛଡା ଅନ୍ୟାନ୍ୟ ଆଶ୍ଚର୍ଯ୍ୟ ଜିନିଷ ମଧ୍ୟରୁ ଦୁଇଟିର ଉଲ୍ଲେଖ କରୁଛି। ପୂଜାଛୁଟିରେ ଗାଁ ସ୍କୁଲରେ ବସି ହେଡପଣ୍ଡିତଙ୍କ ପାଖରୁ ଇଂରାଜୀ ବୁଝୁଥାଏଁ। ହଠାତ୍ ତୋମ ସାହି ପଟୁ କୋଳାହଳ ଶୁଭିଲା ଏବଂ ଆବାଳ ବୃଦ୍ଧ ବନିତା "ସାଇକେଲ, ସାଇକେଲ" ଚିତ୍କାର କରିଉଠିଲେ। ଦେଖୁଁ ଦେଖୁଁ ସମସ୍ତେ ଦଉଡ଼ିବା ଆରମ୍ଭ କଲେ। କାରଣ ସେତେବେଳେ ସାଇକେଲ ଏକ ନୂଆ ଚିଜ, ଏବଂ ତାକୁ ଦେଖିବାପାଇଁ ସମସ୍ତେ ସାଇକେଲ ପଛେ ପଛେ ଧାଇଁଥିଲେ। ଯିମିତି କର୍ଣ୍ଣେ ନନ୍ଦସୁତ ଜନ୍ମ ହେବା ଶୁଣି ଗୋପୀଏ ଧାଇଁଥିଲେ। ପୁଲିସ ବା ବରଟିଏ ଘୋଡାଚଢି ଗାଁକୁ ଆସିଲେ, ଲୋକେ ଗାଆନ୍ତି- "ଚିଙ୍ଗୁଡି ମାଛର ଚଡଚଡା, ଗାଁକୁ ଆସିଛି ଘୋଡାଚଡା।" ସିମିତି ଉନ୍ମାଦନା ଓ ପରିବେଶ। ଆମେ ବି ଗଲୁଁ। ଚଡ଼ାଳୀ ଫକୀର ଓଡାଙ୍କ ଘର ଆଗରେ ଓହ୍ଲାଇ, ସାଇକେଲ ପିଣ୍ଡାତଳେ ଛିଡାକଲା। ଆଗରୁ ଥରେ ଦୁଇଥର ସେଇ ଘରକୁ ମୋର ପୃଥୁ ଦଦେଇ ରାଜାଲୋଜାରୁ ଆସୁଥିଲେ ଏବଂ ବି.ଏସ୍.ଏ (ଖାଣ୍ଟି ବିଲାତୀ) ସାଇକେଲକୁ ଏକାବେଳେ ଘରଭିତରକୁ ବୋହି ନେଉଥିଲେ। ଦଶମାଇଲ ଦୂର କୁଳିଅଣା ଗ୍ରାମର ଏ ଚଡାଳୀ ଚତୁର୍ଭୁଜ କର, ଖୁବ୍ ରୋମାଣ୍ଟିକ। ଜମିଜାଇଗା, ଘର ସଂପତ୍ତି ସବୁ ବିକି ଦେଇ, ଏ ଯନ୍ତ୍ରଟି କିଣିଛନ୍ତି। ଫ୍ରେମର ଖୋଳ ବି ଲାଗି ରହିଛି। ଓହ୍ଲାଇ ପଡିଲା ମାତ୍ରେ ମଳିଧୂଳି ପୋଛାପୋଛି ହୁଏ। ଲମ୍ବା ଖିଜିଖିଜିଆ ଲୋକଟି; ନିଶ ନୂଆ ଗଜେଇଛି। ଅବିବାହିତ। ଅଠତିରିଶ ଟଙ୍କା ମୂଲ୍ୟର ଏ ସଂପତ୍ତିଟି ତାର ଜୀବନ-ଧନ। ଫ୍ରେମରେ ଗୋଟାଏ କେନଭାସ ଥଳି। ତା ଭିତରେ ରୋଷେଇ ସରଞ୍ଜାମ, ଶେଯପଟା। ଏତେ ଲୋକ ଘେରିଲେ ଯେ, ଶାନ୍ତିଶୃଙ୍ଖଳା ପ୍ରଶ୍ନ ଆଜି ଉଠିଥାନ୍ତା। ଜୀବନରେ ମୁଁ ଅନ୍ତତଃ ଚାରୋଟି ସାଇକେଲ ହରାଇଛି।

ଅନ୍ୟ ଅଶ୍ଚର୍ଯ୍ୟ ଚିଜଟି ସେଇ ଶୀର୍ଷାର। ଆମ ଗାଁର 'ସାଇକେଲ, ସାଇକେଲ' ଚିତ୍କାର ପରି ଶୀର୍ଷାରେ 'କଳ ଗାଉଣା, କଳ ଗାଉଣା' ଚିତ୍କାର ଦିନେ ସକାଳଠାରୁ ଶୁଭିଲା। ଲୋକେ କଳା ପିମ୍ପୁଡି ଧାଡି ଧରି ଗାଁ ମୁଣ୍ଡ ପକ୍କା ଘର ଆଡକୁ ଚାଲିଛନ୍ତି। ଗାଁର ସବୁଠାରୁ ଧନୀ ଲୋକ ଆନନ୍ଦ ସାହୁ। ରାଜାଲୋଜାର ସର୍ଦ୍ଦାର ଘର ପରି ବିଭବ ଓ

ପ୍ରତିପତ୍ତିଶାଳୀ । ଆଠ ଦିନ ପୂର୍ବରୁ ଶୁଭ ଦିନ ସ୍ଥିର ହୋଇ, ନିମନ୍ତ୍ରଣ ଗାଁର ମୁଖିଆଙ୍କ ପାଖକୁ ପଠାଯାଇଛି । ମୁହଁ ସଞ୍ଜକୁ ସାହୁଘର ଆଗ ଲୋକାରଣ୍ୟ । ଘର ଭିତରେ ସ୍ତ୍ରୀଲୋକ ଓ ପିଲାଝିଲା, ଆତ୍ମୀୟ କୁଟୁମ୍ବ ଗୁନ୍ଦାଗୁନ୍ଦି । ସତ୍ୟନାରାୟଣ ପୂଜାପାଲା ହେବ । କଳଗାଉଣାଟିକୁ ସ୍ୱୟଂ ଆନନ୍ଦ ସାହୁ ପାଟପୀତାମ୍ବର ହୋଇ ପୂଜାସ୍ଥଳୀକୁ ଆଣିଲେ । ପୂଜକ ଆମର ପରିଚିତ ଦୁର୍ବାଦଳ ପଣ୍ଡା । 'ଅତ୍ରାଗଛ' ବାଲା । ପୂଜାପରେ ମୋହନ ସୁନ୍ଦର ପାଲା ହେଲା ଏବଂ ଶିରନି ବିତରଣ ହେଲା । ଆମେ ବାରଣ୍ଡା ତଳ ଦାଣ୍ଡରେ ଠିଆ ହୋଇଥିବାରୁ ଭୋଗ ପହଞ୍ଚିଲା ନାହିଁ । ରାତି ଦଶରେ ଆରମ୍ଭ ହେଲା ରେକର୍ଡ । ସେ ପର୍ଯ୍ୟନ୍ତ ଆମେ ରେକର୍ଡ ନା କଳଗାଆଣ କିଛି ଦେଖିନୁ; ଦେଖିବାର ଆଶା ଛାଡି ବୋର୍ଡିଂ ମୁହାଁ ହେଉଛୁଁ, ଏତିକିବେଳେ କିଏ ଜଣେ କହିଲା- "ମୁଁ କଳଗାଆଣ ଦେଖିଲି, ବଡ ଦୁଦୁରାଫୁଲ ପରି ।" ଏତିକିବେଳେ ଲୋକାରଣ୍ୟ ଓ କୋଳାହଳ ଭେଦ କରି ଘର ଭିତରୁ ବାଜି ଉଠିଲା ଗୀତ- "ଆହା ମୋ ନନ୍ଦ-କୋଳେ ଗୋବିନ୍ଦ"। ସେ କଣ ମଣିଷ ସ୍ୱର ? ନା ନା ଦେବତା କଳଭିତରେ ପଶି ଗାଉଛି ? ନମସ୍କାର କଲୁଁ; ତାଳ ଦେଇ ନାଚିଲୁ । ଏମିତି ଉନ୍ମାଦନା, ଆନନ୍ଦ ଉଲ୍ଲାସ କ୍ୱଚିତ୍ ଦେଖିବାକୁ ମିଳିଛି । ବାରିପଦାରେ ନିଜେ ମୋହନ ଗୋସ୍ୱାମୀ ସେଇ ଗୀତ, ଅବିକଳ ସେଇ ସ୍ୱରରେ ଗାଇବାର ଶୁଣି ମନ୍ତ୍ରମୁଗ୍ଧ ହେଲି । କେତେ ଦିନ ପରେ ଜଣେ ମହାନ୍ତ ବ୍ୟବସାୟୀ 'କଳଗାଆଣ' ସହିତ ଚାରୋଟି ରେକର୍ଡ ଧରି ଗାଁ ଗାଁ, ଘର ଘର ବୁଲି ଚାରଣା ପଇସାରେ ଖେଳ ଦେଖାଇବାର ଦେଖିଲି, ଶୁଣିଲି ।

ଶୀର୍ଷାରେ ଖାଇବା ପିଆବାରେ ଅସୁବିଧା । ପନିପରିବା କିଛି ହୁଏନାହିଁ, କି ମିଳେନାହିଁ । ମାଟି ଖୁବ୍ ଚିକିଟା ଓ ଟାଣ । ସିମେଣ୍ଟ ବଦଳରେ ଚିକିଟାମାଟି ବ୍ୟବହାର କରି ହୁଅନ୍ତା । ପନିପରିବାପାଇଁ ସାପ୍ତାହିକ ସାରସକଣା ଶନିବାର ହାଟ, ବାହାଡାଗୋଡା ଗୁରୁବାର ହାଟ ବା ଚାଟରା ମଙ୍ଗଳବାର ହାଟ ଉପରେ ନିର୍ଭର କରିବାକୁ ପଡେ । ମହେଶ୍ୱର ପୂଜାରି ସହିତ ତିନି ଚାରିଜଣ ପିଲା ଯାଇ କୁନ୍ଦୁରି, ବାଇଗଣ ଆଣନ୍ତି; ଆଳୁ ଓ ଡାଲି ଗାଁ ଗୁହ୍ୟା ଦୋକାନରୁ । କୁଚୁଳି ଖାଳ ଓ ସୁବର୍ଣ୍ଣରେଖା ନଈ ଡରରେ ମୁଁ କମ୍ ଯାଏ ବାହାଗୋଡା ଓ ସାରସକଣା । କିନ୍ତୁ ଜାଣେ ଗଣେଶ ବା ସରସ୍ୱତୀ ରାଗିଯିବେ, ସେଥିପାଇଁ ବଡିଲା ନଈ ପାରିହୋଇ ମୂର୍ତ୍ତି ଆଣିବାକୁ ଯାଏ ବାହାଡାଗୋଡା । ସାର୍‌ମାନେ ମୋତେ ଜୋରଜବରଦସ୍ତ ପହଁରା ଶିଖାଇଥିଲେ ମଧ୍ୟ ଗହୀର ନଈରେ ବୁଡିଯିବା ଭୟ ମୋର ସବୁବେଳେ ।

ବୋର୍ଡିଂରେ ସକାଳେ ଶୁଖିଲା ମୁଡି । ଦହି, ଦୁଧ, ଘିଅ କିଛି ନାହିଁ । ପୁଣି ପେଡି ଭିତରେ ଯେଉଁ ମୁଡି ଥାଏ, ତାହା ବାସି, ସେମଣା, ଗନ୍ଧିଆ । ଉପରଓଳି ସ୍କୁଲ ଛୁଟି

ହେଲାବେଳକୁ ଭାରି ଭୋକ ଲାଗେ। ଡାଲିପାଣି ଆଉ କୁନ୍ଦୁରି (ପଇସାରେ ପଣେ) ସିଝା ଦେଇ ବାରମିଶା ବଗଡା ଭାତ ଖାଇହୁଏ ନାହିଁ। ଅନେକ ପିଲା ମୁଡି କିଣନ୍ତି। ଆମ ସାଙ୍ଗ ଆର୍ତ୍ତବଲ୍ଲଭ ପାତ୍ର ଟିଣରେ ମୁଡି ଆଣି ବିକେ, ପଇସାରେ କଠାଏ। ମୁଡି ସାଙ୍ଗକୁ ଗୋଟାଏ ବଡ ବେଲାରେ ସୋଲାସିଝା ବି ଥାଏ; ପତ୍ର ଠୁଙ୍ଗାରେ ପଇସାକୁ ଠୁଙ୍ଗାଏ। ସାଙ୍ଗକୁ ଲଙ୍କା ଗୋଟାଏ। ଆର୍ତ୍ତ ଗରିବ ପିଲା, ବାପାଛେଉଣ୍ଡ; ବିଧବା ମାଆ ସାଙ୍ଗରେ ଘରଟିରେ ରହେ। କ୍ଲାସରେ ମୁଁ ଫାଷ୍ଟ, ସିଏ ସେକେଣ୍ଡ, ସାଧୁ ଥାର୍ଡ। କିଛିଦିନ ମିଳାମିଶା ଏବଂ ପରସ୍ପର ସଂପ୍ରୀତି ଓ ସହାନୁଭୂତି ଫଳରେ ବନ୍ଧୁତା ଏମିତି ବଢିଲା ଯେ, ଆମେ ଦୁହେଁ ସଂଗାତ ବସିଲୁଁ, ପାନ୍ଧତାରେ ଲୁଗାପଟା ବିନିମୟ କରି। ଆର୍ତ୍ତର ମାଆ ମୋତେ ଶୀର୍ଷାରେ ଥିବା ଯାକେ ପୁଅ ପରି ଆଦର କରୁଥିଲେ; କିନ୍ତୁ ଯେତେ ଇଚ୍ଛା ଓ ଆଗ୍ରହ ଥିଲେ ବି, ମୁଁ ତାଙ୍କ ହାଣ୍ଡିରୁ ଭାତ ଖାଇନାହିଁ, କାଳେ ବ୍ରାହ୍ମଣତ୍ୱ ହରାଇବି।

ସାଣ୍ଡରା ଗାଁ 'ଷାଠିଦର' ପାଖରେ। ଏଇ 'ଦର' ବା ଗଣ୍ଡର ଗଭୀରତା ଷାଠିଏ ହାତ। ଲମ୍ବା ପ୍ରାୟ ଅଧମାଇଲିଏ। ବଡ ବଡ ମାଛ ଏ ସ୍ଥାନରେ ପ୍ରଚୁର ମିଳନ୍ତି। ଯାହାରି ଉପରେ ଓଡିଶା ବଙ୍ଗଳା ସଂଯୋଗକାରୀ ପୋଲ ଏବେ ତିଆରି ହୋଇଛି, ଯାହା କାମଶୋଳା ଘାଟ ନାଁରେ ଖ୍ୟାତ। ପାଣ୍ଡରା ଗାଁର ମନ୍ଦିରରେ ଶିବ ଲିଙ୍ଗଟି ବକ୍ରାକାରରେ ଦଣ୍ଡାୟମାନ। ହେଡପଣ୍ଡିତ କହିଲେ- "ହୁଣ୍ଡା ଭୀମକୁ ମାଆ କୁନ୍ତୀ ତିନିଟା ପଥର ଆଣିବାକୁ କହିଲେ ଚୁଲିପାଇଁ। ଭୀମ ଏଇ ଶିବଲିଙ୍ଗକୁ ଉପାଡିବାରୁ ମେଦିନୀ କମ୍ପିଲା। କୁନ୍ତୀ ଭୀମର ଦୁଷ୍କର୍ମର ଫଳ ଜାଣି ନିବୃତ୍ତ ହେବାକୁ କହନ୍ତେ, ସେ ଲିଙ୍ଗକୁ ସେଇ ଅଧା ଉପୁଡା ଅବସ୍ଥାରେ ରଖିଦେଲା। ଏହା ମହାଭାରତର କଥା।" ପୁରାଣଯୁଗର ସ୍ମୃତି ସହିତ ବିକଡିତ ଏସ୍ଥାନର ମହିମା ମୋତେ ପୁଲକିତ କରିଥିଲା।

ଏ ପ୍ରସଙ୍ଗରେ ମୋର ମନେ ପଡୁଛି ଶମିବୃକ୍ଷ କଥା। ମୟୂରଭଞ୍ଜର ଅପରପ୍ରାନ୍ତରେ ଉଦୁଳାରୁ କେତେ ମାଇଲ ଦୂରରେ ଏ ପୌରାଣିକ ସ୍ଥାନ। ଏଇଠି ସେଇ ଅଜ୍ଞାତବାସ କାଳରେ ପାଣ୍ଡବମାନେ ତାଙ୍କର ପାଶୁପତ ଆଦି ଶର ଲୁଚାଇ ଥିଲେ। "ଶମିଶାଖେ ଡାକ ତବ ପାଶୁପତ ଶର"। ଶମିବୃକ୍ଷ। ବୃକ୍ଷ ନୁହେଁ, ତାର ଶାଖା ନାହିଁ। କଳିକାଳରେ ବୃକ୍ଷଟି ପାଷାଣ ପାଲଟି ରହିଯାଇଛି। ପ୍ରକୃତିସୃଷ୍ଟ ସର୍ବୋଚ୍ଚ ମୋନୋଲିଥିକ ପ୍ରସ୍ତରସ୍ତମ୍ଭ ଏଇଟି। ଭୁବନେଶ୍ୱର, ପୁରୀର ଲିଙ୍ଗରାଜ ଓ ଜଗନ୍ନାଥ ମନ୍ଦିରର ଉଚ୍ଚତା ଓ ପରିଧି ବିଶିଷ୍ଟ ଏକ ଅତିକାୟ ଶିବଲିଙ୍ଗ। ଯାହା ଉପରୁ କୁଆଡେ ପଚାଶ ଷାଠିଏ କିଲୋମିଟର ଦୂର ଚାନ୍ଦିପୁର ସମୁଦ୍ର ଦିଶେ। ହାଇସ୍କୁଲର ଜଣେକ ସଂସ୍କୃତ ପଣ୍ଡିତ ସମୁଦ୍ର ଦେଖିବାର ଚୂଡ଼ ଅପଚେଷ୍ଟାକରି ପ୍ରାଣ ହରାଇଥିଲେ କେତେ ବର୍ଷ ତଳେ।

ଶୀର୍ଷାରେ ପଢୁଥିଲାବେଳେ ଦିନେ ସାର୍‌ମାନଙ୍କ ସାଙ୍ଗରେ ଡଙ୍ଗାରେ ଚଢି ଷାଠିଦର, ପାଣ୍ଡରା ଆଡକୁ (ଜାମଶୋଳା ଘାଟ) ଯାଇଥିଲୁଁ। ହେଡମାଷ୍ଟର, ସେକେଣ୍ଡମାଷ୍ଟର କ୍ଷେତ୍ରମୋହନ ଦାସପଟ୍ଟନାୟକ, ହେଡପଣ୍ଡିତ, ଥାର୍ଡ ପଣ୍ଡିତ ଏବଂ ଈଶ୍ୱର ପାଳ ଯୋଡାଏ ମାଛୁଆ ଡଙ୍ଗା କେଉଁଠୁ ଯୋଗାଡ କରି, ନିଜେ ନିଜେ ବାହି ସ୍କୁଲଘାଟ ପାଖରୁ ତଳକୁ ଗଲୁଁ। ଆମେ ପାଞ୍ଚଛଅ ଜଣ ପିଲା ମଧ୍ୟ ସେମାନଙ୍କ ସହିତ ଥିଲୁଁ। ମୋ ପକ୍ଷରେ ଏକ ଦୁଃସାହସିକ କାର୍ଯ୍ୟ। ସାଙ୍ଗପିଲାମାନେ ନଈ ପହଁରାରେ ଏକସ୍‌ପର୍ଟ। ବଢିଲା ନଈରୁ ସଙ୍ଗୀତ ଆର୍ଦ୍ର ଭାସିଯାଉଥିବା କାଠକୁ ଭେଳାନେଇ ଧରିଆଣନ୍ତି, ଗଛବୃରୁଛ ବିହୀନ ଗାଁରେ କାଠର ଅଭାବ ମୋଚନପାଇଁ। ମାଆଙ୍କ ମୁଡିଭଜାପାଇଁ ଆବଶ୍ୟକ ପଡୁଥିବା କାଠିଝାଟି ଜାଳେଣିକାଠର କାମ ତୁଲାଏ ଏ ସବୁ ଖାଲି ମିଳୁଥିବା ଅମୂଲ୍ୟ ବନ୍ୟସମ୍ପଦ। ସଉକ ଓ ମଉଜମଜଲିସରେ ମୁଁ ଯୋଗ ଦେଇଥିଲି ସିନା, ହେଲେ ଛାତି ସବୁବେଳେ ଧଡପଡ। ହେଡପଣ୍ଡିତଙ୍କ ଆଶ୍ରା, ଦମ୍ଭ, ସାହସ ଉପରେ ନିର୍ଭର କରିଥାଏଁ।

ପ୍ରାୟ ମାଇଲିଏ ତଳକୁ ମେରୁମଠ। ବଣଜଙ୍ଗଲିଆ ସ୍ଥାନଭିତରେ ମନ୍ଦିର ଓ ମଠ। ପ୍ରାୟ ଜନମାନବଶୂନ୍ୟ। ଏମିତି ଜାଗାରେ ହୁଏତ ଫକୀରମୋହନଙ୍କ ଧୂଳିଆ ବାବାଜୀମାନେ ରହୁଥିଲେ। ଏଠି ଯେଉଁମାନେ ରହନ୍ତି, ସେମାନେ ମହିମା ଗାଦିରୁ ଆସିଛନ୍ତି। ଧୁନି, ଚେଲା, ଗଞ୍ଜା, ବିଭୂତି ପାଉଁଶ ଆଦି ଶବ୍ଦ ଏଇଠି ଶୁଭେ। ଏଇ ସ୍ଥାନଟି ମୟୂରଭଞ୍ଜ ତଥା ଓଡିଶାର ଶେଷାଗ୍ର। ନଈକୁ ପଶିଲେ ବା ପାର ହେଲେ ଧଳଭୂମି।

ମଠ ବୁଲିସାରି ଡଙ୍ଗାପାଖକୁ ଯାଉଛୁଁ- ଦେଖିଲୁଁ ଅନ୍ୟକୂଳ ପଥରର ଏକ ବନ୍ଧ; ମଝିରେ ମଝିରେ କିଏ ଯିମିତି ବନ୍ଧକୁ କାଟି ଦେଇଛି ଏବଂ ପାଣିସୁଅ ବହି ଚାଲିଛି ଫାଙ୍କ ଦେଇ। କିନ୍ତୁ ଆମ ପାଖରେ ନଈ ସୁଅ ଯିମିତି ରୁଦ୍ଧ ହୋଇଯାଇଛି ବଡ ବଡ କଳା ପଥରଦ୍ୱାରା। କେବଳ ଗୋଟାଏ ସ୍ଥାନରେ ଆଠ ଦଶ ହାତ ରାସ୍ତା ଅଛି, ଯାହା ଦେଇ ସୁଅ ବିନା ଶବ୍ଦରେ ପ୍ରଖର ଗତିରେ ଚାଲିଛି। ହେଡପଣ୍ଡିତ ମୋତେ ଡିମା ପଥର ଉପରକୁ ନେଇ କହିଲେ- "ବସନ୍ତ !, ଏଇ ଦେଖ, ପଥରରେ ଆଣ୍ଠୁ ଦାଗ, ଭୀମର ଆଣ୍ଠୁଦାଗ। ମହାଭାରତ କଥା। ଅଜ୍ଞାତବାସ କାଳରେ ଏଠି କୁନ୍ତୀ ଭର୍ତ୍ସନା କରି ଭୀମକୁ ବନ୍ଧ ଭାଙ୍ଗିବାକୁ କହିଲେ। ଭୀମ ଆଣ୍ଠୁରେ ଏମିତି ଗୋଟାଏ କୁଟ ଦେଲା ଯେ, ବନ୍ଧ ଭାଙ୍ଗିଗଲା ଏବଂ ତାଳେ ପାଣି ସେହି ଜାଗାରେ ହୋଇଗଲା। ଏହାକୁ ଲୋକେ 'ଭୀମ ଆଣ୍ଠୁଆ' କହନ୍ତି। ଏଠି କାତ ପାଏ ନାହିଁ।" ହେଡପଣ୍ଡିତଙ୍କ କଥା ବିଶ୍ୱାସ କରିଗଲି ଏବଂ ହାତବୁଲାଇ ଆଣ୍ଠୁ ବାଜିଥିବା ସ୍ଥାନର ଚିକ୍କଣତା ଅନୁଭବ କଲି।

ପରୀକ୍ଷା ଫଳ ବାହାରିବା ସମୟ ହେଲା। କିଏ ଜଣେ କହିଲା ଯେ, ଆର୍ତ୍ତ ଫାଷ୍ଟ ହେଲା, ମୁଁ ସେକେଣ୍ଡ ହୋଇଗଲି। ମୁଁ ସେତେବେଶି ଆଶ୍ଚର୍ଯ୍ୟ ହେଲିନାହିଁ। କାରଣ

ଅଙ୍କରେ ମୁଁ ଭଲ କରିନଥିଲି । ଦୁଇଟା ଚଳନ୍ତା ରେଳଗାଡି ପରସ୍ପରକୁ ଅତିକ୍ରମ କରିବା ସମୟ; ମାଙ୍କଡ ଦିନରେ ଉଠିବ; ରାତିରେ ଖସିବ; ଆୟତାକାର କ୍ଷେତ୍ର ଭିତରେ ବର୍ଗକ୍ଷେତ୍ରର ଗାଲିଚା ବିଛାଇବା ଖର୍ଚ୍ଚ ଆଦି ଅଙ୍କ ମୋର ହୁଏନାହିଁ । ଦୁର୍ଭାଗ୍ୟକୁ ସେଇସବୁ ବିଷୟ ପ୍ରଶ୍ନପତ୍ରରେ ଥିଲା । ଅଙ୍କ ଭଲ ହେଲାନାହିଁ ବୋଲି ହେଡମାଷ୍ଟର ଦୁଃଖକଲେ । ବାପା, ନନା ଏ କଥା ଶୁଣି ଦୁଃଖିତ ହେଲେ । ବେଶି ଦୁଃଖର କଥା ମୁଁ ନିଜେ ଭାବିଲି- ସଙ୍ଗାତ ଆର୍ତ୍ତ ବଡବଡିଆ ଆତ୍ମୀୟ ସ୍ୱଜନଙ୍କୁ ଧରାଧରି କରି (ଯଦିଚ ସେକଥା ସେ କାଳରେ ନଥିଲା) ତାଙ୍କୁ ଫାଷ୍ଟ କରାଇଦେଲେ । କେତେଦିନ ପରେ କଣାଗଲା- ମୁଁ ଅପର ପ୍ରାଇମେରୀ ପରି ମାଇନରରେ ମଧ୍ୟ ରେକର୍ଡ ଭଙ୍ଗକରି କେନ୍ଦ୍ରରେ ପ୍ରଥମ । ମୁଁ ବୃତ୍ତି ପାଇଲି । ସଂଗାତ ଆର୍ତ୍ତ ହାଇସ୍କୁଲ ପାଠରୁ ବଂଚିତହେଲେ ଏବଂ କଂପାଉଣ୍ଡର ଟ୍ରେନିଂରେଗଲା । ବହୁବର୍ଷ ପରେ ମୁଁ ଗୁରୁତର ପୀଡିତ ଥିଲାବେଳେ ବାରିପଦା ଡାକ୍ତରଖାନାର କ୍ୱାଟର୍ସରେ ସପରିବାର ଥାଇ ମୋତେ ଯେଉଁ ଚିକିତ୍ସା ଓ ଶୁଶ୍ରୁଷା କରିଥିଲା, ତାରି ଫଳରେ ମୁଁ ଅକାଳ ମୃତ୍ୟୁରୁ ରକ୍ଷା ପାଇଗଲି । ତା' ଋଣ ତ ଶୁଝିପାରିଲି ନାହିଁ; ଓଲଟି ତା' ବିଷୟରେ ଖରାପ ଧାରଣା କରିଥିଲି, ପରୀକ୍ଷା ଫଳ ସଂପର୍କରେ । ମୋର ଦିହ ଭଲହେଲା, ମାତ୍ର ଅତୁଟ ସ୍ୱାସ୍ଥ୍ୟ ଥାଇ ସେ ଚାଲିଗଲା ।

ଶୀର୍ଷାରେ ସକାଳବେଳା ଜଳଖିଆ ସେଜିସାଇତା ନରମ ମୁଡି । ଶନିବାର ଓ ମଙ୍ଗଳବାର ସରମା ଓ ରାଜୁ ଗୁଡିଆ, ଯଥାକ୍ରମେ ଛଅ ମାଇଲ ଓ ତିନି ମାଇଲ ଦୂର ହାଟକୁ ମିଠାଇ ଦୋକାନ ନିଅନ୍ତି । ପୂର୍ବଦିନ ରାତିରେ ମିଠାଇ କରିଥାନ୍ତି; ସକାଳୁ ଜିଲାପି କରନ୍ତି । ସକାଳ ହେଲା ମାତ୍ରେ, ପଚାଶ କଦମ ଦୂର ସରମା ଦୋକାନରେ ମୁଁ ହାଜର । ପହଞ୍ଚିଲାବେଳକୁ ଗୋଟାଏ ବଡ କଡାରେ ଚିନି ରସରେ ଜିଲିପିମାନେ ପହଁରି ରସ ପିଇ ଟିମଟିମ ଫୁଲିଥାନ୍ତି; ନହେଲେ ଚୁଲିରେ ବସିଥିବା ଘିଅକଡାରେ କଳକଳ ହୋଇ ଫୁଟୁଥାନ୍ତି । ପଇସାକୁ ଗୋଟିଏ । ଦୁଇପଇସାରେ ଯୋଡାଏ ଜିଲାପି । ଖାଇଦେଲେ ଭାତ ଖାଇବାଯାଏ ଦମ ରହେ । ସରମା, କରିବାରେ ଡେରି ହେଲେ, ରାଜୁ ଦୋକାନ ଅଛି । ଟିକିଏ ସାନ ସାଇଜ୍ । ଧାର ବି ମିଳେ । ରସ ଗଳି ପଡୁଥିବା ଗରମ ଜିଲାପି କଥା ମନେପଡିଲେ, ପାଟିରୁ ଲାଳ ଏବେବି ଝରୁଛି । ପାଞ୍ଚଟଙ୍କା ବୃତ୍ତିରୁ ଦୁଇଟଙ୍କା ମେସ ଖର୍ଚ୍ଚ, ଟଙ୍କାଏ ଟିଉସନ, ଆଉ ଟଙ୍କାକର ଜିଲାପି; ଯେତେ ଖାଇବ ଖାଅ । ଶୀର୍ଷା ଛାଡିଲା ବେଳକୁ ଗୋଟାଯାକ ଦିହ କାଛୁମୟ । ପରୀକ୍ଷା ଫଳ ବାହାରିଛି ଶୁଣି, ବାପା ଆଗତୁରା ଜମି ସୁଣ୍ଡାବସାଇ କେତୋଟି ଟଙ୍କାଧରି ଶୀର୍ଷା ଗଲେ ଏବଂ ମୋତେ ଋଣମୁକ୍ତ କରି, ସେଜି (କିଛି ନଥିଲା ତା' ଭିତରେ) ଓ ମାଇନର ପାସ୍ ସାର୍ଟିଫିକେଟ ଧରି ଘରକୁ ଫେରିଲେ । ବିଦାୟ ଶୀର୍ଷା ।



## ॥ ସତର ॥

ବାରିପଦାରେ ସେତେବେଳେ ପାଞ୍ଚଟି ମାଇନର ସ୍କୁଲ। କୁଆମରା, ଅମର୍ଦା, ଉଦଳା, କରଞ୍ଜିଆ ଓ ଶୀର୍ଷା। ବାରିପଦା ହାଇସ୍କୁଲ ଏହି ପାଞ୍ଚଟି ସ୍କୁଲ ପରୀକ୍ଷାକେନ୍ଦ୍ର। ଅତିବେଶି ହେଲେ ଷାଠିଏ, ସତୁରି ଜଣ ଏହି କେନ୍ଦ୍ରରେ ପରୀକ୍ଷା ଦେଇଥାନ୍ତି। ଛାତ୍ରୀ ପ୍ରାୟ ନାହାନ୍ତି କହିଲେ ଚଳେ। ହାଇସ୍କୁଲ ହେଡମାଷ୍ଟରଙ୍କ ଝିଅ କଲ୍ୟାଣୀ ଏକମାତ୍ର ଛାତ୍ରୀ, ଯେ କି ପ୍ରାଇଭେଟ ପରୀକ୍ଷା ଦେଇଥିଲେ। ସେ ଫାଷ୍ଟ ହୋଇ ପାରିଲେ ନାହିଁ ବୋଲି ତାଙ୍କ ବାପାଙ୍କ ଭାରି ଦୁଃଖ। ଅନ୍ୟାନ୍ୟ ଚାରିପାଞ୍ଚ ଜଣ ଝିଅ ଅଫିସରଙ୍କର (ପରମାନନ୍ଦ ଆଚାର୍ଯ୍ୟ, ରାଧାନାଥ ମହାନ୍ତି, ଚନ୍ଦ୍ରମାଧବ ସିଂହ, ରାଧାଗୋବିନ୍ଦ ଦାସ) ଝିଅଙ୍କ ସହିତ ସେତେବେଳେ କଟକକୁ ହାଇସ୍କୁଲ ପାଠପଢିବାକୁ ଗଲେଣି। ସେମାନେ ରୂପ୍‌ସା ବା ବାଲେଶ୍ୱରକୁ ଯିବା ଆସିବାକରି ଟ୍ରେନ୍ ଧରିଥାନ୍ତି। ସେଦିନଗୁଡିକ ପବ୍ଲିକ ଇଭେଣ୍ଟ ବୋଲି ବାରିପଦାରେ ଧରାଯାଇଥାଏ।

ଯେଉଁଦିନ ମାଇନର ପରୀକ୍ଷାର ଅଙ୍କପରୀକ୍ଷା ଶେଷ ହେଲା ସେଦିନ ମତେ ପଚରା ପଚରି କରି ହେଡମାଷ୍ଟର ଠିକ୍ କଲେ ଯେ, ତାଙ୍କ ଛାତ୍ର ବୃତ୍ତି ପାଇବ କି ନାହିଁ ? ତାଙ୍କ ଛାତ୍ରମାନେ ଶହେରୁ ଶହେ ନମ୍ବର ରଖିଥିଲାବେଳେ, ମୁଁ ଅତିବେଶି ହେଲେ ଚାଳିଶ କି ବୟାଳିଶ ପାଇବି। କ୍ୟାମିତି ଅଲଗା ପାଠ। ତାର ନମ୍ବର ଅଜ୍ଞେୟ। ମୁଁ ଧରିନେଲି, ମୋର ପଡାପଡି ଶେଷହେଲା। ଅନ୍ୟ ଉପରେ ଦୋଷଦେବାକୁ ଆରମ୍ଭ କଲି। ମୋର ସଙ୍ଗୀତ ଶୀର୍ଷା ସ୍କୁଲ ହେଡମାଷ୍ଟରଙ୍କ ଆତ୍ମୀୟ। ସେ ଧରାଧରି କରି ତାଙ୍କୁ ଫାଷ୍ଟ କରାଇଦେବେ। ଚାରିଆଡେ ଗୁଜବ ହେଲା ଯେ, ଦ୍ୱିତୀୟ ପିଲା ପ୍ରଥମ ହେବ। ବାପା ମନ ଦୁଃଖରେ ରହିଲେ। ତାଙ୍କର ତିନିବର୍ଷର ଚେଷ୍ଟା, ଅର୍ଥ, ଏବଂ ଶିବପୂଜା ବୃଥାଗଲା। କିନ୍ତୁ ଅଳ୍ପ କେତୋଟା ଦିନ ମଧ୍ୟରେ ସଠିକ୍ ସମ୍ବାଦ ଆସିଲା ଯେ ମୁଁ କେନ୍ଦ୍ରରେ ପ୍ରଥମ ହୋଇଛି ଏବଂ ତିନିବର୍ଷ ଯାଏଁ ମାସକୁ ୭ ଟଙ୍କା ଲେଖାଏଁ ବୃତ୍ତି ପାଇବି। ବାପା ପାରେଶ୍ୱର ମହାଦେବଙ୍କ ଜୟଗାନ କଲେ। ଜେଜେବାପା କହିଲେ- "ଭାଗ୍ୟଂ ଫଳତି ସର୍ବତ୍ରମ୍, ନ ବିଦ୍ୟା ନ ଚ ପୌରୁଷଂ"।

ମାଆ ଠାକୁର ଘରେ ଧୂପ ଲଗାଇଦେଲେ। ବାପା ଓ ନନା ଦୁହେଁ ଯାକ ଲୁଗାପଟା ପଖାଳି ପୋଖରିରୁ ଆସିଲେ।

ଗୋବିନ୍ଦ - ଗୋବିନ୍ଦ - ଗୋବିନ୍ଦ
ପଦ୍ମୁଁ ଗଳୁଛି ମକରନ୍ଦ

ସେ ମକରନ୍ଦ ପାନକରି
ଆନନ୍ଦେ ବୋଲ ହରି ହରି
- - - - - - - - - - - -
- - - - - - - - - - - -
ଭଣିଲେ ଜଗନ୍ନାଥ ଦାସ ।

ଗୁଡଟିକେ ପିତ୍ତଳ ଥାଳିଆରେ ଭୋଗ ଦେଇ "ରାଧେୟ ସହ ଗୋବିନ୍ଦ, ଶୟନଂ କୁରୁ ମନ୍ଦିରେ" କହିଉଠିଲେ । ବୋହୂ ପଖାଳ ବାଡିଲେ । ଜେଜେ ଚୁଲି ପାଖରେ ବସିଲେ । ଡଙ୍କାଏ ଅଙ୍ଗରା ଚୁଲି ମୁହଁକୁ ଟାଣି ଆଣିଲେ । ନନା ଓ ବାପା ସାମ୍ନା ସାମ୍ନି କ୍ବଚିତ୍ ବସନ୍ତି । ମାଆ କାହିଁ ନ ଥାଏ; ସର୍ବତ୍ର ଥାଏ । ଗୁଣ୍ଡାଏ ଭାତ ପାଟିରେ ପୂରାଇ ଆରମ୍ଭ କଲା, "ବସନ୍ତ କଥା କି କରିବା ? ବାରିପଦା ଯିବ ?" ବାପା କହିଲେ- "ମୁଁ କି କହିବି ? ସାତଟଙ୍କା ବୃତ୍ତିରେ ସେ ବୋର୍ଡିଂରେ ଚଳାଇ ପାରିବ ? ଆହୁରି ପାଞ୍ଚ ଛଅ ଟଙ୍କା କୁଆଡୁ ଆସିବ ? ଆମ ଚାଷ ଯେମିତି, ଧାର-ଉଧାର ଶୁଝିବାରେ ଧାନ ଶେଷ । ୧୧ ଅଡା ଧାନ ଅମଳ ହେଲେ ୧୮ ଅଡା ଧାନ କରଜ । ଧାନ-ଚାଉଳ ବିକି ପାଠ ପଢାଇ ହେବନାହିଁ ।" ଜେଜେ ବୁଢା କହିଲେ- "ଯାହା କରିବ ଭାବିଚିନ୍ତି କର । ଅଧା ପନ୍ଥୁରିଆ ଯେମିତି ନହୁଏ । ତିନିବର୍ଷ ସିନା ବୃତ୍ତି ମିଳିବ, ସବାଶେଷ ବର୍ଷକୁ ଯଦି ପୁଣି ବୃତ୍ତି ପାଏ ତାହେଲେ ରକ୍ଷା ।" ନନା କହିଲେ- ମୁଁ ଅତିବେଶୀ ହେଲେ ମାସକୁ ତିନିଟଙ୍କା ଦେଇ ପାରିବି । ମୁଁ ତ ଘର ଖର୍ଚ୍ଚ ସବୁ ଦେଉଛି । ପିଆଜ, ରସୁଣ, ସୋଲା, ମୁଗ, ବିରି, ଗୁଡ, ପୋଡାଜିହ୍ବା, ପଣ୍ଡାବିଲରୁ ଆଣି ବର୍ଷଯାକ ଯୋଗାଉଛି । କବିରାଜିରୁ ବା କେତେ ପଇସା ମିଳିବ ।"

ପରଦିନ ପଢ଼ିବା ନ ପଢ଼ିବା ନିଷ୍ପତ୍ତି ଆପେ ଆପେ ହୋଇଗଲା । ସକାଳ ପ୍ରାୟ ୧୦ଟା । ଦୁଇ ଦିନ ଦଳ ତାସ ଖେଳାଳି ମାଗଣ ଖେଳୁଥାନ୍ତି । ଭୂଇଁରେ ବସି, ଗଳିରେ ଠିଆହୋଇ । ଏତିକିବେଳେ ପଣ୍ଡାବିଲାର ଅର୍ଜୁନ ମହାପାତ୍ର ଓ ତାଙ୍କ ପୁଅ-ଲାଲମୋହନ ପେରେଡ କରିବା ଭଙ୍ଗୀରେ ଆମ ଘର ସାମ୍ନା କୂଅଦେଇ ଗୋବିନ୍ଦ ନନ୍ଦଙ୍କ ଦୋକାନ ଆଡକୁ ଚାଲିଗଲେ । ସମସ୍ତଙ୍କ ଲକ୍ଷ୍ୟ ସେହି ବାପ-ପୁଅଙ୍କ ଉପରେ । ବାପ-ପୁଅ ଉଭୟେ ଗୋରା, ଲାଲ ଟକ୍‌ଟକ୍ । ବାପ ଅର୍ଜୁନ ମହାପାତ୍ର କହିଲେ- "ଆମ ଏଇ ଇଲାକାରେ ଆମର ଲାଲ ମୋହନ ପ୍ରଥମେ 'ଏଣ୍ଟ୍ରେନେସ୍' (ଏନ୍‌ଟ୍ରାନ୍‌ସ) ପାସ୍ କରି ମଦ, ଗଞ୍ଜାଇ, ଅପିମ ବିଭାଗରେ କିରାଣୀ ହୋଇଛନ୍ତି କୋଡିଏ ଟଙ୍କାରେ । କୁଳିଅଣାର ଭୁଳାନାଥ ପଣ୍ଡା ଆମ ଲାଲୁର ପୂର୍ବରୁ ପାସ୍ କରିଛନ୍ତି ।" ବାପା ଓ ନନା ଫୁଟାଣି ସହି ପାରନ୍ତି ନାହିଁ । ସେହିଦିନ ରାତି ଭାତ ଖାଇଲା ବେଳକୁ ବାପାଙ୍କୁ ଚାହିଁ ନନା କହିଲା- "କକା ! ଭିକ

ମାଗିବା ବରଞ୍ଚ, ବସନ୍ତକୁ ବାରିପଦାରେ ପଢାଇବା।" ବାପା କହିଲେ- "ବାବା ପାରେଶ୍ୱର ମାଲିକ'।

ପୁଣି ପେଡ଼ିପଟା ସଜବାଜ। ଖଣ୍ଡିଏ ୩୯ ଇଞ୍ଚିଆ ମାଞ୍ଚେସଟାର ଧୋତି, ଗୋଟିଏ ଗେଞ୍ଜି, ଗୋଟିଏ ପୂରାହାତ ସଫେଦ ସାର୍ଟ, ମୁଠାଏ ଦାନ୍ତକାଠି, କାବୁଲିବାଲା ପାଖରୁ ନନା ଧାରରେ କିଣିଥିବା ଗୋଟିଏ କଳା ପଶମ ଚାଦର। ସର୍ବୋପରି ବୁକୁଳାଏ ମୁଢ଼ି। ଦି'ମୁଠା ଚିନି। କେଁତେ ଫଡ଼ା ପିଆଜ। ଖୁବ୍ ଶସ୍ତାଦରରେ ନୂଆଧାନ ବିକି (ଟଙ୍କାକରେ ଚାଉଳ ୩୫/୪୦ ସେର) ୧୦ କି ୧୫ ଟଙ୍କା ଧରି ନନା ସାଙ୍ଗରେ ବାହାରିଲୁଁ। ନନାର ଖଣ୍ଡିଏ ହାଫ୍‌ସାର୍ଟ ଥିଲା। ବାପାଙ୍କର କିଛି ନାହିଁ, ଖାଲିଦେହ। ନନା ସେପାଇଁ ମୋତେ ହାଇସ୍କୁଲକୁ ଛାଡିବାର ଯୋଗ୍ୟତା ଅର୍ଜନ କରିଥିଲେ। ୯ଟା ୧୭ରେ ରାଜାଲୋକାରେ ଟ୍ରେନ। ବିଲ୍‌ବାଟ ତିନି ମାଇଲରୁ ସାମାନ୍ୟ ଉର୍ଦ୍ଧ୍ୱ। ରାଜାଲୋକା ବଡଗାଁ। ସର୍ଦ୍ଧାରଙ୍କ ଜଗନ୍ନାଥ ମନ୍ଦିର ପର୍ଯ୍ୟନ୍ତ ବଜାର ଭିତରେ ଚାଲିଚାଲି ଯାଇ ଜାଗିରି ଅର୍ଜନ କରିଥିଲେ। ଆମର ଦଦେଇ ପୃଥୁନାଥ। ଲୋକନାଥଙ୍କ ଘର ଆଗରେ ଆମର ରାସ୍ତା। ଚାରିବର୍ଷ କାଳ ବାରିପଦା ରହଣି ଭିତରେ ଏ ଦୁହିଁଙ୍କ ଘରେ ମୁଡି, ଦହି ଭୋଜନ କରିଛି। ସେମାନେ ଦୁହେଁ ଅପୁତ୍ରିକ। ଭଞ୍ଜପୁର ଷ୍ଟେସନ ୧୭ ମାଇଲ, ଭଡା ସାଢେ ୫ ଅଣା।

ଏହା ପୂର୍ବରୁ ମାମୁଁଘରକୁ ଅନେକ ଥର ଯାଇଥିଲି, ଆଗେ ବୁଡାମରାରେ ଟ୍ରେନ ଧରୁଥିଲି, ଏବେ ରାଜାଲୋକାରୁ ଧରୁଛି। ଚଲାରାସ୍ତା ୩ମାଇଲ କମିଯାଇଛି। ଭଞ୍ଜପୁର ଷ୍ଟେସନରୁ ସ୍କୁଲକୁ ପ୍ରାୟ ମାଇଲେ ରାସ୍ତା। ବଳଦେବ ବାବୁଙ୍କର ଗୋଟିଏ ଘୋଡାଗାଡି ଥାଏ। ସେତେବେଳେ ଉଭୟ ବାରିପଦା ଓ ଭଞ୍ଜପୁର ଷ୍ଟେସନରୁ ଯା-ଆସ କରୁଥିଲା ଯାତ୍ରୀମାନଙ୍କୁ ନେଇ। ନନା ଦଶ, ବାର ବର୍ଷର ଛୁଆଟିଏ। କୁଲି କଲା ପେଡିପେଟା ବହିବା ପାଇଁ। ବାପା ହେଇଥିଲେ ଦଶପଇସା ନଦେଇ ନିଜେ କାନ୍ଧରେ ପେଡ଼ିପଟା ବୋହି ନେଇଯାଇଥାନ୍ତେ। ଏହି ଛୋଟ ଟ୍ରେନ୍‌ଟି ମୟୂରଭଞ୍ଜକୁ ପୁରୀ, କଟକ, କଲିକତା ସହିତ ଯୋଡେ। ବଡ ଟ୍ରେନ୍‌ଟି ରୂପ୍‌ସା ଷ୍ଟେସନରେ ଧରାଯାଏ। ଯେଉଁମାନେ କଟକରେ ଆଇ.ଏ, ଆଇ.ଏସି, ବି.ଏ. ଓ ମେଡିକାଲ ସ୍କୁଲରେ ପାଠ ପଢିବେ, ସେମାନେ ସଞ୍ଜସାତଟାରେ ରୁପ୍‌ସାରେ ପେସେଞ୍ଜର ଧରି ରାତି ଦୁଇତିନିଟା ବେଳକୁ କଟକ ପହଞ୍ଚିବେ।

ଏ ଟ୍ରେନର ଇତିହାସ ଭୂଗୋଳ ଅନେକ। ୧୯୦୩/୪ ସାଲରୁ ଏହା ଦୁଃଖେସୁଖେ ଚାଲିଛି। ଏହି ଟ୍ରେନ୍‌ଟିରେ ମହାରାଜା ଶ୍ରୀରାମଚନ୍ଦ୍ର ତକିଆ ଖଣ୍ଡିଏ ଧରି କଟକ, କଲିକତା ଯାଆ-ଆସ କରୁଥିଲେ। ଏହି ଟ୍ରେନରେ ପି.କେ. ସେନ୍ ଦେଵାନଙ୍କ ବିରାଟ

ଲାଇବ୍ରେରୀ ବୁହାହୋଇ ବାରିପଦା ଆସିଥିଲା । ଏହି ଟ୍ରେନର ବାଙ୍ଗିରିପୋଷିରୁ ତାଳବନ୍ଧ ପର୍ଯ୍ୟନ୍ତ ଏକ୍‌ସଟେନସନ୍‌ପାଇଁ ଯେଉଁ ରେଳବାଇ କର୍ମଚାରୀ ଆସିଥିଲେ, ସେହିମାନଙ୍କ ପାଇଁ କୃଷ୍ଣଚନ୍ଦ୍ରପୁର ପାଖ ଜଙ୍ଗଲରେ ଯେଉଁ ଭାଲୁଶିକାର ହୋଇଥିଲା, ସେହିଥିରେ ନିଜର ଶାଳକଙ୍କ ଗୁଳିରେ ମହାରାଜା ଶ୍ରୀରାମଚନ୍ଦ୍ର ଟଳିପଡିଥିଲେ। ଏହାରି ସମୟରେ ଆଉ ଗୋଟିଏ ଟ୍ରେନ ବାଦାମପାହାଡରୁ ଗୋରୁମହିଷାଣି ଦେଇ, ଲୁହାପଥର ନେଇ ଟାଟା ନଗର ଯାଇଛି । ଲୁହାପଥର ଖାଦାନ ଉଠିଲା, କାଠ ସରିଲା, ଛୋଟ ରେଳଲାଇନ ଉଠିବ ଉଠିବ ହେଉଛି । ଅତି କମରେ ଦଶ୍‌ବର୍ଷ ହେଲେ ଛୋଟ ରେଳଟି ଆମକୁ ଶିକ୍ଷା, ସଭ୍ୟତା ଅର୍ଥ ସବୁ ଦେଇଛି; ଲାଭ ହେଉନି ବୋଲି ଉଠାଇ ଦେବ ? ବସ୍‌ରୁ ଲାଭ ହେଉନି ବୋଲି କେହି ବସ୍ କର୍ପୋରେସନ ଉଠାଇ ଦେବ ? ପ୍ରସଙ୍ଗ କ୍ରମେ ସାତକଡି ହୋତାଙ୍କ କଥା ମନେପଡେ। ଏକଦା ପାଣ୍ଡବା ୟୁ.ପି. ସ୍କୁଲର ଛାତ୍ର ହୋଇ ଦିନେ ସେ ରେଳବାଇ ଜେନେରାଲ ମେନେଜର ହେଲେ। ସେ ଯେବେ ମୟୂରଭଞ୍ଜରେ ତାଙ୍କ ଘରକୁ ପ୍ରାଇଭେଟ ବା ସରକାରୀ କାମରେ ଆସନ୍ତି, ଲୋକେ ଆଶା କରନ୍ତି, ଏଥର ବଡଲାଇନ ହେବ। ଏବଂ ରୁପ୍‌ସା ଟାଟା ଯୋଡିହୋଇଯିବ। କେତେକେତେ ପ୍ରତିଶ୍ରୁତି ମୟୂରଭଞ୍ଜବାସୀ ପାଇଛନ୍ତି। ଶ୍ରୀଯୁକ୍ତ ହୋତା ଅବସର ନେଲେଣି। ରେଳଲାଇନ ଉଠିଯିବ କି ନଯିବ, କି ବଡ ହେବ, ସେହି ହେଲା ଆଜିର ପ୍ରଶ୍ନ।

ସିଧା ପହଞ୍ଚିଗଲୁଁ ୧୯୦୪-୫ରେ ସ୍ଥାପିତ ଫ୍ରେଜର ହଷ୍ଟେଲରେ। ରାଣୀଗଞ୍ଜି ଟାଇଲ ଛାତ ଉପରେ ସିମେଣ୍ଟରେ ବଡବଡ ଅକ୍ଷରରେ ପ୍ରାୟ ଶହେ ଫୁଟ ଜାଗାରେ ବାରଟି ଅକ୍ଷର ଲେଖା ଯାଇଛି। ପେଡିପୁଟୁଳା ଧରି ସେ ହଷ୍ଟେଲରେ ପହଞ୍ଚିଲୁଁ। ଏହିଠାରେ ଚାରୋଟି ବର୍ଷ କଟାଇବାକୁ ପଡ଼ିବ, ଯଦି ଶେଷ ବର୍ଷପାଇଁ ଦଶଟଙ୍କିଆ ବୃତ୍ତି ପାଏ।

ସେଡ଼ିଟି ୨ନମ୍ବର ରୁମ୍‌ରେ ରହୁଥିବା ଗାଁ ପିଲା ପାଖରେ ରଖି ସ୍କୁଲ ଅଫିସ୍‌କୁ ଗଲୁ। ଗୋଟାଏ ମିନିଟ୍‌ରେ ଏଡ୍‌ମିସନ୍ ସରିଗଲା। Fees କିଛି ପଡ଼ିଲା ନାହିଁ, କାରଣ ମୁଁ ବୃତ୍ତିଭୋଗୀ ଛାତ୍ର। Game fee ଆକାରରେ ମୋତେ ଅଣାଏ କି ଦି' ଅଣା ଦେବାକୁ ପଡ଼ିଥିଲା। ଏଡ୍‌ମିସନ୍ ପରେ ହେଡ୍‌ମାଷ୍ଟର ମୋତେ ଡକାଇଲେ। ତାଳୁରୁ ତଳିପା ପର୍ଯ୍ୟନ୍ତ ଚାହିଁଗଲେ। ପରେ ଜାଣିଲି, ସେ କାହିଁକି ମୋତେ ଏମିତି ଆଖିରେ ଚାହିଁଲେ। କଲ୍ୟାଣୀ ବୋଲି ତାଙ୍କ ଝିଅଟିଏ, ମୋରି ସାଙ୍ଗରେ M.E. ପରୀକ୍ଷା ଦେଇଥାଏ। ଦେଖିବାକୁ କୁଆଡ଼େ ଭାରି ସୁନ୍ଦରୀ। ପରୀକ୍ଷାରେ ମୁଁ ଫାଷ୍ଟ ହେଲି। ସେ ନମ୍ବରେ କି ଦୁଇ ନମ୍ବର ପାଇଁ ସେକେଣ୍ଡ ହୋଇଗଲା। ସେତେବେଳେ ସହଶିକ୍ଷାର ବ୍ୟବସ୍ଥା ନଥିଲା। ସେମାନେ ତିନି ଚାରିଜଣ ବଡ଼ଲୋକଙ୍କ ଝିଅ ଟ୍ରେନ୍‌ରେ କଟକ ଯାଇ ରେଭେନ୍‌ସା ଗାର୍ଲସ୍ ସ୍କୁଲରେ ଉଚ୍ଚ

ଇଂରାଜୀ ପାଠ ପଢ଼ିଲେ। ହେଡ୍‌ମାଷ୍ଟର ମୋତେ ଭଲ ଭଲ ପିଲା ଥିବା କୋଠରୀରେ ରହିବାକୁ ସ୍ଥାନ ଦେଲେ।

ମୋର ଲଣ୍ଠନ ଇତ୍ୟାଦି ନଥିଲା। ୧୯୨୯ ସାଲ୍‌ରେ ପାଣି ଆଉ electricity ହଷ୍ଟେଲକୁ ଆସିଲା। ପୃଥିବୀର ସପ୍ତାଶ୍ଚର୍ଯ୍ୟ ଭିତରୁ ଏଇ ଯୋଡ଼ିଏ ପ୍ରଥମ ଆଶ୍ଚର୍ଯ୍ୟ ପରି ଆମକୁ ଜଣାଗଲା। ବୋର୍ଡ଼ିଂରେ ସେତେବେଳେ ସୁପରିନ୍‌ଟେନ୍‌ଡେଣ୍ଟ ଦୁଇଜଣ। ଅନ୍ୟମାନେ ବଦଳ ହୁଅନ୍ତି, କିନ୍ତୁ ବଙ୍ଗାଳୀ ପଣ୍ଡିତ ବଦଳ ହୁଅନ୍ତି ନାହିଁ। ବଙ୍ଗଳା ପଣ୍ଡିତଙ୍କ ପାଇଁ ପୁଣ୍ଟି ବା ଟେଙ୍ଗରା ମାଛ ନିଶ୍ଚୟ ରନ୍ଧା ହେବ। ତାଙ୍କପାଇଁ ଗୋଟିଏ ପାଇଖାନା ଥାଏ, ଫୁଟବଲ ପଡ଼ିଆର ଉତ୍ତର ପାଖରେ। ଆଉ ଜଣେ ଛାତ୍ର, ମୋର ସାଙ୍ଗ, ଭଗବାନ ପଣ୍ଡା ମଧ୍ୟ ସେଇ ପାଇଖାନା ବ୍ୟବହାର କରୁଥାଏ। ଏ ଦୁଇଜଣଙ୍କ ଛଡ଼ା ଅନ୍ୟସବୁ ଅନ୍ତେବାସୀ ନଈକୁ ଯାଉଥିଲେ।

ସରାଳୀ ଜରାଳୀ ଚୈବ, ବୁଢ଼ାବଳଙ୍ଗ ତଥୈବଚ୍
ଚିପଟେ କରତେ ସ୍ନାନ, ପୁନର୍ଜନ୍ମ ନ ଲଭ୍ୟତେ।

ଯୋଡ଼ିଏ ପଣସ ଗଛ ଏବଂ ଗୋଟିଏ ଆମ୍ବ ଗଛ ଗ୍ରୀଷ୍ମ ଛୁଟିର ପୂର୍ବଦିନ ଗୁଡ଼ିକପାଇଁ ଖାଦ୍ୟ ଯୋଗାଏ। ଦଇତାରି ବାବୁ କାଣ୍ଠଲ ବା କଞ୍ଚା ପଣସ। ତରକାରୀର ଉଚ୍ଚ ପ୍ରଶଂସା କରନ୍ତି ଓ ମଝିରେ ମଝିରେ ଗୋଟାଏ ଦୁଇଟା ପଣସ ଘରକୁ ନେଇଯାନ୍ତି। ଚୈତନ୍ୟ ଓ ଅଭିନ୍ନ ବର୍ଷବର୍ଷ ଧରି ଘରଦ୍ୱାର ଛାଡ଼ି ମୟୂରଭଞ୍ଜର କେତେଗୁଡ଼ିଏ ପିତୃମାତୃହୀନ ଛାତ୍ରଙ୍କୁ ପାଳୁଛନ୍ତି। ମାସକୁ ସାତଆଠ ଟଙ୍କା ଦରମାରେ। ସେମାନେ ବକ୍‌ସିସ୍ ମାଗନ୍ତିନି। ସକାଳ ସ୍କୁଲରେ ଆଠଟାରେ ବିରତି ହେଲା ବେଳକୁ, କଞ୍ଚା ଶାଳ ପତ୍ରରେ ଭାଗ ଭାଗ କରି ଥୁଆହୋଇଥିବା ଚୈତନ୍ୟ ଓ ଅଭିନ୍ନ ହାତର ମହନ ଭୋଗ ମର୍ତ୍ତ୍ୟରେ ମା'ମାନେ ବା ସ୍ୱର୍ଗରେ ଦେବତାମାନେ ଦେଇପାରିବେ ନାହିଁ। ଚାକର ଟୋକାଟା ବଗୁଲିଆ। ବଜାର ସଉଦାରୁ ପଇସା ମାରିଦିଏ, ଖୁର ମୁହାଁ ଏବଂ ତରଫ ନିଏ। ଗିରୀଶ ପଣ୍ଡା ପାଖରୁ ପଇସା ପାଏ ବୋଲି, ତାକୁ ବହୁତ ମାନେ। ଯାହାହେଉ ଏଇ ଫ୍ରେଜାର ହଷ୍ଟେଲଟି ଶହଶହ, ହଜାର ହଜାର ପିଲାଙ୍କୁ ଗୋଟିଏ ଶତାବ୍ଦୀ ଧରି ଶିକ୍ଷା ତ ଦେଇଛି, ତାଠୁ ବେଶି ମନୁଷ୍ୟତା ଶିଖେଇଛି।

କେତେ ବଡବଡ ଲୋକ, ଅତିକମ୍‌ରେ ଆଇ.ସି.ଏସ୍ ଜଣେ, ବାରିଷ୍ଟର ଜଣେ, ଆଇ.ଇ.ଏସ୍ (ଶ୍ୟାମ ଚନ୍ଦ୍ର ତ୍ରିପାଠୀ) ଜଣେ, ପ୍ରଖ୍ୟାତ ପ୍ରତ୍ନତାତ୍ତ୍ୱିକ ଜଣେ, ଇନ୍‌ସପେକ୍‌ଟର ଜେନେରାଲ ଅଫ ପୋଲିସ ପରେ ଅନ୍ୟୂନ ୩/୪ ଜଣ ଆଇ.ଏ.ଏସ,

ଆର୍.ଡି.ସି, ଏହି ସ୍କୁଲରୁ ବାହାରିଛନ୍ତି। ସୁରେନ୍ଦ୍ର ନାଥ ସରକାର ଏହି ସ୍କୁଲ ହେଡମାଷ୍ଟର ଥାଇ, ମହାରାଜା ଶ୍ରୀରାମଚନ୍ଦ୍ରଙ୍କର ଅତି ନିର୍ଭରଯୋଗ୍ୟ ଚିତ୍ତାକର୍ଷକ ଜୀବନୀ ଲେଖିଛନ୍ତି, ଯାହା ଉପନ୍ୟାସ ପରି ସୁଖପାଠ୍ୟ।

ପ୍ରଥମେ ସ୍ଥାପିତ ହେଲାବେଳେ ସ୍କୁଲର ନାମ ଥିଲା ମୟୂରଭଞ୍ଜ ଇଂଲିଶ ହାଇସ୍କୁଲ। ଆମେ ସେହି ସ୍କୁଲ ଛାଡିବାପରେ, ଏବେ ତାର ନାମ ହେଲା ଏମ୍.କେ.ସି. ହାଇସ୍କୁଲ। ବାହାର ଲୋକେ ମହାରାଜା କୃଷ୍ଣଚନ୍ଦ୍ରଙ୍କ ନାମ ଖୋଜି ପାଇବେନି। ଆଗରୁ ଅନୁଷ୍ଠାନ ଗୁଡିକ ଗାଁ, ସହର ନାମରେ ନାମିତ ହେଉଥିଲା। ଏବେ ବ୍ୟକ୍ତିବିଶେଷଙ୍କ ନାଁରେ (ଅଶିକ୍ଷିତ) ନିରକ୍ଷର୍ ହେଲେ ବି ଅର୍ଥ ବଳରେ ନାମିତ ହୋଇପାରୁଛି। ଆମ ଗାଁର ୧୦୦ ବର୍ଷ ପୁରୁଣା ସ୍କୁଲ ନାମ ଅଦ୍ୟାପି ପାଣ୍ଡଡା ୟୁ.ପି. ସ୍କୁଲ ରହିଛି; କିନ୍ତୁ ପାଖର ମଧ୍ୟଇଂରାଜୀ ସ୍କୁଲର ନାମ ହେଲା- ମହାଦେବଙ୍କ ନାଁରେ, ପାରେଶ୍ୱର ମ.ଇ. ବିଦ୍ୟାଳୟ। ତା ପାଖ ହାଇସ୍କୁଲର ନାମ ହରିଶ୍ଚନ୍ଦ୍ର ବିଦ୍ୟାମନ୍ଦିର। ଯେଉଁ ଛାତ୍ର ଅତି ଭାଗ୍ୟବାନ୍, ସେହି କେବଳ ଏହି ଅନୁଷ୍ଠାନରେ ପଢିବା ଯୋଗ୍ୟତା ଅର୍ଜନ କରିବ। ପ୍ରାୟ ଆଠ ହଜାର ବର୍ଗ ମାଇଲ ଜାଗା ଭିତରେ ଏଇଟି ଗୋଟିଏ ହାଇସ୍କୁଲ। ମୟୂରଭଞ୍ଜ ଚାରିହଜାରରୁ ଉର୍ଦ୍ଧ୍ୱ, କେଉଁଝର ପ୍ରାୟ ସେତିକି। ମୟୂରଭଞ୍ଜ, କେଉଁଝର ଓ ନୀଳଗିରି- ଏହି ତିନୋଟି ଦେଶୀୟ ରାଜ୍ୟପାଇଁ ମାତ୍ର ଗୋଟିଏ ହାଇସ୍କୁଲ। ଶିକ୍ଷାର ପ୍ରସାର ଓ ପ୍ରଚାର ସାହେବଙ୍କ ଅମଳରେ ବା ରାଜାରାଜୁଡାଙ୍କ ସମୟରେ କେତେ ଥିଲା, ଏହିଥିରୁ ଅନୁମାନ କରିହେବ।

ବେଲ୍ ଗଡିଆ କୋଠି, ଝିଞ୍ଜିରି ବନ୍ଧ, ଅମ୍ବିକା ମନ୍ଦିର। ଜୟ ଜ୍ୱାଳାମୁଖୀ, ପୁଣ୍ୟପୀଠ, ଶୈଳ ରାଜ ନନ୍ଦିନୀ ଶ୍ଳୋକଟି ଅଦ୍ୟାପି ରହିଛି। ବୈଦ୍ୟନାଥ ଭଞ୍ଜ ଜଗନ୍ନାଥ ମନ୍ଦିର ପୁରୀ ମନ୍ଦିରକୁ ଯାଇଥିଲେ। ସେଠି କୁଆଡେ ତାଙ୍କୁ ସ୍ୱପ୍ନାଦେଶ ହେଲା- ମନ୍ଦିର ସେ କରିପାରନ୍ତି। ମାତ୍ର ପୁରୀ ମନ୍ଦିରଠାରୁ ଉଚ୍ଚତା ହାତେ କମ୍ ହେବ। ଏବଂ, ଦିନେପରେ ରଥଯାତ୍ରା ହେବ। ରାଣୀବାଗ, ମଧୁବନ୍, ଷ୍ଟେସନ ବନ୍ଧ ପାଖରେ। ଚାଉଳ କଳ ଏବଂ ବାରୁଣୀ ଘାଟ ଆଦି ଅନ୍ୟାନ୍ୟ ଦର୍ଶନୀୟ ସ୍ଥାନ। ଏଇ ବାରୁଣୀ ଘାଟ ସର୍ବସାଧାରଣ ଶ୍ମଶାନ ରୂପେ ବିଦିତ। ସବୁଠାରୁ ଭଲ ଦୃଶ୍ୟ ହେଲା- ସୂର୍ଯ୍ୟାସ୍ତ ବେଳର ସୁଦୀର୍ଘ ପ୍ରସାରୀ ନୀଳାଭ ଶିମିଳିପାଳ ପର୍ବତ ଯେମିତି ଚକ୍ଷୁ ତୃପ୍ତି କର, ସେମିତି grand ଏବଂ magestic।

ଆଜି ପାଣ୍ଡଡ଼ାର ବାର-ତେର ବର୍ଷର ପିଲାଟିଏ ହୋଇ, ଏହାରି ଦ୍ୱାର ଦେଶରେ ଛିଡା ହୋଇଛି। ପରଦିନ କ୍ଲାସରେ ଯାଇ ବସି ସେ ପିଲାଟି ଦେଖିଲା, ତାର ଶୀର୍ଷା ସ୍କୁଲର

ସାଙ୍ଗସାଥୀ କେହିନାହିଁ । ଆର୍ତ୍ତତ୍ରାଣ ମିଶ୍ର (ସଙ୍ଗୀତ, ଯେ ତିନିବର୍ଷ ବିନା ପଇସାରେ ମୁଢ଼ି ଦେଇଛନ୍ତି) ନାହିଁ । ସାଧୁ ପାତ୍ରୀ (ଯେ ହାଣ୍ଡିପିଟା ଦୌଡ଼ରେ ନିହାଣ ପୁରସ୍କାର ନେଇଗଲା) ନାହିଁ । ପରମା କର (ଯେ ଉଭୟ ପାଠ୍ଠତା ଓ ଶିର୍ଷା ସ୍କୁଲରେ ସାଥୀ) ନାହିଁ । ସୁକଦେବ ଦଣ୍ଡପାଟ (ଯେ ତାହା ଫେଲ ହେଲା) ନାହିଁ, ରଘୁନାଥ ମାଝୀ (ଯେ ବନ୍ଧାକୋବିପାଇଁ ପୁରସ୍କାର ପାଇଥିଲା ଏବଂ ମାଇନର ପଢୁଥିବା ବେଳେ ପୁଅର ନାମ ବୁଣା ତକିଆ ଖୋଳ ଦେଖି ଶୋଉ ଥିଲା ଏବଂ ହେଡପଣ୍ଡିତଙ୍କ ଘରେ କାମ କରୁଥିଲା) ନାହିଁ । ପାଞ୍ଚଟି ମାଇନର ସ୍କୁଲର ସତୁରୀ ପିଲା ଭିତରୁ ୧୫/୨୦ ଜଣ ଅଷ୍ଟମ ଶ୍ରେଣୀ ପର୍ଯ୍ୟନ୍ତ ଆସିଥିଲେ । ସେହି ଭିତରୁ କେହି କେହି ୭୫ ମାଇଲ ଦୂର ଗାଁରୁ ଚାଲିକରି ଆସିଥିଲେ । କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ୯୦ ମାଇଲ ଦୂର ଖିଚିଂରୁ ଘୋର ଅରଣ୍ୟ ମଧ୍ୟଦେଇ ବାଘ, ଭାଲୁ ହାତୀ ଅଞ୍ଚଳ ଦେଇ ବାରିପଦା ଆସୁଥିଲେ । ୧୦ ଦିନ୍‌ରୁ କମ୍ ଛୁଟିହେଲେ ସେମାନେ ଘରକୁ ଯାଇପାରୁ ନଥିଲେ ।

ଏହି ହେଲା ବାରିପଦା ଇଂଲିସ ହାଇସ୍କୁଲ । "ବାରିପଦା ହାଇସ୍କୁଲ, ଦେଖିତେ ବଡ beautiful" । ତାହା ନ ହେବ କାହିଁକି ? ସାଇବ ଅମଳର କୋଠା, ସାଇବ ଅମଳର ବାଗବଗିଚା । ଏହାର ନାମ ପରା ଗୋଲାପ ବାଗ । ବିରାଟ ଦୋତାଲା ଘର । କୁତବ ମୀନାର ପରି ଏକ ସିଡ଼ି ଘର । ଏହି ଘର ସ୍କୁଲପାଇଁ ଉଦ୍ଦିଷ୍ଟ ନୁହେଁ । ମେନେଜର ଓ୍ୱାଲି ସାହେବ, ଗାଡିଆନ ଓ ଟିଉଟର କିଡେଲ ସାହେବଙ୍କ ରହିବା ଘର । ଉପର ମହଲାର ହଲରେ କୁଆଡେ ବଲ ଡେନ୍ସ ହେଉଥିଲା । ଘର ଆଗରେ ବିରାଟ ପୋର୍ଟିକୋ । ଇଂରାଜୀ ମଡେଲର ଘର । ଦରକାର ପଡିଲେ ଉପର ମହଲାର ହଲଟାକୁ ତିନିଭାଗ କରି କ୍ଲାସ କରାଯାଇପାରେ । ତଳ କୋଠରୀ ଦୁଇଟାରେ ଅଷ୍ଟମ ଓ ନବମ ଶ୍ରେଣୀ ବା ଅଷ୍ଟମ ଶ୍ରେଣୀର ଦୁଇଟି- ବିଭାଗ 'ଏ' ଓ 'ବି' କରାଯାଇପାରେ । ପାଖ ଛୋଟିଆ ଘରଟା ହେଡମାଷ୍ଟରଙ୍କର ଅଫିସ୍ । ତା ପାଖକୁ ପୂର୍ଣ୍ଣବାବୁ ହେଡ କ୍ଲାର୍କଙ୍କ ଅଫିସ ବା ସ୍କୁଲ ଅଫିସ । ଚକରା ଆଉ ସୁନ୍ଦରା ଦୁଇ ପିଅନ । ଚକରା ହେଡ୍ ମାଷ୍ଟରଙ୍କ ଘରେ ଘରକାମ କରେ । ସନ୍ଦରା ଯୁଆଳିଆ ନିଶା ବନ୍ଦାକୋର୍ଟ ଘୋଡିଲେ, ସେ ପ୍ରିଭି କାଉନ୍‌ସିଲର ପରି ଦିଶେ । ପୂର୍ଣ୍ଣବାବୁ ହେଡ କ୍ଲାର୍କ ନିନ୍ଦୁକମାନେ ତାଙ୍କୁ ସିମ୍ପି ବା ସିମ୍ପାଜୀ ବୋଲି ଡାକନ୍ତି । ତାଙ୍କ ପୁଅ ଶୀର୍ଷାରେ ମୋ ତଳ କ୍ଲାସରେ ପଢୁଥିଲା । ଆମ ଦୁହିଁଙ୍କ ବନ୍ଧୁତା ଚିରସ୍ଥାୟୀ ହେଇଥିଲା । ଗୋଲାପ ବାଗର ସାହେବଙ୍କପାଇଁ ଉଦ୍ଦିଷ୍ଟ ଘରକୁ ହାଇସ୍କୁଲରେ ପରିଣତ କରିବା ଯାହା, ପରବର୍ତ୍ତୀ କାଳରେ ରାଜବାଟୀକୁ ପୂର୍ଣ୍ଣଚନ୍ଦ୍ର କଲେଜରେ ଏବଂ ହଷ୍ଟେଲରେ ପରିଣତ କରିବା ତାହା ।

ପ୍ରଧାନ ଫାଟକରୁ ସ୍କୁଲ ଘର ଯାଏଁ ଦୁଇଧାଡି ମହାନିମ ଗଛ। ବିରାଟ ବିରାଟ କଳାକଳା ଗଣ୍ଡି। ରାସ୍ତା ମଝାମଝି ସ୍ଥାନରେ ଖଣ୍ଡେ ଦୂରରେ ଅନନ୍ତ ନାଗେଶ୍ୱର ଗଛଟିଏ। ସେ ଗଛ ଆମ ଜାଣିବାରେ ଅଦ୍ୱିତୀୟ। ଖୁବ୍ ଉଚ୍ଚ, ଖୁବ୍ ମୋଟା। ଓଡିଶାରେ ଆଉ କେଉଁଠି ହେ ଟଛ ନାହିଁ । ସେନେଇ ବହୁଦିନ ଧରି ଆମ ମନରେ ଗର୍ବ ଥିଲା। ଅନନ୍ତ ନାଗେଶ୍ୱର ଫୁଲର ଛୋଟ ଶିବ ଲିଙ୍ଗଟିକୁ, ଶହେ ଫଣା ଥିବା ନାଗଟିଏ ତାଙ୍କି ରଖିଥାଏ। ଏତେ ସୁନ୍ଦର ସୁବାସିତ ଯେଉଁ ଗଛର ଦ୍ୱିତୀୟ ନାହିଁ ବୋଲି ଆମର ଭୁଲ ଧାରଣା ଥିଲା, ତାହା କାଳକ୍ରମେ ଆମ ମନରୁ ଚାଲିଗଲା। ଆମେ ଯୋଡାଏ ଗଛ ରାଣୀବାଗରେ ଦେଖିଲୁ। ଆଶ୍ଚର୍ଯ୍ୟ କଥା- ଅନନ୍ତ ନାଗେଶ୍ୱର ଗଛର ମଝି ଗଣ୍ଡିରେ ଗୋଲଗୋଲ ପେଚ୍ଛା ପେଚ୍ଛା କଢ଼ ସହିତ ବିଚିତ୍ର ଫୁଲ ହୁଏ। ଉପର ହଳଦି; ଭିତର ଲାଲ; ମଝିରେ ଗୋଟିଏ ଖୁବ୍ ଛୋଟ ଶିବଲିଙ୍ଗ। ଫୁଲଟି ଯେମିତି ସୁନ୍ଦର, ସେମିତି ସୁବାସିତ। ବହୁଦୂର ପର୍ଯ୍ୟନ୍ତ ତାର ମହକ ସକାଳ ପବନରେ ଭାସିଯାଏ। ପ୍ରଚାରକ ଅନନ୍ତ ମିଶ୍ର, ଗୋପବନ୍ଧୁଙ୍କ ସାଙ୍ଗ- ଅନେକ ଥର ସେଇ ଗଛ ମୂଳରେ ବକ୍ତୃତା ଦେଇଛନ୍ତି। ଛାତ୍ର ଜୀବନରେ କର୍ତ୍ତବ୍ୟ : ବିଷୟ। ଥରେ ବକ୍ତୃତା ଦେଇସାରି ସେ ସାରାଂଶ ଲେଖିବାକୁ କହିଥିଲେ। ଯେଉଁ କେତୋଟି ଟଙ୍କା ପୁରସ୍କାର ଘୋଷଣା କରିଥିଲେ, ତାହା ମୋତେ ମିଳିଥିଲା। ସେହି ଗଛରେ ମହାରାଜାଙ୍କର ବାର୍ଥ ଡେ ଦିନ ଟ୍ରେକାର୍ ହାଣ୍ଡି ହୁଏ ଏବଂ ଆନୁସନ୍ଧାନ କରିବାକୁ ଥିବା ଶଢଟି ସେହି ଗଛର ପତ୍ରକଢରେ ଥାଏ। ପରେ ପରେ ଆଉ କେତୋଟି ଗଛ ବାଲେଶ୍ୱରରେ ଦେଖିବାକୁ ମିଳିଲା। ଏହି ଆଶ୍ଚର୍ଯ୍ୟ ଗଛଟି ମୋ ମନରେ ଗଭୀର ରେଖାପାତ କରିଛି।

ସ୍କୁଲ ପରିସରଟି ଯେମିତି ପରିବ୍ୟାପ୍ତ, ସେମିତି ରମଣୀୟ। ଯାକୁ ଜନସାଧରଣ ଏବେ ବି ଗୋଲାପବାଗ କହୁଛନ୍ତି। ଏ ଗାର୍ଡେନ ଓଫ ରୋଜେସର ମ୍ୟାନେଜର ଓ୍ୱାଲି ସାହେବ ଓ ରାଜକୁମାରମାନଙ୍କ ଅଭିଭାବକ ଜିଡେଲ ସାହେବ ଅମଳର। ସାହେବି ଢଙ୍ଗରେ ବଙ୍ଗଳା ପେଟାର୍ନ। ପରିସର ମଝିରେ ଥିବା ଦୋ ତାଲା ଟାଇଲ ଘରଟି କାଳକ୍ରମେ ହାଇସ୍କୁଲରେ ପରିଣତ ହୋଇଛି। ଗୋଟାଏ ଟେନିସ ପଡିଆ। ଆହୁରି ଦୁଇଟି ଟେନିସ ପଡିଆ ଉତ୍ତର ପାଖକୁ ଥିଲା। ଅନାଥ ଆଶ୍ରମ ପାଖରେ। ଆହୁରି ଉତ୍ତରକୁ ଖୁବ୍ ବଡ ବଡ ଲୁହା ବିମ୍- ଯେଉଁଗୁଡାକ ବଳଙ୍ଗ ନଦୀର ଅସ୍ତିଆ ଘାଟ ପାଖରେ ଥିଲା। ପୋଲ ହେବାପାଇଁ ଉଦ୍ଦିଷ୍ଟ।

ଉଲ୍ଲେଖନୀୟ ଗଛ ଲତା ଭିତରେ ତିନି, ଚାରୋଟି ଗଛ କଥା ମନେପଡୁଛି। ଗୋଟିଏ ହେଲା ହଳଦିଆ ଭେନିସ୍ତା ଲତା। ଲମ୍ବା ଲମ୍ବା ପେଚ୍ଛା ପେଚ୍ଛା ଗାଢ ହଳଦିଆ

ଫୁଲ ଆମ୍ବ ଗଛରୁ ଝୁଲି ରହିଥାଏ । ଅକସ୍ର ଫୁଲ ତଳେ ବୁଣିହୋଇ ପଡିଥାଏ । ଅକଗର ସାପ ପରି ମୂଳଟା ମୋଟା । ହଷ୍ଟେଲ ପାଖ ଗୁରୁ ଟ୍ରେନିଙ୍ଗ ସ୍କୁଲ ପାଖରେ ଗୋଟାଏ ପାଣ୍ଡୁଲିପି ଲତା- ଲାଲ ହୋଇ । ଆମ୍ବ ଗଛ ଉପରେ କାୟା ମେଲାଇ ପାଖକୁ ଯୋଡାଏ କାଞ୍ଚନ । ଗୋଟାଏ ଧଳା । ଦୁଇଟା ସ୍କୁଲ ବ୍ଲକକୁ ଲାଗି ଚାରି ଛଅଟା ସପେଟା ଗଛ । ଟେନିସ ବଲ ପରି ବାଦାମୀ ମସୃଣ ଫଳ । କେହି ସେତେବେଳେ ସେ ଫଳ ଦେଖି ନ ଥିଲେ । ପାଚିଲେ ଖୁବ୍ ସ୍ୱାଦହୁଏ, ଏହା ଆମେ ଜାଣି ନଥିଲୁ! ବହୁ ଦିନପରେ ସୁପରିଟେଣ୍ଡଣ୍ଟ ମହମ୍ମଦ ଭାଇ ଦିନେ କଲିକତାରୁ ସେ ଫଳ ଆଣି ଆମକୁ ଖାଇଥିଲେ । ଆମେ ତାକୁ ବିଲାତି କେନ୍ଦୁ ବୋଲି ଭାବିଥିଲୁ । ଗୋଟାଏ ବିରାଟ ଶିମୁଳି ଗଛ ପାଖକୁ ଦୁଇ ତିନିଟା ଲମ୍ବା ଲମ୍ବା ଦେବଦାରୁ ଗଛ ଏବଂ ଆଉ କେତଟା ବଡ ବଡ ଝାଉଁଗଛ ଆମକୁ ଯୁଗପତ ଆନନ୍ଦ ଓ ଆଶ୍ଚର୍ଯ୍ୟ ଦେଉଥିଲା । ପାଖରେ ଯେଉଁ ଘରଟି ଥିଲା, ତାର ପାଚିରି କାଛକୁ ଲାଗି ଗୋଟିଏ ବଉଳ ଗଛ- ଯହିଁରେ ବଣି ଓ କୋଇଲି ପାଗଳହୋଇ ପାଚିଲା କୋଳି ଖାଉଥିଲେ । ଯେମିତି ଆନନ୍ଦରେ ଖାଉଥିଲେ, ସେମିତି ଚୋରମାନେ ଆନନ୍ଦରେ ସେହି ଗଛକୁ ଲାଗିଥିବା ପାଚେରି ଡେଉଁ ଅକ୍ଳେଶରେ ଚୋରି କରିପାରୁଥିଲେ । ଚାରିବର୍ଷ କାଳ ପାଠ ପଢା ସାଙ୍ଗକୁ ଖେଳାଲୀଳା ଏଇଠି ଚାଲୁଥିଲା ।

ଏଇଠି ଗୋଟିଏ ରିଲିଫ୍ ମେପ୍ କଥା କହିବାକୁ ମନବଳୁଛି । କିଏ ଜଣେ ବଡ ପରିଦର୍ଶକ ସ୍କୁଲକୁ ଆସିବାର ଥାଏ । ଭୂଗୋଳ ମାଷ୍ଟର ଉମାକାନ୍ତ ମିଶ୍ର ରିଲିଫ୍ ମେପ୍‌ଟିଏ କରିବେ ବୋଲି ସ୍ଥିରକଲେ । ତାଙ୍କର ଆଗ୍ରହ ଓ ଉତ୍ସାହ ବଢିଲା ତତ୍କାଳୀନ ହେଡମାଷ୍ଟର ଶ୍ରୀ ମଧୁସୁଦନ ବିଶ୍ୱାଳଙ୍କରଯୋଗୁଁ । ମାସ ମାସ ଧରି କାମ ଚାଲିଥିଲା । ଶିକ୍ଷକ ଓ ଛାତ୍ରମାନେ ଅପୂର୍ବ ଉତ୍ସାହ ଓ ଆଗ୍ରହରେ ଲାଗିପଡିଲେ । ମଧୁବାବୁଙ୍କ ଭାରତବନ୍ଦନାର ପଂକ୍ତି ଅନୁସରଣକରି ମେପ୍ ତିଆରିହେଲା । ମସ୍ତକରେ ହିମାଳୟ ପର୍ବତ, ଦୁଇପାଶେ ଜଳଧି, ବ୍ରହ୍ମପୁତ୍ର, ସିନ୍ଧୁନଦୀ, ବିନ୍ଧ୍ୟ ଗିରିବର କଟିରେ, ଗଙ୍ଗା ଆଦି କେତେ ନଦୀ । ଏହି ପ୍ରକାର ଭାରତ ମାନଚିତ୍ର ଦିହରେ ନଦନଦୀ, ଗିରିବନ, ଶୋଭାପାଇଲା । ପାରପରୁ ପାଣି ଅଣାଯାଇ ନଦୀ ଓ ସମୁଦ୍ର ସୃଷ୍ଟି କରାଗଲା । ଧଳା, ନୀଳ, ସବୁଜ ଆଦି ବିଭିନ୍ନ ରଙ୍ଗରେ ଏପରି ସୁସଜ୍ଜିତ ହେଲା ଯେ, ଦେଖିଲେ ଅଚିରେ ଜାଣିହେବ- କେଉଁଠି କ'ଣ ଚାଷ ହୁଏ, କେଉଁଠି କ'ଣ ମିଳେ । ବଡ ବଡ ସହର, ସଡକ, ଦେବାଳୟ ଆଦି ଚିହ୍ନିତହେଲା । ସେତେବେଳେ ଭାରତ ବିଭାଜନ ହୋଇ ନ ଥିବାରୁ ଖଣ୍ଡିତ ରୂପ ଜଣା ନଥିଲା । ଚୀନ, ବ୍ରହ୍ମଦେଶ, ଆଫଗାନିସ୍ଥାନ, ପାକିସ୍ଥାନ ଆଦି ସ୍ଥାନ

ପାଇଥିବାରୁ ଖୁବ୍ ସୁନ୍ଦର ଦେଖାଯାଇଥିଲା ଅବିଭକ୍ତ ଭାରତ। ବହୁଦିନ ଧରି ଦର୍ଶକ ଦଳଦଳ ହୋଇ ପ୍ରଦର୍ଶନୀ ହେବା ଦେଖିବାକୁ ଆସୁଥିଲେ।

ଏଇ ସମୟରେ ଖଣ୍ଡପଡା ରାଜବଂଶ ସହିତ ଲାଲସାହେବଙ୍କ ବଂଶର ବୈବାହିକ ସମ୍ପର୍କ ସ୍ଥାପିତ ହୋଇଥିଲା। ଯୋଡାଏ ବ୍ଲକରେ କୋଠରୀ ସବୁ ଯଉତୁକ ପଦାର୍ଥରେ ସୁସଜ୍ଜିତ ହୋଇଥିବାରୁ, ରାଜବଂଶର ବାହାଘରର ଧାରଣା ଆମର ହୋଇଥିଲା। ରାସ୍ତାଉପରେ ଯଉତୁକରୂପେ ଦିଆଯାଇଥିବା ଗୁଣ୍ଡୁଣୀ ହାତୀଟିଏ ମଧ୍ୟ ଦର୍ଶକକୁ ଆଦେଶ ଦେଉଥିଲା ଭିତରକୁ ଯିବାପାଇଁ।

ଅନନ୍ତ ନାଗେଶ୍ୱର ଗଛ ମୂଳର ଦୁଇଟି କ୍ରସବାର ପାରହୋଇ, ଟ୍ରୁରୁଟ୍ରେନିଂ ବ୍ଲକ୍ ଡେଇଁଗଲେ ଫ୍ରେଜର ହଷ୍ଟେଲ। ଏଇଠି ଆଗାମୀ ଚାରିବର୍ଷ ଆମର ରହଣି। ଫ୍ରେଜର ହଷ୍ଟେଲରେ ଚାରିବର୍ଷ, ଏବଂ ପରେ ରେଭେନ୍‌ସା କଲେଜର ପୂର୍ବ ଛାତ୍ରାବାସ(East Hostel)ରେ ଯେଉଁ ଛାତ୍ର ଚାରିଛଅ ବର୍ଷ କଟାଇଛି, ସେ ଜୀବନରେ ହଷ୍ଟେଲ ଜୀବନକୁ ଦିବାଧ୍ୟାୟୀ ଛାତ୍ର ଅପେକ୍ଷା ଶତ ସହସ୍ର ଗୁଣରେ ଭଲ ବୋଲି ସ୍ୱୀକାର କରିବ। ପୂର୍ବକାଳରେ ଶିଷ୍ୟମାନେ ପିତାମାତାଙ୍କଠାରୁ ଦୂରରେ ରହି ଗୁରୁଜନମାନଙ୍କ ସାହାଯ୍ୟ ଓ ଯତ୍ନରେ ପଢୁଥିବାରୁ ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧିପାଉଥିଲା। ମେଧା ସହିତ ଆତ୍ମପ୍ରତ୍ୟୟ, ଆତ୍ମସଂଯମ ଯଥାର୍ଥ ରୂପେ ବୃଦ୍ଧିପାଉଥିଲା। ହଷ୍ଟେଲରେ ଚାଳିଶ ଜଣ ପିଲା ରହୁଥିଲେ। ପ୍ରତି କୋଠରୀରେ ଆଠଜଣ ଲେଖାଏଁ। ଦୁଇଜଣ ତତ୍ତ୍ୱାବଧାରକ। ସହକାରୀ ତତ୍ତ୍ୱାବଧାରକ ଜଣକ ବଙ୍ଗାଳୀ। ସଂସ୍କୃତ ଓ ବଂଗଳା ଭାଷାର ଶିକ୍ଷକ। ଘର ପୂର୍ବ-ବଙ୍ଗ। ଭାରି ଭଲ ଶିକ୍ଷକ। ଦଶମ ଶ୍ରେଣୀରେ ହିତୋପଦେଶ ପଢାନ୍ତି। ଏତେ ରସାଳ ତାଙ୍କ ଶିକ୍ଷାଦାନପ୍ରଣାଳୀ ଯେ, ଆପେଆପେ ଆମର ସବୁପାଠ ମନେରହିଯାଏ। ବୋର୍ଡିଂ ତରଫରୁ ତାଙ୍କୁ ଖାଇବାକୁ ଦିଆଯାଏ। ସେ କୁନ୍ଦୁରି ଖାଆନ୍ତି ନାହିଁ, କୁନ୍ଦୁରି ବୁଦ୍ଧିନାଶକ କହନ୍ତି। ଯେମିତି ପୂର୍ବରୁ କହିଛି, ନିଜେ ସେ ପୁଣ୍ଟି ଆଉ ଟେଙ୍ଗରା ମାଛ ଖାଆନ୍ତି। ତେଲ ମେସ୍ ତରଫରୁ ଦିଆଯାଏ। ଆମେ ବିଦ୍ରୋହ କରିବାରୁ, ସେ ନିଜେ ତେଲ କିଣିଲେ। ସେ ବଙ୍ଗାଳୀ ପିଲାଙ୍କୁ ଭଲପାଆନ୍ତି। ସେମାନଙ୍କୁ ବେଶି ନମ୍ବର ଦିଅନ୍ତି। ଯେଉଁ ଟିଣ ପଇଖାନା ବୋର୍ଡିଂପାଇଁ ଥାଏ, ତାକୁ ସେ ଏକା ବ୍ୟବହାରକରନ୍ତି। ଅନ୍ୟମାନେ ନଇନାଳକୁ ଯାଆନ୍ତି। ତତ୍ତ୍ୱାବଧାରକ ଜଣକ ସଂସ୍କୃତ ପଢାନ୍ତି। ଦୁହିଁଙ୍କର ପଟେ ନାହିଁ। ବୋର୍ଡିଂ ସାମ୍‌ନାରେ ସିମୁଳି ଗଛ ପାଖକୁ ଲାଗି ଯେଉଁ ଭୂତକୋଠି, ସେଇଠି ବଙ୍ଗାଳୀ ପଣ୍ଡିତଙ୍କ ଆଡ୍‌ଡା, ସେଇଠି ତନୁ ପାତଳୀ ଦୁଇ ତିନୋଟି ଝିଅ ଥାଆନ୍ତି। ସେମାନଙ୍କ ସାଙ୍ଗରେ ସେ ବସାଉଠା କରନ୍ତି। ଟିଣ ଛାତରେ ନିମ କୋଳି, ଜାମକୋଳି ଢଣଠାଣ୍ ପଡେ। ରାତିହେ ଅନ୍ଧାରରେ

ପାଖଦେଇ ଗଲେ ଢରମାଢେ। ଦିନେ ପରିବାରର ଲୋକେ କୁଆଡେ ଅନ୍ତର୍ଦ୍ଧାନ ହୋଇଗଲେ। ସେଇ ସମୟରୁ ତାହା ଭାଙ୍ଗିରୁକି ଗଲା: ଚିଣ ଛପର ଉଡିଗଲା। ମାଟିକାନ୍ଥ ପଡିଗଲା। ଭୂତକୋଠିରେ ପରିଣତ ହେଲା। ଏବେ ସେଠାରେ ତିନିତାଲା କୋଠା।

ହଷ୍ଟେଲ ଆଗରେ ଗୋଟିଏ ଆମ୍ବ, ଗୋଟିଏ ପଣସ ଏବଂ ରୋଷେଇ ଘରର ଐଶାନ୍ୟ କୋଣରେ ଅଛି ଆଉ ଗୋଟିଏ ପଣସ ଗଛ। ଆମ୍ବ ଭାରି ଖଟା। ଆଜିକୁ ଅବଶ୍ୟ ଆଉ ନାହିଁ। ଖରାଦିନରେ ତିନି ମାସ ଗ୍ରୀଷ୍ମଛୁଟି ଯାକ ଆମେ ଆମ୍ବଖଟା ଓ ଘଣ୍ଟଦେଇ ଭାତ ଖାଉଁ। ଆଠଟଙ୍କା ଦରମାରେ। ଦୁହିଁଙ୍କ ପିଲାଝିଲା ନାହିଁ। ପିଲାଙ୍କୁ ଭାରି ସ୍ନେହ ସେମାନଙ୍କର। କେହି ନ ଖାଇ-ଶୋଇ ଯାଇଥିଲେ, ତାଙ୍କୁ ଉଠେଇ ଖୁଆନ୍ତି। ରୋଷେଇ ଘରେ ପାନ ଦୋକାନଟିଏ କରିଥାନ୍ତି। ପିଲାମାନଙ୍କୁ ତଥା ସାରମାନଙ୍କୁ ପାନ ବିକନ୍ତି। ପାନ ପଇସାକୁ ଚାରିଖିଲ। ମୋହନଭୋଗ ବା ସୁଜିଘଣ୍ଟ ପତରକୁ ଚାରିପଇସା, ଅଧାପତରକୁ ଦୁଇ ପଇସା। ହିସାବ କାଗଜରେ ଏହିପରି ହିସାବ ଲେଖାଥାଏ। ଖାତା ଶେଷରେ ହିସାବ କରି ପଇସା ଆଦାୟ କରାଯାଏ। ହିସାବ ଏହିପରି "ବସନ୍ତ - / ୧,୨,୩/ଯାଏଁ ମୋଟ ଦିଆଗଲା ତିନିଟା। ଗୋଟିଏ ତେଲ ବୋତଲ ଚାରିଅଣା। ଯେଉଁ ଛାତ୍ର ଚୈତନ, ଅଭିନ ଦୁଇଭାଇଙ୍କ ମାର୍କା ହଲର ବୋଇତାଳୁ, ବାଇଗଣ ଘାଣ୍ଟ, ପଣସ ତରକାରୀ, ଟକରି ଆମ୍ବର ଖଟା, କର୍ଅଁଳ ଶାଳପତ୍ରରେ ବଡା ସୁଜିଘଣ୍ଟ, ନ ଖାଇଛି, ତାର ଛାତ୍ରଜୀବନର ନାବାଳକି କଟିନାହିଁ। ସାଧୁ ପରି ଅସାଧୁ ଚାକର ସହିତ ଯେ ବଜାର ସଉଦା ନ କରିଛି, ସେତ ଠକାମିର 'ଠ' ଅକ୍ଷର ଚିହ୍ନିନାହିଁ।

ପ୍ରଥମ ଦିନଟି ଏକ ନମ୍ବର କୋଠରୀରେ ଖାଲିଥିବା ଗୋଟିଏ ଖଟରେ ଜଣେ ଉପର ଶ୍ରେଣୀର ପିଲାର ତତ୍ତ୍ୱାବଧାନରେ ରହିଲି। ରାତିସାରା ଦିନ ନାହିଁ। ମାଆକୁ ମନେପକାଇ, ସ୍ୱପ୍ନରେ ଦେଖି ରାତି କଟାଇଲି। ଖାଲି ଖଟରେ ଚଟ ଉପରେ ଶୋଇଲି। ବାପା ଜେଜେବାପା ବାଜିର ଛଣ ଦଉଡିରେ ସେଇଟା ବୁଣିଥିଲେ ଏବଂ ଚାରିବର୍ଷ କାଳ ତାକୁ ବିଛାଇ ଶୋଇଥିଲି ବିନା ତକିଆରେ।



## ॥ ଅଠର ॥

ବାରିପଦା ହାଇସ୍କୁଲର ହେଡମାଷ୍ଟରଙ୍କ ପରି ଏତେ ଗୁଣୀ, ଜ୍ଞାନୀ, ସୁନ୍ଦର, ସୌମ୍ୟ ଚେହେରା ପୁରୁଷ ଅନ୍ୟତ୍ର ବିରଳ; କିନ୍ତୁ ଛୋଟିଆ ଗେଡା ଲୋକ। ପୋଷାକପତ୍ର ଅଧିକାଂଶ ସମୟରେ ଦେହକୁ ବଡିଆ ଖାପ ଖାଉଥାଏ। ସ୍କୁଲରେ ଭର୍ତ୍ତିହେବା ଦିନ ସେ ମୋତେ ପାଖକୁ ଡାକି ବେଶ୍ ଭଲକରି ଦେଖିଥିଲେ ଏବଂ ମୋର ବିଦ୍ୱତ୍ତାର ପରିଚୟ ଚେହେରାରୁ ବୋଧେ ଜାଣି ପାରିଥିଲେ। ସେ ଥିଲେ M.A., B.L, B.Ed; ସେ କାଳର ଜଣେ ହେଡମାଷ୍ଟର ପକ୍ଷରେ ଏ ଯୋଗ୍ୟତା କ୍ୱଚିତ୍ ଦେଖାଯାଏ। ଯେଉଁ କେତେ ଜଣ ପ୍ରମୁଖ ହେଡମାଷ୍ଟର ଥିଲେ, ସେମାନେ ହେଲେ ବାଙ୍କନିଧି ବାବୁ, ବସନ୍ତ ବାବୁ, ବିଶ୍ୱାଳ ବାବୁ ଆଦି। ସେ ସେମାନଙ୍କର ଅଗ୍ରଗଣ୍ୟ। ଜୀବନର ଗୋଟିଏ ଦୁର୍ଘଟଣାରୁ ତାଙ୍କର ଅନ୍ୟଥା ମହିମ୍ୱନ୍ ଜୀବନ ହୀନିମାନିଆ ହୋଇଗଲା। ସେ କଲିକତାରେ ଇଂରାଜୀ ଏମ.ଏ ପଢୁଥିଲେ। ଏବଂ ପ୍ରଥମ ଶ୍ରେଣୀ ପାଇବାପାଇଁ ସେ ଦୃଢସଂକଳ୍ପ ଥିଲେ। ୬ଟି ପ୍ରଶ୍ନପତ୍ର ପରେ ତାଙ୍କର ହୃଦବୋଧ ହେଲା, ସେ ପ୍ରଥମ ଶ୍ରେଣୀ ପାଇପାରିବେ ନାହିଁ। ତେଣୁ ସେ ଶେଷ ଦୁଇଟି ପତ୍ର ପରୀକ୍ଷା ନ ଦେଇ ଓହରିଗଲେ। କିନ୍ତୁ ପୂର୍ବ ୬ଟିରେ ସେ ଏତେ ଭଲ କରି ଥିଲେ ଯେ, ସେ ଫେଲ୍ ହୋଇ ପାରିଲେ ନାହିଁ। ତୃତୀୟ ଶ୍ରେଣୀ ପାଇଗଲେ। ଆଜି କାଲିପରି ସେକାଳରେ ନମ୍ବର ବଢାଇବା (improvement) ପ୍ରଥା ପ୍ରଚଳିତ ନଥିଲା। ତେଣୁ ସାରା ଜୀବନ ତାଙ୍କୁ ଏହି ଦୁର୍ଘଟଣାଟି ଅନୁତାପ ଓ ବ୍ୟଥାରେ ଘାରିଦେଲା। ସେ ଆଇନ୍ ଏବଂ ବି.ଇଡି ପରୀକ୍ଷା ଦେଲେ, କିନ୍ତୁ ସେଗୁଡାକର ସଦୁପଯୋଗ କଲେ ନାହିଁ। ତାଙ୍କର ଇଂରାଜୀରେ ଜ୍ଞାନ, ବ୍ୟୁତ୍ପତ୍ତି, ହସ୍ତାକ୍ଷର ଏପରିକି ସାହିତ୍ୟ-ଜ୍ଞାନ ତତ୍କାଳୀନ ଓଡିଶାରେ ତାଙ୍କୁ ଅଶେଷ ଖ୍ୟାତି ଦେଇଥିଲା। ସେ ଜଣେ ଦକ୍ଷପ୍ରଶାସକ, କିନ୍ତୁ ପାରିବାରିକ ଅଶାନ୍ତିର ସେ ଏକାବେଳକେ ମୂହ୍ୟମାନ ହୋଇଗଲେ। ସରକାର ତାଙ୍କୁ ବିଭିନ୍ନ ସମୟରେ ବିଭିନ୍ନ ଚାକିରୀରେ ରଖିଲେ। ଅବସ୍ଥା କ୍ରମେ ଖରାପ ଆଡକୁ ଚାଲିଲା। ସେ ପାଗଳ ପ୍ରାୟ ଜୀବନ କଟାଇଲେ; ସମସ୍ତେ ତାଙ୍କପାଇଁ ଦୁଃଖକଲେ। କିନ୍ତୁ କିଛି ଲାଭ ହେଲା ନାହିଁ।

ଥରେ ଦୁଇ ଥର ସେ ଆମ କ୍ଲାସ ନେଇଛନ୍ତି। ଦୁଇଟି ପିରିୟଡରେ ସେ ଆମକୁ ମନୁଷ୍ୟ ମୁଣ୍ଡର ବିଭିନ୍ନ ଅଂଶର ଇଂରାଜୀ ପ୍ରତିଶବ୍ଦ ଶିଖାଇଲେ। ଥରେ ଅଷ୍ଟମ ଶ୍ରେଣୀରେ ଇତିହାସ ପରୀକ୍ଷା ଖାତା ଫେରସ୍ତ ଦିଆଯାଉଥାଏ । ମୁଁ ୮୦ ନମ୍ବର ରଖିଥାଏ। ପୃଷ୍ଠା ପରେ ପୃଷ୍ଠା ଓଲଟାଇ ମୋ ଖାତା ଦେଖିଲେ। advice ଶବ୍ଦ ଟି 'C' ସ୍ଥାନରେ 'S' ଲେଖାଯାଇଛି। ଆଉ ଗୋଟିଏ ଜାଗାରେ exaggerate ଶବ୍ଦଟିରେ ଗୋଟିଏ 'g' ନାହିଁ।

ଏତେ ବିରକ୍ତ ହେଲେ ଯେ, ଯୋଡ଼ିକ ଶବ୍ଦ ଉପରେ ଯୋଡ଼ିଏ ରୁଲାର ଦେଇ ଜୋର୍‌ରେ ମାରିଲେ ପୃଷ୍ଠା ଚିରିଗଲା । ଏବଂ ପ୍ରତ୍ୟେକ ଭୁଲ୍ ପାଇଁ ପାଞ୍ଚ ନମ୍ବର ଲେଖାଏଁ କାଟି, ଖାତା ଉପରେ ୮୦ ଜାଗାରେ ୭୦ ଲେଖିଲେ । ସେ ଭାରି ଶୃଙ୍ଖଳା ପ୍ରିୟ । କେତେବେଳେ କିମିତି ସେ ସର୍ବସାଧାରଣରେ ଛାତ୍ରମାନଙ୍କୁ ବେତ୍ରାଘାତ କରୁଥିଲେ । ତାଙ୍କ ଘରକୁ, ଫ୍ରେଜର ହଷ୍ଟେଲରେ ପଢ଼ିବାପାଇଁ କାନ୍ତକବି ଲକ୍ଷ୍ମୀକାନ୍ତଙ୍କ ତୃତୀୟ ପୁତ୍ର ବନ୍ଧୁ ନିତ୍ୟାନନ୍ଦ ବାରମ୍ବାର ଆସୁଥିବାର ମୁଁ ଦେଖିଛି । କାଳକ୍ରମେ ହେଡ଼ମାଷ୍ଟର ଅତୀବ ମାନସିକ ଅଶାନ୍ତି, ଦୁଶ୍ଚିନ୍ତା ଏବଂ ପାରିବାରିକ ଆଶାନ୍ତିରେ ପାଗଳ ହୋଇଗଲେ । ଏତେ ଗୁଣୀ ଲୋକଙ୍କର ଶେଷ ଜୀବନ ଏତେ ଦୁଃଖାବହ ହେଲା ଯେଥିରେ, ସାରା ମୟୂରଭଞ୍ଜ ବ୍ୟଥିତ ହୋଇଥିଲା ।

ତାଙ୍କ ପରେ ଯେଉଁ ହେଡମାଷ୍ଟର ଆସିଲେ, ସେ ମଧୁସୂଦନ ବିଶ୍ୱାଳ । ତାଙ୍କର ଚେହେରା ଓ ପ୍ରକୃତି ଠିକ୍ ଓଲଟା । ରଙ୍ଗ କଳା, ଡେଙ୍ଗା, ଯାବତ୍‌ଜୀବନ ଅବିବାହିତ ଥିଲେ । ଏକା ରହୁଥିଲେ । ସେ ରୋଜ୍ ହବିଷାନ୍ନ ଭୋଜନ କରୁଥିଲେ । ଆମକୁ ଇଂରାଜୀ ପଢାଉଥିଲେ । ଗଳା କର୍କଶ । ତାଙ୍କ ଆଗରେ ଯେ ବସିଥିବ, ତା' ମୁହଁ ତାଙ୍କ ପାଟିରୁ ନିର୍ଗତ ଛେପରେ ଭର୍ତ୍ତିହୋଇଯିବ । ଶିକ୍ଷକ ଭାବରେ ସେ ନିଷ୍ଠାପର ଥିଲେ । ପ୍ରତ୍ୟେକ ଛାତ୍ରର ପାଠପଢା ତଥା ବ୍ୟକ୍ତିଗତ ଜୀବନର ଖବରାଖବର ନିଜେ ରଖିଥାନ୍ତି । ଦୁସ୍ଥ ଗରିବ ପିଲାଙ୍କୁ ମଧ୍ୟ ସେ ସାହାଯ୍ୟ କରିଥାନ୍ତି । ମୋତେ ଯେତେବେଳେ ମେସ୍‌ଦେୟ ଦେଇ ନ ପାରିବାରୁ ବୋର୍ଡିଂରୁ ଖାଦ୍ୟ ମିଳିଲା ନାହିଁ, ସେତିକିବେଳେ ଦୁଇମାସ ଧରି ସେ ମୋତେ ଦୁଇଓଳି ଖାଇବାକୁ ଦେଇଛନ୍ତି । ଏପରିକି ପୋଲିସ୍ ଲାଇନ୍ ପାଖରେ ଥିବା ତାଙ୍କ କ୍ୱାଟରସ୍ସକୁ ଯିବା ଆସିବା ପାଇଁ ସ୍କାଉଟ୍ ସାଇକେଲ୍‌ଟି ଦେଇଥିଲେ । ତାଙ୍କର ଉତ୍ସାହ ଓ ସାହାଯ୍ୟଯୋଗୁଁ ମୁଁ ମେଟ୍ରିକୁଲେସନ୍ ପରୀକ୍ଷାରେ କୃତକାର୍ଯ୍ୟ ହୋଇଥିଲି । ପରିତାପର ବିଷୟ, ସ୍ଥାନୀୟ କୁଚକ୍ରାନ୍ତ ଶିକାର ହୋଇ ୨୪ ଘଣ୍ଟିଆ ଆଇନ୍‌ରେ ବିଶ୍ୱାଳ ବାବୁଙ୍କୁ ମୟୂରଭଞ୍ଜ ଛାଡିବାକୁ ପଡିଲା ।

ଶ୍ରୀ ବିଶ୍ୱାଳ ଖେଳ ପ୍ରିୟ ଥିଲେ ଓ ସେ ନିଜେ ଆମକୁ ଖେଳ ଶିଖାଉଥିଲେ । ଭଲି ଖେଳରେ ମୋତେ ଏପରି ତାଲିମ୍ ଦେଇଥିଲେ ଯେ, ୬ ବର୍ଷ ଧରି ମୁଁ ରେଭେନ୍‌ସା କଲେଜରେ ଭଲି ଟିମରେ କେପ୍‌ଟେନ୍ ଥିଲି ।

ଯେଉଁ କେତେ ଦିନ M.A. pass ପରେ ମୁଁ ବାରିପଦା ସ୍କୁଲରେ ଶିକ୍ଷକତା କରିଥିଲି, ସେହି ସମୟରେ ହେଡ଼ମାଷ୍ଟର ଥିଲେ ରାଜେନ୍ଦ୍ରଲାଲ୍ ଦତ୍ତ । ସେ ବଙ୍ଗାଳୀ । ତତ୍‌କାଳୀନ ଦେବାନ୍ ନିଯୋଗୀଙ୍କଠାରୁ ସେ ଉପଦେଶ ଓ ଦୀକ୍ଷା ନେଉଥିଲେ ଏବଂ ତାଙ୍କରି ସମୟରେ ମୋର ସ୍କୁଲ ଜୀବନ ଶେଷହେଲା । ସେ ନା ଥିଲେ ଖେଳପ୍ରିୟ ନା ଥିଲେ ଭଲ ଶିକ୍ଷକ ।

କେବଳ ଶିକ୍ଷକମାନଙ୍କ ଭିତରେ ସାମ୍ୟ, ସଂପ୍ରିତି ଓ ମୈତ୍ରୀ ଶୃଙ୍ଖଳା ରଖିବାପାଇଁ ତାଙ୍କୁ ଅଣାଯାଇଥିଲା ।

ସେତେବେଳର ଶିକ୍ଷକମାନଙ୍କ ମଧ୍ୟରେ ଅଧେ ଥିଲେ ବଙ୍ଗାଳୀ । ସେମାନଙ୍କ ମଧ୍ୟରେ ଅଗ୍ରଗାମୀ ଥିଲେ ଇନ୍ଦୁ ବାବୁ, ଇନ୍ଦୁଭୂଷଣ ଗୁପ୍ତ । ମୋଟାମୋଟି ସେ ଦେଖିବାକୁ ଭଲ । ବଙ୍ଗଳା ମିଶା ତାଙ୍କର ଓଡ଼ିଆ କଥାଗୁଡ଼ିକ । "The story of Ram and Sita" ପ୍ରବନ୍ଧଟି ଆମକୁ ସେ ପଢାଉଥିଲେ । ଶିବ ଧନୁ ଯେତେବେଳେ ଘଡ ଘଡ ଟଣା ହୋଇ ସଭା ଭିତରକୁ ଆସିଲା, ସେତେବେଳେ ତାର ଶବ୍ଦକୁ ponderous roll ପରି ଶବ୍ଦରେ ବର୍ଣ୍ଣନା କରାଯାଇଛି । ତାକୁ ଇନ୍ଦୁବାବୁ ଏମିତି ବୁଝାଇ ଦେଉଥିଲେ ଯେ, ଆମ କାନଭିତରେ ରଥ ଶବ୍ଦ ଅଦ୍ୟପି ଶୁଭୁଛି । Grammar ପଢାଇବାରେ ସେ ଥିଲେ ଜଣେ ରଥୀ । ନେଶ୍‌ଫିଲଡ୍ ଗ୍ରାମାର ତାଙ୍କର ମୁହଁରେ । ବପୁସ୍‌ମାନ ହୋଇଥିବାରୁ, ସେ ଛିଡା ହୋଇ କମ୍ ପଢନ୍ତି । ବସିକରି ପଢାନ୍ତି । ଭଲ ପିଲାଙ୍କୁ ଦେଖି ଆରମ୍ଭ କରନ୍ତି, "ନାରାନ୍‌ଚ୍ (ମୋ ସାଙ୍ଗ ନାରାୟଣ) । ଆଜକେ ବୋର୍ଡରେ କେ ଲିଖ୍‌ବେରେ ? ଆଜକେ ବସନ୍ତ ଲିଖ୍‌ବେ । ବସନ୍ତ ଖୁବ୍ ଭଲ ଲିଖେ, ନାରେ ?" ଲୋକଟି ଦେବୋତ୍ତମ, ଗଳା ଅମୃତ ନୈସ୍ପନ୍ଦ, ବୀତରାଗ, ଭୟକ୍ରୋଧ, ସ୍ଥିତଧୀ । ମୋ ପରି ଛାତ୍ରର ସାମନ୍ୟ ଭୁଲ ବା ସ୍ଖଳନ ଦେଖିଲେ ସେ ଖୁବ୍ ବ୍ୟଥିତ ହୁଅନ୍ତି । କିଛି କୁହନ୍ତିନି, କିନ୍ତୁ ତାଙ୍କର ଚେହେରା ଦେଖିଲେ ଜଣାଯାଏ, ତାଙ୍କ ମର୍ମକୁ ଖୁବ୍ ବାଧିଛି, କଥା ବା କର୍ମ । ସେ ଥିଲେ ସହକାରୀ ହେଡମାଷ୍ଟର । ତାଙ୍କର ପରିବାର ବା ପିଲାଝିଲା ଆମେ କେବେ ଦେଖିନୁ ।

ଉମାକାନ୍ତ ବାବୁ ଥିଲେ ସ୍ଥାନୀୟ ଶିକ୍ଷକ । ଭାରି ସ୍ୱର୍ଣ୍ଣକାତର ଓ ଅଭିମାନୀ । ଭୂଗୋଳ ପଢାନ୍ତି । ସ୍କୁଲ ଆଗରେ ଯେଉଁ "Physical Map of India" ସେ କରାଇ ଥିଲେ, ତାହା ବହୁଦିନ ଧରି exhibition ପରି ଅନେକ ଦର୍ଶକଙ୍କୁ ଆକର୍ଷଣ କରିଥିଲା । ନଳ ଖଞ୍ଜା ଯାଇ ନଦୀ ସ୍ରୋତ ଦେଖାଇ ଦିଆଯାଇଥିଲା । ତା ଛଡା, କୋଉଠି କ'ଣ ଫସଲ ହୁଏ ବା କେଉଁଠି କ'ଣ ଧାତୁ ମିଳେ, ଭାରତର କୋଉ ସ୍ଥାନଟି କେଉଥିପାଇଁ ପ୍ରସିଦ୍ଧ, ସେ ସବୁ ମେପ୍‌ରେ ଦେଖାଇ ଦିଆଯାଇଥିଲା । ଯେବେ ସ୍କୁଲ ସମୟରେ ଘୋର ବର୍ଷା ହୁଏ, ସେତେବେଳେ classର ସବୁ ଛାତ୍ରଙ୍କୁ ଧରି ସେ ବାହାରିଯାନ୍ତି । ପିଲାମାନଙ୍କୁ ପ୍ରତ୍ୟକ୍ଷ ବୁଝାଇବାପାଇଁ ଯେ, ମାଟି କିମିତି ଧୋଇ ହୋଇଯାଏ, ନଈ ମୁହାଣ କେମିତି ପୋତି ହୋଇଯାଏ ଓ ଫଳରେ ବନ୍ୟା ବିପ୍ଳାତ କେମତି ହୁଏ । ପିଲାମାନେ ଭୂଗୋଳ ଯେତେ ବୁଝନ୍ତୁ, କି ନ ବୁଝନ୍ତୁ, ତା' ଅପେକ୍ଷା ବେଶି ଖେଳ କୈତୁକରେ ସମୟ କଟାନ୍ତି । ଡେଙ୍ଗୁ, ମୁଣ୍ଡ ଓଦା କରନ୍ତି । ସେଦିନ ଆମପାଇଁ ସ୍କୁଲ ଛୁଟି । ରେନିଡେ ।

ଦିନେ, ଓଡିଶାର ଡି.ପି.ଆଇ, (D.P.I. Saheb) ଅଷ୍ଟମ ଶ୍ରେଣୀ visit କରୁଥିଲେ। ସାହେବ ଯେ ଓଡିଆ ଜାଣନ୍ତି, ଦୁନିଆକୁ ତାହା ଦେଖେଇବାପାଇଁ classରେ ପଶି ଯାଇ ବିକୃତ ଓଡିଆରେ କହିଲେ, "ଯେଉଁ ମାନଙ୍କର ଧଳା ମୁଣ୍ଡରେ କଳା ବାଳ ଅଛି- ସେଇ ମାନେ ଛିଡା ହୁଅ।" ସାହେବଙ୍କ କଥା କେହି କେହି ବୁଝିଲେ ନାହିଁ। କିଏ କିଛି ନ ବୁଝି ଛିଡା ହେଲା ଓ ଆଉ କିଏ ବା ହାତ ଟେକିଲା। ଆଉ କିଏ ହାତ ଟେକିଲା ଏବଂ ଛିଡା ମଧ୍ୟ ହେଲା। ଅନ୍ୟ section ରେ ମୁଁ ଥାଏଁ। ସାହେବଙ୍କ ପ୍ରଶ୍ନ ହେଲା "ଭାରିଫନ୍ଦା ଇକ୍ ଠୁଏଣ୍ଟି ଠୁ ଡିଗ୍ରୀକ୍ ଏଣ୍ଡ ଏଇଟ୍ ମିନିଟସ୍, ନର୍ଥ ଲେଟିଚ୍ୟୁଡ। Show this in the black board"। ମୁଁ blackboard ପାଖକୁ ଯାଇ ଗୋଟାଏ ଗୋଲାର୍ଦ୍ଧ ଆଙ୍କିଲି ଏବଂ କୌଣସି ଏକ ସ୍ଥାନରେ ଛକଟିଏ ମାରିଦେଲି। ଏଥିରେ ସାହେବ ଖୁସି।

ସାହେବ ଚାଲିଯାଆନ୍ତେ, ହେଡ୍‌ମାଷ୍ଟର ଉମାକାନ୍ତ ବାବୁଙ୍କୁ 'ଡାକି କହିଲେ, "ସାହେବ ତୁମର Geography teachingରେ ବହୁତ ଅସନ୍ତୁଷ୍ଟ।" ଉମାକାନ୍ତ ବାବୁ ତଦଣ୍ଡେ କହିଲେ- "Sir, the earth will not move round the sun on a pay of rupees sixty."

ଗଣିତ ଶିକ୍ଷକ ଗୋଷ୍ଠବିହାରୀ ପାଲ୍ କେବଳ ଅଛିଣ୍ଡା ଆଉ recurring decimal (ପୌନପୁନିକ) ପଢୁଥିବା ହରଣ ଦିଅନ୍ତି। ସେ ନୂଆବସାଣ ପିଲାଙ୍କୁ ଭାରି ଭଲପାଆନ୍ତି। କାରଣ ସେମାନେ ବଙ୍ଗଳା କହିପାରନ୍ତି। ଖୁବ୍ ବଦ୍‌ରାଗୀ। କଡାକଡା ଶବ୍ଦ ସମ୍ବଳିତ ଶ୍ରୁତଲିଖନ ଡାକନ୍ତି। Beseeching ଶବ୍ଦଟି ସେ ପାଞ୍ଚଥର ଦାନ୍ତ ନିକୁଟେଇ ଡାକିଲେ ବି ଆମେ କେହି ବୁଝିପାରିଲୁ ନାହିଁ। ଗୋପାଳ ବାନାର୍ଜୀ ତିନିଟା ବିଷୟରେ ଏମ.ଏ. ପାସ୍ କରିଥାନ୍ତି ଏବଂ ବାମ ହାତରେ ଫୁଟକି ଫୁଟାଇ ଫୁଟାଇ ଚାଲନ୍ତି। ଛାତିରେ ଶିମିଳପାଳ ଫରେଷ୍ଟ ପରି ନିଡାଙ୍ଗ ବାଳ। ବିଧୁ ବାବୁ ଏତେ ନମ୍ର ଆଉ ବିନୀତ ଯେ, ତାଙ୍କ କଥା ପଛ ବେଞ୍ଚକୁ ଶୁଭେ ନାହିଁ। ଗଙ୍ଗା ନାରାୟଣ ବାବୁଙ୍କୁ ଦୁଇ ଚାରିଜଣ ପିଲା ମାଗିଦେଲେ, ସେ ପଇସେ କି ଦୁଇ ପଇସାର ବାଦାମ୍ କିଣି ଦିଅନ୍ତି। ଶ୍ରୀକୃଷ୍ଣ ବାବୁ ଜଣେ ପରମ ବୈଷ୍ଣବ। ବେକରେ ତିନି ପ୍ରସ୍ତର ତୁଳସୀମାଳ। କାହାରି ଘରେ ସେ ଖାଇବାକୁ ଯାନ୍ତି ନାହିଁ। ଯଦି ଯାନ୍ତି, ଘରୁ ତୁଳସୀ ପତ୍ରଟିଏ ନେଇଯାନ୍ତି। ଏବଂ ଖାଦ୍ୟକୁ ଭଗବାନଙ୍କୁ ନୈବେଦ୍ୟ ଦେଇ ଆରମ୍ଭ କରନ୍ତି। ଯଦି ଦ୍ୱିତୀୟବାର ଖାଦ୍ୟଦ୍ରବ୍ୟ ନେବାର ଇଚ୍ଛାହୁଏ, ତେବେ ସେ ତାଙ୍କ ଶଳା ମୋହନକୁ ପଠାଇ, ଆଉ ତୁଳସୀ ପତ୍ରିଟିଏ ଆଣନ୍ତି। ରାତ୍ରିରେ ତୁଳସୀ ପତ୍ର ତୋଳିବା ନିଷେଧ। ତେଣୁ ମୋହନ ଗଛକୁ ହଲାଇ ପାଚିଲା ବା ଶୁଖିଲା ପତ୍ରଟିଏ ଆଣିଲେ ଭିଣୋଇ ମଣାହିରେ ବସନ୍ତି। ଶ୍ରୀକୃଷ୍ଣ ବାବୁଙ୍କର ପ୍ରାତଃ ଭ୍ରମଣରେ ଯିବା ଅଭ୍ୟାସ। ଦିନେ ଦିନେ ତାଙ୍କୁ ସମୟ ମାଲୁମ ହୁଏନି। ଦିନେ ସେ ସକାଳ ଆଠଟା ପର୍ଯ୍ୟନ୍ତ ଘରକୁ

ଫେରିଲେ ନାହିଁ । ମୋହନ ତାଙ୍କୁ ଖୋଜିବାକୁ ଗଲା ଏବଂ ଯାଇ ଦେଖିଲା- ସେ ଗୋଟାଏ ହିଡ ଉପରେ ଶୋଇଛନ୍ତି । ମୋହନର ଡାକରେ ସେ ଚେତାପାଇ ଉଠିଲେ ଏବଂ ଘରକୁ ଫେରିବା ପର୍ଯ୍ୟନ୍ତ କହୁଥାନ୍ତି- "ଟିକିଏ ଘୁମ ହୋଇଗଲା ।"

ଶ୍ରୀପତି ରାୟଙ୍କ କଥା ନ କହିଲେ ଶିକ୍ଷକ ବର୍ଗଙ୍କୁ ଅପମାନିତ କରାଯିବ । ଶ୍ରୀପତି ବାବୁଙ୍କ ଘର ବାଙ୍କୁଡା, ନା ବର୍ଦ୍ଧମାନ ତାହା କାହାକୁ ଜଣା ନାହିଁ । ତାଙ୍କର ବଡପୁଅଟି ପହଁରିବାକୁ ଯାଇ ଝିଙ୍ଗିରିବନ୍ଧର ଦଳରେ ଛନ୍ଦିହୋଇ ମୃତ୍ୟୁ ବରଣକଲା । ବଡ ବିଚିତ୍ର ପୁରୁଷ । ମୁଣ୍ଡର ଚୁଳ ଗୁଡିକ ଖୁବ୍ ଛୋଟ ଛୋଟ, ଯାହାକୁ କୁହନ୍ତି କଦମ୍ବ ଫୁଲିଆ । ଧଳା କନାର ସୂତା ପଞ୍ଜାବି ଉପରେ ଟାଉଁସିଆ ପଶମର ଗରମ, ପଞ୍ଜାବି । ଲାଲି ଧଡିର ଧୋତି । ଗୋଡରେ ଡବଲ ମୌଜା । ଗୋଡରେ କେନ୍‌ଭାସ ହାଫ୍ ଜୋତା । ପେଟ ଉପରେ ପୋରିଷ ତେଲ ଘସି, ତା ଉପରେ ମାଫଲାର ବନ୍ଧା ହୋଇଥାଏ । ଘର ଭିତରେ ମଧ୍ୟ ଛୋଟ ଛୋଟ କାଚର ରଙ୍ଗୀନ ଚଷମା ପିନ୍ଧନ୍ତି । ଡେଇଁ ଡେଇଁ ଶ୍ରେଣୀ ଭିତରକୁ ସେ ଆସନ୍ତି ଏବଂ କୋଠରୀର ଏମୁଣ୍ଡ ସେ ମୁଣ୍ଡ ବୁଲୁଥାନ୍ତି ଏବଂ ପଡାଉଥାନ୍ତି । ତାଙ୍କର ସେହି ଅବିସ୍ମରଣୀୟ ପଡାଇବା ପଦ୍ଧତି । ଆରମ୍ଭ କରନ୍ତି -"Jackles" ପୁଣି ରହିଯାନ୍ତି, ପୁଣି କହନ୍ତି "କି ବୋଲବେ Jackles, ଜେକ୍‌ଲ୍ ନୟଁରେ ବାନ୍ଦର ଛେଲେ, ଜେକଲ । ଜେକଲ୍‌ସ୍ with their long, ଲଙ୍ଗ୍ ନୟଁରେ ଲଅଅଙ୍ଗ narrow, ନେରୋ ନୟଁରେ "ନେର୍‌ରୋ" (ଟୁ ଆର ସ୍) muzzles and big bushy (ତାଲବ୍ୟଶ), tails (ଟେଏଲ୍, ହେଏଲ, ମେଏଲ, ଜେଏଲ୍, ରେଏଲ୍) are largely (mouth wide open) found in India." "ଇଣ୍ଡିଅ"- "ଇଣ୍ଡିୟା" ନୟଁ। ପୂରା ବାକ୍ୟଟି ହେଲା Jackles, with their long narrow muzzles and big bushy tails are largely found in India। ତା 'ପରେ ଅବିନାଶକୁ ଡାକନ୍ତି ଓ ଜେଲଖାନାର ଲେମ୍ବୁ ବା ଖାଣ୍ଟି ପୋରିଷ ତେଲ ବରାଦ କରନ୍ତି । ତାଙ୍କର Rowe and Webb Grammar ମୁଖସ୍ଥ । ଶେଷରେ କହନ୍ତି- "ଏସ୍‌କୁଲେ Grammar କେ ଜାନେରେ, ଇନ୍ଦୁ ବାବୁର କାଛେ କିଛୁ କିଛୁ ଆଛେ । ଆର୍ ତୁମାର ଏଇ କେଷ୍ଟ ବାବୁ ଅଫିମ ଖେୟେ ବସେ ।" ଆମେ ଶ୍ରୀପତି ବାବୁଙ୍କ class ରେ ଆଉ କିଛି ଶୁଣିନୁ ।

କାଶୀନାଥ ବାବୁ ଥିଲେ ଅଶେଷ ଗୁଣ ସମ୍ପନ୍ନ । ସେ ବୋଧହୁଏ ପୁରୀ ଜିଲ୍ଲାର ଲୋକ । ଯୁବାବସ୍ଥାରେ ଆସିଥିଲେ ବାରିପଦାକୁ । ଏଇଠି ସେ ଘରଦ୍ୱାରକରି ରହିଗଲେ । ଏବେବି ତାଙ୍କର ବଂଶଧରମାନେ ଛୋଟ ଛୋଟ ସାମ୍ରାଜ୍ୟ ଗଢି ପାରିଛନ୍ତି ବାରିପଦାରେ । କାଶୀନାଥ ବାବୁ ଆମର Scout ମାଷ୍ଟର । ଭାରି ସ୍ନେହୀ ଓ ପରିଶ୍ରମୀ । ଝେଉଁଠି କେଉଁ

ରୋଗୀର ସେବା ସୁଶ୍ରୁଷା ଦରକାର, ସେଇଠି କାଶୀନାଥ ବାବୁ। ଶିକ୍ଷକ ଆକାରରେ ମଧ୍ୟ ଅତି ଆଦରଣୀୟ। ସବୁ ପିଲାମାନଙ୍କର ଶ୍ରଦ୍ଧା ସମ୍ମାନର ସେ ଅଧିକାରୀ। ତାଙ୍କୁ ଗୁଣୀ ଗାରିଡି ମଧ୍ୟ ଜଣାଥିଲା ବୋଧହୁଏ। ବୋର୍ଡିଂ ସାମ୍ନା କୁଡିଆ ଘରେ ଥରେ ଜଣେ ନବ ବିବାହିତା ବଧୂକୁ ଡାହାଣୀକି ଭୂତ ଲାଗିଲା। ସନ୍ଧ୍ୟା ହେଲେ ଘର ଭିତରେ ବା ଚାଳରେ ଛାଏଛାଏ ବାଲି, ମାଟି, ପଡିଲା। ପୋଲିସ ଆସିଲା। କିଛି ଫଳ ହେଲାନି। କାଶୀନାଥ ବାବୁ ନିଜର ପଇତାରୁ ପଟେ ନେଇ ନୂଆହୋଇ ଆସିଥିବା ବୋହୂଟିର ବେକରେ ପିନ୍ଧାଇ ଦେଲେ। ସାର୍‌ଙ୍କ ମାନସମ୍ମାନ ବଢିଗଲା। ତାଙ୍କର ସ୍କାଉଟ୍ ଆନ୍ଦୋଳନର ପ୍ରେରଣାରେ, ଭଲ ହୋଇଗଲା। ଛୁଟିରେ ଗାଁକୁ ଗଲେ ଆମେ ବିବିଧ ଲୋକହିତକର କାମ କରୁଁ। କୂଅରୁ ପଙ୍କ ଉଦ୍ଧାର କରୁଁ, ପୋଖରୀରୁ ଦଳ ସଫାକରୁ। ଗାଁରେ ଲୋକେ ଆମକୁ ବାଃ, ବାଃ କରନ୍ତି।

ଶିକ୍ଷକମାନଙ୍କ ମଧ୍ୟରେ ଅଧିକାଂଶ ସାହିତ୍ୟିକ ଥିଲେ। ଜଗତ୍‌ମୋହନ ସେନ୍ ଥିଲେ ଏକ ଅମାୟିକ ଶିକ୍ଷକ। ଭଞ୍ଜ ପ୍ରଦୀପରେ ତାଙ୍କର ଯେଉଁ "ଜନ୍ମଭୂମି" କବିତାଟି ପ୍ରକାଶିତ ହୋଇଥିଲା, ତାହା ନିମ୍ନ ପ୍ରକାରର

ଜୟତୁ ଜନମଭୂମି ଧନ୍ୟା !
ଗାଇ ତୋହରି ଗୀତି, ଯାଉ ଜନମ ବିତି, ବାହି ତୋର ଭାବ ବନ୍ୟା।
ଏ ହୃଦୟ ଭରି ଯେତେ ସଙ୍ଗୀତ ଜନନୀ
ଯେତେ ପ୍ରୀତିମୟୀ ଭାଷା,
ଅଞ୍ଜଳି ଧର ମୋର, ସକଳ କର୍ମ ସବୁ ମର୍ମର ଭାଷା
ଅମର ସେବିତ ଭୂମି
ନମଇ ଚରଣ ଚୁମି, ଜନନୀ ବିଶ୍ୱ ବରେଣ୍ୟା, ଜନନୀ ଧନ୍ୟା।
ଅଭ୍ର ବିଦରେ ତୋର ମୁକୁଟ ଚୂଡା
ବକ୍ରେ ବଜାଇ ଜୟ ଡଙ୍କା
ତ୍ରିଭୁବନ ସେବିତ ଚରଣାଧରମଇ
ତୋର ପୁଏ କିଏ ଦେଦବ ଶଙ୍କା....

ଶିକ୍ଷକମାନଙ୍କ ମଧ୍ୟରୁ ଅଧିକାଂଶ ବାରିପଦା ସାହିତ୍ୟ ସମାଜର ସଭ୍ୟ ଥିଲେ। ଶ୍ରୀଯୁକ୍ତ ନିଶାକର ସାହୁ ଅଦ୍ୟପି ଜୀବିତ। ତେୟନବେ ବର୍ଷ। ଅଚଳ ଅବସ୍ଥାରେ, ଶଯ୍ୟାଶାୟୀ। ତାଙ୍କର ଦୀର୍ଘଜୀବନର କାରଣ ପଚାରିବାରେ, ସେ ତିନୋଟି ଉପଦେଶ ମୋତେ ଦେଇଥିଲେ। ୧. ମଣିଷ ସହିଷ୍ଣୁ ଓ ଧୈର୍ଯ୍ୟଶୀଳ ହେବ। ୨. ଭୁଲିଯାଅ ଏବଂ କ୍ଷମାଦିଅ ନୀତି ଆଚରଣ କରିବ। ୩. ସବ୍‌ସେ ଚୁପ୍ ଭାଲା, ତୁଚ୍ଛା କିଆଁ ହୋହଲ୍ଲା।

ସରସ୍ୱତୀ ପୂଜାରେ ଥରେ ସେ ନିମ୍ନ ବନ୍ଦନାଟି ଲେଖିଥିଲେ ଏବଂ ସମବେତ କଣ୍ଠରେ ଆମେ ସମସ୍ତେ ଗାଇଥିଲୁଁ।

ଜୟ ଜୟ ଭଗବତୀ ପଙ୍କଜବାସିନୀ,
ବରାଭୟ ପ୍ରଦାୟିନୀ ଅଜ୍ଞାନନାଶିନୀ !
ଜୟ ଶୁଭଦେ ବରଦେ ବଲ୍ଲକୀ ଶ୍ରୀକରେ
ବଜାଇ ନୂପୁର ତାନେ ଆସ କୁଟୀରେ
କୃପା ତରୀରେ ମାଗୋ କବି ବାଲ୍ମୀକି
କାଳିଦାସ ଯା କୃପାରୁ ଜିଣିଲେ ମହିକି
ସେ କୃପା କଣିକା ମାଗୋ ଆମରି ବାଞ୍ଛିତ
ନ ସରିବ କୃପା ପାରାବାରୁ ମା କିଞ୍ଚିତ
କି ଦେଇ ପୂଜିବୁ ମାଗୋ ଏ ବିଦ୍ୟା ମନ୍ଦିରେ
ଘେନ ଏହି ଭକ୍ତି ଅର୍ଘ୍ୟ ଅର୍ପୁଛୁ ପୟରେ।

ଏହି ବନ୍ଦନା ଦୁର୍ଗାଚରଣ ପଣ୍ଡା ବୋଲି ପିଲାଟି ଲଳିତ ଲହର ଦିଆ କଣ୍ଠରେ ଯେତେବେଳେ ଗାଏ, ସେତେବେଳେ ହେଡମାଷ୍ଟର ମଧୁ ବିଶ୍ୱାଳ ତନ୍ମୟ ହୋଇ ପିଲା ଦେହରେ ଅଉଜିଯାନ୍ତି।

ଗୌର ମୋହନ ମାଷ୍ଟରଙ୍କ କଥା ଶୁଣନ୍ତୁ। ସେ ବି.ଏ ଫେଲ୍ ହୋଇ ଥିଲେ ମଧ୍ୟ, ଗଣିତ ତାଙ୍କୁ ବହୁତ ଭଲଆସେ। ବାରଟା ପରେ ଦିନେ ସକାଳିଆ ସ୍କୁଲ୍ ସାରି ସେ ଗାଧୋଇବାପାଇଁ ଝିଞ୍ଜିର ବନ୍ଧ ଆଡକୁ ଯାଉଥାନ୍ତି। ଅର୍ଫେନେଜ୍ (ପିତୃମାତୃହୀନ ପିଲାଙ୍କ ହଷ୍ଟେଲ) ପାଖ ବିରାଟ ଅଶ୍ୱସ୍ଥ ଗଛ ମୂଳଦେଇ ଯାଉଥାନ୍ତି। କାହିଁକି କେଜାଣି ହଠାତ୍ ପ୍ରାୟ ପଚାଶ ହାତ ଉଚ୍ଚ ଏକ ଗଣ୍ଡିରେ ଥିବା ଏକ ଅତିକାୟ ମହୁବସା ତାଙ୍କରି ଉପରେ ପଡିଗଲା। ତାଙ୍କ ମୁଣ୍ଡଟି ଚନ୍ଦା। ଦିହ, ମୁଣ୍ଡଯାକ ମହୁମାଛି ବେଢ଼ିଗଲେ। ବିଚରା ଅଚେତ୍ ହୋଇ ସେଇଠି ପଡିଗଲେ। ସଙ୍ଗେ ସଙ୍ଗେ ତାଙ୍କୁ ଡାକ୍ତରଖାନାକୁ ବୁହାଗଲା। ଛଅ, ସାତ ଦିନ ପରେ ସେ ଭଲହୋଇ ଫେରିଲେ। କାଳକ୍ରମେ ଇଏ R.I. ହୋଇ ଆମ ଗାଁକୁ ଗୋଟିଏ ମକଦମା ଇନ୍କ୍ୱାରୀ କରିବାପାଇଁ ଯାଇଥାନ୍ତି। ରାଧାକାନ୍ତ ମିଶ୍ର ଅନ୍ୟ କାହା ବିଲରୁ ଖତ ଆଣି ନିଜ କିଆରିରେ ବିଞ୍ଚୁଥାନ୍ତି। ମିଶ୍ରେ ଯାଇ ପହଞ୍ଚି R.I.ଙ୍କ ସାଙ୍ଗରେ ଖଟ ଉପରେ ବସିଗଲେ। ଦୁଇଜଣଙ୍କ ମଧ୍ୟରେ ବଚସା ହେଲା। R.I. ମହୋଦୟ ମିଶ୍ରଙ୍କୁ "stop" ବୋଲି କହି ମୁହଁ ବନ୍ଦ କରିବାର ଚେଷ୍ଟାକଲେ। ମିଶ୍ରେ ଉଠି ବସିଲେ। କହିଲେ, "କଣ କହିଲୁ ଠପ୍ ? ତିନିଥର ବି.ଏ. ପେଲ୍ ହୋଇ ତୁ ଫେର ମୋତେ କହିବୁ ଠପ୍ ବୋଲି, ତୁ ଠପ୍।"

ଆହୁରି କେତେ କେତେ ମାଷ୍ଟର ଥିଲେ । ନୀଳମଣି ମିଶ୍ର, ଆନ୍ଦ (ଆନନ୍ଦ) ବାବୁ, ବାସୁଦେବ ମହାପାତ୍ର, ସତ୍ୟବାଦୀ ସ୍କୁଲ୍‌ର । ଦୈତାରୀ ବାବୁ ଶିକ୍ଷକ ଆକାରରେ ଆଦର୍ଶ ସ୍ଥାନୀୟ । ମୁଁ ହାଇସ୍କୁଲକୁ ଗଲାବେଳେକୁ ସେ training ରେ ଯାଇଥାନ୍ତି । Training ସାରି ସ୍କୁଲକୁ ଆସିଲେ ଆମକୁ କଣାଗଲା, ସେ ଯେପରି ଦେବଲୋକରୁ ଆସିଛନ୍ତି । ତାଙ୍କର ଶିକ୍ଷାଦାନ ପ୍ରଣାଳୀ ଅଦ୍ଭୁତ ପ୍ରକାରର । ସେ ରଙ୍ଗରସ, ଗାଳିଗୁଲଜ, ମୁଖବିକୃତି ମାଧ୍ୟମରେ ପାଠକୁ ଖୁବ୍ impressive କରିପାରନ୍ତି । ଥରେ ହେଡମାଷ୍ଟର ମଧୁସୂଦନ ବିଶ୍ୱାଳ ଗୋଟାଏ ମଡେଲ ଲେସନର ବ୍ୟବସ୍ଥାକଲେ । ସେ ନିଜେ ଏକ anonymous କବିତା ‘Selfless Love’ ପଢାଇଲେ । ଏଇ କବିତାଟି ପଢାଇବାପାଇଁ ହେଡମାଷ୍ଟର ନିଜକୁ ବହୁତ ଭଲ ଭାବରେ ପ୍ରସ୍ତୁତ କରିଥିଲେ । କବିତାଟି ଏତେ ଶୋକାବହ ଯେ, ଆମେ ଦୁଃଖରେ ଶୁଣୁଥାଉଁ । କିଛି କିଛି ବିଗଳିତ ହୋଇ ଶୁଣୁଥାଉଁ । କିନ୍ତୁ ଦୈତାରୀ ବାବୁ ଆଉ ଧୈର୍ଯ୍ୟଧରି ରହିପାରିଲେ ନାହିଁ । ସେ ହେଡମାଷ୍ଟରଙ୍କ ପ୍ରତିଯୋଗୀ ହୋଇ ସେଇ କବିତାଟି ପଢାଇବାକୁ ଆରମ୍ଭକଲେ । ସେ ପଢାଇ ସାରିଲା ବେଳକୁ classରେ ଆମର କାହାରି ଆଖିରେ ଲୁହ ନଥିଲା । ମାତ୍ର “sank upon her snowy breast” ଧାଡ଼ିଟି ଦୈତାରୀ ବାବୁଙ୍କ ମୁହଁରୁ ଉଚ୍ଚାରିତ ହୋଇ ଉଠିବା ମାତ୍ରେ, ଆମେ ପ୍ରାୟ ଭୋ ଭୋ ହୋଇ କାନ୍ଦିଉଠିଲୁ । ଦୈତାରୀ ବାବୁ ଭାରି ଦୁଃଖ କରୁଥିଲେ ଯେତେବେଳେ ଆମେ ବଙ୍ଗାଳୀ ପିଲାଙ୍କ ପରି ଖେଳ ଦେଖାଇପାରୁନଥିଲୁ, ଆବୃତ୍ତି କରିପାରୁନଥିଲୁ ଏବଂ ଅଭିନୟ କରିପାରୁନଥିଲୁ । ଦୈତାରୀ ବାବୁ ଆମକୁ ଇତିହାସ ପଢାଉଥିଲେ । ତଳ ଶ୍ରେଣୀରେ ଇଂରାଜୀ ପଢାଉଥିଲେ । କାରଣ ସେ ପଢାଇଲେ ପିଲାମାନଙ୍କର ବ୍ୟାକରଣଗତ ଜ୍ଞାନ, ଉଚ୍ଚାରଣ ଜ୍ଞାନ ଓ ସର୍ବୋପରି ରସ ଉପଲବ୍ଧି ପୂର୍ଣ୍ଣ ମାତ୍ରାରେ ହୋଇପାରିବ ।

ଏବେ ରାମକୃଷ୍ଣ ନନ୍ଦଙ୍କ କଥା । ଶିକ୍ଷା କ୍ଷେତ୍ରରେ ଶିକ୍ଷକ ଆକାରରେ ତାଙ୍କୁ ମହାପୁରୁଷ ଆଖ୍ୟା ଦିଆଯାଇପାରେ । ମାତ୍ର ଅଳ୍ପ ଦିନ ତଳେ ଟେଲିଭିଜନରେ ତାଙ୍କର କଥାବାର୍ତ୍ତା, ପ୍ରଶ୍ନଉତ୍ତର ଶୁଣି ମୋତେ ଜଣାପଡୁଥିଲା, ଏବେବି ଯେମିତି ଛାତ୍ର ଆକାରରେ ତାଙ୍କ ଆଗରେ ବସି ଅମୃତମୟ ସ୍ୱର ଶୁଣୁଛି ଏବଂ ଭାବବିହ୍ୱଳ ହୋଇଯାଉଛି ଯେତେବେଳେ ସେ ‘ନିର୍ଝରିଣୀ’ ପଢାଉଥିଲେ, ସେତେବେଳର ସେଇ ଧାଡିଗୁଡିକ ମନେପଡୁଛି :

ନିଶାଦ ବାଗୁରା ଯେବେ ପାତିବ
ହରିଣୀ କି ଛାଡି ହରିଣ ଯିବ ।
ଅନ୍ତହୀନ ବିଦ୍ୟା, ଶାନ୍ତ ହିଁ କାଳ
ଅତର୍କିତେ ପୁଣି ଆସଇ କାଳ ।

ରାମକୃଷ୍ଣ ବାବୁଙ୍କ New Systematic Translation ବା ଅନ୍ୟାନ୍ୟ Text Book ଜାତୀୟ ବହିର ସ୍ୱାତନ୍ତ୍ର୍ୟ ଓ ସ୍ୱକୀୟତା ଅଛି। ଶିଶୁ ସାହିତ୍ୟର ସେ ପୁରୁଣା ଗୁରୁ। ସ୍ୱଭାବ ଓ ଚରିତ୍ରରେ ଦେବୋପମ। ତାଙ୍କର ଗୁଣଗାନ କରିବାର ମୋର ଧୃଷ୍ଟତା ନାହିଁ। ରାମକୃଷ୍ଣ ବାବୁଙ୍କ ବନ୍ଦନା "ଆହେ ଦୟାମୟ ବିଶ୍ୱବିହାରୀ" କେଉଁ ଛାତ୍ରର ଜିଭ ଅଗରେ ନାହିଁ ?

ହେଡ ପଣ୍ଡିତ ଥିଲେ ମୋର ଗୋସାଇଁ ଶ୍ୱଶୁର, ଶଙ୍କର ନନ୍ଦ, ସାଂଖ୍ୟତୀର୍ଥ। ଆମ ଗାଁ ଲୋକ। କାଶୀରୁ ସେ ପାସ୍ କରିଥିଲେ। ସଂସ୍କୃତରେ ଅଗାଧ ପାଣ୍ଡିତ୍ୟ। ଅନର୍ଗଳ ସହଜ ସରଳ ଭାଷାରେ ସଂସ୍କୃତରେ ବକ୍ତୃତା ଦେଇପାରୁଥିଲେ। ତାଙ୍କୁ କେହି କେବେ ସାର୍ଟ ବା ଗେଞ୍ଜି ପିନ୍ଧିବାର ଦେଖିନାହିଁ। ପତଳା ଓଢଣା ପକାଇ ଖାଲି ଦେହରେ କ୍ଲାସ୍‌କୁ ଆସନ୍ତି। ଉପର କ୍ଲାସ୍‌ରେ ପଢାଉଥିଲେ। ମହାରାଜା ପ୍ରଦୀପଚନ୍ଦ୍ର ଜନ୍ମ ହେବା ଉପଲକ୍ଷେ ଅଷ୍ଟକଟିଏ ରଚନା କରି ରାଜବାଟୀରୁ ଦଶୋଟି ଟଙ୍କା ପୁରସ୍କାର ପାଇଥିଲେ। ବୋର୍ଡିଂ ସୁପରିନ୍‌ଟେଣ୍ଡେଟ୍ ଥିଲାବେଳେ, ସେ କୁଲାରେ ମେସ୍‌ର ଚାଉଳ ପାଛୁଡୁଥିଲେ। ଇଂରାଜୀରେ ଦସ୍ତଖତ କରି ଦରମା ନେଉଥିଲେ। S.N. Nanda ବୋଲି ଇଂରାଜୀର ସାତୋଟି ଅକ୍ଷର ସେ ଜାଣିଥିଲେ। ଏସିଷ୍ଟେଣ୍ଟ ତତ୍ତ୍ୱାବଧାରକ ଥିଲେ ସେକେଣ୍ଡ ପଣ୍ଡିତ। ଦୁହିଁଙ୍କ ମୋଟେ ପଟୁ ନଥିଲା। "ଘୃତହୀନ କୁଭୋଜନ" ଥିଲା ତାଙ୍କର ଖାଦ୍ୟନୀତି। ଛୁଟିରେ ଗାଁକୁ ଗଲେ, ପାଞ୍ଚକିଲୋ ପର୍ଯ୍ୟନ୍ତ ଛେଳି ମାଂସ ଆଣୁଥିଲେ। କବିସୂର୍ଯ୍ୟ ବଳଦେବ ଓ ଉପେନ୍ଦ୍ରଭଞ୍ଜଙ୍କ ଗୀତ ଗୁଣୁଗୁଣୁ ହୋଇ ଭୋରରୁ ଦାଣ୍ଡ ପିଣ୍ଡାରେ ବସି ଗାଆନ୍ତି। "ଦିନେ ଶୋଇଥିଲା ଚନ୍ଦ୍ର କିରଣେ, ଝଗଡି ମାତ୍ର ହେଲ ହେ ଶ୍ୟାମ" ତାଙ୍କର ପ୍ରିୟ ଗୀତ। ସେ ପ୍ରାୟତଃ ନାସ୍ତିକ। ମନ୍ଦିରକୁ କେବେ ଯାଆନ୍ତି ନାହିଁ। ମନ୍ଦିର ପିଣ୍ଡାରେ ବସି ଗାଧୁଅନ୍ତି। ବିଚିତ୍ର ଲୋକଟିଏ।

ଥରେ ସେ ମହେଶ୍ୱର ନାୟକ ନାମକ ଜଣେ ଛାତ୍ରଙ୍କ ଖାତା ଦେଖି ଶହେରୁ ଶହେ ପାଞ୍ଚ ନମ୍ବର ଦେଇଥିଲେ। କ୍ଲାସରେ ପିଲାମାନଙ୍କ ମଧ୍ୟରେ ହାସ୍ୟରସ ହେଲା ଏବଂ ଏ କଥା ହେଡ୍‌ମାଷ୍ଟରଙ୍କ କାନକୁ ଗଲା। ହେଡ୍‌ମାଷ୍ଟର ପଣ୍ଡିତ ମହାଶୟଙ୍କୁ ଡାକି ପଚାରିଲେ ଏ ପ୍ରକାର ଅଦ୍ଭୁତପୂର୍ବ ନମ୍ବର ଦିଆର କାରଣ। ସାଂଖ୍ୟତୀର୍ଥ କହିଲେ "ପିଲାଟି ପରିଶ୍ରମ କରି ପଢିଛି ଓ ଲେଖିଛି। ସବୁ ଉତ୍ତର ଠିକ୍ ଲେଖିଛି, ଶହେରୁ ଶହେ ପାଇଛି। ମୁଁ ତାକୁ କଣ ଦେଲି ? ଖୁସୀ ହୋଇ ଅଧିକ ପାଞ୍ଚ ନମ୍ବର ମାତ୍ର ଦେଇଛି।" ଏଇ ପିଲାଟି ପରବର୍ତ୍ତୀ କାଳରେ ମୟୂରଭଞ୍ଜ ପାର୍ଲିଆମେଣ୍ଟ ମେମ୍ବର ହେଲେ, ଡେଭେଲପମେଣ୍ଟ ମନ୍ତ୍ରୀ ହେଲେ, ସର୍ବୋପରି 'ପାଷାଣୀ' କାବ୍ୟ ଲେଖି ପ୍ରଖ୍ୟାତ ଆଦିବାସୀ କବିରୂପେ ସୁନାମ ଅର୍ଜିଲେ।

ଆମର ଡ୍ରିଲ ଟିଚର ଥିଲେ ଶ୍ରୀଯୁକ୍ତ ବ୍ରଜସୁନ୍ଦର ଦାସ। ତାଙ୍କ ପିତା ବାରିପଦା

ସଂସ୍କୃତ ଜୈଇର ସୁନାମଧନ୍ୟ ହେଡ଼ପଣ୍ଡିତ ବୃଜିନାଥ କାବ୍ୟ ସାଂଖ୍ୟତୀର୍ଥ। ଗୋରା, ବପୁଷ୍ମାନ ବ୍ୟକ୍ତି। ପଣ୍ଡିତ ଶଙ୍କର ନନ୍ଦ ସାଂଖ୍ୟତୀର୍ଥଙ୍କ ଅଘୋଷିତ ପ୍ରତିଦ୍ୱନ୍ଦ୍ୱୀ। ଉଭୟ ମହାରାଜା ଶ୍ରୀରାମ ଚନ୍ଦ୍ର ଭଞ୍ଜଙ୍କ ରାଜସଭା ମଣ୍ଡନ କରିଥିଲେ। ଲୋକେ କହନ୍ତି "ପଣ୍ଡିତ ପୁଅ ମୂର୍ଖ "। ସତକୁ ସତ ଲୋକମତରେ ବୃଜବାବୁ ମୂର୍ଖ। କାରଣ ସେ ମେଟ୍ରିକ୍ ପାସ କରି ପାରିଲେ ନାହିଁ। ଖେଳରେ ସେ ନିମଗ୍ନ ହୋଇଗଲେ। ସେ କାଳର ପଣ୍ଡିତମାନେ କହୁଥିଲେ ଗୋଟିଏ ଗୁଣୀ ପୁତ୍ର, ଶହେଜଣ ମୂର୍ଖ ପୁତ୍ର ଅପେକ୍ଷା ଭଲ। ବୃଜବାବୁଙ୍କ ପରି ଚେହେରାବନ୍ତ, ସ୍ୱାସ୍ଥ୍ୟବାନ, ବହୁଗୁଣୀ ଗୋଟିଏ ପୁଅ, ଶହେ ପୁଅର ସମାନ ବୋଲି ଆଜିକାଲି ଆମେ ବିଚାରକରିବା। ପ୍ରଚଳିତ ଶିକ୍ଷାପଦ୍ଧତିରେ ସେ ମେଟ୍ରିକ୍ୟୁଲେସନ ପାଶ୍ କରିନଥିଲେ ମଧ୍ୟ, ସେ ଥିଲେ ଅଶେଷ ଗୁଣସମ୍ପନ୍ନ। ଯେ କୌଣସି ଆଧୁନିକ ପିତା ଏମିତି ପୁଅପାଇଁ ଗର୍ବିତ ହେବାକଥା। ସେ ଥିଲେ ପାଟଣା ବିଜ୍ଞାନ କଲେଜର P.T.I.। ମହାରାଜା ପୂର୍ଣ୍ଣଚନ୍ଦ୍ର ତାଙ୍କୁ ବାରିପଦା ଆଣିଥିଲେ। ତାଙ୍କୁ ମହାରାଜ କ'ଣ ପ୍ରତିଶ୍ରୁତି ଦେଇଥିଲେ, ତାହା କାହାରିକୁ ଜଣାନାହିଁ। ଅଳ୍ପ ଦିନପରେ ମହାରାଜା ସ୍ୱର୍ଗାରୋହଣ କଲେ। ବଜ୍ରବାବୁ ଜୀବନଯାକ ବାରିପଦା ହାଇସ୍କୁଲର ଡ୍ରିଲ ମାଷ୍ଟର ହୋଇ ରହିଗଲେ। ସେ ଥିଲେ ଜଣେ ଖେଳୁଆଡ୍ ଏବଂ ଓଡ଼ିଶାର ସେ କାଳର ଶ୍ରେଷ୍ଠ କ୍ରୀଡ଼ାବିତ୍। କଲିକତାରେ ପ୍ରତିବର୍ଷ ସେ ଫୁଟବଲ ଖେଳୁଥିଲେ ପ୍ରଖ୍ୟାତ ଏରିୟାନସ୍ କ୍ଲବରେ। ଓଡ଼ିଶା ତଥା ତାଙ୍କ କର୍ମସ୍ଥାନକୁ ସେ କମ୍ ସମୟ ଆସନ୍ତି। ସେ ଜଣେ ବିଶିଷ୍ଟ କ୍ରୀଡ଼ା ସଂଗଠକ। ଜଣେ ସାମାନ୍ୟ ହାଇସ୍କୁଲର ଡ୍ରିଲ ଟିଚର ହୋଇ ମଧ୍ୟ ବଙ୍ଗଳା, ବିହାର, ଓଡ଼ିଶାରେ ସେ ତାଙ୍କର ନାମ ଓ ଖ୍ୟାତି ପରିବ୍ୟାପ୍ତ କରିଥିଲେ। ତାଙ୍କରି ଯୋଗୁଁ ବାରିପଦା sportsପାଇଁ ବିଖ୍ୟାତଥିଲା। ବଡ ବଡ ଫୁଟବଲଟିମ୍, ଏପରିକି ଇଣ୍ଟରନ୍ୟାସ୍‌ନାଲ କରିନ୍ଥିଆନ୍ ଟିମ୍ ବାରିପଦା ପଡ଼ିଆରେ ଖେଳୁଥିଲେ। ସେ କାଳରେ ସେଇ ପଡ଼ିଆ ଥିଲା ଓଡ଼ିଶାର ଷ୍ଟେଡ଼ିୟମ। ୧୯୩୨ ସାଲ୍ ଜାନୁଆରି ୧୩ ଓ ୧୪ ତାରିଖରେ "ପୂର୍ଣ୍ଣଚନ୍ଦ୍ର ଏଥେଲେଟିକ୍ ସ୍ପୋର୍ଟସ୍ ସମିତି" ପକ୍ଷରୁ ପୋଲିସ୍ ପଡ଼ିଆରେ ପ୍ରଥମ ବାର୍ଷିକ ଖେଳ ପ୍ରଦର୍ଶିତ ହୋଇଥିଲା। ଏହି ଉଦ୍ୟମଟି ଷ୍ଟେଟ୍‌ରେ କାହିଁକି, ସମସ୍ତ ଓଡ଼ିଶାର ପ୍ରଥମ ବୋଲି କହିବାକୁ ହେବ। ବିହାର, ବଙ୍ଗଳା, ଓଡ଼ିଶାରୁ ପ୍ରାୟ ଏଗାରଟି ନାମଜାଦା ଟିମ୍ ଏହି ପ୍ରାଦେଶିକ ଅଲମ୍ପିକ୍ ଖେଳରେ ଭାଗ ନେଇଥିଲେ। ବ୍ରଜସୁନ୍ଦର ଦାସ ବାରିପଦା ହାଇସ୍କୁଲ ତରଫରୁ ଖେଳି ହପ୍-ଷ୍ଟେପ୍-ଏଣ୍ଡ-ଜମ୍ପ, ୨୨୦ ଗଜ୍ ଲୋ ହାଡଲ୍ ଆଦି ଖେଳରେ ଭାଗ ନେଇ ଇଣ୍ଡିଭିଜୁଏଲ୍ ଚମ୍ପିଅନ୍‌ସିପ କପ୍ ପାଇଥିଲେ ଏବଂ ନିଜ କ୍ଲବକୁ ମଧ୍ୟ ଜୟଯୁକ୍ତ କରାଇଥିଲେ।

ଖେଳଛଡା ସେ ନାଟକରେ ଅତି ଉଚ୍ଚ ଧରଣର ଅଭିନେତା ମଧ୍ୟ ଥିଲେ। "କୋଣାର୍କ", "କଳାବତୀର ପାଟ", "ସାହାବେଜ୍", "କର୍ଣ୍ଣାର୍ଜ୍ଜୁନ", "ଚନ୍ଦ୍ରଗୁପ୍ତ" ଆଦି ନାଟକ ବାରିପଦାରେ ଖୁବ୍ ସଫଳତାର ସହିତ ଅଭିନୀତ ହୋଇଥିଲା। ନାଟକଗୁଡ଼ିକରେ ବୋଲାଇ ବାନାର୍ଜି, ମାଷ୍ଟର ମାନିଆ ଆଦି ବଡ ବଡ ଅଭିନେତାଙ୍କର ସମକକ୍ଷ ରଥୀ ଥିଲେ। ସର୍ବୋପରି ବ୍ରଜବାବୁ ଥିଲେ ଜଣେ ଭଦ୍ରଲୋକ, gentlemen। ଇଂରାଜୀ ପତ୍ରିକା ଷ୍ଟେଟ୍ସ୍‌ମ୍ୟାନ ପ୍ରତିଦିନ ଏମୁଣ୍ଡ ସେମୁଣ୍ଡ ପଢନ୍ତି। ଶହ ଶହ ବଙ୍ଗଳା ଉପନ୍ୟାସ ଆୟତ୍ତ କରିଛନ୍ତି। ସିଗାରେଟ୍ ପ୍ୟାକେଟ୍ ଓ ଦିଆସିଲିଟିଏ ଧରି ଗ୍ରିନ୍ ହୋଟେଲ୍‌ରେ ସନ୍ଧ୍ୟାବେଳେ ବସିଥାନ୍ତି। ରାଜନୀତି, ନାଟକ, କଳା, ସାହିତ୍ୟ ବିଷୟରେ ଆଲୋଚନା ଓ ତର୍କ ବିତର୍କରେ ଯୋଗଦିଅନ୍ତି। କାହାରି କେବେ ଅନିଷ୍ଟ କରିନାହାନ୍ତି। ଖୁବ୍‌ରାଗି ଦେଖାଯାଉଥିଲେ ମଧ୍ୟ ସେ ନମ୍ର। ବୀତରାଗ ନିର୍ଭିକ, ଅକ୍ରୋଧୀ ବ୍ୟକ୍ତି। "ମହାରାଜା ପୂର୍ଣ୍ଣଚନ୍ଦ୍ର ସ୍ପୋର୍ଟସ୍" ଏବଂ "ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ" ଫୁଟବଲ ପ୍ରତିଯୋଗିତା ତାଙ୍କରି ଉତ୍ସାହ ଓ ପ୍ରେରଣାରେ। ବାରିପଦା ତଥା ଓଡିଶାର କ୍ରୀଡାଜଗତରେ ସେ ଥିଲେ କେନ୍ଦ୍ରବିନ୍ଦୁ। ତାଙ୍କ ଜୀବନକାଳ ଶେଷ ଆଡକୁ, ସେ ମୋହରି ଘରପାଖ ଏକ ଭଡାଘରେ ଏକୁଟିଆ ରହୁଥିଲେ। ବାରିପଦାସ୍ଥ ତାଙ୍କର ଘର ଓ ଜମିଜାଗା ବିକ୍ରି ହୋଇଗଲା। ତାଙ୍କ ବାପା ଯେଉଁ ଲାଖରାଜ୍ ଭାଗଟିଏ ଆମ ଗାଁରେ ପାଇଥିଲେ, ତାହା ପ୍ରଜାମାନେ ନେଇଗଲେ। ଆମ ଗାଁର ଗର୍ବ ଓ ଗୌରବ- ବୁଦ୍ଧିନାଥ ସାଂଖ୍ୟତୀର୍ଥ, ଶଙ୍କର ପଣ୍ଡିତ ଏବଂ ପ୍ରଖ୍ୟାତ ପ୍ରତ୍ନତତ୍ତ୍ୱବିତ୍ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓ ଡ୍ରିଲ ମାଷ୍ଟର ବ୍ରଜସୁନ୍ଦର ଦାସ।

ପୂର୍ବରୁ ଯେତେଯେତେ ଶିକ୍ଷକ ଏବଂ ପ୍ରଧାନ ଶିକ୍ଷକଙ୍କ କଥା କହିଗଲି, ତହିଁରୁ ପ୍ରତିପନ୍ନହେବ ଯେ, ସେମାନେ ସମସ୍ତେ କୋଳର୍ ଏବଂ ଅନାମଧନ୍ୟ ବ୍ୟକ୍ତି। ତାଙ୍କରି ପାଖରେ ପାଠପଢି ଯେଉଁ ଆଶ୍ଚର୍ଯ୍ୟ ଜନିତ କୃତିତ୍ୱ ମୁଁ ଅର୍ଜନ କରିଛି, ତାହା ବିନା ଟ୍ୟୁସନ, ବିନା କପି, ପରୀକ୍ଷା ହଲ୍‌ରେ ଶିକ୍ଷକମାନଙ୍କ ବିନା ସାହାଯ୍ୟରେ ଓ ବିନା "ମାନେ ବହି"ରେ ଏବଂ ସର୍ବୋପରି ଦାରିଦ୍ର୍ୟର ସୀମାରେଖାର ତଳେ ରହି। ସେତେବେଳେ ମେଟ୍ରିକ୍ୟୁଲେସନ୍ ପରୀକ୍ଷା କି ଷ୍ଟାଣ୍ଡାର୍ଡର ଥିଲା, ତାହା ସେ କାଳର ପ୍ରଶ୍ନପତ୍ରରୁ ଜାଣିହେବ। ଇଂରାଜୀ ପ୍ରଥମ ପତ୍ରରେ ଟ୍ରାନ୍‌ସଲେସନ୍ କରିବାପାଇଁ ଯେଉଁ ପରିଚ୍ଛେଦଟି ଦିଆହୋଇଥିଲା, ତାହା ମଧୁବାବୁଙ୍କ "ରାଣୀ ଦୁର୍ଗାବତୀ" ପ୍ରବନ୍ଧରୁ "ସହସା ବିପକ୍ଷ ପକ୍ଷରୁ ଗୋଟିଏ ତୀକ୍ଷ୍ଣ ତୀର ଆସି ରାଣୀ ଦୁର୍ଗାବତୀଙ୍କର ବିଶାଳ ନୟନରେ ବିଦ୍ଧ ହେଲା।" ରଚନା ଲେଖିବାପାଇଁ ଦିଆଯାଇଥିଲା : Veneration for Antiquity or Choice of Books ଉପରେ। ସେ କାଳ ନାହିଁ, କି ସେ ମାଷ୍ଟ୍ରମାନେ ନାହାଁନ୍ତି।



## ॥ ଉନ୍ମେଷଣ ॥

ଆମ ସମୟରେ ଏଣ୍ଟ୍ରାନ୍ସ ପାଠ ଉଠିଯାଇ ମେଟ୍ରିକ୍ୟୁଲେଶନ ପାଠ ଆସିଲା । କ'ଣ ପାର୍ଥକ୍ୟ ଆମେ ଅଜିଯାଏ ଜାଣି ପାରିଲୁ ନାହିଁ । ସକାଳୁ ଉଠି ପେଜି ଭିତରେ ଓଡଣିରେ ବନ୍ଧାଥିବା ସେମଟା ମୁଡି ଦିମୁଠା ପାଟିରେ ପକାଇଲି । ବାରଣ୍ଡାକୁ ଯାଇ ଦେଖିଲି- ବିହାରୀ ଗୋଷ୍ଠାଲା ଜଣେ ଗୋଟିଏ ବଡ ବେଲାରେ ରସଗୋଲା, ପାନତୁଆ ଆଉ ଗୋଲାପଜାମୁ ଇତ୍ୟାଦି ଭର୍ତ୍ତିକରି ନିଃଶବ୍ଦରେ ଚାଲିଛି । ଚାପା ଗଳାରେ "ରସଗୋଲା," "ପେଡା," "ପାନତୁଆ" ଡାକି ଡାକି । ଶୀର୍ଷାରେ ପଢୁଥିବା ବେଳେ ପରମାନନ୍ଦ ଦୋକାନର ଜଲବି, ମିଠେଇର ସୁଆଦ ଜିଭରୁ ଯାଇନାହିଁ । ମନା କରାଯାଇଥିବା ଫଳ ଚାଖିଲି ଏବଂ ହାଇସ୍କୁଲର ଏକ କଳଙ୍କ ଲାଗିଗଲା ମୋ ଜୀବନରେ । ସେ କଥା ପରେ କହିବି । ଭାତ ଖାଇ ଗାଁର ଛୋଟା ଧୋବା କାଚିଥିବା ଲୁଗା ଓ ପୂରା ହାତ ଡବଲ କାଫ୍ ଜାମା ପିନ୍ଧି ଖାଲି ପାଦରେ ସ୍କୁଲକୁ ଚାଲିଲି କେତେ ଖଣ୍ଡି ନୂଆ ବହି ଧରି । କ୍ଲାସ ଉପରକୁ ଉଠିବା ପାହାଚ ଶ୍ରେଣୀକୁ ଲାଗି ଲେଖାଅଛି- Class VIII A. । ଚାଳିଶ ଜଣ ପିଲା । ଅଧିକାଂଶ ସହରିଆ, ବଡଲୋକଘର ପିଲା । ଭାରି ଦୁଷ୍ଟ କୁଆଡେ । ପୋଷାକ ପତ୍ର, ଚାଲିଚଳନ ଆମଠାରୁ ଏକାବେଳକେ ଭିନ୍ନ । ଗାଁରେ ବା ଶୀର୍ଷା ସ୍କୁଲରେ ଆମେ ଥିଲୁଁ ପାଢୀ, ନନ୍ଦ, ମିଶ୍ର, ପାତ୍ର, କର ଆଦି । ଏଠି ଘୋଷ, ଘୋଷ, ଘୋଷ- ସବୁ ଗୋପିବଲ୍ଲଭପୁର, ନୟାବସାଣରୁ, ନହେଲେ ବାରିପଦାର ବଡ ବଡ ବଙ୍ଗାଳୀ ଚାକିରିଆ, ମୁଖାର୍ଜୀ, ବାନାର୍ଜି, ଚାଟାର୍ଜିଙ୍କ ପୁଅ ନାତି । ସବୁଥିରେ ସେମାନେ ଆଗକୁ ବଳି ପଡନ୍ତି । ଏକେତ ଆମେ ସବୁ ଦରିଦ୍ର, ଅପରିଚ୍ଛନ୍ନ, ଫୁଟାଣିହୀନ । ଏକ ପ୍ରକାର ହୀନମନ୍ୟତା ଆମକୁ ଗ୍ରାସିଗଲା କେଇଟା ଦିନରେ ଏବଂ ରହିଗଲା ଜୀବନଯାକ ।

ବିଦ୍ୟାରମ୍ଭେ ଗୁରୁଶ୍ରେଷ୍ଠ । ଇଣ୍ଡିଆନ୍ ହିଷ୍ଟ୍ରିରୁ ପାଠ ଆରମ୍ଭ ! "Mother and the mother land", says the poet, "are dearer and greater than Heaven". Listen, therefore with reverent care to the story of the great land of ours hallowed by sages and sanctified by ages." ଏଇଟି R.C. Mazumdars ଙ୍କ History of Indiaର ପ୍ରଥମ ଗୁରୁ ଗମ୍ଭୀର ବାକ୍ୟ । Class X ରୁ ଆରମ୍ଭ ହେବ Vincent Smith ଙ୍କ Ancient History of India, ବ୍ରିଟିସ ହିଷ୍ଟ୍ରି ଥିଲା J.N. Fraser ଙ୍କ, ପରେ ପଢାଗଲା Buckley ଙ୍କ ଭୂଗୋଳ କହିଲେ Dudly Stamp ଙ୍କ ପ୍ରାୟ ସାତଶ ପୃଷ୍ଠାର ବହି । ଗଣିତ ପାଠ ହେଲା- ଚକ୍ରବର୍ତ୍ତୀଙ୍କ "ଅଙ୍କବହି" ଓ K.P. Basu ଙ୍କ ବୀଜଗଣିତ । ନୂଆ କରି ଆମ ସମୟରେ ଡେସିମିଲ ପଦ୍ଧତି, Surds and

Indices ପଢାଗଲା । ମିଲିମିଟର, ସେଣ୍ଟିମିଟର ବଢ ଅଙ୍କୁଆ ଲାଗିଲା । ସଂସ୍କୃତରେ ଗଧ ଓ ଶିଆଳ ଉପାଖ୍ୟାନ କଥା ମୋତେ ଭଲ ଲାଗୁଥିଲା । ରାମକୃଷ୍ଣ ନନ୍ଦ ପଢାଉଥିବା ନିର୍ଝରିଣୀରୁ ଢାମରା କାଉ କବିତାଟି ଖୁବ୍ ଭଲ ଲାଗିଥିଲା ବିଶେଷ କରି- "ଅନ୍ତହିନ ବିଦ୍ୟା ସାନ୍ତ ହିଁ କାଳ, ଅତର୍କିତେ ପୁଣି ଆସଇ କାଳ", "ନିଷାଦ ବାଣୁଆ ଯେବେ ହରିଣୀକି ଛାଡି ହରିଣ ଯିବ" ଆଦି ଧାଡିଗୁଡିକ । କହିଲେ ଅତିଶୟୋକ୍ତି ହେବ ନାହିଁ, ଛାତ୍ରଜୀବନରେ "ସାହିତ୍ୟ ପ୍ରସଙ୍ଗ" ପରେ କ୍ଲାସରେ ଓଡିଆ ସାହିତ୍ୟ ବୋଲି କିଛି ପଢାହୋଇନାହିଁ କି କୌଣସି ବାକ୍ୟକବିତା ମୁଖସ୍ଥ କରିବାକୁ କୁହାଯାଇନାହିଁ ।

ଜଣେ ସୁଯୋଗ୍ୟ ହେଡମାଷ୍ଟର ହେବାପାଇଁ ପାଠର ଯେତିକି ଆବଶ୍ୟକତା ତାହାଠାରୁ ବେଶି ଆବଶ୍ୟକ ଶାଠ । ହେଡମାଷ୍ଟର ଶଚୀନ୍ଦ୍ର ନାଥ ଦାସଙ୍କ ଅଗାଧ ଗୁଣ, କିନ୍ତୁ ଅଭାବ- ଶାସନ କ୍ଷମତା । କଣ ହେଲା କେଜାଣି, ସେହି ବର୍ଷ ସ୍କୁଲରେ ପରୀକ୍ଷା ଫଳ ଅତୀବ ଶୋଚନୀୟ ହେଲା । ଅଣତିରିଶ ଜଣରୁ ମାତ୍ର ପାଞ୍ଚଜଣ ପାସ୍ କଲେ; ବାକି ସବୁ ଫେଲ୍ ହେଲେ । ସମଗ୍ର ରାଜ୍ୟ ହୁଲସ୍ଥୁଲ । ଛାତ୍ରସମାଜରେ ଆତଙ୍କ । ମହାରାଜାଙ୍କ କ୍ରୋଧର ସୀମା ନାହିଁ । ଡକାଅ ହେଡମାଷ୍ଟରଙ୍କୁ, ଡକାଅ ଦେବାନକୁ, ଡକାଅ ସିନିଅର ଶିକ୍ଷକ ମାନଙ୍କୁ । ଭିତିରିଆ କଣ ପରାମର୍ଶ ହେଲା କେଜାଣି, ହେଡମାଷ୍ଟରଙ୍କୁ ସ୍ପେଶିଏଲ୍ ଡ୍ୟୁଟି ଅଫିସର କରି ପଠାହେଲା । ଅନ୍ୟ ଜଣେ ହେଡମାଷ୍ଟର ସାରା ଓଡିଶା ଖୋଜାଗଲା ଏବଂ ଅବଶେଷରେ ଆସିଲେ ଲେସିଂ ସ୍କୁଲର କର୍ନୈକ ହେଡମାଷ୍ଟର ମଧୁସୂଦନ ବିଶ୍ୱାଳ । ତିନିଟା ବିଷୟରେ ଏମ.ଏ. ।

ନୂଆ ହେଡମାଷ୍ଟର ଆସିବା ସଙ୍ଗେସଙ୍ଗେ ସ୍କୁଲରେ ନୂଆ ଖେଳକଉତୁକ ଦେଖାଦେଲା । ଛାତ୍ର, ଅଭିବାବକ, ଶିକ୍ଷକ କର୍ମଚାରି ତତ୍ପର ହୋଇଉଠିଲେ । ଚାରିଟାବେଳେ ଭଲିଖେଳରେ ପଡିଆ କୋଳାହଳମୟ । ଗୋଟିଏ ଜାଗାରେ ଦୁଇଟା ପଡିଆ । ହେଡମାଷ୍ଟର ନିଜେ ଖେଳୁଛନ୍ତି । ତାଙ୍କୁ ଖେଳ ଜଣାନାହିଁ । ତଥାପି ତାଙ୍କର ଉପସ୍ଥିତି ଯଥେଷ୍ଟ ଉତ୍ସାହ ଉଦ୍ଦୀପନା ଯୋଗାଇଲା । ଆଜି ଗହ୍ମାପୂର୍ଣ୍ଣିମା । ସକାଳ ଛଅଟାରେ ବୋର୍ଡିଂ ପଡିଆରେ ଫୁଟବଲ ପ୍ରତିଯୋଗିତା । ଅଷ୍ଟମ ଏକାଦଶ ଗୋଟାଏ ପାଖରେ, ନବମ ଦଶମ ଅନ୍ୟ ପାଖରେ । ଏମିତି ଗୋଟାଏ ଖେଳରେ ବୃଷସ୍କନ୍ଧ, ପ୍ରଶସ୍ତ ଛାତିର ମଲ୍ଲ ସହିତ ମୋର ସଂଘର୍ଷ, ଯାହା ଫଳରେ ବର୍ଷ ବର୍ଷ ଧରି ମୋର ମେରୁଦଣ୍ଡ ଅକାମୀ । ଆଜି ହେଡ୍‌ମାଷ୍ଟର ଉପସ୍ଥିତ । 'ଦୁର୍ଗାଚରଣ, ତେମେ ଗୀତ ଗାଆ', ଦୁର୍ଗାଚରଣ ପାଢ଼ୀ ବୋଲି କରଞ୍ଜିଆର କଅଁଳ ପିଲାଟି ସ୍ୱର ଲହରାଇ ବଢିଆ ଗୀତ ଗାଏ । ଏକାବେଳକେ ମନମତାଣିଆ । ହେଡମାଷ୍ଟର ମୁଗ୍ଧ ହୋଇ ତାକୁ ନିଜ ଉପରକୁ ଆଉଜାଇ

ନିଅନ୍ତି। କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ନକଲ କରି ନାକରେ ଗାଆନ୍ତି- 'କୃଷ୍ଣ ଅପବାଦ, କୃଷ୍ଣ ଅପବାଦ, ପଛେ ଲାଗିଥାଉ।' ସେ ଗୀତ ସବୁ ନସବୁ ଦୁର୍ଗାଚରଣ ପୁଣି ଗାଏ- 'କେଣେ ଆଉ ଯିବୁରେ ବାପା, ବନ୍ଧା ତୁ ମୋ ମାୟାରେ, ଝୁରିଝୁରି ମରୁଛି ତୋତେ, ମିଶିଯା ମୋ କାୟାରେ।' ଉନ୍ମାଦନାମୟ ଏ ସଂଗୀତ ରଜନୀ। ସକାଳ ଛଅଟାବେଳେ ଓଭରକୋଟ ଲଗାଇ ହେଡମାଷ୍ଟର ହାଜର, ପ୍ରତି ପିଲାପାଖରେ। ଠିଆଏଁ ଠିଆଏଁ ଖାତା ସଂଶୋଧନ। ପରୀକ୍ଷାର୍ଥୀ ମାତ୍ର ସତର ଜଣ ପିଲା। "How Stanley found living stone", "A Grain as big as Hen's egg" ଉପରେ ପ୍ରଶ୍ନ। ଭଲ ଖରାପ ବୋଲି ପିଲାଙ୍କ ଭିତରେ ବଛାବଛି ନାହିଁ; ସମସ୍ତେ ସମାନ। ଟିଉସନ ବୋଲି ଶବ୍ଦ ନାହିଁ। କେରିକେଚର ହେବ। ସଂଗେ ସଂଗେ ତାଙ୍କ ଡାକରାରେ .ନାରଣ ଓ ମୁଁ ହାଜର, ହଲରେ, ସବୁ ଶିକ୍ଷକଙ୍କ ସମକ୍ଷରେ। ଏଥିପାଇଁ ଥରେ ବଙ୍ଗାଳୀ ଶିକ୍ଷକମାନେ ଆମ ଉପରେ ବିରକ୍ତହେଲେ।

ଡିବେଟ୍ ମଧ୍ୟ ହୁଏ। ହେଡମାଷ୍ଟର ସଭାପତି ହୁଅନ୍ତି। ବିଷୟ : "We live to eat or we eat to live"। ଆଉ ଥରେ ଯେମିତି ଗୋଟାଏ ମଡେଲ ଲେଶନ class ହେଇଥିଲା, "Selfless Love" କବିତା ଉପରେ। ଏବଂ ସେ ଦଇତାରୀ ବାରିକଙ୍କ ସମକକ୍ଷ ହୋଇପାରି ନଥିଲେ। ସିମିତି ତାଙ୍କର ତର୍କ ପ୍ରତିଯୋଗିତାର ଶେଷ ବକ୍ତବ୍ୟ ଏତେ ଦାର୍ଶନିକ ଓ ଦୀର୍ଘ ହେଲା ଯେ, ବିରକ୍ତି ସଞ୍ଚାରହେଲା ଆମ ମନରେ।

ମାଇନର ବୃତ୍ତିଟି ତିନି ବର୍ଷିଆ। ଯଦି ଦଶମଶ୍ରେଣୀରୁ ଏକାଦଶକୁ ଉଠିଲା ବେଳେ ମୁଁ କ୍ଲାସରେ ଫାଷ୍ଟ ନ ହୁଏ ତେବେ ସେ ବୃତ୍ତିଟି ମୋତେ ମିଳିବ ନାହିଁ। କେଦାର ବୋଲି ନୟାବସାଣ ପିଲାଟି ପାଇଯିବ। ସେ ମୋର ଏକ ଭୀଷଣ ପ୍ରତିଦ୍ୱନ୍ଦୀ। ଦୁଇଟା ଅଙ୍କ ପେପରରେ ସେ ଦୁଇଶହରୁ ଦୁଇଶହ ନେଇଯିବ। ପ୍ରତିଥର ଷାଣ୍ମାସିକ ପରୀକ୍ଷାରେ ସେ ଫାଷ୍ଟ ହୁଏ; ମୁଁ ଦ୍ୱିତୀୟ ହୁଏ। ଗ୍ରୀଷ୍ମ ଛୁଟି ପରେ ପରୀକ୍ଷା। ମୁଁ ଘରେ ଛୁଟିରେ ମୋଟେ ପଢେନାହିଁ। ମାଛଧରା, ତାସ ଖେଳ ଓ ଭଲିବଲ ଖେଳରେ ସମୟ କଟାଏ।

ଅଷ୍ଟମ ଶ୍ରେଣୀରେ ଯୋଗ ଦେବାର ଦୁଇ ଚାରି ମାସ ପରେ ସାଙ୍ଗସାଥୀମାନେ ସ୍ଥିର କଲେ, ଫଟୋ ଉଠାଇବେ। ବାରିପଦାରେ ସେତେବେଳେ ଜଣେ ମାତ୍ର ଫଟୋଗ୍ରାଫର୍। ଜନ୍ ସାହେବ। ପ୍ରକୃତ ନାଆଁ ଜଗମୋହନ ମହାପାତ୍ର। ସେ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ସହିତ ଜାହାଜରେ ବିଲାତ ଯାଇଥିଲେ। ଜୀବନଯାକ ତାଙ୍କର ଖାଣ୍ଟି ବିଲାତୀ ପୋଷାକ ରହିଗଲା। କେହି କେବେ ତାଙ୍କୁ ଦେଶୀ ପୋଷାକରେ ଦେଖି ନାହାନ୍ତି। ସମସ୍ତେ ତାଙ୍କୁ ଜନସାହେବ ଡାକନ୍ତି। ଲୁଗା କଚା, ଇସ୍ତି କରିବାଛଡା ତାଙ୍କୁ ଅନ୍ୟ କିଛି ଆସେ ନାହିଁ। ମୂଡାମିରେ ଆମେ ଚାରି ଜଣ- ହରେକୃଷ୍ଣ, ନାରଣ, ନରେନ୍ଦ୍ର ଓ ମୁଁ - ତାଙ୍କ ଘରକୁ ଗଲୁଁ।

ପୂଜାରୀ, ଆଜ୍ଞା, ସାର, ଆଦି ବିବିଧ ଡାକରେ ସେ ବାହାରକୁ ଆସିଲେ। 'କଡା ଗଳାରେ କହିଲେ- କଲିଂ ବେଲମାରି ବାରଣ୍ଡାକୁ ଆସ।' ଥରିଥରି ଆମେ ପଶିଲୁ। ଜନ୍‌ସାହେବ କହିଲେ, ପାସପୋର୍ଟ ସାଇଜ ଫଟୋ ପଚିଶ ଟଙ୍କା ପଡିବ। ଡେଲିଭାରି ମାସକରେ। ଅଗ୍ରିମ ଟଙ୍କା ଦିଅ। ଘୋଡାଗାଡି ଡାକ, କ୍ୟାମେରା, ଷ୍ଟାଣ୍ଡ ବୁହ। ଚାଲ। ଆମେ କିଛି ବୁଝିଲୁ ନାହିଁ ସାହେବ କଥା। ଫେରି ଆସି ସହରର ଅନ୍ୟ ମୁଣ୍ଡରେ ଥିବା ଜଣେ ବଙ୍ଗାଳୀଙ୍କ ଘରକୁ ଗଲୁଁ। ସେ ତିନିଟଙ୍କା ନେବେ ଏବଂ ଆଠ ଦିନରେ ଦେବେ। ସେ ଜଣେ ପୋଲିସ କର୍ମଚାରୀ। ଜଣକା ବାରଅଣା ଲେଖାଏଁ ଚାନ୍ଦାଦେଇ ଖୁବ୍ ସନ୍ତର୍ପଣରେ ସତରଞ୍ଜି ପାରି ବୋର୍ଡ ପଛରେ ଫଟୋ ଉଠାଇଲୁ। ପନ୍ଦର ଦିନ ପର୍ଯ୍ୟନ୍ତ ପ୍ରତିଦିନ ଖେଳଛୁଟିରେ ତାଙ୍କ ଘରକୁ ପାଇଁଧାଇଁ ଫଟୋ ଆଣିଲୁଁ। ବନ୍ଧେଇ କରି ଘରକୁ ନେଇ ମା'ବାପାଙ୍କୁ ଦେଖାଇଲୁଁ। ଧଳା ଶାର୍ଟ, ଧୋତିରେ, ଗକେଇ ଆସୁଥିବା କଅଁଳ ନିଶର ତେରଚଉଦ ବର୍ଷର ଟୋକାର ଛବି ବହୁ ଦିନ ଧରି ଗାଁ କାନ୍ଥରେ ଶୋଭା ପାଉଥିଲା। ଆଜି ସେ ଛବିଟି ଅନ୍ତର୍ଦ୍ଧାନ ହୋଇଯାଇଛି।

ମଣିଷର ଦୋଷ ଆଉ ଗୁଣ ସଂସର୍ଗ ହେତୁରୁ ସୃଷ୍ଟି ହୋଇଥାଏ। କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ ସଂସର୍ଗରୁ ଯିମିତି ମୋର ସାହିତ୍ୟିକ ଜୀବନର ପ୍ରାରମ୍ଭ। ନରେନ୍ଦ୍ର ପଟନାୟକ ସାଙ୍ଗରେ ମିଶି ମୋର ଧୂଆଁଖୋର ଜୀବନର ଅଙ୍କୁର ଉଦ୍‌ଗମ। ନରେନ୍ଦ୍ରକୁ ଅଙ୍କପାଠ ଭଲ ଆସେ ନାହିଁ। ସେ ତିନିଜଣ ସାଙ୍ଗ ଯୋଗାଡକଲା। ସେମାନେ ପ୍ରସ୍ତାବ ଦେଲେ, ମୁଁ ସେମାନଙ୍କର ଅଙ୍କ ଶିକ୍ଷକ ହେବି ଓ ପ୍ରତିଦିନ ଜାର୍ବନରେ ପ୍ରଶ୍ନପତ୍ର ପ୍ରସ୍ତୁତ କରି ପରୀକ୍ଷାକରିବି। ଆଜି ମନେହେଉଛି ମାଷ୍ଟରି ପାଠ ପ୍ରତି ମୋର ଶ୍ରଦ୍ଧା ଓ ଆଗ୍ରହ ବୋଧହୁଏ ସେତେବେଳେ ଉଦ୍ରେକ ହେଇଥିଲା। ପାଠ ପଢାଇ ପାରିବାର ଗର୍ବ ଓ ଆନନ୍ଦ ଛଡା ମୋର ଆଉ କିଛି ସ୍ୱାର୍ଥ ନଥିଲା। ପରୀକ୍ଷା କରେଁ। ନମ୍ବର ଦିଏ। ମୋର ଲାଭ ହେଲା, ନରେନ୍ଦ୍ର ପାଖରୁ ବିଡିଖିଆ ଶିଖିବା। ଦୁଇନମ୍ବର କୋଠରୀ କଣରେ ବସି କେହି ନ ଥିଲା ବେଳେ ଧୂଆଁ ଟାଣି ଆନନ୍ଦପାଇବା କାଣିକାଣି। ପିଲାଦିନେ କେକେ ବାପା ବାଡି କବାଟ କୋଣରେ ହାତ ପାପୁଲି ଭିତରେ ମତିହାରୀ ଦୋକତା ଶାଳପତ୍ରରେ ମୋଡି ଫିକଫିକ ବିଡି ଟାଣିବାରେ ଦେଖି ମୁଁ ଛଣକାଠିରେ ନିଆଁ ଲଗାଇ ଧୂଆଁ ଛାଡୁଥିଲି। ଏବେ ନରେନ୍ଦ୍ର ଦିବ୍ୟଜ୍ଞାନ ଦେଲା। ଅଳ୍ପ କେତେ ଦିନରେ 'ବିରାଜ ବଉ' ବଙ୍ଗଳା ଛବିର ପ୍ରାନ୍‌ର ସିଗାରେଟରୁ ରିଙ୍ଗ୍ ଛାଡିବାର ଦେଖି, ମୁଁ ବି ସିଗାରେଟ, ବିଡି ପିଇବା ଶିଖିଗଲି। ନିଶା ହୋଇଗଲା। ପ୍ରଥମେ ପ୍ରଥମେ ଚକ୍ରଧରପୁରର ଗୋଲାପସୁନ୍ଦରୀ ବିଡି, ଇଞ୍ଜିନ ମାର୍କା ବିଡି (ବଣ୍ଡଲ ଦୁଇ ପଇସା) ଟାଣି, କଲେଜ ବେଳକୁ ସାହେବ ମାର୍କା ବିଡି ଏବଂ ଗାଇମାର୍କା

ବିଡି ଆଡକୁ ଚାଲିଲି । ପଇସା ନ ଥିଲେ, ସାଙ୍ଗ ପ୍ରିୟନାଥ ନନ୍ଦୀ ଯୋଗାଏ । ଅଳ୍ପ କେଇ ମାସରେ ବାରିପଦାର ଗଣପତି ପାନ-ଦୋକାନୀ ଦେଢ଼ ଇଞ୍ଚିଆ ବିଡି ବାହାରକଲା । ଅଫିସବାଲା ସ୍କୁଲ କଲେଜ ପିଲାଙ୍କପାଇଁ ସୁବିଧା । ପଚିଶଟାକୁ ଦୁଇପଇସା । କିଏ କିଏ ଅପପ୍ରଚାର କଲେ, ଗଣପତି ବିଡିରେ ଅଫିମ ପାଣି ମିଶାଉଛି । କୋର ନିଶା ହେବ ଧୂଆଁ ଟାଣିଲେ । ମୁଁ ଥରେ ଛୁଟିରେ ଆସିଲେ ପାଞ୍ଚଶ, ହଜାରେ ବିଡି, ଦାନ୍ତକାଠି ସହିତ ବାକ୍ସରେ ନେଇଯାଏଁ । ସେତିକିବେଳେ ତାଳଚେରରୁ ଦୁଇକିସମର ବିଆସିଲି ବାହାରିଲା । ଆମେ ତାର ନାମ ଦେଇଥିଲୁ ସୁଟ୍‌କେଶ ଓ ତାଳଚେର ଟ୍ରଙ୍କ । ଦାମ ପଇସାଏ, ଦୁଇପଇସା; ପଚାଶ କାଠି, ଶହେ କାଠି ବାଲା । ଇତିହାସକୁ ଯିମିତି ଯୁଗ ଯୁଗ କରି ଭାଗ କରାଯାଏ, ମୋର ଛାତ୍ର ଜୀବନକୁ ସେମିତି କଲେ, ଏ ଯୁଗକୁ ବିଡି ଯୁଗ, ଓ ପରେ ସିଗାରେଟ ଯୁଗ କୁହାଯିବ । ଅଠର ବର୍ଷ ଧୂଆଁ ଟାଣିବା ପରେ, ଏଗାର ବର୍ଷ ଛାଡିଲି; ପୁଣି ଆରମ୍ଭ କଲି ଓ ହୋମିଓପାଥି ଡକ୍‌ଟର ଅନନ୍ତ ରଥଙ୍କ ଭର୍ତ୍ସନାରେ ଏଗାର ମାସ ଟାଣିବା ପରେ ପୁଣି ଛାଡିଦେଲି । ୧୯୬୧ ରୁ ଆଜିପର୍ଯ୍ୟନ୍ତ ବିଲକୁଲ ତ ଟାଣି ନାହିଁ । ମଝିରେ ମୋ ସ୍ତ୍ରୀ, ଏପରି କି ମୟୂରଭଞ୍ଜ ମହାରାଜା, ରାଣନିୟମ ପକାଇ, ଅନୁରୋଧ ଅନୁନୟ କରି ଗୋଟାଏ ସୁଦ୍ଧା ସିଗାରେଟ୍ (ଏପରି କି ୫୫୫ ବା ୯୯୯) ମୋତେ ଖୁଆଇ ପାରିଲେ ନାହିଁ । ମନୁଷ୍ୟ ଇଚ୍ଛାକଲେ ସବୁ କରିପାରେ । ମୁଁ ଜୀବନରେ ସେ କାଳ ଟଙ୍କାରେ ବୋଧହୁଏ ପାଞ୍ଚ ହଜାର ଟଙ୍କାର ବିଡି, ସିଗାରେଟ୍ ଖାଇଛି ।

ଡକ୍‌ଟର ଅନନ୍ତ ରଥକୁ ଶତସହସ୍ର ଧନ୍ୟବାଦ । ମୁଁ ତାଙ୍କୁ, ତାଙ୍କ ହୋମିଓପାଥି ଦୋକାନରେ ଗୋଟିଏ ସିଗାରେଟ୍ ଲଗେଇବାପାଇଁ ଅନୁମତି ମାଗିଥିଲି । ଇଂରାଜୀରେ ସେ ମୋତେ ଭର୍ତ୍ସନା କଲେ- "you have become slave to such a nasty habit। ଏଇମାତ୍ର ସିଗାରେଟ୍ ଖଣ୍ଡିଆ ଗୋଟିଏ ଫୋପାଡି ଦେଲ ପୁଣି ଆଉ ଗୋଟାଏ ଲଗାଉଛ । ଛି !" ମୁଁ ଖୁବ୍ ରାଗିଯାଇ କହିଲି- "ଏଇ ଦେଖନ୍ତୁ ମୋ ପାଖରେ ଦୁଇ ପକେଟ୍ ସିଗାରେଟ୍ (ଗୋଟାଏ କଲେଜପାଇଁ କେପ୍‌ଷ୍ଟାନ, ଆଉ ଗୋଟାଏ ବଜାରପାଇଁ କଇଁଚି ମାର୍କା । ଆଉ ଦୁଇ କଠା ବିଡି । ପାଇଖାନାପାଇଁ ଅତି କମ୍‌ରେ ଛଅଟା ବିଡି) କାଲି ଆସିବି, ଦେଖିବେ ସେ ସବୁ ପେକେଟରେ ଥିବ ସିମିତି ।" ଡକ୍‌ଟର ରଥ କହିଲେ- "ତା ଥିବ । ଏସବୁ ସାରି ନୂଆ ଷ୍ଟକ ଆଣିଥିବେ ।" ମୁଁ ସେହିଦିନଠୁଁ ମୋର ପ୍ରତିଶ୍ରୁତି ରଖିଲି । ମୋର ହାତ ପଡିଗଲା । ଖଟରେ ମୁଁ ନିସ୍ତେଜ ହୋଇ ଶୋଇରହିଲି । ଜଣେ ଏଲୋପାଥିକ ଡକ୍‌ଟର କହିଲେ- "ମାରାତ୍ମକ ଭୁଲ ଆପଣ କରିଥିଲେ । ମରିଯାଇଥାନ୍ତେ । ଏତେ ଦିନର ଅଭ୍ୟାସ ହଠାତ୍ ଛାଡିବା ଉଚିତ୍ ହୋଇ ନାହିଁ ।" ଯେ ଧୂଆଁଖୋର, ତାକୁ ବାରମ୍ବାର ଅପଦସ୍ତ

ହେବାକୁ ପଡେ, ଅଡୁଆ ପରିସ୍ଥିତିରେ ଦଣ୍ଡାଶୀନ ହେବାକୁ ପଡେ। ଧୂଆଁଖୋରକୁ ମୋର ବକ୍ତବ୍ୟ-ଧୂଆଁ ଅଭ୍ୟାସ କରିବ ନାହିଁ, ଯଦି ନିହାତି କୁସଙ୍ଗରେ ପଡି ଅଭ୍ୟାସ କର, ତେବେ ପଇସା ଖର୍ଚ୍ଚ ହେଲା ବୋଲି ନୁହଁ, ରୋଗ ବଇରାଗ ହେବା ଭୟରେ ନୁହେଁ, ଗୋଟାଏ ବଡ କଥାପାଇଁ ଧୂଆଁ ଛାଡିବ। ତାହାହେଲା, ସ୍ତ୍ରୀ ଲୋକମାନେ ଧୂଆଁ ସହିପାରନ୍ତି ନାହିଁ। ଠିକ୍ ଯେମିତି, ପୁରୁଷ କଡା ଗୁଣ୍ଡି ସହିପାରନ୍ତି ନାହିଁ। ପୁରୁଷ ସ୍ତ୍ରୀ ମଧ୍ୟରେ ଏମିତି ରାଜିନାମା ବିଶେଷ କରି ଓଡିଆ ଦେଶରେ ହେବା ଉଚିତ୍ ଯେ, ସ୍ୱାମୀ ଧୂଆଁ ଟାଣିବେ ନାହିଁ, ସ୍ତ୍ରୀ କଡା ଗୁଣ୍ଡିଦିଆ ପାନ ଖାଇବେ ନାହିଁ। ପଚାଶ ବର୍ଷ କାଳ ସ୍ତ୍ରୀଙ୍କ ନାକ ପାଖରେ ବିଡି ସିଗାରେଟ୍ ଧୂଆଁ ଟାଙ୍କିଏ ଛାଡି ଯେଉଁ ଅକ୍ଷମଣୀୟ ଅପରାଧ କରିଛି (ଯଦିଓ on the art of smoking ପ୍ରବନ୍ଧ ଲେଖି ରେଭେନ୍ସା କଲେଜର କାଗରଣରୁ ପୁରସ୍କାର ପାଇଛି) ତହିଁରୁ ମୁକ୍ତି ନାହିଁ।

ନାବାଳକ, ଏଡୋଲେସେଣ୍ଟ ବା ଚଉଦବର୍ଷିଆ ଟୋକା ଅବସ୍ଥାରେ କୁସଙ୍ଗରେ ଆଉ ଏକ ମାରାତ୍ମକ ଦଶାରେ ବୋର୍ଡିଂରେ ରହୁଥିବା ପିଲାଙ୍କୁ ପଡିବାକୁ ହୁଏ। ନରେନ୍ଦ୍ର ଯଦି ମୋତେ ଧୂଆଁପିଇବା ଶିଖାଇଥିଲା, ନାରାୟଣ ମୋତେ ଆଉ ଏକ କୁକର୍ମ ଆଡକୁ ଟାଣି ନେଉଥିଲା। ଦିନେ ଖେଳଛୁଟିରେ ସେ ମୋତେ ମେସର ଟିରେସ୍, ବାରଣ୍ଡାକୁ ଡାକି ନେଇ ଗୋଟାଏ ନିଶାଖୋର ସମବୟସ୍କ ଟୋକାକୁ ଦେଖାଇ କହିଲା, ଏଇ ସେଇ ପିଲା, ତାରି ପାଖରେ ସେ ଚିଠି ଅଛି। ବଙ୍ଗଳାରେ ଲେଖା। ସେ ପିଲା କଲିକତାରେ ଜଣକ ଘରେ ପୂଜାରି କାମକରେ। ଯାଜପୁରରେ ତା ଘର। ଦେଖିଲି- ପିଲାଟା ବେଶ୍ ସୁସ୍ଥ; ଗୋରା ତକ୍ ତକ୍। ଯାହା ଘରେ ସେ କାମ କରେ, ସେହି ଘରର ଝିଅ ଗୋଟାଏ ଚିଠି ତା ପାଖକୁ ଲେଖିଛି। ସେ ପଢି ପାରୁନାହିଁ। ତାକୁ ଲେଖିପଢି ଆସେ ନାହିଁ। ସେ ଚିଠି ପଢି ଆମକୁ ବଙ୍ଗଳାରେ ତାର ଉତ୍ତର ଲେଖି ଦେଲେ, ସେ ପଠାଇଦେବ। ସେ ଅବଶ୍ୟ ଡାକି ଦବ। ମୋ ଦିହରୁ ଝାଳ ବହିଗଲା। ଆମ ଦୁହିଁଙ୍କୁ ବଙ୍ଗଳା ପଢି ଆସେ, ଆମେ ଆତ୍ମକାହାଣୀ ନାମକ ଡିଟେକ୍ଟିଭ, ରସରସିଆ ବହି ପଢିଛୁ। ବଙ୍ଗଳା ପଢିଆସେ, କିନ୍ତୁ ଲେଖିଆସେନି। ଆମ କ୍ଲାସରେ ଫାଷ୍ଟ ହୋଇଥିବା କେଦାର ବୋଲି ପିଲାଟି କିଛି ବଙ୍ଗାଳୀ, କିଛି ଓଡିଆ। ତାର ସାହାଯ୍ୟ ନେଲୁଁ। ଆମ ସାହାଯ୍ୟ ଲୋଡିଥିବା ପିଲାଟି ଆମୂଳଚୂଳ ତା ପ୍ରେମକାହାଣୀ କହିଗଲା। ରହସ୍ୟ, କଉତୁକ, ଉତ୍‌କଣ୍ଠାରେ ଆମେ ପାଗଳ ହୋଇ ସବୁ ଶୁଣିଲୁଁ। କେଦାର ବଙ୍ଗଳାରେ ଚିଠି ଲେଖିଦେଲା। ଆମେ କିଛି ପଢ଼ିପାରିଲୁ ନାହିଁ। ନାରଣ ସେ ଚିଠିଟା ଯାଜପୁରିଆ ପିଲାଟିକୁ ଦେଇଦେଲା। ସେ ଚିଠି ହୁଏତ କଲିକତା ଠିକଣାକୁ ଚାଲିଗଲା। ବଡ ଗୋଲାପ ଫୁଲର ଛବିଟାକୁ ତା ଟିଣ ସୁଟକେଶ୍‌ରେ ଅଙ୍କାହୋଇଥିବାର ଆମେ ଦେଖିଲୁଁ, କଲିକତୀ ଅତର ଫୁଲପକା ରୁମାଲକୁ ନେଇ ପିଲା କୁଆଡେ ଅନ୍ତର୍ଦ୍ଧାନ

ହୋଇଗଲା, ତା ପରଦିନ। ଆମେ ପ୍ରେମର ବାସନା ମହକ ପାଇଲୁଁ। ମାତ୍ର, କେଦାର ବା ନାରାୟଣ ଆମକୁ କିଛି ବିବରଣୀ ଦେଲେ ନାହିଁ। ପ୍ରେମର ଜ୍ଞାନ ବା ଅଭିଜ୍ଞତା କିଛି ହେଲା ନାହିଁ। ତକିଆ ଖୋଳରେ 'ଅପର୍ଣ୍ଣା' ନାଆଁଟି ମନେରହିଲା।

ପ୍ରାକ୍‌ଟିକେଲ ପାଠ କଥା ମନେପଡ଼ୁଛି। ସ୍କୁଲରୁ ବାହାରି ଆସିଲା ବେଳେ, ଆମେ ମେଘକୁ ଡାକୁଁ। ସେ ଦିନ କଳାହାଣ୍ଡିଆ ମେଘଟା ଠିକ୍ ସମୟରେ ଅଜାଡି ଦେଲା ମୂଷଳ ଧାରାରେ। କ୍ଲାସରେ ପଢୁଥିଲା ବେଳକୁ ଲୁଗାପଟା ବହିପତ୍ର ଭିଜି ଓଦାହୋଇଗଲା। ଭୂଗୋଳ କ୍ଲାସ। ଉମାକାନ୍ତ ବାବୁ (ଯାହାଙ୍କର ଷାଠିଏ ଟଙ୍କା ଦରମାରେ ମଧ୍ୟ ପୃଥିବୀ ଘୁରେ ନାହି)ଙ୍କୁ କହିଲୁଁ- "ସାର୍, ଆଜି ଚାଲନ୍ତୁ ଆମକୁ ବୁଝାଇଦେବେ, ମାଟି କିମିତି ଧୋଇଯାଏ ଓ ନଇମୁହାଁଣ ବନ୍ଦହୋଇ କିମିତି ବନ୍ୟା ମାଡିଯାଏ। ଆମ କ୍ଲାସରେ ଚାଳିଶ ଜଣଯାକ ପିଲା ଲୁଗାପଟା ଗେଞ୍ଜି ସାର୍ଟ ଭିଜାଇ ଧାଁଦଉଡ କଲୁଁ ନଇନାଳ ପାଖରେ। ସାର୍ ଆମକୁ ବୁଝାଇଲେ। ଆମେ କାଗଜ ଡଙ୍ଗା ଭସାଇଲୁଁ। ଏତେ କଉତୁକ ହେଲା ଯେ ହେଡମାଷ୍ଟର ବି ଆମ ସାଙ୍ଗରେ ଯୋଗଦେଲେ। ଆନନ୍ଦରେ ସେ ଯେତେବେଳେ ହସନ୍ତି ତାଙ୍କ କଳା ମୁହଁଟା ଦାନ୍ତମୟ ହୋଇଯାଏ। ଇଂରାଜୀ ବହିରେ ନିଗ୍ରୋମାନଙ୍କର ହସିବାକୁ ବର୍ଣ୍ଣନା କରି ଜଣେ ଲେଖିଛନ୍ତି- They grinned till their faces seemed all white." ଆମେ ତାଙ୍କୁ ମନେପକାଇ ହସୁ। ବର୍ଷା ଛାଡିଯାଏ। ମାଟି ଧୋଇ ହେଉ ନ ହେଉ ଆମେ ଓଦାସରସର ହୋଇ ଘରକୁ ଫେରୁଁ। ସ୍କୁଲ ବନ୍ଦ ହୋଇଯାଏ।

ଏଇ ସମୟରେ "ବାରିପଦା ସେବାସଂଘ" ବୋଲି ଏକ ଅନୁଷ୍ଠାନ ଖୋଲିଲା। ରୋଗୀଙ୍କ ସେବା, ସୁରକ୍ଷା ଏବଂ ଶବଦାହ ହେଲା ଏହାର ମୁଖ୍ୟ କର୍ତ୍ତବ୍ୟ। ତେବେ ଉଭୟ କାମ ଭଲ ଲାଗେ ନାହିଁ। ମୁଁ ଡରେ ଏସବୁ କାମକୁ। ବାପାମାଆ କେବେ ମୋତେ ମୁର୍ଦ୍ଧାର ଦେଖିବାକୁ ଦେଇ ନାହାନ୍ତି। ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ଶବ, ପଟୁଆର ଏବଂ ଦାହ ପରେ ପରେ ମଡାଚଣ୍ଡିଆ ମାନଙ୍କୁ ଦେଖିଲି। 'ମଡା'କହିଲେ ମୋର ଆତଙ୍କ। ରୋଗୀ କହିଲେ ମୋର ଘୃଣା। ଆଖଣ୍ଡଳ ବାବୁ ଜନୈକ ପୋଲିସ କମାଣ୍ଡେଣ୍ଟ। ସେ କୁଆଡେ ହଜାରେ ଶବ ପୋଡିଛନ୍ତି। ଆମ ସ୍କାଉଟ୍ ମାଷ୍ଟର କାଶୀନାଥ ବାବୁଙ୍କର ମଧ୍ୟ ସେଆଡକୁ ଅଗ୍ରଗତି ଚାଲିଛି। ମୁର୍ଦ୍ଧାରଟା କୁଆଡେ ପଥର ପରି ଭାରି। ଟାଣୁଆ କାନ୍ଧ ନ ହେଲେ ତାକୁ କାନ୍ଧରେ ବୋହି ହେବ ନାହିଁ। ଶୋକଯୋଡା ଓ ଜରାଳିର ସଙ୍ଗମ ସ୍ଥଳରେ ଶ୍ମଶାନ। ବାଘ କୁଆଡେ କୁଇରୁ ମଡା ବୋହି ନେଇଯାଏ। ସାଙ୍ଗମାନେ କହିଲେ, ଗଙ୍ଗାକୁଳିଆକୁ ଭଲ ଖାଇବାକୁ ମିଳେ ମଶାଣିରୁ ଫେରିଲେ। ବାଲିଡିହା ସର୍ଦ୍ଦାର, ମୋ ସାଙ୍ଗ ଗୋପାଳର ବାପ। ସେ ମଲାରୁ ମୁଁ ମୁର୍ଦ୍ଧାର ସାଙ୍ଗରେ ମଶାଣିକି ଗଲି। ଖୁବ୍ ମୋଟା ଶବଟା। ମୁଁ କାନ୍ଧକୁ ନେଇ ନାହିଁ। ସାଙ୍ଗରେ ଯାଇଥିଲି ଏବଂ କ୍ରିୟା ସବୁ ଦେଖିଲି। ନିଆଁ ଲାଗିଲେ ମୁର୍ଦ୍ଧାରଟା କଳା

ହୋଇଯାଏ ଏବଂ ତା ପରେ ଫଟ୍‌ଫାଟ୍ ସେଁ ସେଁ ଶବ୍ଦକରି ଧଳା ଛେବଲା ହୋଇଯାଏ। ବୀଭତ୍ସ ଦୃଶ୍ୟ। ମୁଁ ଅଧାରୁ ବୋର୍ଡିଂ ଫେରିଆସିଲି, ସାଙ୍ଗ ସହିତ କନ୍ଦାକଟା କରି। ତା ପରେ ମୁଁ ବାପା, ମାଆ, ନନା, ସ୍ତ୍ରୀ, କେକେ ଆଦି କୌଣସି ଆତ୍ମୀୟର ଶବଦାହ ଦେଖିନାହିଁ।

ସେବାପାଇଁ ଥରେ ଯାଇଥିଲି। ଜଣେ ଆତ୍ମୀୟ୍ ମାଜିଷ୍ଟ୍ରେଟ ଶ୍ରେଣୀର କର୍ମଚାରୀଙ୍କ ବାପାଙ୍କର। ତାଙ୍କର ଗାଲରେ କେନ୍‌ସର। ଷାଠିଏ ବର୍ଷ ତଳର କଥା। ରୋଗ ଅତୀବ ମାରାତ୍ମକ। ଗାଲ୍‌ରେ ଶତସହସ୍ର ମୁହଁ ଥିବା ବଥଟିଏ। ମୁଣ୍ଡପରି ସାଇକ୍। ଶତ ସହସ୍ର ମୁହଁରୁ ଅନବରତ ପୂଜ ନିର୍ଗତ ହେଉଥାଏ। ତୁଳାରେ ପୂଜ ପୋଛି ତଳକୁ ଫୋପାଡ଼ିବା ମୋର କାମ। ଭାଗ୍ୟ ଭଲ, ଅଳ୍ପ କେଇଟା ଦିନରେ ସେ ମରିଗଲେ। ମୁଁ ଅନେକ ଦିନ ଧରି ରାତିରେ ସ୍ୱପ୍ନଦେଖିଲି। ସେଇ ସମୟରୁ ମୁଁ ଆଉ କାହାର ସେବା କରି ନାହିଁ। ରୋଗୀ ମଧ୍ୟ ଦେଖିବାକୁ ଯାଏ ନାହିଁ। କେହି ଡାକିଲେ କହିଦିଏ, ମୁଁ ଯାହାକୁ ଦେଖିବାକୁ ଯାଏଁ, ସେ ପ୍ରାୟତଃ ବଞ୍ଚେ ନାହିଁ।



## || କୋଡ଼ିଏ ||

ଦିନେ, ସ୍କୁଲ ଛୁଟି ପରେ ଫ୍ରେଜାର ହଷ୍ଟେଲର ପାଞ୍ଚନମ୍ବର କୋଠରୀକୁ ଫେରି, ଭୋକରେ ଆଉଟୁ ପାଉଟୁ ହୋଇ, ଗାମୁଛା ଗଣ୍ଠି ଫିଟାଉଛି (ମୁଡିବାଲି ପଇସାଟିକର ମୁଡି କାନିରେ ବାନ୍ଧିଯାଇଥାଏ, ପରଦିନ ପଇସା ନିଏ)- ଦେଖିଲି ଚାରିଜଣ ପୌଢ ବ୍ରାହ୍ମଣ ଚିତା ଚୈତନ୍ୟ ହୋଇ ମୋ ସାମ୍‌ନାରେ ଛିଡାହୋଇ ମୋତେ ନିରିଖି ଦେଖୁଥାଆନ୍ତି। ମୋ କୋଠରୀର ଆଉ ଚାରିପାଞ୍ଚ ଜଣ ପିଲା ମଧ୍ୟ ମୋରି ଆଡକୁ ଚାହିଁଥାଆନ୍ତି। ସେମାନେ ସବୁ କଣ ଦେଖୁଥାନ୍ତି କେଜାଣି, ମୋର ସ୍ୱାସ୍ଥ୍ୟ ବା ଚେହେରାରେ ସେମିତି କିଛି ନ ଥିଲା। ରାଧାଶ୍ୟାମ ଦାସ ବୋଲି ଜଣେ ବ୍ୟାୟାମ ବିଶାରଦ physical culture expert. ସେତେବେଳେ ସାରା ଓଡ଼ିଶାରେ ବୁଲିବୁଲି "ନିତିବାର" ବା Daily Dozen ଶିକ୍ଷା ଦେଉଥାନ୍ତି। ମୁଁ ଭିଜାବୁଟ, ଗଜାମୁଗ ସକାଳୁ ଖାଇ ପଡିଆରେ ସମସ୍ତଙ୍କ ସହିତ ତାଳ ଦେଇ- "ଏହି ମୋର ଭକ୍ତଭୂମି, ମୋର ମହାରାଜା, ଜନ୍ମେ ଜନ୍ମେ କରୁଥିବି ଏ ଦୁହିଁଙ୍କ ପୂଜା" ଗାଉଁଥାଏ ଓ 'ନିତିବାର' ଶିଖୁଥାଏଁ। ଦିନେ ସୁନାମଧନ୍ୟ ହେଡ୍‌ମାଷ୍ଟର ଶଶୀନ୍ଦ୍ର ନାଥ ଦାଶ ମୋତେ ବୁଦ୍ଧି, ଜ୍ଞାନ ଓ ସ୍ୱାସ୍ଥ୍ୟର ଆଦର୍ଶ ଛାତ୍ର ଭାବି, ଏକ ଛାତ୍ରସଭାରେ ଠିଆ କରାଇ, ମୋତେ ହାସ୍ୟାସ୍ପଦ କରିଥିଲେ। କିନ୍ତୁ ତତ୍‌କାଳୀନ ଡି.ପି.ଆଇ. ତ୍ରିପାଠୀ

ସାହେବ ଏ ପଦ୍ଧତିରେ ପୃଷ୍ଠପୋଷକ ଥିଲେ। ମୁଁ ତାଙ୍କୁ ଦିନ ଦଶଟା ବେଳେ ମାଲକଚ୍ଛା ଭିଡ଼ି ରେଭେନ୍‌ସା କଲେଜର ପ୍ରିନ୍‌ସିପାଲ କ୍ୱାର୍ଟର୍‌ର ଖୋଲା ବାରଣ୍ଡାରେ ଏଇ "ନିତିବାର" ଅଭ୍ୟାସ କରିବାର ଦେଖିଛି। ସେଇ ମହାଭାଗ ନରହ୍ମେ, ସ୍ୱିଡେନ୍‌ରୁ କଷ୍ଟା କର୍ଡଲିଭର ଅଏଲ ମଗାଇ, ବିଲାତି ବାଇଗଣ ରସ ସହିତ କଲେଜ ହସ୍‌ପିଟାଲ ଜରିଆରେ ବାଣ୍ଟୁଥିଲେ।

ମୋର ସ୍ୱାସ୍ଥ୍ୟ ନ ଥିଲା, କି ସମ୍ପଦ ନ ଥିଲା। ଥିଲା ପାଠ। ସମଗ୍ର ମୟୂରଭଞ୍ଜରେ M.E. ପରୀକ୍ଷାରେ ପ୍ରଥମ ସ୍ଥାନ ଦଖଲ କରିଥିବା ଦୃଷ୍ଟିରୁ, କନ୍ୟା ପିତାମାନଙ୍କର ବରଣୀୟ ରୂପେ ବିବେଚିତ ହେଉଥିଲି।

ଏ ଯୁଗରେ ସ୍କାଇଲେବ୍ ପତନ ଭୟ ପରି, ସେତେବେଳେ ସାରଦା ଆଇନ୍ ପ୍ରଚଳନକୁ ଆତଙ୍କ ଭୟ ଦୃଷ୍ଟିରେ ପିତାମାନେ ଦେଖୁଥିଲେ। ଶ୍ଳୋକ ଥିଲା "ଅଷ୍ଟାବର୍ଷା ଭବେତ୍ ଗୌରୀ, ନବ ବର୍ଷା ଚ ରୋହିଣୀ..." ଅର୍ଥାତ୍ ଆଠ ବର୍ଷର ଝିଅକୁ ଗୌରୀ କନ୍ୟା ବୋଲାଯାଏ। ଦଶବର୍ଷର ଝିଅକୁ କନ୍ୟା କୁହାଯାଏ। ତା ଉପରକୁ ରଜଃସ୍ୱଳା କୁହାଯାଏ। ପ୍ରତ୍ୟେକ ବ୍ରାହ୍ମଣ ପିତା ଗୌରୀକନ୍ୟା ଦାନକରି ସ୍ୱର୍ଗଲାଭ କରିବାର ବିଶ୍ୱାସ ଥିଲା। ସାରଦା ଆଇନ୍ ପାସ୍ ହୋଇଗଲେ, ବୟଃପ୍ରାପ୍ତ କନ୍ୟାକୁ ଦାନଦେଲେ କିଛି ଲାଭ ନାହିଁ ବରଞ୍ଚ ପାପ। ସେଥିପାଇଁ ସାରଦା ଆକ୍‌ଟ, ଆଇନ୍ ହେବା ପୂର୍ବରୁ ଉଭୟେ କନ୍ୟାପିତା ଓ ବରପିତା ନିଜର ସନ୍ତାନସନ୍ତତିମାନଙ୍କୁ ଯଥା ସମୟରେ ବିବାହ ସୂତ୍ରରେ ଆବଦ୍ଧ କରିବାପାଇଁ ଉଦ୍‌ବିଗ୍ନ ଥିଲେ। ମୋତେ ଦେଖିବାପାଇଁ ଯେଉଁ ଚାରିଜଣ ଆସିଥିଲେ ସେମାନଙ୍କର ଉଦ୍ଦେଶ୍ୟ ଯେପରି ହେଉ ବରଟିଏ ଯୋଗାଡ଼କରିବା। ତେଣେ ଗାଁରେ ମୋ ବାପା ଓ ଅନ୍ୟାନ୍ୟ ନୈଷ୍ଠିକ ପିତାମାତାଙ୍କର ଉଦ୍ଦେଶ୍ୟ ଯଥା ସମ୍ଭବ ନବବର୍ଷର କନ୍ୟାଟିଏ ପୁଅପାଇଁ ଯୋଗାଡ଼କରି ସ୍ୱର୍ଗ ପ୍ରାପ୍ତିର ରାସ୍ତା ସଫାକରିବେ। ଏଇ ଯେଉଁ ଚାରିଜଣ ମୋତେ ଦେଖିଲେ, ସେମାନେ ବରପାତ୍ର ରୂପେ ପସନ୍ଦ କରନ୍ତୁ ନ କରନ୍ତୁ, ମୁଁ କିନ୍ତୁ ନ ଦେଖି ମଧ୍ୟ କନ୍ୟା ପସନ୍ଦକରିଥିଲି। ସେତେବେଳେ ନୂଆ ବହିଟିଏ ବା ଖାତାଟିଏ ପାଇଲେ ଯେପରି ସାଙ୍ଗେସାଙ୍ଗେ ଆମେ ଲେଖିଦେଉଁ- The grass is green & the rose is red, this book is mine till I am dead। ଓଡ଼ିଆରେ:- ଘାସଟି ସବୁଜ ବର୍ଣ୍ଣ, ଗୋଲାପ ଲୋହିତ। ଲଜ୍ଜାଭୟେ ଭାଇ କେହି ନ କରିବ ଚୋରି, ଉପରେ ଯାହାର ନାମ ସେଇ ଅଧିକାରୀ। ସେତେବେଳେ ଏଇ ଯେଉଁ ଗୌରୀକନ୍ୟା, ତାହା ଘାସ ବା ଗୋଲାପ ସହିତ ତୁଳନୀୟ ଏକ ବସ୍ତୁ ମାତ୍ର। ତେର ଚଉଦ ବର୍ଷର ପିଲାଟିଏ ଛଅ ସାତ ବର୍ଷର ଝିଅର ମାଲିକାନା ସ୍ୱତ୍ତ୍ୱ ମନ୍ତ କରିଆରେ ସାବ୍ୟସ୍ତ କରିବାପାଇଁ ଏ ବିବାହ।

ଏଇ ଯେଉଁ ପ୍ରସ୍ତାବଟି ଚାରିଜଣ ଆଣିଥିଲେ, ସେଥିରେ ପ୍ରଚ୍ଛନ୍ନ ଭାବରେ ଥିଲା ଶହେ କୁଦା ଗୁଡ, ହକାରେ ମାଣ ଜମି, ପ୍ରଚୁର ସୁନା ଗହଣା ଓ କିଛି ବଡ ବଡ କୋଠାବାଡି। ମୁଁ ତେଇଁ ଉଠିଲି ଏବଂ ପ୍ରସଙ୍ଗଟି ନେଇ ସନ୍ଧ୍ୟାହେବା ପୂର୍ବରୁ ବୁଢ଼ୀ ଖମାରୀ ପହଞ୍ଚିଲେ ବଡ ଆଇଙ୍କୁ ପ୍ରସ୍ତାବଟି ବାଡିବାପାଇଁ। ବଡ ଆଇ ମୋ କଥା ଶୁଣିଲା ମାତ୍ରେ ଚିତ୍କାରକରି କହିଲେ- "ନା ବାବା, ତୁ ବାହାଘର ଫାଘର କଥା ଛାଡ୍। ଏତେ ଟଙ୍କା ତାର ଅଛି ସିନା, କିନ୍ତୁ ସେଟା ବଡରୋଗିଆଟା।" ଆଇ ବୁଢ଼ୀ ଖୁସିହେବ ଭାବିଥିଲି। କିନ୍ତୁ ଏ କଣ ? ଛି ଛି ହୋଇ ବୁଢ଼ୀ ଆରମ୍ଭ କଲା। କହିଲା- "କୋଟି କୋଟି ଟଙ୍କା, ଲକ୍ଷେ ସୁବର୍ଣ୍ଣ ମିଳିଲେ ବି ବଡରୋଗିଆ ଘରୁ କିଏ ଝିଅ ଆଣିବ, ତା ଘରକୁ କେହି ଯାଆନ୍ତି ନାହିଁ।" ମୋର ଦେହର ଉତ୍ତାପ ମୁହୂର୍ତ୍ତକେ ଖସିଆସିଲା। କିନ୍ତୁ ଗରିବ ହାଇସ୍କୁଲ ପିଲାଟିର ଟଙ୍କା ଲୋଭ ଛାଡିଲା ନାହିଁ। କାଳେ ମା ବାପା ରାଜିହୋଇଯିବେ ଏବଂ ଆଇଙ୍କ କଥା କଟିଯିବ ଭାବି, ସେଇ ଶନିବାରିଆ ଛୁଟିରେ ଗାଁକୁ ଗଲି ଏବଂ ସବୁକଥା ବାପା ମାଙ୍କୁ କହିଲି। "ନା ବାବା ନା"। ମା'ର ସେଇ ଏକ କଥା। ସୁତରାଂ ବାହାଘରର ପ୍ରଥମ ପ୍ରସ୍ତାବର ଏଇଠି ହେଲା ପୂର୍ଣ୍ଣଚ୍ଛେଦ। ପରବର୍ତ୍ତୀକାଳୀନ ଘଟଣାରୁ ଜଣାଗଲା, ଯେଉଁ ପିଲା କନ୍ୟା ପକ୍ଷର ଲୋକଙ୍କୁ ମୋତେ ଦେଖିବାପାଇଁ ଡାକିଥିଲା, ସେ ନିଜେହିଁ ସେଇ ଝିଅକୁ ବାହାହେଲା। ବଡ ଚାକିରି ପାଇ ସୁଖରେ ରହିଲା, ସେଇ କୁଷ୍ଠରୋଗୀର ଝିଅ ସହିତ।

ଗାଁରେ ବି ସାରଦା ଆଇନର ପ୍ରଭାବ ଆହୁରି ବେଶି ପ୍ରବଳ। ଶୁଣାଶୁଣିରେ ଗର୍ଭିଣୀ ମା'ମାନେ ପୁଅ ଥିବା ଲୋକକୁ ଭାବି ସମ୍ବନ୍ଧୀ ଆକାରରେ ଗ୍ରହଣକରି, ବେଦୀରେ ବସିଗଲେ ଏବଂ କପାଳକୁ ନିର୍ଭରକରି ହାତଗଣ୍ଠି ପକେଇଦେଲେ ଏବଂ କୋଉଠି କେମିତି ହାସ୍ୟାସ୍ପଦହେଲେ ମଧ୍ୟ।

ଖରାଦିନ। ରଥ ପୋଖରୀର ହୁଡାରେ ଗାଁ ସାରାର ଆବାଳ-ବୃଦ୍ଧ-ବନିତା ମୁହଁ ସଞ୍ଜରେ ସେଇ ଏକମାତ୍ର ଜଳାଶୟର ହୁଡାରେ ବସି ଗାଁ ହାଲଚାଲ ପକାନ୍ତି। କ୍ଷେତ୍ର ଓଡା ଆରମ୍ଭ କଲେ- "କାଲି ଶାସନ ଗାଁରେ କନିଆଁ ଦେଖାରେ ଯେଉଁ ଖାଇବାର ହୋଇଥିଲା, ତାହା ରଜା ଘରେ ବି ମିଳିବ ନାହିଁ। ଡାଲିରେ ଭାକୁଡିଆ ମୁଣ୍ଡ; ପାଏ ପାଏ ଓଜନର ମାଛ ଖଣ୍ଡି। ସଡେଇକଳା ମିଠେଇ, କଲିକତି ରସଗୋଲା। ଜୀବନରେ ଥରେ ଅଧେ ଏମିତି ଖାନା ମିଳେ। ଆମ ଭୋଳାର (ମୋ ବାପା) ଆନନ୍ଦ ଆଖିଦେଇ ଝରିପଡିଲା। କନିଆ ଦେଖାରେ କେହି ଲୁଗା ଦିଏ ନାହିଁ, କିନ୍ତୁ ଆମେ ସମସ୍ତେ ନୂଆ ଲୁଗା ପିନ୍ଧି ଫେରି ଆସିଲୁ।" ଅଳ୍ପଦୂରରେ ବସିଥିବା ପାଣିଗ୍ରାହୀ କହିଲେ- "ଖାଇବାର ତ ଭଲ ହେଲା

ଜାଣିଲେ, କନିଆ ପାତ୍ରୀ କେମିତି ଦେଖିଲ କୁହ ।" ଗୋଟିଏ ପଦରେ ଓଡା ବୁଢା କହିଲେ, "ଗୋଟିଏ ଚାଉଳରେ ଗଢା । ହଳଦୀ ଗଣ୍ଠି ପରି ଦେହର୍ ରଙ୍ଗ । ବୋହୂ ହୋଇ ଘରକୁ ଆସିଲେ, ସାକ୍ଷାତ୍ ଲକ୍ଷ୍ମୀ ଆସିଲା ପରି ଜଣାଯିବ, ଘର୍ ଜଳିଉଠିବ ।" ମୁଁ ଦୂରରେ ବସିଥିଲେ ବି, ଉତ୍କର୍ଣ୍ଣହୋଇ ଓଡାଙ୍କ କଥା ପିଇଯାଉଥାଏଁ ।

ପୋଖରୀ ତୁଠରୁ ଫେରି ମାଆଁ କୁ ପଚାରିଲି କନିଆଁ କଥା । ମା' କହିଲା- ଗାଁର ଯେତେ ଯେତେ କନିଆଁ- ସେସବୁ ଓଡାଙ୍କ ପସନ୍ଦ । ତାଙ୍କର ଭୁଲ ହୁଏ ନାହିଁ । ବାପାଙ୍କୁ ପଚାରି କନ୍ୟାର ନାଁ ଜାଣିଲି- ବିନୋଦିନୀବାଳା । ଧଳଭୂଇଁ ଇଲାକାରେ ଏମିତି ନାଁ ଦେଉଥିଲେ । ହଷ୍ଟେଲକୁ ଫେରି ମୋ ମନରେ ଗୋଟିଏ ଚିନ୍ତା, ବାହାଘର । ଏଇ ବାହାଘର ମୋର ପଢାପଢିରେ ବ୍ୟାଘାତଆଣିବ, ନ ଆଣିବ, ଏକଥା କେବେ ଭାବିନି । ମୁଁ ନିଜେ ନୁହେଁ, ବାପା ମାଆ ନୁହଁନ୍ତି, ଗାଁ ବାଲା ବା ସାଙ୍ଗ ସାଥୀ କେହି ନୁହଁନ୍ତି ।

ଏଥର କବିତା ଲେଖାହେବ । ବାହାଘର ଗୀତ । ଶହେ କପି ଛାପିବାପାଇଁ ତିନିଟଙ୍କା ପଡିବ, ଛାପାଖାନାର ପ୍ରିଣ୍ଟର ପଦ୍ମଚରଣ ଦାଶ କହିଲେ । ଲାଲ ମୋଟା କାଗଜ କିଣାଗଲା । ସୁନେଲି ଗୁଣ୍ଡ ଅକ୍ଷରଗୁଡାକ ଉପରେ ପକେଇଲେ ଭଲଦିଶିବ, କିଏ ଜଣେ କହିଲା । କିନ୍ତୁ ବାହାଘର ଗୀତ ବା କବିତା ଲେଖିବ କିଏ ? ଏକାଧାରରେ ଯିଏ ମୋର ଉପଦେଷ୍ଟା, କାଳିଦାସ ଗ୍ରନ୍ଥାବଳୀର ଶିକ୍ଷକ, ଜ୍ୟେଷ୍ଠଭ୍ରାତା ପ୍ରତିମ କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ।

ଷାଠିଏ, ପଇଁଷଠି ବର୍ଷ ତଳର କବିତାରୁ ଯାହା ମନେଅଛି ତାହା ଏହିପରି ।

"ମଧୁର ବାସରେ ମଧୁର ହାସରେ
ନାଚେ ହୃଦୟ ଆବେଗେ
ଜୀବନ-ବସନ୍ତେ ବସନ୍ତ କୁମାର
ପୂଣ୍ୟ ବେଦୀପୀଠେ ଚାରୁ ସହକାର
ବିନୋଦିନୀ ବାଳା ଲତିକା ସରଳା
ଦେଖି ନବଯୁଗ୍ମ ବେଶେ
ଏ ଶୁଭ ବାସରେ କୁମାରୀ କୁମାର
ଲଭନ୍ତୁ କରୁଣା ବିନ୍ଦୁ ପ୍ରଭୋ ତୋର ଆଶିଷେ ।"

ତିନିଟଙ୍କା ପଇଠକରି ଶହେ କପି ଅଣାଗଲା । ଯଥା ସମୟରେ ବଣ୍ଟାଯିବ । ବାପା ମାଆ ଓ ବନ୍ଧୁବାନ୍ଧବ ଆଶ୍ଚର୍ଯ୍ୟହେଲେ ବାହାଘର ଗୀତ ଛପା ହେବାର ଦେଖି । ଗୀତ ଛପା ପରେ ମୋର ଆଗ୍ରହ ଉତ୍କଣ୍ଠା କ୍ରମେ କ୍ରମେ ପ୍ରବଳରୁ ପ୍ରବଳତର ହେଲା । ଦିନେ ରାତିରେ

କେବଳ ବିନୋଦିନୀବାଳାର "ତାତିଲା ସୁବର୍ଣ୍ଣ ରଙ୍ଗ" ଓ "ଗୋଟିଏ ଚାଉଳରେ ଗଢା" ମୂର୍ତ୍ତୀଟି ଧ୍ୟାନକରିବାକୁ ଲାଗିଲି।

ପୁଣି ଶନିବାର ଆସିଲା। ଶୁଣିଲି, ଆମ ଗାଁ ପାଖରେ ଆଉ ଗୋଟିଏ ଗାଁକୁ ବିନୋଦିନୀ ଆସିଛି। କାଳେ ଦେଖା ହୋଇଯିବ, ଏଇ ଆଶାରେ ସେଇ ବାଟ ଦେଇ ଗାଁକୁ ଯିବାକୁ ମନସ୍ଥକଲି। ଯିବାପାଇଁ ସାଇକେଲ୍‌ଟିଏ ଦରକାର। ସେ କାଳରେ ସାଇକେଲ୍ ଦୋକାନରୁ ଦିନକୁ ଦୁଇଟଙ୍କା ଆକାରରେ ସାଇକେଲ୍ ଭଡା ମିଳୁଥିଲା, ଅନନ୍ତ ଦୋକାନରୁ। ସାଇକେଲ୍‌ଟିଏ ବିନା ପଇସାରେ ମିଳିବ କୁଆଡୁ। ରବୀନ୍ଦ୍ର ଚକ୍ରବର୍ତ୍ତୀ ନାମକ ଆମର ଜଣେ ଡ୍ରିଲ ମାଷ୍ଟର ମୋତେ ଭାରି ଭଲପାଉଥିଲେ। ଡ୍ରିଲ କ୍ଲାସରେ କେବଳ ରୁମାଲ ଚୋରି ଖେଳ ଶିଖାନ୍ତି, ନ ହେଲେ ମୋହନବାଗାନ୍ ଓ ମହମଡାନ୍ ସ୍ପୋଟିଙ୍ଗ ଖେଳ ଖବର କାଗଜରୁ ପଢି ବର୍ଣ୍ଣନାକରନ୍ତି। ଆମେ ଫୁଟବଲ୍ କ'ଣ ଦେଖିନୁ। ସେ କିଣିଥାଆନ୍ତି ନୂଆ ରେଲେ ସାଇକେଲ୍। ମାତ୍ର ଅଡତିରିଶ ଟଙ୍କା ତାର ଦାମ୍। ମୁଁ ନୂଆ ସାଇକେଲ୍ ଚଡା ଶିଖିଥାଏଁ ଏବଂ ରାସ୍ତା କଡରେ ପଡିଥିବା ଇଲେକ୍‌ଟ୍ରିକ୍ ଖୁଣ୍ଟଗୁଡାକରେ ଥରେ ଦି'ଥର ହ୍ୱାବୁଡି ପଡିଥାଏଁ। ଚକ୍ରବର୍ତ୍ତୀ ସାର୍ ମୋତେ ସାଇକେଲ୍ ଦେବାପାଇଁ ରାଜି ହୋଇଗଲେ। କାହିଁକି କେମିତି ରାଜିହୋଇଗଲେ, ମୁଁ ଜାଣି ପାରିଲି ନାହିଁ।

ପୁଣି ଏକ ଶନିବାର। ମାତ୍ର ଦୁଇଟି କ୍ଲାସ କରି ବାହାରିପଡିଲି କନ୍ୟାଦେଖା ଅଭିଯାନରେ। ଜୀବନରେ ପ୍ରଥମ, ସାଇକେଲ୍ ଉପରେ ଦୀର୍ଘତମ ଯାତ୍ରା। କୋଡିଏ ମାଇଲ୍ ରାସ୍ତା। ପଞ୍ଚାନନ ଧୋବା ଘରୁ ମାଗିଆଣିଥିବା ଇସ୍ତ୍ରୀକରା ତିନି ପିସ୍ତଲ ମାର୍କା ମାଞ୍ଚେଷ୍ଟର୍ ବାଇଗଣି ଧଡିର ଧୋତି ପିନ୍ଧିଲି। ଆଗରୁ ସାର୍‌ଙ୍କଠାରୁ ସାଇକେଲ୍ ଆଣି କୋଠରୀ ଭିତରେ ରଖିଥାଏଁ। ରୁମ୍‌ରେ ଦୁର୍ଗାଚରଣ ପଣ୍ଡା ବୋଲି ଜଣେ ଫେସନି ପିଲା ଥାଏ। ତାର ଅଧା- ଖଣ୍ଡିଆ ହେକ୍‌ଲିନ୍ ସ୍ନୋ ଡବା, ଗଗଲ୍‌ସ୍ ସହିତ ପକେଟ୍‌ରେ ପୂରେଇଲି। ଦିନ ପ୍ରାୟ୍ ଦୁଇଟା। ଖରା ଟିକିଏ ବେଶି ଜଣା ପଡୁଥାଏ। ମାଲ୍‌କଛା ଭିଡି ଦେଇ ସାଇକେଲ ଉପରେ ଡେଉଁ ଡେଉଁ ଚଡି ବସିଲି। ଗୋଟିଏ ବୋଲି ଛଦାମ୍ ପାଖରେ ନ ଥାଏ। ଚିପଟ୍ ପୋଲ ପରେ ତେନ୍ତୁଳି ଡିଙ୍ଗା ପାରହୋଇ ଯେଉଁ ବଙ୍କାଣି ସଡକ ପଡିଲା, ତାରି କଡରେ ଗୋଟାଏ ବଙ୍କା କୋଚିଲା ଗଛ। ସେଇଠି ନିଷ୍ପତ୍ତି କଲି ପ୍ରସାଧନପାଇଁ। ଗାମୁଛାରେ ମୁହଁଟା ପୋଛିଦେଇ ଦୁଇ ଆଙ୍ଗୁଳିରେ ହେକ୍‌ଲିନ୍ ସ୍ନୋ ନେଇ ମୁହଁରେ ବୋଳିଲି। ହାଟରେ ମିଳୁଥିବା ଦି ଅଣିଆ ଗଗଲ୍‌ସ୍ ନାକ ଉପରେ ଥାପିଦେଲି। ଚୂଳପାଇଁ ପାନିଆ ଦରକାର ନାହିଁ, ଆପେ ଆପେ ବସି ଯାଏ।

ଏଥର ପ୍ରକୃତ ଅଭିଯାନ ଆରମ୍ଭହେଲା । ଏତେ ଆରାମ ଲାଗିଲା ଯେ, ସାଇକେଲ ପନ୍ଦର ମାଇଲ୍, କି ପଚିଶ ମାଇଲ, କି ପଚାଶ ମାଇଲ ସ୍ପିଡ୍‌ରେ ଯାଉଛି ଜାଣିହେଲା ନାହିଁ । ଶୂନ୍ୟରେ ଉଡ଼ିଲାପରି ଲାଗିଲା । ନିଦ ଆସିଲାପରି ଲାଗିଲା । ତତ୍‌ପର ମୁହୂର୍ତ୍ତରେ ସବୁ ଅନ୍ଧକାର। ସାଇକେଲ ଆରୋହୀ ପତିତ ଧରଣୀ ତଳେ। ଉଠି ବସି ଝାଡି ଝୁଡି ହେଲି। ପାଖରେ କେହି ନ ଥିଲେ ଭାଗ୍ୟକୁ। ଝାଡି ଝୁଡି ହୋଇ ଦେଖିଲି- କଚ୍ଛା ଫିଟିଯାଇଛି । ଆଣ୍ଠୁରେ ଗୁଡେ ନାଲିଗୋଡି ଘସିହୋଇ ରକ୍ତାକ୍ତକରିଛି ଲୁଗାଟିକୁ । ଯୋତା ତ ନଥିଲା । ଗୋଡ ହାତ କଥା ଜଣା ପଡ଼ିଲା କ୍ରମେ କ୍ରମେ । ପ୍ରାୟ ସଞ୍ଜ ହେଲା ବେଳକୁ, ସତର ମାଇଲ ପାଖ ଆସି ବମ୍ବେ ଛକ ଗାଁରେ ଜଣେ ସମ୍ପର୍କୀୟ ଦଦେଇ ଘରେ ପହଞ୍ଚିଲି । ମୋ ଚେହେରା ଦେଖି ସେ କ'ଣ ଭାବିଥିବେ କେଜାଣି । ଆରସି ନଥିବା ଫଳରେ ମୁଁ ତ କେବେ ମୋ ଚେହେରା ଦେଖିନି । ସାଇକେଲ୍‌ର ନୂଆ ବେଲରେ ନିଜର ଯେଉଁ ପ୍ରତିବିମ୍ବ ଦେଖିଥିଲି। ସେଇଠି ରାତ୍ରି ଯାପନକଲି। ପରଦିନ ସକାଳୁ ଗାଁରେ ପହଞ୍ଚିଲି ଏବଂ ମା ପାଖରୁ ଶୁଣିଲି ମୋର ସେଇ ପୋଖରୀଆରେ ରହଣି କାଳରେ ଯେଉଁ ଲୋକଟି ସହଦେଖା ହୋଇଥିଲା, ସେ କୁଆଡେ ମୋର ଭାବୀ ଶ୍ୱଶୁର ହେବେ। ତଦାନାଶଂ ସେ ବିଜୟ୍ଯ୍ୟ, ସଂଜୟ ! ମୋର ସେଇ ସୂବର୍ଣ୍ଣଭ, ଗୋଟିଏ ଚାଉଳରେ ଗଢା ବିନୋଦିନୀ ହୁଏତ ମୋ ମୁଣ୍ଡରେ କଳସ ଢାଳିବ ନାହିଁ। କନ୍ୟା ଦେଖା ଆଉ ହେଲା ନାହିଁ। କନ୍ୟା ବିଷୟରେ ମା'କି ବାପା ଆଉ ଜବାବ ଦେଲେ ନାହିଁ। କାନ୍ଦିକାନ୍ଦି ଗାନ୍ଧୀ ବୁଡା ଫେରିଲା ପରି, ମୁଁ ଫ୍ରେଜାର ହଷ୍ଟେଲକୁ ଫେରିଲି ।

ଆଉ କିଛି ଦିନ ଚାଲିଗଲା । ବାହାଘର କବିତା ପେଡି ଭିତରେ ସୁନେଲି ଅକ୍ଷର ନେଇ ପଡିଥାଏ । ଦିନେ ସଂସ୍କୃତ କ୍ଲାସରେ ବସିଥାଏଁ । ପଣ୍ଡିତ ଶଂକର ନନ୍ଦ ସାଂଖ୍ୟତୀର୍ଥ କ୍ଲାସରେ ବସିଥାନ୍ତି। ସେଦିନ ସେ ମହାରାଜା ପାଖରୁ ଦଶଟି ଟଙ୍କା ପୁରସ୍କାର ପାଇ ରାଜବାଟିରୁ ଫେରିଥାନ୍ତି, ଗୋଟିଏ ସଂସ୍କୃତ କବିତା ମହାରାଜାଙ୍କୁ ଅର୍ପଣକରି। ଏଇ ପଣ୍ଡିତ ମହାଶୟ ସେଇଦିନ କ୍ଲାସରେ ମୋତେ ପଚାରିଲେ- "ବସନ୍ତ, କ୍ଷେତ୍ର ଆସିଛି, ତର ନନା ଉମାକାନ୍ତ ଆସିଛି, ଦେଖା ହେଲାଣି ?" ମୁଁ କହିଲି "ନାଁ"। ସେ ଦଣ୍ଡେ ରହି ପଚାରିଲେ, "ବାହାଘର କଥା ତୋତେ ସେମାନେ କିଛି କହିନାହାନ୍ତି ?" ମୁଁ ମନେ ମନେ ଖୁସିହେଲି, ସେଇ ବିନୋଦିନୀ ପୁଣି ଆସିଗଲା ମୋର ଜୀବନର ରାସ୍ତାକୁ। ଅଳ୍ପ ଟିକିଏ ହସ ହସି ପଣ୍ଡିତ ମହାଶୟ କହିଲେ- "ଶନିବାର ପରା ବାହାଘର"। ମୁଁ "କୋଉଠି ?" ବୋଲି ପଚାରିଲି। ପଣ୍ଡିତ ଆଉଟିକିଏ ହସ ଫୁଟାଇ ସେଇ କ୍ଲାସରେ (ମାତ୍ର ଛଅ ଜଣ ପିଲା) କହିଲେ- "ଆମ୍ଭର ଘରେ ପରା"। ମୋର ସେତେବେଳର feeling କ'ଣ ଥିଲା ମୁଁ କହି

ପାରିବି ନାହିଁ । ପ୍ରଥମରେ ସେମାନେ ହେଉଛନ୍ତି ଗାଁର, ପ୍ରାସାଦରେ ରହନେ ବାଲା, ମେ କୁଟୀରରେ ରହନେ ବାଲା । ଏ ଦୁଇ ବଂଶର ସମ୍ପର୍କ କେବେ ପ୍ରତିଷ୍ଠିତ ହୋଇ ପାରିବ ? ବିନୋଦିନୀ ବାଳାକୁ ତ ଅଦ୍ୟାପି ଦେଖିନି, ଖାଲି ନାଁରେ ହିଁ ସେ ରହିଛି । ଏଇ ଯେ ନୂଆ ପ୍ରସଙ୍ଗ ଉଠିଲା, ତା'ର ଯେ ନାୟିକା ତା ବିଷୟରେ ମୋର ଧାରଣା ଅତି ନିକୃଷ୍ଟ ଧରଣର । ଜୀବନରେ ଥରେ ମାତ୍ର ସେଇ ଝିଅଟିକୁ ଦେଖିଥିଲି । ଗାଁ ମୁଣ୍ଡରେ ତାଳଗଛ ମୂଳରେ ଏକୁଟିଆ ବସି ସେ ବାଲିଘର କରୁଥାଏ । ଏକାବେଳେ ଲଙ୍ଗଳା । ବୟସ ଛଅ, ସାତ ବର୍ଷ । ଘରେ ଆସି ମା'କୁ କହିଲି- "ମା'ଆ ଗୋ ! ନନ୍ଦ ଘରେ ଗୋଟିଏ ଝିଅ ଜନ୍ମିଛି, ଦେଖିବାକୁ ସେ ଏତେ କଦର୍ଯ୍ୟ ଯେ ତାକୁ କେହି ବାହା ହେବେନି ।" ମା' କହିଲା- "ନା'ରେ ବାପା । ଝିଅ ଜନ୍ମ ହୋଇଛି ତ, ସେ କାହା ହାଣ୍ଡିରେ ଚାଉଳ ପକେଇବ । ମୁଁ କହୁଛି, ତୁ ଦିନେ ଦେଖିବୁ !" ମୁଁ ସେତେବେଳେ ଭାବି ନଥିଲି ଏଡେ ଧନୀ ଘରର ଝିଅଟି ଆମରି ଘରର ହାଣ୍ଡିରେ ଆସି ଚାଉଳ ପକେଇବ । ମୁଁ ଖୁବ୍ ଖୁସି ହେଲି ଏ ପ୍ରସ୍ତାବରେ । କାରଣ ଆମର ଦାରିଦ୍ର୍ୟ ଚାଲିଯିବ, ତାଙ୍କରି ସାହାଯ୍ୟ ସହାନୁଭୂତିରେ । ବାପାଙ୍କୁ ଅନ୍ୟ କାହା ଘରେ ଝୁଡି ପାଛିଆ ଧରି ଧାନ କରଜ ଆଣିବାକୁ ପଡିବ ନାହିଁ । ଦୁଇ ବାଲ୍ୟ ସାଥୀ ମୋର- ଜେଜେ ହରିହର ଏବଂ ଜଗନ୍ନାଥ ନନ୍ଦ ଏହି ବିବାହ ସୂତ୍ରରେ ଏକ ବଂଶର ହୋଇଯିବେ ।

ବାରିପଦାକୁ ଫେରି ମୋର ପ୍ରଥମ କର୍ତ୍ତବ୍ୟ ହେଲା ପେଡି ଭିତରୁ ସଯତ୍ନେ ସଞ୍ଚିତ ସୁନେଲି ନିମନ୍ତ୍ରଣ ପତ୍ରକୁ ଫିଟାଇ ନାମ ସଂଶୋଧନ କରିବା । ହିରୋଇନ୍‌ର ନାମ ବଦଳ କରିବା । ବିନୋଦିନୀବାଳାର ନାମ ସ୍ଥାନରେ ଛଅ ଅକ୍ଷର ବିଶିଷ୍ଟ ନାମ ଟିଏ ବସାଇବା । ଯେଉଁ ଝିଅ ହିରୋଇନ୍ ହେବାକୁ ଯାଉଛି, ତାର ଡାକ ନାମ ଛଡା ଅନ୍ୟନାମ କିଛି ନଥିଲା । ମୋତେ ନୂଆ ନାମକରଣ କରିବାକୁ ପଡିଲା । ଦାରିଦ୍ର୍ୟ ଯେମିତି ଆଉ ଅଧିକ ଦିନ ସହଚରୀ ନ ହୁଏ, ସେଥିପାଇଁ ଅନ୍ନପୂର୍ଣ୍ଣାବାଳା ନାମଟି ପସନ୍ଦକଲି ଏବଂ ଶହେଟା ଯାକ କାର୍ଡରେ ସଂଶୋଧନ କରିଦେଲି । ଏ ସମ୍ପର୍କରେ କୃଷ୍ଣ ବାବୁଙ୍କ ସାହାଯ୍ୟ କଥା ପରେ କହିବି । ମାତ୍ର ତିନିଦିନ ପରେ ବାହାଘର, ଶନିବାର । ଭଞ୍ଜପୁରରେ ଟ୍ରେନ୍ ଧରିଲୁ । ଆମର ଦଳ ଛଡା ଆହୁରି ଚାରି ପାଞ୍ଚଟି ବିବାହ ଦଳ ସେହି ଟ୍ରେନ୍‌ରେ ଯାଉଁଥାଉଁ । ସାରଦା ଆଇନ୍ କାଳେ କେତେବେଳେ ପାସ୍ ହୋଇଯିବ ଏବଂ ବଡ କନ୍ୟା ଦାନକରି ବାପମାନେ ପୂଣ୍ୟ ଅର୍ଜନ କରିପାରିବେ ନାହିଁ, ସେଇ ଭୟରେ ସମସ୍ତେ ବ୍ୟସ୍ତ । ଏପରିକି ଆତଙ୍କିତ । ମୁଁ ବସିଥାଏଁ, ଭାବି ଶ୍ୱଶୁରଙ୍କ ଆଖି ମୋ ଉପରେ । ବରପାତ୍ରର ରୂପରେଖ ଖୁବ୍ ପାଖରୁ ନିର୍ଣ୍ଣୟ କରୁଥାନ୍ତି ବୋଧହୁଏ । ପାଦାନି ବା ଫୁଟ ବୋର୍ଡରେ ଗୋଡଦେଇ

ଯାଉଁଥାଏ, ଭାବି ଶ୍ୱଶୁର ମୋତେ ସେ କାମରୁ ନିବୃତ୍ତକଲେ। କାଳେ ପଡିଯିବ ଭାବି ଜାମାତାଟି। କେତେ ଶୀଘ୍ର ମଣିଷ ମଣିଷ ମଧ୍ୟରେ ମମତା ହୋଇଯାଏ। ରାଜାଲୋକା ଷ୍ଟେସନରେ ଓହ୍ଲାଇଲା ବେଳକୁ ଜଣେ କିଏ ପତ୍‌ପତ୍ କରୁଥିବା ଝଙ୍କାଏ ବିଲାତି ବାଇଗଣ (ଯାହାର ଦାମ୍ ଚାରିଅଣା ସେତେବେଳେ) ଆମକୁ ଦେଇଦେଲା। ଆମେ ତା ପ୍ରତି କୃତକୃତ୍ୟ ହେଲୁ। ବାହାଘର ଭୋକିର ଖଟା ସମସ୍ୟା ସମାଧାନ ହୋଇଗଲା। ଖୋଦା ଯାହାକୁ ଦିଅନ୍ତି, ଏମିତି ଛପରଫାଡି ଦିଅନ୍ତି।

ଶନିବାର ସଂଧ୍ୟା ସାତଟାରେ ଦୁଇଚାରିଟି ଲଣ୍ଠନ ସାଙ୍ଗରେ ନେଇ ବରଯାତ୍ରୀ ଚାଲିଲେ ପ୍ରାୟ ଶହେ ଗଜ ଦୂର କନ୍ୟା ଘରକୁ। ସୁଆରୀରେ କଛାଖଣ୍ଡିକ ଉପରେ ବର ବସିଲେ। ବରର ଜିଦ୍, ବାଣ ନ ଫୁଟିଲେ ବାହାଘର ହେବନି। ପାଞ୍ଚଟି ଟଙ୍କା ଖର୍ଚ୍ଚ ହେବ। ବ୍ୟବସ୍ଥାହେଲା। ଜଣେ ଲୋକ ଧାଇଁଲା ପାଞ୍ଚମାଇଲ୍ ଦୂର ମଞ୍ଜିଆରି ଗାଁକୁ- ସେଇଠି ବାରୁଦକାମ ହୁଏ। ଗୋଟିଏ ବୋମା, ଦୁଇଟି ହବେଲୀ, ଚାରି ପାଞ୍ଚଟା କୁମ୍ଭି ଆଉ ଆଠ ଦଶଟା ଝାରାବତୀ- ସର୍ବମୋଟ ପାଞ୍ଚଟଙ୍କା। କନ୍ୟାଘର ପାଖରେ ବରଯାତ୍ରୀ ପହଞ୍ଚିଲେ ବୋଲି ସୂଚନା ଦେବାଲାଗି ଯେଉଁ ବୋମା ଫୁଟିଲା, ବରର ସାଙ୍ଗର ପ୍ରାଣ ଯାଉଯାଉ ରକ୍ଷାପାଇଲା। ସେ ତାକୁ ଫୁଙ୍କିକରି ଫୁଟେଇବାକୁ ଚାହୁଁଥିଲା। ବେଦୀରେ ବସିବାର ପୂର୍ବରୁ ବରପାତ୍ରଟି ବିବାହର କବିତା ସବୁକୁ ଯ୍ୟ ତା କରିଆରେ ବିତରଣକଲେ। ଯେଉଁ ମାନେ ପାଇଲେ, ସେମାନେ ପ୍ରାୟ ନିରକ୍ଷର। କବିତା କଣ ସେମାନେ ଜାଣନ୍ତିନି। ଯେମିତି ପାନ, ବିଡି, ବଣ୍ଟାଯାଏ, ଖାଲି ମିଳୁଛି ବୋଲି ସମସ୍ତେ ନେଇଗଲେ। ବରପାଇଁ ଯେଉଁ ଧୋତି ଏବଂ ଚାଦର କିଣାହୋଇଥିଲା, ତାହା ମାଞ୍ଚେଷ୍ଟର (ଇଂଲଣ୍ଡ) ତିଆରି। ଏତେ ପତଳା ଯେ, ଆଜିକାଲି କେହି ଅନ୍ତର୍ବାସ (underwear) ନ ପିନ୍ଧିଲେ ସେ ଧୋତି ପିନ୍ଧି ପାରିବେ ନାହିଁ। ହାତଗଣ୍ଠି ପଡିବା ବେଳକୁ କନ୍ୟା ନିଘୋଡ ନିଦରେ। ବାରିକ ପଛଆଡୁ ଧରି ସଳଖାଇଦେଲା। ହୋମ ବେଳକୁ କନ୍ୟା ପ୍ରାୟ ହୋମଶିଖା ଉପରେ। ତାପରେ ରାତି ପ୍ରାୟ କୁକୁଡାଡାକ ବେଳକୁ ବାହାଘର ସରିଲା। ଶାଶୂ ପାଖରେ (ଶ୍ୱଶୁର ପାଖରେ ନୁହେଁ) ମୋର ଗୋଟିଏ ମାଗୁଣିଥିଲା, ତାହା ହେଲା ଝିଅଟିକୁ ପାଠପଢେଇବା। ସେ କଥା ରଖିଥିଲେ। ଯାହା ଫଳରେ ୧୯୩୩ ସାଲରେ Lower Primary (ନିମ୍ନ ପ୍ରାଥମିକ) ପାସ୍‌କଲା। ତହିଁ ପରଦିନ ସଂଧ୍ୟା ବେଳେ ବରଯାତ୍ରୀ ଫେରିଲେ। କନିଆ ବସିଲା ସୁଆରରେ, ବର ବସିଲା ବଳଦ ଗାଡିରେ। ଏବଂ ପାଟିରେ ଟକରା ଫୁଟେଇ ଅତି ଗର୍ବରେ ବରଯାତ୍ରୀମାନଙ୍କ ସହ ଫେରିଲେ। ଷୋଳ ବର୍ଷର ଟୋକାର ଛଅ ବର୍ଷର ଝିଅ ସହିତ ବିଧିବଦ୍ଧ ଭାବରେ ବାହାଘର ସରିଲା। କନ୍ୟାଟି ବରର ଠିକ୍ ଆଣ୍ଠୁଏ। ବଣ୍ଟା ହୋଇପାରି

ନଥିବା ବିବାହ କବିତା ସବୁ ବାରିପଦା ହଷ୍ଟେଲରେ ବଣ୍ଟାହେଲା । ଦୁଇଟା ଜିନିଷ ମୁଁ ବାହାଘରରେ ବୁଝିପାରିଲି ନାହିଁ । ବରକନ୍ୟାଙ୍କର କଉଡିଖେଳ ହୁଏ । ବର ଯେତେବେଳେ କନ୍ୟାମୁଠାରୁ କଉଡି ବାହାର କରେ, ସେ କେବଳ ନିକର କାନି ଆଙ୍ଗୁଳିଟି ବ୍ୟବହାରକରେ । କିନ୍ତୁ କନ୍ୟା ବେଳକୁ ପାତର ଅନ୍ତର ନୀତି । ସେ ଦୁଇ ହାତରେ ଆଙ୍ଗୁଳି ଯେମିତି ଯଥେଷ୍ଟ ନୁହେଁ, ନଖ, ଦାନ୍ତ ଲଗେଇ ସେ ବର ମୁଠାରୁ କଉଡି ବାହାରକରିବ । ଦ୍ୱିତୀୟ କଥାଟି ହେଲା, କାହିଁକି ଦୀପଟିଏ ଜାଳି, ଏକା ମସିଣାରେ ଛଅ ବର୍ଷର ଝିଅ ଚଉଦ ବର୍ଷର ସ୍ୱାମୀ ସହିତ ଏକତ୍ର ଶୟନକରିବ !

ବିବାହ ପରେ ହଷ୍ଟେଲକୁ ଫେରିଲି । ଲାଲ ଧଡିର ହଳଦିଆ ବିବାହ ଧୋତି ପିନ୍ଧି ଯେତେବେଳେ ସ୍କୁଲ ପଡିଆରେ ଚାଲିଥାଏଁ, ସେତେବେଳେ ସାଙ୍ଗସାଥୀମାନେ ହଷ୍ଟେଲରୁ ଦେଖି କଣ ଭାବୁଥିବେ, ସେଇଟା ମୁଁ ଚିନ୍ତାକରୁଥାଏଁ । ଦଶଟା ବେଳେ କୋଠରୀର ଭିତରକୁ ପଶିଲା ବେଳକୁ, ଚକ୍ରା ଚପରାଶି ଆସି ହେଡମାଷ୍ଟରଙ୍କ ଖଣ୍ଡେ ଚିଠି ମୋତେ ଧରେଇଦେଲା । ଲେଖାଥିଲା- Sri Basanta Kumar Satpathy will not be allowed to stay in the hostel without my permission. When he comes, tell him to meet me at once । ମୁଁ ଦିନଯାକ ଗୁରୁଟ୍ରେନିଂ ସ୍କୁଲ ପିଣ୍ଡାରେ ଭୋକଉପାସରେ ରହି କାଟାଇଲି । ବାହାଘରର ସବୁ ମଉଜ କୁଆଡେ ଉଭେଇଗଲା । ଆଖିରୁ ଖାଲି ଲୁହ ଝରୁଥାଏ ଦିନଯାକ । ଲାଲିଧଡିର ମାଞ୍ଚେଷ୍ଟର ହଳଦିଆ ଧୋତି ଚିରି ଫୋପାଡି ଦବାକୁ ମନହେଉଥାଏ । ଚାରିଟା ବେଳକୁ ହେଡମାଷ୍ଟରଙ୍କୁ ତାଙ୍କ କ୍ୱାଟରରେ ଦେଖାକଲି । ଗର୍ଜି ଉଠି ସେ ସେ କହିଲେ, "ଶଳା ! ନନ୍ଦ କିଶୋର ମହାନ୍ତି ନ କହିଥିଲେ ତୋତେ ପୁଲିସ୍ ଦେଇ ବଜଦାଣ୍ଡରେ ବୁଲେଇଥାନ୍ତି ! ଶଳା ମେସ୍ ପଇସା ଖାଇଦେଲୁ ! ହଉଯା...!! ଭଲକରି ପଡାଶୁଣା କରୁଥିବୁ ।" ମୋ ଆଡକୁ କଟମଟ ଚାହିଁ ଉର୍ଦ୍ଧନାକଲେ, "ଏକାବେଳକେ ୪୪ ଟଙ୍କାର ରସଗୋଲା ଖାଇଦେଲୁ ?" ପ୍ରକୃତ କଥା ହେଉଛି- ମୁଁ ମେସ୍ ମେନେଜର ଥିଲି ଏବଂ ମୋ ନିଜର ନିରାପଦ ବାକ୍ସ ନଥିବା ଫଳରେ ଆଉ ଜଣେ ପିଲାର ପେଡି ଭିତରେ ମେସ୍ ପଇସା ରଖିଥିଲି । ମାସ ଶେଷରେ ଯେତେବେଳେ ହିସାବ ହେଲା, ସେତେବେଳେ ୪୪ଟଙ୍କା ଅଭାବ ହେଲା, ଯେଉଁମାନେ ଟଙ୍କା ଫେରସ୍ତପାଇବେ, ସେମାନେ ପାଟିତୁଣ୍ଡ କଲେ । ପ୍ରତିଦିନ ବିହାରୀ ରସଗୋଲାବାଲା ଗୋଟାଏ ବଡ ବେଲାରେ ରସଗୋଲା, ପାନତୁଆ ଧରି ହଷ୍ଟେଲ୍‌କୁ ଆସୁଥିଲା । ସେଗୁଡାକ ମୁଁ ସବୁ ଖାଇ ଦେଲି ବୋଲି ଅପବାଦ ସହିଲି । ସେ ପଇସା କୁଆଡେ ଗଲା, ତାର ହିସାବ ମୁଁ ଦେଇ ପାରିଲି ନାହିଁ । ହୁଏତ ପରର ବାକ୍ସରେ ପଇସା ରଖିବାର କୁଫଳ ପାଇଲି ।

ପାଞ୍ଚବର୍ଷ ପରେ, ୧୯୩୬ ସାଲରେ ପୁନର୍ବିବାହ ବନ୍ଦାପନା ହେଲା। ଶ୍ୱଶୁର ଘରୁ ହଳଦିଆ ପତ୍ର ଆସିଲା। ସେ ହଳଦିଆ ପତ୍ରରେ ଯାହା ଲେଖାଥିଲା, ତାହାର ମର୍ମ ହେଉଛି- "ସମୁଦି ! ତୁମର ପୁତ୍ରବଧୂ ଘରଯୋଗ୍ୟ ହୋଇଛି; କିନ୍ତୁ ଗଣ୍ଡଦୋଷ ଥିବାରୁ ବର୍ଷେକାଳ ହୋମାଦି କର୍ମ ହୋଇପାରିନାହିଁ। ବର୍ଷେ ପରେ ଭଲଦିନ ଦେଖି ବୋହୂକୁ ବନ୍ଦାପନାପାଇଁ ନେଇଯିବାର ବ୍ୟବସ୍ଥାକରିବ।" ମୁଁ ବର୍ଷେକାଳ ନନ୍ଦଘର ସାମନା ରାସ୍ତାରେ ଯାଆସ କରିନାହିଁ। କାଳେ ବୋହୂ ସହିତ ଦେଖାହୋଇଯିବ, ଏଇ ଭୟରେ। ଗାଁରେ ସେମିତି କେଉଁ କାଳରେ ଥରେ କୁଆଡେ ଏମିତି ଗଣ୍ଡଦୋଷଥିବା ଅବସ୍ଥାରେ ଅସମୟରେ ଦେଖାହୋଇଯିବା ଫଳରେ ରକ୍ତବାନ୍ତି କରି ପୁଅଟି ମରିଗଲା।

ବଧୂ ଆଗମନର ଦିନ ଆସିଗଲା। ଗ୍ରୀଷ୍ମଛୁଟି ଅବକାଶରେ। ଗାଁ ପିଣ୍ଡା ସବୁ ଲୋକାରଣ୍ୟ। ନନ୍ଦ ଘର ଧନୀ କନ୍ୟା। କେତେଟା ଭାର ଆସୁଛି ଗଣିବେ। ୧୯ଟି ଭାର ଆସିଲା। ପ୍ରଥମ ଭାରର ଦହିପାଣି ଓ ମାଛ। ଦ୍ୱିତୀୟ ଭାରରେ ଶିଳ ଏବଂ ଶିଳପୋତା ତୃତୀୟ, ୪ର୍ଥ, ୫ମ, ୬ଷ୍ଠ ଚୂଡା ଓ ଉଖୁଡା। ୭ମ ଭାର ଫେଣି। ଏହି ପ୍ରକାରର ଆଉସବୁ ଭାର ନାମ କହିଲେ ପିତଳ ଗରା, ରୋଷେଇ ସରଞ୍ଜାମ, ଗହଣାଗାଣ୍ଠି। ସର୍ବୋପରି ଘରକରଣା ଚିଜ, demand ବା ଯୌତୁକ କହିଲେ ସେ କାଳରେ କେବେ କିଛି କହିବେ ନାହିଁ। ବଡିଆ ସୁନା ତ ପାଇଲ, ଆଉ କଣ ? ଗ୍ରୀଷ୍ମ ଛୁଟିପରେ କାନ୍ଦିକାନ୍ଦି କଲେଜ ହଷ୍ଟେଲକୁ ଫେରିଲି ନାହିଁ। ପାଠ ପଡା ତ ସରି ନାହିଁ। ବୋହୂନେଇ ଯିବ କୁଆଡେ ?



## ॥ ଏକୋଇଶ ॥

କୃଷ୍ଣଚନ୍ଦ୍ର ପାଣିଗ୍ରାହୀଙ୍କ କଥା। ୧୯୨୮ ସାଲରେ ଶୀର୍ଷା ମାଇନର୍ ସ୍କୁଲରୁ ମୟୂରଭଞ୍ଜରେ ପ୍ରଥମ ହୋଇ ବାରିପଦା ହାଇସ୍କୁଲକୁ ଯେବେ ପଢିବାକୁ ଗଲି, ସେଇଠି କୃଷ୍ଣବାବୁଙ୍କ ସହିତ ପ୍ରଥମ ଦେଖାହେଲା। ପୂର୍ବବର୍ଷ ସେ କରଞ୍ଜିଆ ମାଇନର ସ୍କୁଲରୁ ମୟୁରଭଞ୍ଜରେ ପ୍ରଥମ ହୋଇ ବାରିପଦା ଫ୍ରେଜାର୍ ହଷ୍ଟେଲରେ ରହିଥାନ୍ତି। ମୁଁ ବି ସେଇଠି ରହିଲି। ମୋର୍ ଯେତେ ଇଚ୍ଛାହେଲେ ବି, ତାଙ୍କ ସହିତ ହଷ୍ଟେଲର୍ ଏକା ରୁମ୍‌ରେ ରହିପାରି ନାହିଁ କେବେ, ତିନିବର୍ଷ ଭିତରେ।

ପ୍ରଥମ ଦେଖା ଚିହ୍ନାରେ ପ୍ରେମ। ଏକାବେଳେ ଯେମିତି ତାଙ୍କର୍ ମୁଁ ସାନଭାଇ। ବାପା ଯିମିତି ମୋତେ କହିଯାଇଛନ୍ତି- "ଯାଙ୍କୁ ବଡଭାଇ ମାନିବୁ; ନନା ବୋଲି ଡାକିଲେ ଡାକି ପାରୁ।" ପ୍ରଥମ ଦିନ ନଈରୁ ଗାଧୋଇ ଆସି ଲୁଗା ଶୁଖାଉଥାଏ ଟିଣ କଡାରେ ଗଣ୍ଠି ଦେଇ; ହାତ ପହଞ୍ଚ ନପହଞ୍ଚ ହେଲା। କୃଷ୍ଣବାବୁ ମୋ ଲୁଗାକାନିକୁ ଟେକିଟାଣି ଶୁଖାଇ ଦେଇଥିଲେ। ମୋ ସାଙ୍ଗରେ ମାଇନର ସ୍କୁଲ-ସାଙ୍ଗ ସାତ ଜଣରୁ ଜଣେ ବି ହାଇସ୍କୁଲକୁ ଆସିଲେ ନାହିଁ। କ୍ଲାସ୍-ସାଙ୍ଗ ଅଭାବରେ ମୋତେ ଅନ୍ୟ ଜଣେ ଦିକଣକୁ ସାଙ୍ଗ କରିବାକୁ ପଡିଲା-ଭଗବାନକୁ, ହରେକୃଷ୍ଣକୁ।

କୃଷ୍ଣବାବୁଙ୍କ ସହିତ ଦିନେ ଦି'ଦିନରେ ଆତ୍ମୀୟତା ବଢିଲା। ତାଙ୍କ କଥା ପୁଚ୍ଛି ପଚାରି ଯେତିକି ଜାଣୁଥାଏ ଏବଂ ସେ ମୋତେ ଆପେ ଆପେ ଯେତିକି ସୂଚନା ଓ ଉପଦେଶ ଦେଉଥାନ୍ତି, ଆମେ ଦୁହେଁ ସେତିକି ପାଖାପାଖି ହେଉଥାଉଁ। କୃଷ୍ଣବାବୁଙ୍କ ମୁହଁ ମୋହରି ପରି ଲମ୍ବାଳିଆ। ଚୂଳ କର୍କଶ, କପାଳକୁ ବେବାଗିଆ ହୋଇ ମାଡିଥାଏ। ଫେସନ ଠିକ୍ ବାଗେ ନାହିଁ। ମୋରି ଉଚ୍ଚ, ଟାଣୁଆ ଗଠନ, ଗୋରା ଦିହ; ମୋ ନିଶ ଗଜେଇ ଉଠୁଥାଏ, ତାଙ୍କର ଅପେକ୍ଷାକୃତ ବଡ ଓ କରଡା। ଆମେ ଦୁଇ ସାଙ୍ଗ କେନ୍ଦ୍ରରେ ଲାଗେ ଲାଗେ ଦୁଇବର୍ଷ ସ୍କଲାରସିପ୍ ପାଇଥିବାରୁ, କୃଷ୍ଣବାବୁଙ୍କ ଗର୍ବ ହେଉ ନହେଉ, ମୋର ଛାତି ଫୁଲିଉଠୁଥାଏ। ଦୁହେଁଯାକ ଗରିବ। ତାଙ୍କର ବାପା ନାହିଁ। ଭାଇ ଗାର୍ଜ୍ଜନ। ଚାଷବାସ ବୋଧହୁଏ ନାହିଁ। ତାଙ୍କର ଘର ଖିଚିଂକୁ, ମୋ ଘର ପାନ୍ଧଡା। ଯୋଡିଏଯାକ ବେଆଡିଆ ନାମ। ମୋତେ ଜଣାପଡେ- ସେ ବଣଜଙ୍ଗଲ ଶହଶହ ମାଇଲ ପାର ହୋଇ, ପାହାଡ ଜଙ୍ଗଲ, ଘୋର ଅଗନାଅଗସ୍ତି ବନସ୍ତ ଦେଇ ପଢିବାକୁ ଆସିଛନ୍ତି। ପ୍ରକୃତରେ ଏମାନେ ଏକତ୍ର ସାତଆଠ ଜଣ ପିଲା ପୂଜାଛୁଟି ଓ ଗ୍ରୀଷ୍ମଛୁଟିରେ ଚାଲିଚାଲି ଅଡେଇ ବା ତିନି ଦିନରେ ଘରେ ପହଞ୍ଚୁଛନ୍ତି। ବଡଦିନ ଛୁଟିରେ ଯିବା ଆସିବା ସାତଦିନ ଚାଲିଯାଏ। ଘରେ ଦୁଇ ବା ଅତି ବେଶିହେଲେ ତିନିଦିନ। ଦିନବେଳେ ଜନ୍ତୁ ଜାନୁଆର ଭେଟନ୍ତି। ବାରିପଦାରୁ

କରଞ୍ଜିଆ ପଚସ୍ତରୀ ମାଇଲ। କରଞ୍ଜିଆରୁ ଖିଚିଂ ଆହୁରି କୋଡିଏ ମାଇଲ। ଖିଚିଂ ପ୍ରତି ଏ ପିଲାଙ୍କର କେତେ ମମତା। ଧନ୍ୟ କୃଷ୍ଣବାବୁ ! ଧନ୍ୟ ତୁମର ପାଠପଢା ! କେଉଁଠୁ ଆସି କେଉଁଠି ! ତୁମ ପରି ହୋଇ ନପାରିଲେ ବି, ମାନଗଡ, ବାଦୁଡିଘେରା, ଭାଲୁଡୁଙ୍ଗୁରି ପାର ହେଇ ଏକ ଭିକାରି ଘରୁ ପଡିଉଠି ମୁଁ ବି ଧାଇଁଛି ତୁମ ସାଙ୍ଗରେ ମିଶିବାକୁ।

କୃଷ୍ଣବାବୁଙ୍କ ସହିତ ମୁଁ ଯଦି ଏକାତ୍ମ ହୋଇ ନଥାନ୍ତି, ତେବେ ମୋ ମୂଳଦୂଆ ଠିକ୍ ଟାଣ ହୋଇନଥାନ୍ତା। କ୍ଲାସପାଠରେ ତାଙ୍କର ମୋ ପ୍ରତି ସେତେ ନଜର ଦେବା ଦରକାର ପଡି ନଥିଲା। କାରଣ ସେ ଅସଲପାଠ ଅଙ୍କରେ ମୋରିପରି ଦୁର୍ବଳ ଥିଲେ। ଅଷ୍ଟମ ଶ୍ରେଣୀର ଇଂରାଜୀ ପାଠ କେବେ କେମିତି ଲେଖାଉଥିଲେ, ଶିଖାଉଥିଲେ। କ୍ଲାସ ଟେନ୍‌ରେ ଥିଲାବେଳେ- ତାଙ୍କର ସଂସ୍କୃତ ଅପ୍‌ସନାଲ ଥିଲା; ତେଣୁ ମୋତେ ସେ ଭବିଷ୍ୟତ ଲାଭ, ଉପକାର ଉଦ୍ଦେଶ୍ୟରେ ରଘୁବଂଶ, ଭଗବତ୍ ଗୀତା, ଏପରିକି "କୁମାରସମ୍ଭବ" ପଡିବା ପାଇଁ ଦେଲେ ଏବଂ ସୁରଧରି ମୁଁ ଶ୍ଳୋକ ସବୁ ମୁଖସ୍ଥ କରିବାରୁ ସେ ଖୁସିହେଲେ। 'ଉତ୍କଳ ସାହିତ୍ୟ' ଓ 'ସହକାର'ରୁ ଦୁହେଁ ମାୟାଧର, ବୈକୁଣ୍ଠ, କାଳିନ୍ଦୀ ଚରଣଙ୍କ ଲେଖାସବୁ ବୋର୍ଡିଂକୁ ଆସୁଥିବା ପତ୍ରପତ୍ରିକାରୁ ପଡିଲୁ। କୃଷ୍ଣବାବୁ, ତାଙ୍କ ସାଙ୍ଗ ଦୁର୍ଗାଚରଣ ପଣ୍ଡା, ସୂର୍ଯ୍ୟାନନ୍ଦ ବାରିକ, ପୂର୍ଣ୍ଣଚନ୍ଦ୍ର ଦାସ ଅଧିକାରୀ ଆଦି ଗୁଡାଖୁ ଘଷିଘଷି, କରାଳି, ଶୋକଯୋଡା ନଈଆଡକୁ ସକାଳେ, ଓପରବେଳା ଗପିଗପି ଯାଉଥିଲୁଁ; ପାଠ ଆଲୋଚନା ସହିତ ଗାଁକଥା, ସ୍କୁଲକଥା ଆଲୋଚନା କରିକରି। ପ୍ରତିଦିନ ସକାଳେ ଦାନ୍ତମୁହଁଧୋଇ ସାରିଲେ ସୂର୍ଯ୍ୟାନନ୍ଦ ବାରିକ ତା ମାଆ କଥା ମନେକରେ; କହେ- "ମାଆ ସକାଳେ ପୋଡାପିଠା ଦହିଦିଏ; କେଡେ ବଡିଆ ! ବୋର୍ଡିଂରେ ପଇସାକର ମୁଡି ମୁଠାଏ। କଳେ ବି ହୁଏନାହିଁ।" ମୋର ମାଆ ବି ସେମିତି ଶରଧାରେ ଶାଳପତ୍ରରେ ପିଠଉରେ ଅଳ୍ପ ଚିନି, ନହେଲେ ଗୁଡ ଦେଇ କେବେ କିମିତି ପିଠା କରିଦିଏ। ଖିଚିଂ, କରଞ୍ଜିଆ, ପାନ୍ଥଡାର ସବୁ ପିଲାଙ୍କ ଏକା ରୁଚି, ଏକା ଖାଦ୍ୟ, ଭାଇ ଭାଇ।

ସେତେବେଳେ ଫ୍ରେଜାର ହଷ୍ଟେଲରୁ 'ଜାଗରଣ' ବୋଲି ହାତଲେଖା ପତ୍ରିକାଟିଏ ବାହାରୁଥାଏ, ବର୍ଷକୁ ଥରେ। ଦଶଦିସ୍ତା ଖଣ୍ଡେ କାଗଜ ଷ୍ଟେସନ ପାଖ ଗୁମୁଟିବାଲା ପଠାଣ ପାଖରେ ଦେଲେ, ସେ ପଟା ବନ୍ଧେଇ କରିଦିଏ। ତା ଦୋକାନ ଆଗରେ ପଟା ଖଣ୍ଡକରେ ଲେଖା ହୋଇଥାଏ- 'ଏଠାରେ ବହି ବନ୍ଧା ହୁଏ।' 'ବନ୍ଧା' ସ୍ଥାନରେ 'ବକ୍ଷ'। ପ୍ରତିବର୍ଷ ଦଶମ ଶ୍ରେଣୀର ପିଲାଟିଏ ସଂପାଦକ ହୁଏ। ଗୋକୁଳି ବାବୁ (ଗୋକୁଳ ଚନ୍ଦ୍ର ଶତପଥୀ : ପରବର୍ତ୍ତୀ କାଳରେ ଡି.ପି.ଆଇ.)ଙ୍କ ପରେ ପରେ କୃଷ୍ଣବାବୁ ଏବଂ ତାଙ୍କ ପରେ ମୁଁ ସଂପାଦକ ହୋଇଥିଲୁଁ। ସଂପାଦକ ପାଖରେ ଖାତାଟିଏ ଥାଏ। ଯେଉଁ ପିଲା ଯାହା

ଲେଖିବାକୁ ଚାହେଁ, ତାହା ପ୍ରଥମେ ସଂପାଦକଙ୍କୁ ଦେଖାଏ। ସେ 'ହଁ' କଲେ ନିକେ ଲେଖାଟି ପତ୍ରିକାରେ ଉତାରେ। ଗଣେଷ ବା ସରସ୍ୱତୀ ପୂଜା ଦିନ ପତ୍ରିକାଟି ମୂର୍ତ୍ତିପାଖରେ ରଖାଯାଏ। ଏହି ପ୍ରକ୍ରିୟାକୁ କୁହାଯାଏ- "ପତ୍ରିକା ଆଉଟ ହେଲା"। ତାପରେ ଯାଇ ପିଲାମାନେ ପଢନ୍ତି। କୃଷ୍ଣବାବୁ ସଂପାଦକ ଥାଇ ମୋତେ ପୁରୁଣା 'ଜାଗରଣ' ପଢିବାକୁ କହିଲେ, ଏବଂ ତାଙ୍କ ସଂପାଦିତ ପତ୍ରିକାକୁ ଲେଖା ଦେବାପାଇଁ କହିଲେ। ବହୁଚେଷ୍ଟା କରି ଅକ୍ଷର ଗଣି ଗଣି, ପଦକୁ ପଦ କଷ୍ଟେ ମଷ୍ଟେ ଟାଣିଟୁଣି ମେଳାଇ William Blake ଙ୍କର "The Piper"କୁ ଅନୁବାଦ କଲି। ଯାହାର ପ୍ରଥମ ପଦ ହେଲା -

"ବଂଶୀ ବାଇ ନିଛାଟିଆ ଉପତ୍ୟକା ପଥେ
ଗାଉଁ ଗାଉଁ ସୁମଧୁର ଗାନ;
ଦେଖିଲି ବଉଦ କୋଳେ ଏକ କ୍ଷୁଦ୍ର ଶିଶୁ
ହସି ହସି ବୋଲଇ ବଚନ।"

Thomas Hood ଙ୍କ "I remember, I remember" କବିତାର ଶେଷ ପଦର ଅନୁବାଦ ଏହିରୂପେ କରିଥିଲି କୃଷ୍ଣବାବୁଙ୍କ ଉତ୍ସାହ ଓ ସହାୟତାରେ-

"ମନେପଡେ ମୋର ବାଉଁଶ ଝାଡ ଲୋ
କେଡେ ଉଚ୍ଚ ପୁଣି କେଡେ ଅନ୍ଧାର,
ଶୁଣୁଥିଲି ତାର ସରୁଆ ଅଗଟି
ଛୁଇଁଥିବ ପରା ସରଗ ପାର।
ମାତ୍ର ସେଇ ସବୁ ଶିଶୁ କଳପନା
ଏବେ ଜାଣିଲି ମୁଁ ଦୁଃଖ ଅନ୍ତରେ,
ପ୍ରଭୁଙ୍କଠୁ ମୁହିଁ ବାଲ୍ୟକାଳୁଁ ଏବେ
ପଡି ରହିଲିଣି ବହୁ ଦୂରରେ।"

କୃଷ୍ଣବାବୁଙ୍କ ଯେବେ ଫାଷ୍ଟକ୍ଲାସ, ମୋର ସେତେବେଳେ ସେକେଣ୍ଡ କ୍ଲାସ। ସେତିକିବେଳେ, ମୋର ଷୋଳବର୍ଷ ବୟଃକ୍ରମରେ ବିବାହ ନିର୍ବନ୍ଧ ହେଲା। ମୋର ଇଚ୍ଛା ହେଲା ଗୀତ ଛାପିବାପାଇଁ। ଗୋପନରେ କୃଷ୍ଣବାବୁଙ୍କୁ ଗୀତ ବାନ୍ଧିବାପାଇଁ କହିଲି। ଦିନକ ଭିତରେ ସେ ମୋତେ ଯେଉଁ ଗୀତଟି ଦେଇଥିଲେ, ତାହା ଛାପିବାପାଇଁ ଶହେ କପିକୁ ତିନିଟଙ୍କା ପଡିଥିଲା। ଗୋଲାପି ରଙ୍ଗର କାଗଜରେ ସୁନେଲି ଅକ୍ଷରରେ। କନ୍ୟା ନଅ ବର୍ଷର। ନାଆଁ ବିନୋଦିନୀ। ଗୀତ ଛାପା ସରିବାର ଚାରିଦିନ ପରେ ବିନୋଦିନୀର ବାହାଘର ଅନ୍ୟତ୍ର ହେଲା। ମୁଁ ଗାଁର ନନ୍ଦ ବଂଶର ଏକ ଛଅ ବର୍ଷର ଝିଅକୁ ବାହା ହେଲି।

କୃଷ୍ଣବାବୁଙ୍କୁ ଗୀତର ପରିବର୍ତ୍ତନ କରିବାକୁ କହିଲି । ସେ 'ବିନୋଦିନୀ' ସ୍ଥାନରେ ହାତରେ କାଟି 'ଅନ୍ନପୂର୍ଣ୍ଣା' ଲେଖିଦେବାକୁ କହିଲେ । ସେ ଯାକେ ଝିଅଟିର ନାଆଁ ନଥିଲା । ବିବାହ ପୂର୍ବରୁ କୃଷ୍ଣବାବୁଙ୍କ ଦିଆ ନାମ ସ୍ଥାୟୀ ନାଆଁ ହେଲା ତାର । ଯେଉଁ ଗୀତଟି କୃଷ୍ଣବାବୁ ବାନ୍ଧିଥିଲେ ତାହା ଏହିପରି-

"ମଧୁର ବାସରେ ମଧୁର ହାସରେ
ନାଚେ ହୃଦୟ ଆବେଗେ
ଜୀବନ-ବସନ୍ତେ ବସନ୍ତ କୁମାର
ପୁଣ୍ୟ ବେଦୀପୀଠେ ଚାରୁ ସହକାର
ବିନୋଦିନୀ (ଅନ୍ନପୂର୍ଣ୍ଣା) ବାଳା ଲତିକା ସରଳା
ଦେଖି ନବଯୁଗ୍ମ ବେଶେ
ଏ ଶୁଭ ବାସରେ କୁମାରୀ କୁମାର
ଲଭନ୍ତୁ ପ୍ରଭୋ ତୋର ଆଶିଷେ କରୁଣା ବିନ୍ଦୁ ।"

କୃଷ୍ଣବାବୁ ଦେଖୁଁଦେଖୁଁ ମେଟ୍ରିକ୍ୟୁଲେଶନ ଫାଷ୍ଟ ଡିଭିଜନରେ ପାସ କରି କୋଡ଼ିଏ ଟଙ୍କିଆ ବୃତ୍ତି ପାଇ ରେଭେନ୍‌ସା କଲେଜକୁ ଆଇ.ଏ. ପଡିବାପାଇଁ ଚାଲିଗଲେ ୧୯୩୧ରେ । ପାଠ ପଡିବାରେ ଦାରିଦ୍ର୍ୟ କୌଣସି ଅନ୍ତରାୟ ହୋଇପାରେ ନାହିଁ ବୋଲି ମୋର ଉପଲବ୍ଧିହେଲା । ଏଇ କୃଷ୍ଣବାବୁ ପ୍ରାଥମିକ ସ୍ତରରେ ରୋଷେଇକରି ପାଠ ପଢିଥିଲେ ଏବଂ ଉଚ୍ଚ ବିଦ୍ୟାଳୟ ସ୍ତରରେ ତାଙ୍କୁ ମୁଁ ରାୟବାହାଦୂର ହରିଦାସ ବୋଷଙ୍କ ଘରକୁ ଯାଇ ପ୍ରତିମାସ ଯୋଡ଼ିଏ ଟଙ୍କା ସ୍କୁଲର ଦରିଦ୍ର ପାଣ୍ଠିପାଇଁ ସୂର୍ଯ୍ୟାନନ୍ଦ ବାରିକ ସହିତ ଆଣୁଥିବାରୁ ଦେଖିଛି । ତାଙ୍କର କୃତିତ୍ୱ ମୋତେ ବାଟ କଡେଇଲା ଆଗକୁ ମାଡିଯିବା ପାଇଁ ଏବଂ ମୁଁ ବି ତାଙ୍କରି ପଛେପଛେ ରେଭେନ୍‌ସାରେ ଯାଇ ତାଙ୍କ ସହିତ ଇଷ୍ଟ ହଷ୍ଟେଲରେ ଯୋଗଦେଲି । ପରବର୍ତ୍ତୀ କାଳରେ ତାଙ୍କର ଇତିହାସ ଅନର୍ସ, ମୋର ଇଂରାଜୀ ଅନର୍ସ । ପଡାପଡି ଚାପରେ ଦୁହେଁ ପାଠ୍ୟ ବିଷୟକ ପାର୍ଥକ୍ୟରେ ଦୂରେଇଗଲୁଁ ହୁଏତ, କିନ୍ତୁ ଜୀବନଯାକ ଆମ ଭିତରେ ଆତ୍ମୀୟତା ଊଣା ପଡି ନାହିଁ ।

ଫ୍ରେଜାର ହଷ୍ଟେଲରେ 'ଜାଗରଣ'ଟି କୃଷ୍ଣବାବୁଙ୍କ କେବଳ ନୁହେଁ, ମୟୂରଭଞ୍ଜର ଅନେକ କୃତୀ ସନ୍ତାନଙ୍କ ସାହିତ୍ୟ ସେବା, ଚର୍ଚ୍ଚା ଓ ଅଭ୍ୟାସର ମୂଳଦୁଆ । ମହେଶ୍ୱର ନାୟକ, କ୍ଷୀରୋଦ ପାଳ, ପ୍ରଭାସ ଚନ୍ଦ୍ର ବ୍ରହ୍ମା, ପରମାନନ୍ଦ ଆଚାର୍ଯ୍ୟ ଏଇ 'ଜାଗରଣ'ରୁ ସାହିତ୍ୟ ଆରମ୍ଭକରିଛନ୍ତି । କୃଷ୍ଣବାବୁଙ୍କ ଭାବୀ ଶ୍ୟାଳକ ଏବଂ ମୋର ପରମ ବନ୍ଧୁ ପୁରୁଷୋତ୍ତମ ପଣ୍ଡା ଏଇ 'ଜାଗରଣ'ରେ 'ବିଳାପ' ବୃତ୍ତରେ ଗୋଟିଏ ସୁଦୀର୍ଘ କବିତା ମୋରି ସଂପାଦିତ ପତ୍ରିକାରେ ଲେଖିଥିଲେ । ପତ୍ରିକାରୁ ପ୍ରାୟ ଅଧାଅଧି ସେ ଏକା

ଖାଇଗଲେ। ପରେ ରେଭେନ୍ସା ଇଷ୍ଟ ହେଷ୍ଟେଲର 'ଜାଗରଣ'ର ମଧ୍ୟ ମୁଁ ସଂପାଦକ ହୋଇଥିଲି।

କୃଷ୍ଣବାବୁ shy ଓ introvert କିସମର ଛାତ୍ର ଥିଲେ। ଖେଳ, ଯୁକ୍ତିତର୍କ, ନାଚ ତାମସା ଇତ୍ୟାଦିରେ ସେ ନଥିଲେ। ସେ ନିଷ୍ଠାପର ଓ କର୍ମତତ୍ପର ତଥା ପରୋପକାରୀ ଥିଲେ। ମୁଁ ତାଙ୍କୁ ଥରେ ଗୀତ ଗାଇବାର ଜାଣିଛି। ହେଡମାଷ୍ଟର ମଧୁ ବିଶ୍ୱାଳ ଖରାଦିନିଆ ସଞ୍ଜରେ ଶନିବାର ଦିନ ବୋର୍ଡିଂ ପିଲାଙ୍କୁ ପଡିଆକୁ ଡାକନ୍ତି। ଆରମ୍ଭ କରନ୍ତି- "ଦୁର୍ଗାଚରଣ, ତେମେ ଗୋଟିଏ ଗୀତ ଗାଅ।" ଦୁର୍ଗାଚରଣ ପିଲାଟି ମାଇଚିଆ, ଗେହ୍ଲେଇ ହୋଇ ଗୋଟିପ ପିଲା ପରି ତରଳ ଗଳା ଥରାଇ ଆରମ୍ଭ କରେ- "କେଣେ ଆଉ ଯିବୁ ରେ ବାୟ୍ସ; ବନ୍ଧା ତୁ ମୋହ ମାୟ୍ସରେ, ଘୂରି ଘୂରି ବୁଲୁଛୁ କେତେ, ମିଶି ଯା ମୋ କାୟ୍ସରେ।" ଗୋପାଳକୃଷ୍ଣଙ୍କ ଏ ଗୀତକୁ ଏତେ ସୁନ୍ଦର ସ୍ୱରରେ ସେ ଗାଏ ଯେ, ହେଡମାଷ୍ଟର ମୋହିତ ହୋଇ ଯାଆନ୍ତି ଏବଂ ତାକୁ କୁଣ୍ଢେଇ ପକାନ୍ତି ମଧ୍ୟ। ଜଣଙ୍କ ପରେ ଜଣେ ଗାଇବା ପରେ ଶେଷରେ କୃଷ୍ଣବାବୁ ରହିଯାଆନ୍ତେ ହେଡମାଷ୍ଟର କହିଲେ- "କୃଷ୍ଣଚନ୍ଦ୍ର, ତୋମେ ମଧୁରେଣ ଶେଷ କର।" "ମୁଁ ଗୀତ ଜାଣେ ନାହିଁ, କେବେ ଗୀତ ଗାଇନାହିଁ" କହି କୃଷ୍ଣବାବୁ କାକୁତି ମିନତି କଲେ ମଧ୍ୟ ହେଡମାଷ୍ଟର ନଛୋଡବନ୍ଧା। ଅବଶେଷରେ କୃଷ୍ଣବାବୁ ଗାଇଲେ ସେଇ ଗୀତଟି, ଯାହା କେନ୍ଦେରା ବଜାଇ ବୁଢୀଟିଏ କେବେ ପିଲାଦିନେ ଗାଉଥିବାର ସେ ଶୁଣିଥିଲେ। "ଶାମ ଅପବାଦ, ଶାମ ଅପବାଦ... ଯେ ଯାହା ବୋଲିବ ପଛେ ବୋଲୁଥାଉ।" କେନ୍ଦେରା ବଜାଇବାର ଅଭିନୟକରି, ଅନୁନାସିକ ସ୍ୱରରେ ଏତେ ଜୀବନ୍ତ ରୀତିରେ ସଞ୍ଜବେଳର ବାୟୁମଣ୍ଡଳକୁ ଥରାଇ ସେ ଗାଇଲେ ଯେ, ଆମେ ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲୁ, ଏବଂ ପରବର୍ତ୍ତୀ ବୈଠକ ବସିଲେ ହେଡମାଷ୍ଟର ପୁଣି କୃଷ୍ଣବାବୁଙ୍କୁ ମନେ ପକାଇ ଦିଅନ୍ତି- 'ଶାମ ଅପବାଦ' ଗୀତଟି ଗାଅ। ଗଳା, ଗୀତ, ସ୍ୱର, ଭାବ ଏମିତି ମିଶାମିଶି ହୋଇ ବାହାରେ ଯେ, କୃଷ୍ଣବାବୁଙ୍କୁ ସମସ୍ତେ ତାରିଫ୍ କରନ୍ତି ତାଙ୍କର ଆନ୍ତରିକତାପାଇଁ।

ରେଭେନ୍ସା କଲେଜରୁ ଇଂରାଜୀରେ ଏମ୍.ଏ. ପାସ୍ କରି ୧୯୩୮ ସାଲରେ ଯେବେ ମୁଁ ବାରିପଦା ହାଇସ୍କୁଲରେ ମାଷ୍ଟର ହେଲି, କୃଷ୍ଣବାବୁ ସେତେବେଳେ କଲିକତାରେ ଏନ୍ସିଏଣ୍ଟ ଇଣ୍ଡିଆନ ହିଷ୍ଟ୍ରିରେ ଏମ୍.ଏ. ପଢିସାରି ରମା ପ୍ରସାଦ ଚନ୍ଦ ବା ଦୀକ୍ଷିତଙ୍କ ନିକଟରେ ରିସର୍ଚ୍ଚ କରୁଥାନ୍ତି କଲିକତା ମ୍ୟୁଜିୟମରେ। ରହୁଥାନ୍ତି ୨/ବି, ହିୟାତ୍ ଖାଁ ଲେନରେ, ହରିସନ ରୋଡରେ। କେ.ଶୀ. ନିୟୋଗୀ, ତତ୍କାଳୀନ ମୟୂରଭଞ୍ଜ ଦେବାନ୍ ସେତିକିବେଳେ ମୋତେ ସାମ୍ବାଦିକତା ଟ୍ରେନିଂପାଇଁ କଲିକତା ପଠାଇଲେ ଏବଂ କୃଷ୍ଣବାବୁଙ୍କ

ପାଖକୁ ପଠାଇଲେ। ନିୟୋଗୀ ଆମ ଦୁହିଁଙ୍କର ପୃଷ୍ଠପୋଷକ। କୃଷ୍ଣବାବୁ ମୋର ହେପାଜତ ନେଇ ଡେଲହାଉସି ସ୍କୋୟାରରେ ଇଉନାଇଟେଡ ପ୍ରେସରେ ପହଞ୍ଚାଇ ଦେଇଥିଲେ। ଫେରିଲାବେଳେ ମୁଁ ବାଟ ଭୁଲିଯାଇ ପୋଲିସ ସାହାଯ୍ୟରେ ଘରେ ପହଞ୍ଚିଲି।

ମେସ୍‌ରେ କୃଷ୍ଣବାବୁଙ୍କ ସହିତ ମୋର କନୈକ ପଢୁଆ ସାଙ୍ଗ ଧୀରାନନ୍ଦ ବି ଥାଏ। ଦିନେ ଶନିବାର ଆମେ ଦୁହେଁ ଦୁଇଟା ବେଳକୁ ବସାକୁ ଫେରିଲୁଁ। ଧୀରାନନ୍ଦ ମିଶ୍ର ବାରିପଦା ଫ୍ରେଞ୍ଚ ମୋଟର କଂପାନୀରେ ଟ୍ରେନିଂ ନେଉଥାଏ। ପରେ ସେ ଇଣ୍ଡଷ୍ଟ୍ରିଜ୍ ଅଫିସର ହେଲା। ଝରକା ଦେଇ ଶୁଭିଲା- 'ସିଦ୍ଧି ବରଫ୍, ମଲାଇ ବରଫ୍'। ଏଗୁଡାକ କି ଚିଜ ମତେ ଜଣା ନାହିଁ। ଦୁଇ ଅଣିଆ ଗୋଟିଏ ଲେଖାଏଁ ଆମେ ଚୋଷିଚୋଷି ଖାଇଲୁଁ। ପରେ ଜାଣିଲି, ଏଗୁଡାକ ଚନ୍ଦନନଗରରୁ ଚୋରାରେ ଆସି ବିକ୍ରିହୁଏ। ସବୁଜ ରଙ୍ଗ। ଗଞ୍ଜାଇ ପତର ଦେଇ ତିଆରି। ଫଳାଫଳ ନ ଭାବି ଖାଲି ପେଟରେ ଖାଇଦେଲି। ଧୀରାନନ୍ଦର ଆଗରୁ ଅଭ୍ୟାସ ଥିଲା। ଦଣ୍ଡେ ପରେ ସେ ହସିବାକୁ, ନାଚିବାକୁ, ଡେଇଁବାକୁ ଲାଗିଲା, ଖଟ ଉପରେ ଛିଡା ହୋଇ। ମୁଁ କାନ୍ଦିବାକୁ ଲାଗିଲି। ଛାତିଟା ଶୁଖିଗଲା ପରି ଲାଗିଲା। ମୋର ଯେତେ କଷ୍ଟ, ତାର ସେତେ ଆନନ୍ଦ। କୃଷ୍ଣବାବୁ କେତେବେଳେ ଆସିବେ, ମୋତେ ବୁଦ୍ଧି ଉପାୟ ଦେବେ, ସେଥିକୁ ଅପେକ୍ଷା। ସେ ଆସିବା ମାତ୍ରେ ମୁଁ ଦାଣ୍ଡ ଦୁଆରକୁ ଯାଇ କାନ୍ଦି କାନ୍ଦି ମୋ ଦୁଃଖ ହାଲହକିକତ ଜଣାଇଲି। କୃଷ୍ଣବାବୁ ବିରକ୍ତ ହୋଇ କହିଲେ, "ବସନ୍ତ Don't make a scene here। ମୟୁରଭଞ୍ଜର ନାଆଁ ବୁଡାଇବ ଦେଖୁଛି ତୁମେ ଦିଟା। ସାଙ୍ଗେ ସାଙ୍ଗେ ପାଖ ବଜାରକୁ ଯାଇ ଦିଅଣାର ତେନ୍ତୁଳି ଆଣି ଗିଲାସେ ମଣ୍ଡ ମୋତେ ଖୁଆଇଦେଲେ ଏବଂ ଶୀଘ୍ର ରାତିଖାଦ୍ୟ ଖୁଆଇ ଉପର ତାଲାର ଏକ ଫାଙ୍କା କୋଠରିରେ ଶୁଆଇଦେଲେ। ସେଇ ଦିନଠୁଁ ମୁଁ ଜୀବନରେ କେବେହେଲେ ଭାଙ୍ଗ, ଗଞ୍ଜାଇ ସ୍ପର୍ଶ କରିନାହିଁ ବା କୌଣସି ନିଶାଦ୍ରବ୍ୟ ସେବନ କରିନାହିଁ।

ଜଣାଯାଉଥିଲା, ଯିମିତି କୃଷ୍ଣବାବୁ ମୟୁରଭଞ୍ଜରେ ଅବସ୍ଥାପିତ ହେବେ। କିନ୍ତୁ ପ୍ରତ୍ନତାତ୍ତ୍ୱିକ ହିସାବରେ ପରମାନନ୍ଦ ଆଚାର୍ଯ୍ୟ ରହିଥିବାରୁ କୃଷ୍ଣବାବୁଙ୍କପାଇଁ ଅନ୍ୟତ୍ର ଚାକିରି ଖୋଜିବାକୁ ପଡିଲା। ମାତ୍ର ଅଚିରେ ସେ କେନ୍ଦ୍ର ସରକାରଙ୍କ ଅଧୀନରେ ଆର୍କୋଲୋଜି ଡିପାର୍ଟମେଣ୍ଟରେ ପାଟନା ବା ଅନ୍ୟତ୍ର କେଉଁଠି ରହିଲେ। ଆଉ ତାଙ୍କ ସହିତ ଦେଖା ସାକ୍ଷାତ କମ୍ ହେଲା। ଆମ ଗାଁକୁ, ଆମ ଘରକୁ, ଯେବେ କେବେ ସେ ଯାଉଥିଲେ, ମୋ ମାଆକୁ 'ମା' ବୋଲି ଡାକୁଥିଲେ ଓ ସେମିତି ଶରଧା ବି କରୁଥିଲେ। ଏ ସମୟରେ ତାଙ୍କ ସାନଭାଇ ଗିରୀଶ ଚନ୍ଦ୍ର ସହିତ ମୋର ସାନ ଭଉଣୀର ବିବାହ ପ୍ରସ୍ତାବ ପଡିଥିଲା। ମାତ୍ର ଆମେ ବିବାହସୂତ୍ରରେ ଏକତ୍ର ହୋଇ ପାରିଲୁ ନାହିଁ। କୃଷ୍ଣବାବୁଙ୍କୁ ମହାରାଜା

ପ୍ରତାପଚନ୍ଦ୍ର ନାଓ୍ବାରସୀ ଶାସନ ଭାଗଟିଏ ଆମ ଗାଁରେ ଦେଇଥିଲେ ଓ ଗିରୀଶ ଚନ୍ଦ୍ର ସେଇ ଭିହରେ ଘରତୋଳି ସସ୍ତୀକ କିଛି ଦିନ ରହିଥିଲେ ମଧ୍ୟ। କିନ୍ତୁ ଗାଁ ଲୋକଙ୍କ ସହିତ ତାଙ୍କର ମନୋମାଳିନ୍ୟ ଘଟିଲା। କଞ୍ଜାଳମୁକ୍ତ ହେବାପାଇଁ କୃଷ୍ଣବାବୁ ପାନ୍ଧଡା କମିକାଇଗା ସବୁ କ୍ରମେକ୍ରମେ ବିକ୍ରି କରିଦେଲେ ଏବଂ କଟକର ସାଆନ୍ତ ସାହିରେ ଘରଟିଏ ତୋଳିଲେ। ଶେଷ ଜୀବନ ସେ ସେଇଠି କଟାଇଲେ।

କୃଷ୍ଣବାବୁ ଥିଲେ ଦେବୋପମ, ସରଳ, ଅମାୟିକ, ହିଂସା-ଲୋଭ ବିବର୍ଜିତ ବ୍ୟକ୍ତି। କ୍ରୋଧ କ୍ୱଚିତ ଦେଖାଯାଇଥାଏ ତାଙ୍କ ପାଖରେ। କୁଟିଳତା ବା କଟିଳତାରୁ ବହୁତ ଉଚ୍ଚରେ। ଗବେଷଣା, ଜ୍ଞାନତୃଷ୍ଣା ତାଙ୍କର ଅସୀମ, ତୃପ୍ତିହୀନ। କିନ୍ତୁ ପ୍ରଶାସନର କୌଶଳ ବା ଟ୍ୟାକ୍ଟ ତାଙ୍କୁ ହୁଏତ ଅଜଣା; ଯାହା ଫଳରେ ଗୁଡାଏ ତଳ ଶ୍ରେଣୀର ଲୋକ ମେଣ୍ଟବାନ୍ଧି ତାଙ୍କ ବିରୋଧରେ ସଂଗ୍ରାମକରି ଆଉ କିଛି ଅନିଷ୍ଟ କରନ୍ତୁ ବା ନକରନ୍ତୁ, ମାନସିକ ଅଶାନ୍ତି ଓ ଅସ୍ଥିରତା ଏତେ ମାତ୍ରାରେ ଆଣିଦେଲେ ଯେ, ଫଳରେ ତାଙ୍କୁ ଦୀର୍ଘକାଳ ଚିକିତ୍ସାଧୀନ ରହିବାକୁ ପଡିଲା। ସୁଯୋଗ୍ୟ ପୁତ୍ରକନ୍ୟା ସମଭିବ୍ୟାହାରରେ ଥିଲାବେଳେ ମୁଁ କେତେ ଥର ଭେଟିଛି ସେହି ଶାନ୍ତ, ସମ, ଉଦାର, ନମ୍ର, ବିନୟୀ ଭଦ୍ରବ୍ୟକ୍ତିଙ୍କୁ।

ପ୍ରତ୍ନତତ୍ତ୍ୱ ବା ପ୍ରାଚୀନ ଇତିହାସ ମୋର ଇଲାକା ନୁହେଁ ବା ସେଥିରେ ମୋର ଗଭୀର ପ୍ରବେଶ ନାହିଁ, କିନ୍ତୁ ତାଙ୍କ ଘରେ ଯେତିକି ଓଜନଦାର ତଥା ଅମୂଲ୍ୟ ଗ୍ରନ୍ଥ ଦେଖିଛି ବା ସେ ସଂପର୍କରେ କୃଷ୍ଣବାବୁଙ୍କ ମୁହଁରୁ ଜାଣିଛି, ସେଥିରୁ ମୋର ଦୃଢ ପ୍ରତୀତି ଜନ୍ମିଛି ଯେ, ସେ ନିଜର ସ୍ୱାଭିମାନ ଓ ସମ୍ମାନ ସେମାନଙ୍କ ଜରିଆରେ ଯେତିକି ଅର୍ଜନ ନ କରିଛନ୍ତି, ତାଠୁ ବହୁତ ବେଶି ଓଡିଶାର ଗର୍ବ ଓ ଗୌରବ ମନ୍ଦିରମାନଙ୍କ ଖ୍ୟାତି ସୁଦୂର ପ୍ରସାରୀ କରି ଓଡିଶାର ମସ୍ତକ କଳା ଓ ପ୍ରତ୍ନତତ୍ତ୍ୱରେ ସମୃଦ୍ଧ ଓ ଉନ୍ନତ କରିଛନ୍ତି। ଯେଉଁ କେତେ ଖଣ୍ଡି ସାହିତ୍ୟ, ସଂସ୍କୃତି ଓ ସମାଜ ଉପରେ ପୁସ୍ତକ ଓଡିଆରେ ସେ ଲେଖିଯାଇଛନ୍ତି, ତାର ମୂଲ୍ୟ ଅକଳନୀୟ। ଶ୍ରୀରାମଚନ୍ଦ୍ର ଭବନରେ ସ୍ମୃତିଚିତ୍ର ବା ମୂର୍ତ୍ତିଟିଏ ଝୁଲାଇବା ବା ଉନ୍ମୋଚିତ କରିବା ଅପେକ୍ଷା କୃଷ୍ଣଚନ୍ଦ୍ର ପାଣିଗ୍ରାହୀ ଓଡିଶାବାସୀଙ୍କଠାରୁ ଅନେକ ବେଶି ବଡ ସମ୍ମାନ ଦାବି କରନ୍ତି; ଏହା ତାଙ୍କର ପ୍ରାପ୍ୟ ମଧ୍ୟ। ମୋର ସେହି ଦିନଟି ଜୀବନର ସବୁଠାରୁ ଗୌରବ ଓ ଆନନ୍ଦର ଦିନ, ଯେଉଁଦିନ ଜାଣିଲି ଯେ କୃଷ୍ଣବାବୁ ତାଙ୍କ କନ୍ୟାକୁ ପ୍ରତିଷ୍ଠାବାନ୍ ଇତିହାସ ଅଧ୍ୟାପକ ତଥା ମୋର ପ୍ରିୟଛାତ୍ର ଶ୍ରୀମାନ୍ ଦୀପକ କୁମାର ଷଡଙ୍ଗୀକୁ ସମର୍ପଣ କରିଛନ୍ତି।



## ॥ ବାଇଶ ॥

ତ୍ରିପାଠୀ ସାହେବଙ୍କ କଥା। ଓଡ଼ିଶାରେ ଯେତେବେଳେ ଡିକ୍‌ସନ୍ ସାହେବ, ରେଭେନ୍‌ସା ସାହେବ, ଅର୍ଗିଲ ସାହେବ ଓ ଆହୁରି କେତେ କେତେ ସାହେବ ଥିଲେ। ଆମେ କିନ୍ତୁ ଜାଣିଥିଲୁ ଦି'ଜଣ ସାହେବଙ୍କୁ। ଜଣେ ହେଉଛନ୍ତି ପରିଜା ସାହେବ, ଆଉ ଜଣେ ଆମ ମୟୁରଭଞ୍ଜର ତ୍ରିପାଠୀ ସାହେବ। ଉଭୟେ I.E.S.। ଯେତେବେଳେ ମୁଁ ବାରିପଦା ଫ୍ରେଜାର ହଷ୍ଟେଲରେ 'ଜାଗରଣ' ବୋଲି ହାତଲେଖା ପତ୍ରିକାଟିର ସଂପାଦନା କରୁଥିଲି, ସେହି ସମୟରେ ତ୍ରିପାଠୀ ସାହେବଙ୍କ ନା ଜାଣିଲି ଏକ 'ବିଦାୟ' କବିତା ପାଠକରି। ସେ ବିଲାତ ଯିବା ପୂର୍ବରୁ ଏଇ ବିଦାୟ କବିତା ତାଙ୍କପାଇଁ ଲେଖା ହୋଇଥିଲା। ସେଥିରେ ତାଙ୍କର ଭୂୟସୀ ପ୍ରଶଂସା କରାଯାଇଥିଲା। ତାଙ୍କ ଗୁଣାବଳୀ ମନେମନେ ଧାୟି ଆମେ ଛାତ୍ରସବୁ ଆଗେଇ ଚାଲୁଥିଲି। ଯେମିତି ସେ ଥିଲେ ଆମର ତଥା ସମଗ୍ର ମୟୂରଭଞ୍ଜର ଏକ ଗର୍ବର ଧନ। ସେଇ ପତ୍ରିକା ମାଧ୍ୟମରେ ପରିଚୟ ପାଇଥିଲି- ସ୍ୱନାମଧନ୍ୟ ନୀଳମଣି ସେନାପତି, ପରମାନନ୍ଦ ଆଚାର୍ଯ୍ୟ, ଶରତ ଚନ୍ଦ୍ର ମୁଖାର୍ଜୀ, ଶ୍ୟାମଚନ୍ଦ୍ର ତ୍ରିପାଠୀ, I.E.S. ଆଦି ଗୁଣୀ ଲୋକଙ୍କର।

ପ୍ରଥମେ ତ୍ରିପାଠୀ ସାହେବଙ୍କୁ ଦେଖିଲି ରେଭେନ୍‌ସା କଲେଜରେ। କେତେବେଳେ ଶିକ୍ଷକ ଆକାରରେ, କେତେବେଳେ Principal ଆକାରରେ, କେତେବେଳେ ବିହାର ଓଡ଼ିଶାର D.D.P.I. ଭାବରେ ବା କେତେବେଳେ ସମଗ୍ର ଓଡିଶାର D.P.I. ଭାବରେ ତାଙ୍କୁ ଦେଖିଛି, ଜାଣିଛି, ଶୁଣିଛି। ମୁଁ Arts ଛାତ୍ର। ସେ ପଦାର୍ଥବିଜ୍ଞାନୀ। ସେତେବେଳେ Science ଓ Arts ମଧ୍ୟରେ ଏତେ ପ୍ରଭେଦ ବା ବୈରତା ନଥିଲା। ସଂସ୍କୃତ ବଦଳରେ ଉଦ୍ଭିଦବିଜ୍ଞାନ ବି ପଢାଯାଉଥିଲା। ଆମ ପକ୍ଷରେ ଯେ କୌଣସି ବିଷୟର ଅଧ୍ୟାପକ ସମସ୍ତଙ୍କର ଏକାପରି, ପୂଜ୍ୟ।

ତ୍ରିପାଠୀ ସାହେବଙ୍କ ବିଷୟରେ ନାନା କଥା ମୋର ମନେପଡେ। ସେତେବେଳେ ସମସ୍ତେ ତାଙ୍କୁ ପୁରୁଷପୁଙ୍ଗବ ବୋଲି ଭାବୁଥିଲେ। ତାଙ୍କର ଚାଲି ଚଳଣ, ପୋଷାକ, ପରିଧାନ ଖାଣ୍ଟି ସାହେବୀ ଧରଣର। ଟିକେ କାହିଁ fold ପଡେନାହିଁ ତାଙ୍କ ପୋଷାକରେ। ଅନେକ ସମୟରେ ସେ bow tie ପିନ୍ଧନ୍ତି। ସାହେବୀ society ଏବଂ culture କୁ ଭାରି ପସନ୍ଦ କରିନ୍ତି। 'ସ୍ୱାସ୍ଥ୍ୟହିଁ ସଂପଦ' କଥାରେ ବିଶ୍ୱାସ କରନ୍ତି। ମୁଁ କଲେଜରେ ପଢୁଥିଲାବେଳେ ନରୱେ, ସ୍ୱିଡେନରୁ ଯେଉଁ ବେରେଲ ବେରେଲ କର୍ଡ ଲିଭାର ଅଏଲ ଆସୁଥିଲା, ସେଥିରେ ପାଚିଲା ବିଲାତି ବାଇଗଣ ରସ ମିଶାଇ ପିଲାମାନଙ୍କୁ

ଦିଆଯାଉଥିଲା । ଏବଂ ଗଜାମୁଗ, ଭିଜାବୁଟ ଖାଇବାକୁ ପିଲାମାନଙ୍କୁ ସେ ପ୍ରବର୍ତ୍ତାଉଥିଲେ । ସେ ନିଜେ ମାଲକଚ୍ଛା ଭିଡି ଦିନ ଆଠଟାରେ Principal ଙ୍କ ବାରଣ୍ଡାରେ Daily Dozen ବା 'ନୀତିବାର' କରୁଥିଲେ । ସେ ଯେତେବେଳେ ମୟୁରଭଞ୍ଜ ଆସୁଥିଲେ, ମହାରାଜାଙ୍କ ସହିତ ଶିକ୍ଷା ବିଷୟରେ ଗୁରୁଗମ୍ଭୀର ଆଲୋଚନା ମଧ୍ୟ କରୁଥିଲେ । ଏକ କଥାରେ ସେ ଥିଲେ ମୟୁରଭଞ୍ଜ ମହାରାଜାଙ୍କର ଶିକ୍ଷା ଉପଦେଷ୍ଟା । ମୁଁ 3rd yearରେ ପଢୁଥିବାବେଳେ କଲେଜ ହଷ୍ଟେଲରେ 'ଘଟକ' ବା 'ମେଚ୍‌ମେକାର' ବୋଲି ଗୋଟିଏ ଏକାଙ୍କିକା ଲେଖିଥିଲି । କବି ବିନୋଦ ଚନ୍ଦ୍ର ନାୟକଙ୍କ ଉକ୍ତି ଅନୁଯାୟୀ, ସେଇଟି ବୋଧହୁଏ ସର୍ବପ୍ରଥମ ଆଧୁନିକ ଓଡିଆ ଏକାଙ୍କିକା । ସେଥିରେ ହସ, କୌତୁକ, ବ୍ୟଙ୍ଗ, ବିଦ୍ରୂପ ମାଧ୍ୟମରେ ତ୍ରିପାଠୀ ସାହେବଙ୍କର କର୍ଡ ଲିଭର୍ ଅଏଲ୍ ଓ ବିଲାତି ବାଇଗଣ ରସ ସ୍ୱାସ୍ଥ୍ୟ ରକ୍ଷାପାଇଁ ପିଲାଙ୍କ ମଧ୍ୟରେ ବାଣ୍ଟିବାକୁ ଉପଲକ୍ଷ୍ୟ କରିଥିଲି । ତ୍ରିପାଠୀ ସାହେବ ସେ ନାଟିକାକୁ ବେଶ୍ ଉପଭୋଗ କରିଥିଲେ, ଏବଂ ପାଖରେ ବସି ଡିକ୍‌ସନ୍ ସାହେବଙ୍କୁ ପ୍ରତ୍ୟେକଟି ଶବ୍ଦ ବୁଝାଉଥିଲେ । ଡିକ୍‌ସନ୍ ସାହେବ ଏତେ ସନ୍ତୁଷ୍ଟ ହେଲେ ଯେ, ଗୋଟିଏ ତିନି ହଜାର ଟଙ୍କାର ପିଙ୍ଗପଙ୍ଗ୍ ଟେବୁଲ (Table Tennis) ଦାନ କରିଥିଲେ, ଯାହାର ନାମ ଅନେକ ଦିନ ଧରି ଥିଲା ଡିକ୍‌ସନ୍ ଟେବୁଲ ।

ଦିନେ Common Room ଭିତରୁ ଚେୟାରଟି ଟାଣିଆଣି, ବାରଣ୍ଡାର ଖରାରେ ବସି ପଢୁଥାଏଁ, ତ୍ରିପାଠୀ ସାହେବ କେତେବେଳେ ମୋ ପଛରେ ଆସି ଛିଡାହୋଇଛନ୍ତି ମୁଁ ଜାଣେନି । ତାଙ୍କୁ ଦେଖି ଧଡ୍ ପଡ୍ ହୋଇ ଛିଡା ହୋଇଗଲି । ଶିମିଳିପାଳ ଜଙ୍ଗଲର ବାଘ ଭଳି ଗଳାରେ ହୁଙ୍କାର ଛାଡି ସେ କହିଲେ, "ବସନ୍ତ, ଏହା discipline ନୁହେଁ । ତୁମେ ନିଜେ General Secretary ହୋଇ ଯଦି ବାରଣ୍ଡାରେ ବସି ପଢିବ Study Hourରେ, ତେବେ ଅନ୍ୟାୟ ହବ । ତୁମେ ଯାହା କରୁଛ, ସାରା ହଷ୍ଟେଲ ପିଲା ଯଦି ସେଇୟା କରନ୍ତି, hostelର discipline ଅବସ୍ଥା କଣ ହେବ ?"

ତ୍ରିପାଠୀ ସାହେବ ମୋତେ ଯେଉଁ All-rounder certificate ଦେଇଥିଲେ, ତାକୁ ଆଖି ଆଗରେ ରଖି ମୁଁ ଏସବୁ ଲେଖୁଛି । କଲେଜ ଛାଡିବା ସମୟରୁ, ତାଙ୍କର ଓ ପରିଜା ସାହେବଙ୍କର Certificate ଦୁଇଟି ସାଇତାରହିଛି । ଏ ଦୁଇ ସାର୍ଟିଫିକେଟ ମୋର ଗର୍ବ ଓ ଗୌରବର ଧନ । All-rounder Certificateଟି ମୋ ହାତକୁ ଧରେଇ ଦେଲା ବେଳେ ତ୍ରିପାଠୀସାହେବ ମୋତେ ଗୋଟିଏ ପ୍ରଶ୍ନ କରିଥିଲେ- "to which side of the river Budhabalanga do you belong ?" ତାଙ୍କ ପ୍ରଶ୍ନର କଣ ଉଦ୍ଦେଶ୍ୟ ନ ବୁଝି, ମୁଁ ସିଧା

ଉତ୍ତର ଦେଲି; "to the south of the river Subarnnarekha." ମୋର ବିଲାତ ଯିବା ନଯିବାର ମୂଳରେ ସେଇ ସାମାନ୍ୟ ପ୍ରଶ୍ନର ଉତ୍ତର ନିର୍ଭର କରୁଥିଲା ।

ସେତେବେଳେ East Hostelରେ ଦୁଇ ଦଳ ଛାତ୍ର ରହୁଥିଲୁ । ଗୋଟିଏ ଦଳରେ ସମ୍ବଲପୁର, ସତେଇକଳା, ବଲାଙ୍ଗୀର, କଳାହାଣ୍ଡି, ପାଟଣା; ଏକ କଥାରେ, ପଶ୍ଚିମ ଓଡ଼ିଶା ଅଞ୍ଚଳର । ଯେତେଯେତେ ଗଡଜାତର ଛାତ୍ର ସେମାନେ ଗୋଟିଏ ଦଳର ଏବଂ ମୟୂରଭଞ୍ଜ, କେଉଁଝର, ବାଲେଶ୍ୱର ଓ ଅନ୍ୟାନ୍ୟ ଗଡଜାତର ଛାତ୍ରମାନେ ଆଉ ଗୋଟିଏ ଦଳରେ । ସାମାନ୍ୟ କାରଣରେ ଦୁଇଦଳ ଭିତରେ କଳିଗୋଳ ହେଉଥିଲା । ପଶ୍ଚିମ ଓଡିଶା, ଦକ୍ଷିଣ ଓଡିଶା, ଉତ୍ତର ଓଡିଶା, କଟକ, ପୁରୀ, ଗଞ୍ଜାମ ଆଦିର ବିଭେଦ ସେହି ସମୟରୁ ରହି ଆସିଛି । ତିନିଟା କେରମ୍ ବୋର୍ଡରୁ ବେଶି କେହି ଖେଳି ପାରିବେ ନାହିଁ, ଏହି ନିୟମର ବ୍ୟତିକ୍ରମରୁ East Hostelରେ ମହାଭାରତ ଯୁଦ୍ଧ । ସେ ସମୟର ଉଭୟ ଦଳର ରଥୀ ଭିତରୁ କେତେ ଜଣଙ୍କର ନାମ ହେଲା ବହିଦାର, ସୂପକାର, ଶତପଥୀ, ପଟ୍ଟନାୟକ ଆଉ ନନ୍ଦୀ; ରାସ୍ତାଘାଟରେ ଧସ୍ତାଧସ୍ତି ମାରପିଟ୍ ପର୍ଯ୍ୟନ୍ତ ଗଲା । 'ସତକଥା' ବୋଲି ଏକ ପତ୍ରିକାରେ ଘଟଣା ବିବରଣୀ ସବୁ ବାହାରିଲା । ଡରୁଆ ପିଲା ଭୟରେ ବାହାରିଲେନି । ତ୍ରିପାଠୀ ସାହେବଙ୍କ ପାଖକୁ ଆମେ କେତେଜଣ ମୟୂରଭଞ୍ଜ, କେଉଁଝର ଓ ବାଲେଶ୍ୱର ଛାତ୍ର ଚିଠି ଲେଖିଲୁ । ତ୍ରିପାଠୀ ସାହେବଙ୍କର ଜଣେ ପରମ ବନ୍ଧୁ ବାବା କର୍ତ୍ତାର ସିଂହ ଆମ ହଷ୍ଟେଲର ଓ୍ୱାର୍ଡେନ୍ ଥାନ୍ତି । ସେ ଦୁଇଜଣଙ୍କ ମଧ୍ୟରେ କଣ କଥାବାର୍ତ୍ତା ବା ଆଲୋଚନା ହେଲା କେଜାଣି, ବିରାଟ ବିପ୍ଳବ ବା ବିଦ୍ରୋହ କଲିକତି ରସଗୋଲା ଓ ବିଦେଶୀ ବାସନ କୁସନରେ ମିଳେଇ ଗଲା । ଶେଷରେ "ମାମା" ସିଂ ତାଙ୍କ ପୁତ୍ର ଓ କନ୍ୟା ପଞ୍ଜାବୀ ସଙ୍ଗୀତ ପରିବେଷଣ କଲେ ଓ "ବାବା" ନିଜେ ଜିଗି ତବଲାରେ ସଙ୍ଗତ୍ ଦେଲେ । ଶାନ୍ତିରେ ସବୁ ଶେଷ ।

ତ୍ରିପାଠୀ ସାହେବଙ୍କର ଅସମ୍ଭବ କ୍ଷମତା ଶିକ୍ଷାକ୍ଷେତ୍ରରେ । କଲେଜଗୁଡାକୁ ସେ ସାଙ୍ଗରେ ନେଇ ବୁଲୁଛନ୍ତି ବୋଲି ଜଣାପଡେ । ଏକାଦିନରେ ଏକା ଅର୍ଡରରେ ଚାରି ଚାରିଟା କଲେଜ୍ ସେ ପ୍ରତିଷ୍ଠା କରି ପାରନ୍ତି ଓ ଲୋକମାନଙ୍କୁ ସେ ସେଇଠି ବସି ନିଯୁକ୍ତି ଦେଇ ପାରନ୍ତି । ମୋତେ ବାଲେଶ୍ୱର କଲେଜକୁ ନେବାପାଇଁ ଚେଷ୍ଟା କରିଥିଲେ । ମହାରାଜା ମନା କଲାରୁ ଗଲିନି । କହିଲେ, "ପରେ ଆମେ କଲେଜ କଲେ ତୁମେ ଯିବ ।" ପରେ ଦେୱାନ୍ ଖଣ୍ଡିଏ ଚିଠିଦେଇ ମୋତେ ତ୍ରିପାଠୀ ସାହେବଙ୍କ ପାଖକୁ ପଠେଇଲେ । ମୁଁ ତାଙ୍କୁ ଭେଟିଲି କଟକ ଷ୍ଟେସନରେ ଏକ ସ୍ୱତନ୍ତ୍ର reserved ଡବାରେ । ଚିଠି ଖଣ୍ଡିକ ଦେଲି । ସାଙ୍ଗେ ସାଙ୍ଗେ ସେଇଠି ତ୍ରିପାଠୀ ସାହେବ ଆଉ ଖଣ୍ଡିଏ ଚିଠି ଦେଲେ ସେକ୍ରେଟେରୀ ଦୁର୍ଗାବାବୁଙ୍କ

ପାଖକୁ। ତାଙ୍କ ଗାଡିରେ ମୋତେ ପଠାଇଦେଲେ କେଣ୍ଟନମେଣ୍ଟର ପାଞ୍ଚ ନମ୍ବର କୋଠୀକୁ। ସେଇଠି ତ୍ରିପାଠୀ ସାହେବ ରହୁଥିଲେ। ମହଣେ ଓଜନର overcoatଟି ମୋ ହାତକୁ ବଢେଇ ଦେଇ କହିଲେ- "ଏଇଟା ନିଅ, ନୀଳମଣିର ମା'କୁ ଦେବ। ଚିଠିଟା କାଲି officeରେ ଦୁର୍ଗାବାବୁଙ୍କୁ ଦେଇଦେବ।" ମୁଁ ସେଇଆ କଲି ଏବଂ ମୋର କାମ ସବୁ ମଧ୍ୟ ସୁରୁଖୁରୁରେ ହୋଇଗଲା।

ପରଦିନ ସକାଳେ ଦେୱାନ ସାହେବ କେ.ସି. ନିୟୋଗି ମୋତେ ଡକାଇ ପଠାଇଲେ। ବେଲଗଡିଆ ପେଲେସର ସାମନା ବଗିଚାରେ ମୁଣ୍ଡରେ ଜେଲଖାନାର ଖାଣ୍ଟି ସୋରିଷ ତେଲ କୋରରେ ଘଷୁଥାନ୍ତି ଏବଂ କହିଚାଲିଥାନ୍ତି- "ବସନ୍ତ ! ତୁମି Journalism ଯାବେ। ଆମି ଆମାର friend ବିଧୁବାବୁର କାଛେ ଚିଠି ଲିଖେଦିଏଛି। ତୁମି ୬ ମାସରେ ଜନ୍ୟେ ଡାଲହାଉସି ସ୍କୁୟାରେ United Press ଯାବେ।" ମାତ୍ର ଆଠ ଦିନ ଭିତରେ ଟଙ୍କା ପଇସା ପେଡିପୋଟଳା ବାନ୍ଧି ନିୟୋଗୀଙ୍କ ଚିଠି ନେଇ ଟ୍ରେନିଂ ଗଲି। ପରେ ମୁଁ ଫେରିଆସି ମୟୁରଭଞ୍ଜ ସେକ୍ରେଟେରିୟଟ୍‌ରେ 'ଭଞ୍ଜ ପ୍ରଦୀପ' ଓ 'ମୟୁରଭଞ୍ଜ ଷ୍ଟେଟ ଗେଜେଟ୍' ସଂପାଦନା କଲି। ପ୍ରଜାସଭା, କେନ୍ଦ୍ର ପରିଷଦର ସେକ୍ରେଟାରୀ କାମ ବି ତୁଲାଇଲି ମିଶ୍ରଣ ପର୍ଯ୍ୟନ୍ତ। ମୋର ବିଲାତ ଯିବା ନହେଲା।

ତ୍ରିପାଠୀ ସାହେବ ନାରୀଶିକ୍ଷାର ପ୍ରଗତି ଓ ପ୍ରସାରରେ ବିଶ୍ୱାସୀ ଥିଲେ। ରେଭେନ୍‌ସା କଲେଜରେ ସେ ଇତିହାସ ଅଧ୍ୟାପିକା ହିସାବରେ ଅଳ୍ପ ଦିନ ପାଇଁ ହେଲେ ମଧ୍ୟ ଜଣେ ପରମାସୁନ୍ଦରୀ ମହିଳାଙ୍କୁ ନିଯୁକ୍ତି ଦେଇଥିଲେ। ପ୍ରଥମ ଥରପାଇଁ ରେଭେନ୍‌ସା କଲେଜର କାନ୍ଥ ନାରୀ କଣ୍ଠସ୍ୱର ଶୁଣିଥିଲା ହୁଏତ।

ତ୍ରିପାଠୀ ସାହେବ ଆମୋଦ ପ୍ରମୋଦର ପୃଷ୍ଠପୋଷକ ଥିଲେ। କେଉଁଠି ନାଟକ ହେଉଛି, ଆଉ କେଉଁଠି ମନୋହରଜୀ କାରଭେଙ୍କର ସଂଗୀତର ଆସର ବସିଛି, ସବୁଥିରେ ତ୍ରିପାଠୀ ସାହେବ ଉପସ୍ଥିତ। ଯେଉଁଠିକି ଯାଆନ୍ତି, ଜମେଇ ଦିଅନ୍ତି ଏବଂ ବଡ ବଡ ଅଫିସରଙ୍କୁ ଆକୃଷ୍ଟ କରନ୍ତି। ବେଶି ମିଳାମିଶା କରନ୍ତି ସାହେବମାନଙ୍କ ସହିତ ବା ଅନ୍ୟ ପ୍ରାନ୍ତର ଲୋକଙ୍କ ସହିତ। ବାବା କର୍ତ୍ତାର ସିଂ (ରସାୟନ ବିଜ୍ଞାନରେ ପ୍ରଫେସର), କେ.ପି. ସିହ୍ନା (ପ୍ରଫେସର) ଡିକ୍‌ସନ୍, କମିସନାର୍ ଓ ସେମାନଙ୍କ ସହଧର୍ମିଣୀଙ୍କ ସହିତ ବେଶି ମିଳିମିଶା କରନ୍ତି। ବିଭିନ୍ନ ନାଚ, ଗୀତ, ତାମସାରେ ସେ ଉପସ୍ଥିତ ରହି ଉପଭୋଗ କରିଥାନ୍ତି।

ତ୍ରିପାଠୀ ସାହେବଙ୍କ ସହିତ ମୋର ଶେଷଥର ଦେଖା ୧୯୪୮ ସାଲରେ। ସେତେବେଳେ ସେ ରାଜସ୍ଥାନ ପବଲିକ୍ ସାରଭିସ୍ କମିସନ୍‌ରେ ଥାନ୍ତି। ରହୁଥାନ୍ତି ଜନଟ

ପ୍ଲେସ୍‌ର୍ Western Court ନାମକ ନାମଜାଦା ଆଧୁନିକତମ ହୋଟେଲରେ। ଆମେ କେତେଜଣ ସେତେବେଳେ ସର୍‌ଦାର୍ ପଟେଲ୍‌ଙ୍କ ସହିତ ମୟୁରଭଞ୍ଜ ମିଶ୍ରଣ ସଂପର୍କରେ ଦେଖାକରିବାପାଇଁ ଯାଇ ରହିଥାଉଁ ମେରିଡିୟେନ୍ ହୋଟେଲ୍‌ରେ। ପରଦିନ ଆମକୁ ସାକ୍ଷାତ ତାରିଖ ଦିଆଯାଇଥାଏ। ଛାତି ଧଡ୍‌ପଡ୍ ଅବସ୍ଥାରେ ଆମେ ରାତିଟି ବିତାଇବା ମତ୍‌ଲବ୍‌ରେ ଥାଉଁ। Iron-Man ସହିତ ଦେଖା ସାକ୍ଷାତ ହେବ। ଯେଉଁଠି Hyderabadର ଅସ୍ତିତ୍ୱ କେତେଟା ଦିନରେ ମିଳେଇଗଲା, ସେ କ୍ଷେତ୍ରରେ ମୟୁରଭଞ୍ଜର ଅସ୍ତିତ୍ୱ କେତେଦିନ ବା କେତେ ଘଣ୍ଟା, ଏଇ ଚିନ୍ତା ଆମକୁ ଆନ୍ଦୋଳିତ କରୁଥାଏ।

ହଠାତ୍ ତ୍ରିପାଠୀ ସାହେବ ମୋତେ ଡକାଇ ପଠାଇଲେ। ମୟୁରଭଞ୍ଜର ପ୍ରଧାନମନ୍ତ୍ରୀ ଶ୍ରୀ ଶରତଚନ୍ଦ୍ର ଦାସଙ୍କର ମୁଁ ଜଣେ ଅନୁଚର। ତାଙ୍କର ହୁକୁମ୍ ମୁଁ ତାଲିମ୍ କରେ। ତ୍ରିପାଠୀ ସାହେବ Meridian Hotelକୁ ପ୍ରତିଦିନ ସଞ୍ଜରେ ଆସନ୍ତି। Dinner ପରେ Dance ଦେଖନ୍ତି ଏବଂ Western Courtକୁ ଫେରିଯାଆନ୍ତି। ମୁଁ ତାଙ୍କରି କହିବା ମୁତାବକ ଶରତ ବାବୁଙ୍କ ପାଖରୁ କଣ ଟଙ୍କାପଇସା ଆଣିଦେଲି, ଯାହା ଫଳରେ ସେ ତାଙ୍କର Hotel Bill ଏବଂ ଗାଡିଭଡା ସବୁ ପାଇଗଲେ। ପରଦିନ ସଞ୍ଜବେଳେ ମୟୁରଭଞ୍ଜର Development ମନ୍ତ୍ରୀ ଶ୍ରୀ ମହେଶ୍ୱର ନାୟକ ଏବଂ ଆଉ କେତେଜଣ ଯାଇଥାଉଁ ସରଦାର ପଟେଲଙ୍କ ସହ ଦେଖା ସାକ୍ଷାତର ଫଳ କଣହେଲା ମହାରାଜାଙ୍କୁ କହିବା ପାଇଁ। କିଛି କହିବା ପୂର୍ବରୁ ଶ୍ରୀଯୁକ୍ତ ନାୟକ ଭୋ ଭୋ କାନ୍ଦି ପକାଇଲେ ଏବଂ ଦିଲ୍ଲୀ ଆକାଶରେ ଅସ୍ତଗାମୀ ସୂର୍ଯ୍ୟ ଆଡକୁ ଆଙ୍ଗୁଳି ଦେଖାଇ କହିଲେ- "ମହାରାଜା ସାହେବ ! ମୟୂରଭଞ୍ଜର ସୂର୍ଯ୍ୟ ଅସ୍ତ ହୋଇଗଲା।" ମହାରାଜା କ୍ରୋଧମିଶା ଦୁଃଖରେ ଉତ୍ତର ଦେଲେ- "ମହେଶ୍ୱର, ୧୮୦୦ ବର୍ଷର ରେକର୍ଡେଡ୍ ଇତିହାସ ଯେଉଁ ଆମ ମୟୂରଭଞ୍ଜ, ତାହା କାଳ କବଳରେ ଲୁଚିଗଲା। ତୁମେ କେତେଜଣ ମନ୍ତ୍ରୀ ପାଞ୍ଚଶହ ଟଙ୍କା ଲେଖାଏଁ ଦରମା ହରାଇଲ ବୋଲି ମାଇଚିଆ ପରି କାନ୍ଦୁଛ ?" ମୟୁରଭଞ୍ଜ ଚାଲିଗଲା, ମହାରାଜା ଚାଲିଗଲେ, ମୟୂରଭଞ୍ଜର ସ୍ୱାଭିମାନର ପ୍ରତୀକ ତ୍ରିପାଠୀ ସାହେବ ମଧ୍ୟ ଚାଲିଗଲେ, ଗୋଟାଏ ଯୁଗ ସରିଗଲା।



## ॥ ତେଇଶ ॥

ସେଦିନ, ଫ୍ରେଜର ହଷ୍ଟେଲର ପଛପଟ ଫୁଟବଲ୍ ପଡିଆରେ ଅସାଧାରଣ ଜନ ସଙ୍ଗମ। ମହାରାଜାଙ୍କ ସାନଭାଇ ପ୍ରତାପ ଚନ୍ଦ୍ର ଫୁଟବଲ ଖେଳିବାକୁ ଆସିବେ। ରାଜାରାଜୁଡା ଯେ ଫୁଟବଲ ଖେଳନ୍ତି, ସେ ଧାରଣା ଆମର ନଥିଲା।

ଗୋଟିଏ ନୂଆ ସୁନ୍ଦର ଚକଚକିଆ ବେଣ୍ଟଲି ଗାଡିରୁ ଛୋଟରାୟ୍ ପ୍ରତାପ ଚନ୍ଦ୍ର ଓହ୍ଲାଇଲେ। ଦୀର୍ଘକାୟ ପୁରୁଷ। ଛଅ ଫୁଟ୍‌ରୁ ଊର୍ଦ୍ଧ୍ୱଉଚ୍ଚ। ପରିଧାନ ଅଠାବନ୍ ଇଞ୍ଚିଆ ବଡ ଲାଲି ଧଡିର ଧୋତି। କୁଞ୍ଚକରା। ତାଙ୍କ ସାଙ୍ଗରେ ଥିଲେ ବିଶ୍ୱେଶ୍ୱର କିତ୍; ତାଙ୍କର ବ୍ୟକ୍ତିଗତ ଅନୁଚର, ଯେ'କି ଛୋଟରାଜ ସାହେବ, ମହାରାଜା ସାହେବ ଆଦି କ୍ୱଚିତ୍ ସାଧାରଣରେ ପ୍ରକାଶ କରିଥାନ୍ତି। ପାନବଟା ଓ ସିଗାରେଟ୍ ତାଙ୍କରି ହାତରେ ଥାଏ। ସ୍କୁଲର ଡ୍ରିଲ୍‌ମାଷ୍ଟର ବ୍ରଜସୁନ୍ଦର ଦାଶ ତାଙ୍କୁ ପଡିଆ ଆଡକୁ ନେଇଗଲେ। ଛୋଟରାୟ୍ ସାହେବ ସଙ୍ଗେ ସଙ୍ଗେ ମାଲକଚ୍ଛା ଭିଡି, କୁମ୍ଭଗଛ ମୂଳେ ଗୋଲ୍‌ପୋଷ୍ଟକୁ ଚାଲିଗଲେ। ଆମେ ଆଶ୍ଚର୍ଯ୍ୟ ହେଲୁ, ସେ ଗୋଲ୍‌କିପର୍ ଆକାରରେ ଖେଳିବେ। ହାତ ଉପରକୁ ଉଠେଇ ଦେଲେ, ବାର ଅତିକ୍ରମକରି ଆହୁରି ଚାଖଣ୍ଡେ ଉପରେ ରହେ। ଏଇ ହେଲେ ମୋର ଭାବି ମହାରାଜା। ଆମେ ଅଧିକାଂଶ ସମୟ ବେଣ୍ଟଲି ଗାଡିର ବିପୁଳ ଜଂଘା ଯୋଡିକୁ ତନ୍ମୟ ହୋଇ ଦେଖିବାରେ ବ୍ୟସ୍ତ ରହିଲୁ ଏବଂ ଚକିତ ହୋଇ ଚାହିଁଥିଲୁ ଛୋଟରାୟ୍ ସାହେବଙ୍କୁ। ଖେଳ ଶେଷରେ ଛୋଟରାୟ୍ ସାହେବ ଚାଲିଗଲେ। ମୁଁ ଶୀର୍ଷାରେ ମାଇନର୍ ପଢୁଥିଲା ବେଳେ ଏଇ ଛୋଟରାୟ୍ ସାହେବଙ୍କ ବାହାଘର ଦେଖିବାପାଇଁ ଆସିଥିଲି। ଏମିତି ବାହାଘର ମୁଁ ଜୀବନରେ ଦେଖିନି; ନା ବାସ୍ତବ ଜୀବନରେ, ନା ସିନେମାରେ। ବାପା ମୋତେ ବୁଲାଇ ଦେଖାଉଥାନ୍ତି। ରାଜବାଟୀର ଆଗରେ ଅଭ୍ରର ଫୁଲଝାଡ, ଡଙ୍ଗା, ଭାଗବତ ଓ ମହାଭାରତର ସବୁ ନାବକେଳୀ ବା ମଲ୍ଲଯୁଦ୍ଧ ଇତ୍ୟାଦି ବିଭିନ୍ନ ରଙ୍ଗ ସମ୍ବଳିତ କାରୁକାର୍ଯ୍ୟ ପୂର୍ବ ରାତ୍ରିରେ ବିବାହ ଶୋଭାଯାତ୍ରାରେ ବ୍ୟବହୃତ ହୋଇ ମୟୁରଭଞ୍ଜକୁ ଚମତ୍କୃତ କରିଥିଲା। ଷ୍ଟେସନ ବଜାରରୁ ବେଲଗୋଡିଆ କୋଠୀ ପର୍ଯ୍ୟନ୍ତ ଶହ ଶହ ଡେଲାଇଟ୍, କୁମ୍ଭ, କଦଳୀ ଗଛ, ପ୍ରତି ଛକରେ ମଦନ ଥିଏଟର୍‌ର silent movie ଅର୍ଥାତ୍ ନିର୍ବାକ ଚଳଚିତ୍ର (ବନ୍ଧୁକର ଧୂଆଁ ଦିଶେ, ଶବ୍ଦ ଶୁଭେନି, ଅଥଚ ଶିକାରୀ ଗୁଳିରେ ବାଘ ମରିଯାଏ) ରୋଷଣିର ଆଦିଅନ୍ତ ନାହିଁ। ଲଙ୍କା ଗଡ ଜଳୁଛିତ ଜଳୁଛି। ଏପଟେ ହାଇସ୍କୁଲକୁ ଲାଗି କଲିକତାର ମିନାର୍‌ଭା ଥିଏଟର୍। ବାପାଙ୍କ ଭାଷାରେ- ମଞ୍ଚରେ ଏତେ ସୁନ୍ଦର ଝିଅ ଏକାବେଳେ ବାହାରନ୍ତି; ଜଣାପଡେ ଯେମିତି ସ୍ୱର୍ଗର ପରୀମାନେ ମର୍ତ୍ତ୍ୟକୁ ଓହ୍ଲାଇ ଆସିଛନ୍ତି। ଖାଦ୍ୟ, ବସ୍ତ୍ର ପ୍ରଚୁର ପରିମାଣରେ ସ୍କୁଲ ପିଲା, ଟୋଲ ପିଲା, ଅର୍ଫେନେଜ୍ ପିଲା ଓ ବ୍ରାହ୍ମଣମାନେ ପାଇଥିଲେ। ଏକ କଥାରେ, ସପ୍ତାହକପାଇଁ ହୁଏତ

ସ୍ୱର୍ଗ, ମର୍ତ୍ତ୍ୟକୁ ଖସି ଆସିଥିଲା। ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କର ସାନଭାଇ ପ୍ରତି ସମସ୍ତ ଶ୍ରଦ୍ଧା ଠୁଳହୋଇଥିଲା ଏଇ ଉତ୍ସବରେ।

ଦିନ ଆସିବ, ଯେତେବେଳେ ଏଇ ଛୋଟରାୟ ସାହେବ ମୟୂରଭଞ୍ଜର ମହାରାଜା ହେବେ। ବର୍ତ୍ତମାନ ସେ ମ୍ୟୁନିସିପାଲ୍‌ଟିର ଚେୟାରମ୍ୟାନ ଏବଂ ତାଙ୍କର ଭାଇସ୍ ଚେୟାରମ୍ୟାନ ହେଉଛନ୍ତି ପରବର୍ତ୍ତୀ କାଳର ପ୍ରଖ୍ୟାତ ପ୍ରଜାମଣ୍ଡଳର ନେତା ତଥା ମୟୂରଭଞ୍ଜର ପ୍ରଥମ ପ୍ରଧାନମନ୍ତ୍ରୀ, ଶରତ "ଗାନ୍ଧୀ"।

ଯେଉଁ ବିଶ୍ୱେଶ୍ୱର ଜିତ୍ ମହାରାଜାଙ୍କର ପାନବଟା ସହିତ ପଡ଼ିଆକୁ ଆସିଥିଲେ ଏବଂ ଯେଉଁ ଡ୍ରିଲ ଶିକ୍ଷକ ବ୍ରଜବାବୁ ତାଙ୍କୁ ପାଛୋଟି ନେଇଗଲେ ଖେଳ ପଡ଼ିଆକୁ, ସେ ଦୁହେଁ ବାରିପଦାର social and cultural gentlemen ରୂପେ ପ୍ରଖ୍ୟାତ।

ଯେମିତି କହିଛି, ବ୍ରଜବାବୁ ପଣ୍ଡିତ ପୁଅ। ଏବଂ ଲୋକୋକ୍ତି ଅନୁସାରେ ମୂର୍ଖ। ମେଟ୍ରିକ ପାସ୍ ମଧ୍ୟ ତାଙ୍କର ନାହିଁ। କିନ୍ତୁ ତାଙ୍କ ପରି ସର୍ବଗୁଣଭୂଷିତ ଲୋକ ସେତେବେଳେ ମୟୂରଭଞ୍ଜରେ କମ୍। ଏକ କରିତ୍‌କର୍ମା ଯୁବକ। ସେ ଏକାଧାରାରେ ଥିଲେ ଫୁଟବଲ ଖେଳୁଆଡ଼, କ୍ରିକେଟପ୍ରେମୀ, କୃତୀ ଏଥେଲେଟ୍, ଉଚ୍ଚଧରମର ଅଭିନେତା, ଅତ୍ୟନ୍ତ ମେଳାପୀ, ବୁଦ୍ଧି, ସାଧାରଣ ଜ୍ଞାନ ଓ ଚତୁରତାରେ ସେ ଅଗ୍ରଗଣ୍ୟ। ନିର୍ଭୀକ ଓ ନିରପେକ୍ଷ ସମାଲୋଚନା ମଧ୍ୟ ସେ କରୁଥିଲେ। ପରିତାପର ବିଷୟ, ବାରିପଦାରେ ତାଙ୍କର ପ୍ରତିମୂର୍ତ୍ତି ନାହିଁ, ନାମ ନାହିଁ; ଶରତ୍ ଗାନ୍ଧୀଙ୍କର କାହିଁ ପ୍ରତିମୂର୍ତ୍ତି ନାହିଁ; ଏପରିକି ମୟୂରଭଞ୍ଜର ସର୍ବଶ୍ରେଷ୍ଠ ମହାରାଜା ପ୍ରତାପ ଚନ୍ଦ୍ରଙ୍କ ପ୍ରତିମୂର୍ତ୍ତି ନାହିଁ।

ଏଥର ବିଶ୍ୱେଶ୍ୱର ଜିତ୍‌ଙ୍କ କଥା ମନେ ପଡ଼ୁଛି। ବାବୁ ସାଇର ସେ ଗୋଟିଏ ମହାପୁରୁଷ। ସଦାସର୍ବଦା ଶ୍ୱେତବସ୍ତ୍ର ପରିହିତ। ଧଳା ଧୋତି ଓ ଢିଲା ପଞ୍ଜାବି। ବିଶ୍ୱସ୍ତ, ପ୍ରଭୁଭକ୍ତ, ବଡ଼ ବଡ଼ ଲୋକଙ୍କ ପାଖରେ ଅନୁଚର ହେବାର ଯୋଗ୍ୟତା ସବୁ ତାଙ୍କର ଥିଲା। ସ୍ୱଳ୍ପଭାଷୀ, ମିଷ୍ଟାଳାପି, ସଦାସ୍ମିତ ମୁଖ, ନୂଆଦାନ୍ତ ଲଗେଇଥିବାରୁ ଆହୁରି ସୁନ୍ଦର ଦିଶେ ଓ କଥାଗୁଡ଼ାକ ଦରୋଟି ପରି ଶୁଭେ।

ତାଙ୍କରି ମୁଖରୁ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କ ବିଷୟରେ ଯୋଡ଼ିଏ ତିନୋଟି କଥା ଶୁଣିଛି। ମହାରାଜା ପୂର୍ଣ୍ଣଚନ୍ଦ୍ର ଦେଖିବାକୁ ଖୁବ୍ ସୁନ୍ଦର ଥିଲେ। କିନ୍ତୁ ରୁଗ୍‌ଣ ଓ ଜୀର୍ଣ୍ଣଶୀର୍ଣ୍ଣ। ରାଜକୀୟ ପୋଷାକଟି କେବଳ ତାଙ୍କର ଦୈହିକ ଦୁର୍ବଳତାକୁ ଢଙ୍କାଇ ରଖିଥାଏ। ଦେଢବର୍ଷ ଭିତରେ ମୁଁ ତାଙ୍କୁ ଥରେ ବି ଦେଖିନି। ସେ କ୍ୱଚିତ୍ ବାହାରକୁ ଆସୁଥିଲେ। ତାଙ୍କର ରାତିରେ କୁଆଡ଼େ ନିଦ ହୁଏ ନାହିଁ। ଇଞ୍ଜେକ୍‌ସନ୍ ନେଲେ ନିଦହୁଏ। ଥରେ ଥରେ ସେ ନିଜେ ଇଞ୍ଜେକ୍‌ସନ୍ ନିଅନ୍ତି। ଅନ୍ୟ କାହାକୁ ରାତ୍ରି ଅସମୟରେ ହଇରାଣ କରନ୍ତି ନାହିଁ। ଏଇ ସମୟରେ ଦିନେ ମୁଁ ଯାଇଥିଲି ରାଜବାଟୀ। ମହାରାଜାଙ୍କ ସହିତ

ଦେଖା ହେଲାନି । ଦୂରରୁ ମଧ୍ୟ ନୁହେଁ । ଦେଖିଲି- ଯେଉଁଠି ଛଉନାଚ ହୁଏ, ସେଇଠି ଅତୀବ ସୁନ୍ଦର କୁକୁରଗୁଡ଼ିକୁ । ସେମାନଙ୍କର ବର୍ଣ୍ଣନା ସାନ୍‌ଡେ ଟେଲିଗ୍ରାଫ୍‌ରେ ଏମିତି ଲେଖାଥିଲା । "A pack of Great Danes, sleek and impeccably groomed, once paced the Maharaja of Mayurbhanj's kennels in the thirties. This cost the Mayurbhanj treasury five thousand guineas. On his account. Mr Buckland was in charge." ଏଥିରୁ ମହାରାଜା ପୂର୍ଣ୍ଣଚନ୍ଦ୍ରଙ୍କ ସଉକ୍‌ର ପ୍ରମାଣ ମିଳେ । ମହାରାଜାଙ୍କର ସେହି ସମୟରେ ରଲସ୍ ରୋଏସ୍ ପ୍ରମୁଖ ଯେଉଁ ମହାମୂଲ୍ୟ ଗାଡ଼ି ଥିଲା ଓ ଅଶ୍ୱଶାଳରେ ଯେଉଁ ଦାମିକା ଜୀବ ସବୁ ଥିଲେ, ତାହା ବର୍ଣ୍ଣନାତୀତ । ସେତେବେଳେ ମହାରାଜାଙ୍କର ଘୋଡ଼ ହାତୀ ବାରିପଦାରେ ବା ଅନ୍ୟତ୍ର ପାଳିତହୋଇଥିଲେ, ସେମାନଙ୍କର ନାମ ଏଇ ପ୍ରକାର ଥିଲା: "କୁମେଲିୟା ପିଆରି", "ନଟବରପ୍ରସାଦ", "ରତନମାଲା", "ଅନାରକଲି" ଆହୁରି ସେହିପରି କେତେନାମ । ପ୍ରତ୍ୟେକର ଦାମ୍ ତିନି ହଜାରରୁ ପାଞ୍ଚହଜାର ଭିତରେ । ମଧୁବନରେ ପୋଷାହାତୀଟିଏ ଗର୍ଭଧାରଣ କରିବା ଏବଂ ହାତୀଛୁଆ ପ୍ରସବକରିବା ଦେଖିବାପାଇଁ ବିରାଟ ଜନସମାଗମ ହୋଇଥିଲା ।

ବିଶ୍ୱେଶ୍ୱର ବାବୁ ମହାରାଜାଙ୍କ ସହିତ ଏଟେନ୍‌ଡେଣ୍ଟ ଆକାରରେ ବିଲାତ ଯାଇଥିଲେ । "ବାଟ୍‌ଲାର କମିଟି" ମିଟିଙ୍ଗ୍ ବା ଆଉ କୋଉ ମିଟିଙ୍ଗ୍‌ରେ ଯୋଗଦେବାପାଇଁ । ବିଶ୍ୱେଶ୍ୱର ବାବୁ କହିଲେ- "ସନ୍ଧ୍ୟାବେଳେ ମହାରାଜା ଦେଖିଲେ ପରଦିନ ମିଟିଂପାଇଁ ପୋଷାକପତ୍ର ସବୁ ଠିକ୍ ଅଛି, କିନ୍ତୁ ଭଲ ଜୋତା ନାହିଁ । ସାଙ୍ଗେ ସାଙ୍ଗେ ମୋତେ ବଜାରରୁ ଝାଲେ ଭଲ ଜୋତା ଆଣିବାପାଇଁ କହିଲେ । ଦୋକାନୀ ସେତେବେଳେ ଦୋକାନ ବନ୍ଦ କରିବା ଉପରେ । ବଛାବଛି କରି ମୋତେ ଯେଉ ହଳକ ଜୋତା ଭଲ ଦିଶିଲା, ଖୁବ୍ ଦାମିକା ହେଲେ ମଧ୍ୟ ମୁଁ ତାକୁ ନେଇ ଫେରିଲି । ଭାବିଲି- ସତ କଥା, ମହାରାଜାଙ୍କର ପୋଷାକପତ୍ର ଭଲ ନ ହେଲେ, ସର୍ବସାଧାରଣରେ ମୟୁରଭଞ୍ଜ ଅପଦସ୍ଥ ହେବ । ମହାରାଜା ଦେଖିଲେ । ଭଲ କରି ନ ଦେଖି ମଧ୍ୟ ଫୋପାଡ଼ିଦେଲେ । ମନ୍ତବ୍ୟ କଲେ, 'ଏହାଠାରୁ ଭଲ ଓ ଦାମିକା ଜୋତା ଲଣ୍ଡନ ସହରରେ ଆଉ ନ ଥିଲା ?' ମୁଁ ସାଙ୍ଗେ ସାଙ୍ଗେ ଫେରିଲି ଜୋତା ହଳକ ନେଇ । ଦୋକାନୀକୁ କହିଲି- 'ତୁମ ଦୋକାନରେ ସବୁଠାରୁ ଯେଉଁ ଦାମିକା ଜୋତା ଅଛି, ସେ ହଳକ ଦିଅ ମୋତେ ।' ତାର ଦର ଶୁଣି ମୁଁ ତଟସ୍ଥ ହୋଇଗଲି । ଭାବିଲି- ମହାରାଜା ବୋଧହୁଏ ଏଥର ଖୁସିହେବେ । ମହାରାଜା ସାହେବ ଜୋତା ଦେଖିଲେ ଏବଂ ଦାମ୍ ମଧ୍ୟ ଶୁଣିଲେ । ମୁହଁକୁ ବିଚିକିଟିଆ କରି କହିଲେ- 'ବିଶ୍ୱେଶ୍ୱର ତୁମ ଭଳି ଲୋକ ପାଖରୁ ଆଉ କଣ ଆଶା କରାଯାଇପାରେ ? ସମଗ୍ର ଲଣ୍ଡନ ସହରରେ ତୁମକୁ ଝାଲେ ଜୋତା ମିଳିପାରିଲାନି' ।"

ଆଉ ଦିନକର ଘଟଣା । ବିଶ୍ୱେଶ୍ୱର ବାବୁ ନିମ୍ନମତେ କହିଥିଲେ- "ମହାରାଜା ତ ଅତି ଦୁର୍ବଳକାୟ, ପରିଶ୍ରମ ଆଦୌ କରିପାରନ୍ତି ନାହିଁ । ଦିନବେଳେ ପ୍ରାୟ କିଛି କାମ କରନ୍ତି ନାହିଁ । ଫାଇଲ ପରେ ଫାଇଲ ଅଫିସ୍‌ରେ ଗଦାହୋଇ ଚାଲିଥାଏ । ଦିନେ, ଦିନେ କେବେ ସେ କର୍ମଠ ହୋଇଉଠନ୍ତି ଏବଂ ସ୍ନେହ ପୂର୍ଣ୍ଣ, କରୁଣ ଗଳାରେ କୁହନ୍ତି- 'ବିଶ୍ୱେଶ୍ୱର ଆଜି ରାତିରେ ଫାଇଲକାମ କରିବା ।' ରାତି ଦଶରେ କାମ ଆରମ୍ଭହୁଏ । ମହାରାଜା ହାତକୁ ମୁଁ ଗୋଟିକୁ ଗୋଟି ଫାଇଲ୍ ବଢାଇ ଦେଉଥାଏଁ । ସେ ଅର୍ଡର ପାଶ୍ କରି ମୋ ହାତକୁ ବଢାଇ ଦେଉଥାନ୍ତି । କେତେବେଳେ ଚଟାଣକୁ ଫାଇଲ ଫୋପାଡିଦିଅନ୍ତି । ରାତି ଗଡିଚାଲିଛି । ମହାରାଜାଙ୍କ କାମର ବି ଶେଷ ନାହିଁ । ମୁଁ ମହାରାଜାଙ୍କ ଆଡକୁ ଚାହିଁ କେତେ କଣ ଭାବୁଥାଏ ଏବଂ କର୍ତ୍ତବ୍ୟ କରିଚାଲିଥାଏଁ । କ୍ରମେ ରାତ୍ରି ଭୋର ହୋଇ ଆସିଲା । ମହାରାଜା ନିଜେ ଇଣ୍ଟେରଭ୍ୟୁସନ୍‌ଟା ନେଲେ ଏବଂ ଆଉ କେତେ ମିନିଟ୍‌ରେ କାମ ସାରିବା ସଂକଳ୍ପକଲେ । ସକାଳ ହୋଇଆସିଲା ବେଳକୁ ଫାଇଲ୍‌ର ସ୍ତୂପ ଆଉ ନାହିଁ । ସନ୍ତୋଷପୂର୍ଣ୍ଣ ଚକ୍ଷୁରେ ମୋ ଆଡକୁ ଚାହିଁଦେଲେ, ଏବଂ ଦେଖିଲେ ମୁଁ ଯେମିତି ଛିଡା ହୋଇଥିଲି । ସେଇ ଭଙ୍ଗୀରେ ଚେୟାରଟିକୁ ହାତରେଧରି ଛିଡାହୋଇଛି । ମୋର ଚେହେରା ଦେଖି ବୋଧହୁଏ ମହାରାଜା ଜାଣି ପାରିଲେ ଯେ, ମୁଁ ଛିଡା ହୋଇରହିଛି ରାତି ସାରା । କରୁଣ ଓ କ୍ଷୀଣ ସ୍ୱରରେ କହିଲେ- 'ବିଶ୍ୱେଶ୍ୱର ତୁମେ ରାତିଯାକ ସେମିତି ଛିଡା ହୋଇରହିଛ । ତୁମକୁ ବସିବାକୁ ନ କହିଲି ବୋଲି ତୁମେ ମୋର ଭୁଲର କ୍ଷମା ଦେବନି ।' ବଡ ବଡ ଦୁଇ ଟୋପା ଲୁହ ତାଙ୍କ ଆଖିରୁ ଝରିପଡିଲା ।"

ସାଧାରଣ ମଣିଷ ଆକାରରେ ବିଶ୍ୱେଶ୍ୱର ବାବୁଙ୍କର ସହାନୁଭୂତି, ସମ୍ବେଦନଶୀଳତା, ପରୋପକାରିତା ବିରଳ । ସେତେବେଳେ ଯୁଦ୍ଧ ସମୟ । ମୋର ଝିଅଟିଏ ପେଟ ବେମାରରେ ପଡିଲା । କୌଣସି ପ୍ରକାରରେ ଭଲହେଲାନି । ମାସେ ଚାଲିଗଲା । ଡାକ୍ତର କହିଲେ- ଗୋଟିଏ ବୋତଲ Horlicks ଏ ଛୁଆକୁ ବଞ୍ଚେଇପାରେ । ବିଶ୍ୱେଶ୍ୱର ବାବୁ ପାଖରେ ପହଞ୍ଚି କହିଲି- "ମୋର ଗୋଟିଏ ପ୍ରାର୍ଥନା ଯଦି ରକ୍ଷାକରିବେ ତେବେ ମୋର ଝିଅଟି ବଞ୍ଚିଯିବ । ମହାରାଜାଙ୍କର ଷ୍ଟୋରରୁ ଗୋଟିଏ Horlicks ବୋତଲ ମୋତେ ଦେଇପାରିବେ ? ଖଡଗ୍‌ପୁର ବାଲେଶ୍ୱର ପର୍ଯ୍ୟନ୍ତ ସବୁଠି ଖୋଜିଲି, କାହିଁ ପାଇଲି ନାହିଁ । ଯେତେ ଦାମ୍ ଦେଲେବି ମିଳିବ ନାହିଁ ।" "ଦଶ ମିନିଟ୍ ଅପେକ୍ଷା କରନ୍ତୁ"- କହି ବିଶ୍ୱେଶ୍ୱର ବାବୁ ଅନ୍ତର୍ଦ୍ଧାନ ହୋଇଗଲେ । ନୂଆ ମହାରାଜାଙ୍କ ଅନୁମତି ନେଇ, ସେ Horlicks ବୋତଲଟିଏ ମୋତେ ସମର୍ପଣକଲେ । ସତକୁ ସତ ଝିଅଟି ବଞ୍ଚିଗଲା ।



## ॥ ଚବିଶ ॥

ଗୁପ୍ତ କପ୍ ଫୁଟବଲରେ ହାଇସ୍କୁଲ ଯୋଗଦେଇଥାଏ । ଏ ଖେଳଟି ଓଡ଼ିଶା ହାଇସ୍କୁଲଗୁଡ଼ିକ ଭିତରେ ନିବଦ୍ଧଥାଏ । ଆମେ ଯେ ଫୁଟବଲ ଖେଳ ବା ଅନ୍ୟ କୌଣସି ଖେଳରେ ରଥୀ, ତା ନୁହେଁ । ଆମେ ଦେଖଣାହାରି । "ଦିଅଁ ଦେଖା, କଦଳୀବିକା" କଥା ଇଏ । କଟକ ସହର ଦେଖିବା ଆମର ମୁଖ୍ୟ ଉଦ୍ଦେଶ୍ୟ । କାରଣ, ଆମେ ଧରି ନେଇଥିଲୁ ଯେ, କଟକରେ ପଢିବା ଆମଦେଇ ହେବ ନାହିଁ ।

ପାଞ୍ଚଟି ଟଙ୍କା ଥିଲେ, ରେଳଭଡ଼ା ଓ ଖିଆପିଆ ସବୁ ମେଣ୍ଟିଯିବ । ନିଜେ ହେଡମାଷ୍ଟର ମଧୁ ବିଶ୍ୱାଳ ଟିମ୍‌କୁ ସାଙ୍ଗରେ ନେଇଯିବେ । କଟକ ସହର, ବଡ ମହରଗ । କଟକ ନଗର, ଧବଳ ଟଗର । ସାନଟି ବେଳୁ ବହିପତ୍ରରେ କଟକ କଥା ଦେଖିଶୁଣି ଆମେ ଧରିନେଇ ଥାଉ, କଟକ ଦେଖିବା ଜୀବନରେ ଏକ ପରମ ଗୌରବ । ପାଞ୍ଚଟଙ୍କା ହେଡମାଷ୍ଟରଙ୍କ ପାଖେ ଦାଖଲକଲୁ ଆମେ ଚାରିଜଣ ଅଣଖେଳାଳୀ । ବାରିପଦାରୁ ରୂପସା ଟ୍ରେନ୍‌ରେ ଏଗାର ଅଣା, ରୁପସାରୁ କଟକ- ଟଙ୍କେ ଚାରଣା । ଗାଏ ମୋଟ ଟଙ୍କେ ପନ୍ଦର ଅଣା ଭଡ଼ା । ଜୀବନର ଦୀର୍ଘତମ ରେଳଯାତ୍ରାରେ ବାହାରିପଡିଲୁ । ଚାନ୍ଦା ବାଦ୍ ହାତ ଖର୍ଚ୍ଚ ଦୁଇ ତିନି ଟଙ୍କା ପାଖରେ ଥାଏ । ମନ ଖୁସିଲେ ଗୀତ ଗାଇ ଚାଲିଚାଲି ଦାନ୍ତ କାଠି ଲୁଗାପୁଟୁଳିଟିଏ ଧରି, ଦିନ ପ୍ରାୟ୍ ଦୁଇଟା ବେଳେ ବାରିପଦା ଷ୍ଟେସନରେ ଘଣ୍ଟାଏ ଆଗରୁ ଟ୍ରେନରେ ବସିଗଲୁ ।

ପେନସିଲ ଓ ଛୋଟ ଖାତାଟିଏ ପାଖରେ ଥାଏ । ଷ୍ଟେସନଟିଏ ପହଞ୍ଚିଲେ, ତାର ନାମ ଲେଖାଯାଏ; କାହିଁକି ପ୍ରସିଦ୍ଧ ତାହା ଟିପି ରଖୁଁ । ପ୍ରଥମ ଷ୍ଟେସନ ଯାମଶୋଳା ବଣଜଙ୍ଗଲ ଭିତରେ । ଏଇଠି କୁଆଡେ ଶିକାରରେ ମୟୂରଭଞ୍ଜ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କୁ ଗୁଳି ବାଜିଥିଲା । ପରବର୍ତ୍ତୀ ଷ୍ଟେସନ କୃଷ୍ଣଚନ୍ଦ୍ରପୁର । ଟ୍ରେନଟି କୁଆଡେ କେମିତି ଘୁରି ଘୁରି ଗଲା, ଯହିଁରେ ସୂର୍ଯ୍ୟଟା ପୂର୍ବ ପଟେ ନ ଦିଶି ପଶ୍ଚିମ ପଟେ ଦେଖାଗଲା । ଅସ୍ତହେବା ସୂର୍ଯ୍ୟ ଉଦୟ୍ ଅବସ୍ଥାରେ ପହଞ୍ଚିଲା । ଏଇଠି ଷ୍ଟେସନ ପାଖରେ ଅନେକ ଜିନିଷ ବିକ୍ରି ହେଉଛି ଦେଖିଲୁ । ଜଙ୍ଗଲବାସୀମାନେ ପ୍ଲାଟଫର୍ମରୁ ଖଣ୍ଡେ ଦୂରରେ ଛତୁ, ପାଚିଲା ଭୁଡୁରୁ କୋଳି, ପନିପରିବା ବିକୁଥାନ୍ତି । କେତେକ ଯାତ୍ରୀମାନ ଧାଇଁ ଯାଇ ଭାଗ ଭାଗ ହୋଇ ବସିଥିବା ଜିନିଷ କିଣି ନିଅନ୍ତି । ପୁଣି ଟ୍ରେନ ଭିତରେ ବସିଯାନ୍ତି । ପରବର୍ତ୍ତୀ ଷ୍ଟେସନ ବେତନଟୀ; ସେ ଲାଇନରେ ଖୁବ୍ ବଡ ଷ୍ଟେସନ । ସେଠାରେ ଟ୍ରେନ ପାଣିପିଏ, ବହୁତ ସମୟ୍ ଛିଡାହୁଏ । ଖୁବ୍ ସାହସ କରି ଆମେ ତଳକୁ ଓହ୍ଲାଇ ଇଞ୍ଜିନ ପାଣିନେବା ଦୃଶ୍ୟ

ଦେଖିଲୁ । ଗୋଟାଏ ଦୁଇଟା ଚାଉଳ କଳର ଲମ୍ବା ଚିମିନି ଷ୍ଟେସନ ପାଖରେ ଦିଶୁଥାଏ । ଏହାପରେ ପ୍ରତି ଷ୍ଟେସନରେ ଆମେ ଯାକୁ ତାକୁ ପଚାରି ଟିପାଖାତା ବାହାରକରି ପୂରଣକରୁ । ସଂଧ୍ୟା ୬ଟାରେ ପ୍ରାୟ ରୂପସାରେ ପହଞ୍ଚିଲୁ । ରୂପସାକୁ ଜଂକ୍ସନ ଷ୍ଟେସନ କୁହାଯାଏ । ଏଠାରେ ଛୋଟ ଗାଡ଼ିରୁ ଓହ୍ଲାଇ ବଡ଼ ଗାଡ଼ି ଧରିବାକୁ ପଡ଼େ । ପ୍ରାୟ ସାଢେ ସାତଟାରେ ବଡ଼ ଟ୍ରେନ ଆସିବ । ସେଇଠି ପାଣ୍ଟିରୁ ଚାରିଟି ଲେଖାଏଁ ପୁରି ଓ ତରକାରୀ ଆମକୁ ମିଳିଲା । ପିଇବା ପାଣି ଆଦୌ ଭଲ ନୁହେଁ, ଖାରୁଆ । ଖଣ୍ଡିଏ ଲେଖାଏଁ ଇଲିସି ଭଜା ମଧ୍ୟ ଜଳଖିଆ ସାଙ୍ଗରେ ମିଳିଥିଲା । ପରେ ପଇସା ହିସାବକରି ଦେଖିଲୁ, ଜଣକେ ଟଙ୍କେ ଚାରଣା ଲେଖାଏଁ ପଡ଼ିଛି । ଆମେ ପ୍ରାୟ ହତବୁଦ୍ଧି ହୋଇଗଲୁ; ଫେରିବାପାଇଁ ପଇସା କିମିତି ମିଳିବ ସେଇକଥା ଆମକୁ ଗ୍ରାସକଲା ।

ପ୍ଲାଟଫର୍ମରେ ଆମେ ଓ କେତେ ଜଣ ଅପାଙ୍କ୍ତେୟ ଘୂରାଫେରା କରୁଛୁ । ଦିଗ୍‌ବଳୟ ଭୀଷଣ ଆଲୋକିତ ହେଲା, ବେଲ୍ ବାଜିବା ସାଙ୍ଗେ ସାଙ୍ଗେ ମୁଁ ଚିତ୍କାର କରି ଉଠିଲି "ହେଇ ଦେଖ ସୂର୍ଯ୍ୟ ଉଦୟ ହେଉଛି ।" ପ୍ରକୃତରେ ସେଇଟା ଇଞ୍ଜିନ ସାମନାରେ ଆଲୋକଟା, ଅନ୍ଧାର ରାତିକୁ ଏକାବେଳେ ଆଲୋକିତକରି ମାଡ଼ିଆସୁଛି ଆମ ଆଡ଼କୁ । ଆମେ ଛିଡ଼ା ହୋଇଛୁ ଟ୍ରେନକୁ ଅପେକ୍ଷା କରି । ଦୁଇଟି ପିଲା ଆମ ଗଳାକୁ ନକଲ କରି ପରସ୍ପର ଭିତରେ ବ୍ୟଙ୍ଗକରି କଥାବାର୍ତ୍ତା କରୁଛନ୍ତି, "ଦେଖ୍ ଦେଖ୍ ସୂର୍ଯ୍ୟ ଉଦୟ ହେଉଛି ।" ପରେ ଜାଣିଲୁ ସେହି ଦୁଇଟା ଏକାଡେମି ସ୍କୁଲର ସହରିଆ ପିଲା । ବ୍ୟଙ୍ଗ ବିଦ୍ରୁପ କରୁଥିଲେ ଆମ ପରି ଜଙ୍ଗଲି ପିଲାଙ୍କୁ । ତାପରେ ପଚରା ଉଚୁରା କରି କେଉଁଟା କେଉଁ ଷ୍ଟେସନ ଜାଣିବା ଆଗ୍ରହ ରହିଲାନାହିଁ ।

ନୀଳଗିରି ରୋଡ଼ ଷ୍ଟେସନରୁ ଆମେ ଦେଖିଲୁ, ପଶ୍ଚିମ ପଟେ ଗୋଟିଏ ଉଜ୍ଜଳ ଆଲୋକ, ଯାହାଥିଲା ନୀଳଗିରି ପାହାଡ଼ ପ୍ରଦେଶରେ ରାଜବାଟୀର ଆଲୋକ । କଳା ପୃଷ୍ଠପଟରେ ଧଳା ଉଜ୍ଜଳ ଆଲୋକଟା ଭାରି ସୁନ୍ଦର ଦିଶୁଥାଏ । ତା'ପରେ ଆଉ କେଉଁଠି କିଛି ଆମକୁ ଦିଶିଲା ନାହିଁ । ଲଦାଲଦି ହୋଇ ପରସ୍ପର କାନ୍ଧରେ ଆଉଜି ଆମେ ଢୁଳେଇବାକୁ ଲାଗିଲୁ ଏବଂ ଶୋଇଗଲୁ । କେତେ ସମୟ କିଏ ଜାଣେ ? ଯାତ୍ରୀମାନେ କହୁଥାନ୍ତି, ଏଇଟା ବୈତରଣୀ, ଏଇଟା ବ୍ରାହ୍ମଣୀ ସଭା ଶେଷରେ ଘର୍ ଘର୍ ଶବ୍ଦ ମହାନଦୀ ପୋଲର ଏବଂ ଆମେ ସମସ୍ତେ ଯିଏ ଯାହାର ବୁଜୁଳା ଧରି ଓହ୍ଲେଇବାପାଇଁ ପ୍ରସ୍ତୁତହେଲୁ ।

କଟକ ଷ୍ଟେସନ ପହଞ୍ଚିଲା ରାତି ପ୍ରାୟ ତିନିଟାରେ । ରାତିରେ ବୋଧହୁଏ ଦୁଇ ଯୋଡ଼ା ଯାତ୍ରୀବାହୀ ଟ୍ରେନ ଯାଆଆସ କରେ । ଲାଲି ଗୁଡି ବିଛା କଟକ ପ୍ଲେଟଫର୍ମରେ

ଓହ୍ଲାଇ ଖୁଣ୍ଟିଲଣ୍ଠନ ଆଲୁଅରେ ପ୍ଲାଟ୍‌ଫର୍ମ ପାରହୋଇ ଚାଲିଲୁ, ସତର-ଅଠର ଜଣିଆ ଦଳଟି ଅନ୍ଧାର ଭିତର ଦେଇ ମୟୁରଭଞ୍ଜ ଲକ୍ ଆଡକୁ- ଆଜି ଯାହା ପି.କି. ହଷ୍ଟେଲ ନାମରେ ଖ୍ୟାତ। ମୟୂରଭଞ୍ଜର ରାଜାପୁଅ, ତାଙ୍କ ଗାର୍ଜିଆନ, ଟିଉଟରମାନେ ଢୁଏତ ଏଇଠି ରହିବାପାଇଁ ଏ ଘରଟି ମୟୂରଭଞ୍ଜ ମହାରାଜା ତିଆରିକରିଥିଲେ। ସେଇଠି ଶୋଇ ରାତି କଟେଇଲୁ। ଏତେ ମଶା ଯେ, ସକାଳୁ ଆମେ ପରସ୍ପରକୁ ଚାହିଁ ଚିହ୍ନି ପାରିଲୁ ନାହିଁ। ଦେହ ମୁହଁର ଚେହେରା ମଶା କାମୁଡାରେ ବଦଳିଯାଇଛି। ସକାଳରୁ ଆମର ପ୍ରଧାନ ଦଳ ସହିତ ନାହିଁ କଟିଗଲା। ମୁଁ ଓ ମୋ ସାଙ୍ଗ (ପରବର୍ତ୍ତୀ କାଳରେ ଜକା ଶ୍ୱଶୁର) ରେଭେନ୍‌ସା କଲେଜ ଇଷ୍ଟ ହଷ୍ଟେଲ ଉପରେ ନିର୍ଭରକଲୁ। ସେଠାରେ ଥା'ନ୍ତି ଆମ ଗାଁର ହରିହର ନନ୍ଦ, ଯାହାଙ୍କର ସାନଭାଇ ମୋ ସାଙ୍ଗ ନାରାୟଣ ନନ୍ଦ। ଆମେ ସେଇଠି ଗାଧୁଆ ପାଧୁଆ ଖିଆପିଆ କଲୁଁ। ଅପୂର୍ବ ଆମର ଆନନ୍ଦ ଓ ଅଭିଜ୍ଞତା। ସେଇଠି କେତେ ଦିନ ରହଣି କାଳ ଏବେ ବି ମନେପଡ଼ୁଛି। ମେସ୍‌ର ଗାମଲାରେ ଟକ୍ ଟକ୍ ଭାସୁଥାଏ ପାନ୍‌ତୁଆ, ରସଗୋଲା। ଚାରି ପଇସାରେ ଚାରିପଟ ଗୁଟି ସହିତ ଗୋଟିଏ "ଲେଡି କେନି"। ଦାମ ଚାରି ପଇସା। ସାଧାରଣ ଦିନର ଭାତ ତରକାରୀ ଆମକୁ ରାଜକୀୟ ବୋଧହେଲା। ଶନିବାରିଆ ରାତି ଫିଷ୍ଟ ଆମ ରାଜବାଟୀରେ ବି ମିଳୁ ନଥିଲା ଏବଂ ମାସ ଶେଷର ରାତ୍ରି ଭୋଜନକୁ ବେଙ୍କୁଏଟ୍ କୁହାଯାଇପାରେ। ସକାଳ ହେଲା ବେଳେ ଆମେ ଦେଖିଲୁ, ଯେମିତି ଆମେ ଲଙ୍କାରେ ପହଞ୍ଚିଛୁ। କାରଣ ଚାଉଳିଆଗଞ୍ଜ ପୋଷ୍ଟ ଅଫିସ୍ ଓ ଡାକବଙ୍ଗଳା ପାଖରେ ଅଗଣିତ ଯୋଡାମୁହାଁ ହନୁ ଶହ ଶହ ସଂଖ୍ୟାରେ କଳା ମୁହଁରେ ଧଳାଦାନ୍ତ ଦେଖାଇ ଆମ ଆଡକୁ ଖତେଇ ହେଉଛନ୍ତି।

ବେଳ ତିନିଟାରେ ଆମେ କିଲା ପଡିଆରୁ ବାହାରିଲୁ ଆମ ସ୍କୁଲର ଫୁଟବଲ୍ ଟିମ୍ ସାଙ୍ଗରେ। ଖେଳୁଆଡମାନେ ମଣିଷ-ଟଣା ରିକ୍‌ସାରେ ବାହାରିଲେ। ଆମେ ସିଧା ରାସ୍ତା ଧରିଲୁ। କିଲ୍ଲା ପଡିଆକୁ। ଗୁଡିବିଛା ରାସ୍ତା, ଗୋଡରେ ଯୋତା ବା ଚପଲ କିଛି ନାହିଁ, ଖାଲି ପାଦ। ଜଣା ପଡୁଥାଏ, ଯେମିତି ଆମେ କଟକକୁ ଆସିନୁ, ଆସିଛୁ ଭୂସ୍ୱର୍ଗକୁ। ମନେ ପଡୁଥାଏ- ମାଇନର କ୍ଲାସରେ ପଢିଥିବା ସୀତା ବନବାସ କବିତାର ଯୋଡିଏ ଧାଡି। "ନିରେଖିବା ଆଗରୁ ତନୟ ମୁଖ, ଲଭିବୁ ତନୟର ପାଳନ ସୁଖ।" ଭବିଷ୍ୟତରେ କଟକ ଆସିବା ସମ୍ଭବ ହେଉ ବା ନହେଉ, ରେଭେନ୍‌ସା କଲେଜରେ ପାଠ ପଢିବା ଗୌରବ ମିଳୁ ବା ନମିଳୁ, କିଛି ନହେଲେ କଟକ ତ ଦେଖାଯିବ ! ଦଳଦଳ ହୋଇ ଖେଳ ଦେଖଣାହାରିମାନେ ଚାଲିଛନ୍ତି କିଲ୍ଲା ପଡିଆକୁ। କେତେ ଆଗ୍ରହ, କେତେ ଉତ୍ସାହ ! ସ୍କୁଲ ପିଲାଙ୍କ ଖେଳ ଜଣାପଡୁଥାଏ, ଯିମିତି ଏ ଗୋଟାଏ ଅଲିମ୍ପିକ। ରେଭେନ୍‌ସା କଲେଜର

କେନୈକ ଅଧ୍ୟାପକ ଆମର ରେଫେରୀ। କଟକର ଜିଲ୍ଲାସ୍କୁଲ ସହିତ ଆମର ସେମିଫାଇନାଲ ଖେଳ। ଆମ ସ୍କୁଲର ଯେଉଁମାନେ ଭାଗ ନେଇଥିଲେ, ସେମାନଙ୍କର ସମସ୍ତଙ୍କର ନାମ ମନେ ପଡୁନି। ମନେପଡୁଛି ବଙ୍କିମ୍‌କୁ। ତା ବାମ ହାତଟା କେମ୍ପା। ପତଳା ପିଲାଟା। ଗାରପକା ଜାରସି ସେ ପିନ୍ଧିଥାଏ। ସେ କର୍ଣ୍ଣରକିକ୍ ସ୍ପେସିଆ୍ଲିଷ୍ଟ। ଏମିତି ବଙ୍କେଇ ସଟ୍ ମାରେ ଯେ, ଗୋଲି ବଲର ଗତିପଥ ବାରିପାରେ ନାହିଁ। ଏକା ବେଳକେ ଗୋଲ ହୋଇଯାଏ। କୃତ୍ତିବାସ ଗେଡା ପିଲାଟା, ହାଫ୍ ବେକ୍ ଖେଳେ। ତାକୁ କଟେଇ କେହି ବଲ ଗୋଲ ଆଡକୁ ନେଇପାରିବନି। ବ୍ରଜବାବୁଙ୍କ ଭାଇ କୃଷ୍ଣବାବୁ ବେକ୍‌ରେ ଖେଳେ। ଆମର ହେଡମାଷ୍ଟର ଘୋଡାଗାଡିରେ ଖେଳୁଆଡ଼ ପିଲାଙ୍କ ସହିତ ପହଞ୍ଚିଗଲେ। ଯେଉଁ ପଡିଆରେ ଆମେ ଖେଳୁଥିଲୁ, ତାହା ହୁଏତ ଆଜି ବାରି ହେବ ନାହିଁ। ବାରବାଟୀ ଷ୍ଟାଡିୟମ୍‌ର କେଉଁ ଏକ ସ୍ଥାନରେ ଆଜି ତାହା ଲୁଚିଯାଇଛି। ଖେଳ ଖୁବ୍ ଜୋରସୋର ଲଢେଇ ସହିତ ଆରମ୍ଭହେଲା।

ରେଫ୍‌ରି ଟିକେ ଆଡପାଗଳା। ସବୁବେଳେ ହୁଇସିଲ ମାରେ। ଗୋଟାଏ ଜାଗାରେ ହେଣ୍ଡବଲ ହେଲେ, ଆଉ ଗୋଟାଏ ଜାଗା ଦେଖାଏ। ଖେଳ ଶେଷ ବେଳକୁ ଦୁଇଦଳ ସମାନ ସମାନ ଗୋଟିଏ ଗୋଲରେ, ବିନା ହାରଜିତ୍‌ରେ ଶେଷକଲେ। ପୁଣି ପରଦିନ ଖେଳ। ଖେଳ ସରିଲେ ମଧ୍ୟ ଆମେ ଖେଳରେ ଏତେ ମଜ୍ଜିଯାଇଥାଉ ଯେ ବଲଟା ଭୂଇଁରେ, ଆକାଶରେ, ସବୁଆଡେ ଦିଶୁଥାଏ।

ପରଦିନ ସେହି ପଡିଆରେ ଡ୍ରନ ମେଚ୍ ପୁଣି ଆରମ୍ଭ। ଲୋକଙ୍କର ଉତ୍ସାହ କମି ନାହିଁ, ବରଂ ବଢି ଚାଲିଛି। କଟକର ଦର୍ଶକ ବି ବାରିପଦାକୁ ସାପୋର୍ଟ କରନ୍ତି। ଦ୍ୱିତୀୟ ଦିନ ଖେଳ ଶେଷରେ ଦୁଇ ଦୁଇ ଗୋଲ୍‌ରେ ପୁଣି ଅମୀମାଂସିତ। ଖେଳ ଦେଖିବାର ଆଗ୍ରହ ଓ ଉତ୍ତେଜନା କ୍ରମେ ବଢିବଢି ଚାଲିଥାଏ। ଲାଭ କହିଲେ- ବେଶିଦିନ କଟକରେ ରହି ଆହୁରି ନୂଆ ନୂଆ ଯାଗା ଦେଖିହେବ !

ଏ ଭିତରେ ଆମେ ସକାଳ ନିତ୍ୟକର୍ମ ସାରି ବାହାରି ପଡୁଁ କଟକର ଦର୍ଶନୀୟ ସ୍ଥାନ ସବୁ ଦେଖିବାପାଇଁ। ଦେଖିସାରିଲୁଣି ବାରବାଟୀ କିଲ୍ଲା ଭଗ୍ନାବଶେଷ, ଆନିକଟ୍, ମହାନଦୀଟା କେତେ ବଡ ନଇ ! ପାଖରେ ଛିଡା ହେଲେ ଆରପାଖ ଦିଶେ ନାହିଁ। ସେଇଠୁ ରେଳବାଇ ପୋଲ ଯାଇ ଦେଖିଚୁ ୧.୬ ମାଇଲ। ଆମର ଧାରଣା ହେଲା, ତାହା ପୃଥିବୀର ସବୁଠାରୁ ଲମ୍ବା ପୋଲ। କଟକ ରେଳଷ୍ଟେସନରେ ଯୋଡିଏ କି ତିନୋଟି ଘର। ସେଇ ଗୋଟିଏ ବିଲଡିଙ୍ଗ୍‌ରେ ରେଳଷ୍ଟେସନର ସବୁକାମ ହୁଏ। ଆନିକଟ ପାଖକୁ ଲାଗି

ଗୋଟାଏ ବିରାଟ ଖମ୍ବ ଆକାଶକୁ ସ୍ପର୍ଶକରିଛି, ଯେମିତି ତାକୁ ଲୋକ "ଯୋବରାଠେଙ୍ଗା" କହନ୍ତି। ତାକୁ ବର୍ତୀଖୁଣ୍ଟ କୁହାଯାଇପାରେ। ଗୋଟିଏ ପ୍ରବାଦ ଅଛି "କଟକ ବାରବାଟୀ ଧୋଇରେ ଗଲେ, ଯୋବରା ଠେଙ୍ଗାର କି ଯାଏ।" ତାର ଅର୍ଥ ପୃଥିବୀ ଜଳାର୍ଣ୍ଣବ ହେଲେ ମଧ୍ୟ ଯୋବରା ଠେଙ୍ଗା ବୁଡିବ ନାହିଁ।

ପରଦିନ ମ୍ୟାଚଟା ହେଲା ସାନସାଇନ ପଡିଆରେ। କାଳେ ସେହି ପଡିଆରେ ଖେଳର ନିଷ୍ପତ୍ତିହେବ। ସେଦିନ ମଧ୍ୟ ଖେଳ ଗୋଲଶୂନ୍ୟ ହେଲା। ସେଦିନ ଆଗୁଆ ବାହାରିଥିଲୁ, ମେଡିକାଲ ସ୍କୁଲ ହତାର ଫୁଟବଲ ପଡିଆ ଦେଖିଲୁ। ଆହୁରି ଦେଖିଲୁ ଇଞ୍ଜିନିୟରିଂ ସ୍କୁଲ ଏବଂ ତାହାର ପଡିଆ। ଚାରିଦିନ ପର୍ଯ୍ୟନ୍ତ ଖାଲି ପଡିଆ ପରେ ପଡିଆ ଦେଖିଲୁ, ଗୋଲ ପରେ ଗୋଲ ଦେଖିଲୁ, କିନ୍ତୁ ଖେଳର ନିଷ୍ପତ୍ତି ନାହିଁ। ଅଧିକା ସମୟ ମଧ୍ୟ ଖେଳ ହୁଏ, କିନ୍ତୁ ଗୋଲ ହୁଏନି। ଟାୟବ୍ରେକର ବା ସଡନ୍ ଡେଥ୍ ହୁଏ ନାହିଁ। ଦିନେ ଦିନେ ଅନ୍ଧାରରେ ଖେଳିବାକୁ ପଡେ। କଟକ ସହରରେ ଆଲୁଅ ନାହିଁ। ରାଣୀହାଟ ପହଞ୍ଚିଲେ ଇଲେକ୍ଟ୍ରି ସପ୍ଲାୟ୍ ଅଫିସ୍‌ଟା ପଡେ। ତା'ପରେ ରେଭେନ୍ସା କଲେଜର୍ ଆଲୁଅ। ଆମକୁ ଜଣାଗଲା, ସେହି ଗୋଟିଏ ସ୍ଥାନ, ଯେଉଁଠି ଆଲୁଅ ଅଛି ଏବଂ ମୟୂରଭଞ୍ଜ ମହାରାଜା ସେ ଆଲୁଅ ଦେଇଛନ୍ତି।

ଆମେ ହିସାବ କିତାବ କରି ଦେଖିଲୁଁ, ଆମ ପାଖରେ ଦୁଇ ଟଙ୍କା ଲେଖାଏଁ ଅଛି। ତହିଁ ପରଦିନ ଶେଷ ଖେଳ ହେବ ବୋଲି ଆମେ ଭାବିଲୁ। ଆମ ହାତରେ ଦିନଟିଏ ଅଛି ଦେଖିବାପାଇଁ। ଭୁବନେଶ୍ୱରକୁ ରେଳଭଡା ୧୮ ପଇସା। ଫେରିବା ଭଡା ଆମକୁ ଦେବାକୁ ପଡିବ ନାହିଁ, କାରଣ return ଟିକଟ କରାହୋଇଛି। ସାଙ୍ଗମାନଙ୍କ ଖେଳ ଶେଷ ହେବ, ନା ସେମାନେ ଫେରିବେ ! ଆମର ଟିକଟ ତ ହେଡମାଷ୍ଟରଙ୍କ ପାଖରେ। ଖେଳ ଦେଖି ଦେଖି ବିରକ୍ତ ହେଲୁଣି। ମୟୁରଭଞ୍ଜ ଲଜ୍‌କୁ ଫେରିଲାବେଳେ ନିଷ୍ପତ୍ତି କଲୁ, ଭୁବନେଶ୍ୱର ଦେଖିଦେବା। ଫାଟକକୁ ପହଞ୍ଚିଛୁ, ଶୁଣାଗଲା "ଚାଲିଥାଏ ଠକ୍ ଠକ୍, ମାଡିଯାଏ ଠକ୍ ଠକ୍"। ଏ ବିଚିତ୍ର ଧ୍ୱନି କୁଆଡୁ ଆସୁଛି ଦେଖିବାପାଇଁ ଆଗେଇଲୁ। ଫାଟକର ସ୍ତିମିତ କିରାସିନି ଆଲୁଅରେ, ଏକ ବିଚିତ୍ର ଜୀବ, ସର୍ବାଙ୍ଗ ଗେରୁଆ ବା ଲାଲି ବସ୍ତ୍ରରେ ଆବୃତ, ମୁଣ୍ଡରେ ଏକ ବଡ ଲାଲି ପଗଡି, ପାଦରେ କଠାଉ, ମୋଟାମୋଟି ଅତିକାୟ ଲୋକଟା। ନିର୍ଜନ ସ୍ଥାନରେ ଆମକୁ ଡର ମାଡିଲା। ଆମକୁ ଦେଖି ସାଙ୍ଗେ ସାଙ୍ଗେ ଛିଡା ହୋଇ ପଡିଲା ଆଗରେ। ଡାହାଣ ହାତର ବିଣି ଆଙ୍ଗୁଳିଟା ଧରିନେଇ ତା ଆଙ୍ଗୁଳିରେ ଘସି ଦେଲା ଏବଂ ଜିଭରେ ଚାଟିବାକୁ କହିଲା। "କେମିତି ଲାଗିଲା ?"-ପଚାରିଲା। ମୁଁ କହିଲି- "ମିଠା"। ଆଙ୍ଗୁଳିକୁ ପୋଛି ଦେଇ ପୁଣି ଆଉଥରେ ଘଷିଲା ତାହାରି ଆଙ୍ଗୁଳରେ। ତାରି

କଥା ଅନୁସାରେ ମୁଁ ପୁଣି ଚାଟିଲି । ଆଶ୍ଚର୍ଯ୍ୟ କଥା, ପିତା ଲାଗିଲା । ଆମେ ବେଶି ସମୟ ତା ପାଖରେ ରହିଲୁ ନାହିଁ । ଡର ମାଡିଲା । କିଏ ଜାଣେ କି ଭୌତିକ କାଣ୍ଡ କରିବ ? ଖଣ୍ଡେ ଦୂର ଧାଇଁଯାଇ ଆମେ ଲଜ୍‌ରେ ପହଞ୍ଚିଲୁ । ସେ ବିରାଟ ପଡିଆ ଦେଇ ମରହଟ୍ଟା କୋଠି ଆଡକୁ ଚାଲିଲା । ପ୍ରତିଧ୍ୱନି ସହିତ ଶବ୍ଦ ଶୁଭୁଥାଏ- "ଚାଲିଥାଏ ଠକ୍ ଠକ୍ । ମାଡ଼ିଯାଏ ଠକ୍ ଠକ୍ ।"

ଭୋର ୪ଟା ବେଳେ ଭୁବନେଶ୍ୱର ଆଡକୁ ଗାଡି ଅଛି । ତରବର ହୋଇ ଉଠି ବସିଲୁ । ଟ୍ରେନ ପ୍ଲାଟଫର୍ମକୁ ଆସିଗଲା । ଆମେ ବାହାରି ପଡିଲୁ ଲିଙ୍ଗରାଜ ଦର୍ଶନକୁ । ବନ୍ଧୁ ନାରାୟଣ ବାହାରିବାକୁ ବହୁତ ଡେରିକଲେ । ତାଙ୍କର କଷାଫଳ ଗୁଣ୍ଡ ବୋତଲଟା ମିଳୁ ନାହିଁ । ସେଇଟା ନହେଲେ ତାଙ୍କ ପେଟ ଖରାପହେବ । ଶେଷରେ ସେ ବୋତଲଟା ଜଣକ ପିଠିତଳୁ ପାଇଲେ । ତାଙ୍କୁ ପେଲିଦେଇ ଚିତ୍କାର କଲେ, "ତୁମେ ଏଇଠି ତାକୁ ଜାକି ଶୋଇଛ ?" ଅଣନିଃଶ୍ୱାସୀ ହୋଇ ଧାଇଁଲୁ ଏବଂ ବୋଧହୁଏ ବିନା ଟିକଟରେ ଟ୍ରେନରେ ଚଢିଗଲୁ । ଭୁବନେଶ୍ୱରରେ ଟ୍ରେନରୁ ଓହ୍ଲାଇ ପ୍ରାୟ ସୂର୍ଯ୍ୟୋଦ୍ୱୟ ବେଳରେ କୋଚିଲା ବଣ ଭିତର ଦେଇ ମଣିଷଚଲା ରାସ୍ତାରେ ଗୋଟାଏ ଧର୍ମଶାଳାରେ ପହଞ୍ଚିଲୁ ।

ବିନ୍ଦୁସାଗର ଆର ପାଖରେ ଆକାଶ ଚିରି ମନ୍ଦିରଟା ଛିଡା ହୋଇଥାଏ-ଅପୂର୍ବ ଦୃଶ୍ୟ । ଗାଧୋଇ ପାଧୋଇ ମନ୍ଦିର ପରିକ୍ରମା କଲୁ । କାରୁକାର୍ଯ୍ୟ କହିଲେ- ଆମେ ଦେଖିଲୁ ମନ୍ଦିରର ତଳ ପ୍ରଦେଶରେ ଥିବା ପ୍ରେମିକ-ପ୍ରେମିକାଙ୍କର ଓ ଦେବାଦେବୀମାନଙ୍କର ପ୍ରାୟ ସବୁ ଉଲଗ୍ନ ମୂର୍ତ୍ତି । ଭାରି ଭଲ ଲାଗିଲା ଅତିକାୟ ଗଣେଷ ମୂର୍ତ୍ତୀ । ମୁଣ୍ଡ ଓ ପେଟଟିକୁ ଆଉଁସା ଆଉଁସି କଲୁ । ପାର୍ବତୀ ମନ୍ଦିରର ଛୋଟ ଛୋଟ ମୂର୍ତ୍ତିଗୁଡିକର କାରୁକାର୍ଯ୍ୟ ଦେଖି ମୁଗ୍‌ଧ ଚକିତ ହେଲୁ । ଆମେ ଆଶ୍ଚର୍ଯ୍ୟ ହେଲୁ- କାହିଁକି ଖୁବ୍ କମ୍ ଲୋକ ରାଜାରାଣୀ ମନ୍ଦିର ଆଡକୁ ଯାଆନ୍ତି ! ଯଦିଓ କାରୁକାର୍ଯ୍ୟ ନୈପୁଣ୍ୟରେ ତାର ତୁଳନା ନାହିଁ । କେଦାରଗୌରୀ ମନ୍ଦିର ଦେଖିଲୁ ଏବଂ ପଣ୍ଡାମାନେ ଯାହା ଆମକୁ ଦେଖାଇଲେ ବା ବୁଝାଇଲେ- ତା ଆମେ ବିଶ୍ୱାସ କଲୁ ।

ଫେରିଲା ବେଳକୁ ଦିନ ଦୁଇଟା । ପଣ୍ଡା ଭୋଗ କୁଣ୍ଡ ଆଣିଲେ । ଆମେ ବସି ପ୍ରସାଦ ସେବନ କରିବାକୁ ଯାଉଛୁ, ବଡ ପାତିମାଙ୍କଡଟାଏ ଭଦ୍ରଲୋକ ଭଳିଆ ଆମକୁ କିଛି ନ କହି ଫାଳେ କୁଣ୍ଡ ଧରି ମନ୍ଦିର ଉପରକୁ ଚଢିଗଲା । ଆମକୁ ଖୁବ୍ ଭୋକ ଲାଗୁଥାଏ । କିଛି କହି ପାରିଲୁ ନାହିଁ । ମନ୍ଦିରରେ ଆଶ୍ରା ନେଇଥିବା ଜୀବମାନଙ୍କୁ ସ୍ରଷ୍ଟା ବା ସରକାର ମଧ୍ୟ କିଛି କରିପାରିବ ନାହିଁ । ଷ୍ଟେସନ ରାସ୍ତା ଧରିଲୁ; କଟକ ଫେରିବୁ । ପଣ୍ଡାଙ୍କ ପଇସା ଟଙ୍କାଏ ଚାରିଅଣା ଦେଇନୁଁ । କ୍ରୋଧାନ୍ବିତ ହୋଇ ମୁଣ୍ଡର ଚୂଳ ପେଛାକୁ ଖସାଇ ଚାଣକ୍ୟଙ୍କ

ପରି ଛେ ଛେ ଶବ୍ଦ କରି, ଧରିଥିବା ଲୋଟାଟାକୁ ତୁଠ ପଥର ଉପରକୁ ଠଣ ଠଣ କରି ଫୋପାଡିଦେଲେ। ସେଇ ଅବସରରେ ଆମେ ବିନ୍ଦୁ ସାଗର କୂଳେ କୂଳେ ଧାଇଁଲୁ ଏବଂ ଯେମିତି ବଙ୍କାଣି ରାସ୍ତା ପଡିଛି ଏବଂ ପଣ୍ଡାଟି ଅଦୃଶ୍ୟ ହୋଇଛି, ଆମେ ଡବଲ କୁଇକ୍ ମାର୍ଚ୍ଚ କରି, ଅଣନିଃଶ୍ୱାସୀହୋଇ, କୋଚିଳା ବଣ ଦେଇ, ଷ୍ଟେସନରେ ପହଞ୍ଚିଗଲୁ। ଏବଂ ଭାଗ୍ୟ ଭଲ ଆମେ ଟ୍ରେନ ଧରିପାରିଲୁ। ଅରକ୍ଷିତକୁ ଦଇବ ସାହା। ଟଙ୍କାଏ ଚାରଣା ବଞ୍ଚିଗଲା। କଟକରେ ପ୍ରଥମ କରି କୁମ୍ଭୀର ଦେଖିଲୁ। ମହାନଦୀ ଆନିକଟ ଉପରେ ଛିଡା ହୋଇ ଘୋ ଘୋ ଶବ୍ଦ କରି ସ୍ଲୁଇସ୍ ଗେଟ୍‌ଗୁଡାକରେ ପାଣି ଯାଉଥାଏ। ମୁଁ ସେ ଶୋଭା ମୁଗ୍‌ଧ ହୋଇ ଦେଖୁଥାଏ। ମୋର ଠିଆ ହେବାର ସ୍ଥାନର ଆଠ-ଦଶ ହାତ ଦୂରରେ ଗୋଳିଆ ପାଣି ଉପରୁ ହଠାତ୍ ସଜନା ଗଣ୍ଡିପରି ଦେଖାଯାଉଥିବା କ'ଣଟାଏ ଭାସିଉଠିଲା ଧୀରେ ଉପରକୁ ଉଠି ପୁଣି ଭିତରକୁ ପଶିଗଲା। ପୁଣି ଆଉଟିକିଏ ପାଖକୁ ଆସି ଛୋଟିଆ କାଠ ଗଣ୍ଡିଟା ଭାସି ଉଠିଲା। ଭଲ କରି ନିରିଖି ଦେଖିଲି, ସେ କାଠ ଗଣ୍ଡିଟା ମୋରି ଆଡକୁ ଆସୁଛି ଏବଂ ତାର ଯୋଡାଏ ଆଖି ମୋ ଆଡକୁ ଚାହିଁଛି। ମୋ ପାଖ ପିଲାଟା ଯିମିତି "କୁମ୍ଭୀର !" ବୋଲି ଚିତ୍କାର କରିଛି, ମୁଁ ଡିଆଁମାରି ବନ୍ଧ ଉପରକୁ ଉଠିଆସିଲି। ଏତେ ପାଖରେ ବଣୁଆ କୁମ୍ଭୀର ମୋ ଜୀବନରେ କେବେ ଦେଖିନି। ବଞ୍ଚିଗଲି ବୋଲି ମୁଁ ଭାବିଲି। କଟକରୁ ଫେରି ଆସିଲି। ଖେଳ ଜିତିବା ହାରିବା ସାଙ୍ଗରେ କିଛି ଲାଭକ୍ଷତି ନଥିଲା। ବହୁ ଦିନର ଗୋଟାଏ ବିରାଟ ଇଚ୍ଛା ପୂରଣହେଲା। ସମୟ ଓ ଅର୍ଥ ଅଭାବରେ ଏତେ ବଡ ସହରର ଯେମିତି କିଛି ଦେଖିପାରିଲୁ ନାହିଁ। ଯଦି ଭଗବାନ, ଆଉ ଭାଗ୍ୟ ସାହା ହୁଅନ୍ତି, ତେବେ ଅଦେଖା ଅକଣା ଯାହାସବୁ ରହିଗଲା, ତାର କଲେଜରେ ପଡିଲେ ହୁଏତ ଦେଖି, ଶୁଣି ହେବ। ସେ ଆହୁରି ଦୁଇ ତିନି ବର୍ଷ ପରର କଥା।



## ॥ ପଚିଶ ॥

ଏପ୍ରିଲ ମାସରେ ପୁଣ,
ବେଳ ତିନି ଘଣ୍ଟା ଏକୁଇଶ ଦିନ, ହେ ଭାଇମାନେ
ନେଇଗଲା ଜନ୍ତୁରାଣ।

କେଉଁ ଏକ ଆଶୁକବି ମୟୁରଭଞ୍ଜର ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କର ଆକସ୍ମିକ ମହାପ୍ରୟାଣକୁ ଏଇ ପଦରେ ଲିପିବଦ୍ଧ କରିଥିଲା। ଭାଟମାନେ ଶୋକଗୀତି ଗାଇଗାଇ ପଇସାଏ ଦୁଇ ପଇସାଏ ବହି ବିକୁଥିଲେ।

ସେ କାଳରେ ରାଜ ନଅରର ଯେ କୌଣସି ଘଟଣା, ଯଥା ପୁତ୍ରଜନ୍ମ, ବିବାହ, ମୃତ୍ୟୁ ଆଦି ଘଟଣାକୁ ଲିପିବଦ୍ଧ କରୁଥିଲେ। ଯେମିତି ପ୍ରାଚୀନ କାଳର କୌଶଲ୍ୟା ଶୋକ, ରାମଶୋକ, ଯଶୋଦା କାନ୍ଦଣା ବା ସେହି କିସମର ଶୋକଗୀତି ରଚନାକରି ଲୋକପ୍ରିୟତା ଅର୍ଜନ କରିଥିଲେ। ଉପରୋକ୍ତ ଗୀତର ଆଉ ଏକ ପଦ ହୋଉଛି-

ଯାଇଥିଲ ଭଞ୍ଜ ସାଇଁ ବମ୍ବାଇ
ପ୍ରଜାଙ୍କର ହିତ ସାଧିବାପାଇଁ
କାର୍ଯ୍ୟ ସାଧନ କରି କଉଶଳେ
ବଳାଇଥିଲ ମନ ଫେରନ୍ତ ମେଳେ
ଆହା କିବା କଲା ବିଧି....

ଏହାର ଅର୍ଥ- ମୟୁରଭଞ୍ଜ ମହାରାଜା ପୂର୍ଣ୍ଣଚନ୍ଦ୍ର ଭଞ୍ଜ ଷ୍ଟେଟ୍ କାମରେ ବମ୍ବାଇ ଯାଇଥିଲେ ଏବଂ ମନେମନେ ଭାବିଥିଲେ, ଆନନ୍ଦରେ ସମସ୍ତଙ୍କ ସାଙ୍ଗରେ ରାଜଧାନୀ ଫେରିଥାନ୍ତେ। କିନ୍ତୁ ବିଧାତାଙ୍କର ଇଚ୍ଛା ଅନ୍ୟପ୍ରକାର। କ୍ଷିଅର ହୋଉ ହୋଉ ଖୁର କୋଉଁଠି ଟିକେ ବାଜିଗଲା, ଯାହା ଫଳରେ ଟିଟେନାସ୍ (ଧନୁଷ୍ଟଙ୍କାର) ବ୍ୟାଧିରେ ଆକ୍ରାନ୍ତ ହୋଇ ପ୍ରାଣତ୍ୟାଗ କଲେ। ମୟୁରଭଞ୍ଜ ମହାରାଜାଙ୍କ ମଧ୍ୟରୁ ଅନେକ ଅପମୃତ୍ୟୁ ଓ ଅକାଳ ମୃତ୍ୟୁରେ ଯାଇଛନ୍ତି। ପ୍ରାତଃ ସ୍ମରଣୀୟ ପୁଣ୍ୟ ଶ୍ଳୋକ ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କର ମଧ୍ୟ ଏହି ପ୍ରକାର ଅକାଳ ମୃତ୍ୟୁ ଘଟିଥିଲା। ମୟୁରଭଞ୍ଜ ଲାଇଟ୍ ରେଲ୍‌ୱେର ସମ୍ପ୍ରସାରଣ ଉଦ୍ଦେଶ୍ୟରେ Survey କରିବାପାଇଁ କେତେ ଜଣ ରେଳବାଇ କର୍ମଚାରୀ ମୟୁରଭଞ୍ଜ ଆସିଥିଲେ ଏବଂ ସେମାନଙ୍କ ସହିତ ଆସିଥିଲେ ମହାରାଜାଙ୍କର ଆତ୍ମୀୟ ଶାଳକ। ସେମାନଙ୍କର ମନୋରଞ୍ଜନପାଇଁ ବାରିପଦା ସନ୍ନିକଟବର୍ତ୍ତୀ ଏକ ଜଙ୍ଗଲରେ ଭାଲୁ ଶିକାରର ବନ୍ଦୋବସ୍ତ ହୋଇଥିଲା। ପ୍ରଥମ ଦିନର ଶିକାରରେ କିଛି ଶିକାର ନ

ମିଳିବାରୁ, ପରଦିନ ମହାରାଜା ନିଜେ ଦଳବଳ ନେଇ ବାହାରିଲେ। ପ୍ରଥମରେ ଗୋଟାଏ ଭାଲୁ ଗୁଳିମାଡରେ ଘାୟଲ୍ ହେଲା। ପନ୍ତା ଶିକାରର ବେଢ ଯେତେବେଳେ ମରି ଆସୁଥାଏ, ସେତେବେଳେ ମହାରାଜା ମଞ୍ଚାରୁ ତଳକୁ ଆସିବାପାଇଁ ଚାହିଁଲେ। ପାଖରେ ଥିବା ସାଧୁ ନାମକ ଅତିବ ପ୍ରଭୁଭକ୍ତ ଚାକର କହିଲା- "ହଜୁର୍ ! ବେଢ ମରିଆସୁଛି। ଏତେବେଳେ ଜୀବଜନ୍ତୁ ପାଖକୁ ଆସିଗଲେଣି। ଆପଣ ତଳକୁ ଓହ୍ଲାନ୍ତୁ ନାହିଁ।" ମହାରାଜା ସାଧୁ କଥା ନ ମାନି ତଳକୁ ଓହ୍ଲାଇଲେ। କଳା କୋଟଟିଏ ଘୋଡିହୋଇ ସେ ଗୋଟିଏ ଗଛମୂଳରେ ବସିଥାନ୍ତି। ହଠାତ୍ ପାଖ ମଞ୍ଚାରୁ ଗୁଳିଶବ୍ଦ ହେଲା। ସେଇ ମଞ୍ଚାରେ ତାଙ୍କର ଆତ୍ମୀୟ ବସିଥିଲେ। ସାଧୁକୁ ସିଧା ଗୁଳି ବାଜିଲା। ମହାରାଜାଙ୍କୁ ମଧ୍ୟ ଗୁଳିର ଛିଟା ବାଜିଲା। ସେ ବି ପଡିଗଲେ। ଯେତେବେଳେ ସମସ୍ତେ ମହାରାଜାଙ୍କ ପାଖରେ ଘେରିଗଲେ। ମହାରାଜା କହିଲେ- "ମୋର ପାଖରେ ସମସ୍ତେ କାହିଁକି ଘେରି ରହିଛ। ଆଗ ସାଧୁକୁ ଦେଖ।" ସାଧୁ ଓ ମହାରାଜା ଡାକ୍ତରଖାନା ବୁହାହେଲେ। ସାଧୁ ବଞ୍ଚିଲା ନାହିଁ।

ମହାରାଜା ଆପାତତଃ ଭଲହୋଇଗଲେ। ମହାରାଜା ଥରେ କଲିକତା ଯାଇଥାନ୍ତି। ସେଇଠି ଡାକ୍ତରମାନେ କାଳେ ଗୁଳିଛିଟା ରହି ଯାଇଥିବ ଭାବି-x-ray କରି operation କଲେ। ଏଇ operation ପରେ ମହାରାଜାଙ୍କୁ ଦୁରାରୋଗ୍ୟ ସେପ୍ଟି ସେମିୟା ଧରିଲା। Nurse ଟିଏ ପାଖରେ ବସି ସେବାକରୁଥାଏ। ତାକୁ କଡା ଉପଦେଶ ଦିଆଯାଇଥିଲା, ସେ ଦେଖିବ, ଯେମିତି ମହାରାଜା ହାତକୁ ଚଳପ୍ରଚଳ ନ କରନ୍ତି। Nurse ଟି ତାର କର୍ତ୍ତବ୍ୟ କରୁଥାଏ। ଅର୍ଦ୍ଧରାତ୍ରି ହେଲାରୁ ସେ Nurse ଟି ଢୁଳେଇଲା ଏବଂ ମହାରାଜା ତାକୁ ଢୁଳାଉଥିବାର ଦେଖିପାରିଲେ। କରୁଣାର ପ୍ରତିମୂର୍ତ୍ତୀ ମହାରାଜା nurse କୁ କହିଲେ, ତୁମେ ଶୋଇପଡ, ମୋର କିଛି ହବନି। ମହାରାଜାଙ୍କର ଅଭୟ ବାଣୀ ଶୁଣି nurse ଟି କେତେ ମୁହୂର୍ତ୍ତପାଇଁ ହୁଏତ ଶୋଇଗଲା। ମହାରାଜା ଅଜାଣତରେ ହାତର ସ୍ଥାନ ପରିବର୍ତ୍ତନ କଲେ ଏବଂ ଶେଷ ନିଦ୍ରାରେ ଶୋଇଗଲେ।

ମହାରାଜା ଶ୍ରୀରାମଚନ୍ଦ୍ରଙ୍କର ଦୁଇ ସ୍ତ୍ରୀ। ଦ୍ୱିତୀୟ ସ୍ତ୍ରୀ ହୋଇଛନ୍ତି ମହାରାଣୀ ସୁଚାରୁ ଦେବୀ। ଏ ଦୁହିଁଙ୍କର ବିବାହ ରୋମାଣ୍ଟିକ୍ ଓ ରୋମାଞ୍ଚକର। ଦାର୍ଜିଲିଂରେ ଦୁହେଁ ଦୁହିଁଙ୍କୁ ଦେଖିଥିଲେ। ସୁଚାରୁ ଦେବୀ ପ୍ରଖ୍ୟାତ ସମାଜ ସଂସ୍କାରକ କେଶବ ଚନ୍ଦ୍ର ସେନ୍‌ଙ୍କର ଝିଅ। ଏ ବିବାହରେ ମୟୁରଭଞ୍ଜ ରାଜ ପରିବାର ବା ମୟୁରଭଞ୍ଜ ପ୍ରଜା ବର୍ଗ କେହି ସୁଖୀ ନଥିଲେ। କିନ୍ତୁ ମହାରାଜା ଆଦର୍ଶ ପ୍ରେମିକ ଆକାରରେ ଏ ବିବାହ ବନ୍ଧନରେ (ଅବଶ୍ୟ ପ୍ରଥମ ସ୍ତ୍ରୀର ମୃତ୍ୟୁର ଦୀର୍ଘକାଳ ପରେ) ଆବଦ୍ଧହେଲେ ଯେତେବେଳେ ସେ ଜାଣିଲେ ବର୍ଷ

ବର୍ଷ ଧରି ସୁଚାରୁ ଦେବୀ ଅବିବାହିତା ରହି ଶ୍ରୀରାମଚନ୍ଦ୍ରଙ୍କର ଫଟୋକୁ ପୂଜା କରୁଥିଲେ ଏବଂ ଧ୍ୟାନ କରୁଥିଲେ ଧରି। ଉଲ୍ଲେଖ ଯୋଗ୍ୟ ଯେ, ମହାରାଣୀ ସୁଚାରୁ ଦେବୀ ବାରିପଦା ଆସି ନାହାନ୍ତି ମହାରାଜାଙ୍କର ଜୀବଦ୍ଦଶାରେ। ସୁଚାରୁ ଦେବୀଙ୍କ ତରଫରୁ ମହାରାଜାଙ୍କର ଗୋଟିଏ ଝିଅ ଓ ଗୋଟିଏ ପୁଅ। ପୁଅର ନାମ ଧ୍ରୁବେନ୍ଦ୍ର। ସେ ଜଣେ ଦକ୍ଷ ପାଇଲଟ୍, ଯିଏକି ଦ୍ୱିତୀୟ ବିଶ୍ୱଯୁଦ୍ଧରେ Aeroplane ଦୁର୍ଘଟଣାରେ ପ୍ରାଣତ୍ୟାଗକଲେ।

ପ୍ରଜାବତ୍ସଳ 'ଭଞ୍ଜକଞ୍ଜ ରବିଙ୍କ' ମୃତ୍ୟୁରେ ମୟୂରଭଞ୍ଜ ଶୋକର ଅନ୍ଧକାରରେ ପରିପୂର୍ଣ୍ଣ ହୋଇଗଲା। ବିଶେଷ କରି ମହାରାଜା ହେବାପାଇଁ ନାବାଳକ ପୁତ୍ର ଦୁଇଜଣ ରହିଥିଲେ ମାତ୍ର। ସେଇ ଶ୍ରୀରାମଚନ୍ଦ୍ରଙ୍କର ମୃତ୍ୟୁକୁ ଉପଲକ୍ଷ୍ୟ କରି କେହି ଜଣେ ଆଶୁକବି ଦୀର୍ଘ ଚଉତିଶାଟିଏ ଲେଖିଥିଲେ। ଯାହା ମୁଁ ମୋ ନିଜର ଆଇ ଏବଂ ମା ମୁହଁରୁ ପିଲାଦିନେ ବାରମ୍ବାର ଶୁଣିଛି। ଯେତିକି ମନେଅଛି, ଚଉତିଶାରୁ ତଳେ କେତେକ ପଙ୍‌କ୍ତି ଉଦ୍ଧାର କରୁଛି।

"କଲିକତା ଦଲାଣର
କାନ୍ଦେ ସେନକେମା ହୋଇ କାତର ହେ
କରିଗଲ ଅନ୍ଧକାର।
କ୍ଷମାଶୀଳ ମହାରାଜା
ଅଷ୍ଟାଦଶ ଗଡକ୍ଷିତିରେ ତେଜା ହେ ପ୍ରାଣନାଥ
କ୍ଷିତି ମୋହନ ମୂର୍ତ୍ତି ଯା
ଗଇଣ, ଦୁଦୁରା ଦେଇ
ଗଙ୍ଗାଧର ସେବିଥିଲି ମୁଁ ପାଇ ହେ ପ୍ରାଣନାଥ
ଗଲ ଗଳା ଗାଟି ଦେଇ।
ଘରୁ ବାହାରିଲା ବେଳେ
ଘୋଡା-ବଗି ନ ଘେନିଲ ଚଞ୍ଚଳ ହେ ପ୍ରାଣନାଥ
ଘୂରି ନ ଚାହିଁଲ ଥରେ।
ଊଣା ମୋର ମନ ଜାଣି
ଉପାୟରେ ମୋର ଭାଇକି ଘେନି ହେ ପ୍ରାଣନାଥ
ଉଦ୍‌ବେଗରେ ଗଲ ଚଳି।
ଚିଠି ଆସି ପହଞ୍ଚିଲା
ଚାକର ସହିତେ ଗୁଳିବାକିଲା ହେ ପ୍ରାଣନାଥ
ଚୁଡି ମୋ କଳା ଦିଶିଲା।"

ଆଉ ଏକ ଚଉତିଶାର 'ଚ' ଅକ୍ଷରର ପଦ:-

"ଚାହିଁଥିଲି ନେତ୍ର ତୋଳି,
ଚାକର ସହିତେ ବାଜିଲା ଗୁଳି ହେ ପ୍ରାଣନାଥ
ଚିଠିପତି ମଲି ଭାଳି।
ଛନଛନ ହେଲା ମନ,
ଛାଡ଼ିଲା ସ୍ନାନ, ଶୟନ, ଭଜନ
ଛ'ଦିନେ ଦେଲ ଦର୍ଶନ।
ଜାନ କରୁ ଦେଲି ଚାହିଁ
ଜମ୍ବୁ ନଦ ତନୁ କଳା ଦିଶଇ ହେ ପ୍ରାଣନାଥ
ଜଣାଇଲି ପ୍ରଭୁ ଗାଇ....
ଡକା ପାଡନ୍ତି କୁମରେ
ଡାକି କେ ବସାଇ ନେବ ବଗିରେ..."

କାହିଁ ବମ୍ବେଇ, କାହିଁ ବାରିପଦା ! "ଯାଇଥିଲ ଭଞ୍ଜ ସ୍ୱାଇଁ ବମ୍ବାଇ।" ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କର ମାତ୍ର ଅଣତିରିଶ୍ ବର୍ଷ ବୟସ। ଅବଶ୍ୟ ସେ ରୁଗ୍ଣ ଥିଲେ। ଶେଷ ଆଡକୁ ଇନ୍‌କେକ୍‌ସନ୍ ନେଇ ସେ ଶୋଉଥିଲେ। କିନ୍ତୁ ସେ ଥିଲେ ପ୍ରଜାବତ୍ସଳ। ତାଙ୍କ ପିତା ଶ୍ରୀରାମଚନ୍ଦ୍ରଙ୍କ ଭଳି। କୌଣସି ସେମିତି ନିଦାରୁଣ ରୋଗ ବ୍ୟାଧିରେ ପଡି ସେ ମରିନାହାନ୍ତି। ସରକାରୀ କାମରେ ବମ୍ବାଇ ଯାଇଥିଲେ ସଦଳବଳେ। ଭଗବାନଙ୍କର ବିଧାନ ବିଚିତ୍ର। କ୍ଷର ହୋଉ ହୋଉ ଖୁର ମୁନରେ ସାମାନ୍ୟ ଆହତହେଲେ ଏବଂ ନିଦାରୁଣ ଟିଟେନାସ୍ ବା ଧନୁଷ୍ଟଙ୍କାର ରୋଗରେ ଆକ୍ରାନ୍ତହୋଇ ଶେଷ ନିଶ୍ୱାସ ତ୍ୟାଗ କଲେ ଏପ୍ରିଲ ୨୩, ୧୯୨୯ ମସିହାରେ। ବମ୍ବେରୁ ବାରିପଦାକୁ 'body' ଆସିବାପାଇଁ ଟ୍ରେନରେ ଅତିକମ୍‌ରେ ଚାରିଦିନ ଲାଗିଲା। ଆମର ଦୁଃଖ ଯେ, ଆମେ ଜଣେ ରାଜାଙ୍କୁ ହରାଇଲୁ। ତାଙ୍କୁ ହୁଏତ ଆମେ ଜୀବିତ ଅବସ୍ଥାରେ ଦେଖିନୁ। ସେଥିପାଇଁ ଯେମିତି ଶବ ବମ୍ବେରୁ ଆସୁଛି ଶୁଣିଲୁ, ସେମିତି ଆମେ ରାଜାବାଟୀ ଆଡକୁ ଧାଇଁଲୁ, ବିଶେଷ କରି ଯେତେସବୁ ବୋର୍ଡିଙ୍ଗରେ ରହୁଥିବା ବ୍ରାହ୍ମଣ ପିଲା। କାରଣ ଦଶ ଦିନକୁ ବା ଶ୍ରାଦ୍ଧ ଦିନକୁ ଆମକୁ ଭୋଜିକୁ ଡକରା ହୋଇପାରେ। ଆମେ ସିଧାଗଲୁ ରାଉତରାୟ ସାହେବଙ୍କ କୋଠୀ ଆଗକୁ। କାରଣ ବାଟରେ ଶୁଣିଲୁ ଶବାଧାରଟି (coffin) ଗୋଲ ବାରନ୍ଦାରେ ରଖାହୋଇଛି, ସର୍ବସାଧାରଣଙ୍କ ଦର୍ଶନପାଇଁ। ବାଟରୁ ଆମେ ଖବର ପାଇଲୁ, ଶବ ଏତେ ସଡି ଯାଇଥିଲା ଯେ ଆତ୍ମୀୟ ସ୍ୱଜନମାନଙ୍କୁ ଦର୍ଶନପାଇଁ ଦିଆଯାଇ ନଥିଲା।

ସେତେବେଳେ ବୋଧହୁଏ ଶବର ପଚନକ୍ରିୟା ନିରୋଧପାଇଁ କୌଣସି ଔଷଧପତ୍ର ନଥିଲା । ସତକୁ ସତ ଶବାଧାରରେ ଛାଙ୍କୁଣି ଛାଙ୍କି ଦିଆଯାଇଥାଏ । ହେଲେ ପୂତିଗନ୍ଧ ରାଜାବାଟୀର ଗଗନ ପବନରେ ଖେଳିଯାଇଥାଏ ।

ଜୀବନରେ ପୂର୍ଣ୍ଣଚନ୍ଦ୍ରଙ୍କୁ ଦେଖି ନଥିଲି, ମୃତ ଅବସ୍ଥାରେ ମଧ୍ୟ ଦେଖିବାର ସୌଭାଗ୍ୟ ପାଇଲି ନାହିଁ । ରାଜାବାଟୀର ଯେଉଁ ପ୍ରାଙ୍ଗଣରେ ମାତ୍ର ଦୁଇ ସପ୍ତାହ ତଳେ ଧୁମ୍‌ସା, ବେଣ୍ଡ୍‌ ଓ ଅନ୍ୟାନ୍ୟ ବାଦ୍ୟଯନ୍ତ୍ରର ଶବ୍ଦ ଓ ଛଉ ନୃତ୍ୟରେ କମ୍ପୁଥିଲା, ତାହା ଆଜି ଶୁନ୍‌ଶାନ୍‌ । ଯେଉଁ ଗୋଲ ବାରନ୍ଦାରେ ବିଳାସିନୀ ପ୍ରମୁଖ ବ୍ୟାବସାୟିକାଗଣ ଧାର ଉଧାର କାରବାରରେ କୋଳାହଳ ମୁଖର କରୁଥିଲେ, ତାହା ପ୍ରାୟ ଜନଶୂନ୍ୟ । ଏଇଠି ଯେଉଁ great dane କୁକୁର ଦଳ ଦର୍ଶକ ମନକୁ ଆକର୍ଷଣ କରୁଥିଲେ, ସେମାନେ ବି କେହି ନାହାନ୍ତି । ସେହି ସ୍ଥାନରେ ଗୋଟିଏ ବିରାଟ ସାମିୟାନା ଟଣାଯାଇଛି ଏବଂ ଗୁଡ଼ାଏ ଆସନ ସଜାସଜି ଚାଲୁଛି ।

ଚାହୁଁ ଚାହୁଁ ସ୍ଥାନଟି ଲୋକାରଣ୍ୟ ହୋଇଗଲା । ଏଇଠି ଯୋଡ଼ିଏ ଉତ୍ସବ ଏକା ସାଙ୍ଗରେ ଅନୁଷ୍ଠିତ ହୋଇଛି । ନୂତନ ରାଜା ଗାଦିନାସୀନ ହେବେ ନାହିଁ, ଯେତେବେଳ ପର୍ଯ୍ୟନ୍ତ କଲିକତାରେ ଅବସ୍ଥାପିତ political agent ପାଖରୁ ହୁକୁମନାମା ନ ଆସିଛି । ସ୍ୱର୍ଗତ ମହାରାଜା ଅପୁତ୍ରିକ ଓ ନିଃସନ୍ତାନ ଥିବାରୁ ତାଙ୍କର ସାନ ଭାଇ ପ୍ରତାପଚନ୍ଦ୍ର ଭଞ୍ଜ ବର୍ତ୍ତମାନ ମହାରାଜା ରୂପେ ମୟୁରଭଞ୍ଜ ସିଂହାସନରେ ଅଧିଷ୍ଠିତ ହେବା ଅନୁମତି ପତ୍ରଟି political agent କରିଆରେ ବ୍ରିଟିଶ୍‌ ସରକାର ପାଖରୁ ଆସିବ । ଶୁଣାଶୁଣିରେ ସମ୍ରାଟ୍‌ଙ୍କ ପାଖରୁ ସେ ପରୱାନା ଆସିଗଲାଣି । ମହାରାଜାଙ୍କର ଅଭିଷେକ ଅନୁଷ୍ଠିତହେବ । ରାଜ୍ୟର ସର୍ବରାକାର, ସର୍ଦ୍ଦାର ଏବଂ ରାଜ୍ୟର ପ୍ରଧାନ ଓ ମୁଖ୍ୟ କର୍ମଚାରୀବର୍ଗଙ୍କର ଆନୁଗତ୍ୟ ଓ loyalty ଲୋଭୀ ନୂତନ ମହାରାଜା, ଯିଏକି ଅଦ୍ୟାବଧି ଛୋଟ ରାୟ ସାହେବ ବୋଲାଉଥିଲେ, ସେ ମହାରାଜା ହେବେ । ସେଇ ଅନୁମତି ଦେଲେ ଯାଇ ଶବ ସଂସ୍କାର ହେବ ।

ମହାରାଜାଙ୍କର ଅଭିଷେକ ବିଧିମତେ ହେବ । ବ୍ରାହ୍ମଣ, ଗୁରୁ ସନ୍ନିଧିରେ ଅନୁଷ୍ଠିତ ହେଲା । ଏବଂ ନୂଆ ରାଜା ରୂପରେ ମହାରାଜା ପ୍ରତାପଚନ୍ଦ୍ର ତାଙ୍କର ସ୍ୱର୍ଗତ ବଡ ଭାଇ ପୂର୍ଣ୍ଣଚନ୍ଦ୍ରଙ୍କର  ଶବ ସଂସ୍କାର ପାଇଁ ଅନୁମତି ଦେଇ ଅନ୍ତପୁରକୁ ଚାଲିଗଲେ । ଏବଂ ଶବ ସଂସ୍କାର କାର୍ଯ୍ୟ ଆରମ୍ଭ ହେଲା । ଅଗରୁ ପାତ୍ର, ମନ୍ତ୍ରୀ, ମୁଖ୍ୟ କର୍ମଚାରୀ ସମସ୍ତେ ଅଭିଷେକ ଉତ୍ସବରେ ଯୋଗଦେଇ ଶବାଧାର ଆଡକୁ ଚାଲିଲେ ଏବଂ ଶବ ଶୋଭାଯାତ୍ରା ଆରମ୍ଭ ହେଲା । ମସ୍କୋରୁ ବାରିପଦାରେ ରହୁଥିବା ବେଣ୍ଡ୍‌ ମାଷ୍ଟର ସର୍ବାଗ୍ରେ ଶୋକ ବେଣ୍ଡ

ବଜେଇ ବଜେଇ ଚାଲିଲେ। ତାପରେ କଳା ପୋଷାକଧାରୀ ପଗଡି, ଅଚ୍‌କନ୍ ପିନ୍ଧି ଚାଲିଲେ। ସେମାନଙ୍କ ଭିତରେ ଅଧିକାଂଶ ଅଣ ଓଡ଼ିଆ। ରାଜବାଟୀର ମୁଖ୍ୟ ଦୁଇଦୁଆର ଦେଇ ସିଂହଦ୍ୱାର ଆଡ଼କୁ ପ୍ରସେସନ ବା ଶୋଭାଯାତ୍ରା ଚାଲିଲା। ଏବଂ ଦକ୍ଷିଣ ଆଡ଼କୁ ଗତି କଲା। ଖଣ୍ଡେ ଦୂର ଯିବା ପରେ ପୁଣି ବାଙ୍କିଲୁ ରାଜବାଟୀର ଦକ୍ଷିଣ ପଟର ରାସ୍ତା ଦେଇ ରାଜାମାନଙ୍କର ବଳଙ୍ଗ ନଈକୂଳ ପ୍ରଶସ୍ତ ଶଶ୍ମାନ ଆଡ଼କୁ। ସେମିତି ଅନେକ ଲୋକ ଶଶ୍ମାନରେ ଜମା ହୋଇଥିଲେ, ତାହା ନୁହେଁ। ଶବବାହକମାନେ ରାଜବଂଶୀୟ ବା ରାଜବଂଶ ସହିତ ସଂପୃକ୍ତ। ମହାରାଜା ବୋଧହୁଏ ଶଶ୍ମାନକୁ ଯିବା କଥା ନୁହେଁ। ସେ ଶୌଚାଶୌଚରୁ ମୁକ୍ତ। ସଦା ଶୁଚି। ଶଶ୍ମାନରେ ମୋଟାମୋଟି ଆଡମ୍ବର ନାହିଁ। ସହରଟା ଯାକ ଶୂନଶାନ୍। କର୍ମଚାରୀମାନଙ୍କର କଳା ପୋଷାକ ବୋଧହୁଏ ରାଜବାଟୀ ତରଫରୁ ଯୋଗାଇ ଦିଆଯାଇଥିଲା। ସ୍କାଉଟ୍‌ମାନେ ସ୍କାଉଟ୍ ପୋଷାକରେ ଥିଲେ। ଆମେ ଯେତେ ବ୍ରାହ୍ମଣ ପିଲା, କଳା ଧୋତି ପିନ୍ଧିଥିଲୁ ଦଶାହ ଦିନ। କିନ୍ତୁ ଯେତେଯାହା ବ୍ୟବସ୍ଥା ସବୁକୁ ତଳେ ପକେଇ ଦେଇ ଶବାଧାର ନିଃସୃତ ପୂତିଗନ୍ଧ ସହରଟା ସାରା ଖେଳି ଯାଇଥିଲା। ବିଶେଷକରି, ଯେତେବେଳେ ଶବକୁ ଚିତାରେ ବିସର୍ଜନ କରାଗଲା, ମହାରାଜାଙ୍କର ବୋଧହୁଏ ସେତେବେଳେ ଯେତିକି salute ପ୍ରାପ୍ୟ ଥିଲା ସେ ଗୁଡିକ ଦିଆଗଲା ଛୋଟ ଛୋଟ ବନ୍ଧୁକ ଦ୍ୱାରା। ମନେପଡ଼ୁଛି ଖେଳନା ଭଳି ଦିଶୁଥିବା ଚକ ଲଗା ଛୋଟ ଛୋଟ ବନ୍ଧୁକ କିଛି ଦୂର ଧାଇଁଯାଇ, ଠୋ ଠୋ କରି ଫୁଟେ। ପୋଲିସମାନେ ମଧ୍ୟ gun salute ଦେଇଥିଲେ। ଚନ୍ଦନ କାଠ, ଘିଅ, ଝୁଣା ଓ ଗୁଗୁଳ ଆଦି ବିବିଧ ପଦାର୍ଥ ଦେଇ ସୁରଭିତ କରିବାର ଚେଷ୍ଟା କରାଯାଇଥିଲା। ସେତେବେଳକୁ ଦିନ ଦୁଇଟା ବାକି ଯାଇଥାଏ। ଧୂ ଧୂ ହୋଇ ଚିତାଗ୍ନି ଜଳିବାର ଦେଖିଲୁ। ପ୍ରସେସନ୍ ରାଜାବାଟୀକୁ ବାହୁଡ଼ିଗଲା। ଆମେ ସବୁ ଯେତେ ପିଲା, ସବୁ ସ୍କାଉଟ୍ ମାଷ୍ଟର କାଶୀନାଥ ବାବୁଙ୍କର ରାଜାବାଟୀର ଗୋଟିଏ ଉତ୍ସବରେ ଯୋଗଦେଇ ହଷ୍ଟେଲକୁ ଫେରିଲୁ। ଭାତ କିଏ ଖାଇଲା, କିଏ ନାହିଁ। କାରଣ ନାକ ଭିତର ଦୁର୍ଗନ୍ଧରେ ଭରପୂର ହୋଇଯାଇଥାଏ। ସୂର୍ଯ୍ୟ କ୍ରମେ କ୍ରମେ ତଳକୁ ତଳକୁ ଓହ୍ଲାଇ ଶିମିଳିପାଳ ପାହାଡରେ ଦଣ୍ଡେ ବସି ଅଦୃଶ୍ୟ ହୋଇଗଲେ। ସମଗ୍ର ସହର ଅନ୍ଧକାରାଛନ୍ନ ହୋଇଗଲା। ପ୍ରକୃତ ଆନ୍ତରିକ ଦୁଃଖ କହିଲେ କଣ ବୁଝାଏ, ରାଜା ବିୟୋଗରେ ଶୋକାକୁଳ ପ୍ରଜା ବା କର୍ମଚାରୀମାନଙ୍କର ମୁଖରେ ତାହା ପ୍ରତିଭାତ ହୋଇଥିଲା।



## ।। ଛବିଶ ।।

"ଧମାଧମ୍ ଧମ୍କି ଲଗେଇଲା, ଯାଉଁଳି ନାକରେ କାଉଁଳି ଗୁଣ୍ଡା ମାରିତ ପକାଇଲା ।" ଭାତ ଖାଇସାରି ବାସନ କେଇଖଣ୍ଡ କୁଶ ବ୍ରାହ୍ମଣ ମାଜୁଥାଏ ଏବଂ ଗୁଣ ଗୁଣୁ ହୋଇ ଏଇ ଗୀତଟି ଗାଉଥାଏ । ଆହୁରି ଗାଏ "ଭଲା ଅକାଳ ବଡି କାହୁଁ ଅଇଲା । ଘର ଦ୍ୱାର ସବୁ ଧୋଇଗଲା ।" ଏଇ ହେଲା ଯାଜପୁରିଆ ବ୍ରାହ୍ମଣର କୌତୁକିଆ ଗୀତ । ଆମେ ହସୁ, ସେ ହସାଏ । ସେ କାଳରେ ଏଇ ପ୍ରକାର ଭିକାରୀ ବ୍ରାହ୍ମଣ ଯାଜପୁର ଅଞ୍ଚଳରୁ ଆସି ମୟୂରଭଞ୍ଜରେ ଖେଳିଯାଇଥାନ୍ତି । ତା ପୂର୍ବରୁ ଶ୍ରୀରାମଚନ୍ଦ୍ର ଭଞ୍ଜଙ୍କର ଅମଳରେ ଯେତେବେଳେ Survey ଓ Settlement ପ୍ରଚଳନ୍ ହେଲା, ସେତେବେଳେ ସେଇ କିସମର ବ୍ରାହ୍ମଣ, ଅମୀନ କାମପାଇଁ ମୟୂରଭଞ୍ଜ ବଣ ଜଙ୍ଗଲ ଭିତରକୁ ଚାଲିଯାଇଥିଲେ ଏବଂ ଯିଏ ଯେତେ ପାରିଲା ସେତେ ଜମି ନିଜର କରିନେଲା । ପ୍ରତାପ ଚନ୍ଦ୍ର କହୁଥିଲେ ମୟୂରଭଞ୍ଜର ଯେଉଁ ସାନ୍ତାଳ ମେଳି ହେଲା, ତାହା କୁଆଡେ ଏଇ ଅମୀନମାନଙ୍କପାଇଁ । ଯେମିତି ବ୍ରିଟିଶ ଅମଳରେ ବନ୍ଧୁକଗୁଳିରେ ଗୋରୁଚର୍ବି ରହିଛି ବୋଲି ଗୁଜବରେ ସିପାହୀ ବିଦ୍ରୋହର ସୂତ୍ରପାତ ହୋଇଥିଲା, ଠିକ୍ ସେମିତି । ମୟୂରଭଞ୍ଜରେ ଅମୀନମାନେ ସାନ୍ତାଳ ପିଅନ ବା ଅନୁଚରମାନଙ୍କୁ ବିଲ-ବାଡିରେ ଗଲାବେଳେ ଚପଲ ବା ଜୋତା ବହିବାକୁ କହନ୍ତେ, ସେମାନେ ବିଦ୍ରୋହୀ ହୋଇଉଠିଲେ ଏବଂ ଗଣ୍ଡି ଫେରାଇ ମେଳି ସୃଷ୍ଟି କରିଥିଲେ । ଚାଷବାସ ସରିଲେ ଏଇ ବ୍ରାହ୍ମଣମାନେ କାଉଁଳି କାନ୍ଧରେ ପକାଇ ଗାଁ ଗାଁ ବୁଲୁଥିଲେ ଏବଂ ଜଗନ୍ନାଥ ନନ୍ଦଙ୍କ ବଙ୍ଗଳା ଘରେ ଆଶ୍ରୟନେଇ ରହୁଥିଲେ ।

କୌତୂହଳବଶତଃ ପୂର୍ଣ୍ଣଚନ୍ଦ୍ର ଭଞ୍ଜଙ୍କର ଦଶାହରେ ଆମେ କେତେଜଣ ବ୍ରାହ୍ମଣ ପିଲା ରାଜବାଟୀ ଭିତରକୁ ଯାଇଥିଲୁ । ଷୋଡଶଦାନ ହେବା କଥା । ଆମେ ପହଞ୍ଚି ଦେଖିଲୁ, ରାଜବାଟୀର ପ୍ରାଙ୍ଗଣରେ ଷୋହଳଟି ଦାନ ରଖାଯାଇଛି । ଯାହାକୁ କି ଷୋଡଶ କୁହାଯାଏ । ଗୋରୁ, ଭୂମି, ସୁବର୍ଣ୍ଣ ଆଦି କେତେ କଣ ପଦାର୍ଥ । ଆଶାୟୀ ବ୍ରାହ୍ମଣ ଗୋସାଇଁମାନେ ଖୁବ୍ ଉଲ୍ଲାସରେ ମଡକୁ ଶାଗୁଣା ଘେରିରହିଲା ପରି ବୁଲୁଥାନ୍ତି । କିଏ କଣ ପାଇବେ ତାର ତାଲିକା ପୂର୍ବରୁ ରାଉତରାୟ ସାହେବ, ଯେକି ଘରୋଇ ପର୍ବପର୍ବାଣି ଉତ୍ସବ ଦାୟିତ୍ୱରେ ଥାନ୍ତି, ସେ ବ୍ୟବସ୍ଥା କରିଥାନ୍ତି । ଶାସେନି ବ୍ରାହ୍ମଣଙ୍କୁ ଅଗ୍ରାଧିକାର ଦିଆଯାଇଥାଏ । ମୋର ମାମୁଁ କୁଳ ପୁରୋହିତ ନହେଲେ ମଧ୍ୟ, ପ୍ରଚାରକ ଆକାରରେ ସଗର୍ବେ ଘୁରାଫେରା କରୁଥାନ୍ତି ।

ଆମେ ଶୁଣିଥିଲୁ, ଦାନ ଭିତରେ ଗୋଟିଏ ଦାନ ହୋଇଛି- "ମଡାଚଣ୍ଡିଆ ଦାନ ।" ଯେଉଁଠି କେତେ ଦିନ ଆଗରୁ ସ୍ୱର୍ଗତ ମହାରାଜାଙ୍କର କଫିନ୍ ଶବାଧାରଟି ଥୁଆ

ହୋଇଥିଲା, ତାର ଅଦୂରରେ ଖଟଟିଏ ପଡ଼ିଛି ଏବଂ ପ୍ରତ୍ୟେକ ଦାନ ସହିତ ଯେଉଁ ଯେଉଁ ସାମଗ୍ରୀ ରହିବାକଥା, ତାହା ଥୁଆହୋଇଛି। ହଠାତ୍ ସଭାସ୍ଥଳରୁ ଗୋଟାଏ ଗୁଞ୍ଜରଣ ଉଠିଲା ଯେ, ଏଥର ମଡାଚଣ୍ଡିଆ ଦାନ ହେବ। ମହାରାଜାଙ୍କର ଶବକୁ ଦେଖିବାପାଇଁ ଆମର ଆଗ୍ରହ ଯେତେ ନଥିଲା (ଆମଭଳି ପିଲାଙ୍କ ଶବ ଦର୍ଶନ ବା ସଂସ୍କାରକୁ ଛଡା ଯାଉନଥିଲା) ମଡାଚଣ୍ଡିଆଟିକୁ ଦେଖିବାପାଇଁ ଆମେ ସେତେ ଉତ୍ସୁକଥିଲୁ। ଆମେ ଏତେ ତେଣେ ଚାହୁଁଥାଉଁ, ଆମ ଆଖିରେ ପଡ଼ିଲା ସେଇ କୃଶ ବ୍ରାହ୍ମଣ, ଯିଏ ଆମ ଗାଁ ବଙ୍ଗଳାରେ ଆଡ୍‌ଡା କରି ରହୁଥିଲା, ଯିଏ ବସନ୍ତ ମହାମାରୀରେ ଶବସଂସ୍କାରକରି ଶହ ଶହ ଟଙ୍କା ମନିଅର୍ଡର କରି ଘରକୁ ପଠାଉଥିଲା ଏବଂ ଯାହାକୁ ଗୁଣୀ-ଗାରିଡ଼ି, ତନ୍ତ୍ର-ମନ୍ତ୍ର ସବୁ ଜଣାଥିଲା, ତାକୁ କେତେଜଣ ଧରି ନେଇ ସେ ଖଟରେ ଚିତ୍‌କରି ଶୁଆଇଦେଲେ। ଲୋକଟା ଏତେ ଅଲାଜୁକ ନା, ହସୁଥିଲା। ତାକୁ ଗୋଟାଏ ଲୁଗାରେ ଖଟ ସହିତ ବାନ୍ଧି ପକେଇଲେ। ଯେମିତି ମଡାଟାଏ ଶୋଇଛି। ଖଟ ତଳେ ହାଣ୍ଡିଭିତରେ ନିଆଁ ଗଡଟିଏ ଥୁଆ ହୋଇଥାଏ। ସେଥିରୁ ଧୂଆଁ ବାହାରୁଥାଏ। କଣ କେତେ ମନ୍ତ୍ର-ତନ୍ତ୍ର ପରେ ଶବ ବାହକ ମାନେ ମଡାକୁ ଉଠେଇଲେ ହରିନାମ ସତ୍ୟ ହେ କହି। କୃଶ ବ୍ରାହ୍ମଣ ନିର୍ବିକାର। ଯିମିତି ଭାବରେ ମହାରାଜାଙ୍କ ଶବକୁ ନିଆଯାଇଥିଲା ଶ୍ମଶାନକୁ, ଯ୍ୟାକୁ ବି ସେମିତି ଶ୍ମଶାନକୁ ନିଆଗଲା। ବେଣ୍ଡ, ପୋଲିସ ସମସ୍ତେ ଶୋଭାଯାତ୍ରାରେ ଥିଲେ। ଯେଉଁଠି ମହାରାଜାଙ୍କ ଶବ ଦାହହୋଇଥିଲା, ସେଇଠି ଏଇ କୃଶ ବ୍ରାହ୍ମଣର ମଡାକୁ ରଖାଗଲା। ନିଆଁ ଜାଳିବାର ଅଭିନୟ କରାଗଲା। ତାପରେ ପ୍ରସେସନ ଫେରିଗଲା। ଲୁଗା, ଦଉଡ଼ି ଫିଟେଇ ଦିଆଗଲା। କୌତୂହଳ ବଶତଃ ଆମେ ଦେଖିଲୁ, କୃଶ ବ୍ରାହ୍ମଣ ଉଠିବସି, ଯାହା ଜିନିଷ ପତ୍ର ଦାନରେ ଦିଆହୋଇଥିଲା, ସମସ୍ତ ଜାଉଁଳିରେ ବନ୍ଧାବନ୍ଧି କଲା। କେତେ ପଇସା ତାକୁ ଦକ୍ଷିଣା ଦିଆ ହୋଇଥିଲା ଆମେ ଜାଣିପାରିଲୁ ନାହିଁ। ଲୋକମାନେ ଛିନ୍‌ଛତ୍ର ହୋଇଗଲେ ମଡାଟି ଉଠି ବସିବାର ଦେଖି। ପରେ ଶୁଣିଲୁ, ପୋଲିସ ସାହାଯ୍ୟରେ ତାକୁ ସୀମା ବାହାରେ ରୁପ୍‌ସା ଷ୍ଟେସନରେ ଛାଡିଦେଲେ। "ଧମାଧମ୍ ଧମ୍‌କି ଲଗେଇଲା। ସାଉଁଳି ନାକରେ କାଉଁଳି ଗୁଣ୍ଡା ମାରିଡ ପକେଇଲା" ଗାଇ ଗାଇ ମହାହର୍ଷରେ କୃଶ ବ୍ରାହ୍ମଣ ଯାଜପୁର ଅଭିମୁଖେ ସ୍ୱଗୃହକୁ ପ୍ରସ୍ଥାନକଲା।

ଆସ କିଏସେ ଯିବରେ। ଆସିଲେ ସାରା ମୟୂରଭଞ୍ଜର ଶାସନୀ ବ୍ରାହ୍ମଣ, ବାଟକଟିଆ (ଯେଉଁମାନେ ଶାସନୀ ବ୍ରାହ୍ମଣ ନୁହଁନ୍ତି, ଶାସନ କହିଲେ ବୁଝାଏ ଧାଡି ଧାଡି ଘର, ଉଚ୍ଚ ପିଣ୍ଡା) ବୈଷ୍ଣବ, ଦକ୍ଷିଣା ବ୍ରାହ୍ମଣ, କୃଶ ବ୍ରାହ୍ମଣର ଦଳ ବୋର୍ଡିଂର ବ୍ରାହ୍ମଣ ପିଲା, ସ୍କାଉଟ ପିଲା, ଅର୍ଫେନେଜର ଅନ୍ତେବାସୀ, ବୁଢାଠାରୁ ପିଲା ଯାଏ, ସେମାନଙ୍କ ଭିତରୁ

ଅଧିକାଂଶ ଚିତାପଇତା, ଚିତାଚୈତନ୍ୟ ହୋଇ, ଦେହରେ ଓଢଣି ପକେଇ ରାଜବାଟୀକୁ । ଅନେକ ପୂର୍ବଦିନ ରାତିରୁ ଆସି ପହଞ୍ଚିଗଲେ । ରାଜାଘର ଖାନା । ତା ଜୀବନରେ କେତେଥର ଏ ସୁଯୋଗ ମିଳିବ ! ଆଜି ଉଆସ ରହିଗଲେ, କାଲିକୁ ତ ଭରଣା ହୋଇଯିବ ! ଦୁଇଟା ବେଳକୁ ରାଜବାଟୀରେ ଉପସ୍ଥିତ ହେବା କଥା । ନିମନ୍ତ୍ରଣ ପତ୍ରରେ ଜଣେଇ ଦିଆହୋଇଛି । ଯେଉଁମାନେ ନିମନ୍ତ୍ରଣ ପାଇନାହାନ୍ତି ବା ଯେଉଁମାନଙ୍କୁ ନିମନ୍ତ୍ରଣ କରାଯାଇନାହିଁ ସେମାନେ ବି ଆସିଲେ । ରଥ ଯାତ୍ରାର ଜନସମାଗମ । ପୁରୀ ମନ୍ଦିରରେ କାର୍ତ୍ତିକ ଏକାଦଶୀରେ ବିଧବାମାନଙ୍କର ଯେମିତି ସମାଗମ ହୁଏ, ମନ୍ଦିରରେ ଏଇଠି ସେଇପରି । ବଜାର ଯାକ ଭିଡ । ହସ, ଆନନ୍ଦରେ ଉଛୁଳି ପଡୁଛି । ଭେଳାଭେଳା ହୋଇ ସକାଳଟା ସେମାନେ ରାଣୀବାଗ୍, ବାରୁଣୀଘାଟ, ବାରିପଦା ରେଳଷ୍ଟେସନ ପାର୍ଶ୍ୱବର୍ତ୍ତୀ ଚାଉଳ କଳ, ଗୋଲାପ ବାଗ୍, କଚେରୀ, ମହାରାଜା ଶ୍ରୀରାମଚନ୍ଦ୍ରଙ୍କର ପୂର୍ଣ୍ଣାବୟବ ପ୍ରତିମୂର୍ତ୍ତି, ବାଘଘର (ଭଞ୍ଜପୁର), ଜେଲଖାନା, ବେଲଗୋଡିଆ କୋଠି, ଝିଞ୍ଜରୀ ବନ୍ଧ, ଜ୍ୱାଳାମୁଖୀ ମନ୍ଦିର, ଅମ୍ବିକା ମନ୍ଦିର ଦେଖିଦେଖି ସମୟ କଟାଇବା ସାଙ୍ଗକୁ, ଗୋସାଇଁମାନେ ଲୋକ ମଧ୍ୟ ବଡାଇଲେ । ଠିକ୍ ସମୟରେ ଚାରିଟା ଦ୍ୱାର ଦେଇ ରାଜନବର ଭିତରକୁ ପ୍ରବେଶକଲେ ଏବଂ ଯୋଡାଏ ବିସ୍ତୀର୍ଣ୍ଣ ପ୍ରାଙ୍ଗଣରେ ଜମାହେଲେ । ଠିକ୍ ସମୟରେ ଡକରା ଆସିଲା । ଭୋଜନ ସ୍ଥାନ ରାଜବାଟୀର ଉନ୍ମୁକ୍ତ ଛାତର ଦୋତାଲା ଉପରେ । ଏଠି ଆଉ ପଣ୍ଡା ପିଣ୍ଡା ତଳକୁ ବସିଲେ । ମଣ୍ଡପେ ଶାସନୀୟେ । ଏ ପଙ୍‌କ୍ତି ଭୋଜନରେ ସମସ୍ତେ ସମାନ । ବାଛବିଚାର ନାହିଁ । ଅନ୍ୟତ୍ର ପାଣିଚଳ ବ୍ରାହ୍ମଣ ବା ଅନ୍ୟ କିସମର ବ୍ରାହ୍ମଣର ଭେଦ ନାହିଁ । ବ୍ରାହ୍ମଣମାନଙ୍କ ଭିତରେ ଯେ ଜାତିଭେଦ, ଉଚ୍ଚନୀଚ ଭେଦଭାବ ଥାଏ, ତାହା ଏଠି ଜଣାପଡିଲା ନାହିଁ । ସମସ୍ତଙ୍କର ଅପେକ୍ଷା ପତ୍ର ପଡିବାକୁ । ମୟୂରଭଞ୍ଜରେ ଶାଳ ଖଲିପତ୍ରର କି ଅଭାବ ଅଛି, ନା 'ଅବାରିତ ଦାନବାରି ପିଛିଳ ପ୍ରାଙ୍ଗଣେ' ଖାଦ୍ୟର ଅଭାବ ଅଛି ।

ବିହାର-ଓଡିଶାର ସଫ୍‌ଟନ ସାହେବ ଥରେ ବାରିପଦା ଗସ୍ତରେ ଆସିଥିଲେ । ବେଠି ବେଗାରି ସେତେବେଳେ ପ୍ରଚଳିତ ଥିଲା । ଭେଟି ଆକାରରେ ପଧାନ, ସର୍ଦ୍ଦାର, ଚୌକିଦାରମାନଙ୍କ ଜରିଆରେ ଏତେ କୁକୁଡା ଜମା ହୋଇଥିଲେ ଯେ, ସେମାନେ ଦୁଇଟି ବନ୍ଧାକୋବି ବଗିଚାକୁ ଶେଷ କରିଦେଲେ ଏବଂ ତା'ପରେ ନିଜ ନିଜକୁ ଖାଇବାକୁ ଲାଗିଗଲେ । ଯେତେବେଳେ ଶିକାର ହୁଏ, ସେତେବେଳେ ବି ଏଇ ଦୃଶ୍ୟ ଦେଖିବାପାଇଁ ମିଳିଥାଏ । ଏ ସହ ଉତ୍ସବର ବାହାରିଆ ବ୍ୟବସ୍ଥାପାଇଁ ଯୋଗ୍ୟଲୋକ ଥା'ନ୍ତି, ଯାହାଙ୍କୁ ବ୍ୟଙ୍ଗ ବିଦ୍ରୂପକରି ତତ୍କାଳୀନ ଆଶୁକବି ଲେଖିଥିଲେ, "Good morning good

morning ଅନାଦି ଅନନ୍ତ/ ନମସ୍ତେ ନମସ୍ତେ ମାଗ ବଡ ବଡ ଦାନ୍ତ" ଏତେ ନିଷ୍ଠୁର ଓ ଏତେ ଅତ୍ୟାଚାରୀ ସେ ଲୋକ ଯେ, କ୍ରୋଧାନ୍ୱିତହୋଇ ବେଠିଆମାନଙ୍କର ହାତରେ କୋଡାମାଡି ଚାଲିଗଲେ। ଅବଶ୍ୟ ତତ୍କାଳୀନ ମହାରାଜା ନୃଶଂସ କାଣ୍ଡର ପୁନରାବୃତ୍ତି ଯେପରି ନହୁଏ, ସେଥିପାଇଁ ବେଠି ବେଗାରି ତ ଉଠାଇ ଦେଲେ। ଶିକାର, ହାତୀଧରା ମଧ୍ୟ ବନ୍ଦ କରିଦେଲେ। ଏମିତି କଡାଲୋକ ବ୍ରାହ୍ମଣ ଗୋସାଇଁମାନଙ୍କର ଭୋଜି ଦାୟିତ୍ୱରେ ରହିଥାନ୍ତି। ଏମାନେ ଗିଲକରା ପଞ୍ଜାବି ଯୋଡିହୋଇ, ମଲ୍ଲୀମାଳ ବେକରେ ପକାଇ, ହାତରେ ବାନ୍ଧି ଟହଲମାରି ତତ୍ତ୍ୱନେଉଥାନ୍ତି। ଅଗଣିତ ବ୍ରାହ୍ମଣ ଗୋସାଇଁ ଭୋକରେ ଆଉଟପାଉଟ ହେଉଥିବା ବେଳେ, ଶହ ଶହ ମାଟିଗ୍ଲାସରେ ପାଣି ଦିଆହୋଇଛି କି ନାହିଁ, ଖଲିପତ୍ର ଲାଗିଗଲା। ସମସ୍ତଙ୍କ ମୁହଁରେ ଗୋଟିଏ ନୂଆ ରାହା ଦେଖାଦେଲା। ପ୍ରଥମେ ଆସିଲା ଚୂଡାଭଜା। ପରେ ପରେ ଉଖୁଡା। ତା'ପଛକୁ ବସାଦହି। ଏଗୁଡା ଗୌଣ ପଦାର୍ଥ ହେଲେ ମଧ୍ୟ ଦହିଚୁଡା ବ୍ରାହ୍ମଣ ଗୋସାଇଁମାନେ ଏଗୁଡିକୁ ପ୍ରଥମ ସ୍ଥାନ ଦିଅନ୍ତି। ଲୁଣ, ଲଙ୍କା ପତରରେ ପଡିଛି କି ନାହିଁ। ମୁରବିମାନଙ୍କୁ ଲକ୍ଷ୍ୟକରି କେହି କେହି କହିଲେ ଏଥର ହାତ ଚାଲୁ। ହାତ ଚାଲିଛି କି ନାହିଁ , ବାପମାନେ ପୁଅମାନଙ୍କୁ କହିଲେ- 'ବେ ଏଗୁଡା ମୁଠା ମୁଠା ଖାଇଦେଲେ ପଛକୁ ଯେତେବେଳେ ଭଲ ଜିନିଷ ଆସିବ କଣ ଖାଇବୁ।' ଆସିଗଲା ପୁରି; ସୋଲାବୋଇତାଳୁ ତରକାରୀ। ତାପରେ କଲିବି ଆସିଲା। ପରେ ପରେ ଫେଣି। ବଡ ବଡ ନୂଆ ବସାଣିଆ ମିଠେଇ। କଥାବାର୍ତ୍ତା ବନ୍ଦ। କେବଳ ଖାଇବାର ଶବ୍ଦ। ପରଶୁଥିବା ମୁରବୀ ସ୍ଥାନୀୟ ଲୋକେ ବୁଲାବୁଲି କରି ଏଠି ଦିଅ, ଏଠି ପୁରି ଦିଅ, ସେଠି ମିଠେଇ ଦିଅ ଚିତ୍କାର କରୁଥାନ୍ତି। ସେଇ ଖଲିରେ ଯାହା ପଡିବ ତାହା ଗାମୁଛାରେ ବନ୍ଧା ହୋଇ ଘରକୁ ଯିବ। ଖାଉନ କାହିଁକି ବୋଲି ପ୍ରଶ୍ନର ଉତ୍ତରରେ ବାପ କୁହନ୍ତି- 'ଶୁଦ୍ଧିକ୍ରିୟାରେ ବାପ ପୁଅ ଖାଏ ନାହିଁ, ସେ ସବୁ ଘରକୁ ଯିବ, ଚୁଲିରେ ଅଗ୍ନି ଦେବତାକୁ ପ୍ରଥମେ ଦିଆଯିବ ଏବଂ ତାପରେ ଘରଲୋକ ସମସ୍ତେ ଖାଇବେ।' ଏଥର ଅସଲ ଚିଜ ଆସିଲା। ସେ ସବୁ କଲିକତିଆ ଚିଜ। ବାରିପଦାରେ ଭଲ ମିଠା କଣ, ତାହା ସେତେବେଳେ କଣା ନଥିଲା। ଗୁଜୁରି ବଜାରରେ ଜଣେ ଦୋକାନୀ ରସଗୋଲା ଓ ଲେଡିକେନିଙ୍ଗ (ଏବେଏବେ ତାର ନାମ ପାନ୍ତୁଆ କୁହାଯାଉଛି), ବଡ ପୋଖରୀର ପଦ୍ମ ପତରରେ ମୋଡି ବିକ୍ରି କରୁଥିଲା। ପୃଥିବୀ ପ୍ରସିଦ୍ଧ ଭୀବନାଗର ସନ୍ଦେଶ ଓ ବାଘ ବଜାରର ସନ୍ଦେଶ ଡବା ଓ ଟିଣରୁ ଫିଟାହୋଇ ଖାଲି ପତରରେ ପଡୁଥାଏ। ଛୁଆ, ବୁଢା ସମସ୍ତେ ଟାଉ ଟାଉ ଗିଳିଦେଉଥାନ୍ତି। କହୁଥାନ୍ତି- ଏସବୁ ଜିନିଷ ଦେବ ଦୁର୍ଲ୍ଲଭ। ସ୍ୱର୍ଗରେ ମିଳେ, ନହେଲେ ରାଜାଘରେ ମିଳେ। କି ଆଶ୍ଚର୍ଯ୍ୟ ଜିନିଷ ପାଟିରେ ପକେଇଦେଲା ମାତ୍ରେ

ମିଳେଇ ଯାଉଛି। ଆକଣ୍ଠ ଭୋଜନ। ଦେହରୁ ଝାଳ ବହିଗଲା। ପାଣି ପିଇଦେଲେ ଭୋକ ମରିଯିବ ବୋଲି, ଗିଲାସ ଆଡକୁ କେହି ହାତ ବଡଉ ନଥାନ୍ତି।

ରାଜବାଟୀ ଉପରୁ ସ୍ପଷ୍ଟ ଦେଖାଯାଉଥାଏ, ଲାଲ ହୋଇ ସୂର୍ଯ୍ୟଦେବ ଶିମିଳିପାଳ ପର୍ବତର ଆଡକୁ ଓହ୍ଲାଇ ଯାଉଥାନ୍ତି। ଯେମିତି ଚାରି ପାଞ୍ଚଟା ଫାଟକ ଦେଇ ଗୋସାଇଁମାନେ ରାଜବାଟୀକୁ ପଶିଥିଲେ, ସେଇରାସ୍ତା ଦେଇ ଧାଡିଧରି ଚାଲିଲେ। ଗୋଟାଏ ଲୁଗାରେ ପାଦଧୂଳିଦେଇ ବାହାରିଗଲେ, ପ୍ରତ୍ୟେକ ଟଙ୍କାଟିଏ ଦକ୍ଷିଣା ନେଇ (ସେତେବେଳେ ଟଙ୍କାକୁ ବତିଶ ଶେର୍ ଚାଉଳ ମିଳୁଥିଲା)। ଟଙ୍କାରେ ମହାରାଣୀ ଭିକ୍ଟୋରିଆ, ସପ୍ତମ ଏଡଓ୍ୱାର୍ଡ ଓ ପଞ୍ଚମ ଜର୍ଜଙ୍କର ଛବି ଥିଲା। ସମସ୍ତଙ୍କର ମୁହଁରେ ଗୋଟିଏ ଗୀତ "ଖାଇଲୁ ପେଟେ, ବହିଲୁ ମୋଟେ, ଚାଲିଲୁ ବାଟେ ବାଟେ।" ବାହାରିଯିବା ସମୟରେ ଘୋଷଣାହେଲା ଗୋଟିଏ ତାରିଖ, ଯେଉଁ ଦିନ ପୁଣି ଭୋଜନ ହେବ। ପ୍ରଥମଟା ମହାରାଜାଙ୍କ ତରଫରୁ ଦିଆଯାଇଥିଲା। ଏଥର ଯାହା ମିଳିବ, ତାହା ମହାରାଜାଙ୍କର ଶ୍ୱଶୁର ଓ୍ୱାଙ୍କାନିର ମହାରାଜାଙ୍କ ତରଫରୁ ଦିଆଯିବ। ହରିବୋଲ ଧ୍ୱନି ଦେଇ ସମସ୍ତେ ବିଦା ହୋଇଗଲେ।

x x x x

ମଝିରେ ଦୁଇଦିନ। ବ୍ରାହ୍ମଣ ଗୋସାଇଁମାନଙ୍କର ନିଦ ହୋଇନି। ପୁଣି ଜନସମାଗମ। ତିନି ପଇସା ତହୁଁ ପାଇ ତଥାପି ବେଣା ଉପାଡଇ। ଦିନ ଦୁଇଟା ବାଜିଛିକି ନାହିଁ, ପୁଣି ରାଜବାଟୀ ଉପର ଛାତରେ ଲୋକାରଣ୍ୟ। ପୂର୍ବଥର ଅପେକ୍ଷା ଏଥର ଆହୁରି ବେଶି ଚାରିଆଡେ ରାଷ୍ଟ୍ର ହୋଇଯାଇଥିଲା, ଭୁରିଭୋଜନ ସାଙ୍ଗକୁ ଟଙ୍କାଏ ଦକ୍ଷିଣା। ଓ୍ୱାଙ୍କାନିର ମହାରାଜା ଭୋଜି ଦେଉଛନ୍ତି। ଏଥର ଆହୁରି ଭଲ ହେବ ବୋଲି ଆଶାକରି ବେଶି ବେଶି ଲୋକ ଆସୁଛନ୍ତି। ଖରା ଖୁବ୍ ଜୋର ହେଉଥାଏ। ଦୁଇ ବାଜିଲା ବେଳକୁ ବିଲିୟାଡ କୋଠରୀ ଛାତ, ଅତିଥିମାନଙ୍କର ରହିବାପାଇଁ କଠୋରୀ ଉପର ଛାତ, ଦରବାର ହଲ ଛାତ, ମହାରାଜାଙ୍କର ବେଡରୁମ ଛାତ, ବୈଠକଖାନା, ବାଦ୍ୟଯନ୍ତ୍ର ଏବଂ ମାଛଧରା ସରଞ୍ଜାମ ଥିବା ଛାତ, ଏପରିକି ରାଣୀ ମହଲର କିଛି ଅଂଶ ଛାତ ଉପରେ ଧାଡି ଲମ୍ବିଯାଇ ଥାଏ। ଯଦିଓ ବାପ ଥିଲା ପୁଅ ଶୁଦ୍ଧଘର ଭୋକିକୁ ନଯିବା କଥା; ତଥାପି ବାପ, ପୁଅ, ନାତି ସବୁ ପାଖାପାଖି ବସିଥାନ୍ତି। ଆକୁଳତା ଓ ପ୍ରତିକ୍ଷା ଶେଷ ଘଟାଇ ଆସିଗଲା ଖଲିପତ୍ର, ମାଟିର ଗିଲାସରୁ ଆରମ୍ଭ କରି ଗଜା, ବାଲୁସାଇ, ନୂଆବସାଣି ମିଠାଇ, ପୁରି ଏବଂ କଲିକତି ରସଗୋଲା। ପୁଣି ପୂର୍ବଦିନର ଭୋଜି ପରି, ଖଲିପତ୍ର ପଡିବା ଆରମ୍ଭ ହୋଇଛି କି ନାହିଁ, ସେତିକିବେଳେ ସମସ୍ତଙ୍କର ଅଲକ୍ଷିତରେ ପଶ୍ଚିମ ପଟୁ

ଶିମିଳିପାଳ ପାହାଡ ଉପରେ ଆଉ ଏକ କଳାପାହାଡ ଦେଖାଦେଲା । ତା ସହିତ ଭୀଷଣ ଗୁଳଗୁଳି ଶେଷ ହୋଇ, ବାୟୁମଣ୍ଡଳ ଅତି ଅଶୁଭ ସୂଚନାନେଇ ସ୍ତମ୍ଭିତହୋଇଗଲା । ମେଘ ଉଠାଇ ଆସୁଛି । କିଏ ଜଣେ କବି- ଭାବପନ୍ନ ଗୁଟିପ ବ୍ରାହ୍ମଣ ଛୁଅ' ମେଘ ଦର୍ଶନକରି ଅନୁଚ୍ଚ ସ୍ୱରରେ ଗାଇଲା ବାଳକୃଷ୍ଣ ମହାନ୍ତିଙ୍କ ସୁଶୀଳ ମାଳଜାଁର ଗୀତ- "ଉଠାଇ ଆସୁଛି କଳା ବଉଦ ଲୋ ପଣ୍ଟିମା ଉଠିବ ପାଣି" । ଏଇ ହେଲା ମାନୁଗଳିଆ ମେଘ । ଇଏ ଫାଙ୍କା ଯିବନି ଥରେ ବର୍ଷିଲେ ସହଜେ ବନ୍ଦ ହେବନି । ଗଛ, ବୁରୁକ, ଜୀବଜନ୍ତୁର ଏଇ ମେଘ ଆତଙ୍କ । ଚାହୁଁ ଚାହୁଁ ଦି ପହରରେ ଅନ୍ଧକାର ମାଡିଆସିଲା ବଡ ଖଣ୍ଡିଆ ଭୂତ ପରି । ତା ସହିତ ପବନ । ବଜ୍ର ସହିତ ବିଜୁଳି ଶବ୍ଦରେ ଆକାଶ ଶବ୍ଦମୟ ଓ ବିଜୁଳିମୟ ହୋଇଗଲା । ଏଣେ ବଡାବଡି ଚାଲିଥାଏ । ଖଲି, ଦୋନା ଖାଲି । ଖାଲି ଦୋନା ବସାଇ ଦେଲା ମାତ୍ରେ ଉଡିଯାଉଥାଏ । କେହି କେହି ଯୁବା ବ୍ରାହ୍ମଣ ଗୋସାଇଁ ଅନ୍ୟ କାହାକୁ ଅପେକ୍ଷା ନ କରି ଗୋଟା ଗୋଟା ମିଠେଇ, କଲବି ହାତ ପାପୁଲି ଉହାଡରେ ଚୁପେଚାପେ ପରସା ହୋଇଥିବା ଦ୍ରବ୍ୟକୁ ଆଣି ଖାଇବାରେ ଲାଗିଥାନ୍ତି, ପ୍ରାଣ ଯିବାକୁ ତାଙ୍କର ଭୟ ନାହିଁ । କ୍ରମେ ମେଘ ଗୋଟେ ବିରାଟ ଦୈତ୍ୟ ପରି ଉତ୍ତର-ଦକ୍ଷିଣ ମୁଣ୍ଡକୁ ମାଡିଗଲା ଏବଂ ତୋଫାନ ଆରମ୍ଭ ହୋଇଗଲା । ପଂକ୍ତି ଆଉ ରହିଲା ନାହିଁ । ଲୋକେ ଏଣେ ତେଣେ ହେଲେ । ବାପ ପୁଅକୁ, ଭାଇ ଭାଇକୁ ଖୋଜିବାରେ ବ୍ୟସ୍ତ । ହୋଇହୋଲା, ଚିତ୍କାର ସୀମା ରହିଲା ନାହିଁ । ମଡାଚଣ୍ଡିଆ ଶ୍ମଶାନରୁ ଫେରି ଆସିଲାକି ? କଳାମେଘ ଆଗରେ ଧଳା ଯେଉଁ ବକପଂକ୍ତି ଯାଉଥିଲେ, ସେମାନେ କୁଆଡେ ଯେ ଚାଲିଗଲେ, ତାହା ଜଣାପଡିଲା ନାହିଁ । ଆକାଶ, ପୃଥିବୀ, ଘରଦ୍ୱାର, ନଈନାଳ ସବୁ ଜଳମୟ ଏକାକାର । ଖାଦ୍ୟପାନୀୟ ଶୂନ୍ୟରେ ଉଡିବାକୁ ଆରମ୍ଭକଲା । ଫିଟା ହୋଇ ନ ଥିବା କଲିକତି ବାଘ ବଜାରର ରସଗୋଲା ଟିଣ ଓ ବାଘ ବଜାରର ସନ୍ଦେଶ ନୂଆବସାଣିଆ ମିଠେଇ ସହିତ ଛାତ ଉପରୁ ଉଡିଉଡିଯାଇ ତଳେ ପଡିଲା । ପୂର୍ବ ଭୋଜିଟି ଯଦି ପୂର୍ଣ୍ଣଚନ୍ଦ୍ରଙ୍କର ଶ୍ରାଦ୍ଧ ଭୋଜି ଥିଲା, ଏଇଟା ମଡାଚଣ୍ଡିଆର ଭୋଜିରେ ପରିଣତ ହେଲା । ଯେଉଁଠି ଯୋଡି ମୟୂରର ଛବି ଥାଇ ପତାକାଟି ଉଡୁଥିଲା, ତାହାରି ତଳର ପ୍ରବେଶ ଦ୍ୱାରଟି ପ୍ରସ୍ଥାନ ଦ୍ୱାରରେ ପରିଣତ ହେଲା । ଭୋଜି କଥା ଭୁଲିଯାଇ ବ୍ରାହ୍ମଣ ଗୋସେଇଁଙ୍କ ଦଳ ବାରଣ୍ଡା ତଳେ ରହି ବର୍ଷାରୁ ନିଜକୁ ରକ୍ଷାକଲେ । ମୂଷଳ ଧାରାରେ ବୃଷ୍ଟିପାତ ଯେମିତି ଚାଲିଥାଏ, ବଜ୍ର ସେମିତି ଲାଗିଥାନ୍ତି ରାଜବାଟୀକୁ ଭାଙ୍ଗିଦେବାପାଇଁ ଯେମିତି ।

ବର୍ଷାର ବିରାମହେଲା ବେଳକୁ ଫାଟକମାନଙ୍କରେ ବ୍ରାହ୍ମଣ ଗୋସେଇଁମାନଙ୍କୁ ବିଦାୟକରିବାପାଇଁ କର୍ମଚାରୀମାନେ ଅନ୍ନ ଥଳି ଅଧୁଲି ଧରି ଗୋଟିଏ ଗୋଟିଏ ପ୍ରସାରିତ

ହାତ ପାପୁଲିରେ ଦେଉଥାନ୍ତି ଏବଂ ଅତ୍ୟନ୍ତ ଅନୁତାପ ପରିତାପ ନେଇ ବ୍ରାହ୍ମଣ ମାନେ ତଳକୁ ଓହ୍ଲେଇ ଯାଉଥାନ୍ତି । ଯିଏ ଯାହା ଖାଦ୍ୟ ଜିନିଷ ପାଇଛି, ତାକୁ ହିଁ ଗାମୁଛାରେ ବାନ୍ଧି । ମୁଁ ଭିଡ ଭିତରେ ଦ୍ୱାରଦେଶରେ ଆକୁଳିତ ହୃଦୟରେ ମାଆବାପାଙ୍କୁ ମନେପକେଇ, ବଡମାମୁଁ କେତେବେଳେ ଆସିବେ ଉଦ୍‌ବେଗ ହୋଇ ଦେଖୁଥାଏ । ଭାଗ୍ୟ ଭଲ, ମାଛିଅନ୍ଧାରକୁ ରାସ୍ତା ବାରିବାରି ଆଠିଣିଟିଧରି ଫ୍ରେଜାର ହଷ୍ଟେଲକୁ ଫେରିଲି । ପରଦିନ ସକାଳେ ଯେଉଁ ରସଗୋଲା ୨ଣଟି ସାଙ୍ଗ ଗିରୀଶ ପଣ୍ଡା ଚୋରାଇ ଆଣିଥିଲେ, ବଣ୍ଟାହେଲା ଏବଂ କେତେ ଜଣ ସାଙ୍ଗ ସେସବୁ ପାରାୟଣ କଲୁଁ । ଏହି ମତେ ଆପାତତଃ ଅଶୁଭ ଦିନଟି ଶୁଭ ଦିନରେ ପରିଣତହେଲା । ପରବର୍ତ୍ତୀ କାଳରେ ଯେତେବେଳେ ନୂଆ ମହାରାଜାଙ୍କର ପୂର୍ଣ୍ଣକ୍ଷେତ୍ର ବା ରାଜ୍ୟାଭିଷେକ ଦିବସ ପାଳିତ ହୁଏ । ସେତେବେଳେ ଆମେ ଏହି ବାତ୍ୟାବିକ୍ଷୁବ୍‌ଧ ଭୋଜିଟିକୁ ମନେପକାଉ ।



## ॥ ସତେଇଶ ॥

ନଅଙ୍କ ଦୁର୍ଭିକ୍ଷ ଦାଉରୁ ବର୍ତ୍ତୀଥିବା ମୋର ଜେଜେ ବାପା ହରି ଶତପଥୀଙ୍କ ପାଖରେ ଏତେ ସାହିତ୍ୟିକତା ଥିଲା ବୋଲି ଗାଁବାଲା କେହି ଜାଣିନଥିଲେ । ଜମି ଥିଲା, କିନ୍ତୁ ଚାଷ ବୋଲି ପାଇଁ ଯେଉଁ ସମ୍ବଳ ଦରକାର, ତାହା ତାଙ୍କର ନଥିଲା । କାଗଜ ପତ୍ରରେ ହୁଏତ ଦେଢଶହ ମାଣ ଜମି ହେବ । ବାପା ଭୋଳାନାଥ କାଠକାମ ଶିଖିଥିଲେ ଏବଂ ସୁନ୍ଦର ସୁନ୍ଦର କବାଟ ତିଆରିକରୁଥିଲେ । ନିର୍ନିମେଷ ନୟନରେ ନିହାଣ ଚଳାଇ ତାଙ୍କ ଆଖିରେ ପରଳ ପଡିଯାଇଥିଲା । ଯୁବା ସମୟରେ ବାପପୁଅ ଦୁହେଁ ଲେଖନ ଚଳାଇବାରେ ବ୍ରତି ହେଲେ । ଜେଜେ ବାପା ଖୁବ୍ ଦୂର ଧଳଭୂଇଁ ଅଞ୍ଚଳରୁ ପୋଥିବେନ୍ଧା ଆଣନ୍ତି ଏବଂ ଲେଖନରେ କପିକରନ୍ତି । କାଳକ୍ରମେ ରାମାୟଣ, ମହାଭାରତ, ଓ ହରିବଂଶ ତଥା ପୁରାଣ ନକଲ କରିପକାନ୍ତି ଓ ମୋର ଜ୍ଞାନହେଲା ବେଳକୁ ସେ ପୋଥିମାନ ଖଟୁଲୀରେ ସଜାଇ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ରୂପରେ ସଜାହୋଇ ଠାକୁର ଘରେ ପୂଜା ପାଉଥାନ୍ତି । ବାପାଙ୍କ କାମ ହେଲା, ତାଳ ଗଛରୁ ଉପଯୁକ୍ତ ପତ୍ର ସଂଗ୍ରହକରିବା ଏବଂ କାଟି ଶୁଖାଇବା ଓ ରଙ୍ଗଦେବା । ସେ ସବୁ ପୋଥି ମୁଁ କେବେ ଲେଉଟାଇ ନାହିଁ । ବାପ ପୁଅ ଦୁହିଁଙ୍କ ଅନ୍ତେ ସେସବୁ ପୋଥି ଦେଇଦେଲି ଭୁବନେଶ୍ୱର କେଦାରନାଥ ପ୍ରତିଷ୍ଠାନକୁ । ସବୁପୋଥି ଆଲମାରୀ ଭିତରେ ଯତ୍ନରେ ରଖା ଯାଇଛନ୍ତି ଏବଂ ମୁଁ ଥରେ ଦୁଇଥର ଯାଇ ସେମାନଙ୍କୁ

ଦର୍ଶନକରି ଆସିଛି ଇଷ୍ଟଦେବଙ୍କର ତଥା ସ୍ୱର୍ଗତ ପିତୃପିତାମହଙ୍କର ସ୍ମୃତି, ପ୍ରତୀକକୁ। ଉଭୟ ବାପା ଏବଂ ନନା ବହିକୁ ଆଦର କରୁଥିଲେ ଏବଂ ପ୍ରଥମ ଖଣ୍ଡ ବୈଦେଶ ବିଳାସର ଛିଣ୍ଡା କପିଟିଏ ଘରେ ଥିଲା। ସେମାନେ ଗାଧୋଇ ଆସି ଭାତ ଖାଇବା ସମୟ ପର୍ଯ୍ୟନ୍ତ। ପିଣ୍ଡାରେ ଛଣ ଦଉଡି ଖଟ ପକାଇ ପାରାୟଣ କରୁଥିଲେ ଏବଂ ଗୁଣୁ ଗୁଣୁ ହୋଇ ଗୀତ ପଦକୁ ପଦ ମୁଖସ୍ତ କରୁଥିଲେ।

ସାହିତ୍ୟ ଓ ସଙ୍ଗୀତ ରସ ଉପଲବ୍‌ଧି କରିପାରୁ ନଥିବା ମଣିଷକୁ ଶାସ୍ତ୍ରକାରମାନେ ପଶୁ ଆଖ୍ୟା ଦେଇଥାନ୍ତି। ଯେମିତି ବିଦ୍ୟାବିହୀନ ଲୋକକୁ ପଶୁ ବୋଲି କହନ୍ତି। ସାହିତ୍ୟ ଓ ସଙ୍ଗୀତକୁ ଅଗୁରୁବିଦ୍ୟା କହିଲେ କିଛି ଭୁଲ ହେବ ନାହିଁ। ଚୋର ବାଲ୍ମିକୀ ମୁହଁରୁ ଶ୍ଳୋକ ରୂପରେ କବିତା ଆପେ ଆପେ ବାହାରି ଆସିଲା, "ଶ୍ଳୋକ ରୂପେ ମୋହିଲା ସର୍ବ ଅବନେ"। କେକେ ଗୀତଗାଇ ମୋତେ ଶୁଆଉଥିଲେ। ସେ ନିକେ ଗୋଟିଏ ସୁଆଙ୍ଗ ଲେଖିଥିଲେ- ସୁଭଦ୍ରା ହରଣ ସୁଆଙ୍ଗ। ସୁଆଙ୍ଗରେ ସେ ନିକେ ସୁଭଦ୍ରା ରୂପରେ ନାଚୁଥିଲେ। ତାଙ୍କ ବହିରେ ପ୍ରଥମ ବନ୍ଦନା ଗୀତଟି ହେଲା- "ଅଇଲେ ଦେଖ ଭୋଳା ମହେଶ, କର୍ପୂର ଚନ୍ଦନ ଛାଡି ଗୁଟି ଯାକ ପାଉଁଶ," ଗାଁର ଲୋକେ ବ୍ୟଙ୍ଗ ବିଦ୍ରୂପ ଛଳରେ ସେହି ଧାଡିକୁ ବିକଳ୍ପ କରିଥାନ୍ତି, "ଅଇଲେ ଦେଖ ଭୋଳା ବାପାଙ୍କ ଇଶ" ଭୋଳା ମୋ ବାପାଙ୍କ ନାମ। ତାଙ୍କ ବାପା ହରିହର, ତାଙ୍କ ଇଶ ହେଲେ ମହେଶ। ସୁଆଙ୍ଗ ଆରମ୍ଭରେ ଶିବଙ୍କୁ ଏହି ରୂପରେ ଗାଁ ଲୋକେ କେକେବାପାଙ୍କ କବିତା ଧାଡିକୁ ବିକୃତ କରିଥା'ନ୍ତି। ବର୍ଣ୍ଣବୋଧ ପଢିଲା ବେଳେ ମୁଁ ଅମରକୋଷ ମଧ୍ୟ ମୁଖସ୍ତ କରୁଥିଲି। "ସୁରହସ୍ଙ୍ଗ ସ୍ୱର ଲୋକ ତ୍ରିଲିବ ତ୍ରିଲ ଶାଳୟ" ଠାରୁ "ଅମରା ନିର୍ଜଳା ଦେବା" ପର୍ଯ୍ୟନ୍ତ ପ୍ରାୟ ସାତ ଆଠଟା ଶ୍ଳୋକ ମୁଖସ୍ତ ଥିଲା, ବର୍ଣ୍ଣବୋଧର "ଭାଲୁ" ପଢିବା ପର୍ଯ୍ୟନ୍ତ। ମୁଁ ଯେତେବେଳେ ମାଇନର ସ୍କୁଲରେ ପଢୁଥାଏ, ସେହି ସମୟରେ cover page ନଥିବା ବୈଦେହୀଶ ବିଳାସର ପ୍ରଥମ ଭାଗଟି, ଯାହାର ଆରମ୍ଭ "ବଳଇ ଦିନ ବାନ୍ଧବ ହରି " ପାଦଟିକା ଦେଖିଦେଖି ମୁଁ ପଢିବାର ଏବଂ ବୁଝିବାର ଚେଷ୍ଟା କରିଥିଲି।

ଘରେ ଆହୁରି କେତେ ବହି ପଡିଥିଲା। ସେଗୁଡ଼ିକ ଭିତରୁ ଅସଲ ବହିଟିଏ ହେଲା 'ବାରୁଣୀ' ନାମକ ପତ୍ରିକା। ସେଇଟି ଶନିବାର ହାଟରୁ କିଣିଆଣିଥିଲା ମୋର ନନା ଉମାକାନ୍ତ। ବହିଟି ମୁଁ ପିଇ ଯାଉଥିଲି। ପ୍ରାୟ ଅବୋଧ୍ୟ ହେଲେ ବି ମୋର ରୋମାଣ୍ଟିକ ଚେତନାକୁ ଅତିମାତ୍ରାରେ ଜାଗ୍ରତ କରିଥିଲା। ସହିଁରେ ଥିଲା ଅତି ସୁନ୍ଦର କବିତା, ଗଳ୍ପ, ହାସ୍ୟରସ ଛବି। ମନେପଡୁଛି, ଉପେନ୍ଦ୍ର କିଶୋର ଦାସ ଓ ନିକୁଞ୍ଜ କିଶୋର ଦାସଙ୍କ କବିତା "ମାୟା ପୁରୀ ସୁନା କାଠି ଛୁଇଁ ଦେଲା କିଏରେ, ଛାଇ ଘୋଡା ନିଦ ମଡା ନିକାଞ୍ଚନ

ଦେଖେ ମଧୁର ଆଳତୀ, ଲକ୍ଷ ଦ୍ୱୀପ ଜାଳି ଦେଲାରେ ।" ଗପ ଥିଲା "ଡାହାଣୀ ଆଲୁଅ", "ଭୂତକୋଠି", "ମଲାଜହ୍ନ" ଆଦି । ଗଳ୍ପ ପଂକ୍ତି ଏବେବି ମନେରହିଛି । "ଭୂତକୋଠି" ଆରମ୍ଭ ହେଉଛି, "ପୁଣି ବର୍ଷା ହେଲା, ପବନ ପହୁଡା ତାଳ ଗଛର ମଥାନ ଉପରେ ଯୋଡି ବଉଦ ମେଳନ, ନାଗରା ବଜାଇ"। "ଜୀଅନ୍ତା ଅନ୍ଧାର ଖଣ୍ଡ ପରି ବାଦିରିଟା ତଳକୁ ଖସି ଆସିଲା ଏବଂ ପୁଣି ବର୍ଷା ହେଲା।" ଏମିତି ଶୈଳିର ଲେଖା। ସେସବୁ ଗଳ୍ପ ବହୁତ ମାଦକତା ଆଣିଦେଉଥିଲା ଆମର ପିଲା ମନରେ। ଫ୍ରେଜାର ହଷ୍ଟେଲରେ ୧୯୨୮ ସାଲରେ ରହିଲା ବେଳରୁ ଅଗ୍ରଜ ପ୍ରତିମ କୃଷ୍ଣ ପାଣିଗ୍ରାହୀଙ୍କର ଚିହ୍ନାପରିଚୟ ହେଲା, ପରେ ସେ ପାଞ୍ଚଟଙ୍କାରେ ମିଳୁଥିବା କାଳିଦାସ ଗ୍ରନ୍ଥାବଳୀ କିଣିଦେଲେ। ସେଇଦିନ ପାଖରୁ ମୋର ସଂସ୍କୃତ ପ୍ରୀତି ବଢିଗଲା ଏବଂ ରାଶି ରାଶି ସଂସ୍କୃତ ଶ୍ଳୋକ ମନେରଖିଲୁ। ସେଇ ଫ୍ରେଜାର ହଷ୍ଟେଲରେ କୃଷ୍ଣ ପାଣିଗ୍ରାହୀଙ୍କ ପରେ ମୁଁ ହାତଲେଖା ପତ୍ରିକା "ଜାଗରଣ"ର ସମ୍ପାଦକ ହେଲି। ନବମ ଶ୍ରେଣୀରେ ପଢୁଥିବା ବେଳେ ସାହିତ୍ୟ ପ୍ରତି ମୋର ପ୍ରୀତି ସେହି ସମୟରୁ ଉନ୍ମେଷହେଲା ଏବଂ ଦଶମ ଶ୍ରେଣୀରେ ପଢିଲା ବେଳକୁ "ସମୁଦ୍ରର ଜଳ କିପରି ଲୁଣିଆ ହେଲା" ନାମକ ମୋର ଲେଖାଟି "ପଞ୍ଚାମୃତ" ବୋଲି ପତ୍ରିକାରେ ପ୍ରକାଶିତ ହେଲା। ନିଜସ୍ୱ ଲେଖା ଛପାରେ ଦେଖି ଯେଉଁ ଆନନ୍ଦ ପାଇଥିଲି, ତାହା ପରବର୍ତ୍ତୀ କାଳରେ ସାହିତ୍ୟ ସମ୍ମାନର ଆନନ୍ଦ ଅପେକ୍ଷା ବହୁତ ବେଶି।

ସେତିକିବେଳେ ଯାତ୍ରା, ଲୀଳା, ସୁଆଙ୍ଗ, ଥିଏଟର, ପାଲାଗାଆଣ ଆଦି ନାନା ପ୍ରକାର entertainment ବିନା ପଇସାରେ ମିଳୁଥିଲା ଏବଂ ଅନୁମତି ନେଇ ଆମେ ରାତି ରାତି ଉପଭୋଗ କରୁଥିଲୁ। କୌଣସି ପ୍ରକାର ମନୋରଞ୍ଜନରେ ଝିଅ ବା ନାରୀମାନଙ୍କର ଆବିର୍ଭାବ ନଥିଲା । ପୁରୁଷପିଲାମାନେ ଷ୍ଟ୍ରୀ ପାର୍ଟ କରୁଥିଲେ। ସେହି ସମୟରେ ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି, ମୋହନ ଗୋସ୍ୱାମୀଙ୍କ ଲିଖିତ ବହିସବୁ ଅଭିନିତ ହେଉଥିଲା ଏବଂ ଏହାକୁ ଦେଖି ଲୋକମାନେ ପାଗଳ ପ୍ରାୟ ରାତି ରାତି କଟାଉଥିଲେ। ଆଉ ଯାତରା ସୁଆଙ୍ଗର ଗୀତ ସର୍ବତ୍ର ଲୋକଙ୍କ ମୁଖରେ ଶୁଣାଯାଉଥିଲା। ସିନେମା ଯାଗାରେ ବାଇସ୍କୋପ୍‌ର ଜୋର ପ୍ରଚଳନଥିଲା। ମଦନ ଥିଏଟରର ବାଇସ୍କୋପ୍ ଛବି ରାସ୍ତାଘାଟରେ ଦେଖାଯାଉଥିଲା। ବନ୍ଧୁକ ଫୁଟେ, ଧୂଆଁ ଦିଶେ, କିନ୍ତୁ ଶବ୍ଦ ହୁଏନି। ବାଘ ଗୁଳିରେ ବିଦ୍ଧ ହୋଇ ଛଟପଟ କରେ, କିନ୍ତୁ ପାଟିରୁ ଗର୍ଜନ ଶୁଭେନି। ମଝିରେ ମଝିରେ କେବେ କେମିତି ଟୁରିଂ ସିନେମା ଆସେ। ଯେଉଁଠି ଥିଏଟର ହଉଥିଲା, ସେଇଠି ବେଳେବେଳେ ପାଣି ଜମିଯାଏ। ଆମେ ଇଟା ଓ ପଟାକୁ ବେଞ୍ଚ କରି ପାଣିରେ ଗୋଡରଖି ଦୁଇ ଅଣା ପଇସା ଦେଇ ଟିକଟ କାଟି ବାଇସ୍କୋପ୍ ଦେଖୁ। ଦୁଇଟି ଫିଲ୍ମ ଦେଖିଛୁ। ଗୋଟିଏ "ଆଲ୍ଲାଉଦିନ"

ଛବିଟି ଦେଖିଥିଲୁ, ଯହିଁରେ ପଦ୍ମିନୀକୁ ହୀରୋ ଆଇନାରେ ଦେଖିଥିଲେ । ଆଉ ଗୋଟିଏ ଛବି ହେଉଛି "ଜୟଚନ୍ଦ୍ର ଓ ପୃଥ୍ୱିରାଜ" କଥା । ବିଶେଷ କିଛି ଆନନ୍ଦ ପାଉ ନଥିଲୁ ସେ ଛବିରୁ । କେବଳ ଗୋଟିଏ ନୂଆ କିନିଷ ଦେଖି ଖୁସି ହେଉଥିଲୁ ।

ବହି ପଢିବାରେ ଆଗ୍ରହଥାଏ, ବିଶେଷତଃ ପାଠ୍ୟାତିରିକ୍ତ ବହି କ୍ଲାସର ଲାଇବ୍ରେରୀରୁ ସାର୍‌ମାନେ ଦିଅନ୍ତି । ଯେଉଁ କ୍ଲାସପାଇଁ ଯେଉଁ ବହି ଉପଯୁକ୍ତ, ତାହା ଶିକ୍ଷକ ମାନେ ତାଙ୍କ ଆଲମାରୀରେ ରଖିଥାନ୍ତି । ଆମକୁ ଦିଅନ୍ତି ହସ୍ତାକୁ ହସ୍ତା । ଯେଉଁସବୁ ବହି ପଢିଥିଲି ସେତେବେଳେ, ତାହା ହେଲା Robinson Crusoe, Gulliver's Travels, Grimm's Fairy Tales, Folk Tales of Bengal, Folk Tales of Orissa, ଇତ୍ୟାଦି ଓ ଛୋଟଛୋଟ ପିଲାଙ୍କପାଇଁ ଉଦ୍ଦିଷ୍ଟ ବଡ ବଡ ଅକ୍ଷର ଇଂରାଜୀ ବହି । ମନୋରଞ୍ଜନପାଇଁ ଆମେ ଏଣେ ତେଣେ ବୁଲୁଥିଲୁ ଶନିବାର, ରବିବାର ବା ଛୁଟିଦିନ ମାନଙ୍କରେ । ରାଣିବାଗରେ ବୁଲା ବୁଲି, ସେଠି ଛୋଟ ପିଲାଙ୍କ ରେଳ ଲାଇନ, ହରିଣ, ଅଜଗର, ଭାଲୁ ଆଦି ଜୀବଜନ୍ତୁ, ଭଞ୍ଜପୁର ପାଖରେ ଚିଡିଆଖାନାରେ ବଙ୍କା ଲୁହାଛଡରେ ଆବୃତ୍ତ ବାଘ, ଭାଲୁ, ଘୋଡାଶାଳ, ନୂଆ ତିଆରି ହୋଇଥିବା ଚକ୍‌ଚକ୍ କରୁଥିବା ଶଂଙ୍ଖପଟା ମନ୍ଦିର, ବେଲଗଡିଆ କୋଠି ପାଖ ପାଣିଟାଙ୍କି, ସ୍କୁଲ ପାଖ ଇଲେକ୍‌ଟ୍ରିକ ପାଓ୍ୱାର ହାଉସରେ ଭୀଷଣ ଶବ୍ଦ କରି ଭୂଇଁ କମ୍ପାଇବା ଡବ୍ ଡବ୍ ଶବ୍ଦ କରି ଘୁରୁଥିବା ଲୁହାଚକ ଦେଖିବା ଆଳରେ, ସମୟ କଟାଇବାର ଏହିଗୁଡିକ ଥିଲା ଉପାଦାନ । ଯାତ୍ରା ଗାଆଣ କୌଣସି ଦିନ ଫାଙ୍କା ଯାଏନି ।

ବାରିପଦାକୁ ସେତେବେଳେ ଚରାଭୂଇଁ କରିଥାନ୍ତି କଟକ ଯାଜପୁର ଆଡର ପାଲାବାଲା, ଯାତ୍ରା ଓ ଥିଏଟରବାଲା ଇତ୍ୟାଦି । ନରିଆ ଯୋଗି ପୁଅ ହରିଆ ଯୋଗି ଏବଂ ପରମାନନ୍ଦ ସରଣଙ୍କ ପାଲା ଗାଉଣା ପ୍ରାଣ ମତାଣିଆ । ରାତିରାତି ବିତିଯାଏ ଗାଉଣା ଦେଖିଶୁଣି । ଉପେନ୍ଦ୍ର ଭଞ୍ଜ, ଦୀନକୃଷ୍ଣ ଆଦି ଲେଖକଙ୍କର ବହି ସବୁ ପାଲାରେ ପରିବେଷଣ କରାଯାଉଥିଲା ଏବଂ ଓଡିଆ ସାହିତ୍ୟରେ ପରମ ଉତ୍ସ ହେଲା ଏହିଗୁଡିକ । ବାଦି ପାଲା ଦେଖିବାପାଇଁ କେତେ ଲୋକ ଗୁଣ୍ଡ ହୁଅନ୍ତି କହିହେବ ନାହିଁ । ରାତାରାତି ଧରି ୧୦-୨୦ ରାତି ପର୍ଯ୍ୟନ୍ତ । କିଏ ଯେ ସେମାନଙ୍କୁ ପଇସା ଦିଏ, ଆମେ ଜାଣିନୁ । ଆମର ମୁଖସ୍ତ ରହିଯାଏ ଅନେକ ଧାଡି ଶୁଣି ଶୁଣି ।

ଦାସକାଠିଆ କଦାପି ପାଲା ଗାଉଣାର ବିକଳ୍ପ ହୋଇପାରେ ନାହିଁ । ମନୋରଞ୍ଜନ କହିଲେ ସେତେବେଳେ ବଙ୍ଗଳା ଥିଏଟର ନାମ ଉଲ୍ଲେଖଯୋଗ୍ୟ । ଚାପଲ ଓ ବଡ ପୋଖରି

ହୁଡାରେ, ଆର୍ଟ ଥିଏଟର ରଙ୍ଗ ମଞ୍ଚରେ ଯେଉଁ "କର୍ଣ୍ଣାର୍ଜୁନ" ନାଟକ ଅଭିନିତ ହୋଇଥିଲା, ଏବଂ ଯହିଁରେ କର୍ଣ୍ଣ ରୂପେ ଖ୍ୟାତନାମା ଅଭିନେତା ବଲାଇ ବାନାର୍ଜୀ ଯେଉଁ ଅଭିନୟ କରିଥିଲେ, ତାହା କଲିକତା ଥିଏଟର ସଦୃଶ। ପ୍ରଥମ ଦୃଶ୍ୟରେ ଅବତୀର୍ଣ୍ଣ ହୋଇ ପ୍ରାତଃ କାଳୀନ ସୂର୍ଯ୍ୟଦେବଙ୍କୁ ନାଟକୀୟ ବେଶ ଓ ଭଙ୍ଗୀରେ ଛିଡାହୋଇ ଅର୍ଘ୍ୟ ଦେଉଥାନ୍ତି। ସେତେବେଳେ ତାଙ୍କୁ ଦେଖିଲେ ଆମେ ଭାବୁ, ସେ ମର୍ତ୍ତ୍ୟର ମାନବ ନୁହଁନ୍ତି, ଏ ଯୁଗର ମାନବ ନୁହଁନ୍ତି, ମହାଭାରତ ଯୁଗର। ତାଙ୍କର ଗୋଡତଳେ ପଡିଯିବାପାଇଁ ଇଚ୍ଛାହୁଏ। କି ସ୍ୱାସ୍ଥ୍ୟ, କି ଚେହେରା ତାଙ୍କର ! ସ୍ଥାନୀୟ ଥିଏଟରରେ ମଧ୍ୟ ସେତେବେଳର ବାରିପଦା ବଡ ଉନ୍ନତ ଥିଲା। ବଙ୍ଗଳା ନାଟକ ଓଡିଆରେ ଅନୁବାଦକରି ସ୍ଥାନୀୟ ଓଡିଆ ତଥା ବଙ୍ଗାଳୀ ଶିଳ୍ପୀମାନେ ନାଟକରେ ଅଭିନୟ କରୁଥିଲେ, ଯୁବିଲି ଲାଇବ୍ରେରୀ ପଡିଆରେ, ମହାରାଜାଙ୍କ ପୃଷ୍ଠପୋଷକତାରେ। ରିଏଲିଷ୍ଟିକ ଥିଏଟର ମଧ୍ୟ ସେମାନେ କରିବାର ଚେଷ୍ଟାକରିଥିଲେ। "ଚନ୍ଦ୍ରଗୁପ୍ତ" ନାଟକରେ ସେଲ୍ୟୁକ୍ଲେଶ କଟାମୁଣ୍ଡ ଷ୍ଟେଜ ଉପରେ ଦେଖେଇବା କଥା। ଅନେକ ବିଚାର-ବିମର୍ଷ କରି ଠିକ୍ ହେଲା ଯେ, ଷ୍ଟେଜର ଫ୍ଲୋରରେ ଗୋଟିଏ ଫାଙ୍କା ରହିବ। "ସେଲ୍ୟୁକ୍ଲେଶ" ପାର୍ଟ କରୁଥିବା ଅଭିନେତା ସେ ଗାତ ଭିତରେ ପଶିଯିବ, ଯେମିତି ମୁଣ୍ଡଟି ତାର ଷ୍ଟେଜ ଫ୍ଲୋର ଉପରେ ରହିବ। ବାହା ବାହା ମିଳିବ। ଲୋକଟିର ଉଚ୍ଚତା ମାପ ନେଇ ନଥିବାରୁ ସେଲ୍ୟୁକ୍ଲେଶ ଯେତେବେଳେ ଖସିପଡିଲା ସେତେବେଳେ ସିଏ ଅଧାରେ ରହିଗଲା ଏବଂ ତଳୁ ଲୋକମାନେ ତାଙ୍କ ଗୋଡଧରି ଟାଣି ନେବାରେ ଚେଷ୍ଟାକରିଥିଲେ। ନାଟକର ଅକାଳରେ ଅଧଃପତନ ହେଲା। "ସାହାବେଜ" ନାଟକରେ ବନ୍ଧୁକର ଗୁଳି ଫୁଟାଇବା କଥା ଥିଲା। ଧୂଆଁ ଓ 'ଡୋ' ଶବ୍ଦ ବାହାର କରିବାପାଇଁ ଉଦ୍ଦିଷ୍ଟ ଜଣୈକ କନେଷ୍ଟବଳ ବ୍ଲେଙ୍କ ଫାୟାର କରିବା କଥା। କିନ୍ତୁ ଭୁଲରେ କନେଷ୍ଟବଳଟି ଅସଲ ଗୁଳିକୁ କାଢିଲାନାହିଁ। ଅତଏବ ଫାୟାର କଲାବେଳକୁ ପ୍ରକୃତ ଗୁଳିଟି କାନ ପାଖ ଦେଇ ସାୟଁକିନା ଚାଲିଗଲା ଏବଂ ଷ୍ଟେଜ ପଛପଟକୁ ଟିଣରେ ପ୍ରଚଣ୍ଡ ଶବ୍ଦକରି ବାଜିଲା। ସେଇଠି "କଣ ହେଲା", "କଣ ହେଲା" ଶବ୍ଦରେ ଥିଏଟର ବନ୍ଦହେଲା ଏବଂ ପରଦା ପଡିଲା। ପ୍ରକୃତ ହତ୍ୟାକାଣ୍ଡଟା ଘଟି ଯାଉଯାଉ ରହିଗଲା। ଏମିତି କେତେ କେତେ ସ୍ମରଣୀୟ ଘଟଣା। ବିନା ଟିକଟରେ ବି ଥିଏଟର ହୁଏ। ଗୋଟିଏ ଜାତୀୟ ଉତ୍ସବ ପରି ଦିନଟି ଜଣାଯାଏ।

ମହାରାଜାଙ୍କର ଜନ୍ମ ଦିନରେ ଏମିତି ଥିଏଟର ଗୋଟିଏ ଅଧେ ହୁଏ। ମୁଁ ନିଜେ 'ଗଜଢଧବ' ନାମକ ଏକାଙ୍କିକା ଲେଖି ଅଭିନୟ କରାଇଥିଲି ଓ କରିଥିଲି। ସେ

ବିଷୟରେ କହିସାରିଛି । ମୁଁ ଯେଉଁ ଓକିଲଙ୍କ ରୋଲ କରୁଥିଲି, ତାଙ୍କରି ପୋଷାକପତ୍ର, ତାଙ୍କ ସ୍ତ୍ରୀଙ୍କ ଅନୁମତିରେ ମାଗିଆଣି, ନିଜେ ପିନ୍ଧି ଷ୍ଟେଜରେ ବାହାରିଲା ବେଳକୁ, ଓକିଲଙ୍କ ସାନପୁଅଟି ଚିତ୍କାର କଲା- "ମା' ମା' ଦେଖ ବାବାଙ୍କୁ ଦେଖ ।" ସିଏବି ଏଇଠି ହାସ୍ୟରୋଳର ସୂତ୍ରପାତକଲା ।

ରାତିରାତି ଧରି ଆମେ ବସି ବାଦିପାଲା ଦେଖୁଥିଲୁ । ସକାଳ ପାହିଯାଏ । ମାଇଲ ମାଇଲ ଧରି ଆମେ ଜଙ୍ଗଲିଆ ରାସ୍ତା ଦେଇ ଯାଉଥିଲୁ ପାଲା ଦେଖିବାପାଇଁ । କେବଳ ଯେ ସହରରେ ଏହା ସିମିତଥିଲା ତା ନୁହେଁ । ବାରିପଦାରେ ସବୁ ବଡବଡ ଲୋକ ତଳେ ସତରଞ୍ଜିରେ ବସି ତନ୍ମୟହୋଇ ଉପଭୋଗ କରୁଥିଲେ ଉପେନ୍ଦ୍ରଭଞ୍ଜ, ଦୀନକୃଷ୍ଣ, ଅଭିମନ୍ୟୁ ସାମନ୍ତସିଂହାର, ରାଧାନାଥ ରାୟ, ଗଙ୍ଗାଧର ମେହେର ଆଦି କ୍ଲାସିକ୍ ଏବଂ ରୋମାଣ୍ଟିକ, ଆଧୁନିକ ଓ ପ୍ରାଚୀନ କବିବର୍ଗଙ୍କୁ ପାଲାଗାଉଣ ମାଧ୍ୟମରେ । ଅନେକ କାବ୍ୟ ପ୍ରତିଭାଙ୍କୁ "ଭକ୍ତପ୍ରଦୀପ"ର ସମ୍ପାଦକ ରାଧାଗୋବିନ୍ଦ ଦାସ, ପରମାନନ୍ଦ ଆଚାର୍ଯ୍ୟ, ମହେଶ୍ୱର ନାୟକ, ରାଧାନାଥ ମହାନ୍ତି, ଉମେଶ ମହାନ୍ତି, ମହେଶଚନ୍ଦ୍ର ମହାପାତ୍ର, ଯୋଗେଶଚନ୍ଦ୍ର ରଣା ଓ ଅନ୍ୟାନ୍ୟଙ୍କ ଗହଣରେ ଦେଖିଛୁ ।

ପାଲା ଗାଉଣର ଜଣେ ଟିପିକାଲ ରସିକ ହେଲେ ଶ୍ରୀ କୈଳାସ ଚନ୍ଦ୍ର ପତି । ଦୀର୍ଘକାୟ ପୁରୁଷ, ଓକିଲ ପୁଅ, ବେପରୁଆ ଲୋକ । ଲମ୍ବା ଧୋତି, ପଞ୍ଜାବି ବେକରେ ବା ହାତରେ ମଲ୍ଲିମାଳ । ରୂପା ବଟାରେ ଗଣପତି ଦୋକାନରୁ ଇଅିକିଆ ଗୁଣ୍ଡାଏବିଡି ଧରି ଆସରକୁ ଆସିଗଲେ, ପାଲାଗାଉଣ ଆରମ୍ଭହେବ । ସେହିଁ ବରାଦ କରନ୍ତି, ଶ୍ରୀ ଗାଉଣ କ'ଣ ପରିବେଷଣ କରିବେ । ଏତେ ଲବ୍ଧପ୍ରତିଷ୍ଠ ବିଦ୍ୱାନମଣ୍ଡଳୀ ଦେଖିଲେ ଶ୍ରୀ ଗାଉଣ ପ୍ରାୟ ଉନ୍ମତ୍ତ ହୋଇଯାଏ । ଥରେ ଓଦା ଭୂଇଁରେ ସତରଞ୍ଜି ପାରି ପାଲା ଚାଲୁଥାଏ । 'ସପ୍ତତାଳ ଛେଦନ' ଥାଏ ବିଷୟ ବସ୍ତୁ । ନରିଆ ଯୋଗି ତା ଗଦା ଚଅଁରକୁ ଏତେ ଜୋରରେ ଭୂଇଁରେ ଦାବିଦେଲା ଯେ, ଚଅଁରର ନେଟ ସତରଞ୍ଜି ଭେଦକରି ପୂରାପୂରି ମାଟି ଭିତରେ ପଶିଗଲା । ସେଇ ଏକା ସ୍ପିରିଟ୍‌ରେ ଉଠାଇଆଣିଲା ବେଳକୁ ଚଅଁରର ଚୂଳଉଠି ଆସିଲା, କିନ୍ତୁ ବେଣ୍ଟ ତଳେ ରହିଗଲା । ଦର୍ଶକଙ୍କୁ ଜଣାପଡିଲା, ଯେମିତି ହରିଆ ଯୋଗି ନିଜେ ରାମଚନ୍ଦ୍ର ହୋଇ ମର୍ତ୍ତ୍ୟକୁ ଆସିଛନ୍ତି । ଆଉଥରେ ବାବାଜୀ ଲାଲ ସାହେବଙ୍କ ଘରେ ପାଲା ହେଉଥାଏ । ଅତି ସମ୍ଭ୍ରାନ୍ତ ଓ ସୁଧିବର୍ଗ ତାଙ୍କ ଘର ପାଖ ମନ୍ଦିର ପାଖରେ ବସିଥାନ୍ତି । ସେଠି ଉପସ୍ଥିତ ଥାନ୍ତି ସଂସ୍କୃତ ଟୋଲରେ ପଣ୍ଡିତ ନବକିଶୋର ଶାସ୍ତ୍ରୀ- ଯାହାଙ୍କର ଟାଇଟେଲ ତିନି ଧାଡି ପର୍ଯ୍ୟନ୍ତ ଛପାଯାଏ ମୟୂରଭଞ୍ଜ କ୍ୟାଲେଣ୍ଡରରେ । ସେ ଲାଲି

ପାଟପଟରାଣୀହୋଇ ଶିକ୍ଷ୍ୟାଧ୍ୟାପକ ବସିଥାନ୍ତି । ହରିଆ ଯୋଗୀ "ସର୍ପ ଜଣାଣ"ରୁ ଆରମ୍ଭ କଲା: "କାଳ ସର୍ପ ଆପଣ କବଳ କର ପ୍ରାଣ"। ବୁଝେଇବାକୁ ଯାଇ ଯେତେବେଳେ କହିଲା- "ଭଗବାନ ଆପଣ କାଳ ସର୍ପ। ସର୍ପ ଯେପରି ପବନ ଆହାର କରେ। ସେହିପରି ଆପଣ ପ୍ରାଣୀମାନଙ୍କର ପ୍ରାଣକୁ କବଳ କରନ୍ତି"। ନବକିଶୋର ଶାସ୍ତ୍ରୀ ଉଠିବସିଲେ ଏବଂ ହରିଆ ଯୋଗୀକୁ ଚାଲେଞ୍ଜ କଲେ, ଭଗବାନ ପ୍ରାଣକୁ କବଳକରିବା କଥା କେଉଁ ଶାସ୍ତ୍ରରେ ଅଛି ? ଏବଂ ପ୍ରାୟ ଅଧଘଣ୍ଟାଏ ଧରି ବେଦ ବେଦାଙ୍ଗରୁ ଉଦ୍ଧାରକରି ନୂଆ ତର୍ଜମାକଲେ। କବିସୂର୍ଯ୍ୟ ଚିତ୍‌ପଟାଙ୍ଗ। ହରିଆ ଗାଉଣ ପ୍ରାୟ ମୂର୍ଚ୍ଛାଗତ। ନବକିଶୋର ଶାସ୍ତ୍ରୀ ଶିଷ୍ୟବୃନ୍ଦଙ୍କୁ ଧରି ପାଖ ସଂସ୍କୃତ ଟୋଲକୁ ଚାଲିଗଲେ। ଦର୍ଶକମାନେ ଯେତେ ଯାହା କହିଲେ, ସେ ବୁଝିଲେ ନାହିଁ। ଅଗତ୍ୟା ଅନ୍ୟାନ୍ୟ ଦର୍ଶକ ମଧ୍ୟ ଘରମୁହାଁ ଧରିଲେ। ପ୍ରାୟ ଅଧଘଣ୍ଟାଏ ପରେ ପୁଣି ସମସ୍ତେ ଏକତ୍ର ହୋଇ ଯିମିତି ଜଣାଣ ଆରମ୍ଭକରିଛନ୍ତି, ସେମିତି ନବ କିଶୋର ଲାଇବ୍ରେରୀରୁ ବହିପତ୍ର ଧରି ପୁଣି ସଶିଷ୍ୟ ଉପସ୍ଥିତ। ଗର୍ଜନକରି କହିଲେ, ଯେ ପର୍ଯ୍ୟନ୍ତ ଭଗବାନଙ୍କୁ ସର୍ପ ବୋଲି ପ୍ରମାଣ ହରିଆ ଯୋଗି ନ ଦେଇଛି ଏବଂ ପ୍ରାଣୀମାନଙ୍କର ପ୍ରାଣକୁ ଭଗବାନ କେମିତି କବଳ କରନ୍ତି ନବୁଝାଇଛି, ସେ ପର୍ଯ୍ୟନ୍ତ ସେ ପାଲା ସ୍ଥାନରୁ ଉଠିବେ ନାହିଁ। ତାଙ୍କ ମାଲିକ ଶିକ୍ଷା ବିଭାଗର ସୁପରିଟେଣ୍ଡେଣ୍ଟ ଯେତେ ବୁଝାଇ କହିଲେ- ଯୁକ୍ତିତର୍କ କରିଆରେ ସାହିତ୍ୟ ବା ସଙ୍ଗୀତ ଉପଭୋଗ କରାଯାଏନି, ସେ ଆଦୌ ବିଚଳିତ ନହୋଇ ବସିରହିଲେ। ସେ ଦିନ ସେତିକିରେ ପାଲା ଶେଷ।

ପାଲା ଗାଉଣ ରାତି ଦଶରୁ ଆରମ୍ଭହୁଏ, ସକାଳେ ଗୁହାଳର ଗୋରୁ ଗାଈ ଛଡାଯିବା ପର୍ଯ୍ୟନ୍ତ ଚାଲିଥାଏ। ଆମେ ନିଷ୍ପତ୍ତି କଲୁ, ଦିନେ 'ଛ'ରେ ଆରମ୍ଭକରିବୁ ଏବଂ ଏକାବେଳକେ ପ୍ରାଇଭେଟ ସ୍ଥାନରେ ସ୍ୱାମୀସ୍ତ୍ରୀ ଯୋଡବାନ୍ଧି ଶୁଣିବୁ ଉପେନ୍ଦ୍ର ଭଞ୍ଜଙ୍କ ଏମିତି ଉପାଖ୍ୟାନ, ଯାହା ଦିହକୁ ଉଷୁମ କରିଦେବ। ନିଗୁଦୀ ଭାଙ୍ଗଟେଳା ଖାଇଆସିଲେ ଆହୁରି ଉଷୁମ ଲାଗିବ। ଅନେକ ଶ୍ଳୋକପୁସ୍ତକ ଭଣ୍ଡାରରୁ ବଛାବଛା ଧାଡି ଯୋଗାଡ଼ ହେଲା। ଯଥା- "କବି ବିଚାରିଲା ବିଚିତ୍ର ହେଲା ତମ୍ବୁ ବୁଡିଲା, ନବୁଡି ସଲୀଳରେ ଭାସିଲା"। "ହେଲା ଦିନୁ ଯୌବନୀ ଦେଖିନାହିଁ ସେ ଅବନି।" "ଜାନୁ ସନ୍ଧି ପାଶେ ଦୃଷ୍ଟି ନିବେଶି; ଚାରିଗଣ୍ଡା ବୟସିତୁ ନ ମଣ୍ଡ ପୁରୀରେ" ଏମିତି ଆହୁରି କେତେ କେତେ ହରିଆ ପ୍ରାଞ୍ଜଳ ଭାବରେ ବୁଝାଇଲା। ଘୋର ଅଶ୍ଳୀଳ ହେଲା। ମେଳର ନାରୀ ଶ୍ରୋତାଗଣ ସଭାଛାଡି ଚାଲିଗଲେ। ସେଦିନ ମଧ୍ୟ ନବ କିଶୋର ଶାସ୍ତ୍ରୀଙ୍କର ଆକ୍ରମାଣାତ୍ମକ ତର୍ଜମା ଯୋଗୁଁ ସଭା ଭାଙ୍ଗିଗଲା ଏବଂ ଯେଉଁ ଉଦ୍ଦେଶ୍ୟରେ ସଭା ଡକା ହୋଇଥିଲା, ତାହା

ପଣ୍ଡହୋଇଗଲା । ସେଦିନ ରାତି ପ୍ରାୟ ସମସ୍ତଙ୍କର ଘରେ ଯୁକ୍ତିତର୍କ କଳି ତକରାଳି ହେଲା ଓ ପାଲା ନିଶା ଛାଡିଲା ।

ଗ୍ରାମବାସୀମାନଙ୍କର ସହିତ ନିଜେ ଚନ୍ଦ୍ରଭାଗା, ଲାବଣ୍ୟବତୀର ଜଳକ୍ରୀଡା ଆଦି ପାଲାବାଲାଙ୍କ ସହିତ ପରିବେଷଣ କରିଥିଲୁ । ଯଦୁନାଥ ମିଶ୍ର, କୃଷ୍ଣ ପାଣିଗ୍ରାହୀ, ଉମାକାନ୍ତ ନାନା, ଦ୍ୱାରିକା ନାଥ ମିଶ୍ର ଆଦି ଦଳରେ ଥିଲେ ଏବଂ ମୋର ପରିବେଷଣର ପ୍ରଶଂସା କରିଥିଲେ । ଏହାଛଡା ହାଇସ୍କୁଲରେ ପଢୁଥିଲା ବେଳେ ଗାଁରେ ଦିନ ଦିପହରରେ ଗ୍ରୀଷ୍ମ ଛୁଟିରେ ଘରକୁ ଯାଇ ସଙ୍ଗୀତ ଆବୃତ୍ତି କରୁଥିଲି । ସ୍ତ୍ରୀଲୋକମାନେ ମନ୍ତ୍ରମୁଗ୍ଧହୋଇ ସେସବୁ ଶୁଣୁଥିଲେ ଓ ଲୋକଗୀତର ଚମତ୍କାରିତା ଉପଲବ୍‌ଧି କରୁଥିଲେ । ବାଳକୃଷ୍ଣ ମହାନ୍ତିଙ୍କ ଗୀତାଭିନୟ- ଯଥା ସୁଶୀଳ ମାଳତୀ, ବିଜୟ ବସନ୍ତ, ଅମର ବିଳାସ, ଏବଂ ବୈଷ୍ଣବ ପାଣିଙ୍କ ହରିଶ୍ଚନ୍ଦ୍ର ଆଦି ଗୀତାଭିନୟରୁ ଆବୃତି କରି ଶୁଣାଉଥିଲି । କେଉଁ ଦିନ କେମିତି କୌଣସି କୌଣସି ଧନୀ ପରିବାର ମୋତେ ପିଠା, ମୁଡି, କଦଳୀ ଆଦି ଜଳଖିଆ ଦେଇ ଆପ୍ୟାୟିତ କରୁଥିଲେ । ହାଇସ୍କୁଲ ପାଠ ସରିଲା ବେଳକୁ ବର୍ଣ୍ଣବୋଧ, ଶିଶୁବୋଧ, କଥାବଳୀ, ସାହିତ୍ୟ କୁସୁମ, ସାହିତ୍ୟ ପ୍ରସଙ୍ଗ ଆଦି ପାଠ୍ୟ ପୁସ୍ତକର ପ୍ରତ୍ୟେକଟି ପଂକ୍ତି ପ୍ରାୟ ମୁଖସ୍ତଥିଲା ଏବଂ ହିତପୋଦେଶର ରାଶିରାଶି ଶ୍ଳୋକ ଆଜି ପର୍ଯ୍ୟନ୍ତ ମନେପଡୁଛି । ସାହିତ୍ୟର ମୂଳଦୁଆ ଏହି ପ୍ରକାରର ସ୍ଥାପିତ ହୋଇଥିଲା ଏବଂ ଏବେବି ମୋର ଧାରଣା- ଏହି ସମସ୍ତ ବହି ଯେ ପିଲାଦିନେ ପଢିଥିବ, ସେ ଆପେ ଆପେ ସାହିତ୍ୟିକ ହୋଇଯିବ । ସତ କହିଲେ, ନବମ ଶ୍ରେଣୀ ପାଖରୁ ଆମର ଓଡିଆ ପଢା ଶେଷ ହୋଇଯାଇଥିଲା ଏବଂ ଉଚ୍ଚାଙ୍ଗ କବିତା ଓ ପାଠ୍ୟପୁସ୍ତକ ପଢିବାରେ ଆମର କୌଣସି ଅସୁବିଧା ହେଉନଥିଲା । ସାହିତ୍ୟ ଉପଭୋଗ କରିବାରେ ଗର୍ବ ଓ ଆନନ୍ଦ ଆମେ ପାଉଥିଲୁ । ମୁଁ ଯେ ସଙ୍ଗୀତଜ୍ଞ ବା ମୋର ଗଳାସ୍ୱର ଖୁବ୍ କୋମଳ ଓ କରୁଣ ତା ନୁହେଁ, ବା କାଲ ଆଗରେ ମୂଳା ଚୋବେଇବା କଥା ବି ନୁହେଁ, କିନ୍ତୁ କେତେ ଆନନ୍ଦ, ଆତ୍ମୀୟତା ଗାଁରେ ଥିଲା, ତା ଅନୁମାନ କରିହେବ ।

୧୯୩୩ ସାଲ । ରେଭେନ୍‌ସା କଲେଜ । ଇଷ୍ଟ ହଷ୍ଟେଲ ବା ପ୍ରାଚୀ ଛାତ୍ରାବାସ । ପ୍ରଥମ ବାର୍ଷିକ କଳା ଛାତ୍ର ।

ସେ ଦିନ ଥାଏ ଶନିବାର । 'ସେଟାର-ଡ଼େ ନାଇଟ୍ ମାଷ୍ଟ ବି ଡିଲାଇଟ'- ଏମିତି କଥା ପ୍ରତି ଛାତ୍ରଙ୍କ ମୁହଁରେ । ପୁଣି ତାହା ଶେଷ ଶନିବାର । ଆଜିକାଲି ଯିମିତି କୋର୍ଟ କଚେରୀପାଇଁ ଦ୍ୱିତୀୟ ଶନିବାର ଛୁଟିର ଦିନ, ଅଳସୁଆମିର ଦିନ; ଆମପାଇଁ କର୍ମମୁଖର

ଉତ୍ସାହମୁଖର ଦିନ, ପୁଲକର ଦିନ ଏଇ ଲାଷ୍ଟ ସେଟର ଡେ। ଯିମିତି ଏଇ ଗୋଟିଏ ଦିନପାଇଁ ଆମେ ମାସଯାକ ଅପେକ୍ଷାକରି ବସୁ। ସେଦିନ ଷ୍ଟଡ଼ି ଆୱାର ନାହିଁ। ରୋଲ୍‌କଲ୍ ନାହିଁ, କାହାରି ଅନୁମତି ଲୋଡ଼ା ନାହିଁ, ଡାଉକୁଦ, ଖେଳ ତାମସା ଯାହା କର। ରେଳ ଷ୍ଟେସନକୁ ଯାଅ, ପ୍ଲେଟଫର୍ମରେ ପୁରୀ ପାସେଞ୍ଜର ନ ହେଲେ ଡାକଡେର ପାସେଞ୍ଜର ଦେଖ, ମୁହଁସଞ୍ଜରେ। ବେଳ ଥିଲେ ମହାନଦୀ ପୋଲ, ଆନିକଟ ଦେଖ; ପଠାକୁ ଯାଇ ବଣି ବା ବଗର ସମାବେଶ ଦେଖ ବା ଶିମୁଳୀ ଫୁଲର ଫୁଟାଣି ଉପଭୋଗ କର, ଖୁବ୍ ଚଲାବୁଲାକଲେ ଭୋକଲାଗିବ।

ପ୍ରତି ଶନିବାର ରାତିର ଭୋଜନ ହଷ୍ଟେଲର ଆକର୍ଷଣ, କିନ୍ତୁ ଶେଷ ଶନିବାର ରାତିଭୋଜନ ରଜାରାଜୁଡ଼ାଙ୍କ ଜନ୍ମଦିନ ବା ଶ୍ରାଦ୍ଧଦିନର ଭୁରିଭୋଜନକୁ ବଳିପଡ଼େ। ଯେମିତି ଲୋଭନୀୟ, ସେମିତି ପର୍ଯ୍ୟାପ୍ତ। ଦୁଇ ତିନି କିସମର ମିଠା, ପାୟସ। ଖଜୁରୀ ଓ କିସମିସ୍ ଖଟା। ଶନିବାର କାନିକା, ଶେଷ ଶନିବାର ପଲାଉ। ମାଂସର ଚପ୍, କଟଲେଟ୍ ଏବଂ ଝୋଳ। 'ସାଦା'ଙ୍କପାଇଁ ଯଥେଷ୍ଟ ମିଠା ଓ ଛଅସାତ ପ୍ରକାରର ତରକାରୀ। ଶେଷକୁ ପାସିଂ ସୋ ସିଗାରେଟ୍ (ଦଶଟାକୁ ଦିଅଣା) ଅଭାବେ ଇଞ୍ଜିନ ମାର୍କା, ଗୋଲାପସୁନ୍ଦରୀ, ସାହେବ ଫଟୋ, ଗାଇମାର୍କା, ଚକ୍ରଧରପୁରିଆ ବିଡ଼ି। ମୋର କିନ୍ତୁ ବାରିପଦା ଗଣପତି ଦୋକାନର ଇଞ୍ଚିକିଆ ଛୋଟଛୋଟ ବିଡ଼ି, ଗୋଟାକ ପରେ ଗୋଟାଏ।

ଏସବୁ ଦୁର୍ଲଭ ଖାଦ୍ୟ ପାନୀୟପାଇଁ କଲେଜ ଫି ସାଙ୍ଗକୁ ଥାଏ ସର୍ବମୋଟ ମାସିକ ଖର୍ଚ୍ଚ ଅଠର ଟଙ୍କା। ମାସକର ଶେଷ ସପ୍ତାହର ମୁଣ୍ଡିମାରିବାପାଇଁ ଅନ୍ୟ ଏକ ଆକର୍ଷଣ ହେଉଛି- ମୋହନ ଗୋସ୍ୱାମୀ, ବୈଷ୍ଣବ ପାଣି, ବାଳକୃଷ୍ଣ ମହାନ୍ତି ଆଦି ସ୍ୱନାମଧନ୍ୟ ଲୋକପ୍ରିୟ ଯାତ୍ରାସୁଆଙ୍ଗକାରୀଙ୍କ ମନମୁଗ୍‌ଧକାରୀ ଅଭିନୟ; ନଚେତ୍ ନରିଆ, ହରିଆ ଯୋଗୀ, ପରମାନନ୍ଦ ଶରଣଙ୍କ ମନମତାଣିଆ ପାଲା ଗାଉଣ- ବିନା ପଇସାରେ, ଖୋଲା ଆକାଶ ତଳେ। ଆର୍ଟ ଥିଏଟରେ, ବଳଙ୍ଗୀ ଥିଏଟର କଥା ଛାଡ଼। ବଲାଇ ବେନାର୍ଜିଙ୍କ କର୍ଣ୍ଣାର୍ଜୁନ ନାଟକର କର୍ଣ୍ଣ ଅଭିନୟରେ ଯେ ଦେଖିଛି, ସେ ମିନାର୍ଭା ବା ରଙ୍ଗମହଲ ଦେଖିବାକୁ ମନବଳାଇବ କାହିଁକି।

କଟକରେ ସ୍ଥାୟୀ ରଙ୍ଗମଞ୍ଚ ନାହିଁ। କେବଳ ବକ୍‌ସି ବଜାରରେ ହାଲମୁନ୍ ଟକିକ୍ ବୋଲି ସିନେମା ହଲ୍‌ଟିଏ ଥାଏ। ସେଇଠି କେବେ କିମିତି କଳାଧଳା ଭାଷାହୀନ ଇଂରାଜୀ ବା ବଙ୍ଗଳା ଫିଲିମ୍। ଦୁଇ ବା ତିନି ଅଣା ଟିକେଟ। ପରଦା ପାଖକୁ ଲାଗି ବେଞ୍ଚ। ଛବି ଦେଖିଲା ବେଳେ ଜଣାପଡ଼େ, ଯିମିତି ଆମେ ଜଗନ୍ନାଥ ମନ୍ଦିରର ନେତ ଦେଖୁଛୁ ବା ମଝି

ଆକାଶକୁ ପଗଡ଼ି ଖସିଲା ଭଳି ଭଙ୍ଗୀରେ ଚାହିଁଛୁ। ସେଇ ଏକମାତ୍ର ଓଡ଼ିଶାର ଟିକି ଘରେ କେବେ କିମିତି ଆମର ବିଚିତ୍ର ମନୋରଞ୍ଜନ ବ୍ୟବସ୍ଥା। ହାଲଦାର ଓ ମୁଖାର୍ଜୀ ନାମଙ୍କ ଦୁଇ ମହାତ୍ମା କଲିକତାରୁ କେବେ କିମିତି ଆସି, ପନ୍ଦର ଦିନ କି ମାସେ ବଙ୍ଗଳା ଚିତ୍ର-ଯଥା 'ସାବିତ୍ରୀ' 'ଚଣ୍ଡୀଦାସ' ଆଦି ଦେଖାନ୍ତି। ସେମାନେ ଚାଲିଗଲେ ଦେଶୀୟ ଥିଏଟର ଦଳ ସୋ ଦିଅନ୍ତି। ଅନେକ ଦିନ ଘର ବନ୍ଦଥାଏ।

ସଂଶିତ ଶନିବାରରେ, ଶୁଣାଶୁଣିରେ, କେଉଁଠାରୁ ବାଙ୍କି ଥିଏଟର କଟକକୁ ଆସିଥାଏ। ତାର ରୂପ-ରସ-ଗନ୍ଧ ଆମେ ପାଇଲୁ ସେଇଦିନ ସକାଳେ। ତିନିନମ୍ବର ଓ୍ୱାର୍ଡର ପାଇପ୍‌ରେ ମୁହଁଧୋଇ ପୋଛାପୋଛି ହେଉଛୁ, ଉପରୁ ଚାରିନମ୍ବର ଓ୍ୱାର୍ଡର ପାହୁଚ ଦେଇ ଶୁଭିଲା କଠାଉର ଠକ୍‌ଠକ୍ ଶବ୍ଦ। କ୍ଷୀରୋଦ ଭାଇର ଏ ଶବ୍ଦ। ତା'ର ସବୁକଥା ମାଫି। ତା' ମୁହଁ ଦେଖି ଆମେ ଜାଣିଲୁ, ସେ ସ୍ୱର୍ଗଦୂତ ପରି କିଛି ସୁସମ୍ବାଦ ନେଇ ଓହ୍ଲାଇ ଆସୁଛି ଦେବଲୋକରୁ।

ତାକୁ ଆମେ 'ଚାନ୍ଦାବାଲା' ବୋଲି ଜାଣୁ। ବ୍ୟଙ୍ଗବିଦୂପରେ 'ପରାନ୍ନଭୋଜନ କାନନ କଣ୍ଠୀରବ' ନାଆଁ ଦେଇ ଆମ ଭିତରେ କଥାବାର୍ତ୍ତା କରୁ। ମୁହଁଟି ଚାରିକୋଣିଆଁ। ନାକ ତଳେ କକଳପାତିଆ ନିଶ। ହିଟ୍‌ଲରୀ। ଏ ପଟେ ଦଶୋଟି, ଅନ୍ୟପଟେ ନଅଟି। ଆଖି ଯୋଡ଼ିକ ଢେକରା। ସାକ୍ଷାତ୍ କୋକର, ତଥା ଠକଭଣ୍ଡ।

ଭାଇର ସାଙ୍ଗ ଲାଲ ବାବାଜୀ କଣେ। ମୁଣ୍ଡରେ ତା'ର ଲାଲି ପଗଡ଼ି, ଦିହରେ ଏକ ଆଲଖଲା, ସେଇଟି ବି ଗାଢ଼ ଲାଲ। ସେ କଠଉ ମାଡ଼ି ମୟୂରଭଞ୍ଜ ଲକ୍ ଇଲାକାରେ, ମରହଟ୍ଟା ଛାଉଣିରେ ଅବେଳରେ ଠକ୍‌ଠକ୍ କରି ବୁଲେ, କଠଉରେ ତାଳଦେଇ ଗାଉଥାଏ, ଚାଲିଥାଏ 'ଠକ୍ ଠକ୍'। ଗୁଣିଗାରିଡ଼ି ତାକୁ କୁଆଡ଼େ ଆସେ। କ୍ଷୀରୋଦ ଭାଇ ତାର ମହିମା ପ୍ରଚାରକ। ଶିଷ୍ୟ। ଆମକୁ କେବଳ ଦିନଟିଏ ଗୁରୁସନ୍ନିଧିକୁ ଭାଇ ନେଇଥିଲା। ସେଇଦିନ ସେ ବାବାଜୀ ଆମ କପାଳରେ ଭସ୍ମଦେଇ ଭୌତିକ କାଣ୍ଡ ଦେଖାଇଥିଲା। ବାଁ ହାତର ବିଶି ଆଙ୍ଗୁଳିରେ ଛେପ ଲଗାଇ ଆମକୁ ଚାଟିବାକୁ କହିଲା। "ଆରେ ! ଖୁବ୍ ମିଠା ଲାଗୁଛି ତ !" ପୁଣି ସେଇ ଆଙ୍ଗୁଳିକୁ ଚଟାଇଲା। "ଛି ଛି ! କହି ଆମେ ଥୁ ଥୁ କଲୁ ଏବଂ ଚିତ୍କାରକଲୁ ଏବଂ କୁଇନାଇନ, କୁଇନାଇନ କହିଲୁ।" ମରହଟ୍ଟା ପଡ଼ିଆର ବୁଦାଳିଆ ଏକ ନିଭୃତ କୋଣରେ ପ୍ରାୟ ପ୍ରତିଦିନ ଗୁରୁଶିଷ୍ୟଙ୍କ ଭେଟ ହୁଏ ଏବଂ ଭବିଷ୍ୟବାଣୀ ଓ ରୋଗବୈରାଗ୍ୟର ପ୍ରତିକାର ହୁଏ। ଯଦ୍ୱାରା ଦୁହିଁଙ୍କ ବିଡ଼ି ସିଗାରେଟ ଗଞ୍ଜେଇଚିଲମର ଖର୍ଚ୍ଚ ଉଠିଯାଏ।

ମୋତେ ଦୋତାଲା ପାହାଚ ତଳକୁ ଡାକିନେଇ କ୍ଷୀରୋଦ କହିଲା- "ଭାଇ ଦେ ବିଡ଼ିଟାଏ, ତୋତେ ବଢ଼ିଆ କଥାଟିଏ କହୁଛି।" ମୋ ସାଙ୍ଗରେ ମାତ୍ର କେତେଦିନ ତଳେ 'କେତକୀ' ଚାକରାଣୀ ଅଭିନୟ କରି, ନାଚି କାଠମଞ୍ଚକୁ ପ୍ରାୟ ଭାଙ୍ଗିଦେଇଥିଲା। ଡୁଏଟ୍‌ରେ ସେ ନିଜ ରଚିତ ଗୀତଟିଏ ଗାଇଥିଲା- "ଦୁନିଆ ବାହାର ନାଗ୍ରୀ ରତନ, ନିଶରେ କାଗଜ ଚାପି ଦିଶୁ କେଡ଼େ ଯତନ।" ସେ ତା ହିଟଲରୀ ନିଶ କାଟିବ ନାହିଁ, ଅଥଚ ନାରୀ ଅଭିନୟ କରିବ। ସେବେ ଶୁଙ୍ଘିବାପାଇଁ ନାରୀଟିଏ କଲେଜରେ ପ୍ରାୟ ନ ଥିଲେ। ତେଣୁ ପୁରୁଷ ଅଭିନେତାଙ୍କୁ ନାରୀ ରୂପ ଦେଇ କାମ ଚଳାଇବା କଥା। କ୍ଷୀରୋଦକୁ ବାରିପଦିଆ ବିଡ଼ି କଠାଟିଏ ବଢ଼ାଇଦେଲି। ସେ ପୁଞ୍ଜାଏ ବିଡ଼ି ବାହାରକରି, ଗୋଟାଏ ଲଗାଇ ଆଉ କେତେଟାକୁ ପକେଟରେ ପୂରାଇ ଆରମ୍ଭକଲା- "କାହାକୁ କିଛି କହିବୁ ନାହିଁ। ନାଲିଆ ବାବାଜୀ ପାଖରୁ ଏଇ ପାଞ୍ଚଟି ଟିକଟ କାଲି ସନ୍ଧ୍ୟାରେ ଆଣିଛି। ଆମ ଦଳପାଇଁ। 'ହଲମୁକ' ଟକି। ଆଜି ଶେଷ ରଜନୀ। ବାଙ୍କି ଥିଏଟର। ମାସେ ହେଲା ଅଭିନୟ କଲେଣି। "ସୁବର୍ଣ୍ଣ କଙ୍କଣ"। ନାରୀ ପାର୍ଟ କରୁଛି ସେଇ ମୋହନ ଗୋସାଇଁ ଦଳର ରାଧା ପାର୍ଟ କରୁଥିବା ଝିଅଟା। କି ଚେହେରା, କି ଗଳା ! ସନ୍ଧ୍ୟା ସାତରେ ଯାଇ ଫ୍ରଣ୍ଟ ସିଟ୍‌ଗୁଡ଼ାକ ମାଡ଼ି ବସିଯିବ। ଏଗୁଡ଼ାକ କମ୍ପ୍ଲିମେଣ୍ଟେରୀ କାର୍ଡ।" କଥା ସରୁ ନ ସରୁ, କ୍ଷୀରୋଦ ଦଉଡ଼ିଲା ପାନବିଡ଼ି ଦୋକାନୀ ଅନୁର ଗୁମୁଟି ଆଡ଼କୁ। ଅନୁ ଦୋକାନ ପଛକୁ "ଗାଇ ମାର୍କା ଅଟା ଆଉ ବରଫ କଳ"- ବଡ଼ ବଡ଼ ଅକ୍ଷରରେ ଗାଇର ଛବି କାଛରେ ଲେଖା।

ତା'ପରେ ଆମର ପାଞ୍ଚଜଣିଆ ସଭା ବସିଲା। "ବୁଭୁକ୍ଷିତ କିଂ ନ କରୋତି ପାପମ୍।" "ସୁବର୍ଣ୍ଣ କଙ୍କଣ !" ନାରୀ ଅଭିନେତ୍ରୀ, ସୁନ୍ଦରୀ ଖ୍ୟାତନାମା। ପାଞ୍ଚୁଟା ଛାତିର ଦୁକଦୁକି ଏକାବେଳକେ ବନ୍ଦହୋଇଗଲାପରି ଲାଗିଲା। କେଉଁଝରର ବନମାଳୀ କହିଲା- "ଆଜି କ୍ଲାସ ଯିବାନି।" ବେତନଟୀର ମଧୁପରିଡ଼ା କହିଲା- "ମହାନଦୀ ପୋଲ ଆଡ଼କୁ ସାନ୍ଧ୍ୟଭ୍ରମଣ କେନସେଲ କରିବା।" ବଲାଙ୍ଗୀରର ରାମକୃଷ୍ଣ ଦୁଃଖର ସହିତ ମନେପକାଇ ଦେଲା- "ଆଜି କାହାରି ପାଖରେ କିଛି ପଇସାପତ୍ର ନାହିଁ।" ମୁଁ କହିଲି- ଚାଲ କଲେଜ ଡାକ୍ତରଖାନାକୁ ଯିବା, ପାନେ ପାନେ କର୍ଡଲିଭାର ଅଏଲ ବିଲାତି ବାଇଗଣ ରସ ସହିତ ମିଶାଇ ଖାଇଦେବା, ଭୋକ ବଢ଼ାଇବା। ନରକ୍ୱେରୁ ଆସିଛି, ଆଇଁଷିଆ; ତଥାପି ଦିହପେଟକୁ ଗୁଣ।

ଦିନଯାକ ଗମ୍ଭୀର ରହିଲୁ। ବାଙ୍କି ବା ଥିଏଟର କାହା ମୁହଁରୁ ବାହାରିଲା ନାହିଁ। କଥା ଗୋପନରଖିବା କେତେ କଷ୍ଟ। ସେଇ ଦିନ ଆମେ ଜାଣିଲୁ। ଭାତ କମ୍ ଖାଇଲୁ

ଯିମିତି ମାସିକା ଭୋଜନ ଖାଇ ତିନିଦିନ ଓପାସ ରହିହେବ। ପ୍ରାୟ ତିନିଟାବେଳେ ବାହାରିଲୁ ନିତ୍ୟନୈମିତ୍ତିକ ସାନ୍ଧ୍ୟଭ୍ରମଣରେ ମହାନଦୀ ପଠା ଆଡ଼କୁ। କୋଳି ଖାଇଲେ ଭୋକ ମରିଯିବ ବୋଲି ସେ କୁ-କର୍ମରୁ କ୍ଷାନ୍ତହେଲୁ।

ସାନ୍ଧ୍ୟଭ୍ରମଣରୁ ଫେରିଲା ବେଳକୁ ଛଅଟା। ଚକ୍ରା, ବେଙ୍ଗ, କେଶବ ଆଉ ଧନୀ-ଚାରିମେସର ଚାରି ପୂଝାରୀ। ଆମର ଧନୀ। ଆମପାଇଁ ତା'ର ସ୍ନେହ ଶ୍ରଦ୍ଧା ଏତେ ବେଶି ଯେ, ଆମେ ମାଆକୁ ଭୁଲିଯାଉ। "ଧନୀ, ଆମେ ଫେରିବାକୁ ଡେରିହବ।" -କହି ପାଞ୍ଚଭାଇ ବାହାରି ପଡ଼ିଲୁ। ଅନୁ ଦୋକାନରୁ ମିଠାପାନ୍‌କିଣି ଅଗ୍ରସର ହେଲୁ 'ହଲମୁକ' ଆଡ଼କୁ। ରିକ୍‌ସା ତିନି ଅଣା, ଘୋଡ଼ାଗାଡ଼ି ଆଠଅଣା। ଏତେ ପଇସା କାହିଁ। "ଚାଲି ଚାଲି ଯିବା।" ଭୋକକୁ ଭୋକ ବଢ଼ିବ, ତା ଉପରେ 'ସୁବର୍ଣ୍ଣ କଙ୍କଣ' ଦେଖାଯିବ ବିନା ପଇସାରେ, କି ଆନନ୍ଦ ! କି ଭାଗ୍ୟ !

ଏଥର ଡବଲ ଷ୍ଟିଡ୍। ସାଦା ମିଠା ବା କରଦା ପାନ ସାଙ୍ଗକୁ ଡବଲ ଷ୍ଟିଡ୍ ଚାଲି-ଝାଳ ବହିବାକୁ ଆରମ୍ଭକଲା। କଥାବାର୍ତ୍ତା ପ୍ରାୟ ବନ୍ଦ। କେନାଲ ପରେ ପରେ ପ୍ରସ୍ତାବିତ ମାଇନର ସ୍କୁଲର ବୁଦାଳିଆ ସ୍ଥାନ, ତା'ପରେ କଟକ ଇଲେକ୍ଟ୍ରିକ୍ ସପ୍ଲାଇର ଡପ୍‌ଡପ୍ ଶବ୍ଦ, କଟକ ଏମ୍ପୋରିୟମ (ଏତେ ଆଧୁନିକ ଏତେ ଦାମ ଯେ, ଆମେ କେବେ ସେ ଦୋକାନକୁ ଯାଉନା, କେବଳ ବାହାରୁ ଦେଖୁ) ପରେ ପରେ ଡି.ପି. ସୁରର କଲିକତି ବଙ୍ଗାଳୀ ଦୋକାନ। ମଙ୍ଗଳାବାଗ ଛକ ମେଡିକାଲ ସ୍କୁଲକୁ ରାସ୍ତା। ଏଇଠୁ ରାସ୍ତା ଚାଲିବ, ଗଳିରାସ୍ତାର ଅନନ୍ତ ଅନ୍ଧାର ଦେଇ ବକ୍‌ସି ବଜାରକୁ। ପୋଷ୍ଟ ଅଫିସ ପାଖରେ ବାହାରିବ।

ଏଥର 'ହଲମୁକ' ଆଡୁ ବାଜା, କ୍ଲେରିଓନେଟର ଶବ୍ଦ ଶୁଭିଲା ପରି ଲାଗିଲା। 'ସୁବର୍ଣ୍ଣ କଙ୍କଣ'ର ହାତଲେଖା ବିଜ୍ଞାପନଟାଏ କିରାସିନି ବତୀଖୁଣ୍ଟ ତଳେ ଝଲସି ଉଠିଲା। ଗୋଟାଏ ନାରୀର ବିକଟ ମୁହଁ ସେଇ ରଙ୍ଗର କାଳିରେ ଝୁଲୁଥାଏ। କୁଆଡୁ କିଛି ଶବ୍ଦ ନ ଶୁଭିଲେ ଭାବୁ, ଏଇ ଆରମ୍ଭ ହୋଇଗଲା ଏବଂ ପ୍ରତ୍ୟେକ ପ୍ରତ୍ୟେକଙ୍କୁ ଦୋଷଦେଉ, ତା'ରି ଯୋଗୁ ଟ୍ରେଜେଡ଼ି ଘଟିବାକୁ ଯାଉଛି। ଜଣେ ବିରକ୍ତହୋଇ କହିଲା-ହିତୋପଦେଶରେ ଯାହା ହେଲା, ସେଇ ବ୍ୟାଘ୍ରର ଦଶା ଆମକୁ ପଡ଼ିବ। "କଙ୍କଣସ୍ୟ ହିଁ ଲୋଭେନ ମଗ୍ନ ପଙ୍କେ ସୁଦୁସ୍ତରେ"। ପଙ୍କରେ ମଗ୍ନହୋଇ ଘରକୁ ଫେରିବା ସାରହେବ।

ସାଇରୁ ଶଙ୍ଖ ଶବ୍ଦ ବାହାରି ଗଗନ ପବନରେ ଖେଳିଗଲା। ପଲପଲ ବାଦୁଡ଼ି ଡେଣା ହଲାଇ ହଲାଇ, ଗଛକୁ ଗଛ ଟଙ୍ଗା ହୋଇଥିବା କାଲରେ ପଡ଼ି ଫଡ଼ଫଡ଼ହେଲେ। ଖଣ୍ଡେ

ଦୂର ଗଲେ "ହଲମୁକ୍"। ବାଁ ପଟେ ଯୋତା ଓ ମୋଚି ଦୋକାନ। ଆଲୁଅ ଦୀପ କିଛି ନାହିଁ। ଭାବିଲୁ ଆମର ଡେରି ହୋଇଗଲା, ଯୋ ଆରମ୍ଭ ହୋଇଗଲା। ଏତେଦୂର, ଏତେ ଏତେ କୃଚ୍ଛ୍ର ସାଧନ, ଏତେ ଉତ୍କଣ୍ଠା ସହିତ କ୍ଷୀରୋଦ ଭାଇର ଆମ ପ୍ରତି ଏତେ ଦୟା, ଦରଦ-ସବୁର ଏଇ ପରିସମାପ୍ତି। ରିଏଲ ଟ୍ରେଜେଡ଼ି।

ତରବରରେ ପ୍ରତ୍ୟେକ ଟିକେଟ ବାହାର କରି ହାତରେ ମୁଠେଇଧରିଲୁ ଏବଂ ବିରାଟ ଯାଉଁଳି କବାଟ ଆଡ଼କୁଁ ଅନ୍ଧାରରେ ଅଗ୍ରସରହେଲୁ। କିଏ ଆଗ 'ଖିଚି ଫାଙ୍କ୍' କହିବ ? ପ୍ରତିଯୋଗିତାରେ କବାଟ ଭିତରେ ଠେଲାପେଲା ହୋଇ ଜଣେ ଦି'ଜଣ ଅଟକି ରହିଲୁ। ଯିଏ ପାରହେଲା ସେ ଭିତରେ ପହୁଞ୍ଚି କାନ୍ଦକାନ୍ଦ ହୋଇ ବଡ଼ ପାଟିରେ କହିଲା- "କିବେ, କାହିଁ ବାଙ୍କି ଥିଏଟର, ଯାତ୍ରା ଥିଏଟର, ଆଲଦୀପର, କାହିଁର କିଛି ଚିହ୍ନବର୍ଣ୍ଣ ନାହିଁ। ଏତେ ସ୍ୱାର୍ଥପରଗୁଡ଼ାକ, ଆମେ ଯେ ଧସ୍ତାଧସ୍ତି ଉପରକୁ ପାଞ୍ଚଭାଇ ଆସିଗଲୁ।"

ଭିତରକୁ ଯାଇ ଭିନେ ଭିନେ, ଏକତ୍ର ଅଣ୍ଡାଳି ଅଣ୍ଡାଳି ବାଙ୍କି ଥିଏଟର ବା ଆମେ କିଏ କେଉଁଠି ଅଛୁଁର ପତ୍ତା ପାଇଲୁ ନାହିଁ; କେବଳ ମୁଠାମୁଠା କିଟିମିଟିଆ ଅନ୍ଧାରରେ ଏଣେ ତେଣେ ଘୁରିବୁଲିଲୁ। 'ସୁବର୍ଣ୍ଣ କଙ୍କଣ'ର ପତ୍ତା ନାହିଁ। ନିକର ଆଖିକାନକୁ ବିଶ୍ୱାସ ନକରି, ନିଜ ସାଙ୍ଗକୁ ବିଶ୍ୱାସ ନ କରି, ଆମେ ଶେଷଥରପାଇଁ ଥିଏଟର ଦର୍ଶନ ଆଶା ହରାଇଲୁ। ଆମର ଆଶଙ୍କା ଘନୀଭୂତ ହେଲା କ୍ରମେ। ବାହାରେ ଶୂନ୍ୟତାକୁ ଘେରି ରହିଛି ନଡ଼ିଆ, ସପେଟା ଓ କଦଳୀ ବଗିଚାର ଉଦ୍ୟାନ। ଘରେ ବାହାରେ ଖାଲି ଭୂତ ପ୍ରେତର ନାଚଗୀତ ଚାଲିଛି ଯିମିତି। କିଏ କେଉଁଠି କାହାକୁ କଙ୍କଣ ଲୋଭରେ ହତ୍ୟା କରୁଛି ଯିମିତି। ଏତିକିବେଳେ ଝପ୍‌ଝାପ୍ ଶବ୍ଦଟାଏ କୁଆଡୁ ଆସିଲା। ପରେ ପରେ ଚିତ୍କାର ଶୁଭିଲା "ଏଠି ଗୋଟାଏ ଗାଡ଼ିଆ ଅଛି, ଧର, ଉଠାଅ, ମୁଁ କାଦୁଅରେ ଅଟକି ଯାଇଛି।" ସୁର ବାରି ତାକୁ ଉଠାଇଲୁ, ଉଦ୍ଧାର କଲୁ ଦୁସ୍ତର ପଙ୍କମୟ ଗାଡ଼ିଆରୁ। ଆମେ ସମସ୍ତେ ଯେତେବେଳେ ବର୍ତ୍ତିବାର ଆଶା ହରାଇ କାନ୍ଦକାନ୍ଦ ହେଉଥିଲୁ, ସେତିକିବେଳେ କିଏ ଜଣେ ବାଟୋଇ ଟର୍ଚ୍ଚ ଆଲୁଅରେ ଆମକୁ ବାରି ଅନ୍ଧାରରୁ ଆଲୋକକୁ ଆଣିଲା। ପାଞ୍ଚଜଣକୁ ପାଞ୍ଚ ଅବସ୍ଥାରେ ଜାଣିଲୁ। କିଏ କ୍ଳାନ୍ତି, ନିରାଶା; କିଏ ଭଗ୍ନଜାନୁ, ଆଉ କିଏ କର୍ଦ୍ଦମାକ୍ତ ଅବସ୍ଥାରେ ରହିଥିଲେ ଜାଣିବା ଅବସ୍ଥାରେ ନ ଥିଲୁ। ଜଣେ ନିଃଶ୍ୱାସ ଫେରି ନ ପାଇ ଦାଣ୍ଡଟାରେ ଚିତ୍‌ହୋଇ ପଡ଼ିରହିଥାଏ।

ଭଲ କରି ଓଲଟ ପାଲଟ କରି ବନ୍ଧୁବର ଦେଇଥିବା କମ୍ପ୍ଳିମେଣ୍ଟେରୀ ଟିକଟଗୁଡ଼ାକ ଏପଟ୍ ସେପଟ କରି ପୁଣି ଦେଖିଲୁ। କ୍ଷୀରୋଦ ଏପ୍ରିଲ୍ ଫୁଲ୍ କରିଦେଲାକି ଆମ

ସମସ୍ତଙ୍କୁ ! 'ସୁବର୍ଣ୍ଣ କଙ୍କଣ' ତ ହରାଇଛୁ, ନାରୀ ଅଭିନେତ୍ରୀ ଦେଖି ଜୀବନ ଧନ୍ୟ କରିବାର ଦୁରାଶା ସ୍ୱପ୍ନରେ ପରିଣତ ହେଲା । ତଥାପି ପଛଘୁଞ୍ଚା ନାହିଁ ଆମର କାତକେ। ମାସିକ ଫିଷ୍ଟ ତ ଧନୀ ରଖିଥିବ ଆମପାଇଁ। ଶନିବାରିଆ ମାସିକିଆ ଭୋଜନ ମନେ ପଡ଼ିବାରୁ। ପରଦିନ ଦାନ୍ତରୁ ସେ ଗରିଷ୍ଠ ଭୋଜନର ଅବଶେଷାଂଶ ଛଡ଼ାଇବାପାଇଁ ଆଗକୁ ଚାଲିଲୁ ଚୌଧୁରୀ ବଜାର ଛକକୁ, ଆକବରୀ ବାସନା ଗୁଡ଼ାଖୁ ଛଟାଙ୍କିଏ ଲେଖାଁଏ ଆଣିବାପାଇଁ। ଛ ପଇସା ଲେଖାଁଏ ପୁଟୁଳାକୁ ଫେରିଲାବେଳେ, ରାସ୍ତାକଡ଼ରେ ଝିବିରି ଆଲୁଅ ଜାଳି ଯେଉଁ ଗୋଦରଗୋଡ଼ୀ ବୁଢ଼ୀ ବସିଥାଏ, ତାଠୁ ମହାର୍ଘ କିଆକାଠି ବିଡ଼ାଏ ବିଡ଼ାଏ ନେଲେ ଉତ୍ସବର ଦିନଟିଏ ସରିଲା। ବାଙ୍କି ଥିଏଟରର ସ୍ମୃତି ଖାଲି ରହିଯିବ। ଗୁଣୁଗୁଣୁ ସ୍ୱରରେ ଯାତ୍ରାଗୀତ 'ରଜ ସଜବାଜ ମଉଜକୁ ଝିପି ଝିପି ବର୍ଷା ସାରିଦେଲାରେ' ଗାଇ ଗାଇ ପ୍ରାୟ୍ ନଅଟା ବେଳକୁ ଭୋଜୀ ପୂର୍ବରୁ ଗୁଡ଼ାଖୁ ଆଉ କିଆକାଠିରେ ମୁହଁ ସଫାକରି ଚାରିନମ୍ବର ଧନୀ ମେସର ବିରାଟ କୋଳାହଳ ଭିତରକୁ ପଶିଲୁ। ନେପଥ୍ୟ କୋଳାହଳ ଆମକୁ ଶୁଭିଲା ନାହିଁ।

ପରଦିନ ସକାଳେ କ୍ଷୀରୋଦକୁ ଉତ୍ତମ ମଧ୍ୟମ କରିଆରେ ଜବଦ କରି ପ୍ରକୃତ ତଥ୍ୟ ପାଇଲୁ। କ୍ଷୀରୋଦ ମାନିନେଲା କିମିତି ସେ ଆମକୁ ଠକାଇଲା। ଲାଲିଆ ବାବାଜୀ ସାଙ୍ଗରେ ମିଶି ସେମାନେ ଗୁଡ଼ାଏଟିକଟ ଯୋଗାଡ଼କଲେ। ବାଙ୍କି ଥିଏଟର ସୋ ସମାପ୍ତ କରି ପୁରୁଣା ଟିକଟ ସବୁ ଫୋପାଡ଼ି ଦେଇ କଟକ ଛାଡ଼ିଲା ପରେ, ଏ ଦୁହେଁ ସେ ସବୁ ଆଣି ବଣ୍ଟାବଣ୍ଟି କରି ଥିଏଟର କାଙ୍ଗାଳଙ୍କୁ ଦେଇ କଉତୁକ ଦେଖୁଥିଲେ।

ଆମର ଅବଶୋଷ ରହିଗଲା। ଥିଏଟର ନ ଦେଖିଲୁ ନାହିଁ, ଗୋଟିଏ ମଧ୍ୟ ନାରୀ ଅଭିନେତ୍ରୀ ଦେଖି ପାରିଲୁ ନାହିଁ। ଭାଗ୍ୟ ଭଲ, ମାତ୍ର ଅଳ୍ପ କେତେଦିନ ପରେ ପଇସା ଦେଇ "ଗ୍ରେଟ୍ ଅଲିମ୍ପିକ ସର୍କସ" ଓ ରଙ୍ଗମହଲ ଥିଏଟରରେ ସେଇବର୍ଷ ଅନେକ ନାରୀଙ୍କୁ ଦେଖି ଭୋକଶୋଷ ମାରିପାରିଲୁ।



## ॥ ଅଠେଇଶ ॥

ହାଇସ୍କୁଲ ଜୀବନରେ ବା ହଷ୍ଟେଲ ଜୀବନରେ ଗୋଟିଏ ସଙ୍କଟ ବା କ୍ରାଇସିସ୍ ଆସିଲା ଦଶମ ଶ୍ରେଣୀ ଶେଷରେ। ଆଗରୁ କହିଛି, ମୋର ଏକମାତ୍ର ଅବଲମ୍ବନ ମାଇନର ସ୍କଲାରସିପ୍, ମାସକୁ ଯାହାର ମୂଲ୍ୟ ସାତଟଙ୍କା। ତିନିବର୍ଷପାଇଁ ତାହା ମିଳିମିଳା; ଏକାଦଶ ଶ୍ରେଣୀ ବେଳକୁ ମୁଁ ସମ୍ବଳହୀନ। ଏକାଦଶ ଶ୍ରେଣୀପାଇଁ ଗୋଟିଏ ମାତ୍ର ଦଶଟଙ୍କିଆ ସ୍କଲାରସିପ୍। ସେଇଟା ମିଳିଗଲେ ବଞ୍ଚିଗଲି, କିନ୍ତୁ ସେ ବୃତ୍ତିଟି ସାରା ଓଡିଶାରେ, ଆମ ସ୍କୁଲରେ ପଢୁଥିବା ଯେ କୌଣସି ପିଲାକୁ ମିଳିପାରେ। ମୋର ପ୍ରତିଦ୍ୱନ୍ଦୀ କେଦାର ଘୋଷ, ଯେ କି ନୂଆ ବଣାଣରୁ ମାଇନର ପାସକରି ଆସିଥିଲା। ସେ ସବୁବେଳେ ମୋତେ ଷାଣ୍ମାସିକ ପରୀକ୍ଷାରେ କ୍ଲାସରେ ହରାଇ ପ୍ରଥମ ହୁଏ। ମୁଁ ତାକୁ ବାର୍ଷିକ ପରୀକ୍ଷାରେ ହରାଏ। ବଙ୍ଗାଳୀ ପଣ୍ଡିତ ଓ ନିଶାକର ବାବୁ ଉଭୟେ ଲାଗି ପଡିଲେ ଆମକୁ ଫାଷ୍ଟ କରିବାପାଇଁ। ବଙ୍ଗାଳୀ ପଣ୍ଡିତ କେଦାର ତରଫା, ନିଶାକର ବାବୁ ମୋର ତରଫା। ଓଡିଆ ଖାତା ନିଶାକର ବାବୁଙ୍କର। ବେଙ୍ଗଲୀ ପେପର ବଙ୍ଗାଳୀ ପଣ୍ଡିତଙ୍କର। ଶିକ୍ଷକ ସ୍ତରରେ ପ୍ରତିଯୋଗିତା ଚାଲିଲା, ମାର୍କ ଯେତେ ବଡା ଯାଇପାରେ। ଦୁଇ ଶିକ୍ଷକଙ୍କ କଳିରୁ ତୃତୀୟ ବ୍ୟକ୍ତିଙ୍କର ଲାଭ। ମୁଁ ହିଁ ଫାଷ୍ଟ ହେଲି ଏବଂ ବର୍ଷେପାଇଁ ବୃତ୍ତି ପାଇଲି। କିନ୍ତୁ ଏଥର ତାକୁ ଟପିଗଲେ, ଅର୍ଥାତ୍ କ୍ଲାସରେ ଫାଷ୍ଟ ହେଲେ ମୁଁ ଦଶଟଙ୍କିଆ ବୃତ୍ତି ପାଇବି। ଭୀଷଣ ପ୍ରତିଯୋଗିତାକରି ମୁଁ କ୍ଲାସରେ ଫାଷ୍ଟ ହେଲି, କିନ୍ତୁ ବୃତ୍ତି ପାଉ ପାଉ ତିନିମାସ ବ୍ୟବଧାନ ରହିଯିବ। ହେଡମାଷ୍ଟର ମଧୁ ବିଶ୍ୱାଳ ମୋ ପ୍ରତି ବହୁତ ସଦୟ, ସହାନୁଭୂତି ସମ୍ପନ୍ନ ଥିଲେ ଏବଂ ହଷ୍ଟେଲରେ ତିନୋଟି ମାସ ମୋତେ ଫ୍ରି ଖାଇବା ବନ୍ଦୋବସ୍ତ କରିଦେଲେ। ମୁଁ ସଙ୍କଟରୁ ତ୍ରାଣ ପାଇଲି। ହଷ୍ଟେଲରେ ମିଟିଂ ବସିଲା, ଭୋଟ ନିଆଗଲା ଏବଂ ଜଣେ ପିଲା ଛାଡି ଅନ୍ୟମାନେ ସମସ୍ତେ ମୁଁ ଫ୍ରି ଖାଇବା ପକ୍ଷରେ ଭୋଟଦେଲେ। ଆଶ୍ଚର୍ଯ୍ୟ କଥା, ଜଣେ ପିଲା (ତା ନାମ ମନେ ପଡୁନି, ପ୍ରାୟ ସାଙ୍କା ସେଠୀ)। ସେ ଦାମ୍ଭିକତାର ସହିତ ଛିଡାହୋଇ କହିଲା- money matter ରେ ଭୋଟ ପ୍ରଶ୍ନ ଉଠେ ନାହିଁ ମୁଁ ଏ ପ୍ରସ୍ତାବ oppose କରୁଛି। ଯାହାର ଇଚ୍ଛା ସେ ତାକୁ ଫ୍ରି ଖାଇବାକୁ ଦେଉ, କିନ୍ତୁ ମୁଁ ଗରିବ ଲୋକ, ମୋ ମା' ବାପାଙ୍କୁ ନପଚାରି ଛାଡର ଫେଭାରରେ ନାହିଁ। ପ୍ରସ୍ତାବ କାଟ୍ ଖାଇଗଲା। ହେଡମାଷ୍ଟରଙ୍କର ସାପୋର୍ଟ ବା ପୃଷ୍ଠପୋଷକତାର ମୂଲ୍ୟ ରହିଲା ନାହିଁ। ତାକୁ ବହୁତ ବାଧିଲା, ମୁଁ କାନ୍ଦିଲି ମିଟିଂରେ। ମିଟିଂ ପରେ ହେଡମାଷ୍ଟର ମୋତେ ଡାକିନେଇ କହିଲେ- "ବସନ୍ତ ତୁମେ କାଲିଠାରୁ ତିନିମାସ ମୋ ଘରେ ଖାଇବ"। ତାଙ୍କ କ୍ୱାଟରସ୍‌ଟା ହଷ୍ଟେଲରୁ ମାଇଲେ ବାଟ। ଖାଇବାକୁ ଯିବାଆସିବା କଷ୍ଟଦାୟକ ହେବ

ଓ ସମୟ ନଷ୍ଟହେବ ଭାବି, ସେ ତିନିମାସପାଇଁ ସ୍କାଉଟ ସାଇକଲଟା ମୋ ଦାୟିତ୍ୱରେ ରଖିଦେଲେ । ଏହି ସଙ୍କଟରୁ ହେଡମାଷ୍ଟର ମୋତେ ତ୍ରାଣ କରିନଥିଲେ, ମୋର ପାଠପଢା ସେଇଠି ଇତି ହୋଇଥାନ୍ତା ।

ଏକାଦଶ ଶ୍ରେଣୀ ଖୁବ୍ ପରିଶ୍ରମର ବର୍ଷ । ସ୍କୁଲରେ ଏକ୍‌ସ୍ଟ୍ରା କ୍ଲାସ । ମାନେବହି, ଟିଉସନ ଏସବୁ କିଛି ନାହିଁ । ହେଡମାଷ୍ଟରଙ୍କ ତାଗିଦାରେ ଶିକ୍ଷକ ମାନେ ଅଧିକା କ୍ଲାସ ନେବାକୁ ବାଧ୍ୟହୁଅନ୍ତି ରୁଟିନ କ୍ଲାସ ଶେଷରେ । ସେସବୁ ଅଧିକା କ୍ଲାସ । ନିଜେ ହେଡମାଷ୍ଟର ସାଇକେଲରେ ପିଲାମାନଙ୍କ ଘରକୁ ଯାଇ ସନ୍ଦେହମୋଚନ କରନ୍ତି । ଦେଇଥିବା ହୋମ ଟାସ୍କ ମଧ୍ୟ ସଂଶୋଧନକରନ୍ତି । ଛୁଟିଗୁଡାକରେ ତାସ ଖେଳ ନାହିଁ । ଟେଷ୍ଟ ପରୀକ୍ଷାରେ କେହି ଫେଲ ନହେଲେ ମଧ୍ୟ, ଲେଖାଲେଖି ଓ ପଢାପଢିରେ କାହାରି ତ୍ରୁଟି ହୁଏ ନାହିଁ । ଶିକ୍ଷକମାନଙ୍କର ଅହରାତ୍ର ପ୍ରରୋଚନା ଓ ପ୍ରଚୋଦନାରେ ପରୀକ୍ଷା ଫଳ ବାହାରିଲା । ଆମେ ଅଠର ଜଣ ମେଟ୍ରିକୁଲେସନ୍ ପରୀକ୍ଷାପାଇଁ ପ୍ରେରିତ ହେଲୁ । ବାଲେଶ୍ୱରରେ ସେଣ୍ଟର । ସେହି ଗୋଟିଏ ସେଣ୍ଟରରେ ବାଲେଶ୍ୱର, ବାରିପଦା ଓ କେଉଁଝର, ତିନୋଟି ଜିଲ୍ଲା ବା ରାଜ୍ୟର ପିଲାହିଁ ପରୀକ୍ଷା ଦିଅନ୍ତି ।

ବାଲେଶ୍ୱର ଯିବାକୁ ପଡିବ । ବାଲେଶ୍ୱରବାଲା ଆମକୁ "ପାହାଡିଆ ମୂଷା" ବୋଲି କହନ୍ତି । ଆମେ ତାଙ୍କୁ "ମେଲେରିଆ" ବୋଲି କହୁଁ । ଆମକୁ ସେଠାକୁ ଯିବାକୁ ପଡିବ ଓ ରହିବାକୁ ପଡିବ । ବାଲେଶ୍ୱର ପହଞ୍ଚିବାର ଏକମାତ୍ର ରାସ୍ତା ହେଲା ମୟୂରଭଞ୍ଜ "ପୁଟୁରି" ରେଳ । ସାଙ୍ଗରେ ଜଣେ ଶିକ୍ଷକ ଯିବେ । ଚୈତନ ବା ଅବିନ୍ନ, ଦୁଇ ପୁକାରୀରୁ ଜଣେ ପୁକାରୀ ଆକାରରେ ଯିବେ । ହପ୍ତାଟିଏ ସେଠି ଘରଭଡାରେ ରହିବାପାଇଁ ପଡିବ । ଆମେ ଦୁଇ ତିନି ଜଣ ଭାବିଲୁ, ଦେୱାନ ପି କେ ସେନ୍‌କୁ ଭେଟି ସରକାରୀ ଟ୍ରାକ୍‌ଟିଏ ମାଗିବୁ । ବଦାନ୍ୟ ମହାରାଜା ଆମକୁ ସାହାଯ୍ୟ କରିପାରନ୍ତି । ଆମେ ତିନି ଚାରିଜଣ ପ୍ରତ୍ୟହ ଦେୱାନ ଅଫିସ ବେଲଗଡିଆ ପେଲେସ (ଦେଓ୍ୱାନଙ୍କ ରହଣୀ ସ୍ଥାନ) ଓ ରାଜବାଟୀକୁ ଯାଆଆସ କରି କେମିତି ଟ୍ରାକ ମିଳିବ ସେଥିରେ ଲାଗିଗଲୁ । ବାଲେଶ୍ୱର ଯିବାର ପନ୍ଦର ଦିନ ପୂର୍ବରୁ ପଢାଶୁଣା ବନ୍ଦ । କେମିତି ଯିବା ଟ୍ରାକ୍‌ରେ । କେମିତି ଡାଳ ବା ପାଲା ଦେଇ ଖରାରୁ ନିଜକୁ ବଞ୍ଚାଇବା । ଏହିସବୁ ବିଷୟରେ ପରସ୍ପର ଭିତରେ ଆଲୋଚନା ଚାଲିଲା ଦିନରାତ୍ରି । ପୋଷାକ ପତ୍ର ଯୋଗାଡ କରିବାକୁ ପଡିବ । ଯୋତା ଦରକାର । ଦଶ, ବାରଣା ଦେଇ କେନ୍‌ଭାସ୍ ସବୁ କିଣାଗଲା । ନନା ଗାଁରୁ ଆସିଲେ । ୧୬ ଟଙ୍କାରେ ଟ୍ରଙ୍କଟିଏ କିଣିଲେ । ମଉଜା ନିହାତି ଦରକାର । କିଣାହେଲା । ବହିପତ୍ର ସହିତ ଦାନ୍ତ କାଠି, ଗଣପତି ଦୋକାନରୁ ୫୦୦ ଖଣ୍ଡ ବିଡି । ଡବଲ କାଫ୍ ଧଳା ସାର୍ଟ କିଣା ଗଲା । ସେସବୁ ପରୀକ୍ଷା

ଦିନକୁ ରହିଲା । ଆମେ ଥିଲୁ ଜିଲ୍ଲାସ୍କୁଲ ଆଗର ଗୋଟାଏ ପୁରୁଣା ଭଙ୍ଗା ଦୋତାଲା କୋଠାରେ ବଣ ଜଙ୍ଗଲିଆ ଜାଗାରେ । ଗୋଟିଏ ଛୋଟ ଖଜୁରୀ ଗଛ ମୂଳରୁ ବାହାରି ଲାଉଡଙ୍କିଆ ସାପ ମୋତେ ପ୍ରାୟ ଦଂଶି ଦେଇଥିଲା ।

ବାଲେଶ୍ୱରରେ ପରୀକ୍ଷାକୁ ବାହାରିଲା ବେଳେ ଆମେ ୧୮ ଜଣଜାକ ଧଳା କେନ୍‌ଭାସ୍ ଯୋତା, ଆଣ୍ଠୁ ପର୍ଯ୍ୟନ୍ତ ମଉଜା, ଧୋତି ଏବଂ ପୁରା ସାର୍ଟ ପିନ୍ଧି ଜିଲ୍ଲାସ୍କୁଲ ଆଗ ସଡକରେ ଯାଉଥିଲା ବେଳେ, ବାଲେଶ୍ୱର ପିଲାଏ ଆମକୁ ଦେଖି ହସୁଥିଲେ । ସେମାନେ ସବୁ ଚପଲ ଓ ହାଫପ୍ୟାଣ୍ଟ ପିନ୍ଧିଥିଲେ । ଫାଉଣ୍ଟେନ ପେନ କାହାରି ନଥିଲା । ସମସ୍ତେ ହେଣ୍ଡଲ୍ ଦୁଇ ଚାରିଟା ନିବ୍ ସାଙ୍ଗରେ ଧରି ପରୀକ୍ଷାକୁ ଯାଉଥିଲେ । ଆମ ସାଙ୍ଗରେ ଯାଇଥିଲେ ଇତିହାସ ଶିକ୍ଷକ ଶ୍ରୀ ଦୈତାରୀ ବାବୁ । ବଡ କଲେଜ ହଲ । ସେଇଠି ୩୫ ଜଣଙ୍କପାଇଁ ସିଟ୍ ହୋଇଥିଲା । ପାଖ ୧୨ ନମ୍ବର ରୁମ୍‌ରେ ଯେଉଁ ୧୫-୨୦ ଜଣ ପରୀକ୍ଷାର୍ଥୀଙ୍କ ଆସନ ଥିଲା, ସେଥିମଧ୍ୟରୁ ମୋର ଗୋଟିଏ । ପରୀକ୍ଷା ଚାରିଦିନ ଧରି ଚାଲିବ । ବାଲେଶ୍ୱର ପିଲାଙ୍କର କେତେ ଦମ୍ଭ ଗର୍ବ । ତାଙ୍କରି ସ୍କୁଲ, ତାଙ୍କରି ହେଡମାଷ୍ଟର, ଫନିବାବୁ ସେଣ୍ଟର ସୁପରିଟେଣ୍ଡେଣ୍ଟ । ଆମ ଦେହରୁ ଝାଳ ବହି ଯାଉଥାଏ । ଆମର ଏ ବିଚିତ୍ର ବେଶ ପରିପାଟି ଦେଖି ସେଠିକାର ପିଲାମାନେ ଆମ ଆଡକୁ ବିଚିତ୍ର ଦୃଷ୍ଟିରେ ଦେଖୁଥାନ୍ତି । ପୃଥିବୀରେ ସବୁ ପରୀକ୍ଷା ଦେଇହେବ, କିନ୍ତୁ ମେଟ୍ରିକୁଲେସନ ପରୀକ୍ଷାର ଯେଉଁ ଭୟ, ତାର ତୁଳନା ନାହିଁ । ଆମର ବାପା ମାଆ କେହି ନାହାଁ । ସେଣ୍ଟର ସୁପରିଟେଣ୍ଡେଣ୍ଟ ଫନିବାବୁ ଏକ "ଟେରାର" । ତାଙ୍କୁ ଦେଖିଲେ ଗର୍ଭିଣୀ ଗାଇ ବାଟ ଛାଡିଦେବ । ଆମକୁ ଆଗରୁ କୁହାହୋଇଥାଏ- ଆଗପଛ ସାଇଡ୍ କୁଆଡେ ଚାହିଁବନି । ନହେଲେ ହଲରୁ ତଡାଖାଇବୁ ।

ଘଣ୍ଟା ବାଜିଲା । ଓ୍ୱାର୍ଣ୍ଣିଂ । ପ୍ରଶ୍ନପତ୍ର ବଣ୍ଟା ଆରମ୍ଭହେଲା । ପ୍ରଶ୍ନପତ୍ରକୁ କପାଳରେ ଛୁଇଁ ମା' ସରସ୍ୱତୀଙ୍କ ନାମ ଉଚ୍ଚାରଣ କରି (God is 'good' ମଧ୍ୟ ଲେଖିବାକୁ ମନା) ଆଖି ଫିଟାଇ ପଢିବାକୁ ଆରମ୍ଭକଲେ । ପ୍ରଥମ ପ୍ରଶ୍ନ, "ଟ୍ରାନସ୍‌ଲେଟ୍ ଇନ୍‌ଟୁ ଇଂଲିଶ" । "ସହସା ଗୋଟିଏ ତୀକ୍ଷଣ ତୀର ଆସି ରାଣୀ ଦୁର୍ଗାବତୀଙ୍କର ବିଶାଳ ନୟନରେ ବିନ୍ଧିହେଲା ।" ମୋତେ ଜଣାଗଲା, ଯେପରି ତୀରଟି ମୋହରି ଛାତିରେ ବିଦ୍ଧ ହୋଇଛି । ପ୍ରଥମ ବାକ୍ୟରେ ଥିବା "ବିଶାଳ ନୟନ" କେମିତି ଅନୁବାଦ କରିବି । big eyes ନା large eyes ନା round eyes ନା specious eyes ଲେଖିବି ? ସବା ଶେଷରେ specious eyes ଲେଖିଲି । ଦ୍ୱିତୀୟ ପ୍ରଶ୍ନ ଆହୁରି ମାରାତ୍ମକ । Write an essay on the "veneration of antiquity" or "Choice of Books" । ମୁଁ ଜାଣେ ନାହିଁ କାହିଁକି ପ୍ରଥମଟି

ଲେଖିଲି । ଅନେକ M.A. ପିଲା ମଧ୍ୟ ଏ ପର୍ଯ୍ୟନ୍ତ ତାର ଉତ୍ତର ଦେଇପାରିବେ ନାହିଁ । ଯାହାହେଉ ପ୍ରଥମ ପ୍ରଶ୍ନ ସରିଲା । ଭଗବାନ ମାଲିକ । ଉପର ଓଳିର ପତ୍ରଟି ଭୂଗୋଳ ଥିଲା । ଆମର ପାଠ୍ୟପୁସ୍ତକ ଥିଲା- Dudley Stampଙ୍କ Geography ବହି । ପ୍ରାୟ ୭୦୦ ପୃଷ୍ଠା । ଦ୍ୱିତୀୟ ଦିନ ଥିଲା- Mathematics ଏବଂ History ଦ୍ୱିତୀୟ ପତ୍ର । ଏହି ଦିନର ପରୀକ୍ଷା ମୋତେ ମାରିବ ବା ବଞ୍ଚେଇବ । ଅଙ୍କ ମୋର terror। ନୂଆ ହୋଇ ସିଲାବସରେ ସେ ବର୍ଷ Surds and Indices ପଡା ହେଉଛି । ଆଉ ମିଲିମିଟର, ସେଣ୍ଟିମିଟର ମଧ୍ୟ ତାସାଙ୍କୁ ନୂଆ । ସେଇଟା କେତେ ହେଲେ କ'ଣ ହୁଏ, ଝାଳ ବହୁଥିବା ହାତ ପାପୁଲିରେ ଜଣକୁ ପଚାରି ଲେଖିନେଲି ପ୍ରଶ୍ନ ପତ୍ରରେ (ଜୀବନରେ ଏଇଟି ମୋର ପ୍ରଥମ ଓ ଶେଷ କପି) । ଦେଖିଲି- ସେ ସଂକ୍ରାନ୍ତରେ ଅଙ୍କ ପଡିଛି । ସାଙ୍ଗେ ସାଙ୍ଗେ ଖାତାରୁ ଉତାରି ନେଇ ସେଇ ଫରମୁଲାକୁ ମୁଣ୍ଡଚୁଳରେ ପୋଛି ଲିଭେଇଦେଲି । ପରୀକ୍ଷା ଆରମ୍ଭ ହେବାର ଦଶମିନିଟ୍ ଭିତରେ ଜଟିଳ ଅଙ୍କଟି ସରଳ ହୋଇଗଲା ଏବଂ ୬ଟି ନମ୍ବର ଅକ୍ଳେଶରେ ହାତକୁ ଆସିଗଲା । ପରୀକ୍ଷା ଶେଷହେବାକୁ ଅଳ୍ପ ସମୟ ଥାଏ । ଖାତା ରିଭାଇଜ କରୁ କରୁ ଦେଖିଲି ଯେ, ଅଙ୍କରେ ୩୦ ରୁ ୩୦ । ବୀଜଗଣିତରେ ୩୦ ରୁ ୩୦ । ଜ୍ୟାମିତିରେ ସବୁ ପ୍ରାୟ ଠିକ୍ ଥାଏ । ଗୋଟେ ତ୍ରିଭୁଜ ଅଙ୍କନ ଥାଏ ଏବଂ ତାର ମାପଜୁଖ ମୋତେ ଖୁବ୍ କଷ୍ଟ ହେଲା । ସବା ଶେଷରେ ତ୍ରିଭୁଜଟି ଆଙ୍କିଲି । କିନ୍ତୁ ତାର ଯୋଡିଏ ବାହୁ ଖାତାରେ ମେଳ ନଖାଇ ଖାତା ବାହାରେ ଟେବୁଲ ଉପରେ ମେଳ ଖାଇଲା । ମନେ ମନେ ଟିକେ ହସିଲି- ମୋଟା ମୋଟି ଆଶାତୀତ ନମ୍ବର ପାଇଗଲି ଭାବି (ସମୟ ମଧ୍ୟ ନଥିଲା) । ଖାତା ଦାଖଲ କରିଦେଲି । ଉପର ଓଳି ଇତିହାସ ପରୀକ୍ଷା । ଉତ୍ତର ଆରମ୍ଭକରିବା ଠାରୁ ଶେଷ ପର୍ଯ୍ୟନ୍ତ କଲମ ମୋଟେ ବନ୍ଦ ନାହିଁ । ମୁଁ ଏମିତି ଏକନିଷ୍ଠ ହୋଇ ଉତ୍ତର ଲେଖୁଥାଏ ଯେ, ମୋ ପଛରେ ଜଣୈକ ନୀରିକ୍ଷକ, ଯେ ଛିଡାହୋଇ ପ୍ରାୟ ତିନିଘଣ୍ଟା କାଳ ତନ୍ମୟ ହୋଇ ମୋ ଲେଖା ପଢୁଥାନ୍ତି, ମୋତେ ଜଣା ନାହିଁ । ସେଦିନ ମନଖୁସିରେ ବିଡିଟିଏ ଟାଣି ଧୂଆଁ ଛାଡୁଥାଏ । ଦୈତାରୀ ବାବୁ ମୋ ପାଖକୁ ଆସି କହିଲେ- "କି ହ ବସନ୍ତ ବାବୁ, ଅଙ୍କ ଓ ଇତିହାସରେ ଖୁବ୍ ଭଲ ଫଳପାଇବ ଆଶାକରି ବିଡିରୁ ନିଶେଷକରି ଧୂଆଁ ଟାଣିଚାଲିଚ୍ଛ ମୋରି ସାମନାରେ ? ତମକୁ ଲଜ୍ଜା ମାଡୁନି ? ଆହୁରି ଦୁଇଦିନ ପରୀକ୍ଷା ଅଛି ଯେ ! ଟିକେ ସଜ୍ଜତ ହୋଇ ଆଗକୁ ମାଡିଚାଲ । ଇତିହାସ ତୁମର ଖୁବ୍ ଭଲହୋଇଛି । ମୋତେ ଜଣେ ନୀରିକ୍ଷକ କହିଲେ । କାରଣ ସେ ତୁମର ଗୋଟିକ ଯାକ ଖାତା ପଢିଛନ୍ତି, ତୁମ୍ଭରି ପଛରେ ଛିଡା ହୋଇ ।" ତହିଁ ଆରଦିନ ଓଡିଆ ସାହିତ୍ୟ ପରୀକ୍ଷା । ପ୍ରବନ୍ଧ ପଡିଥିଲା- "ରେଳଯାତ୍ରା" ବିଷୟରେ । ଗୁପ୍ତକପ୍ ଫୁଟବଲ

ଖେଳ ଦେଖିବାପାଇଁ କଟକ ଗଲା ବେଳେ ଯେଉଁ ଅଭିଜ୍ଞତା ଟିପି ରଖିଥିଲି- ସେଗୁଡିକ ବ୍ୟବହାର କଲି। ଦୀର୍ଘ ପ୍ରବନ୍ଧକୁ ସଂକ୍ଷେପ କରିବାପାଇଁ ଶେଷରେ ଲେଖିଲି- "ତା ପରେ ନିଦ ହୋଇଗଲା। ରାତିପ୍ରାୟ ୨ଟା। ମହାନଦୀ ପୋଲରେ ରେଳର ଘର୍ ଘର୍ ଶବ୍ଦରେ ଉଠିବସିଲି। କଟକ ଷ୍ଟେସନ। ରେଳଯାତ୍ରା ଶେଷ ହେଲା।" ସଂସ୍କୃତ ଓ ଭୂଗୋଳ ଏବଂ ଅତିରିକ୍ତ ସଂସ୍କୃତ ମଧ୍ୟ ଖୁବ୍ ଭଲ ହୋଇଥିଲା।

ବାରିପଦାରେ ଟ୍ରାକ ପହଞ୍ଚି, ଘର ଛୁଆଙ୍କୁ ଘରକୁ ନେଇ ଆସିଲା। ହିଫିଂ ପ୍-ହୁରେ କହି ପାହାଡିଆ ମୂଷା ପାହାଡ ଗୁମ୍ଫାକୁ ଫେରି ଆସିଲେ। ପଢା ଶେଷହେଲା କୁହାଯିବ।



## ॥ ଅଣତିରିଶ ॥

ସେ କାଳରେ ପରୀକ୍ଷା ଫଳ କୌଣସି ପତ୍ର ପତ୍ରିକାରେ ପ୍ରକାଶିକ ହେଉ ନଥିଲା। କେବଳ "ସାର୍ଚ ଲାଇଟ" ବୋଲି ପାଟନାରୁ ପ୍ରକାଶିତ ହେଉଥିବା କାଗଜରୁ ଆମେ ପରୀକ୍ଷା ଫଳ କେହି କେମିତି ଜାଣୁଥିଲୁ। ସେ ପତ୍ରିକାଟି ମୟୁରଭଞ୍ଜ ବା ଓଡିଶାରେ ଦୁଷ୍ପ୍ରାପ୍ୟ। ସ୍କୁଲ୍‌କୁ କେବେ ପାସ୍ ତାଲିକା ଆସିଲେ, ଆମେ ଜାଣୁ ଥିଲୁ। ମେଟ୍ରିକୁଲେସନ୍ ଏତେ କଷ୍ଟ ପାଠ ଯେ, ମୁଁ ପାସ୍ କରିବି ଏ ଧାରଣା ମୋର ନଥିଲା। ଅତି ବେଶିହେଲେ third divisionରେ ପାସ୍ କରିପାରେ। କିନ୍ତୁ ମୋ ପୂର୍ବ ବର୍ଷ କୃଷ୍ଣ ପାଣିଗ୍ରାହୀ ପାସ୍ କରିଥିଲେ first divisionରେ। ମୁଁ ନିଜକୁ ବହୁତ ହୀନ ଚକ୍ଷୁରେ ଦେଖେ। କେତେ ମାସ ପରେ ପରୀକ୍ଷା ଫଳ ସ୍କୁଲ୍‌କୁ ଆସିଲା। ଏବଂ, ମୁଁ first divisionରେ ପାସ୍ କରିଛି ଖବର କେବଳ ମୁଖରୁ ଶୁଣିଲି। ରେଭେନ୍‌ସା କଲେଜ ତଥାପି ବହୁତ ଦୂର। କାରଣ ୨୦ ଟଙ୍କିଆ ବୃତ୍ତିଟି ଯଥେଷ୍ଟ ନୁହେଁ। ଆହୁରି ୫-୧୦ ଟଙ୍କା ମାସକୁ ଦରକାର ପଡିବ। ଏଡ୍‌ମିଶନ ଖର୍ଚ୍ଚତ ଅଛି।

ସେ ବର୍ଷ ମୟୁରଭଞ୍ଜ ଗେଜେଟ୍‌ରେ (ପ୍ରଥମ ଭାଗ ତୃତୀୟ ସଂଖ୍ୟା) ଆମର ପରୀକ୍ଷା ଫଳ ନିମ୍ନ ମତେ ପ୍ରକାଶିତ ହୋଇଥିଲା। "ଅତୀବ ଆନନ୍ଦର ବିଷୟ ଯେ, ଗତ ମେଟ୍ରିକୁଲେସନ୍ ପରୀକ୍ଷାରେ ବାରିପଦା ଉଚ୍ଚ ଇଂରାଜୀ ସ୍କୁଲ୍‌ର ଫଳ ଅତି ସନ୍ତୋଷଜନକ ହୋଇଅଛି। ମେଟ୍ରିକୁଲେସନ୍ ଶ୍ରେଣୀର ୨୧ ଜଣ ଛାତ୍ର ମଧ୍ୟରୁ ୧୮ ଜଣ ପରୀକ୍ଷାକୁ ଯାଇଥିଲେ। ତହିଁ ମଧ୍ୟରୁ ୧୫ ଜଣ ଛାତ୍ର ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ ଅଛନ୍ତି।

ସେମାନଙ୍କ ମଧ୍ୟରୁ ଦୁଇ ଜଣ ପ୍ରଥମ ଶ୍ରେଣୀରେ ଓ ୧୧ ଜଣ ଦ୍ୱିତୀୟ ଶ୍ରେଣୀରେ ଉତ୍ତୀର୍ଣ୍ଣ ହୋଇଅଛନ୍ତି। ଉତ୍ତୀର୍ଣ୍ଣ ହୋଇଥିବା ଛାତ୍ରମାନଙ୍କ ମଧ୍ୟରୁ 'ବସନ୍ତ କୁମାର ଶତପଥୀ' ନାମକ ଜଣେ ଛାତ୍ର ପାଟନା ୟୁନିଭରସିଟିର ମେଟ୍ରିକୁଲେସନ ପରୀକ୍ଷାର୍ଥୀ ଛାତ୍ର ମାନଙ୍କ ମଧ୍ୟରେ ପଞ୍ଚମ ସ୍ଥାନ ଅଧିକାର କରିଅଛି। ଏବର୍ଷ ଅନ୍ୟ କୌଣସି ଓଡ଼ିଆ ଛାତ୍ର ଏପରି ସମ୍ମାନରେ ପାସ୍‌କରିଥିବା ଜଣା ନାହିଁ।"

ମୋର ଦୃଢ଼ ଧାରଣା ଓ ବିଶ୍ୱାସ ଯେ, ଯେଉଁ ଛାତ୍ର ରେଭେନ୍‌ସାରେ ନ ପଢ଼ିଛି, ଛ ବର୍ଷ ତାର ପରିବେଶ ଭିତରେ ନ ବଢ଼ିଛି ଏବଂ ସେ କାଳର କଲିକତା ନ ଦେଖିଛି, ସେ ଜୀବନରେ କଦାପି ପୂର୍ଣ୍ଣାଙ୍ଗ ମଣିଷ ହୋଇପାରିବ ନାହିଁ। ମେଟ୍ରିକୁଲେସନ୍ ପରୀକ୍ଷାରେ ସ୍କୁଲ୍‌କୁ ପ୍ରଥମ ହୋଇ ପାସ୍ କରିଥିବାରୁ କୋଡ଼ିଏ ଟଙ୍କିଆ ସ୍କଲାର୍‌ସିପ୍ ମୋର ପ୍ରାପ୍ୟ। କେଦାର୍ ଦ୍ୱିତୀୟ ହୋଇଯିବା ଫଳରେ ସେ କିଛି ପାଇବ ନାହିଁ। ମୋର ସାଙ୍ଗ ହରେକୃଷ୍ଣ ତ୍ରିପାଠୀ ଅନ୍ୟ ବୃତ୍ତିଟି ପାଇଲା ଏବଂ ରେଭେନ୍‌ସା କଲେଜ ଆମ ଆଖି ଆଗରେ ଝଲକିଲା। ମୋତେ ଏଥର ଟଙ୍କା ଯୋଗାଡ଼ କରିବାକୁ ପଡ଼ିବ। ନହେଲେ ହାତକୁ ଆସିଥିବା ଫଳଟି ହାତରୁ ଖସିପଡ଼ିବ।

ମୋର ଭବିଷ୍ୟତ ନିର୍ଭରକଲା ମୟୂରଭଞ୍ଜ ମହାରାଜାଙ୍କ ଉପରେ। ତାଙ୍କୁ ମୁଁ ଦୂରରୁ ଦେଖିଛି। ପାଖ ପହଞ୍ଚିନି। ନିଜେ ଗୋଟିଏ ଦରଖାସ୍ତ ଲେଖିଲି ଏବଂ ବାରିପଦା ପାଖ ବୁଡ଼ିଖମାରୀ ମାମୁଁ ଘରେ ରହି ଅପରେସନ ଆରମ୍ଭ କରିଦେଲି। ଦେୱାନ ଥାଆନ୍ତି ବାରିଷ୍ଟର ପ୍ରଶାନ୍ତ କୁମାର ସେନ୍, କେଶବ ଚନ୍ଦ୍ର ସେନ୍‌ଙ୍କ ଆତ୍ମୀୟ। ଦୀର୍ଘକାୟ ସୌମ୍ୟ ପୁରୁଷ, ସାହେବୀ ପୋଷାକରେ ସବୁବେଳେ ଥାଆନ୍ତି। ଅମୃତ ନିସ୍ୟନ୍ଦୀ ତାଙ୍କର ବାଣୀ। ବେଲଗଡ଼ିଆ ପ୍ରାସାଦରେ ସେ ଥାଆନ୍ତି। ତାଙ୍କ ଜରିଆରେ ମୋତେ ମହାରାଜାଙ୍କ ପାଖକୁ ଯିବାକୁ ପଡ଼ିବ। ଭାଗ୍ୟ ଭଲ ଯେ, ମୋ ମାମୁଁ ଘର ଗାଁର ବିହାରୀ ସେଠୀ ତାଙ୍କର ବିଶ୍ୱସ୍ତ ଚପରାଶି। ସେଇ ମୋର ପଥ ପ୍ରଦର୍ଶକ।

କେହି ଦ୍ୱାରଦେଶରେ ନ ଥିବାର ଦେଖି, ମୁଁ ପରଦା ବାହାରେ ଛିଡ଼ା ହୋଇ ନମ୍ର ଓ କ୍ଷୀଣ ଗଳାରେ କହିଲି "May I go in Sir ?" ତତ୍‌ଦଣ୍ଡେ ଭିତରୁ ଉତ୍ତର ଆସିଲା- "Not go in Sir, but come in Sir"- ମୋର ଭୁଲ ସଙ୍ଗେ ସଙ୍ଗେ ବୁଝିପାରିଲି। ତଥାପି ଦେୱାନ ସାହେବ ସଂଶୋଧନ କରିଦେଲେ, ଏବଂ ସେହି ସଙ୍ଗେ ମୋତେ ବୁଝେଇଦେଲେ ଯେ, ମୋର "Come in Sir" କହିବା ଉଚିତ୍ ଥିଲା। ସେଇଥିପାଇଁ ମୋତେ "Come in Sir" କହି ଭିତରକୁ ଡାକିଲେ। ସେ ଆଗରୁ ମୋ ପରୀକ୍ଷା ଫଳ କଥା ଜାଣିଥିଲେ। ମହାରାଜା ସାହେବ ମଧ୍ୟ ଜାଣିଥିଲେ ଯେ, ମୁଁ ପାଟନା

ୟୁନିଭର୍‌ସିଟିରେ ଏତେ ଭଲ ଫଳ କରିଛି । ତାପରେ ଦରଖାସ୍ତ ଫଳ କ'ଣ ହେଲା ଜାଣିବାପାଇଁ ମୋତେ ୧୮ ଦିନ କାଳ ମାମୁଁ ଘରେ ରହି, ରାଜବାଟୀ ବେଲଗଡିଆ କୋଠି ବାରମ୍ବାର ଯିବ ଆସିବାପାଇଁ ପଡିଲା । ଦେୱାନ ଅଫିସ୍‌ରେ ବିହାରୀ ସେଠୀ, ମହାରାଜା ଅଫିସ୍‌ରେ ଦଣ୍ଡପାର୍ଟ ମୋତେ ମହାରାଜା ଏବଂ ଦେୱାନଙ୍କ ସହିତ ଦେଖା କରେଇବାରେ ବହୁତ ସମ୍ବେଦନଶୀଳତା ଦେଖାଇଛନ୍ତି । ଗୋଟିଏ ପଇସା ମାଗି ନାହାଁନ୍ତି । ସେମାନଙ୍କୁ ମୁଁ ଛଦାମ୍‌ଟିଏ ମଧ୍ୟ ଦେଇ ନାହିଁ । ମହାରାଜା ସାଙ୍ଗରେ ଦିନେ ଦେଖାହେଲା । କେତେ ଟଙ୍କା ମୋର୍ ଖର୍ଚ୍ଚ ହେବ ଜାଣିବା ପାଇଁ ସେ ମୋତେ ଗୁଡେଇ ତୁଡେଇ ନାନା ପ୍ରଶ୍ନ ପଚାରିଲେ । ମୁଁ ହିସାବ କରୁଥାଏ, ମହାରାଜା ଟୋଟାଲ କରୁଥାନ୍ତି । ହିସାବରେ ପାଏ ଦୁଧର ଦାମ୍ ମଧ୍ୟ ବି ଥିଲା । ଯଦିଚ ମୁଁ ରେଭେନ୍‌ସା କଲେଜରେ ଦିନେ କେବେ ପାଏ ଦୁଧ ଖାଇନାହିଁ । ଅଣ୍ଡା ବି ଲେଖିଥିଲି । ଗୋଟିଏ ଅଣ୍ଡା କେବେବି ପେଟକୁ ଯାଇ ନାହିଁ । ସତମିଛ କହି ଆସିଲି । ମୁଁ ଯେ ମୟୂରଭଞ୍ଜର ଗର୍ବର ଧନ, ଏକଥା ସେ ବୋଧହୁଏ ଜାଣିଥିଲେ ଏବଂ ଗରିବ ପିଲାଟିକୁ ଯେମିତି କରି ହେଉ ଉଚ୍ଚଶିକ୍ଷା ଦେବେ, ଏହାହିଁ ତାଙ୍କର ଇଚ୍ଛାଥିଲା । ସଭାଶେଷରେ ମୁଁ ଅପେକ୍ଷା କରିଥାଏ । ଦେଓ୍ୱାନ ପି.କେ. ସେନ୍ ମହାରାଜାଙ୍କ ଅଫିସରୁ ବାହାରି ଆସିଲେ ଏବଂ ବାରଣ୍ଡାରେ ମୋତେ ଦେଖିଲା ମାତ୍ରେ କହିଲେ- "ବସନ୍ତ ତୁମି ଦୁଶ ପଞ୍ଚାଶ ଟାକା ପାବେ ।" ମୁଁ ଆନନ୍ଦ ବିଭୋର ହୋଇ କହିଲି- ସାର୍ କିମିତି ହିସାବରେ ମହାରାଜା ମୋତେ ଏତିକି ଟଙ୍କା ଦେଲେ ? ଦେଓ୍ୱାନ ସାହେବ କହିଲେ- "ବସନ୍ତ ! ଦାନେର କି ବାବା ଏକଟା ହିସେବ ଥାକେ ? ମହାରାଜା ସାହେବ ଦାନ୍ ଦିଏଛେନ୍, ତୁମି ମାଥାଏ ତୁଲେ ନିଏ ନାଓଁ ।" ମୋତେ ଖୁବ୍ ଲାଜମାଡିଲା । "ତିନି ପଇସା ତହୁଁପାଇଁ ଆହୁରି ବେଣା ଉପାଡଇ ।" ତ୍ରିନାଥ ମେଳାର ପଦଟି ବାରମ୍ବାର ମନେପଡିଲା । ସେତେବେଳେ ମହାରାଜାଙ୍କ ଅଫିସରେ ଭଗବାନ୍ ବାବୁ ଓ ମଦନ ବାବୁ ବୋଲି ଦୁଇଜଣ କିରାଣୀ ଥା'ନ୍ତି । ଅତ୍ୟନ୍ତ ବିଶ୍ୱସ୍ତ, ପ୍ରଭୁଭକ୍ତ, ସାଧୁ ଓ ସଚ୍ଚୋଟ । ମୋତେ ସେମାନେ ପୁଅ ଆକାରରେ ଦେଖୁଥିଲେ ବୋଧହୁଏ । କୌଣସି ପ୍ରକାର ସାହାଯ୍ୟରୁ ସେମାନେ ମୋତେ ଊଣାକରି ନାହାନ୍ତି । ସେମାନେ ମୋତେ ତହିଁ ପରଦିନକୁ ଆସିବାକୁ କହିଲେ ।

ଟଙ୍କା ମିଳିଯିବ । ମୁଁ ଭାତଖାଇ ଅଫିସ ଏବଂ ଖଜଣାଖାନାକୁ ଗଲି । ମୋର ଦୁଇ ଶହ ପଚାଶ ଟଙ୍କା ଯେ କେତେ ବା କଣ ସେ ବିଷୟରେ କୌଣସି ଧାରଣା ନ ଥିଲା । ଖଜଣାଖାନାରେ ଯେତେବେଳେ ଥାକ ଥାକ କରି ପଚିଶଟା ଦଶଟଙ୍କିଆ ଥାକ ମୋ ଆଗରେ ରଖାଗଲା, ମୋ ଦେହରୁ ଝାଳବହିଗଲା । ଜୁଲାଇ ମାସ, ବର୍ଷା ହେଉଥାଏ । ଟଙ୍କା କାହିଁରେ ଆଣିବି ସେଇଟା ମୁଁ ଭାବି ନାହିଁ । ଖଣ୍ଡିଏ କରିଆ ମୋ କାନ୍ଧରେ ଥିଲା ।

ସେଇଟା ଓଦା ହୋଇଯାଇଥାଏ। ଟଙ୍କାକୁ କରିଆରେ ରଖି ଗଣ୍ଠିଳିଟିଏ କଲି ଏବଂ ତିନିଟା ବାଜିଛି କି ନାହିଁ, ଭଞ୍ଜପୁର ଷ୍ଟେସନ୍‌ରେ ପହଞ୍ଚିଲି। ଟ୍ରେନ୍‌ରେ ଯାଇ ରାଜାଲୋକା ଷ୍ଟେସନ୍‌ରେ ଓହ୍ଲାଇ, ଗଣ୍ଠିଳିଟିକୁ କାନ୍ଧରେ ରଖି, ଅନ୍ଧାରିଆ ରାସ୍ତାରେ ଏକୁଟିଆ ଗାଁକୁ ଚାଲିଲି। ଗଣ୍ଠିଳିରେ ଖାଲି ଭିକ୍ଟୋରିଆ ଆଉ ପଞ୍ଚମ ଜର୍ଜଙ୍କ ରୂପା ଟଙ୍କା। ମୁଁ କେତେବେଳେ ଭାବି ନାହିଁ, ଟଙ୍କା ଚୋରିହୋଇଯିବ ବା ହିତରୁ ଖସି ପଡି ଗଣ୍ଠିଳି ହରାଇ ଦେବି, ବା କିଏ ଚୋର ଛଡାଇ ନେଇଯିବ। କାନ୍ଧରେ ଟଙ୍କା ବୁଜୁଳିଟି କେତେ ଓଜନ ସେଇଠି ହିସାବ କରୁଥାଏ। ଅଶିତୋଳାରେ ଶେରେ। ମୋ କାନ୍ଧରେ ଦୁଇଶହ ପଚାଶଟି ଟଙ୍କା ଥିଲା। ତିନିଶେର ଦୁଇ ଛଟାଙ୍କି। ବର୍ଷାରେ ଜୁଡୁବୁଡୁ ହୋଇ ଭଗବାନଙ୍କୁ ଡାକିଚାଲିଥାଏ। ଘରେ ପହଞ୍ଚିଲା ବେଳକୁ ଅନ୍ଧାର। ମା' ବାପାଙ୍କୁ ଟଙ୍କା ବୁକୁଳାଟି ଦେଲି। ସେମାନେ ଠାକୁର ଘରେ ପିଲିସଜ ତଳେ ରଖିଦେଲେ।

ଭିଜା କରିଆ ଭିତରେ ଯେ ଟଙ୍କା ଅଛି, ସେଟା ସେମାନଙ୍କୁ ଜାଣିବାକୁ ଅସୁବିଧା ହେଲା ନାହିଁ। ଅତଏବ, ପୋଛାପୋଛି କରି ମା ମୋତେ ସାଷ୍ଟମ କଲା। ମୁଡିରେ ଘିଅ ଦେଇ ଜଳଖିଆ କଲି। ଏଇଠି କହି ଦେଇଥାଏ ଯେ, ମାମୁଁଘରେ ଥିଲାବେଳେ ଭୋକରେ ଛଟପଟ ହୋଇ, ଦିନେ ସଖାଳେ ଗୁଡାଏପାଚିଲା ପିଜୁଳି ଖାଇଦେଲି। ସେଦିନ ସନ୍ଧ୍ୟାବେଳେ ମୋର ପ୍ରାୟ ଡିହାଇଡ୍ରେସେନ୍ ହୋଇଗଲା। ମାମୁଁ ଘରେ ଗୋଟାଏ କର୍ପୂରାରିଷ୍ଟ ଶିଶିରୁ ଅଧେ ପିଇଦେଲି ଏବଂ ନିଶ୍ଚିତ ମୃତ୍ୟୁରୁ ରକ୍ଷାପାଇ ଗଲି।" ତାପରେ ଗୋଟିଏ କଂସା ଥାଳି ଆଣି ଟଙ୍କାଗୁଡିକୁ ମେଲାଇ ରଖାଗଲା। କାଳେ କିଏ ଦେଖିଦେବ, ସେଇ ଭୟରେ ଡାବୁଆ ଘର ଭିତରକୁ ଆମେ ତିନିହେଁ ପଶିଲୁ। ଡିବିରି ଆଲୁଅଟିଏ ଜଳାହେଲା। ଦାଣ୍ଡଘରେ ଶୋଇଥିବା ଜେକେବାପାଙ୍କୁ ଡାକିଲି। "ଜେଜେବାପା, ଟିକିଏ ଡାବୁଆ ଘରକୁ ଆସ।" ଥତବତ ହୋଇ ବୁଢା ଆସିଲେ। ଆଲୁଅର ତରାସକୁ ହାତ ପାପୁଲିରେ ଉହାଡକରି ସେ ଛିଡାହେଲେ। ବାପା ମାଆ ଟଙ୍କା ଥାଳି ଆଡକୁ ଚାହିଁ ରହିଥାନ୍ତି। ସେ ଆଉ କିଛି ନ କହି ତାଙ୍କ ପୁଅକୁ କହିଲେ- "ଭୋଳା, ଏ ଆଖି କି ଦେଖୁଚି !" ଆଖିରୁ ତାଙ୍କର ଆନନ୍ଦର ଲୁହ ଝରିଗଲା। କହିଲେ "ଏ ଘର ଧନ୍ୟ ହୋଇଗଲା। ମୋ କଥା ଶୁଣ୍, ହିସାବରେ ଟଙ୍କା ଖରଚକରିବ। ଗୋଟିଏ ଟଙ୍କା ନେଇ ଗୋବିନ୍ଦ ଦୋକାନରେ ଭଙ୍ଗେଇବ। ଆଠଦଶ ଦିନ ପରେ ସେଇଟି ସରିଗଲେ, ଆଉ ଗୋଟିଏ ନେଇ ଭଙ୍ଗେଇବ। ହିଯ୍ୟତ ଭରିରେ ସାରା ଜୀବନରେ ମୁଁ ଏତେ ଟଙ୍କା ଦେଖି ନାହିଁ। ନନ୍ଦ ଘରେ ବି ତ ଏତେ ଟଙ୍କା ଥିବ ନାହିଁ।" ଆଜି ମୋର ଗୋଟିଏ ନାତି ଆମେରିକାରେ ମାସକୁ ପ୍ରାୟ ଦେଢ ଲକ୍ଷ ଟଙ୍କା ପାଉଛି। ଜେଜେବାପାର ଆନନ୍ଦ ମୁଁ ଦିନେ

ମଧ୍ୟ ପାଇପାରି ନାହିଁ, ସେ ଟଙ୍କା ଦେଖିଶୁଣି । ଆଇ.ଏ. ପାସ୍ କଲା ପରେ କେଜେ ବୁଢା ଗହ୍ମାପୂର୍ଣ୍ଣିମା ଦିନ ସୂର୍ଯ୍ୟାସ୍ତ ସମୟରେ 'ହରିନାମ ସତ୍ୟ ହେ' ଡାକ ଭିତରେ ଚାଲିଗଲେ । ମୁଁ ରେଭେନ୍ସାରେ ଥାଏ ।

ସେତି ପୁଟୁଳା ଆଉ ଥରେ ସଜାଗଲା । ସତର ଟଙ୍କିଆ ଟ୍ରାଙ୍କ୍ ଭିତରେ ଜିନିଷପତ୍ର ରଖାହେଲା । ଜିନିଷ ପତ୍ରକୁ ଚାହିଁ ବାକ୍ସଟା ଖୁବ୍ ବଡହେଲା କୁହାଯିବ । ବାକ୍ସରେ ଥାଏ ଗୋଟିଏ ଧୋତି, ଗୋଟିଏ ସାର୍ଟ, ଖିଲିକାତିରେ କଟା ଗୁଡାଏଶାଳ ଦାନ୍ତକାଠି, ଯେମିତି ପୂଜାଲ୍ଲୁଟି ପହଞ୍ଚିଯିବ, ଗଣପତି ଦୋକାନର ବିଡି ଦୁଇ ହଜାର, କାବୁଲି ବାଲା ପାଖରୁ ନନା ଧାରରେ ଆଣିଥିବା ବହଳିଆ କଳା ପଶମଚାଦର, ମେଟ୍ରିକୁଲେସନ୍ ପରୀକ୍ଷାକୁ ଯିବା ବେଳର କେନ୍ଭାସ ଯୋତା । ସେ କାଳରେ ଆମକୁ ଏଡ୍‌ମିଶନ୍‌ପାଇଁ ଦରଖାସ୍ତ ବୋଧହୁଏ ଦେବାକୁ ପଡୁ ନଥିଲା । Admission ପାଇଁ ଇଣ୍ଟିମେସନ୍ ବୋଧହୁଏ ଆସେ ନାହିଁ । ଏଡ୍‌ମିଶନ୍‌ର ଶେଷ ତାରିଖ ମୋତେ ଜଣା ନାହିଁ । ଯାଇ ପହଞ୍ଚିଲେ ସାଙ୍ଗେ ସାଙ୍ଗେ ଏଡ୍‌ମିଶନ୍ ହୋଇଯିବ । ରେଭେନ୍ସାକୁ ଯିବାର ବହୁତ ଡେରି ହୋଇଗଲାଣି । ଯିବାରେ ମୋର ଡେରି ହେବାର କାରଣ, ମୋର ଭଣଜାର ବେମାର । ଆଠ ଦଶ ମାସର ଭଣଜା ପେଟରେ ଏବଂ ପିଠିରେ ଯୋଡାଏ ବଡ ବଡ ବଥ । ବାରିପଦାରେ ଅପରେଶନ୍ କ'ଣ ଜାଣନ୍ତି ନାହିଁ । ମୁଁ ପ୍ରାୟ ସେମାନଙ୍କ ସାଙ୍ଗରେ ୧୫-୧୬ ଦିନ ରହି ଭଣଜାକୁ ଆରୋଗ୍ୟ କରି, ଗାଁକୁ ଫେରାଇନେଇଯିବା ପରେ, ମୁଁ ପାଠ ପଢିବାକୁ ବାହାରିଲି । ବହୁତ ବିଚାର ବିମର୍ଷ ପରେ ମୋର ବନ୍ଧୁ, ସାଙ୍ଗ ତଥା କକା ଶ୍ୱଶୁର ମଧ୍ୟ ପଢିବାକୁ ଯିବେ ବୋଲି ଶୁଣାଗଲା । ବାରିପଦାରେ ସେ ଅପେକ୍ଷା କରିଥାନ୍ତି ମୋ ପାଇଁ । ତାଙ୍କ ପାଖରେ ବି ଦାନ୍ତକାଠି ରଖାହୋଇଥାଏ । କିନ୍ତୁ ଶେଷ ମୁହୂର୍ତ୍ତରେ ତାଙ୍କର ବାପା ଓ ଭାଇ କଲେଜକୁ ପଠାଇପାରିବେ ନାହିଁ ବୋଲି ନିଷ୍ପତ୍ତିକଲେ । ତାଙ୍କର ଉଚ୍ଚଶିକ୍ଷା ହେଲା ନାହିଁ । ଆମେ ଉଭୟେ ଦୁଃଖିତହେଲୁ । କିନ୍ତୁ ତାଙ୍କର ପଢିବାକୁ ଏତେ ଆଗ୍ରହଥିଲା ଯେ, ପ୍ରାୟ ଷାଠିଏ ବର୍ଷରେ ସେ ପ୍ରାଇଭେଟ୍‌ରେ ପରୀକ୍ଷା ଦେଇ ଆଇ.ଏ. ପାସ୍‌କଲେ, ଯଦିଓ ସେଇ ପାଠ ତାଙ୍କର କୌଣସି କାମକୁ ଆସିଲା ନାହିଁ ।

ଏକୁଟିଆ କଟକ ଗଲି । ଫୁଟ୍‌ବଲ ଖେଳ ଦେଖିବାପାଇଁ ଯେ କଟକ ଯାଇଥିଲି, ତାର ଅଭିଜ୍ଞତା ମୋତେ ମେଟ୍ରିକୁଲେସନ୍ ପରୀକ୍ଷାରେ "Railway Journey" ପ୍ରବନ୍ଧ ଲେଖିବାରେ ସାହାଯ୍ୟକରିଥିଲା । ପୁଣି ଏକୁଟିଆ କଟକ ସହର ଯାଇ ଏଡ୍‌ମିଶନ୍ ନେବାରେ ସାହାଯ୍ୟକଲା । ରାତି ୨ଟା ୩୦ରେ ଇଷ୍ଟ ହଷ୍ଟେଲ୍‌ର ବିରାଟ ଦ୍ୱାରଦେଶରେ ବେଡିଂ ବାକ୍ସ ଧରି ଛିଡାହେଲି ଏବଂ ଢୋ ଢୋ କରି କବାଟ ବାଡେଇଲି । ନାରାୟଣ

ଚପରାଶି କବାଟ ଫିଟେଇଲା । ଜ୍ଞାନର ଭଣ୍ଡାର ରେଭେନ୍‌ସା କଲେଜରେ ମୁଁ ସତର ବର୍ଷ ବୟସ କ୍ରମରେ ପ୍ରବେଶକଲି । ଭୂସ୍ୱର୍ଗରେ ପଶିଲା ପରି ମୋତେ କଣାଗଲା । ସାନ୍ଧତାରୁ ରେଭେନ୍‌ସା ବହୁତ ଦୂର୍ ଜଣା ପଡୁଥିଲା । ଆଜି ସେ ଦୂରତା ମୋ ପକ୍ଷରେ ଏକାବେଳେ କମ୍ ହୋଇଗଲା । ମୋତେ ତିନି ନମ୍ବର ହ୍ୱାର୍ଡର ଅଠାବନ ନମ୍ବର କୋଠରୀରେ ସିଟ୍ ମିଳିଲା । ଆଉ ଦୁଇ ଜଣ ଥା'ନ୍ତି ସେଠି । ସେ ଦିହେଁ ହେଲେ ବେତନଟୀରେ ମଧୁସୂଦନ ପରିଡା, ଆଉ ଜଣେ ହେଲେ ବାଲେଶ୍ୱରର ପ୍ରିୟନାଥ ନନ୍ଦୀ । ରେଭେନ୍‌ସା କଲେଜରେ ପଢୁଥିବା ସମୟର କଥା । ସେମାନେ ମୋର ଅନ୍ତରଙ୍ଗ ବନ୍ଧୁ । ଯେତେ ପ୍ରକାରରେ ସେ ଦୁହେଁ ମୋତେ ସାହାଯ୍ୟ କରିଛନ୍ତି, ତାହା ବର୍ଣ୍ଣନା କରିହେବ ନାହିଁ । ଏତେ ଅନ୍ତରଙ୍ଗ ଯେ, ଦିନେ ମୁଁ ରାତି ଅଧିଆ ପ୍ରିୟନାଥର ଅର୍ଡର ବକାର ଘରେ ପହଞ୍ଚନ୍ତେ, ସେ ଆନନ୍ଦ ଗଦଗଦ ହୋଇ ନିଜର ନବ ବିବାହିତା ବଧୂକୁ ଛାଡି ମୋ ସାଙ୍ଗରେ ଶୋଇ ରାତିଯାକ କଟାଇ ଦେଲେ । ବିଡି, ଚା, ସାର୍ଟ, ଲୁଗାପଟା, ପାନ, ସରବତ୍, କଦଳୀ ସବୁ ମତେ ଦେଉଥିଲେ । ଏ ବନ୍ଧୁତା ସେଇଠି ସୃଷ୍ଟି ହେଲା । ପ୍ରଥମ ରାତିରେ ଭୀଷଣ ନିଦ ମାଡୁଥିଲେ ମଧ୍ୟ ମୁଁ ନିଜେ ଶୋଇଲି ନାହିଁ, କି ସେମାନଙ୍କୁ ଶୁଆଇଦେଲି ନାହିଁ । ନୂତନ ଜୀବନ, ନୂତନ ଅଭିଜ୍ଞତାର ଆରମ୍ଭ । ପରଦିନ ସକାଳେ ମୁଁ ରେଭେନ୍‌ସା କଲେଜକୁ ଏକାବେଳକେ ଓତଃପ୍ରୋତ ଭାବରେ ପଶିଗଲି । ଏ ହେଲା ମୋର ନୂଆ ଦୁନିଆ । ପ୍ରିୟନାଥ ଓ ମଧୁସୂଦନ ଦୁହେଁ ପୂର୍ବସୁରୀ, "ଗାଇଡ୍, ଗାଡିଆନ୍ ଏଣ୍ଡ ସୋଲ୍ ଅଫ ମାଯିଁ କଲେଜବିଙ୍ଗ୍ ।" କଲେଜ ରହଣିକାଳରେ, ଗାଧୋଇବା, ଖାଇବା, ବୁଲିବାରେ ଆମେ ତ୍ରିମୂର୍ତ୍ତୀ ଏକାତ୍ମା । ପ୍ରିୟନାଥ ନନ୍ଦୀ ମୋତେ ଶିଖାଇଥିଲା- ଛୋଟଲୋକି ପରିତ୍ୟାଗ କରିବାକୁ । ଦିନେ ତା ସାଙ୍ଗରେ ସିନେମା ଦେଖିବାକୁ ଯାଇଥିଲୁ 'ହଲମୁକ୍' (Haldar and Mukherjee) ଟକିକ୍‌କୁ । ମୋ ପାଖରେ ପଇସା ନଥିଲା । ତିନି ଅଣା ପଇସା ଦେଇ ନନ୍ଦୀ ମୋର ଟିକଟ କାଟି ଦେଲା । ଯେତେବେଳେ ମୁଁ ତାକୁ ପଇସା ଫେରେଇଲି, ଧାର ପଇସା ଶୁଝିବା ବାବଦରେ, ସେ କଡା ଆଖିରେ ମୋ ଆଡକୁ ଚାହିଁ କହିଲା "ହୁଁ ବେ ଶଳା, ତୋର ଏ ଯାଏଁ ଛୋଟ ଲୋକି ଯାଇ ନାହିଁ ? ତିନି ଅଣା ପଇସା ନ ଶୁଝି ଅନ୍ୟ ଉପାୟରେ ତ ଶୁଝି ପାରି ଥା'ନ୍ତୁ ?" ପରବର୍ତ୍ତୀ କାଳରେ ମଧୁ ପରିଡା ଯେତେବେଳେ ମିଲ୍ ମାଲିକ ହେଲା, ସେତେବେଳେ କଲିକତାରେ ସେ ମୋତେ ଗୋଟାଏ ଚଉଦ ଟଙ୍କିଆ ଜନ୍ ବେରେଲ୍ (Barrell) ହାତ ବନ୍ଧା ଘଡି କିଣିଦେଇଥିଲା । କ୍ଲାସ ଫ୍ରେଣ୍ଡ ବୋଲି କହିଲେ କ'ଣ ବୁଝାଏ, ତାହା ଏ ଦୁଇ ଜଣ ମୋତେ ଶିଖେଇ ଥିଲେ ।



# ।। ତିରିଶ ।।

ରେଭେନ୍‌ସା କଲେଜ ମୋର Alma-mater (ସମସ୍ତଙ୍କର ମାତା)। ରାମଚନ୍ଦ୍ର ଲଙ୍କାରୁ ଯେତେବେଳେ ସୀତାଙ୍କୁ ଧରି ଅଯୋଧ୍ୟାକୁ ଫେରୁଥିଲେ, ସରଜୁ ନଦୀକୁ ବିମାନରୁ ସୀତାଙ୍କୁ ଦେଖାଇ କହିଥିଲେ- "ସେ ଅଂ ମଦିଆ ଜନନୀ ଇବ" ଅର୍ଥାତ୍ ତାହାରି ପାଣି ମୁଁ ପିଇଛି। ତାହାଁରି ଉତ୍ସଙ୍ଗରେ ମୁଁ ଖେଳିଛି। ଛଅଟି ବର୍ଷ ରହଣି ଭିତରେ ଜୀବନର ଅସଲ ସମୟରେ ରେଭେନ୍‌ସାରେ କଟାଇ ମୁଁ ଧନ୍ୟହୋଇଛି। ଏତେ ପୂତ ଓ ପବିତ୍ର ସେ ଜାଗା ଯେ, ମୁଁ ଗତ ପଚାଶ ବର୍ଷ ଧରି ସେଠାକୁ ଥରୁଟିଏ ଯାଇନାହିଁ। ମୋତେ ଜଣାପଡେ ଯେମିତି ସେଇ ପ୍ରଫେସରଗଣଙ୍କ ପୂତ ପବିତ୍ର ଆତ୍ମା ତା ଭିତରେ ରହିଛନ୍ତି ଏବଂ ମୁଁ ପଶିଗଲେ ସେମାନଙ୍କର ଶାନ୍ତିରେ ବ୍ୟାଘାତଆସିବ। ସେଇ ରେଭେନ୍‌ସା ବିଷୟରେ ମୋ ମୁଣ୍ଡକୁ କିଏ ପୁରେଇ ଦେଇଥିଲା ଯେ, ସାରା ପୃଥିବୀରେ ବୋଧେ ସେଇଟା ବଡ କଲେଜ। ତାର ଯିଏ ଡିଜାଇନ୍ କରିଥିଲା, ସେ କୁଆଡେ ଲକ୍ଷେ ଟଙ୍କା ନେଇଥିଲା ! କି ସିମେଟ୍ରି ! କି ଡିଜାଇନ୍ ! କି ବିସ୍ତିର୍ଣ୍ଣ ପ୍ରାନ୍ତର ! ଭାରତର ସୀମାନ୍ତରେ ଦେବାତ୍ମା ହିମାଳୟ ପରି ମୋ ରେଭେନ୍‌ସା ଛିଡାରହିଛି। ଆଜି ଦୂରରୁ ଦେଖିଦେଲେ ମୁଣ୍ଡ ଆପେ ଆପେ ନଇଁଯାଏ। ପୂର୍ବ ପଶ୍ଚିମ ଦୁଇଟି ଛାତ୍ରାବାସକୁ ସଂଯୋଗ କରୁଛି କଳା ଓ ବିଜ୍ଞାନ ବିଭାଗ। ମଝିରେ କନିକା ଲାଇବ୍ରେରୀ।

ମନେ ପଡିଯାଉଛି- କଲେଜର ତତ୍‌କାଳୀନ ପ୍ରିନିସ୍‌ପାଲ୍ ଡବ୍ଲିୟୁ.ଭି.ଜ୍ୟୁକ୍ (ଉଇଲିୟମ୍ ଭିକ୍ଟର ଜ୍ୟୁକ୍)ଙ୍କ କଥା। ସେ କୁଆଡେ ପ୍ରଥମ ମହାଯୁଦ୍ଧ ସମୟରେ ମେସୋପଟାମିଆଁରେ ବ୍ରିଟିଶ ସରକାର ତରଫରୁ ଯୁଦ୍ଧକରିଥିଲେ। ସେ ଆମକୁ ଇଂଲଣ୍ଡ ଇତିହାସ ପଢାଉଥିଲେ। ଆମେ ବହୁତ ଦିନପରେ ଜାଣିଲୁ ଯେ, ସେ ଇତିହାସ ପଢାଉଛନ୍ତି। ସେ ଏମିତି ଭୋ ଭୋ କରି ଉଚାରଣ କରୁଥିଲେ ଯେ, ତାଙ୍କକଥାରୁ ଗୋଟିଏ ଶବ୍ଦ ବୁଝିପାରୁ ନଥିଲୁ। ମୋ ସାଙ୍ଗମାନେ ବହିପତ୍ର ରଖିଦେଇ ବୋର୍ଡିଂକୁ ଚାଲିଯାଉଥିଲେ ଏବଂ ଘଣ୍ଟାବାଜିଲେ ଫେରୁଥିଲେ। ତା ଭିତରେ ଅନେକଙ୍କର ଭାଲୁକର (ମେଲେରିଆ) ହୋଇ ଯାଉ ଥିଲା। କ'ଣ ପଢାଉଛନ୍ତି ସେମାନେ ମୋତେ ପଚାରିଲେ, ମୁଁ କିଛି କହିପାରୁ ନଥିଲି। ତାଙ୍କ ସାମନାରେ ମୁଁ ବସିଥାଏ। ତେଣୁ କାଳେ ସେ ବିରକ୍ତ ହେବେ ବୋଲି ମୁଁ ଖସି ପଳାଇ ପାରୁ ନଥିଲି। ତନ୍ମୟହୋଇ ଚାହିଁରହିଥାଏ ତାଙ୍କ ମୁହଁକୁ। ଉପର ମହଲାରେ ଥିବା ତାଙ୍କ ଅଫିସକୁ ସେ ଆସନ୍ତି। ଘୁରି ଘୁରି ଉଠିଥିବା ଗୋଟିଏ ଲୁହା ଷ୍ଟେୟାରକେସ୍ ଦେଇ। କେବଳ ସୁକୁତି ପଟ୍ଟନାୟକ ବୋଲି ଏକ ଦୀର୍ଘକାୟା ସୁଶ୍ରୀ

ଏମ୍.ଏ. ପଢୁଥିବା ଛାତ୍ରୀ ସେହି ପାହାଚ ଦେଇ ଆସେ। ପୁଅପିଲା କ୍ୱଚିତ୍ ତାହା ବ୍ୟବହାରକରନ୍ତି। କ୍ଲାସ୍‌କୁ ଆସିବାବେଳେ ପ୍ରଥମେ କଳା ମିଚିମିଚି ଲୋମଶ କ୍ଷୁଦ୍ରକାୟ କୁକୁରଟି ପଶିଆସେ। ତା ପଛେ ପଛେ ଲାଲ୍ ଟକ୍‌ଟକ୍ ମାଲିକ ଆସନ୍ତି। ତାଙ୍କ ପଛେ ପଛେ ରେଜିଷ୍ଟର ଧରି ଚପରାଶି ଆସେ। ହାଜିରା ପରେ ଉପସ୍ଥାନ ଖାତା, ଚକ, ଡାଷ୍ଟର ଧରି ଚପରାଶି ଅଫିସକୁ ଫେରିଯାଏ। ହାୟିଡେସ୍କ ତଳେ କୁକୁରଟି ସାହେବଙ୍କ ଗୋଡ ପାଖରେ ଆରାମରେ ସାଙ୍ଗେ ସାଙ୍ଗେ ଶୋଇଯାଏ। ସାହେବ ଆରମ୍ଭ କରିଦିଅନ୍ତି ଭୋ ଭୋ। ପିଲାମାନେ ଶୁଣୁଛନ୍ତି କି ନାହିଁ, ବୁଝୁଛନ୍ତି କି ନାହିଁ, ସେ କଥା ସାହେବ ବୁଝନ୍ତି ନାହିଁ। ପିଲାମାନେ ବି ଜାଣିବାକୁ ଚାହାଁନ୍ତି ନାହିଁ ସାହେବ କ'ଣ ପଢାଉଛନ୍ତି। କେତେ ଦିନ ସାହେବଙ୍କୁ ଶୁଣିବା ପରେ ମୋ କାନ ଭିତରେ ପଶିଗଲା 'Seven wives'। ଜାଣି ପାରିଲି ସାହେବ ରାଜା ଅଷ୍ଟମ ହେନେରୀଙ୍କ ବିଷୟରେ ପଢାଉଛନ୍ତି। ମୋଠୁ ଶୁଣି ପିଲାମାନେ ଜାଣିଲେ କେଉଁ ବିଷୟ ପଢାହେଉଛି ଇତିହାସରୁ। ଘଣ୍ଟା ବାଜିଲା। କୁକୁର ଉଠିବସିଲା ଏବଂ ରାସ୍ତା ଧରିଲା। ପ୍ରିନିସ୍‌ପାଲ୍ ତା ପଛେ ପଛେ ଚାଲିଲେ। ସାଙ୍ଗପିଲାମାନେ ଯେ ଯେଉଁଠି ଥିଲେ ଆସିଗଲେ।

ପ୍ରିନିସିପାଲ୍ ଭାରି ଡିସିପ୍ଲିନ୍ ମାନନ୍ତି। ଦିନେ ସାହେବ ତାଙ୍କ ଗାଡିରୁ କୁକୁର ସହିତରେ ଓହ୍ଲାଇପଡିଛନ୍ତି। ଦେଖିଦେଲେ, ଗୋଟିଏ ପିଅନ କାନ୍ଥ କଡରେ ବସି ଏକ କରୁଛି। ତା ନାଁ ପଚାରି ନେଇ ସାହେବ ଉପରକୁ ଚାଲିଗଲେ। ଦଶ ମିନିଟ୍ ଭିତରେ ଜଣା ପଡିଲା ଯେ, ସାହେବ ତାଙ୍କୁ ପଚାଶ ଟଙ୍କା ଜୋରିମାନା କରିଛନ୍ତି- "ଫର୍ କମିଟିଙ୍ଗ୍ ନୁଇସେନ୍ସ ଇନ୍ ଦି କଲେଜ ପ୍ରେମିସିସ୍"। ସେତେବେଳେ ପଚାଶ ଟଙ୍କାରେ ପନ୍ଦରଶହ ଶେର ଚାଉଳ ମୟୂରଭଞ୍ଜରେ ମିଳୁଥିଲା। ସାହେବ କଠୋର ନୀତିବାଦୀ। ଦଣ୍ଡିତ ପିଅନଟି ପହଞ୍ଚିପାରିଲା ନାହିଁ ସାହେବଙ୍କ ପାଖକୁ। ପ୍ରଫେସର ଆର୍ତ୍ତବାବୁ ପିଅନ ତରଫା ହୋଇ ବହୁତ ଲଢିଲେ ସାହେବଙ୍କ ପାଖରେ। ତାଙ୍କୁ ବୁଝାଇଲେ, ପିଅନର ଆର୍ଥିକ ସ୍ୱଚ୍ଛଳତା ଦୃଷ୍ଟିରୁ ପଚାଶ ଟଙ୍କାର ମୂଲ୍ୟ। ସାହେବ ପଚାଶ ଟଙ୍କାକୁ ପଚିଶ କରିଦେଲେ। ପରେ ପ୍ରଫେସର ଗୁରୁଚରଣ ବାବୁ ଆଉ ଦୁଇ ତିନି ଜଣ ପ୍ରଫେସରଙ୍କୁ ନେଇ ପୁଣି ସାହେବଙ୍କ ପାଖରେ ପହଞ୍ଚିଲେ। ସାହେବ ତଥାପି ଜାଣିପାରିଲେ ନାହିଁ ଏମାନେ କ'ଣ କହୁଛନ୍ତି। ବିରକ୍ତହୋଇ ସାହେବ ତାଙ୍କ ଅର୍ଡର ଚିରିଦେଲେ।

ସାହେବ ଯେ କେବେ ରେଭେନ୍‌ସା କଲେଜ ଛାଡିଲେ ବା ତାଙ୍କ ଜାଗାରେ କିଏ ଆସିଲେ ମନେପଡୁ ନାହିଁ। ମୋର ଛ ବର୍ଷ ରହଣି ଭିତରେ କେତେବେଳେ

ଏଇଚ୍.ଆର୍.ବାଥେଜା, କେତେବେଳେ ଶ୍ୟାମଚନ୍ଦ୍ର ତ୍ରିପାଠୀ, କେତେବେଳେ ପରିଜା ସାହେବ, ବାବା କର୍ତ୍ତାର ସିଂ ବା କେ.ପି. ସିହ୍ନା ପ୍ରିନିସ୍‌ପାଲ୍ ହୋଇଥିଲେ। ବାଥେଜା ସାହେବ ଗେଡା। ଇକୋନୋମିକ୍‌ସ୍ ତାଙ୍କ ପାଠ। ତାଙ୍କ ଦିହଯାକ ଖୁବ୍ ଘଞ୍ଚ ବଡ ବଡ ବାଳ। କିଏ କହୁଥିଲା, ସେ ଦିନରେ କୁଆଡେ ତିନିଥର ଖିଅର ହୁଅନ୍ତି। କହ୍ଲିଲତା ବଢିବାଟା ଯେମିତି ଦେଖିହୁଏ, ତାଙ୍କ ଦିହର ଲୋମଗୁଡାକ ଗଜଉଥିବା ବା ବଢୁଥିବା ଯେ କେହି ଦେଖିପାରିବ ଖାଲି ଆଖିରେ। ବିଜ୍ଞାନ ପ୍ରଫେସରମାନଙ୍କୁ ମୁଁ ଭଲ ଜାଣେ ନାହିଁ। ପରିଜା ସାହେବ, ଆଉ ତ୍ରିପାଠୀ ସାହେବ ଦୁଇ ଜଣ I.E.S.। ଦି'କଣ ଦିଟା ହୋଷ୍ଟେଲ୍‌ରେ ୱାର୍ଡେନ୍ ଥିଲେ। କଲେଜରେ ଅନ୍ୟ କିଛି ଦର୍ଶନୀୟ ବା ମନୋରଞ୍ଜକ ବ୍ୟକ୍ତିତ୍ୱ ନଥିବାରୁ ଆମେ ପ୍ରଫେସରମାନଙ୍କର ଚାଲିଚଳନ, କଥାବାର୍ତ୍ତା, ଗତିବିଧି, ପୋଷାକପରିଚ୍ଛେଦ ଟିକିନିଖିକରି ଦେଖୁଥିଲୁ। ତାଙ୍କ ଉପରେ କମେଣ୍ଟ କରୁଥିଲୁ। ତାଙ୍କ ବିଷୟରେ କଥାବାର୍ତ୍ତା ହୋଉଥିଲୁ ମଧ୍ୟ। କଦାପି କାହାରି ଉପରେ ଘୃଣାଭାବ ବା ଅସମ୍ମାନ ନଥିଲା, କୁତ୍ସା ମଧ୍ୟ କରୁ ନଥିଲୁ। ଆମେ ମନେମନେ ସମସ୍ତଙ୍କୁ ଉପାସ୍ୟ ଦେବତା ମଣୁଥିଲୁ। ଏଇଠି କହି ରଖୁଚି ଯେ, ଆମେ ଜାଣି ନ ଥିଲୁ ଲେକ୍‌ଚରାର୍ କିଏ, ରିଡାର କିଏ, ପ୍ରଫେସର୍ କିଏ ବା କିଏ କେଉଁ ଶ୍ରେଣୀର। ସମସ୍ତେ ପ୍ରଫେସର। ଦରମା କୁଆଡେ ସେମାନେ ୬୦୦ ଉପରେ ପାଉଥିଲେ। ଟୋକାଟାକଳିଆ ଅଧ୍ୟାପକ କେହି ନଥିଲେ। ଯେଉଁମାନେ ଟୋକାଥିଲେ, ସେମାନେ ବିଲାତ ଫେରନ୍ତା। କିଏ ପିଏଚ୍.ଡି ବା କିଏ ଏମ୍.ଫିଲ୍, ଏଗୁଡା ଜାଣିବାରେ ଆମର ଆଗ୍ରହ ନଥିଲା। ଅଧିକାଂଶ ପ୍ରଫେସର ଏମ୍.ଏ., ଏମ୍.ଏସ୍.ସି. ଫାଷ୍ଟ କ୍ଲାସ ଫାଷ୍ଟ ଗୋଲ୍‌ଡ ମେଡେଲିଷ୍ଟ। ଅଧିକାଂଶ ପାଣ୍ଡିତ୍ୟପୂର୍ଣ୍ଣ। ଜଣେ ଦି କଣ ପ୍ରଫେସର ଟିଉସନ୍ କରୁଥିଲେ। ରାଜରାଜୁଡା ବା ଜମିଦାରର ପୁଅ ବା ଭାଇମାନଙ୍କୁ। ସମଗ୍ର ରେଭେନ୍‌ସାରେ ୩-୪ ଜଣ ଟିଉସନ୍ ପଢୁଥିବା ପିଲା ବାହାରିବେ। 'ମାନେ' ବହିର ପ୍ରଚଳନ ନଥିଲା। ପିଲାମାନେ ଲଙ୍ଗ୍ ହ୍ୟାଣ୍ଡରେ ପ୍ରଫେସରଙ୍କର ମୁହଁର ବାଣୀ ଲିପିବଦ୍ଧ କରି ନେଉଥିଲେ। ପରୀକ୍ଷା ବେଳକୁ ଟେକ୍‌ଷ୍ଟ ବୁକ୍ ସହିତ ସେଗୁଡାକ ବ୍ୟବହାର କରୁଥିଲେ। ରାଣୀହାଟ ବୁକ୍ ଏଜେନ୍‌ସି ବୋଲି ଗୋଟିଏ ଛୋଟିଆ ବହି ଦୋକାନ ଥିଲା। ଯେଉଁ ବହି ଦୋକାନ ବା ଛାପାଖାନା ବାଲୁବଜାର ବା ଚୌଧୁରୀ ବଜାରରେ ଥିଲା, ସେଗୁଡାକରେ ପାଞ୍ଜି, ପୁରାଣ, ଆଉ ଛୋଟ ଛୋଟ ଚୁଟୁକି ଓଷାବ୍ରତ ବହି ବିକ୍ରି ହେଉଥିଲା; ଯେଉଁଗୁଡାକ ବୁଲାବିକାଳିମାନେ ଟ୍ରେନ୍‌ରେ ଷ୍ଟେସନ୍‌ରେ, ବିକ୍ରି କରୁଥିଲେ। ଖୁବ୍ କମ୍ ପିଲା ସାଇକେଲ୍‌ରେ ଆସୁଥାନ୍ତି। ଖୁବ୍ କମ୍ ପିଲା ପେଣ୍ଟ୍ ସାର୍ଟ ପିନ୍ଧୁ ଥିଲେ। ଇସ୍ତ୍ରୀକରା ପୋଷାକ ବିରଳଥିଲା। ଖଲିଫା ଦୋକାନ ହାତରେ ଗଣିହେବ।

ରେଭେନ୍‌ସା କଲେଜରେ ଛ ବର୍ଷ ରହଣି କାଳରେ ୮-୧୦ ଜଣ ଝିଅ ପଢୁଥିବାର ମନେପଡୁଛି। ମୁଁ ପଢୁଥିବାବେଳେ ମୋ ଉପର କ୍ଲାସରେ ତିନି ଜଣ ଝିଅ ପଢୁଥିଲେ। ଡ୍ୟୁକ୍ ସାହେବଙ୍କ ଅମଳରେ ଥାର୍ଡଇୟର କ୍ଲାସରେ ଗୋଟିଏ ଡିସିପ୍ଲିନ୍ କେସ୍ ହୋଇଥିଲା। ମୟୂରଭଞ୍ଜର ଜଣେ ଡିଷ୍ଟ୍ରିକ୍ ଓ ସେସନ ଜଜ୍‌ଙ୍କ ନାତି କ୍ଲାସ ଚାଲିଥିବା ବେଳେ ଛୋଟ ଛୋଟ କାଗଜ ପୁଟୁଳା ତିଆରି କରି ସେହି ଝିଅମାନଙ୍କ ଦେହକୁ ଫିଙ୍ଗିଥିଲା। ଝିଅମାନେ ସିଧା ଡ୍ୟୁକ୍ ସାହେବଙ୍କ ପାଖକୁ ଚାଲିଗଲେ ଏବଂ ସେହି ମୋଟା ପିଲାଟି ନାଁରେ ଅଭିଯୋଗଆଣିଲେ। ସାହେବ କିଛି ନ ବୁଝି ନ ପଚାରି ପଚାଶ ଟଙ୍କା ସେ ପିଲାକୁ ଜୋରିମାନାକଲେ। ପିଅନକୁ ସିନା ଛାଡ଼ିଦେଲେ, କିନ୍ତୁ ଏ କ୍ଷେତ୍ରରେ ସେ କମା କ୍ଷମା ଦେଲେ ନାହିଁ ଦୋଷୀକୁ। ସେ ପିଲାର ଅଭିଭାବକ ପାଖକୁ ଚିଠିଦେଲେ ଏବଂ ଜୋରିମାନା ପଚାଶ ଟଙ୍କା ଆଦାୟକଲେ। ଇଏ ହୁଏତ ତତ୍‌କାଳୀନ ରେଭେନ୍‌ସା କଲେଜର ଦଣ୍ଡ ବିଧାନ ଇତିହାସରେ ଏକ ରେକର୍ଡ।

ଇତିହାସ, ଲଜିକ୍ ଓ ସଂସ୍କୃତ- ଏଇ ହେଲା ମୋର ଆଇ.ଏ.ରେ ଗ୍ରୁପ ସାବ୍‌ଜେକ୍‌ଟ। ସବୁ ପିଲାଙ୍କ ଭିତରେ ମୁଁ ମେଟ୍ରିକୁଲେସନ୍‌ରେ ଶ୍ରେଷ୍ଠ ବୋଲାଉଥିଲେ ମଧ୍ୟ, ବିଜ୍ଞାନ ଆଡ଼କୁ ଗଲି ନାହିଁ। ସେତେବେଳେ ବିଜ୍ଞାନରେ ଆଦର ବା ଚାହିଦା ନଥିଲା। ଓଡ଼ିଶାରେ ନାଁ ଥିଲା ଇଞ୍ଜିନିୟରିଂ କଲେଜ, ନାଁ ମେଡିକାଲ କଲେଜ। ମେଡିକାଲ ସ୍କୁଲଟିଏ ଥିଲା ଏବଂ ତାହାରି ପାଖକୁ ଇଞ୍ଜିନିୟରିଂ ସ୍କୁଲ ଯୋବ୍ରା ଆନିକଟ୍ ପାଖରେ। ବଟାନିକୁ ଆର୍ଟସ୍ ସାବଜେକ୍‌ଟ ଧରାଯାଇ ସଂସ୍କୃତ ବଦଳରେ ପଡ଼ାଯାଉଥିଲା। ମୋର ରୁମ୍‌ମେଟ୍ ମଧୁ ବଟାନି ନେଇଥିଲା। ଏଣ୍ଡୋସିୟମ ଓ ଗାୟିନୋସିୟମ୍ କହି ତାକୁ ଆମେ ଚିଡ଼ାଉଥିଲୁ। ଏଇଚ.ଏଲ୍.ଏସ୍ (H.L.S.) ଗ୍ରୁପଟି ହେଲା ଶସ୍ତା ଗ୍ରୁପ ଏବଂ ତାକୁ ରୟେଲ ଗ୍ରୁପ୍ କୁହାଯାଉଥିଲା। କେଉଁ ବିଷୟ ମୁଁ ନେବି, ସେ ବିଷୟ କହିବାପାଇଁ ମୋର କେହି ଉପଦେଷ୍ଟା ନଥିଲେ। ଯାହା ଶସ୍ତା, ସୁବିଧା, ମଜବୁତ୍; ସେଇଟି ମୋର କାମ୍ୟ। ଚାକିରିରେ ଏମାନଙ୍କର ଉପଯୋଗିତା ବା ଆବଶ୍ୟକତା କଥା ଉଠେ ନାହିଁ। ଆଇ.ଏ., ବିଏ. ପାସ୍‌ତ ଯଥେଷ୍ଟ। କଳା କ'ଣ ନା ବିଜ୍ଞାନ କ'ଣ ? ବି.ଏ.ରେ ମୋର ସେମିତି ସଂସ୍କୃତ ଏବଂ ଦର୍ଶନଶାସ୍ତ୍ର ଥିଲା। ଇଂରାଜୀରେ ଅନର୍ସ ଥିଲା। ମୋର ଯେ ଇଂରାଜୀ ଭଲହୁଏ ତା ନୁହେଁ। କିନ୍ତୁ ସଂସ୍କୃତ ପ୍ରତି ମୋର ଭାରି ଆଦର। ସଂସ୍କୃତ କ୍ଲାସରେ ଯୋଗଦେବା ସଙ୍ଗେ ସଙ୍ଗେ ସମସ୍ତଙ୍କ ମୁହଁରୁ ଶୁଣା ଯାଉଥିବା ଶ୍ଳୋକଟିଏ ଶିଖିଲି। ଶ୍ଳୋକଟି ହେଲା-

ଜଗନ୍ନାଥସ୍ୟ ପାଣ୍ଡିତ୍ୟମ୍
ଚାର୍ଥସ୍ୟ ମୁଖ ବିକୃତି।

ଲକ୍ଷ୍ମୀ କାନ୍ତସ୍ୟ ବାଳତ୍ୱମ୍
କାଶୌୀପନ୍ତି ତ୍ରୟଗୁଣାଃ ।।

ଏହା ଏକ ଲାଳିକା ବା parody। ମୂଳ ଶ୍ଲୋକଟି, ଯାହା ଉପରେ ଏହି ଲାଳିକା ଗଢ଼ା ହୋଇଥିଲା, ତାହା ହେଲା, "କାଳିଦାସସ୍ୟ ଉପମା"... ଇତ୍ୟାଦି। ଲାଳିକାଟିର ଅର୍ଥ- ସଂସ୍କୃତରେ ଯେଉଁ ଚାରିଜଣ ପ୍ରଫେସର ଥିଲେ, ସେମାନେ ହେଲେ ଜଗନ୍ନାଥ, ଆର୍ତ୍ତବଲ୍ଲଭ, ଲକ୍ଷ୍ମୀକାନ୍ତ ଏବଂ କାଶୀ ବାବୁ। ମୁଁ ମହାମହୋପାଧ୍ୟାୟ ଜଗନ୍ନାଥ ଶାସ୍ତ୍ରୀଙ୍କୁ ଦେଖିନାହିଁ। ସିଏ କୁଆଡେ ଭାରି ପଣ୍ଡିତ ଥିଲେ। ସସ୍କୃତରେ ତାଙ୍କର ଜ୍ଞାନ ଅଗାଧ ଥିଲା। ଆର୍ତ୍ତବାବୁ ଖ୍ୟାତି ଲଭିଥିଲେ, ତାଙ୍କ ମୁଖ ବିକୃତିପାଇଁ। ଲକ୍ଷ୍ମୀକାନ୍ତଙ୍କ ଗଳା, ସ୍ୱର, ବାଳ ସୁଲଭ, ପିଲାଳିଆ। କାଶୀ ବାବୁଙ୍କ ପାଖରେ ପାଣ୍ଡିତ୍ୟ ଥିଲା, ମୁଖ ବିକୃତି ଥିଲା, ବାଳତ୍ୱ ଥିଲା। ତିନି ଗୁଣର ସମାହାର ତାଙ୍କରି ପାଖରେ। ଏ ଶ୍ଲୋକଟି ସଂସ୍କୃତ ପାଠ ହେଉ ନଥିବା କେହି ଜଣେ ପିଲା ବାନ୍ଧିଥିଲା। ଶ୍ଲୋକରେ 'ଚ' ବ୍ୟବହାର ହୁଏ ନାହିଁ। ସେ କିନ୍ତୁ 'ଚ' ଏବଂ 'ଆର୍ତ୍ତ' ବାବୁଙ୍କୁ ଯୋଡି ଚାର୍ତସ୍ୟ ଲେଖିଥିଲା। 'ଚ' ଅର୍ଥ 'ଏବଂ'। ପ୍ରଫେସର ଲକ୍ଷ୍ମୀକାନ୍ତଙ୍କର ଗଳା ସ୍ୱର ଚେଁ ଚେଆଁ ଥିଲା। କାଶୀ ବାବୁଙ୍କ ପାଖରେ ତିନି ଗୁଣଯାକ ଏକତ୍ର ବିରାଜମାନ କରୁଥିଲା। କାଶୀବାବୁ ବିଭାଗୀୟ ମୁଖ୍ୟ ଥିଲେ। ସଂସ୍କୃତ ଆଉ ଓଡିଆ ଉଭୟ ବିଷୟକୁ ସେତେବେଳେ ଜଣେ ପଢାଉ ଥିଲେ। ଯିଏ ସଂସ୍କୃତ ପ୍ରଫେସର, ସିଏ ଓଡିଆ ପ୍ରଫେସର।

କାଶୀ ବାବୁ ସ୍ଥୁଳକାୟ। ପେଟଟି ଥାକୁଲୁ ଥୁକୁଲୁ, ମୁଣ୍ଡର ଚୂଳବେବାଗିଆ, କ୍ୱଚିତ୍ ପେଣ୍ଟ ପିନ୍ଧନ୍ତି। ଉପର ମହଲାକୁ ପ୍ରାୟ ଉଠିପାରନ୍ତି ନାହିଁ। ତଳେ ଶତର ନମ୍ବର ରୁମ୍‌ଟି ତାଙ୍କରି। ତାଙ୍କର ସବୁ କ୍ଲାସ୍ ସେଇଠି ହୁଏ। ପିଲାମାନେ ଆସନ୍ତି, ଯାଆନ୍ତି, ସେ ତାଙ୍କ ରୁମ୍‌ରେ ବସିଥାନ୍ତି। ପିଅନ ବା ଚପରାଶି ପିଲାମାନଙ୍କ ହାଜିରା ଖାତା ଆଣିଦିଏ ଓ ନେଇଯାଏ। ସେ ଘୋଡା ଗାଡିରେ ଆସନ୍ତି। ଆର୍ତ୍ତବାବୁ, କୃତ୍ତିବାସ ସାମନ୍ତରାୟ (ଇଂରାଜୀ), ଗୁରୁଚରଣ ବାବୁ (କେମେଷ୍ଟ୍ରି) ମଧ୍ୟ ସେହି ଗାଡିରେ ଆସନ୍ତି। ପ୍ରିନ୍‌ସିପାଲ ଡ୍ୟୁକ୍‌ଙ୍କ ଛଡା, ବାବା କର୍ତ୍ତାର ସିଂ ଓ ତ୍ରିପାଠୀ ସାହେବଙ୍କ ମଟରଗାଡି ଥିଲା। ସାଇକେଲରେ କୌଣସି ପ୍ରଫେସର ଆସୁ ନଥିଲେ। ରିକ୍‌ସାଗୁଡାକ ହାତଟଣା। ସାଇକେଲ ରିକ୍‌ସା ନଥିଲା। ତାଳଚେର ଓ ଢେଙ୍କାନାଳର ଲୋକେ ଏସବୁ ଯାନ ଟାଣୁଥିଲେ। କାଶୀ ବାବୁଙ୍କର ମଧ୍ୟ ଅଗାଧ ପାଣ୍ଡିତ୍ୟ ଥିଲା। ସେ ସଂସ୍କୃତ ଶ୍ଲୋକ ଏଭଳି ଉଚ୍ଚାରଣ କରୁଥିଲେ ଯେ, ଏହା ଆର୍ଯ୍ୟମାନଙ୍କର ମୁଖ ନିଃସୃତ ପରି ଜଣାଯାଉଥିଲା।

ଯାହା ଶୁଣିଲେ ଗଛରୁ ପତ୍ର ଖସିପଡ଼ିବ। ସେ ଆଇ.ଏ. କ୍ଲାସ୍‌ରେ କିଛି ପଢାନ୍ତି ନାହିଁ। ବି.ଏ. କ୍ଲାସରେ "ଅଭିଜ୍ଞାନ ଶକୁନ୍ତଳମ୍" ପଢାନ୍ତି। ଏମିତି ସ୍ୱରକରି ପଢାନ୍ତି ଯେ, ଶ୍ଳୋକ ଗୁଡ଼ିକ ମୋର ମନେରହିଯାଏ। ସେ ଛାତ୍ରୀ ଆଡକୁ ଚାହାଁନ୍ତି ନାହିଁ। ହାତଟି ଏମିତି ସ୍ଥାନରେ ରଖିଥାନ୍ତି, ଯେମିତି ଝିଅମାନଙ୍କର ମୁହଁ ତାଙ୍କୁ ଦେଖାଯିବ ନାହିଁ। କେବେ ହସନ୍ତି ନାହିଁ। ଯଦି ହସନ୍ତି, ତା ହେଲେ ତାଙ୍କର ଦିହଟିଯାକ ଥର ଥର ହୋଇ କମ୍ପେ। ପଢେଇଲା ବେଳେ ପାଞ୍ଚଟା ଆଙ୍ଗୁଳି ପାଞ୍ଚ ଜାଗାରେ ରହିଥାଏ। ଗୋଟିକରେ ଶ୍ଳୋକ, ଦ୍ୱିତୀୟରେ ତାର ଅନ୍ୱୟ ବା ଗଦ୍ୟରୂପ, ତୃତୀୟରେ ଇଂରାଜୀ ଅନୁବାଦ, ଚତୁର୍ଥରେ ଟୀକା, ଆଉ ଶେଷରେ ବ୍ୟାକରଣ। ସେ କହନ୍ତି- "ପଢିଲାବେଳେ ଏତେ ପରିଶ୍ରମକରି ଆମେ ପାସ୍ କଲୁ, ଆଉ ପଢେଇବା ବେଳେ ଆହୁରି ପରିଶ୍ରମକରିବା କାହିଁକି ?" ସେ ଖୋସାମତି ଭଲପାଆନ୍ତି। ଯେଉଁ ପିଲା ଫେଲ୍ ହୋଇଥାଏ, ସେ ଯଦି ତାଙ୍କର ହଳଦୀ ମାଖିଥିବା ଛୁଆଙ୍କୁ କୁଣ୍ଢେଇ ଗେଲକରେ ଏବଂ କହେ "ତୁ ତ ବାପା ପରି ହେବୁ।" ସାର୍ ଖୁସି ହୋଇଯାଆନ୍ତି ଏବଂ ତାକୁ ପାସ୍‌କରେଇ ଦିଅନ୍ତି। ଆମେ ଥାର୍ଡଇୟରକୁ ଗଲା ବେଳକୁ ସେ ଗାଡ଼ି କିଣିଲେ। ତାଙ୍କ ପୁଅ ହରି ବାବୁ ଇଂରାଜୀ ଅନର୍ସ ନେଇଥାନ୍ତି। ମୋର ଯେ ହେତୁ ଇଂରାଜୀ ଅନର୍ସ ଥିଲା, ମୁଁ ତାଙ୍କ ପୁଅକୁ ଇଂରାଜୀ ପାଠରେ ସାହାଯ୍ୟ କରିବି ଭାବି, ସେ ମୋତେ ସର୍ବୋଚ୍ଚ ମାର୍କ ପରୀକ୍ଷାରେ ଦେଇଥାନ୍ତି। ଆମେ ତାଙ୍କୁ ଗାଡ଼ି ବିଷୟରେ ନାନା ପ୍ରଶ୍ନ ପଚାରୁ, ଯଥା- 'ଆପଣଙ୍କ ଗାଡ଼ି ସିଧା ଲଣ୍ଡନରୁ ଆଣିଲେ। କିଏ କହୁଥିଲା ଗାଡ଼ିଟି ଆପଣଙ୍କର ୨୦୦ ମାଇଲ ଗତିରେ ଚାଲେ। ତାର ଦାମ୍ କୁଆଡେ ଦେଢଲକ୍ଷ ଟଙ୍କା।' ଏମିତି କେତେ ପ୍ରଶ୍ନ। ସାର୍ କିଛି କହନ୍ତି ନାହିଁ। ମୁରୁକି ହସନ୍ତି।

କାଶୀବାବୁ ଓ ଆର୍ତ୍ତବାବୁ- ଦୁଇ ଜଣ ଠିକ୍ ଓଲଟା ଚେହେରା ଓ ପ୍ରକୃତି। ଶ୍ଳୋକରେ ଯେଉଁ ମୁଖ ବିକୃତି କଥା କୁହାଯାଇଥିଲା, ତାହା ପ୍ରାୟଶଃ ଠିକ୍। ଆର୍ତ୍ତବାବୁଙ୍କ ପୋଷାକ ଧୋତି, ପୂରାହାତ ଧଳାସାର୍ଟ, ଧଳା ଓଢଣୀକୁ ପଇତାପରି ଦେହରେ ସାର୍ଟ ଉପରେ ପକାଇ ଥାନ୍ତି। ଦେହର ରଙ୍ଗ ମାଗୁର ବର୍ଣ୍ଣ। ଲମ୍ବା ଲମ୍ବା ପାହୁଣ୍ଡପକାଇ ଚାଲନ୍ତି। ଆମର ପୋଷାକ ପତ୍ର, ଫେସନ ଏବଂ ଚୁଳ କୁଣ୍ଡାଇବା ଭଙ୍ଗି ଦେଖି କେବେକେବେ ରାଗିଯାଆନ୍ତି ଏବଂ ସାର୍ଟ ଉଠାଇ ପେଟକୁ ଦେଖାନ୍ତି, କହନ୍ତି- "ଏଇ ଦେଖ, ତେଲ ମାଖିମାଖି ଆମର ଦେହର ଚମ ଏମିତି ବୁଢା କାକୁଡ଼ି ପରି ଫାଟିଯାଇଛି। ଆଉ ତୁମେ ମୁହଁରେ ସାବୁନ୍ ଘସି ଘସି ଖାଲି ବ୍ରଣ ଭରପୂର କରି ସ୍ନୋ, ପୋମେଡ୍‌ମ୍, ପାଉଡର ଲଗାଇ ମୁହଁ ସବୁକୁ କ'ଣ କରିଛ ?" କ୍ଲାସ୍‌ରେ "ଉତ୍ତର ରାମଚରିତ" ପଢାଇଲା ବେଳେ ବିଭୋର ହୋଇଯା'ନ୍ତି। "ସ୍ୱପ୍ନ ବାସବଦତ୍ତମ୍," "କିରାତାର୍ଜୁନୀୟମ୍" ପଢେଇଲା ବେଳେ ତନ୍ମୟ ହୋଇଯା'ନ୍ତି।

ପଢାଇବାରେ ତାଙ୍କର ଆନନ୍ଦ। ଓଡ଼ିଆ 'ଶଶିସେଣା' ପଢାଉଥିଲେ। ପ୍ରାଚୀ ସମିତିରୁ ପ୍ରକାଶିତ 'ଶଶିସେଣା' କାବ୍ୟରୁ ଯେତେବେଳେ ସିଏ ପଢାନ୍ତି -

ଭ୍ରୂଲତା କି କାମ କମାଣ ଶର ଲୋଚନ ବେନି
ପାଟକଶାଣେ ବସାଇଣ ବିନ୍ଧେ ଅପାଙ୍ଗ ଘେନି।
ମଳୟ ସମୀର ମନ୍ଦିର ନାସା ଅଟଇ ତାର
ବସନ୍ତ ଆସେ ବିଙ୍ଗସିତ ହୁଏ କି ଶୁକଧର।

ସେତେବେଳେ ତାଙ୍କର ଦିହର ଲୋମ ଟାଙ୍କୁରିଉଠେ। ଧୋତି ଚାଦର ପକାଇ ସେ କିଲା ପଡିଆରେ ଫୁଟ୍‌ବଲ୍ ଖେଳର ରେଫ୍‌ରି ମଧ୍ୟ ହୁଅନ୍ତି। ପ୍ରଫେସର ନାରାୟଣ ମିଶ୍ର ମଧ୍ୟ ତାଙ୍କରି ପରି ରେଫ୍‌ରି ବରାବର ହୁଅନ୍ତି। ଦେଖଣାହାରୀ ଏ ଦୁଇ ଜଣକୁ ଭାରି ଭଲ ପାଆନ୍ତି। ଆମେ ଛାତ୍ରମାନେ ମଧ୍ୟ ଗର୍ବିତହେଉ ଯେ, ଆମର ସାର୍ ଆଜି ରେଫ୍‌ରି। କଲେଜର ଉନ୍ନତି, ଓଡ଼ିଆ ସାହିତ୍ୟର ଉନ୍ନତି ଆଦି ବିବିଧ ସମାଜମଙ୍ଗଳ କର୍ମରେ ଆର୍ତ୍ତବାବୁଙ୍କର ମନୋନିବେଶ। ପିଲାମାନଙ୍କର ଉନ୍ନତିରେ ସାହାଯ୍ୟ କରିବାପାଇଁ ସଦା ସର୍ବଦା ସେ ପ୍ରସ୍ତୁତ। ସେ ଇଷ୍ଟ ହଷ୍ଟେଲ୍‌ର ଓ୍ୱାର୍ଡେନ୍ ଥିଲେ। ମୁଁ ହଷ୍ଟେଲ୍‌ରେ ରହିବାପରେ ତାଙ୍କର ବଡ ଫଟୋଟିଏ କମନ୍ ରୁମ୍‌ରେ ଦେଖିଲି। ଖାଲି ଦିହ, କପାଳରେ ଚିତା ଚୈତନ୍ୟ, ଆଗରେ ତାଳପତ୍ର ପୋଥିଖେଦାଟିଏ। ଲକ୍ଷ୍ମୀକାନ୍ତ ଚୌଧୁରୀ ଅନ୍ୟତମ ସଂସ୍କୃତ ତଥା ଓଡ଼ିଆ ଅଧ୍ୟାପକ। ତାଙ୍କର ବିଶେଷତ୍ୱ କହିଲେ- ତାଙ୍କର ପିଲାଳିଆ ଚେହେରା, ଆଉ ପ୍ରତି ଶ୍ଳୋକ ପଢେଇବା ଶେଷରେ କପୋତ ଭଳି ହୁଁ ହୁଁ ଶବ୍ଦ କରନ୍ତି। ଯଥା -

"ଅଥାତ୍ମନଃ ଶବ୍ଦ ଗୁଣଂ ଗୁଣଜ୍ଞ ହୁଁ
ପଦଂ ବିମାନେନ ବିଗାହମାନ ହୁଁ"

'ହୁଁ' ଟା ଟିକେ ଲମ୍ବିଯାଏ। ସେ ଆମରି ସମୟରେ ସଂଗୀତ ବିଦ୍ୟାଳୟର ପ୍ରାଣ ପ୍ରତିଷ୍ଠା କରିଥିଲେ। ଆଜି ଯାହା ଲକ୍ଷ୍ମୀକାନ୍ତ ସଙ୍ଗୀତ ମହାବିଦ୍ୟାଳୟ ନାମରେ କଟକରେ ଛିଡା ହୋଇଛି।

ଇଷ୍ଟହଷ୍ଟେଲରେ ମୁଁ ଛ ବର୍ଷ ରହିଛି। ହାଇସ୍କୁଲରେ ପଢୁଥିବା ବେଳେ କଟକ ଯେତେବେଳେ ଯାଇଥିଲି, ସେତେବେଳେ ସେ ହଷ୍ଟେଲର ପରିବେଶ, ତଥା ଖାଦ୍ୟପାନୀୟ ପ୍ରତି ମୋର ମମତା ଜନ୍ମିଥିଲା। ସେଇଠି ଦୀର୍ଘ ଦିନ ରହି ବାପା-ମା ଘରଦ୍ୱାର ପ୍ରାୟ ଭୁଲିଯାଇଥିଲି। ଏତେ ସୁନ୍ଦର ଖାଦ୍ୟ; ଧନି, କେଶବ, ବେଙ୍ଗ ପ୍ରଭୃତି ପୂଜାରୀ ଏବଂ ପଞ୍ଚୁ, ନାରାୟଣ ଆଦି ପିଅନ, ଚପରାଶି, ଧୋବା, ବାରିକ ସମସ୍ତେ ଜଣେ ଜଣେ ମୋର

ଆଦରର ଲୋକ। ଆମେ ସମସ୍ତେ ଯେମିତି ଗୋଟିଏ ବଡ ପରିବାରର ସଭ୍ୟ। ସିକ୍ ରୁମ୍ ଗୋଟିଏ ଥିଲା। କ୍ୱଚିତ୍ ସେଇଠି କେହି ରହନ୍ତି। ସକାଳ ୬ରୁ ୯, ସନ୍ଧ୍ୟା ୬ରୁ ୯ ପାଠ ପଢାବେଳ। ୯ଟା ୧୫ରେ ସମସ୍ତେ ଗାଧାନ୍ତି ପାଇପ୍‌ରେ। ୧୨ଟା ପାଇପ୍ ଥିଲା। ଆଠଟା ସାୱାର ବାଥ୍, ବାକି ଆଠଟା ସାଧାରଣ ପାଇପ୍। ତା ପରେ ମେସ୍‌ରେ ସମସ୍ତେ ଖାନ୍ତି। ଷୋଳ କଣିଆ ଗୋଟିଏ ମେଣ୍। ସବୁଦିନ ମାଛ। ଶନିବାର ମାଂସ ଯେ ନଖାଏ, ତାର ରସଗୋଲା, ଦିବ୍ୟ ଅନ୍ନ। ସମସ୍ତଙ୍କପାଇଁ ପିତଳ ଥାଳି, ଗିଲାସ, ଗିନା। ଛୁରି, ଗ୍ଲାଟି, ଚିକ୍‌ବାର କିଛି ନାହିଁ।

ଦଶଟା ବେଳକୁ କ୍ଲାସ ଆରମ୍ଭ। ୪ଟାରୁ ୬ଟା ଭିତରେ ଜଳଖିଆ। ସକାଳ ଜଳଖିଆରେ ପୁରୀ ଚାରିଟା ଏବଂ ତରକାରୀ। ଉପରଓଳି ଜଳଖିଆରେ ଘୁକି, ମୋହନଭୋଗ ବା କାକରା। ହଷ୍ଟେଲ୍‌ରେ ଥିଲା ମିଠା ଦୋକାନ। ନିଜେ ଇଚ୍ଛାକଲେ, ହାତରୁ ପଇସା ଦେଇ ବେଶି ମିଠା ବି ଜଣେ ଖାଇପାରେ। ଖେଳ ପଡିଆରେ ଜଣେ ଇଚ୍ଛାକଲେ ଭଲି ଖେଳିପାରିବ। ସକାଳ ଓ ସଞ୍ଜ ଦୁଇଥର ପାଣିଟାଙ୍କି ପାଖ ଜିମ୍ନାସିୟମ୍‌ରେ ଡ୍ରିଲ୍, ଡାମ୍ବେଲ, ରିଙ୍ଗ, ବାର, ଟେନିକ୍ୱାଇଟ୍ ଓ ଅନ୍ୟାନ୍ୟ ଖେଳହୁଏ। ଶନିବାର ଦିନ ସନ୍ଧ୍ୟାବେଳେ ପାଠପଢା ନାହିଁ। ରାତି ୧୦ଟା ପର୍ଯ୍ୟନ୍ତ ଯିଏ ଯୁଆଡେ ଇଚ୍ଛା, ଯାଇପାରେ, ବୁଲିପାରେ। ପରୀକ୍ଷା ପାଖ ହୋଇଆସିଲେ ଖେଳ ଫେଳ ପ୍ରାୟ ବନ୍ଦହୋଇଯାଏ। ଆମେ ତିନି ଚାରି ଜଣ ବୁଲିବାପାଇଁ ଯାଉଁ। ମହାନଦୀ ରେଲ୍‌ପୋଲ ଉପରକୁ। ତଳ ପଠାକୁ ଓହ୍ଲାଇ ଯାଉ କୋଳି ଖାଇବାପାଇଁ। ଶିମୁଳୀ ଫୁଲ ଦେଖୁ। ବଣି ଚଡେଇପଲର ଖିଚିରିମିଚିର ଶୁଣୁ। ମନେପଡୁଛି। ଦିନକର କଥା। ଯେଉଁଦିନ ଦୁଇଚାରି ଜଣ ରେଲବାଯ୍ରୀ ଶିକାରୀ ଶିମୁଳୀ ଗଛରେ ବସିଥିବା ଚଡେଇ ପଲକୁ ଲକ୍ଷକରି ବନ୍ଧୁକ ଫୁଟାଇଲେ ଏବଂ ଦୁଇଟା ବଡ ବଡ ବୋରାରେ ମଲା, ଦରମଲା, କିଅନ୍ତା ଚଡେଇକୁ ଧରି ଘରକୁ ବାହାରିଗଲେ। ସେ ବଡ କରୁଣ ଦୃଶ୍ୟ। ଯେତେବେଳେ ରେଲ୍‌ଲାଇନ୍‌ରେ ପାହୁଣ୍ଡ ପକେଇ ପକେଇ ଚାଲିଥାଉଁ, ସେତେବେଳେ ପଡାବହିର ସଂସ୍କୃତ ଶ୍ଲୋକ ଏବଂ ତାର ଇଂରାଜୀ ଅନୁବାଦ କରି କରି ଚାଲିଥାଉ। ପଡାଯାଉଥିବା ୭୦-୮୦ ଶ୍ଲୋକ ମୁଖସ୍ଥଥାଏ। କଥାବାର୍ତ୍ତା ଆମର ପ୍ରାୟ ଘରକଥା, ବାପା, ମାଆଙ୍କ କଥାରେ ସୀମିତ। ଅନ୍ୟ କେଉଁ ବିଷୟରେ ବା କଥାବାର୍ତ୍ତା କରିବ ? କେଉଁଦିନ ଫୁଟବଲ ଖେଳ କଥା, ମେଡିକାଲ ସ୍କୁଲ, ଇଞ୍ଜିନିୟରିଂ ସ୍କୁଲ ଆଉ ରେଭେନ୍‌ସା ସହିତରେ ମେଚ୍‌ର ବିବରଣୀ। ଏକ ପାଖରେ କର୍ଜ ପଟ୍ଟନାୟକ। ଆମ ରେଭେନ୍‌ସା ପାଖରେ ବିଜୁ ପଟ୍ଟନାୟକ। ଲମ୍ବା ଚଉଡା ଗୋଡ, ଦୀର୍ଘକାୟ ପତଳା ପିଲାଟି ଏପାଖରୁ କିକ୍‌ମାରିଲେ, ଆରପାଖ ଗୋଲକିପର ପାଖରେ

ପଢ଼ନ୍ତେ । ସେମାନେ ଆମର ଗର୍ବ । ଫେଲୁ (ନନ୍ଦନନ୍ଦନ ମହାପାତ୍ର) ବାବୁ ରେଭେନ୍‌ସା କଲେଜ କାହିଁକି, ଓଡିଶାର ଗର୍ବ । 'ମହାରାଜା ଶ୍ରୀରାମଚନ୍ଦ୍ର ଭଞ୍ଜ ମୋମୋରିଆଲ୍ ସିଲଡ୍'ର ବିଜେତା ରେଭେନ୍‌ସା କଲେଜ କେଡେ ଦୁର୍ଦ୍ଧର୍ଷ ! ରେଭେନ୍‌ସା କଲେଜ ଦଳ ଯେତେବେଳେ ଟିମ୍‌ଟ୍ରଫି ନେଇ ଟ୍ରେନ୍‌ରେ ଫେରିଲା, ସେତେବେଳେ ଆହତ ହିରୋ ଫେଲୁ ବାବୁଙ୍କୁ ଆମେ ସାରା ରେଭେନ୍‌ସା କଲେଜ ରେଲୱେ ଷ୍ଟେସନରୁ ପାଛୋଟି ଆଣିବାର ଦୃଶ୍ୟ ଏବେ ବି ମନେପଡୁଛି ।

ସିନେମା ଥିଏଟର, ଏସବୁ କିଛି କଟକରେ ନଥିଲା । ଯେତେବେଳେ ରାତି ୧୦ଟା ବାଜିବାକୁ ୫ ମିନିଟ୍ ଥାଏ, ଧୀରେଧୀରେ, ସାରା ହଷ୍ଟେଲ୍‌ର ଆଲୁଅ ଲିଭିଲିଭି ଆସେ ଏବଂ ୧୦ଟା ବାଜିବା ମାତ୍ରେ ଅନ୍ଧକାର । ଷ୍ଟଡି ଆୱାରରେ ସମସ୍ତେ କେରମ୍ ଖେଳନ୍ତି ବା ପିଙ୍ଗ ପାଙ୍ଗ୍ ଖେଳନ୍ତି ।

ଇଂରାଜୀ ଡିପାର୍ଟମେଣ୍ଟର ସର୍ବମୁଖ୍ୟ ହେଲେ ନିରଞ୍ଜନ ନିୟୋଗୀ । ବଙ୍ଗାଳୀ, ଧୋତି, ପଞ୍ଜାବି ପିନ୍ଧନ୍ତି । ନିଶ ଲମ୍ବା ଓ ବହଳିଆ । "ଡେଫୋଡିଲ୍" କବିତାଟି ସେ ଯେତେବେଳେ ପଡାନ୍ତି, ଆମେ ତାଙ୍କ ଉଚ୍ଚାରଣରେ ମୁଗ୍ଧ ହୋଇଯାଉ । ଏ ମୁଣ୍ଡ ସେ ମୁଣ୍ଡ ସିଏ ଚାଲିଥାନ୍ତି ଏବଂ କବିତାର ତାଳ ସଙ୍ଗେ ତାଳଦେଇ ନାଚୁଥାନ୍ତି, ପଡଉଥାନ୍ତି । ଦେବତା ପରି ଚେହେରା ।

କୃତ୍ତିବାସ ସାମନ୍ତରାୟ୍ ଟିଉଟରିଆଲରେ ଲେଖିବାକୁ ଦିଅନ୍ତି ଏବଂ ଘୁମେଇପଡନ୍ତି । ବିରେଶ୍ୱର ଚାଟାର୍ଜୀ ପତଳା ଖଦି, ଧୋତି ପଞ୍ଜାବି ପିନ୍ଧନ୍ତି । ସେ ଆମକୁ କେନିଲଓ୍ୱାର୍ଥ ନଭେଲ୍‌ଟି ପଡାଉଥିଲେ । ସକାଳିଆ କ୍ଲାସରେ ଦିନେ ସେ କ୍ଲାସ ଭିତରକୁ ପଶିଆସିଲେ । ମୁଣ୍ଡରୁ ସରସର ହୋଇ ପାଣି ଝରିପଡୁଛି । ଅବି ପଞ୍ଜାବି ଭିଜିଯାଇଛି । ଖାଲି ଦେହ ଦିଶୁଛି (ଗେଞ୍ଜି ନାହିଁ) । ପାଟିରୁ ସବୁବେଳେ ବାହାରୁଛି "Gentlemen ! It is very hot today" । ଦିନେ "Scarecrow" କବିତାଟି ପଡାଉଥିଲେ ଏବଂ ବୁଝେଇବାକୁ ଯାଇ କହିଲେ, "Gentlemen ! You don't know the meaning of scare crow ? My God Scare crow ?" ଓଡିଆରେ ବୁଝେଇବାର ଚେଷ୍ଟାକରନ୍ତି । ନାନା ଚେଷ୍ଟା କରି ଶେଷରେ କହନ୍ତି- "ଗୋଟାଏ କଳା ହାଣ୍ଡିରେ ଚୂନମାରି ଟାଙ୍ଗିଦେବା, କୁଆ ଘଉଡେଇବାପାଇଁ ମକା ବାଡିରେ ଯେଉଁ ହୁରୁଡା ଥାଏ, ସେଇଟାକୁ ସେ କହିବାପାଇଁ ଯାଉଥିଲେ । ସିଏବି ଜଣେ ଫାଷ୍ଟକ୍ଲାସ ଗୋଲ୍‌ଡ୍ ମେଡାଲିଷ୍ଟ । ଆଉ ଜଣେ ଇଂରାଜୀ ଅଧ୍ୟାପକ ଥିଲେ । ସେ ହୁଏତ ଅଣ୍ଡରକ୍ୱାଲିଫାଏଡ୍ ଏବଂ ମାଇନର୍‌ଟି କମୁନିଟି ଥିବାରୁ

(ଖ୍ରୀଷ୍ଟିୟାନ୍) ଚାକିରୀ ଦିଆ ହୋଇଥିଲା । ଆମେ ଥାର୍ଡ ଇୟରେ ପଢୁଥିଲାବେଳେ, ଆସିଲେ କୃପାନାଥ ମିଶ୍ର । ସେ ବିଲାତ ଫେରନ୍ତା, ଓକ୍‌ସଫୋର୍ଡ ୟୁନିଭର୍‌ସିଟିରୁ । ତାଙ୍କୁ ଆମେ K.N. Goalpost ବୋଲି ନାମ ଦେଇଥାଇ । କାରଣ ସେ ଦସ୍ତଖତ ଯେତେବେଳେ କରନ୍ତି କେ ଓ ଏନ୍ (K.&N.)କୁ ବଙ୍କା ବଙ୍କା ଅକ୍ଷରରେ ରଖି ଏବଂ ଏମ୍ ଟାକୁ ସେ ଗୋଲପୋଷ୍ଟ ଆକାରର କରି ଦିଅନ୍ତି । ନିଶ ତାଙ୍କର ହିଟ୍‌ଲରଙ୍କ ପରି । ଥରେ ଟିଉଟରିଆଲ କ୍ଲାସ୍‌ରେ ସେ ଆମକୁ "Substance Writing" ଶିଖାଉଥିଲେ । "It is not growing like a tree" । ମୁଁ ଯାହା ଲେଖିଥିଲି- ତା ତଳେ ସେ ମନ୍ତବ୍ୟ ଦେଇଥିଲେ, "You write in a reminiscent way"। Justice ବୋଲି ତ୍ରାମାଟି ସିଏ ଅନର୍ସ କ୍ଲାସ୍‌ରେ ପଢାଉଥିଲେ । କ୍ଲାସ୍‌କୁ ଆସିଲେ ଗୋଟିଏ ମଣିଷର ପାଟି ଓ ଜିଭର ମଡେଲ ନେଇ ଉଚ୍ଚାରଣ ଶିଖାଇବାପାଇଁ ଆସୁଥିଲେ । ନେହେରୁ ଯେତେବେଳେ ବ୍ରିଟିସ୍ ଇମ୍ପେରିଆଲିଜିମ୍ (British Imperialism) କୁ ଯେମିତି ଉଚାରଣ କରୁଥିଲେ, ସେ ଠିକ୍ ସେମିତି ଉଚାରଣ ବର୍ଣ୍ଣେ ମଡେଲ ସାହାଯ୍ୟରେ ବୁଝାଇଥିଲେ । କେଉଁଠୁ କି ଶବ୍ଦ ଆସୁଛି । ତାପରେ ଇଂରାଜୀ ରଙ୍ଗମଞ୍ଚ (English stage) ଗୋଟାଏ ବ୍ଲାକ୍ ବୋର୍ଡରେ ଆଙ୍କିଲେ ପିରିୟଡ଼ ଶେଷ । ତାପରେ ସେ ବଦଳି ହୋଇଗଲେ । ବହିର ପ୍ରଥମ ଧାଡ଼ି ମଧ୍ୟ ପଢ଼ା ହୋଇପାରିଲା ନାହିଁ ।

କେ.ପି. ସିହ୍ନା ଥିଲେ M.A. Cantab । ସେ ମଧ୍ୟ ବିହାରୀ, ସୌମ୍ୟ ଚେହେରା, ଲମ୍ବା, ଚଉଡ଼ା । ସେ ଥିଲେ ଆମର ୱାର୍ଡେନ୍ । ଦ୍ୱିତୀୟ ବାର ବିବାହ କରିଥିଲେ । ଭାରି ସୁନ୍ଦର ଏବଂ ସ୍ମାର୍ଟ ତାଙ୍କର ପ୍ରଥମ ପତ୍ନୀଙ୍କ ପୁଅ ବି । ସବୁବେଳେ ସେ ସାହେବି ପୋଷାକରେ ଥାଆନ୍ତି । ଚଷମା ଲଗାନ୍ତି । ଇଂରାଜୀ କହନ୍ତି । ସେ ଆମକୁ ପଢାଉଥିଲେ ଏମ୍.ଏ. କ୍ଲାସ୍‌ରେ KingLear । ଭାରି ସୁନ୍ଦର ତାଙ୍କର ଇଂରାଜୀ ଉଚାରଣ । କ୍ୱାର୍ଟ୍ରାଙ୍ଗଲରେ ଯେତେବେଳେ ସେ ଚାଲିଯାନ୍ତି ସିଧା ମୋପାଚୁପା ପାହୁଣ୍ଡ ପକାଇ, ସେତେବେଳେ ଭାରି ସୁନ୍ଦର ଦିଶନ୍ତି । ତାଙ୍କୁ ଦେଖିଲେ ଆପେ ଆପେ ମୁଣ୍ଡ ଲଇଁଯାଏ । ଯେତେବେଳେ ୧୯୩୬ ମସିହା ଏପ୍ରିଲ୍ ପହିଲାରେ ଓଡିଶା ସ୍ୱତନ୍ତ୍ର ପ୍ରଦେଶ ହେଲା, ରେଭେନ୍‌ସା କଲେଜ ଭିତର ପ୍ରାଙ୍ଗଣରେ ନାହିଁ ନଥିବା ସଭାଟିଏ ଅନୁଷ୍ଠିତ ହୋଇଥିଲା । ପାରଳାଖେମୁଣ୍ଡି ମହାରାଜାଙ୍କୁ ସମ୍ବର୍ଦ୍ଧନା ଦେବାପାଇଁ ଅପୂର୍ବ ସମାବେଶ ହୋଇଥିଲା । ସେତିକିବେଳେ ସେ ମୋତେ ଡାକି କହିଲେ ବସନ୍ତ- "ତୁମେ ଗୋଟାଏ କ'ଣ କିଛି ମନୋରଞ୍ଜନର ବ୍ୟବସ୍ଥା କର ।" ସେ ଜାଣିଥିଲେ ମୁଁ ହାସ୍ୟରସ ପରିବେଷଣ କରିପାରିବି । ମୁଁ କେଉଁଝରର ବନମାଳୀ ବୋଲି ପିଲାଟିକୁ ସାଙ୍ଗ କଲି । କାଳକ୍ରମେ ସେ

ଏସ୍.ପି. ହୋଇଥିଲା । ତାର ନାଲି ପୋଷାକ ଓ ମୋର କଳା ପୋଷାକ ପିନ୍ଧି ଆମେ ଯେଉଁ ପାଲା ଗାଆଣ ପରିବେଷଣ କରିଥିଲୁ, ତାହା ଏକ ବିରାଟ ଦର୍ଶକମଣ୍ଡଳୀକୁ ମୁଗ୍ଧ କରି ଦେଲା । ବୋର୍ଡିଂରୁ ଖଟ କେତେଟା ଟାଣିନେଇ ତାରି ଉପରେ ଆମେ ଛିଡ଼ା ହୋଇଗଲୁ । ଗାଁରୁ ଯେଉଁ ଚଢେଇଆ ଚଢେଇଆଣୀ ଗୀତଟା ମଗେଇ ଗାଇଥିଲି, ତାହା ଏହି ପ୍ରକାରର-

"ଶୁଣ ହୋ ଶୁଜନେ ଶୁଣ ହୋ, ମୋର ଚଢେଇଆଣୀ ରୂପଗୁଣ
ସେତ ନୁହେଁ ତେଙ୍ଗେଇ ବାଙ୍ଗେରୀ ହୋ, ସେ'ତ ଚଳିଥାଏ ଡଳି ଡଳି
ତାର ନାକରେ ନାଇଛି ଗୁଣା ହୋ, ସେ'ତ ତିନି ଟଙ୍କା ତିନି ଅଣା
ତାର କାନରେ ନାଇଛି ଚାପ ହୋ, ଦୂରୁ କରେ ଜକ ଜକ
ତାର ଗୋଡରେ ନାଇଛି ବଳା ହୋ, ଦୂରୁ କହେ ପଳା ପଳା ।"

ସେତେବେଳେ ମନୋରଞ୍ଜନ କି ଅବସ୍ଥାରେ ଥିଲା ଏବଂ ଦର୍ଶକମାନେ କିମିତି କଣ ଉପଭୋଗ କରୁଥିଲେ, ତାହା ଏହି ଗୀତରୁ ଜଣାଯିବ । ପାରଳାଖେମୁଣ୍ଡି ମହାରାଜା ଆସିଲେ ନାହିଁ । ବଡ ଦୁଃଖ ଲାଗିଲା । କଲିକତାରୁ ସବୁ କିସମର ଭୋଜନ ସାମଗ୍ରୀ ଆସିଥିଲା । କଲେଜ ପ୍ରାଙ୍ଗଣଟା ଧଳା ଚାଦର ଟେବୁଲରେ ସଜ୍ଜିତ ହୋଇଥିଲା ଏବଂ କେତେ କେତେ ବଡ ବଡ ଲୋକ ଉପସ୍ଥିତ ଥିଲେ । ଯେଉଁ ଆନନ୍ଦ-ଉଲ୍ଲାସର ଦୃଶ୍ୟ ଅନୁଷ୍ଠିତ ହୋଇଥିଲା, ତାହା ଓଡିଶା କମ୍ ଦେଖିଛି । )

ଓଡିଶା ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ ହେବ ଏବଂ ବଙ୍ଗଳା, ବିହାର, ଆସାମ ଆଦି ପଡ଼ୋଶୀ ରାଜ୍ୟ ସହିତ ଯୋଡିହୋଇ ରହିବ ନାହିଁ । ଏଣିକି ଓଡିଆ ଜାତିର ବହୁ ଆଶା ଓ ଆକାଂକ୍ଷା ପୂରଣ ହେବ । ସେଥିପାଇଁ ସମଗ୍ର ଓଡିଶାରେ ଆନନ୍ଦ ଉଲ୍ଲାସ ଖେଳିଗଲା । ଯଦିଚ୍ ମୟୁରଭଞ୍ଜ ଅଲଗା ରହିବାରୁ ଉତ୍କଳଜନନୀ ଛିନ୍ନମସ୍ତା ହୋଇଗଲା ବୋଲି ସମସ୍ତେ ମନେମନେ ଦୁଃଖକଲେ । ମଧୁବାବୁ, ଗୋପବନ୍ଧୁ ଓ ଅନ୍ୟାନ୍ୟ ଜାତୀୟ ନେତା ମାନେ ଯେଉଁ ପ୍ରାଣପଣେ ଆନ୍ଦୋଳନ କରିଥିଲେ, ସେମାନଙ୍କ ମନୋବାଞ୍ଛା ପୂର୍ଣ୍ଣହେଲା ନାହିଁ । ସେହି ସମୟରେ ରେଭେନ୍ସା କଲେଜର ଦକ୍ଷିଣ ପାର୍ଶ୍ୱ ବିରାଟ ବିସ୍ତୀର୍ଣ୍ଣ ପ୍ରାନ୍ତର "Orissa Down the Ages" ନାମକ ଏକ ପଥପ୍ରାନ୍ତ ଅଭିନୟ ବା Pantomime ପ୍ରଫେସର ଘନଶ୍ୟାମ ଦାସଙ୍କ ପ୍ରତ୍ୟେକ୍ଷ ତତ୍ତ୍ୱାବଧାନତାରେ, ଏକ ସନ୍ଧ୍ୟାରେ ଉପସ୍ଥାପିତ ହୋଇଥିଲା । ତହିଁରେ ଆଦିମ କାଳରୁ ଓଡିଶାର ଇତିହାସ ଦର୍ଶାଯାଇଥିଲା । ଖାରବେଳଙ୍କ ପାଖରୁ ଆରମ୍ଭ କରି, ମୋଗଲ ମରହଟ୍ଟା ଯୁଗର ବିଶିଷ୍ଟ ଘଟଣାଗୁଡିକ ସେଥିରେ ଚିତ୍ରିତ ହୋଇଥିଲା । ସଭା ଶେଷରେ ଗୋଟାଏ ହାତୀ ଉପରେ ମୟୁରଭଞ୍ଜ ମହାରାଜା

ଶ୍ରୀରାମଚନ୍ଦ୍ରଙ୍କର ଅଭିନୟ କରୁଥିବା ଶ୍ରୀରାମଚନ୍ଦ୍ରଙ୍କୁ ଦେଖିବାକୁ ମିଳିଥିଲା। ସେତେ ଉପଭୋଗ୍ୟ ନହେଲେ ମଧ୍ୟ, ସାନ୍ଧ୍ୟ ଉତ୍ସବଟି ଦର୍ଶକମାନଙ୍କ ହୃଦୟରେ ଜାତୀୟପ୍ରୀତି ବହୁମାତ୍ରାରେ ଉଦ୍ରେକ କରିଥିଲା।

କେ.ପି.ସିହ୍ନାଙ୍କ ପରି ପି.ଏ. ସୁନ୍ଦରମ୍ ଅନ୍ୟ ଏକ ମହାମହିମ ଇଂରାଜୀ ଅଧ୍ୟାପକ। ସେ ଅଥେଲୋ ପଢାଉଥିଲେ। ତାଙ୍କର ସ୍ତ୍ରୀ ଅପୂର୍ବ ସୁନ୍ଦରୀ- ପଦ୍ମା ସୁନ୍ଦରମ୍ କେତେଦିନପାଇଁ ବୋଧହୁଏ ଇତିହାସ ଅଧ୍ୟାପିକା ଥିଲେ। ଅନ୍ୟ କେତେ ଜଣ ଇଂରାଜୀ ଅଧ୍ୟାପକଙ୍କ ମଧ୍ୟରେ ଜନାଥନ ମହାନ୍ତିଙ୍କୁ ମନେପଡୁଛି। ଧଳା ପୋଷାକ ପିନ୍ଧନ୍ତି, ଗୋଟା ମଣିଷଟି।

ସବୁ ଇଂରାଜୀ ଅଧ୍ୟାପକଙ୍କ ମଧ୍ୟରୁ ଛାତ୍ରପ୍ରିୟ ଅଧ୍ୟାପକ ହେଲେ ଗିରିଜା ଶଙ୍କର ରାୟ। ଉଭୟ ଇଂରାଜୀ ଓ ଓଡିଆରେ ତାଙ୍କର ଅସୀମ ଜ୍ଞାନ ଓ ପ୍ରତିପତ୍ତି। ତାଙ୍କର ଜୀବନର ଇତିହାସ କହୁ କହୁ, ସେ କହୁଥିଲେ Mathematics ରେ ସେ ଦୁର୍ବଳ ଥିଲେ। କଲିକତାରେ ପଢୁଥିଲେ। ମେଟ୍ରିକୁଲେସନ୍ ବା ଆଇ.ଏ. କ୍ଲାସ୍‌ରେ ସେ ଅଙ୍କରେ ଫେଲ୍ ହୋଇଗଲେ ବା ଥାର୍ଡକ୍ଲାସ୍‌ରେ ପାସ୍‌କଲେ। ତାପରେ ସେ ଖୁବ୍ ଦୃଢସଂକଳ୍ପ ବାନ୍ଧି ଗଣିତ ମାନେ ବହି କିଣି ଅହରାତ୍ର ଘୋଷିବାକୁ ଆରମ୍ଭକଲେ। ଫଳରେ ତାଙ୍କର ଦୁର୍ବଳତା ଚାଲିଗଲା। ଏବଂ ବି.ଏ. କ୍ଲାସ୍‌ରେ ସେ ନିଜକୁ କହିଲେ "ମାଥେମାଟିକ୍‌ସକୁ ଯଦି ମୁଖସ୍ଥ କରି ପାରିଲି, Why not English ?" ଅତଏବ ସେ ଇଂରାଜୀ ଅନର୍ସ ନେଲେ। ଏବଂ ପ୍ରତିଦିନ ଗୋଟିଏ ଗୋଟିଏ ବଡବଡ ପାରାଗ୍ରାଫ୍ ବା କବିତା ମୁଖସ୍ତ କରିବାକୁ ଆରମ୍ଭ କଲେ। ତାଙ୍କର ମୁଖସ୍ତ କରିବାର ଅସୀମ ଶକ୍ତି ଥିଲା। ବି.ଏ. ଅନର୍ସ ପାଇଲେ। ଏମ୍.ଏ.ରେ ଫାଇଲୋଲଜି ବା ଶବ୍ଦତତ୍ତ୍ୱ ବିଷୟ ରଖିଲେ ଏବଂ ଖୁବ୍ ବେଶି ରେକର୍ଡ ବ୍ରେକିଂ ନମ୍ବର ରଖି ଏମ୍.ଏ.ରେ ଫାଷ୍ଟ କ୍ଲାସ ଫାଷ୍ଟ, ଗୋଲ୍ଡମେଡାଲିଷ୍ଟ ହେଲେ। ଓଡିଆ ସାହିତ୍ୟରେ ସେ ଧୁରନ୍ଧର। ବକ୍ତୃତା ଦେଲାବେଳେ କାହିଁ ଅଟକନ୍ତି ନାହିଁ। ଅନର୍ଗଳ ପାଟିରୁ ଶୁଦ୍ଧବାକ୍ୟ ପରେ ବାକ୍ୟ, ଶୁଦ୍ଧ ପଂକ୍ତି ପରେ ପଂକ୍ତି ବାହାରୁଥାଏ। ତାର ସ୍ୱରରେ ସେ ବକ୍ତୃତା କରନ୍ତି।

ଦିନକର କଥା। ମନେପଡୁଛି। ଥାର୍ଡଇୟର କ୍ଲାସ୍। ସେ କାଳରେ କେହି ଅଧ୍ୟାପକ ଅନୁପସ୍ଥିତ ଥିଲେ, ଆଉଜଣେ ସେ କ୍ଲାସ୍‌ଟା ନେବାର ବ୍ୟବସ୍ଥା ହୁଏ। ଦିନେ କେ.ପି. ସିହ୍ନା ଅନୁପସ୍ଥିତ ଥିଲେ। ତାଙ୍କ ଜାଗାରେ ଗିରିଜା ବାବୁ କ୍ଲାସ୍ ନେବାପାଇଁ ଉପସ୍ଥିତ ଥିଲେ। ଗିରିଜା ବାବୁ ମୋତେ ଭାରି ଭଲପାଆନ୍ତି। ବନମାଳୀ ବୋଲି ମୋର ସାଙ୍ଗ ପିଲାଟି ଓ ତା

ସାଙ୍ଗରେ ଆଉ କେତେ ଜଣ ବନ୍ଧୁ ଚାପାଗଳାରେ କହିଲେ- "ବସନ୍ତ, ସାର୍‌ଙ୍କୁ କହ, ଆଜି ପଢିବା ନାହିଁ।" ଇଂରାଜୀ କ୍ଲାସ୍‌ରେ ଇଂରାଜୀରେ କହିବାପାଇଁ ପଡିବ। ଖୁବ୍ ସାହସ କରି ସନ୍ତର୍ପଣରେ ମୁଁ ଛିଡା ହୋଇପଡି କହିଲି "Sir, we don't want to read today"। Today କୁ ସେ Romanticism ବୋଲି ଶୁଣିଲେ ଏବଂ ସେ ଖୁବ୍ ଖୁସିରେ କହିଲେ- "You want a talk on romanticism " ଏବଂ ଆରମ୍ଭ କଲେ- "In Xanadu, did Kubla Khan a stately pleasure dome decree where alph, the sacred rever ran through caverns measureless to man down to a sunless see." "Ladies and gentlemen if this be not the quintessence of romanticism, I do not know what else is ?" ଏକା ସ୍ୱର ଧରି ଗାଇଗଲେ। ଆମେ ତାଙ୍କୁ ଅଟକାଇ ପାରିଲୁ ନାହିଁ। ସେ ମଧ୍ୟ ଅଟକିଲେ ନାହିଁ। ୪୫ ମିନିଟ୍ କାଳ ସେ ରୋମାଣ୍ଟିସିଜିମ୍ ବିଷୟରେ ବକ୍ତୃତାଦେଲେ।

ପରବର୍ତ୍ତୀ ସମୟରେ ମୁଁ ଭଞ୍ଜପ୍ରଦୀପର ସଂପାଦକ ଥିଲାବେଳେ, ଓଡିଆ ନାଟ୍ୟ କଳା ବିଷୟରେ ସେ ଗୁଡିଏ ଉପାଦେୟ ପ୍ରବନ୍ଧ ମୋତେ ଦେଇଥିଲେ। ସେ ବାଇଗଣି କାଳିରେ ଲେଖନ୍ତି। ଯେମିତି ଜ୍ଞାନଗର୍ଭକ, ସେମିତି ଚମକପ୍ରଦ ତାଙ୍କର ଲେଖା ଏବଂ ବକ୍ତୃତା। ପ୍ରଫେସରମାନଙ୍କ ମଧ୍ୟରେ ଦୁଇଚାରି ଜଣକୁ ମନେପଡୁଛି। ସେମାନଙ୍କ ଭିତରୁ ଜଣେ ହେଉଛନ୍ତି H.K. Dash। Dash ର 'D' କୁ ସେ ଏଭଳି ଲେଖନ୍ତି ଯେ ମାଥେମାଟିକ୍‌ସ ପିଲାମାନେ ତାଙ୍କୁ ଏଇଚ୍.କେ. ଥିଟା କହନ୍ତି। ସେ କଳା କୋର୍ଟ ପିନ୍ଧନ୍ତି। ଗେଡା ମଣିଷ। ବ୍ଲାକ୍‌ବୋର୍ଡକୁ ହାତ ସହଜରେ ପାଏ ନାହିଁ। ଅତଏବ ସେ ଉପରକୁ ମୁହଁ କରି ବୋର୍ଡରେ ଲେଖନ୍ତି। ଯେତେ ସବୁ ଚକ୍ ଗୁଣ୍ଡ ତାଙ୍କର କଳା କୋର୍ଟ ଉପରେ ପଡେ। କ୍ଲାସ୍‌ରୁ ବାହାରି ଆସିଲା ବେଳେ ସିଧା କମନ୍‌ରୁମ୍‌କୁ ମୁହଁ କରି ଧଳା ହୋଇଥିବା କୋର୍ଟକୁ ପିନ୍ଧି ଚାଲିଯାଆନ୍ତି। ଯିବାବେଳେ ତାଙ୍କର ଚାଲିବା ଭଙ୍ଗି ଯିଏ ଦେଖେ, ସେ ମୁରୁକି ନହସି ରହିପାରେ ନାହିଁ। ସେ କିନ୍ତୁ ନିର୍ବିକାର। ସେ କୁଆଡେ ଥରେ କହିଥିଲେ "go and fetch my umbrella."

ଇକୋନୋମିକ୍‌ସରେ ଥିଲେ ଏଇଚ୍.ଆର୍. ବାର୍ଥେଜା। ସେ ବି ଖୁବ୍ ଗେଡା। କିଛି ଦିନ ପ୍ରିନିସିପାଲ୍ ମଧ୍ୟ ଥିଲେ। ଖୁବ୍ ଗୁରୁ ଗମ୍ଭୀର ଲୋକ। କୌତୁକରେ ପିଲାମାନେ କହୁଥିଲେ, ସେ ଦିନରେ କୁଆଡେ ତିନିଥର ଖିଅରହୁଅନ୍ତି। ତାଙ୍କର ଘଡିଟା ହାତରେ ଲୋମ ଭିତରେ ପ୍ରାୟ ଲୁଚି ରହିଥାଏ। ସେ ସକାଳୁ ଥରେ ଖିଅର ହୁଅନ୍ତି, ଭାତ ଖାଇବା

ପୂର୍ବରୁ ଥରେ ଏବଂ ଖାଇବା ପରେ ଥରେ। ବେଶି ଦିନ ନଥିଲେ। ରୋହାତଗୀ ଆଉ ଜଣେ ଇକୋନୋମିକ୍ସ ପ୍ରଫେସର ଥିଲେ। ସେ ଆମରି ସମୟରେ I.A.S. ହୋଇ ଚାଲିଗଲେ। ସେତେବେଳେ ପଲିଟିକାଲ୍ ସାଇନ୍ସ ବୋଲି କିଛି ସ୍ୱତନ୍ତ୍ର ପାଠ ନଥିଲା।

ମୋର ଫାଷ୍ଟଇୟର ଚାଲିଥାଏ। ଶୀତଦୀନ। ବାରିପଦାର 'ପୂର୍ଣ୍ଣଚନ୍ଦ୍ର ମେମୋରିୟେଲ୍ କ୍ଲବ' ତରଫରୁ ବାରିପଦାରେ ସ୍ପୋର୍ଟସ୍‌ର ବିପୁଳ ଆୟୋଜନ। ଓଡ଼ିଶାରେ ଚହଳ ପଡ଼ିଥାଏ। ବ୍ରଜସୁନ୍ଦର ଦାସ, ଏସ୍.ପି., ରାମବାବୁ, କେତେ ଉତ୍ସାହୀ ଯୁବକ ମହାରାଜାଙ୍କ ପୃଷ୍ଠପୋଷକତାରେ କ୍ଲବ୍‌ଟିଏ ଗଢ଼ି ବେଙ୍ଗଲ, ବିହାର ଓ ଓଡ଼ିଶାର ଟିମ୍‌ମାନଙ୍କୁ ନେଇ ବାରିପଦା ପୋଲିସ୍ ଲାଇନ୍ ପଡ଼ିଆରେ ଅପୂର୍ବ ଉତ୍ସାହରେ ବାର୍ଷିକ ସ୍ପୋର୍ଟସ କରୁଥାନ୍ତି। ଆମକୁ ସେଇଟା ଅଲମ୍ପିକ୍ ଖେଳ ପରି ଜଣା ପଡୁଥାଏ, ଏତେ ଉଚ୍ଚମାନର ସେ ଖେଳ ଓ ଖେଳୁଆଡ଼ ! ରେଭେନ୍‌ସା କଲେଜରେ ବାର୍ଷିକ ସ୍ପୋର୍ଟସ୍ ମଧ୍ୟ ଉଚ୍ଚମାନର ହେଉଥାଏ। ଇଚ୍ଛାହେଲା, ଗାଁରେ ସେମିତି ଖେଳ କୌତୁକ କରିବାକୁ। କଲେଜରେ ପଢ଼ୁଥିବା ଆମ ଗାଁର ହରିହର ନନ୍ଦଙ୍କୁ ଅନୁରୋଧ କରନ୍ତେ, ସେ ପାଞ୍ଚଟି ଟଙ୍କା ଦେଲେ। ତାପରେ ଇଆଠୁ ତାଠୁ, ଟଙ୍କାଏ ଅଧେ ଚାନ୍ଦା ଆଦାୟ କରୁ କରୁ ଦଶ-କୋଡ଼ିଏ ଟଙ୍କା ପାଣ୍ଠି ମିଳିଗଲା ଏବଂ ସେତିକିରେ ଛୋଟ ବଡ଼ ଗୁଡ଼ାଏ ପ୍ରାଇଜ୍ କିଣାଯାଇ ପାରିଲା। ପରିଶ୍ରମ କରିବାପାଇଁ ଯୁବକର ଅଭାବ ନାହିଁ। ନିଜ ଭିଣୋଇ କୈଳାଶ ମିଶ୍ରଙ୍କୁ ବଳିଯିବ କିଏ ? କୁରାଢ଼ି, କୋଦାଳ ଧରି ଡମ ସାହିର ପାଖ ବିରାଟ ପଡ଼ିଆ ସଫା କରିବାରେ ଲାଗିପଡ଼ିଲୁ। ଚୂନ ଦେଇ ପଡ଼ିଆରେ ଲାଇନ୍ ମଧ୍ୟ ଟାଣିଲୁ। ନାନା ରଙ୍ଗରେ ବିଜ୍ଞାପନ ମଧ୍ୟ ଛପାହେଲା ତିନି ଟଙ୍କା ଖରଚରେ। ଖଣ୍ଡ ମଣ୍ଡଳରେ ବିରାଟ ଉତ୍ସାହ ସୃଷ୍ଟିହେଲା। ସଙ୍ଗୀତ, ବେଦପାଠ ଆଦିରେ ପ୍ରତିଯୋଗିତା ହେଲା। ପାଖ ଆଖ ଗାଁ ଗଣ୍ଡାରୁ ପ୍ରତିଯୋଗୀମାନେ ଯୋଗଦେଲେ। କେବଳ ସଭାପତିଟିଏ ଦରକାର, ଯିଏ କି ପୁରସ୍କାର ବିତରଣ କରିବେ। ମୁଁ ମନେମନେ ବାଛିଲି ଶୀର୍ଷା ମାଇନର ସ୍କୁଲର ହେଡ୍ ପଣ୍ଡିତ୍ ବୈକୁଣ୍ଠ ନାଥ ମିଶ୍ରଙ୍କୁ। ସେ ରେଭେନ୍‌ସା କଲେଜର ପ୍ରଫେସର ନାରାୟଣ ମିଶ୍ରଙ୍କ ଭାଇ। ଯେଉଁ ନାରାୟଣ ମିଶ୍ର କଟକର କିଲା ପଡ଼ିଆରେ ଫୁଟ୍‌ବଲ ଖେଳରେ ରେଫ୍‌ରି ହୁଅନ୍ତି। ସେତେବେଳେ ବୈକୁଣ୍ଠ ନାଥ ମିଶ୍ରଙ୍କୁ ବଳି ଶିକ୍ଷକ କେଉଁଠି ମିଳୁ ନଥିଲେ। ଯେମିତି ଓଡ଼ିଆ ସାହିତ୍ୟରେ ଜ୍ଞାନ, ସେମିତି ନିଷ୍ଠାପର ତାଙ୍କର ଶିକ୍ଷକତା। ମୋ ଆଖିରେ ସେହି ଉପଯୁକ୍ତ ପାତ୍ର। ଏ ସମ୍ମାନ ପାଇବାକୁ ଯୋଗ୍ୟ। ସାଇକେଲ ଗୋଟିଏ ମାଗି ତାଙ୍କ ପାଖକୁ ଗଲି। ସେ ଖୁସିହୋଇ ହଁ ଭରିଲେ। ଯେଉଁଦିନ ଖେଳ ହେଲା ସେ ଦିନ ସେ ମଧ୍ୟ ଗୋଟିଏ

ସାଇକେଲ ମାରିଆଣି ଛ ମାଇଲ୍‌ବାଟ ଅତିକ୍ରମ କରି ଆମ ଗାଁକୁ ଆସିଲେ। ରଥ ପୋଖରୀ ବନ୍ଧ ପାଖ ମାଇଲ ପଥର ପାଖରୁ ତାଙ୍କୁ ପାଛୋଟି ଆଣିଲୁ। ପ୍ରାୟ ଶହେ ଜଣ ପିଲା, ବୁଢା, ବାଜା, ମହୁରୀ ସହ ସମ୍ବର୍ଦ୍ଧନା କଲେ। ବିବିଧ ଖେଳ କୌତୁକ, ଚାଲି,- ଯଥା- ଲମ୍ବ ଡିଆଁ, ଉର୍ଦ୍ଧ ଲମ୍ଫ, ଦୌଡ, କୁଦ, ଦୁଇ ମାଇଲ ସାଇକେଲ ଚାଳନା, ସନ୍ତରଣ, ଅଖା-ଦୌଡ, ଧୀରେ ସାଇକେଲ ଚାଳନା-ଡଙ୍କିଆ ଯୁଦ୍ଧ ଖୁବ୍ ଆନନ୍ଦ ଉତ୍ସାହ ସୃଷ୍ଟିକରୁଥିଲା। ବ୍ରାହ୍ମଣ, ଭୂମିଜ, ବଗାଲ, ଶୁଣ୍ଢି ସବୁ ଜାତି ଓ ସମ୍ପ୍ରଦାୟର ଲୋକ ଏକତ୍ରିତ ହୋଇ ଖେଳରେ ଯୋଗଦେଇ ପ୍ରତିଯୋଗିତା ଉପଭୋଗ କରୁଥିଲେ। ମୋର ମନେପଡୁଛି-ବାଜାଲୋକର ସର୍ଦ୍ଦାରଙ୍କ ନାତିଟିଏ ହାର୍ମୋନିୟମ୍‌ରେ ବଢିଆ ଗୀତ ଗାଇ ପୁରସ୍କାର ପାଇଥିଲା। ମୋର ବାପା ବେଦ ପାଠରେ ଫାଷ୍ଟ ହୋଇଥିଲେ। ଆମର କାଳୀ ମୂଲିଆ ରଥ ପୋଖରୀରେ ପହଁରାରେ ଫାଷ୍ଟ ହୋଇ ଡିଜ୍ ଲଣ୍ଠନଟିଏ ପାଇଥିଲା। କ୍ରିଡା କୌତୁକ ଶେଷରେ ସଭାପତି ବୈକୁଣ୍ଠ ନାଥ ମିଶ୍ର ପାଞ୍ଜଳ ଓଡିଆରେ ସ୍ପୋର୍ଟସ୍‌ର ଉପକାରିତା ବିଷୟରେ କେତେକ ଉପାଦେୟ କଥା କହିଥିଲେ। ଗାଁର ବ୍ରାହ୍ମଣ ଗୋସାଇଁମାନେ ସନ୍ଧ୍ୟା ପର୍ଯ୍ୟନ୍ତ ବସିରହିଲେ। ପ୍ରତ୍ୟେକ ଖେଳର ତାରିଫ କରୁଥିଲେ। ପଣ୍ଡିତ ମିଶ୍ର ଆମ ଘରେ କାକରା, ଆରିସା, ବିରିପିଠା ଆଦି ଭୋଜନ କରି ଖୁବ୍ ଆପ୍ୟାୟିତ ହୋଇ ତାଙ୍କ ସ୍କୁଲ୍‌କୁ ଚାଲିଗଲେ। ତାଙ୍କର ଋଣ ମୁଁ ସାମାନ୍ୟ କିଛି ଶୁଝି ନାହିଁ। ମୋର ଜୀବନର ଅବଶୋଷ କିନ୍ତୁ ରହିଗଲା, ତାଙ୍କୁ ବହଳଦାର ମୋଟା ଚାଦରଟିଏ ଦେଇ ନ ପାରି। ଯାହା ସିଏ ଜୀବନରେ ଅନ୍ତିମ ଅବସ୍ଥାରେ ପୁରୀ ଜିଲ୍ଲାର କେଉଁ ଏକ ପଲ୍ଲୀରୁ ଚିଠି ଲେଖି ମୋତେ ମାଗିଥିଲେ।

ବାବା କର୍ତ୍ତାର ସିଂଙ୍କ ବିଷୟରେ କିଛି ନ କହିଲେ ପ୍ରଫେସରମାନଙ୍କର ଗପ ଅକୁହା ରହିଯିବ। ବାବା କର୍ତ୍ତାର ସିଂ ଆମର ଓ୍ବାର୍ଡେନ ଥିଲେ। ପର୍ଶୁରାମ ବାବୁ ଥିଲେ ସୁପରିଟେଣ୍ଡେଣ୍ଟ। ବାବା କର୍ତ୍ତାର ସିଂ ଶିଖ୍ ଲୋକ। ତାଙ୍କର ସ୍ତ୍ରୀ ଗୋରା ଓ ଅତୀବ ସୁନ୍ଦରୀ। ସିଏବି ବିଲାତରେ ପାସ୍ କରିଥିଲେ। ଶୁଆ ଥଣ୍ଟ ପରି ତାଙ୍କର ନାକ। ଅତ୍ୟନ୍ତ ସ୍ୱାସ୍ଥ୍ୟବତୀ। ପୁଅଟି ଅତ୍ୟନ୍ତ ସ୍ୱାସ୍ଥ୍ୟବାନ୍। ବଡଝିଅଟିର ବୟସ ତେର ବର୍ଷ। ଦିଶେ ଝିଏତ ସତର ବର୍ଷ। ବାବା କର୍ତ୍ତାର ସିଂ ଡକ୍‌ଟରେଟ୍। କେମେଷ୍ଟ୍ରି ବହିରେ ତାଙ୍କର ଛବି ଅଛି। ଭାରି ରହସିଆ, ମଉଜିଆ ଲୋକ। ଓ୍ବାର୍ଡେନ୍ ଭାବରେ ସେ କ୍ୱଚିତ୍ ଆସନ୍ତି ଅଫିସକୁ। ଥରେ ଗୋଟିଏ ଘଟଣା ଘଟିଲା- ଯାହା ଫଳରେ ସେ ବାଧ୍ୟ ହୋଇ ଅଭିଯୋଗ ତଦନ୍ତ କରିବାକୁ ଆସିଲେ ଅଫିସକୁ। ବୋର୍ଡିଂର ଦୁଇଦଳଙ୍କ ମଧ୍ୟରେ ଝଗଡା। ଗୋଟାଏ

ପାଖରେ ପଶ୍ଚିମ ଓଡିଶା ପିଲାମାନେ; ଅନ୍ୟପାଖରେ ବାଲେଶ୍ୱର, ମୟୁରଭଞ୍ଜ କେଉଁଝର ଅଞ୍ଚଳର ପିଲାମାନେ। ହଷ୍ଟେଲ୍‌ଟା ପ୍ରାୟ ଦୁଇଭାଗ ହୋଇଗଲା। ପ୍ରତିଦିନ ଦୁଇଦଳଙ୍କ ମଧ୍ୟରେ କଳିଗୋଳ। ରାସ୍ତା ଘାଟରେ ମାରପିଟ୍ ପର୍ଯ୍ୟନ୍ତ ଗଲା। ସବୁକଥା ଖବର କାଗଜରେ ମଧ୍ୟ ବାହାରିଲା। ଆମେ ମୟୁରଭଞ୍ଜ ପିଲା ଅନନ୍ୟୋପାୟ ହୋଇ ପାଟନାରେ ଥିବା ଶ୍ୟାମଚନ୍ଦ୍ର ତ୍ରିପାଠୀ ପାଖକୁ ଚିଠି ଲେଖିଲୁ। ହୁଏତ ତ୍ରିପାଠୀ ସାହେବ ଏ ସଂପର୍କରେ ଚିଠି ଲେଖିଥିବେ ବାବା କର୍ତ୍ତାର୍ ସିଂଙ୍କ ପାଖକୁ। ଡକ୍ଟର କର୍ତ୍ତାର ସିଂ ବାହାରି ପଡିଲେ ଏନ୍‌କ୍ୱାରି କରିବାପାଇଁ। ସମ୍ବଲପୁର ପିଲାମାନଙ୍କ ଲିଡରମାନଙ୍କୁ ଡକାହେଲା। ହଷ୍ଟେଲ୍‌ରେ ଚହଳ ପଡିଗଲା। ପର୍ଶୁରାମ ବାବୁ ଥାନ୍ତି ହଷ୍ଟେଲ୍‌ର ସୁପିରଟେଣ୍ଡେଣ୍ଟ। ସମ୍ବଲପୁରୀ ହୋଇଥିବାରୁ ଘଟଣାଟା ଟିକିଏ ଜଟିଳ ହେଲା। ବାଲେଶ୍ୱର, ମୟୁରଭଞ୍ଜ ଆଦିର ପିଲାମାନଙ୍କ ନେତାମାନଙ୍କୁ ଡକାହେଲା। କଳହର ସୂତ୍ରପାତର ହେଲା କେରମ୍ ବୋର୍ଡକୁ ନେଇ। ସମ୍ବଲପୁର ପିଲାମାନେ ଜୋର ଜବରଦସ୍ତ ତିନିଟା ବୋର୍ଡରୁ ଅଧିକା ଖେଳିବାପାଇଁ ଚାହିଁଲେ। ଆମେ ଆପତ୍ତି କଲୁ। ଏହି ସାମାନ୍ୟ ସୂଚ୍ୟଗ୍ର ପରିମାଣ ଜମିରୁ ମହାଭାରତ। ଏମିତି ଛୋଟକଥାରେ ବାବା କର୍ତ୍ତାର ସିଂ ଗୁରୁତ୍ୱ ଦିଅନ୍ତି ନାହିଁ। ନିଷ୍ପତ୍ତି କରିବାପାଇଁ ସେ ସଂକଳ୍ପବଦ୍ଧ। ପର୍ଶୁରାମ ବାବୁଙ୍କୁ ଡକାଇଲେ। ତାଙ୍କୁ ପଚାରିଲେ "Did you hang the notice in the notice board ?" ପର୍ଶୁରାମ ବାବୁ ଘାବଡ଼େଇ ଗଲେ- "ଏସ୍.ସାର୍, ଆଇ ହ୍ୟାଙ୍ଗ/ହାଙ୍ଗଡ୍/ହଙ୍ଗ ଦି ନୋଟିସ୍... (Yes Sir, I hang, hanged, hung the notice)।" ଆଉ ତାଙ୍କୁ ଅଧିକା କହିବାକୁ ନଦେଇ ବାବା କର୍ତ୍ତାର ସିଂ ଚିତ୍କାର କରି କହିଲେ- "ହେଙ୍ଗ୍ ଇୟୋର ନୋଟିସ୍ ପର୍ଶୁରାମ ବାବୁ, ଆୟି ସେ" "(Hang your notice Parsurambabu !)" ଏବଂ ଶେଷରେ କହିଲେ- "ଅଲ୍ ରାଇଟ୍, ଆୟି ଇନ୍‌ଭାଇଟ୍ ଅଲ୍ ଅଫ୍ ୟୁ ଟୁ ଏ ଟି ପାର୍ଟି (All right, I invite all of you to a tea party)" । ତାରିଖ ମଧ୍ୟ କହିଲେ। ନିର୍ଦ୍ଧାରିତ ଦିନରେ ଟି'ପାର୍ଟି ହେଲା। ଆମେ ଚାଳିଶ-ପଚାଶ ଜଣ ବୋର୍ଡିଂ ପିଲା ବାବା କର୍ତ୍ତାର୍ ସିଂଙ୍କ ଘରେ ପହଞ୍ଚିଲୁ। ବାବା କର୍ତ୍ତାର ସିଂ, ମାମା ସିଂ, ତାଙ୍କର ଝିଅ ଓ ପୁଅର ଅତିଥି ହୋଇ ତାଙ୍କ ବୈଠକଖାନାରେ ପହଞ୍ଚିଲୁ। ଅତିକମ୍‌ରେ ପାଞ୍ଚଶହ ଛ ଶହ ଟଙ୍କାର ମିଠା କଲିକତାରୁ ଆସିଥିଲା। ବାଘ ବକାର ରସଗୋଲା, ଭିଗ୍‌ନାଗର ସନ୍ଦେଶ ସେ ସବୁ ପରସା ହେଲା। ଯିଏ ଯେତେ ଇଚ୍ଛା ଖାଇଲେ। ଖିଆପିଆ ସରିବା ପରେ ମନୋରଞ୍ଜନର ବ୍ୟବସ୍ଥାହେଲା। ମାମା ସିଂ ହାର୍‌ମୋନିୟମ୍ ଧରିଲେ। ବାବା ସିଂ ଡୁବିତବଲା କୋଳରେ ରଖି ଆରମ୍ଭକଲେ। ମାମା ସିଂ ପଞ୍ଜାବୀ ଗୀତ ଗାଇଲେ, ଆମେ ହୁଏତ ବୁଝିଲୁ ନାହିଁ। ଅନ୍ୟ କୌଣସି କାମ ନପାଇ

ବାବା ସାଙ୍ଗରେ ଥିବା ଆଠ ଦଶ ବର୍ଷର ପୁଅଟି ଚିଆର ତଳେ ଗଳି ଯାଇ ଜଙ୍ଘ ଭିତର ଦେଇ ହାତପୂରାଇ ବାପାଙ୍କର ଦାଢି ଢୁବି ତବଲା ତାଳ ସହିତ ଟାଣିବାକୁ ଲାଗିଲା । ଗୋଟାଏ ବିରାଟ ହାସ୍ୟରୋଳରେ ସଭା କାର୍ଯ୍ୟଶେଷ ହେଲା ।

ମାସେ ଧରି ଯେଉଁ କନ୍ଦଳ ଲାଗିରହିଥିଲା, ତାହାର ଅବସାନ ଘଟିଲା । ତହିଁ ପରଦିନ ବାବା ଓ ମାମା ଉପରମହଲାରୁ ତଳକୁ ଓହ୍ଲାଇ ଆସୁଥାନ୍ତି, ଆମ ସାଙ୍ଗରେ ସେମାନଙ୍କର ଭେଟହେଲା । ବାବା ସିଂ ସାଙ୍ଗ କୀର୍ତ୍ତନ ପଟ୍ଟନାୟକ ଆଡକୁ ଚାହିଁ ପଚାରିଲେ "ୱେଲ କୀର୍ତ୍ତନ ବାବୁ, ଡୁ ୟୁ ଥିଙ୍କ୍ ମାୟି ୱାଇଫ୍ ଟୁ ବି ବିୟୁଟିଫୁଲ୍ ? (Well, Kirtan babu, do you think my wife to be beautiful ?)" କୀର୍ତ୍ତନ ଉତ୍ତର ସ୍ୱରୂପ ଗୋଟିଏ ୱାର୍ଡ କହିଲେ । ସେ ୱାର୍ଡଟି ହେଲା "କାଳିଆବୋଦା" । କର୍ଣ୍ଣାର ସିଂ ଉତ୍ତର ଦେଲେ, "ଭେରି ୱେଲ୍, ଲେଟ୍ ଅସ୍ କମ୍ ଟୁ କାଳିଆବୋଦା (Very well, let us come to Kaliaboda)" ।

ପରଦିନ ଶୁଣାଗଲା ରେଭେନ୍ସା କଲେଜ ହଲରେ ଗୁରୁ ନାନକ ବିଷୟରେ ଗୋଟାଏ ଏଣ୍ଟରଟେନ୍‌ମେଣ୍ଟ ପ୍ରୋଗ୍ରାମ ହେବ । କି ବିରାଟ ଆୟୋଜନ ! ଏଇଟା ବଡ ବଡିଆଙ୍କର ଏଣ୍ଟରଟେନ୍‌ମେଣ୍ଟ । ଆମର ପିଲାମାନଙ୍କର ପାର୍ଟ ଗୌଣ । ମୋର ମନେ ପଡୁଛି- ବ୍ରଜ ଦତ୍ତ ବୋଲି ଗୋରା ଚିଲାଆଖିଆ ପିଲାଟି ନାନକ ପାର୍ଟ କରିବ । କଷାୟ ରଙ୍ଗର ଆଲ୍‌ଖୋଲା ପିନ୍ଧି, ଖୋଳ, କର୍ତ୍ତାଳ ପିଟି ପ୍ରସେସନ୍ ମହାନଦୀ ପାର ହୋଇ ଆସିବ । କାଳିଆବୋଦାରେ ଗୁରୁ ନାନକ ବିଶ୍ରାମ ନେବେ, ଦାନ୍ତ ଘଷିବେ ଏବଂ ଦାନ୍ତ କାଠିଟି ସେଇଠି ପୋତିବେ ଏବଂ କାଳକ୍ରମେ ଦାନ୍ତନ୍ ସାହେବ ବୋଲାଇବ । ମନ୍ଦିର ତିଆରି ହେବ । ସେଦିନ ଥିଏଟରରେ ଅତିକମ୍‌ରେ ତିନିହଜାର ଟଙ୍କା ରୋକଗାର ହୋଇଥିଲା ।



# ।। ଏକତିରିଶ ।।

ବାବା କରତାର ସିଂଙ୍କର ମେହେନତ୍ ଓ ଉଦ୍‌ଯୋଗ ଫଳରେ ରେଭେନ୍‌ସା କଲେଜ ହଲରେ ଯେଉଁ "କାଳିଆବୋଦା"ର ସୃଷ୍ଟିହେଲା, ସେହି ହଲଟି ଓଡ଼ିଶାର ଏକ ଐତିହାସିକ ପ୍ରକୋଷ୍ଠ। ଏଇ ଘରେ କଳା, ସଂସ୍କୃତି, ରାଜନୀତି, ଶିକ୍ଷା ସମ୍ପର୍କିତ ନାନା ଉତ୍ସବ ଅନୁଷ୍ଠିତ ହୋଇଛି। ଏଇଠି ହଜାର ହଜାର ଓଡ଼ିଶାର ପିଲା ପାଟନା ୟୁନିଭରସିଟିର I.A, I.Sc., M.A. ଏବଂ LLB ପରୀକ୍ଷାରେ ଅବତୀର୍ଣ୍ଣ ହୋଇଛନ୍ତି। ଏହି ହଲରେ ଅନେକ ନାଟକ ଅଭିନୀତ ହୋଇଛି। ଏହି ହଲରେ ପାରଳାଖେମୁଣ୍ଡି ମହାରାଜାଙ୍କର ନେତୃତ୍ୱରେ ତିନି ଜଣିଆ ମନ୍ତ୍ରୀମଣ୍ଡଳ ଶପଥ ନେଇଛି ଏବଂ ଏସେମ୍‌ଲିର ପ୍ରଥମ ଅଧିବେଶନ ଅନୁଷ୍ଠିତ ହୋଇଛି। ଏହି ହଲରେ ମନହର ଜୀ କାରରେ ଓ ତାଙ୍କ ଭଉଣୀ ବିଭିନ୍ନ ଦେଶର ବାଦ୍ୟ କୌଶଳ ପ୍ରଦର୍ଶନ କରି ଓଡ଼ିଶାବାସୀଙ୍କୁ ମୁଗ୍ଧ ଓ ଚକିତକରିଛନ୍ତି। ଏହି ଏସେମ୍‌ଲି ହଲରେ କେତେ କେତେ ଥିଏଟର୍ ଅଭିନୀତ ହୋଇଛି। ବୃତ୍ରାସୁର ଅଭିନୟରେ ପ୍ରତିହାରିଙ୍କୁ କିଏ ଭୁଲିଯିବ ? ଆରଙ୍ଗି ବା ଆଉରଙ୍ଗଜେବଙ୍କର ଅଭିନୟରେ ପ୍ରଖ୍ୟାତ କମ୍ୟୁନିଷ୍ଟ ନେତା ରାମକୃଷ୍ଣ ପତିଙ୍କ ଅଭିନୟ କିଏ ଭୁଲିଯିବ ? ସେ ନିଜେ କଲିକତା ଯାଇ ଶିଶିର ଭାଦୁଡ଼ି ଓ ଅହୀନ୍ଦ୍ର ଚୌଧୁରୀଙ୍କ ଅଭିନୟ କଲିକତା ଥିଏଟରରୁ ଦେଖି ଆସିଥିଲେ। ମୁଁ ମଧ୍ୟ ସେ ନାଟକରେ ରାମ ସିଂ ଅଭିନୟ କରିଥିଲି, ଏବେବି ସ୍ପଷ୍ଟ ମନେପଡୁଛି ଏକ ବିରାଟ ପେଟ ବାହାର କରି, ମୁଣ୍ଡରେ ପଗଡ଼ିମାରି, ଜଣେ ରାଜପୁତ ରାଜା ଆକାରରେ ଅବତୀର୍ଣ୍ଣ ହୋଇଥିଲି। ମୋତେ ଆଠ ଦଶ ଜଣ ଅଭିନେତ୍ରୀ (ସମସ୍ତେ ପୁରୁଷ, ଆମ କଲେଜ ପିଲା) ଗୀତ ଗାଇ ଅଭିନୟ ଦେଖାଇ ରଙ୍ଗମଞ୍ଚ ଉପରକୁ ପାଛୋଟି ନେଇଥିଲେ, ଗୀତ ଗାଉଥିଲେ "ଆଜି ଅତିଥି ଆସିଛି ଦୁଆରେ, ଉଭାହେଲା କିଏ ବାହାରେ, ବରିଆଣ ସଖି ପୀରତି କୁସୁମ ହାରେ, ଗୋପନରେ ଅଭିସାରେ, ତାକୁ ଲାଗଇ କି ସରମ, ଅଳତା କଥାଟି ମନେମନେ କହି...।" ଗୀତ ସରିବା ସାଙ୍ଗେସାଙ୍ଗେ ଗୋଟିଏ ଟ୍ରେଜେଡି ଘଟିଲା। ମୋର ପ୍ରତିଦ୍ୱନ୍ଦୀ ପିଲାଟି, ମୋତେ ଅପମାନିତକରିବା ଅଭିପ୍ରାୟରେ ମୁଣ୍ଡରେ ଏମିତି ଜୋରରେ ଥାପୁଡ଼ାଇ ଦେଲା ଯେ, ପଗଡ଼ି ଖସିଗଲା ଏବଂ ଷ୍ଟେଜରେ ପ୍ରାୟ ଅର୍ଦ୍ଧଉଲଗ୍ନ ହୋଇଗଲି; ଅଧାରୁ ପର୍ଦ୍ଦା ଟାଣିବାକୁ ପଡ଼ିଲା। ସେତେବେଳେ ବାଲେଶ୍ୱରରୁ ଶ୍ରୀରାମ ଦେ ନାମକ ଜଣେ ସଙ୍ଗୀତଜ୍ଞ ଓସ୍ତାଦ କଲେଜ ହଷ୍ଟେଲରେ ରହି ନୃତ୍ୟ-ଗୀତ ଶିକ୍ଷା ଦେଉଥିଲେ ଏବଂ କଲିକତାର ପୋଷାକ ପରିଚ୍ଛଦ ଯୋଗାଉଥିବା ହରିସନ ରୋଡ଼ର କେତେ ଜଣ ବେଶକାରୀ ଆମର ସାଜସଜା କରିଦେଉଥିଲେ। ଅଦମ୍ୟ ଉତ୍ସାହ ଓ ଉଦ୍ଦୀପନା ମଧ୍ୟରେ ଅଭିନୟ ସମାପ୍ତି ହେଉଥିଲା। ଆଉ କେଉଁ ବର୍ଷ ବନ୍ୟା ବା ଭୂମିକମ୍ପ

ଯୋଗୁଁ ନାଟକର ପାଣ୍ଠି ଦାନ କରିଦିଆଯାଉଥିଲା । ସେହି ବର୍ଷ ବଡ ଦୁଃଖ ହତାଶରେ ଅଭିନେତାମାନେ ରହିଯାଉଥିଲେ । ଏଇ ହାଲରେ ପରୀକ୍ଷା ଦେଇ ମୁଁ ଆ.ଏ.ରେ ପାଟନା ୟୁନିଭରସିଟିରେ ଦ୍ୱିତୀୟ ସ୍ଥାନ ଅଧିକାର କରିଥିଲି । ଇଂରାଜୀରେ ଫାଷ୍ଟ ହୋଇଥିଲି । Second class ଅନର୍ସ ପାଇଥିଲି M.A.ରେ । ଇଂରାଜୀରେ ମୁଁ ଏକମାତ୍ର ଛାତ୍ର ଏବଂ ୫୦ପରସେଣ୍ଟ ନମ୍ବର ରଖି second class M.A. ହୋଇଥିଲି । ସେତେବେଳେ ୫୦ପରସେଣ୍ଟ ହେଲେ second class ହେଉଥିଲା ।

ଏହି ସମୟରେ କଟକକୁ ସବୁଠାରୁ ବଡ ମନୋରଞ୍ଜନ ପ୍ରୋଗ୍ରାମ ଆସିଥିଲା ଗୋଟାଏ ସର୍କସ- The Great Olympic Circus । ତମ୍ବୁ ପଡିଥିଲା କଟକର ମୁନିସିପାଲଟି ପଡିଆରେ । କଟକବାଲା ଖୁବ୍ କମ୍ ଦେଖିଛନ୍ତି ଏମିତି ସର୍କସ । ଋଷିଆ, ଜାପାନ, କୋରିଆ, ଜର୍ମାନୀ, ଏମିତି ନାନା ଦେଶ ଦେଶାନ୍ତରର ଖେଳାଳୀଙ୍କୁ ନେଇ ସେହି ସର୍କସ । ବିସ୍ତୀର୍ଣ୍ଣ ଇଲାକା । ଘେର ଭିତରେ ଖେଳାଳୀ । ସବୁ ପ୍ରାୟ ସାଇବ ସାଇବାଣୀ । ମନ୍ତ୍ରମୁଗ୍ଧ ହୋଇ ଲୋକ ସେ ସର୍କସ ଦେଖୁଥାନ୍ତି । ଟିକଟ ଗୋଟିକୁ ଚାରଣା । ଟଙ୍କାଟିଏ ଟିକଟ କିଣିଲେ ପ୍ରାଇଜ କୁପନ ମିଳେ । ଖେଳ ଶେଷରେ ଲଟାରୀ ହୁଏ । ଯାହା ଭାଗ୍ୟରେ ଯାହା ଉଠିଲା । ଆମେ ଚାରିଜଣ ସେଦିନ ଯାଇଥିଲୁ । ଗ୍ୟାଲେରୀରେ ବସିଥାଉଁ । ସମସ୍ତଙ୍କ ପ୍ରାଇଜ କୁପନଗୁଡିକ ମୁଁ ପକେଟରେ ରଖିଥାଏ । ଖେଳ ଶେଷହେଲା । ସର୍କସ ମ୍ୟାନେଜର ଜଣେ ଦର୍ଶକକୁ ଡାକିନେଇ ତାହାରିଦ୍ୱାରା ଟିକଟ ଉଠେଇଲା । ଆମ ନାରେ ପ୍ରାଇଜ ଉଠିବ ନାହିଁ ବୋଲି ଆମେ ପଳାଇ ଆସୁଥିଲୁ । ତେଣୁ ମୋ ପକେଟରେ ୧୬ଟି କୁପନ ଥିଲା । ମୁଁ ସହଜରେ ଗ୍ୟାଲେରୀରୁ ଓହ୍ଲେଇଲି ନାହିଁ । ଅପେକ୍ଷା କଲି ପୁରସ୍କାରରେ ସାଇକେଲ ମିଳେ, ଚାରି ପାଞ୍ଚଟା । ଗୋଟେ ବୁଢୀ ସାଇକେଲ ପାଇଲା । ସେତେବେଳେ ରେଲେ ସାଇକଲର ଦାମ ୩୪ ଟଙ୍କା । ଗୋଟାଏ ବିରାଟ ଚା'ପେଟିରେ ଟିକଟଗୁଡାକ ଘାଣ୍ଟି ଦିଆଯାଏ । ଶେଷ ପର୍ଯ୍ୟନ୍ତ ମୁଁ ଅପେକ୍ଷା କଲି । ନମ୍ବର ଲେଖା ହେଉଥାଏ । ବୋର୍ଡରେ ମୋ ନମ୍ବର ନାହିଁ । ସବାଶେଷକୁ ଓହ୍ଲେଇବା ଉପକ୍ରମ କରୁଥାଏ । ବୋର୍ଡରେ ଗୋଟି ଗୋଟିକରି ସଂଖ୍ୟାରେ ନମ୍ବର ଲେଖା ହେଉଥାଏ । ମୋ ନମ୍ବର ଉଠିଲା ସେଠି ମାତ୍ର ୧୬ ଟି ନମ୍ବରରୁ କେଉଁଟି ମୋର, ସେଟା କେହି କହି ପାରିବନି । ସାଙ୍ଗ ସାଥି କାହାକୁ ନ ଦେଖାଇ ଚାଲିଗଲି ଆଣିବାପାଇଁ । ପୁରସ୍କାର ୫ ଟଙ୍କା ମିଳିଲା । ତହିଁ ପରଦିନ ରାଣୀହାଟ ବୁକ୍ ଏଜେନ୍ସିରୁ ଇଂରାଜୀମାନେ ବହି ଗୁଡିକ କିଣି ଆଣିଲି । I.A. ପରୀକ୍ଷା ସୁରୁଖୁରୁରେ ଦେବାର ଆଶା ଚୁଲିକି ଗଲା । ଏହି ସର୍କସ ସଂକ୍ରାନ୍ତରେ ଘଟିଥିବା ଏକ ଦଙ୍ଗା ହେଙ୍ଗାମ କଥା ମନେପଡୁଛି । ସର୍କସବାଲାଏଁ ପଡିଆରେ

ଗୁଡାଏ ଗହମ ଶୁଖେଇଥିଲେ। ମୁନିସିପାଲଟିର ଷଣ୍ଢଟା ସେଥିରୁ କିଛି ଖାଇଗଲା। କଣ ଗୋଟାଏ ବିରାଟ ହୋ ହାଲ୍ଲା ହେଲା। କିନ୍ତୁ ଫଳ କିଛି ହୋଇନାହିଁ। ବ୍ରିଟିଶ ଅମଳର କଥା ତ !

ମୁଁ ପଢୁଥିବା ସମୟରେ, କଲିକତା ରଙ୍ଗମହଲ ଥିଏଟର, ମୁନିସିପାଲଟି ପଡିଆରେ ଚାରିଟି ନାଟକ କରିଥିଲା। "ଝଡେର ରାତି," "ପତିବ୍ରତା," "କାନିରି" ଏବଂ ଆଉ ଗୋଟାଏ କଣ। ଅଡେଇ ଟଙ୍କା ଲେଖାଏଁ ଗୋଟେ ଗୋଟେ ଟିକେଟ। ବିନା ଅନୁମତିରେ ମୁଁ ଚାରୋଟି ଯାକ ଥିଏଟର ଦେଖିଛି। ମୋତେ ଜଣା ପଡୁଥିଲା ଯେ, ଅଭିନେତାମାନେ ମଣିଷ ନୁହଁନ୍ତି। ଅତି ମାନବ ବା ଦେବତା। ଆଉ ନାରୀ ଅଭିନେତ୍ରୀ ମାନେ ସ୍ୱର୍ଗର ଅପସରା ପରି ଦିଶୁଥା'ନ୍ତି। ସେ ଥିଏଟର ଦେଖିବାର ଆନନ୍ଦ ସ୍ୱର୍ଗୀୟ। ପୃଥିବୀରେ ଯାହାର ପଟାନ୍ତର ନାହିଁ। I.A. ପରୀକ୍ଷା ପୂର୍ବରୁ ସରସ୍ୱତୀ ପୂଜା ପଡିଲା । କାହିଁକି କେଜାଣି ଭାରି ଥଣ୍ଡା ସେ ବର୍ଷ। ଦିନ ପ୍ରାୟ ଦୁଇଟା ବେଳର କଥା। ପରୀକ୍ଷାପାଇଁ ଆମେ ମରଣାନ୍ତକ ଲାଗିଥାଉ। ଦିନ ପ୍ରାୟ ଅଡେଇଟା। ଭୂମିକମ୍ପ। ଆମେ ପଢା ଟେବୁଲରୁ ଉଠି ଆସିଲୁ ବାହାରକୁ। ଦେଖିଲୁ- ଘର ପାଇପ୍ ତଳର କୁଣ୍ଡରୁ ପାଣି ବାହାରକୁ ବାହାରି ଯାଉଛି। ଗୋଡର ତଳ ଭୂଇଁରେ ଲାଗୁଛି କି ଲାଗୁନି। କ'ଣ ହେଉଛି କାଣି ହେଲାନି। ଭୂମିକମ୍ପର ଅଭିଜ୍ଞତା ତ ନାହିଁ। ସେଦିନ ରାତିରେ ଘର ଭିତରେ ଆମେ ଶୋଇଲୁ ନାହିଁ। ଥଣ୍ଡାରେ କଲେଜ ଆଗ ଟେନିସ ପଡିଆରେ ଶୋଇଲୁ। ଘର ଭିତରେ ଶୋଇଥିବା ପିଲାମାନେ ଚାଙ୍ଗା ଥା'ନ୍ତି-ଆଉ ଥରେ ଭୂମିକମ୍ପ ହେଲେ ବାହାରକୁ ପଳେଇବେ। ଆମ ଓ୍ୱାର୍ଡ ସାରଭେଣ୍ଟ ବୁଢିଆ ତା ପୁଅକୁ ଧରି ପାଇପ୍ ପାଖ ବାରଣ୍ଡାରେ ଶୋଇଥାଏ। ଭୂମିକମ୍ପ ବା ପ୍ରଳୟକୁ ତାର ଖାତିର ନାହିଁ। ତାର ପୁଅର ଆଣ୍ଠୁରେ ଗୋଟାଏ ବଡ ବଥ ହୋଇଥାଏ। ଉଁ ଆଁ ହୋଇ କଡ ଲେଉଟାଉଥାଏ। ଅତି ଯନ୍ତ୍ରଣାରେ ଛଟପଟହୋଇ ସେ କେତେବେଳେ ପିଣ୍ଡା ତଳକୁ ଗଡିପଡିଲା। ବୁଢିଆ ଖୁବ୍ ଜୋରରେ ଚିତ୍କାରକରି ଉଠିଲା- "ବାବୁ ଭୂମିକମ୍ପ"। ହଷ୍ଟେଲରେ ଯିଏ ଯେଉଁଠି ଶୋଇ ଥିଲା, ସେ ଲଙ୍ଗଳା ବାତଳା ହୋଇ ଘରୁ ବାହାରି ଆସିଲା ବଗିଚା ଆଡକୁ। ସେଠି ଯେଉଁ ବାଡ ଘେରା ହୋଇଥିଲା, ସେହି ବାଡରେ ଧୋତି ଲାଗିଗଲା। କିଏ କେଉଁଠି ବୁଦା ମୂଳେ ବସିଗଲେ ତାର ପତ୍ତା ନାହିଁ। ଭୂମିକମ୍ପର ଆତଙ୍କଟା ଏହି ପ୍ରକାର ପରଦିନ ଦେଖାଗଲା। ଯେତେବେଳେ ଚାଉଳିଆଗଞ୍ଜ ପୋଷ୍ଟଅଫିସର ପୁରୁଣା କାନ୍ଥରୁ ଖଣ୍ଡେ ଖସିପଡିଛି। ଆଉ ଉଲ୍ଲେଖଯୋଗ୍ୟ କୌଣସି କ୍ଷତି ଓଡିଶାରେ ଘଟିଥିବାର ମନେପଡୁନି; କିନ୍ତୁ ବିହାରରେ ଭୂମିକମ୍ପର ବିଧ୍ୱଂସକାରୀ ଶକ୍ତିର ପ୍ରମାଣ ସର୍ବତ୍ର। କେତେଦିନ ଭୂମିକମ୍ପର ଭୟରହିଲା। ଆଶ୍ୱସ୍ତହେଲୁ, ଯେତେବେଳେ

ୟୁନିଭରସିଟିରୁ ଚିଠି ଆସିଲା ଯେ ପରୀକ୍ଷା ଜୁନ୍ ମାସକୁ ଘୁଞ୍ଚିଲା। ପଢାପଢିରେ ଯାହାର ଉଣାଥିଲା ସମୟ ଅଭାବରୁ, ତାହା ଆଉ ରହିଲା ନାହିଁ। ଅନନ୍ତମାଳ ବୋର୍ଡିଙ୍ଗ ଖାଲି। କଲେଜ ବନ୍ଦ। ଯେ ଯାହାର ଚାଲିଗଲେ। ଅଢେଇ ଟଙ୍କାରେ ମୋ ଭେଣେଇକୁ କଣ୍ଟ୍ରାକ୍ଟ ଦେଇ ଗୋଟିଏ ଟୁଙ୍ଗି ଆମ ଘର ପଡିଆରେ ତିଆରିକରି, ତାକୁଇ ପଢାଘର ଆକାରରେ ବ୍ୟବହାର କଲୁଁ। ସେହି କୁଡିଆରେ କେତେଦୂର ପଢାପଢି ଆଗେଇଲା କହିପାରିବିନି। ଆଠଦଶ ବର୍ଷର ମୋର କନ୍ୟା-ବହୂକୁ ଡ୍ରିଲ କରୁଥିବାର ପ୍ରତିଦିନ ମୁଁ ଦେଖିବାର ସୌଭାଗ୍ୟ ପାଇଲି। ୟୁନିଭରସିଟିରେ second ହେବାରେ ଏହି ଭୂମିକମ୍ପଟା ହୁଏତ ମୋତେ ସାହାଯ୍ୟକଲା। ଏ ଭୂମିକମ୍ପ ସଂକ୍ରାନ୍ତରେ ସାଧୁବାବା ଲାଇବ୍ରେରିଆନ୍‌ଙ୍କୁ କିଏ ଜଣେ ପଚାରିଲେ ଭୂମିକମ୍ପର ଅଭିଜ୍ଞତା। ସେ ଯେମିତି ଚାହୁଁଥିଲେ କାହାକୁ ସେ କଥା କହିବାପାଇଁ। କନିକା ଲାଇବ୍ରେରୀରେ କେତେ ବହି ନଥାଏ। ତାଙ୍କୁ ବହି ମାଗିଲେ ଲାଇବ୍ରେରିଆନ୍ ମୋତେ ଅଲରାଉଣ୍ଡର ପିଅନକୁ କହିଦିଅନ୍ତି ବହିଟି କେଉଁ ଜାଗାରେ ଅଛି, କେତେ ନମ୍ବର। ଯଦି ଲାଇବ୍ରେରୀରେ ନାହିଁ, କାହା ପାଖରେ ଅଛି। ମଣିଷଟି ଚାରିଫୁଟରୁ ଇଞ୍ଚେ ବେଶି। ସେ କହନ୍ତି, "ଭୂମିକମ୍ପ ଯେତେବେଳେ ହେଲା ବୋଲି ମୁଁ ଜାଣିଲି, ସେତେବେଳକୁ ହୁଏତ ଭୂମିକମ୍ପ ସରିଯାଇଥାଏ। ମୁଁ କଣ କଲି, କାଳେ ଆଉଥରେ ଭୂମିକମ୍ପ ଆସିବ, ସେଥିପାଇଁ ବେଳ ଥାଉଁ ଥାଉଁ ଗୋବିନ୍ଦ ସୁମରିଲା ପରି ମୋର ଟେବୁଲ ତଳକୁ ପଶିଗଲି।" କିଏ କହିଲା- "ଯଦି ଲାଇବ୍ରେରିର ଛାତଟା ଆପଣଙ୍କ ଉପରେ ପଡିଥାନ୍ତା, ତା ହେଲେ ଟେବୁଲ କ'ଣ ଆପଣଙ୍କୁ ରକ୍ଷା କରିପାରିଥାନ୍ତା ?" ସାଧୁ ବାବୁ କହିଲେ- "ମୁଁ ତ ନିଜେ ଦେଖିଲି କିଛି ହେଲା ନାହିଁ ମୋର।" କେତେ ବଡ ବଡ ଘଟଣା ଓ ସମସ୍ୟାକୁ ଲୋକେ କେତେ ସହଜରେ ଉଡେଇ ଦେଇପାରନ୍ତି।

ଯେଉଁ ଛ'ଟି ବର୍ଷ ରେଭେନ୍‌ସାରେ କଟେଇଲି, ତାକୁ ସୁଖମୟ କରିଛନ୍ତି ବୋର୍ଡିଙ୍ଗର ପୂଜାରୀ ଓ ଓ୍ୱାର୍ଡ ସାରଭେଣ୍ଟମାନେ। ଘରଦ୍ୱାର ଛାଡି ସେମାନେ ଆଠ-ଦଶ ଟଙ୍କାର ଦରମାରେ ଆମକୁ ଆଦର ଯତ୍ନରେ ଲାଳନପାଳନ କରନ୍ତି। ଧନୀ, କେଶବ, ଉଦୟ, ବେଙ୍ଗ କେତେ ସୁନ୍ଦର ରୋଷେଇକରନ୍ତି। ଆମେ ନ ଖାଇଲେ ପୂଜାରୀ ଧନୀ ଓ ତାର ଦୁଇଭାଇ କାନ୍ଦିପକାନ୍ତି। କେଉଁ କେଉଁ ଦିନ ଉପାସ ମଧ୍ୟ ରହିଯାନ୍ତି। ବେଶି ଦିନ ଗୋଟାଏ ଯାଗାରେ ରହିଗଲେ ଜୀବଜନ୍ତୁ, ଷଣ୍ଢଗୁଡାକ ମଧ୍ୟ ମନୁଷ୍ୟଙ୍କୁ ଭଲପାନ୍ତି। ଚାଉଳିଆଗଞ୍ଜ ପୋଷ୍ଟଅଫିସ୍ ପାଖ ଗଛଗୁଡାକରେ କେତେ କେତେ ହନୁ କୋଳରେ ଛୁଆଙ୍କୁ ଧରି ଦାନ୍ତ ନିକୁଟୁ ନଥାନ୍ତି। ବାଲୁବଜାରର ପାତିଗୁଡାକ, ବିଶେଷକରି ସେହି ଗେଧଟା ହସ୍ତାକରେ

ଥରେ ଦୁଇଥର ଆମ ବୋର୍ଡିଂକୁ visit ନ କଲେ ରହିପାରେ ନାହିଁ । ଥରେ ବର୍ଷାରୁ ରକ୍ଷା ପାଇବା ପାଇଁ ସେ ଆମର ରୁମର sky-light ରେ ବସିଥିଲା । କ'ଣ ଭାବିଲା କେଜାଣି, ତଳକୁ ମଶାରି ବାଡ଼ା ସାହାଯ୍ୟ ନେଇ ଓହ୍ଲାଇ ଆସିଲା । କୋଠରି ଭିତରୁ ବାହାରକୁ ବାହାରିବାର ସାହସ ଆମର ହେଲା ନାହିଁ । ଆମେ ଶୋଇ ରହିଲୁ ଆଖି ବନ୍ଦକରି । ଖାଲି ଚୋକ୍ତପୋଷ ଉପରେ ଥିବା ଚାହାଡବା, ଚିନିଡବା, ଦୁଧଡବା, ସବୁ ସେ ପରୀକ୍ଷା କରିଚାଲିଲା । ସବାଶେଷରେ ପ୍ରାଇମାସ ଷ୍ଟୋଭର କଳ କବ୍‌ଜା ଫିଟା ଫିଟି କରି ପୁଣି sky light ଉପରକୁ ଉଠିଗଲା । ମୁହଁସାକ ଚିନି, ଦୁଧ, ଚା'ଗୁଣ୍ଡ ବୋଳା ହୋଇ ବିଚିତ୍ର ରୂପ ନେଇଥାଏ । ଆଉ ଦିନେ ତାର କି ଖିଆଲ ବସିଲା କେଜାଣି, କିଚେନ୍ ଗାର୍ଡେନରେ ଚାକର ପୂଜାରୀ କରିଥିବା କଦ୍ଲିଗଛ, ମରିଚଗଛ, ସବୁ ଉପାଡି ଧ୍ୱସ୍ତବିଧ୍ୱସ୍ତ କରିଦେଲା ।

ଅନୁ ଆମର ପାନ ଦୋକାନୀ । ସେ ଯୋଗାଏ ଆମକୁ ବିଡ଼ି, (ସାଏବ ଫଟୁ ବିଡ଼ି, ମୋହ ସୁନ୍ଦରୀ ବିଡ଼ି, ଗାଈ ମାର୍କା ବିଡ଼ି, ଚକ୍ରଧରପୁରର ଇଞ୍ଜିନ୍ ମାର୍କା ବିଡ଼ି), ବାସନା ଗୁଡାଖୁ, ମିଠାପାନ, ଖରାଦିନରେ ବରଫ ସରବତ୍ । କଦଳୀ ଡଜନ ଦୁଇ ଅଣା । ଅନୁ ଆମକୁ ଏତେ ଭଲ ପାଉଥିଲା ଯେ, ରେଭେନ୍‌ସା କଲେଜ ଛାଡ଼ିବାର ବହୁତ ପରେ ମଧ୍ୟ ଆମେ ତାର ଖୋଜଖବର ନେଉ । ସେ ବି ଆମକୁ ଦେଖିଲେ ଚିହ୍ନିପାରେ । ଖରାଦିନରେ ଆସିଲା ବେଳେ ଗାଁକୁ ଆଣିବାପାଇଁ ସେ ସୁରେଇ ମଧ୍ୟ ଯୋଗାଇ ଥାଏ । ତାହାରି ପାଖକୁ ଲାଗି କୁଞ୍ଜିଆ ମିଠା ଦୋକାନ । ଚାରି ପଇସାରେ ବଡ ବଡ ଚାରିଟା ରୁଟି ପାଇକର ଲୁଚି ଏବଂ ପୁଡ଼ାଏ ଆଳୁଦମ୍ । ତାର ଦୋକାନର ପାନ୍ତୁଆ ଅପୂର୍ବ । ଆମେ କଲେଜ ଛାଡ଼ିଲା ବେଳକୁ ଆସିଲା ଗୁକୁରାଟି ଦୋକାନ, ଆଜି ଯେଉଁଠି ନେତାଜୀଙ୍କର ପ୍ରତିମୂର୍ତ୍ତି ଅଛି ତା'ରି ପାଖରେ । ଗାଣ୍ଠିଆ, ଚୁଡ଼ାଭଜା, ଶେଉ, ମହୀଶୂର ପାଗ ମିଠା, ଚଟନି ଏବଂ ଚାହା । ତାହାରି ଦୋକାନର ସରଞ୍ଜାମ ମତେ ଅଲରାଉଣ୍ଡର କରିଥିଲା । ଦୋକାନ ପାଖରେ ଛିଡ଼ା ହେଲେ ଦିଶିଯାଏ 'ଭୀମା' ଅଟାକଳ । ଗୋଟାଏ ବିରାଟ ଗାଈ, ଗାଈ ମାର୍କା ଅଟା ଏବଂ ବଡ ବଡ ଅକ୍ଷରରେ, "ଭିମା ବରଫ କଳ ।"



# ।। ବତିଶ ।।

ଆମର ବିଶ୍ୱାସ ଥିଲା କଲିକତା- କୁହ କି ଲଣ୍ଡନ କୁହ, କାହିଁ କେଉଁଠି ରେଭେନ୍‌ସା କଲେଜ ଭଳି କଲେଜ ନ ଥିବ। ଯିଏ ରେଭେନ୍‌ସା କଲେଜ ହଷ୍ଟେଲରେ ରହିଛି ଏବଂ ସେଠାକାର ଚାକର ପୂଜାରୀମାନଙ୍କର ଅନାବିଳ ସ୍ନେହ ଶ୍ରଦ୍ଧା ସହିତ ରାଜକୀୟ ଶନିବାରିଆ ରାତି ଭୋଜନ ନ ଖାଇଛି, "monthly feast" (ମାସର ଶେଷ ଶନିବାର ଭୋଜନ ବାଲସାହି ଭୋଜନ ନ ଖାଇଛି, ଷ୍ଟେସନର ବଡ ବଡ ଟ୍ରେନର ହୁଇସିଲ ଶବ୍ଦ ତଥା କାଠଯୋଡି ପୋଲର ରାତି ଅଧରେ ଆଗାମୀ ଟ୍ରେନର ବଜ୍ରନିର୍ଘୋଷ ଶବ୍ଦ ନ ଶୁଣିଛି, ପ୍ରଫେସରମାନଙ୍କର ଗତିବିଧି ଯେ ନ ଦେଖିଛି ନ ଜାଣିଛି, ସେମାନେ କ'ଣ ମଣିଷ ଥିଲେ ? ଯେ ମହାନଦୀ ପଠାର କୋଳି˚ନ ଖାଇଛି ବା ଲାଲଲାଲ ଫୁଲ ଫୁଟିଥିବା ଶିମୂଳି ଗଛ ନ ଦେଖିଛି, ମହାନଦୀ ଆନିକଟରେ ଛିଙ୍କାହୋଇ ନିର୍ମଳ ଛିଲ ଛିଲ କରୁଥିବା ପାଣି ଭଣ୍ଡାର ନ ଦେଖିଛି- ସେ ଜୀବନ ଉପଭୋଗକରିଛି ବୋଲି କହିହେବନି। ଆମେ ଆହୁରି କହୁ ଯେ, ସାଙ୍ଗସାଥି ମେଳରେ ହସିଖୁସି ସବୁ ଦୁଃଖଦୈନ୍ୟ ଭୁଲି ଦିନ ନ କଟାଇଛି, ସେ ଜୀବନର ବହୁତ ମୂଲ୍ୟବାନ ଚିଜ ହରାଇଛି। ରେଭେନ୍‌ସା କଲେଜ ଜୀବନ ସରିଗଲା ଅର୍ଥ- ମନୁଷ୍ୟ ଜୀବନ ସରିଗଲା ଅର୍ଥାତ, ଆଉ କିଛି ଉପଭୋଗ କରିବାକୁ ରହିଲା ନାହିଁ।

ପାଠ ପଢି ସାରିଲେ ଚାକିରି ଯେ ମିଳିବ ଏ ଆଶା କାହାରି ନଥାଏ । B.A. ପାଶ୍ ପରେ M.A. ପଢିବା ଯେ କିଛି ଦରକାର, ତା ନୁହେଁ। ଜୀବନର ଯେତିକି ଉପଭୋଗ କରିବାର ଥିଲା, ତା ହୁଏତ ସରିଗଲା। କିନ୍ତୁ ଇଂରାଜୀ ସାହିତ୍ୟର ମୋହ ମୋତେ M.A. ପଢିବାପାଇଁ ପ୍ରବର୍ତ୍ତାଇଲା। ଭାଗ୍ୟକୁ ମହାରାଜା ଦୁଇ ବର୍ଷ ପାଇଁ ମାସକୁ ୬୦ ଟଙ୍କା ଲେଖାଏଁ ବୃତ୍ତି ଦେଲେ। ତାହା ଛଡା, ସ୍ୱତନ୍ତ୍ର ଓଡିଶା ଗଠନ ହେବା ପରେ ପରେ ଏତେ ସହଜରେ ଗ୍ରାଜୁଏଟ୍‌ମାନଙ୍କୁ ଏତେ କିସମର ଚାକିରି ମିଳିଲା ଯେ, ଗ୍ରାଜୁଏଟ୍ ପ୍ରାୟ ଅଭାବ ପଡିଗଲେ। ଗୋପୀନାଥ ମହାନ୍ତି ଠାରୁ ଆରମ୍ଭ କରି I.A.S. ଗଣନାଥ ଦାସ ପର୍ଯ୍ୟନ୍ତ ୪୦ ଟଙ୍କିଆ କିରାନୀ ପଦରେ ଯୋଗଦେଲେ ଏବଂ କାଳକ୍ରମେ ସେମାନଙ୍କ ମଧ୍ୟରୁ କେହି କେହି I.A.S. ହୋଇ ଗଲେ। ଯେଉଁ ପିଲାକୁ ମୁଁ ଇଂରାଜୀ ପାଠରେ ସାହାଯ୍ୟ କରିନଥିଲେ ହୁଏତ ଫେଲ ହୋଇଥାନ୍ତା, ସିଏ ମଧ୍ୟ କାଳକ୍ରମେ I.A.S. ପାହ୍ୟାକୁ ଉନ୍ନୀତ ହେଲା।

ସ୍ୱାଭାବିକ ରୀତିରେ ମୁଁ ଇଂରାଜୀରେ M.A. ପଢିଲି। ରେଭେନ୍‌ସା କଲେଜରେ ସେତେବେଳେ ଏକମାତ୍ର M.A. subject ଥାଏ ଇଂରାଜୀରେ। ଅନ୍ୟ ଯେ କୌଣସି ବିଷୟରେ ସ୍ନାତକୋତ୍ତର ପାଠ ପଢିବାପାଇଁ ପାଟନା, ଏଲ୍ଲାବାଦ, କଲିକତା ଆଦି ଦୂର

ସ୍ଥାନମାନଙ୍କୁ ଯିବାକୁ ପଡୁଥିଲା। ଅତଏବ ଅଗତ୍ୟା ମୋତେ ରେଭେନ୍‌ସାର ଏବଂ ଇଂରାଜୀର ମୋହ ଏମିତି ଯାବୁଡ଼ି ଧରିଲା ଯେ, ମୁଁ ସେହି ଇଷ୍ଟ ହଷ୍ଟେଲରେ ପୁଣି ରହିଲି ଇଂରାଜୀ ପଢିବାପାଇଁ। ସେହି ଗିରିଜା ବାବୁ, କୃତିବାସ ବାବୁ, କେ.ପି. ସେନ, ସୁନ୍ଦରମ ଆଦି ଇଂରାଜୀ ପ୍ରଫେସରମାନଙ୍କ ପାଖରେ। ସମଗ୍ର ବିହାର-ଓଡ଼ିଶାରେ ଗୋଟିଏ ୟୁନିଭରସିଟି- ଯାହାର ନାମ ପାଟନା। ସମଗ୍ର ପାଟନା ୟୁନିଭରସିଟିରେ ଗୋଟିଏ ବିଷୟରେ M.A., ତାହା ହେଲା ଇଂରାଜୀରେ ଏବଂ ସମଗ୍ର ଇଂରାଜୀ କ୍ଲାସରେ ସେ ବର୍ଷ ଛାତ୍ର ହେଲା ଜଣେ ଏବଂ ସେ ହେଲି ମୁଁ। ସେ ବର୍ଷ ମୋ ପକ୍ଷରେ ଗୋଟିଏ ଗୌରବାବହ ବର୍ଷ। ମୁଁ ଥାଏ ଇଂରାଜୀ ସେମିନାର ସମ୍ପାଦକ; ଦର୍ଶନ ଶାସ୍ତ୍ର ସେମିନାର ସମ୍ପାଦକ; ରେଭେନ୍‌ସେଭିଆନର ସମ୍ପାଦକ ମଣ୍ଡଳୀର ସଭ୍ୟ; ଇଷ୍ଟ ହଷ୍ଟେଲ weekly ନାମକ ଲିଥକରା ମେଗାଜିନ୍‌ର ଯୁଗ୍ମ ସମ୍ପାଦକ, ମେସ୍ ସେକ୍ରେଟେରୀ, ଜେନେରାଲ ସେକ୍ରେଟେରୀ, ରେଭେନ୍‌ସା କଲେଜର ଭଲି ବଲ କ୍ୟାପ୍‌ଟେନ୍; ଇଂରାଜୀ ସେମିନାର ଲାଇବ୍ରେରୀ ସମ୍ପାଦକ, ଆଉ ଆହୁରି କେତେକଣ। ନାଟକରେ ମଧ୍ୟ ଉଭୟ ହଷ୍ଟେଲ ଏବଂ କଲେଜ ସହିତ ଜଡ଼ିତଥାଏ। ସେହି ବର୍ଷ ଯେତେବେଳେ ଇଂରାଜୀ ଅନାର୍ସରେ ଭଲ କୃତିତ୍ୱ ଦେଖାଇଲି, କଲେଜ କର୍ତ୍ତୃପକ୍ଷ ମୋତେ ଅଲ ରାଉଣ୍ଡ ପୁରସ୍କାର ପାଇବାପାଇଁ ଯୋଗ୍ୟ ବିବେଚିତକଲେ। ଯୁଗେ ଯୁଗେ ଏହି ପୁରସ୍କାରଟି Prestigious ବୋଲି ବିବେଚିତ ହୋଇଆସିଛି। ଏହି ପୁରସ୍କାରଟି ହେଉଛି "ରାୟ ବାହାଦୂର ଜାନକୀ ନାଥ ଶେଷ୍ଟ" ପୁରସ୍କାର, ମୂଲ୍ୟ ଦଶଟଙ୍କା ଆଠଣା। ବହି ଆକାରରେ ମିଳିବ। ଯେତେବେଳେ ନୂଆ ହୋଇ ଜବାହାରଲାଲ ନେହେରୁଙ୍କର 'Autobigraphy' ବଜାରକୁ ଆସିଥାଏ। ସେଇ ବହିର ରସିଦଟିଏ କଲେଜ ଅଫିସରେ ଦାଖଲ କଲି ଏବଂ ଦଶଟଙ୍କା ଆଠ'ଣା ଆଣି କଲେଜ ସାମନାରେ ରାଜାରାମ ଦୋକାନରେ ଦେଇ ଚଉଦଟଙ୍କା ଆଠଣାର ଗୋଟିଏ କଙ୍କଡ଼ା ମାର୍କା ଜର୍ମାନୀ ୩୦୦ ପାୱାର ପମ୍ପ ଲାଇଟ୍‌ଏ ଆଣିଲି। ପରେ ଅର୍ଥାଭାବ ଯୋଗୁଁ କେତେଦିନ ଯାଏ ଗାଁରେ ରାତିକୁ ଟଙ୍କାଏ ହିସାବରେ ଯାତ୍ରା, ତାମସା, ସଭା ସମିତିକୁ ଭଡ଼ା ମଧ୍ୟ ଦେଇଥିଲି। କିରାସିନଭର୍ତ୍ତି ହୋଇ ଏବେ ମଧ୍ୟ ସେହି ଲାଇଟ ମୋ ପାଖରେ ଅଛି ୫୫ ବର୍ଷ ହେଲା।

ଏହି all round ପୁରସ୍କାର ପାଇବା ସାଙ୍ଗକୁ ମୋତେ ସେହି ବର୍ଷ ଜୀବନର ଶ୍ରେଷ୍ଠ ପୁରସ୍କାର ତଥା ସମ୍ପତ୍ତି ମୋ ପାଖକୁ ଆସିଥିଲା। ସେ ହେଉଛି ମୋ ସ୍ତ୍ରୀ ଅନ୍ନପୂର୍ଣ୍ଣା। ଆଗରୁ କହିଛି ଯେ, ମୁଁ ବାଲ୍ୟ ବିବାହ କରିଥିଲି। ମୋର ୧୬ ବର୍ଷକୁ ତାର ୬ ବର୍ଷ। ସର୍ବାଙ୍ଗ ରୌପ୍ୟ ଅଳଙ୍କାର ପିନ୍ଧି ସେ ଆସିଥିଲା। ଅଳଙ୍କାରର ଓଜନ ହୁଏତ ହେବ ପ୍ରାୟ ୪୦-୫୦ ଭରି। ସେ ତତ୍‌କାଳର ବିଧିବିଧାନ ଅନୁସାରେ ଆଣିଥିଲା ୧୯ ଟି ଭାର

ଯଥା- ଦହିମାଛ, ଶିଳ ଏବଂ ଶିଳପୁତା, ମଞ୍ଜା ଏବଂ କଦଳୀ କାନ୍ଧି। ଏମିତି ୧୯ ଟି ଭାର ପିଣ୍ଡାରେ ବସିଥିବା ଲୋକଙ୍କୁ ଗଣିବାକୁ କଷ୍ଟ ହେଲା। ସୁଆରିରେ ଆସିଥିଲା। ମାତ୍ର ୧୦୦ ଗଜ ଦୂର ତା ଶ୍ୱଶୁର ଘର।

ସସମ୍ମାନରେ ପତ୍ନୀକୁ କେମିତି ଆଣିବି, ସେଟା ମୋର ଦାୟିତ୍ୱ। ରେଭେନ୍‌ସା କଲେଜରେ ଧୋବା ସଫା କରିଥିବା ଯେଉଁ ବିଛଣା ଚାଦରଟି, ତାକୁଇ ମୁଁ ନିଜେ ପାରି ଦେଇଥିଲି। ସୁଆରିରେ ବହୂକୁ ଘରକୁ ନେଇଯିବା ପରେ ସେ ଚାଦରଟିକୁ ମୁଁ ଦେଖିଲି। ଅଳତା ଲଗେଇବା ପରେ ପରେ ବହୂଟି ସୁଆରିରୁ ଓହ୍ଲାଇ ଥିବାରୁ ଯେଉଁ ଯୋଡିଏ ପାଦ ଚିହ୍ନ ସେ ଧଳା ଚାଦରରେ ଲାଗି ରହିଥିଲା, ତାହା ମୋତେ ଲକ୍ଷ୍ମୀପାଦ ପରି ଦିଶିଲା। ଅନେକ ଦିନ ସେ ଚାଦରଟିକୁ ମୁଁ ନ ଧୋଇ ରଖିଲି। ମଧୁଶଯ୍ୟା ନିଜେ ସଜେଇଥିଲି। ଏସବୁ କାବ୍ୟିକତା କଲେଜ ପଢୁଆ ପୁଅକୁ ସିନା ମାଲୁମ ଥିଲା। ଯାହା ହେଉ, ମୋର ଏତେ ପ୍ରସ୍ତୁତି ଏବଂ ପରିଶ୍ରମ ବୃଥାଗଲା। କାରଣ ସାରା ରାତି ପ୍ରଦୀପ ଜାଳି ଅନିଦ୍ରାରହି ପଦେ କଥା ମଧ୍ୟ ପତ୍ନୀ ମୁହଁରୁ ଶୁଣିପାରିଲି ନାହିଁ। କାରଣ "କିଜି ମନା କରିଛି ତୁମ ସାଙ୍ଗରେ କଥାବାର୍ତ୍ତା ହେବାପାଇଁ ପ୍ରଥମ ରାତିରେ"। ବହୁ କଷ୍ଟରେ ସଞ୍ଚୟ କରି ରଖିଥିବା ପଞ୍ଚମ ଜର୍ଜ ଟଙ୍କାଟିକୁ ତା ହାତରେ ଗୁଞ୍ଜିଦେଲାରୁ ସେ କହିଲା- "କାଲିକୁ କଥା ହେବା।" ଏହି ହେଲା ମୋର ମଧୁଶଯ୍ୟା ରାତ୍ରିର କଥା।

ଯଥା ସମୟରେ M.A. ପରୀକ୍ଷା ହେଲା। ବର୍ଷ ସାରା ମୁଁ ଭଲ ଭାବରେ ପଢାପଢି କରି ନାହିଁ। ପ୍ରାୟ ଦୁଇ ହଜାର ବହି ଥିବା ସେମିନାର ଲାଇବ୍ରେରୀର ଚାବିକାଠି ମୋଠି। କିନ୍ତୁ ପଢାପଢି ପ୍ରାୟ ନାସ୍ତି। ଯେବେ ଘରକଥା ମନେପଡେ, ଟ୍ରେନରେ ସିଧା ଘରକୁ ଚାଲିଯାଏ। ଯାହା ହେଉ, ପରୀକ୍ଷାରେ ନାନା ସନ୍ଦେହ ଓ ଆଶଙ୍କା ସତ୍ତ୍ୱେ 2nd classରେ ପାଶକଲି। Third class ପାଇବା ଅର୍ଥ ଜୀବନ୍ତ ମୃତ୍ୟୁ ହୋଇଥାନ୍ତା। ୧୦୦ ନମ୍ବର ଥିବା ଯେଉଁ ପ୍ରବନ୍ଧଟି ମୁଁ ଏମ୍.ଏ. 6th paperରେ ଲେଖିଥିଲି- ସେଇଟି ହେଲା, "Our sweetest songs are those that tell of saddest thoughts" । ସେତେବେଳେକୁ ମୋର ଘରର ଅବସ୍ଥା ଏକା ବେଳକେ ଅଚଳ। ଯେଉଁ ବୃତ୍ତି ଟଙ୍କା ମୋତେ ମିଳୁଥିଲା, ତହିଁରୁ କିଛି ଅଂଶ ମୁଁ ମୋର ସାନ ଭାଇକୁ ସାହାଯ୍ୟକରି ମେଦିନିପୁର କଲେଜରେ ପଢାଉଥିଲି । ମୋର M.A.ସଙ୍ଗେ, ସେ ବି I.A. ପାଶକରିଗଲା। ସବା ସାନଭାଇର ପଢାପଢି ହୋଇପାରିଲା ନାହିଁ। ସେ ଅପର ପ୍ରାଇମେରୀରେ ରହିଗଲା। ଆମ ଚାଷରେ ଧାନ ବର୍ଷକୁ ଯେତିକି ହୁଏ, ତାର ଦୁଇଗୁଣ ଆମର କରଜହେଲା। ସେତେବେଳକୁ ଆମେ ପ୍ରାୟ ନିଃସ୍ୱ। ଦିନେ ନିୟୋଗୀ ସାହେବ କଟକ ଯାଇଥିଲାବେଳେ

ମୋତେ ଡକେଇ ପଠେଇଥିଲେ ଭୁବନାନନ୍ଦ ଦାସଙ୍କ ଘରକୁ। ଶ୍ରୀଯୁକ୍ତ ଦାସ ହେଉଛନ୍ତି ତାଙ୍କ ବନ୍ଧୁ। ସେଇଠି ମୋର ଚାକିରି ବିଷୟରେ କଥାବାର୍ତ୍ତା ହେଲା। ମୁଁ ଦରଖାସ୍ତ କରିଥିଲି ସ୍କୁଲ ଇନସ୍‌ପେକ୍‌ଟରପାଇଁ। କାରଣ ତା ଠୁ ବଡ ଚାକିରୀ ପାଇବି ବୋଲି ଜୀବନରେ ଭାବିନଥିଲି। ମୋର ଦରଖାସ୍ତଟି ପଡି ନିଯୋଗୀ ମନ୍ତବ୍ୟ ଦେଇଥିଲେ 'ଛେଲେଟା ambitious ନୟ।' ଯାହାହେଉ, ପାସ୍ ପରେ ସେ ମୋତେ ବାରିପଦା ହାଇସ୍କୁଲର ତତ୍‌କାଳୀନ ହେଡମାଷ୍ଟର ରାଜେନ୍ଦ୍ରନାଥ ଦତ୍ତଙ୍କୁ ଦେଖାକରିବାପାଇଁ କହିଲେ। କଣ ଗୋଟାଏ ସମ୍ବଳ ମିଳିବା ଆଶାରେ ମୁଁ ରହିଲି।

ଆମେ ୩ ଜଣ ସାଙ୍ଗ ଅସୀମ ପାଲିତ, ବଙ୍ଗାଳୀ; ମହମ୍ମଦ ରଫିକ୍, ମୁସଲମାନ; ଏବଂ ମୁଁ ହିନ୍ଦୁ ବ୍ରାହ୍ମଣ; ଆମେ ତିନି କେବେ କ୍ଲାସରେ ଏକତ୍ର ବସିନୁ। କେତେଦିନ ଭିତରେ ରଫିକ୍ ଏକ୍‌ସାଇଜ ସବ୍‌ଇନିସ୍‌ପେକ୍‌ଟର ହୋଇଗଲା ୪୦ ଟଙ୍କା ଦରମାରେ। ପଢିବା ପାଇଁ ହେବ ବୋଲି ମୁଁ ପଢୁଥାଏ। M.A. ପାସ୍ କରିବାକୁ ପଡିବ। ପୁଣି ୫୦ ପରସେଣ୍ଟ ମାର୍କ ରଖି second class ପାଇବାକୁ ପଡିବ। ରହିବାପାଇଁ ସ୍ଥାନ ମିଳିଲା ମହମିଡାନ ହଷ୍ଟେଲରେ।

ଆମ ଏମ୍.ଏ. ପରୀକ୍ଷା ବେଳକୁ ବୋର୍ଡିଂ ବନ୍ଦହୋଇଯାଇଥାଏ। ପ୍ରିନିସିପାଲ ମହାମିଡାନ ହଷ୍ଟେଲରେ (ପରେ ଲେଡିଜ ହଷ୍ଟେଲ)। ଅସୀମ ପାଲିତ ତାର ସ୍ୱାସ୍ଥ୍ୟ ବିଷୟରେ ଆଗ୍ରହୀ। ଅନ୍ୟଜଣକ ଓଡିଶାରେ ୧୦୦ରୁ ଜଣେ ମାତ୍ର ପଠାଣ ପିଲା ହୋଇଥିବାରୁ ଚାକିରୀ ପାଇବାକୁ ଆଗ୍ରହୀ।

ଦିନେ ମୁଁ ହୋଟେଲରେ ମାଂସଭାତ ଖାଇଲି। ଝୋଳ ଲାଲ ଦିଶୁଥିଲା। ଯେଉଁ ଖଣ୍ଡିଏ ମାଂସ ଥିଲା ସେଇଟା କେଉଁ ଜୀବର ମାଂସ ମୁଁ ଠିକଣା କରିପାରିଲିନି। ଭୋକର ଜ୍ୱାଳାରେ ଖାଇଦେଲି। ପେଟ ଦିନେ କି ଦୁଇଦିନ ଭୀଷଣ ଗୋଳମାଳହେଲା। ପାଲିତ କହିଦେଲା ସେଇଟା ଗୋରୁମାଂସ। ପାଖାପାଖି ଖଟରେ ଶୋଇଥାଉ। ତା' ପେଟରେ ଚର୍ବିଥାଏ। ମୋର ନ ଥାଏ। ଡାହାଣ ପାଖ ପେଟଟା ଟିକେ ମୋର ଫୁଲିଥାଏ। ତହିଁରେ ଚିପାଚିପି କରି ଅସୀମ ଦେଖାଇ ଦେଲା ଯେ, ସେଇଟା ଗୋଟାଏ ରୋଗ। ଆଉ ସେ ବାଜେ ମାଂସ ଖାଇବାରୁହିଁ ସେହି ରୋଗ ହେଲା। ତାପରେ ଏତେ ମାନସିକ ଦୁଃଶ୍ଚିନ୍ତା ହେଲା ଯେ ସେଇଟା ପ୍ରକୃତରେ ରୋଗ ଆଡକୁ ଚାଲିଗଲା। ଭୋକ କମିଗଲା, ପେଟ ଗର୍ଗ, ଫଟ୍ ଫାଟ୍ ହେଲା। ଶେଷରେ ଭୋକ ମରିଗଲା। ଏମ୍.ଏ. ପରୀକ୍ଷା ବେଳକୁ ହଷ୍ଟେଲ ଖୋଲିଗଲା। ଯେଉଁ ପୂଜାହାରୀମାନେ ମୋତେ ଦିବ୍ୟ ଭୋଜନ ଦେଉଥିଲେ, ସେମାନେ ଗୁଡାଏ ପୋଟଳ ଚିପୁଡି ତାହାରି ପାଣି ମୋନ୍ଦ ପିଇବାକୁ-ଦେଲେ। ସେହି ପାଣି ଗିଲାସେ

ପିଇ ମୁଁ ଗଲି ପରୀକ୍ଷା ଦେବାକୁ । ବହୁତ ଦିନଧରି ପେଟର ରୋଗ ରହିଲା । ପରେ ତାହା ହୁକ୍‌ୱାର୍ମ ବୋଲି ଜଣାପଡ଼ିଲା ।

ସେତେବେଳେର ଅନ୍ୟ ଆକର୍ଷଣ ହେଲା, ଗୋଟିଏ ବୋଟ୍ । ଯାହା କଲେଜର ବୋଟିଙ୍ଗ-କ୍ଲବ ତରଫରୁ କିଣାହୋଇଥାଏ । ପ୍ରିୟ୍ ନାଥ ନନ୍ଦି, ଅସିମ ପାଲିତ ଓ ମୁଁ- ସେ ଭଙ୍ଗାକୁ ସଞ୍ଜ ବେଳେ ଜହ୍ନ ରାତିରେ ଆହୁଲା ସହିତ ମହାନଦୀ ଆନିକଟ ଆଡକୁ ତାଳଦଣ୍ଡା କେନାଲ ପଟ ଦେଇ ବାହାରିଯାଉ । ସେଠୁ ଫେରି ଆସୁ ରେଲ ଲାଇନ୍ ପୋଲ ପର୍ଯ୍ୟନ୍ତ । ଭାରି ମଉଜଲାଗେ । ଆଉଦିନେ ସେହି ବୋଟ୍‌ରେ ଆନିକଟ ଉପରକୁ ମହାନଦୀରେ ଏକ ସ୍ମରଣୀୟ୍ ନୌକାବିହାର କରିଥିଲୁ । ଅତି ବେଶି ମଉଜ କରୁକରୁ ଦିନେ ସେ ବୋଟ୍‌ଟି କେନାଲରେ ବୁଡିଗଲା ଏବଂ ବେକେ ପାଣି ଥିବା କେନାଲରେ ତଳକୁ ତଳକୁ ଚାଲିଲା । ଆମେ ତାକୁ ଉଠେଇ ପାରିଲୁ ନାହିଁ । ଚୋର ପରି hostel କୁ ଫେରିଲୁ । ବୋଟ୍‌ର କ'ଣ ହେଲା ଆମେ ଆଉ ବୁଝିନୁ କି ଜାଣିନୁ ।

ଆହୁରି ମନେପଡୁଛି- ସେହି ସମୟ୍ର ମୋର ଏକ ଅପରେସନ କଥା । ସେତେବେଳେ ଏସେମ୍ବ୍ଲି ଘରକୁ ଲାଗି କୋଠରୀଟିଏ । କଲେଜର ଡାକ୍ତରଖାନା ରୂପେ ବ୍ୟବହୃତ ହେଉ ଥାଏ । ଡାକ୍ତର ଥା'ନ୍ତି । ପ୍ରତିପିଲାଙ୍କୁ ଏଡମିସନ ସହିତ ପରୀକ୍ଷା କରାଯାଏ । ପରୀକ୍ଷା ରିପୋର୍ଟ ଗାର୍ଡିଆନ ପାଖକୁ ପଠାଯାଏ । ଯଦି ରୋଗ ବୈରାଗ୍ୟ ଥାଏ, ତାର ଆରୋଗ୍ୟପାଇଁ ଚିକିତ୍ସା ଓ ଔଷଧ ବ୍ୟବସ୍ଥାକରାଯାଏ । କଲେଜ ହଷ୍ଟେଲରେ ଯେଉଁ ରାଜକୀୟ୍ ବାଦ୍‌ସାହି ଖାନା; ଯେଉଁ ସୁନିର୍ମଳ ପରିବେଶ; ସେଥିରେ ଦେହ କମ୍ ଖରାପ ହୁଏ । Sick-room ଖାଲି ପଡିଥାଏ । ବାପା ଜେଜେବାପା ଅମଳରେ ମଶାରି ବୋଲି ଗୋଟାଏ ଚିଜ କାହାକୁ ଜଣାନଥିଲା । ରେଭେନ୍‌ସାରେ କେବଳ ଆମେ ଜାଣିଲୁ ମଶାରି କ'ଣ ? କାରଣ, ସେଠାରେ ମଶାର ଦୌରାତ୍ମ୍ୟ ବହୁତ ଥିଲା । ତିନିଦିନ ବିନା ମଶାରିରେ ଶୋଇବା ପରେ ଦେହହାତ ଫୁଲିଗଲା । ଜଣାଗଲା, ଯେମିତି ସର୍ବାଙ୍ଗ ଫାଇଲେରିଯ୍ା ହୋଇଯାଇଛି । ଅଡେଇ ଟଙ୍କା ଦେଇ ଯେଉଁ କାଲି ମଶାରିଟି କିଣିଥିଲି ତାହା କଲେଜ ପାଠ ଶେଷ ପର୍ଯ୍ୟନ୍ତ ମୋର ଅମୂଲ୍ୟ ସମ୍ପତ୍ତି ହୋଇ ରହିଥିଲା । ସେତେବେଳେ ସ୍କାଣ୍ଡିନେଭିଆରୁ (ନରୱେ, ସ୍ୱିଡେନରୁ) ମାଗଣାରେ ଆସୁଥିବା କଡ୍‌ଲିଭାର, ଅଏଲ ବିଲାତି ବାଇଗଣ ରସରେ ମିଶାଇ ପ୍ରତି ପିଲାଙ୍କୁ ଦିଆଯାଉଥିଲା । ସ୍ୱାସ୍ଥ୍ୟପାଇଁ gymnasiumରେ ଡାମ୍ବେଲ, ରିଙ୍ଗ, ମୁଦ୍‌ଗର ସକାଳ କ୍ଲାସପାଇଁ ମହକୁଦ୍ ଥାଏ । ଅଳ୍ପ ଛାତ୍ର ଥିଲେବି ଯାହା ଯେତିକି ସୁବିଧା ମିଳିବା କଥା ସବୁ ମିଳି ପାରୁଥିଲା । ପ୍ରିନିସ୍‌ପାଲ W.V. Duke ମୋର ସ୍ୱାସ୍ଥ୍ୟ ସମ୍ପର୍କରେ କି ରିପୋର୍ଟ ପଠାଇଲେ କେଜାଣି । ଗାଁ ସାରା

ହୁଲସ୍ଥୁଲ। ବସନ୍ତ ରୋଗ ହୋଇଛି। ମୋ ଶ୍ୱଶୁର କଲେଜରେ ପଢୁଥିବା ତାଙ୍କ ଭାଇ ପାଖକୁ ସେଇ ମର୍ମରେ ଏକ ଚିଠି ଦେଲେ। ମୁଁ ଏକା ବେଳକେ ବିବ୍ରତ। କିଏ ମୋ ନାମରେ ବେନାମି ଚିଠି ଦେଇଛି। ସେଥିପାଇଁ ମୁଁ ଉତ୍ୟକ୍ତ ହୋଇଗଲି।

ପୂଜା ଛୁଟିରେ ଗାଁକୁ ଯାଇ ପ୍ରିନିସ୍‌ପାଲଙ୍କ ରିପୋର୍ଟ ଦେଖିଲି। ଲେଖାଥିଲା A little swelling on the left side of the testis, advised operation। ଏ ଅପରେସନ କଥାଟା ଦରକାର ପଡ଼ିଲା। କାରଣ ଆଲଙ୍ଗିର ବା ଆଉରଙ୍ଗଜେବ୍ ଥିଏଟର ସମୟରେ କଲିକତାରୁ ଯେଉଁ ଡ୍ରେସର ପେଣ୍ଟର ଆସିଥାନ୍ତି, ସେମାନେ ମୋତେ ଥରକୁ ଥର ସକବାକ କରିବାକୁ ନାରାଜ ହେଲେ। ମୋତେ ବି ଖୁବ୍ ଲଜ୍ଜା ଲାଗୁଥାଏ। ଯେମିତି ଥିଏଟର ପାଲା ସରିଛି, ମୁଁ ସିଧା ମେଡିକାଲ ସ୍କୁଲ ହସ୍‌ପିଟାଲକୁ ଚାଲିଲି ଏବଂ Admission ନେଲି ଜଣେ ଦିକଣ ସାଙ୍ଗସାଥିଙ୍କ ଉପଦେଶରେ। ଗୋଟିଏ ମାତ୍ର ସରକିକେଲ ୱାର୍ଡ୍। ପ୍ରାୟ ୧୬ ଟି ସିଟ୍ ସାରା ଓଡ଼ିଶାରେ। ସେଇଟି ବଡ଼ ଡାକ୍ତରଖାନା। ସେଇ ଛୋଟିଆ ଅନୁଷ୍ଠାନଟିର ସମ୍ମାନ ସେତେବେଳେ ଖୁବ୍ ବଢ଼ିଯାଇଥାଏ। କାରଣ ପାଟନା ହାଇକୋର୍ଟର ତତ୍‌କାଳୀନ ଚିଫ୍ ଜଷ୍ଟିସ ସାର୍ କୁଟ୍‌ନି ଟେରେଲ କଟକ ଗସ୍ତରେ ଆସି ଏପେଣ୍ଡିସାଇଟିସ୍ ରୋଗରେ ଆକ୍ରାନ୍ତହେଲେ। ସେତେବେଳେ ଏପେଣ୍ଡିସାଇଟିସ୍ ଅପରେସନ ଏତେ ବିପଦଜନକ, ଏତେ ମାରାତ୍ମକ ଯେ ସାର୍ କୁଟନ୍‌ୀ ଭଲହେବା ପରେ ଭାରତର ସବୁ ପତ୍ର ପତ୍ରିକାରେ ସେଇ ଅପରେସନ କଥା ପ୍ରଚାରିତହେଲା। ସାର୍ କୁଟନ୍‌ୀଙ୍କ ପରେ ଆମର କେମିଷ୍ଟ୍ରି ପ୍ରଫେସର ଗୁରୁଚରଣ ମହାନ୍ତି ମଧ୍ୟ ସେହି ରୋଗରେ ଆକ୍ରାନ୍ତହୋଇ ସେଇ ଛୋଟିଆ ଡାକ୍ତରଖାନାରୁ ଆରୋଗ୍ୟ ଲାଭକଲେ। ସେତିକିବେଳେ ମୁଁ admission ନେଲି। ସେ କାଳରେ ଚିକିତ୍ସା ପଦ୍ଧତି ଏମିତି ନିମ୍ନ ମାନର ଯେ, ମୋତେ ୬ ଦିନ ରହିବାପାଇଁ ପଡ଼ିଲା। କାରଣ ସେଇ ଯୋରିଷ ପ୍ରମାଣ ଫୁରୁକୁଣିଟିକୁ କୌଣସି ଔଷଧରେ ଭଲକରି ହେଲାନି। ସବା ଶେଷରେ ଅସଲି ପଞ୍ଚଗୁଣା ତୈଳ ସାହାଯ୍ୟ ନେଇ ଆରୋଗ୍ୟ ଲାଭକଲି। କିନ୍ତୁ hydrocele ଅପରେସନପାଇଁ ମୋତେ ଆହୁରୁ ୬ ଦିନ ଅପେକ୍ଷା କରିବାକୁ ପଡ଼ିଲା। କାରଣ ଗୋଟାଏ ପ୍ରଚଣ୍ଡ ତୁଫାନ ଆସି କଟକ ସହରକୁ ଛାରଖାର ଓ ଧ୍ୱସ୍ତବିଧ୍ୱସ୍ତ କରିଦେଲା। ଏପରିକି ଆମ ୱାର୍ଡର ପଛପଟ ପାଣି ଟାଙ୍କିଟା ତଳେ ଭୂଷୁଡ଼ିପଡ଼ିଲା। ପାଣି ନାହିଁ, କି ଆଲୁଅ ନାହିଁ। ସେହିଦିନ ମୁଁ ଦେଖିଲି, ଡାକ୍ତରଖାନା ସୁପରିଟେଣ୍ଡେଣ୍ଟ ଅନୀଲ ସାହେବଙ୍କୁ। କେତେ ଆତ୍ମୀୟତାରେ ଭରପୂର ସେ ଡାକ୍ତରଟି। ତାଙ୍କ ଆଖିଗୁଡ଼ାକ ନୀଳ, ଅନୁକମ୍ପାରେ ଭରପୂର। ରୋଗୀମାନଙ୍କର ସେବା ଓ ଉପକାରପାଇଁ ସେ ଯେତେ ବ୍ୟସ୍ତ ଓ ବ୍ୟାକୁଳ; ରୋଗୀମାନଙ୍କର ଆତ୍ମୀୟମାନେ ସେତେ ନୁହଁନ୍ତି। ତୋଫାନର ଏତେ ଜୋର

ଯେ, ଆମେ ଆଠ ଜଣ ହୋଇ ଗୋଟିଏ ଗୋଟିଏ କବାଟ ବନ୍ଦକରି ରଖି ପାରିଲୁ ନାହିଁ। ସାରା କଟକରେ ଯେତେ ଲଣ୍ଠନ ଥିଲା। ସବୁ ଅନୀଲ ସାହେବ ମଗେଇ ଆଣିଲେ ଦୁଇ ଦିନ ଭିତରେ। ଡାକ୍ତରଖାନା ପ୍ରାୟ ସାଧାରଣ ସ୍ୱଭାବିକ ହୋଇଗଲା। ଦିନରାତି ସାହେବଙ୍କୁ ନିଦ ନାହିଁ। ଅପରେସନ ବେଳେ ମୋର ଦିକଣ ସାଙ୍ଗ ଥିଲେ। ଜଣେ ଭିକ୍ଷୁକ ଶ୍ରେଣୀର। ତାର ସେବା ଶୁଶ୍ରୁଷା ଫଳରେ ମେକିକ୍ ପରି ମୋତେ ସେ ଭଲକଲା। ଆଉ ଜଣେ ଥିଲା ମୁସଲମାନ। ତାର ରୋଗ ଦୁରାରୋଗ୍ୟ ବୋଲି ସେ ନିଜେ ଓ ଆମେ ସମସ୍ତେ ଭାବିଥିଲୁ। କିନ୍ତୁ ଆଲ୍ଲାଙ୍କ କୃପାରୁ ତାର ପ୍ରାୟ ମହଣେ ଓଜନର ଟିଉମର ଅପରେସନରେ ଭଲହୋଇଗଲା ଏବଂ ଆଶ୍ଚର୍ଯ୍ୟ କଥା ଯେ, ପରେ ସେ ମୁସଲମାନ ଭାଇ ଦିନେ ମୋପାଇଁ ଗୁଡାଏ ଖଣ୍ଡା ନେଇ ହଷ୍ଟେଲକୁ ଆସିଥିଲା। ମୁଁ ଦିନେ ହସପିଟାଲ ବେଡ୍‌ରେ ଶୋଇଥାଏ। ସୁପିରିଟେଣ୍ଡେଣ୍ଟ ଅନୀଲ ସାହେବ ଆସିଲେ, ଡାକ୍ତର କାଶୀ ବାବୁଙ୍କୁ ପଚାରିଲେ ମୋର ରୋଗ କ'ଣ ? କାଶୀ ବାବୁ କିଛି ଉତ୍ତର ଦେଉ ନ ଦେଉଣୁ ଅନୀଲ ସାହେବ A very small thing ମନ୍ତବ୍ୟଦେଇ ଚାଲିଗଲେ।

ତରବର ହୋଇ ମୁଁ ରେଭେନ୍‌ସା କଲେଜ ଛାଡ଼ିଲି। ସାଙ୍ଗପିଲାମାନେ ମୋତେ ବିଦାୟଦେବାପାଇଁ ଷ୍ଟେସନକୁ ଆସିଥିଲେ। ବଡ କରୁଣ ସେ ଦୃଶ୍ୟ। ଆଉ କେବେ ରେଭେନ୍‌ସାକୁ ଆସିବି ନାହିଁ ବୋଲି ମୋତେ ଖୁବ୍ ଦୁଃଖ ଲାଗିଲା। ମୁଁ ବର୍ଷ ବର୍ଷ ଧରି ରେଭେନ୍‌ସା ଆଉ ଯାଇନାହିଁ। ଦିନେ ଯାଇଥିଲି ପୂର୍ବତନ ଏସେମ୍ବଲି ହଲକୁ। ସେହି ହଲର କାନ୍ଥଗୁଡାକୁ ଚାହିଁ ଦେଖିଲି- ଖାଲି ଦୋଅକ୍ଷରି ଶବ୍ଦ ଓ ବାକ୍ୟ। ଏବେବି କେବେ ପାଖ ଦେଇଗଲେ, ମୋତେ ବାରଣ୍ଡାକୁ ଉଠିବାକୁ ଇଚ୍ଛାହୁଏ ନାହିଁ, କାରଣ ମୁଁ ଭାବେ ବିରାଟ ଐତିହାସିକପୂର୍ଣ୍ଣ ପ୍ରାସାଦରେ ପାଦ ଦେବାପାଇଁ ଯାଉଛି। ମୋତେ ଲାଗେ ତାଭିତରୁ ମୋର ପୂଜ୍ୟ ଗୁରୁଦେବମାନେ କାଳେ ବାହାରି ଆସି ମୋତେ ଭର୍ତ୍ସନାକରିବେ- "ତୁ କାହିଁକି ଏଠାକୁ ଆସିଲୁ ?"

ମେଟ୍ରିକୁଲେସନ ପଢୁଥିବା ସମୟରେ ଆମ ଦୁନିଆ ଏକା ବେଳକେ ରାଜନୀତି ବିମୁକ୍ତ; ବନ୍ଦ ନାହିଁ, ଷ୍ଟ୍ରାଇକ୍ ନାହିଁ। ମେଳ କି ମେଣ୍ଟ, ଏସବୁ କିଛି ନାହିଁ। ପାଠ ପଢ, ପରୀକ୍ଷା ଦିଅ, ପାଶ୍ କର, ୨୦ ଟଙ୍କିଆ ଚାକିରୀ କର ଏବଂ ଦୁନିଆର ବଡ ମଣିଷ ହୁଅ। ମୟୁରଭଞ୍ଜ ବାହାରେ ଯିମିତି ଆଉ ଦୁନିଆ ନାହିଁ। "ଏହି ମୋର ଭଞ୍ଜଭୂମି, ମୋର ମୟୁରଭଞ୍ଜ ଓ ମହାରାଜା; ଜନ୍ମେ ଜନ୍ମେ କରୁଥିବି ମୁଁ ଏଦୁହିଁଙ୍କୁ ପୂଜା।" ସାରା ମୟୁରଭଞ୍ଜରେ ଯେଉଁ ସ୍କୁଲକୁ ଯିବ ଏ ଗୀତ। ଓଡିଶା କହିଲେ ଯେଉଁ ମେପ୍ ଆଙ୍କୁଥିଲୁ, ତାହା ଭିତରେ ମୟୁରଭଞ୍ଜକୁ ଲାଗି ବାଲେଶ୍ୱର, କଟକ, ପୁରୀ ଜିଲ୍ଲା ପଶ୍ଚିମ ପାଖରେ

ସମ୍ବଲପୁର ମଝିରେ ଅନୁଗୁଳ। ଏଗୁଡ଼ିକ କେବଳ ଲାଲି ରଙ୍ଗରେ ମେପ୍‌ରେ ଦେଖାଯାଇ ଥାଏ। ମୟୂରଭଞ୍ଜ ସମେତ ଅଠର ଗଡଜାତ ହଳଦିଆ ରଙ୍ଗ। ଭାରତ ବର୍ଷରେ ଗାନ୍ଧୀ, ଜବାହରଲାଲଙ୍କ କଥା ଆମେ ହାବାଗୁ ଜାଣିପାରୁ। ଖବର କାଗଜତ ନାହିଁ। ଏହି ଏମିତି ଗୋଟାଏ ଦେଶ, ପାଠକ ଆଜିକାଲି କେହି କଳ୍ପନା କରିପାରିବ ନାହିଁ। ପିଲାଙ୍କ କାମ କେବଳ ପାଠପଢିବା। ଯେ ପାଠ ନ ପଢିଲା, ସେ ବିନା କାମରେ ଘୂରି ବୁଲିଲା ବା ଘରେ ରହି କୌଳିକ କାମ ବା ବ୍ୟବସାୟ କରିବାରେ ବ୍ୟସ୍ତରହିଲା। ଏକତା, ସଂହତି, ସାମ୍ପ୍ରଦାୟିକତା, ଆଦିବାସୀ, ହରିଜନ, ଏସବୁ ଶବ୍ଦ ପ୍ରାୟ ଶୁଣାଯାଉ ନଥିଲା। ଇଏ ବି ଗୋଟାଏ ପ୍ରକାର ରାମରାଜ୍ୟ କୁହାଯାଇପାରେ। ମଝିରେ ମଝିରେ ମୟୂରଭଞ୍ଜକୁ ଗୋପବନ୍ଧୁ, ମଧୁସୂଦନ, ଆଦି ନେତା ଆସୁଥିଲେ, ମାତ୍ର ମୟୂରଭଞ୍ଜରେ ସେମାନଙ୍କର ପ୍ରଭାବ ସୀମିତ ଥିଲା। ସେମାନଙ୍କ ଭିତରୁ କିଏ ମୟୂରଭଞ୍ଜରେ ଚାକିରି କରୁଥିଲା, ଆଉ କିଏ ବା ମହାରାଜାଙ୍କୁ ରାଜ୍ୟ ଶାସନ ବିଷୟରେ ଉପଦେଶ ଦେଉଥିଲା। ବନ୍ୟା, ଦୁର୍ଭିକ୍ଷ, ସ୍କୁଲ, କଲେଜ ରାସ୍ତାଘାଟପାଇଁ କିଛି ଅର୍ଥ ଭିକ୍ଷାକରୁଥିଲା। ମୟୂରଭଞ୍ଜ ଥିଲା ଏକ ସ୍ୱତନ୍ତ୍ର ସାର୍ବଭୌମ ରାଷ୍ଟ୍ର। ଏସବୁ ସତ୍ତ୍ୱେ ମହାତ୍ମାଗାନ୍ଧୀଙ୍କର ମେଜିକ୍ ଶକ୍ତି ଗଗନ ପବନ ପାଣି ପବନରେ ଖେଳିଯାଇଥିଲା ଏବଂ ବିଭିନ୍ନ ଉପାୟରେ ଆଗାମୀ ସ୍ୱାଧୀନ ଯୁଗର ସୂଚନା ଦେଉଥିଲା। ବିନା ପ୍ରଚାରରେ ଲୋକେ ମୁକ୍ତିଚାହୁଁଥିଲେ।

ଆଗରୁ କୁହାହୋଇଛି, ଫ୍ରେଜାର ହଷ୍ଟେଲରେ 'ଜାଗରଣ' ବୋଲି ହାତଲେଖା ପତ୍ରିକାଟିଏ ବାହାରୁଥିଲା, ଯିହିଁରେ ତ୍ରିପାଠୀ ସାହେବ, ପରମାନନ୍ଦ ଆଚାର୍ଯ୍ୟ, ମହେଶ୍ୱର ନାଏକ, ନୀଳମଣି ସେନାପତି ଆଦି ବଡ ବଡ ଲୋକଙ୍କର ଲେଖା ବାହାରୁଥିଲା। ସେହି ପତ୍ରିକାର ସମ୍ପାଦନା ଦାୟିତ୍ୱ ନବମ ଶ୍ରେଣୀରେ ପଢୁଥିଲା ବେଳେ ମୋ ଉପରେ ନ୍ୟସ୍ତ ଥିଲା। 'ଜନ୍ମାଷ୍ଟମୀ' ବୋଲି ମୋରି କବିତା ପ୍ରଥମ ପୃଷ୍ଠାରେ ସ୍ଥାନ ପାଇଥିଲା। ଗଣେଶ ପୂଜା ଦିନ ପତ୍ରିକାଟି ପ୍ରକାଶିତ ହୋଇଥିଲା। ପରଦିନ ମୟୂରଭଞ୍ଜର ତତ୍‌କାଳୀନ S.P. ଆସି Hostelରେ ହାଜରହୋଇ କହିଲେ- ସେ କବିତାଟିକୁ ମାଗାଜିନରୁ ଚିରି ଫୋପାଡି ଦେବାପାଇଁ। ସେଇଟା ଦେଶଦ୍ରୋହୀ କବିତା। ସେ କବିତାରେ ମୁଁ ଭଗବାନ ଶ୍ରୀକୃଷ୍ଣଙ୍କୁ ପ୍ରାର୍ଥନା କରିଥିଲି, ଭାରତବର୍ଷରେ ପୁନର୍ବାର ଅବତୀର୍ଣ୍ଣ ହୋଇ ଲମ୍ବା ଲମ୍ବା ପାଦ ପକାଇ ଦେଶରେ ବୁଲୁଥିବା କଂସକୁ ଯିମିତି ବଧ କରନ୍ତି। କଂସ ଅର୍ଥ ବ୍ରିଟିସ ସରକାର। 'ଛ'ଟି ପଦ କବିତାରୁ ତିନୋଟିକୁ ଅଠା ଦେଇ ବନ୍ଦ କରିଦେବାକୁ ପଡିଲା। କବିତା ଯେ କିମିତି ହୋଇଥିବ ତାହା ଭଗବାନ ଜାଣନ୍ତି। ଯାହାହେଉ, ମୋର ଏତିକି ଗର୍ବ ଯେ, ଜଣେ ବୃତ୍ତିଭୋଗୀ ଛାତ୍ର ହୋଇ ଗଡଜାତ ଭିତରେ ଥାଇ ଏମିତି ଦେଶଦ୍ରୋହୀ କବିତା

ଲେଖିଥିଲି। ଆହୁରି ମନେପଡୁଛି- ସେହି ବର୍ଷ ମହାତ୍ମାଗାନ୍ଧୀଙ୍କୁ ବନ୍ଦୀ କରାଯିବାର ସମ୍ବାଦ ପାଇ ଆମେ କୋଡିଏ ଜଣ ପିଲା ମୋଗଲବନ୍ଦୀ ଅଞ୍ଚଳରୁ ଆସିଥିବା ଦୁଇଜଣ ଶିକ୍ଷକଙ୍କ ପ୍ରରୋଚନାରେ (ପ୍ରେରଣାରେ) ସ୍କୁଲକୁ ଯିବା ବନ୍ଦକରିଦେଲି। ଛୋଟିଆ ସଭାଟିଏ ହାଇସ୍କୁଲ ପଡିଆରେ କରିଥିଲୁ। ସେହି ଶିକ୍ଷକ ଦୁଇଜଣ ଛୋଟ ବକ୍ତୃତା ଦେଇଥିଲେ। ହେଡମାଷ୍ଟର ସଚୀନ୍ଦ୍ର ବାବୁ କେମିତି ଖବର ପାଇ ଉପସ୍ଥିତି ହେଲେ ଏବଂ ଏଭଳି କେତେକଣ ବୃତ୍ତିଭୋଗୀ ପିଲାଙ୍କୁ ଏମିତି ତାଡନା ଭର୍ତ୍ସନାକଲେ ଯେ, ସେମିତି ଦେଶଦ୍ରୋହୀତା ପ୍ରଦର୍ଶନ କରିବାକୁ ଜଦାପି ଆଉ ସାହସ କଲୁନାହିଁ। ସେହି ବର୍ଷ ଆମ ସାଙ୍ଗରେ ପଢୁଥିବା ଜଣେ ମାଜିଷ୍ଟ୍ରେଟଙ୍କ ପୁଅଟିଏ କ୍ଲାସ ଛାଡି ୭-୮ ଦିନ ଜୁଆଡେ ଲୁଣ ମାରିବାପାଇଁ ବାଲେଶ୍ୱରର ଇଞ୍ଚୁଡିକୁ ବା ଇରମକୁ ଯାଇଛି। ସେ ଫେରିଲାରୁ ହେଡମାଷ୍ଟର ତାକୁ ସବୁପିଲାଙ୍କ ଆଗରେ ଛିଡାକରାଇ କହିଲେ, "କିବେ- କିଆ ବୁଦାରେ ଲୁଚିଥିଲୁ, ନା ଲୁଣମାରୁଥିଲୁ ? ତୁମ ପରି ପିଲାଙ୍କୁ ଘୋଡା ଚାବୁକ୍ ଦରକାର। ତୁ ଭାବିଛୁ ଦେଶ ଉଦ୍ଧାର କରିଦେବୁ ?" ଯାହା ହେଉ, ମେଟ୍ରିକୁଲେସନ ପଢୁଥିବା ଯାକେ କାହିଁ କୁତ୍ରାପି ମୟୂରଭଞ୍ଜରେ ଆନ୍ଦୋଳନ ବା ଅଶାନ୍ତି ଦେଖା ନଥିଲା। ପ୍ରଜାମଣ୍ଡଳ ଆସିବାକୁ ଆହୁରି କେତେ ବର୍ଷ ଡେରି ଅଛି। ମୟୂରଭଞ୍ଜ ସେତେବେଳେ ଗଡଜାତ ବୋଲି ହୀନମନ୍ୟତାକୁ ସ୍ଥାନ ଦେଇ ନାହିଁ। ମୟୂରଭଞ୍ଜବାସୀ ଚିରଦିନ ଉର୍ଦ୍ଧଶିର। ଅନେକ ଅନେକ ତାର ଦାନ ଓ ପୃଷ୍ଠପୋଷକତା ଓଡିଶା ପ୍ରତି। ମୟୂରଭଞ୍ଜ ଓଡିଶାରୁ କେବେ ଅଲଗା ନଥିଲା। ହଜାର ହଜାର ମୋଗଲବାସୀ ଭିକ୍ଷା ବୃତ୍ତି ଧରି ସାରା ମୟୂରଭଞ୍ଜ ଖେଳିଯାଇ ଥିଲେ। ଇତସ୍ତତଃ ବଣ ଜଙ୍ଗଲରେ ମଧ୍ୟ ବସତି ସ୍ଥାପନ କରିଥିଲେ।

୧୯୩୨ ସାଲ କଥା କହୁଛି। ରେଭେନ୍ସା କଲେଜରେ ପଢୁଥିଲା ବେଳେ ମଧ୍ୟ ଆମେ ସ୍ୱାଧୀନତା ଆନ୍ଦୋଳନର ନିଦର୍ଶନ ଆଡକୁ ଡଳି ନ ଥିଲୁ ବା ଆନ୍ଦୋଳନର ନିଦର୍ଶନ ଆଡ଼କୁ ସେମିତି କିଛି ବଡ ମାତ୍ରାରେ ଯାଇ ନଥିଲୁ। କିନ୍ତୁ କ୍ରମେ ବିପ୍ଳବର ବନ୍ୟା ମାଡି ଆସିଲା ଓଡିଶାକୁ। ଏକ ପକ୍ଷରେ ସ୍ୱତନ୍ତ୍ର ଉତ୍କଳପାଇଁ ସଂଗ୍ରାମ। ଅନ୍ୟ ପକ୍ଷରେ ମହାତ୍ମାଗାନ୍ଧୀ ପରିଚାଳିତ ସ୍ୱାଧୀନତା ଆନ୍ଦୋଳନର ପ୍ରଳୟକାରୀ ପ୍ରଭାବ। ଏମିତି ସମୟରେ ଦିନେ ପ୍ରାୟ ଦିନ ୧ଟା ବେଳେ ଗୋଟାଏ ବଡ କରୁଣ ଦୃଶ୍ୟ ଆମେ ଦେଖିଥିଲୁ। କଲେଜରୁ ପିଲାମାନେ କିଛି ବାଧା ବାରଣ ନ ମାନି ବାହାରିଗଲେ କଲେଜ ହତା ପାଚଗ୍ରୀ ଆଡକୁ। କଲେଜ ଛକ ଫାଟକ ପାଖରେ ପ୍ରାୟ ଆଠ-ଦଶ ଜଣ ପୋଲିସ, ଗୁଡାଏ ବୋଝେଇ ହୋଇଥିବା ବଳଦ ଗାଡିକୁ ସାହାଯ୍ୟ ଦେଇ ବଜାର ଆଡକୁ ନେବାର ଚେଷ୍ଟାରେ ଥା'ନ୍ତି। ବଳଦ ଗାଡିରେ ଗୋଟାଏ ବଡ ଲୁଗା ଗଣ୍ଠି ବୋଝେଇ ହୋଇଥାଏ। ସେସବୁ

ମାଞ୍ଚେସଟାରର ବିଲାତି ଲୁଗା। ସେଇଟା ବିଦେଶୀ ବସ୍ତ୍ରର ବର୍ଜନର ସମୟ। ଚୌଧୁରୀ ବଜାର ବା ବାଲୁବଜାରର ଜଲାଇ ମିଆଁ ନାମକ ଜଣେ ଲୁଗା ଦୋକାନୀ ସେସବୁ ଲୁଗା ଅଣେଇଛି। ଗୁଡାଏ ଟଙ୍କା ଶଗଡିଆକୁ ଭଡା ଦେଇ ସେସବୁ ଚିଜ ଆଣୁଛି। ଷ୍ଟେସନରୁ ସକାଳ ୯ଟାରେ ଏ ଗାଡି ବାହାରିଛି। ଦିନ ୧ଟା ବାଜିଲାଣି, ରେଭେନ୍ସା କଲେଜ ଛକ ପାର ହୋଇନାହିଁ। ସତ୍ୟାଗ୍ରହ କରି ଅଭିଭାବକମାନେ ଜେଲ ଚାଲିଗଲେଣି। ପିକେଟିଂ କରି ଗାଡି ଆଗକୁ ନ ଆଗେଇବାର ଦାୟିତ୍ୱ ମାଇନର ପଢୁଥିବା ପିଲାମାନଙ୍କର। ମାତ୍ର ୬-୮ ଜଣ ପିଲା। ଗାଡି ଇଞ୍ଚେ ଆଗକୁ, ଜଣେ ପିଲା ଚକ ତଳେ ଯାଇ ଶୋଇଯାଏ। ପୋଲିସ ତାକୁ ଟାଣିଓଟାରି ଘୋସାରି ନେବା ବେଳକୁ ଆଉକଣେ ପିଲା ସେ ଜାଗାରେ ଶୋଇଯାଏ। ପୋଲିସ ପ୍ରତିଥର ହାର ମାନୁଥାଏ ଏବଂ ଅପଦସ୍ତ ହେଉଥାଏ। ସର୍ବ ସାଧାରଣ ଆଗରେ ଶେଷରେ ବାଡି ପ୍ରୟୋଗ କରିବାକୁ ପଡିଲା। ହାତକୁ ମୋଡା ମୋଡିକରି ହାତଗୋଡ ଭାଙ୍ଗିଦେଲା। ତଥାପି ମର୍କଟ ସେନା କର୍ତ୍ତବ୍ୟରୁ ନିବୃତ ହେବାକୁ ନାରାଜ। କ୍ଷୀଣ ସ୍ୱରରେ ଖାଲି ଥରକୁ ଥର ଶୁଭୁଛି- ଜୟ ମହାତ୍ମାଗାନ୍ଧୀକି ଜୟ, ଭାରତମାତାକି ଜୟ। କେତେ ସମୟ ଆଉ ସେ ବକଟେ ବକଟେ ପିଲା, ବଳିଷ୍ଠ ପୁଲିସର ବିରୁଦ୍ଧରେ ଲଢିବେ ? ଗେଣ୍ଡା ଗତିରେ ବଳଦ ଗାଡି କିନ୍ତୁ ଚାଲିଥାଏ। ଆମରି ଆଖି ଆଗରେ ଦିଟା ଗୋଟେ ପିଲା ମୂର୍ଛା ହୋଇଗଲେ। ଛଣ ବିଡାକୁ ଏମୁଣ୍ଡ ସେମୁଣ୍ଡ ଧରି ଫୋପାଡ଼ିଲା ପରି, ଘୋଡାଗାଡି ଗୋଟାକ ଭିତରକୁ ଅଚେତ ଅବସ୍ଥାରେ ଥିବା ପିଲାଗୁଡାକ ପୂରେଇଦେଲେ। "ପାଣି ପାଣି" କରୁଣ ଡାକ ଶୁଣି ଗୋଟିଏ ପାନବାଲା ଆଲୁମୁନିୟମ ଗ୍ଲାସରେ ପାଣି ଆଣି ଦେବାକୁ ଯାଉଥିଲା। ଏତେ କୋରରେ ପୋଲିସ ତାର ବାଡିରେ ବାଡେଇଦେଲା ଯେ, ସେ ଲୋକଟାର ବାହୁର ହାଡ ଭାଙ୍ଗିଗଲା। ପିଲାଗୁଡାକର ହାତକୁ ଧରି ଏମିତି ଓଲଟା ପଟେ ବୁଲେଇଲା, ହାତର ହାଡ କାନ୍ଧରୁ ଖସିଗଲା। ଏହି ଅବସ୍ଥାରେ ଘୋଡା ଗାଡିରେ ପିଲାଙ୍କୁ ବୋଝେଇକରି ଶଗଡରେ ଲୁଗା ଗାଣ୍ଠିଳି ଧରି ଫଉଜି ଆଗେଇଚାଲିଲା। ଆମେ ସବୁ ଭଲ ପିଲା ପରି କଲେଜକୁ ଫେରି ପାଠପଢାରେ ଲାଗିଗଲୁ।

ଆଉ କିଛିଦିନ ପରେ ଶୁଣାଗଲା- ମହାତ୍ମାଗାନ୍ଧୀ ଡାକଟେର ଟ୍ରେନରେ କଟକ ପହଞ୍ଚୁଛନ୍ତି। ରାତି ପ୍ରାୟ ଆଠଟା ବେଳେ ଟ୍ରେନ ପୁରୀ ଆଡକୁ ଯିବ। ମହାତ୍ମାଗାନ୍ଧୀଙ୍କୁ ଦେଖିବାକୁ ଗଲେ ଲୁଚାଚୋରାରେ ଯିବା କଥା। ଅନୁମତି ବା କିଏ ଦେବ। ଆମେ ହଷ୍ଟେଲରୁ ଖସି ଚାଲିଗଲୁ। ଟ୍ରେନ ଆସିଲା। ରାଜକୃଷ୍ଣ ଘୋଷଙ୍କ କଥା ମନେପଡୁଛି। ସେ ଗାନ୍ଧୀଙ୍କ ସାଙ୍ଗରେ ଥିଲେ। ଷ୍ଟେସନରେ ୫୦-୧୦୦ ଜଣ ଲୋକ ହୁଏତ ଥିବେ।

ଗାନ୍ଧୀଙ୍କୁ ଦେଖିଲୁ ଗୋଟାଏ ତୃତୀୟ ଶ୍ରେଣୀ ଡବାରେ ଭିତରେ। କେତେ ଜଣ କର୍ମୀ ମାଠିଆଟିଏ, ଗୋଟିଏ ତୁଳସୀ ଗଛ, ଶଅପଟିଏ ଧରିଛନ୍ତି। ଆଉ ସେମିତି କିଛି ଉଲ୍ଲେଖଯୋଗ୍ୟ ଚିଜ ଭିତରେ ନାହିଁ। ଗାନ୍ଧୀଜୀଙ୍କ ଦିହ ସାମାନ୍ୟ ଅସୁସ୍ଥ ଥିଲା। ସେଦିନ ସେ ଗାଡ଼ି ଦୁଆର ମୁହଁକୁ ଆସି ଛିଡାହୋଇ କେତେପଦକଥା କହିଲେ। ରାଜକୃଷ୍ଣ ଘୋଷ ତାର ଓଡ଼ିଆ ତର୍ଜମା କରିଦେଉଥାନ୍ତି। ଗାନ୍ଧୀଜୀ କହିଲେ "ମୁଁ ହରିଜନ ଆନ୍ଦୋଳନରେ ବାହାରିଛି। ଗରିବ ଓଡ଼ିଶାବାସୀଙ୍କ ପାଖରୁ ମୁଁ ଟଙ୍କା, ଅଧୁଲି, ସୁକି, ଦୋ ଅଣି, ଅଣି ଚାହୁଁ ନାହିଁ। ମୁଁ ସେମାନଙ୍କ ପାଖରୁ ଚାହୁଁଛି ପଇସା, ଅଧଲା, ପାଦୁକା ଓ ଛଦାମ୍।" ଏତକି କହି ବାଁ ହାତ ପାତି ଛିଡାହୋଇ ରହିଲେ। ଆଲୁଅ ଯଥେଷ୍ଟ ହେଉ ନ ଥିବାରୁ ଜଣେ କିଏ କର୍ମୀ ଗୋଟାଏ ବାଡିରେ ଗାମୁଛାରେ ହାରକିନଟିଏ ବାନ୍ଧି ଗାନ୍ଧୀଜୀଙ୍କ ମୁହଁ ପାଖରେ ଟିକେ ଧରିଲା। ଗାନ୍ଧୀଜୀ ଜୁଳୁ ଜୁଳୁ ଚାହିଁଥାନ୍ତି। ନିର୍ବିକାର। କିଏ ଯେ କ'ଣ ଦେଲା ଜଣାନାହିଁ। ପରେ ଶୁଣାଗଲା- କେହି କେହି ହାତର ସୁବର୍ଣ୍ଣ ଚୁଡ଼ି ମଧ୍ୟ ଦେଇ ଦେଲେ। ଯିଏ ଦାନ ଦିଏ ସେ ଗାନ୍ଧୀଜୀଙ୍କ ହାତକୁ ଏମୁଣ୍ଡ ସେମୁଣ୍ଡ ଆଉଁସି ଦିଏ। ମହାତ୍ମାଗାନ୍ଧୀ କିଛି କହନ୍ତିନି।

ମୋ ପାଖରେ ଦୁର୍ଭାଗ୍ୟକୁ ସେ ଦିନ ପଇସାଟିଏ ମଧ୍ୟ ନଥାଏ। ପଇସା ମୁଁ ଦେବି ନା ତୁମ ହାତ ଛୁଇଁବି ? ଜାହାକୁ ମାଗି ବି ମୁଁ ଛଦାମ୍ଟିଏ ପାଇଲିନି; କାରଣ ଯାହାଠେ ଯାହା ଥିଲା, ସେ ଗାନ୍ଧୀଜୀଙ୍କ ହାତକୁ ବଢେଇଦେଇଛି। କ'ଣ ମନକୁ ଆସିଲା ମୁଁ ଧାଇଁଲି ହଷ୍ଟେଲକୁ। ଗୋଟାଏ ଫାରଲଙ୍ଗ ବାଟ। ହଷ୍ଟେଲ ଶୂନଶାନ। ଜଣକୁ କହିଲି ସିଏ ତା ପକେଟରୁ କ'ଣ ଆଣି ମୋ ହାତକୁ ବଢେଇଦେଲା। ମୁଁ ଷ୍ଟେସନକୁ ଧାଇଁଲି। ମୋର ଚେତା ପ୍ରାୟ ନଥାଏ। ଆଉ ପାଖରେ ଟ୍ରେନ ସାଁ ସାଁ ଶବ୍ଦ ହେଉଛି। ଗୁଳି ପରିକା ପ୍ଲାଟ୍‌ଫର୍ମକୁ ପଶିଯାଇ ଦେଖେ ସିଗନେଲ ଡାଉନ। ନୀଳ ଆଲୁଅ ସ୍ପଷ୍ଟ ଦେଖାଯାଉଛି। ଗାଡ଼ି ଯେ କୌଣସି ମୁହୂର୍ତ୍ତରେ ଛାଡ଼ିଦେବ। ଗାନ୍ଧୀ ହାତ ସେମିତି ବାହାରକରି ରହିଛନ୍ତି। ମୁଁ ଅଣନିଃଶ୍ୱାସୀ ଅବସ୍ଥାରେ ଧାଇଁଯାଇ ଯାହା ନେଇଥିଲି, ଗାନ୍ଧୀଙ୍କ ହାତରେ ଦେଇଦେଲି ଏବଂ ପାପୁଲିରୁ କାନ୍ଧ ପର୍ଯ୍ୟନ୍ତ ହାତଟାକୁ ତଳ ଉପର କରି ଆଉଁସିବାରେ ଲାଗିଲି। ୬୦ ବର୍ଷ ପରେ ଆଜିବି ଦେହରେ ଶିହରଣ ଖେଳିଯାଉଛି। ତାଳଚେର ପେସେଞ୍ଜର ହୁଇସିଲ ମାରିଲା। ଗାନ୍ଧିଜୀ ଭିତରକୁ ପଶିଗଲେ। କବାଟ ବନ୍ଦହେଲା। ଫେରିଲା ବେଳକୁ ମୋତେ ଜଣାପଡିଲା ଗୋଡର ଭୀଷଣ ଯନ୍ତ୍ରଣା। କାନ୍‌ଭାସ ଜୋତା ମାଡିଥିଲି। ମନେପଡ଼ିଲା- ଅଚେତ ଅବସ୍ଥାରେ ଯେତେବେଳେ ହଷ୍ଟେଲରୁ ଦୌଡ଼ି ଦୌଡ଼ି ଫେରୁଥିଲି, ସେତିକି ବେଳେ ରାସ୍ତାର ବଙ୍କାଣିରେ ଗୋଟିଏ ଘୋଡାଗାଡ଼ି ସହିତ ଧକ୍‌କା ଖାଇଲି। ଘୋଡା ପିଠିରେ

ଭରାଦେଇ ଅଟକିଗଲି ସିନା, ବାଁ ଗୋଡର ବୁଢା ନଖଟା ଗୋଟାଏ ମାଙ୍କଡା ପଥରରେ ଛେଚି ହୋଇଗଲା । ଜୋତା ଭିତର ଲହୁରେ ଭରପୂର ଏବଂ ବୁଢା ଆଙ୍ଗୁଳି ନଖଟା ଦୁଇ ଫାଳ ହୋଇଯାଇଛି । ଅଥଚ ସେଥିପ୍ରତି ଭ୍ରୂକ୍ଷେପ ନକରି ଷ୍ଟେସନ ଆଡ଼କୁ ଧାଇଁଯାଇଥିଲି । ଆଜିବି ସେ ନଖ ସେମିତି ଦୁଇଭାଗହୋଇ ରହିଛି ।

କିଛିଦିନ ପରେ ଶୁଣାଗଲା- ପୁଣି ମହାତ୍ମାଜୀ କଟକ ଆସୁଛନ୍ତି । ଏଥର ସେ ପଦ ଯାତ୍ରାରେ ଆସୁଛନ୍ତି । ସେ ଦିନ ତେଲାଙ୍ଗରୁ ଗାନ୍ଧୀଜୀ ଚାଲିଚାଲି ଆସୁଛନ୍ତି । ଆମେ ଚାଲିଲୁ କାଠଯୋଡି ବାଲିକୁ । ୫-୬ ଜଣ କର୍ମୀ ସଂକୀର୍ତ୍ତନ କରି ଚାଲୁଥାନ୍ତି, ତାଙ୍କ ସାଙ୍ଗରେ ତାଳକୁ ତାଳ ମିଳାଇ । ମହିମା ଧର୍ମର ସନ୍ୟାସୀମାନେ ଯେପରି ତାଳପତ୍ରର ଛତାଟିଏ ଧରିଥାନ୍ତି, ସେମିତି ଗୋଟାଏ ଛତା ଗାନ୍ଧୀଙ୍କ ପାଖରେ ଟେକିଧରି ତାଙ୍କ ସାଙ୍ଗରେ ଆସୁଥାନ୍ତି । ସେ ଚାଲିଥାନ୍ତି । କର୍ମୀମାନେ ଦୌଡୁଥାନ୍ତି । ସାଙ୍ଗେ ସାଙ୍ଗେ କାଠଯୋଡି ବାଲିରେ ମିଟିଂ ହେଲା । ମହାତ୍ମାଗାନ୍ଧୀ ଯେଉଁ ଭଙ୍ଗୀରେ ବସନ୍ତି, ସେହି ଭଙ୍ଗୀରେ ଟେବୁଲ ଉପରେ ବସି ଗଲେ । ଏକାବେଳକେ ଖାଲି ଦେହ । ମହାତ୍ମାଗାନ୍ଧୀ ଆରମ୍ଭ କଲେ "ଯେ କୌଣସି କାର୍ଯ୍ୟ ଆରମ୍ଭକରିବା ପୂର୍ବରୁ ଭଗବାନଙ୍କୁ ସ୍ମରଣ କରିବା ଉଚିତ୍ ।" ଏତିକି କହି ସାରିଛନ୍ତି କି ନାହିଁ- ଆରମ୍ଭହୋଇଗଲା ମହାତ୍ମାଗାନ୍ଧୀଙ୍କର ପ୍ରିୟ ଭଜନ । ସୂର୍ଯ୍ୟଦେବ ପ୍ରାୟ ଅସ୍ତହେଉଥାନ୍ତି । କାଠଯୋଡିର ଶୀତଳ ପବନ ବହିବା ଆରମ୍ଭ କରିଥାଏ । ଅପୂର୍ବ ପରିବେଶ । ଭଜନ ସରିବା ପରେ ମହାତ୍ମାଗାନ୍ଧୀ ତାଙ୍କର ବକ୍ତୃତା ଆରମ୍ଭକରିଦେଲେ । ସେହି ହରିଜନ ଆନ୍ଦୋଳନ ସମ୍ପର୍କରେ । ବକ୍ତୃତା ଶେଷ ହେବାକୁ ଯାଉଛି, ଗାନ୍ଧୀଜୀ କହିଲେ- ପଣ୍ଡିତ ଲାଲନାଥ ମୋ ପାଖକୁ ଯାଇଥିଲେ । ମୁଁ ତାଙ୍କୁ ଅନୁମତି ଦେଇଛି ଏ ସଭାରେ ବକ୍ତୃତା ଦେବାପାଇଁ । ମୋ କଥା ସବୁ ଯେମିତି ଆପଣମାନେ ଧିରସ୍ଥିର ହୋଇ ଶୁଣିଲେ, ମୁଁ ଆଶା କରୁଛି ତାଙ୍କର ବକ୍ତୃତାକୁ ମଧ୍ୟ ଆପଣମାନେ ନିବିଷ୍ଟ ଚିତ୍ତରେ ଶୁଣିବେ । ହେଇ ବୋଧହୁଏ ଆସି ଗଲେଣି । ଆମେ ଦେଖିଲୁ- ତାଙ୍କ କଥା ସରୁ ନ ସରୁଣୁ ଖୋଳ, ମୃଦଙ୍ଗ, କରତାଳ ଇତ୍ୟାଦି ବଜାଇ ଭଡାଟିଆ ଲୋକ ଜରିଆରେ ଛିଣ୍ଡା ଛାଞ୍ଚୁଣି, କଳାହାଣ୍ଡି ଏସବୁ ଧରି ଦଳବଳ ସଭାସ୍ଥାନଆଡକୁ ମାଡିଆସୁଛନ୍ତି । ଉପସ୍ଥିତ ଶ୍ରୋତା ସବୁ ଏତେ ଉତ୍ୟକ୍ତ ହୋଇ ଯାଇଥିଲେ ଯେ ମୁହୂର୍ତ୍ତକ ମଧ୍ୟରେ ଲାଲନାଥ ଦଳର ହାଣ୍ଡି କୁଣ୍ଡି ସବୁ ଭାଙ୍ଗିଦେଲେ । ଛାଞ୍ଚୁଣିରେ ନିଆଁ ଲଗେଇଦେଲେ । ଏତେ ପରିମାଣରେ ବାଲି ସେମାନଙ୍କ ଉପରକୁ ମାରିଲେ ଯେ, ସେମାନେ ପ୍ରାୟ ଅନ୍ଧ ହୋଇଗଲେ । ଶୋଭାଯାତ୍ରା କୁଆଡେ ମିଳେଇଗଲା । ମହାତ୍ମାଗାନ୍ଧୀ ସାଙ୍ଗେ ସାଙ୍ଗେ ବସିବା ସ୍ଥାନରୁ ଉଠି ଜୋରରେ ଆଗେଇଗଲେ ଏବଂ ଲଣ୍ଡିତ ମସ୍ତକ ପଣ୍ଡିତ ଲାଲନାଥଙ୍କୁ କୁଣ୍ଢେଇ ପକାଇ

ସୁରକ୍ଷା କବଚଦେଲେ ଏବଂ ଝାଡି ଝୁଡି ଆସନରେ ଆଣି ବସାଇଲେ। କହିଲେ- "ମୁଁ ଆପଣମାନଙ୍କ ତରଫରୁ ଭଗବାନଙ୍କଠାରେ ଆପଣମାନଙ୍କପାଇଁ କ୍ଷମାଭିକ୍ଷା କରୁଛି। ପଣ୍ଡିତ ଲାଲନାଥ ମୋର ଅତିଥି; ତାଙ୍କୁ ଅପମାନ ଅର୍ଥ ଭଗବାନଙ୍କୁ ଅପମାନ।" ପଣ୍ଡିତ ଲାଲନାଥଙ୍କୁ ଆଶ୍ୱାସନା ଦେଇ ତାଙ୍କୁ ବକ୍ତୃତା ଦେବାକୁ ଅନୁରୋଧକଲେ। ପଣ୍ଡିତ ଲାଲ ନାଥ ଖୁବ୍ ଉଚ୍ଚ ସ୍ୱରରେ, ଖୁବ୍ ଉତ୍ସାହ ଉଦ୍ଦୀପନାରେ ସନାତନ ଧର୍ମ ବିଷୟରେ ଅନେକ କଥା କହିଲେ। ଆମେ ଚୁପ ଚାପ ରହିଲୁ; କିନ୍ତୁ କିଛି ବୁଝିଲୁ ନାହିଁ, କି ଶୁଣିଲୁ ନାହିଁ। ସଭା ଶେଷହେଲା। ମହାତ୍ମାଗାନ୍ଧୀ ପଣ୍ଡିତ ଲାଲନାଥଙ୍କ କାନ୍ଧରେ ହାତଦେଇ କ୍ଷୀଣସ୍ରୋତା କାଠଯୋଡି ନଇ ପାରହୋଇ କଟକ ସହର ଆଡକୁ ପଦଯାତ୍ରା ଚଳାଇଲେ।

କଲେଜରେ ପଢୁଥିଲା ବେଳେ ନେହେରୁଙ୍କୁ ମଧ୍ୟ ଦେଖିଛି। ସେତେବେଳେ ସ୍ପେନରେ ସିଭିଲ ୱାର ଚାଲିଥାଏ। ନେହେରୁ ବକ୍ତୃତା ଦେଉଥାନ୍ତି ମୁନସିପାଲଟି ହଲରେ। ୫୦ କି ୧୦୦ ଦର୍ଶକ। ନେହେରୁ ସେତେବେଳେ ପତଳା ଥାନ୍ତି। ସତେଯେପରି ତାଙ୍କ ଆଖିରୁ, ମୁହଁରୁ ନିଆଁ ବିସ୍ଫୁରଣ ହେଉଥାଏ। ଜଣା ପଡୁଥାଏ- ଯେମିତି ବ୍ରିଟିଶ ଶକ୍ତିକୁ ଜାଳି ପୋଡି ଦେବେ। ସେ ଆଖି ଏବଂ ଫୁତ୍‌କାରରେ ଉଡାଇଦେବେ ବ୍ରିଟିଶର ଆଧିପତ୍ୟ। ସେ ସମସ୍ତ ମିଟିଂରେ ଯୋଗଦେବା ଛାତ୍ରମାନଙ୍କ ପକ୍ଷରେ ବେଆଇନ। କିନ୍ତୁ ମହାତ୍ମାଗାନ୍ଧୀଙ୍କ ସଭାକୁ ଲୁଚିଛପି ଯାଇଥିଲା ପରି, ଏ ସଭାରେ ମଧ୍ୟ ଯୋଗଦେଇଥିଲି। ନେହେରୁଙ୍କର ପ୍ରତ୍ୟେକ ଶବ୍ଦ ଆମେ ପିଇ ଯାଉଥାଉଁ। ଗୋଖର ସାପ ଫଁ ଫଁ ହେଲା ପରି ଶବ୍ଦକରି ନେହେରୁ ଗର୍ଜୁଥାନ୍ତି। ସଭା ଆରମ୍ଭ ହେବାକୁ ସାମାନ୍ୟ ବିଳମ୍ବ ହେବାରୁ ନେହେରୁ ଉଦ୍ୟୋକ୍ତା ମାନଙ୍କୁ ପଚାରୁଥାନ୍ତି, "Shall I begin ?" ଉତ୍ତର କିଛି ନ ମିଳନ୍ତେ ସେ ବକ୍ତୃତା ଆରମ୍ଭ କରିଦେଲେ। ମାତ୍ର ୧୦-୧୫ ମିନିଟ୍‌ରେ ବକ୍ତୃତା ସାରିଲେ। ଓଜସ୍ୱିତାର ତୁଳନା ନାହିଁ। ଇଂରାଜୀ ଉଚ୍ଚାରଣ ଏକାବେଳେ Oxonian, ଥରକୁଥର ଆମେ ଖାଲି ବ୍ରିଟିଶ୍ ଇମ୍ପିରିୟାଲିଜିମ୍ ଶବ୍ଦଟି ଶୁଣୁଥାଉଁ। ଆମେ କଟକ ମୁନସିପାଲିଟି ଟାଉନ ହଲରେ ଥାଇ ମଧ୍ୟ ନେହେରୁଙ୍କ ସାଙ୍ଗରେ ସାରା ପୃଥିବୀ ବୁଲିଆସିଲୁଁ। ବେଶ୍ ଅନୁଭବ କରିପାରିଲୁଣି ଯେ, ସ୍ପେନ୍ ଓ ଆମ ଭିତରେ କୌଣସି ତଫାତ୍ ନାହିଁ। ନେହେରୁ ଚାଲିଗଲେ। କୁଆଡେ ଗଲେ କେଜାଣି, କିନ୍ତୁ ସାରା ଇଲାକା ନେହେରୁମୟ ଓ ବାଙ୍ମୟ ହୋଇଗଲା। ପରବର୍ତ୍ତୀ କାଳରେ ଏତେ ପାଖରୁ ନହେଲେ ବି, ଖଣ୍ଡେ ଦୂରରେ ଥାଇ ନେହେରୁଙ୍କୁ ଦେଖିଛି। ପାମେଲା ମାଉଣ୍ଟବ୍ୟାଟେନ ସହିତ ଭୁବନେଶ୍ୱରର ମନ୍ଦିରରୁ ଉତ୍ତର ପାଚେରୀରୁ ଦେଖିସାରି ତଳକୁ ଓହ୍ଲାଉଥାନ୍ତି। ଆଉଥରେ ଦେଖିଛି- ପାର୍ଲାମେଣ୍ଟ ଭବନର ସିଡିଦେଇ ତଳକୁ ଏକା ଏକା ଓହ୍ଲେଇ ଆସୁଥିବା। ସେତେବେଳେ ଗାନ୍ଧୀ ଓ ନେହେରୁ

ଇତ୍ୟାଦି ଅତିମାନବଙ୍କୁ ଦେଖିବାଟା ପୂଣ୍ୟ ଅର୍ଜନକରିବା ସହିତ ସମାନ ବୋଲି ଆମକୁ ବୋଧହେଉଥିଲା । ନେତାମାନଙ୍କ ଭିତରୁ ମୁଁ ଅଧଘଣ୍ଟାଏ ଧରି ସର୍ଦ୍ଦାର ପଟେଲଙ୍କ ସହିତ କଟାଇବା କଥା ପରେ କହିବି। ଚକ୍ରବର୍ତ୍ତୀ ରାଜଗୋପାଳଚାରୀ ସହିତ ୨ ମିନିଟ୍ ଭୁବନେଶ୍ୱର ରେଲୱେ ପ୍ଲାଟଫର୍ମରେ ଥାଇ କଥାବାର୍ତ୍ତା କରିଛି। ସାର ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ବକ୍ତୃତା ଶୁଣିଛି। ଷ୍ଟେନୋଗ୍ରାଫୀର ଲଗେଇ ଦୁଇ ପୃଷ୍ଠା ରେକର୍ଡ କରିଛି ବାରିପଦା ହାଇସ୍କୁଲ ହଲରେ; ଏବଂ ଆଚାର୍ଯ୍ୟ ବିନୋବା ଭାବେ ସହିତ ଓଡ଼ିଆ ଲିପି ସଂସ୍କାର ସମ୍ବନ୍ଧରେ କଥାବାର୍ତ୍ତା କରିଛି। ଏସବୁ ଯଥା ସ୍ଥାନରେ ବର୍ଣ୍ଣିତ ହେବ।



## ॥ ତେତିଶ ॥

ଅଗଷ୍ଟ ୫ ତାରିଖ ୧୯୩୮ ସାଲ। ବାରିପଦା ହାଇସ୍କୁଲ ହେଡମାଷ୍ଟରଙ୍କର ଅଫିସରେ ମୁଁ ଯାଇ ପହଞ୍ଚିଲି। ଦେୱାନ କେ.ସି. ନିୟୋଗୀଙ୍କ ପାଖକୁ ଆବେଦନ ପତ୍ରଟି ମୁଁ ପଠେଇଥିଲି, ମୋତେ ସ୍କୁଲ ଇନିସ୍‌ପେକଟ୍‌ର ଚାକିରି ଦେବାପାଇଁ। ନିୟୋଗୀ ସାହେବ କଟକରେ ଭୁବନାନନ୍ଦ ଦାସଙ୍କ ଘରେ ରହି ମୋତେ ଡକାଇଲେ ଏବଂ କହିଲେ, "ବସନ୍ତ, ତୁମେ ଆପାତତଃ ହାଇସ୍କୁଲର ଏସିଷ୍ଟାଣ୍ଟ ଟିଚର ରୂପେ ଜଏନ୍ କର।" ରେଭେନ୍‌ସା କଲେଜ ଛାଡ଼ିବା ଆଗରୁ ମୁଁ ଚାକିରିର ନିଯୁକ୍ତିପତ୍ର କଟକରୁ ନେଇ ବାରିପଦା ଆସିଲି। ଆଗରୁ କହିଛି, ଯେମିତି ଦେୱାନଙ୍କ ଅଫିସର ଦୁଇଜଣ କିରାଣୀ ବିଜୟ୍ ବାବୁ ଓ ଜୀବନ ବାବୁଙ୍କ ପାଖରୁ ଶୁଣିଲି ମୋ ଦରଖାସ୍ତଟା ପଢୁପଢୁ ଦେୱାନ ସାହେବ କୁଆଡେ କହିଲେ "ଛେଲେଟା ambitious ନୟ୍", ମନେ ମନେ ଭାବିଲି, ଗରିବ ଲୋକର ପୁଣି ambition କଣ ! ଦାନାକନାର ଅଭାବ, ତେଣେ ଘରେ ଅନେକ ଦିନରୁ ଅଚଳ ଅବସ୍ଥା। ରୋକଗାର ଘରେ କିଛି ନାହିଁ, କରଜ ବର୍ଷକୁ ବର୍ଷ ବଢ଼ିବଢ଼ି ଚାଲିଛି। "ବୁଡ଼ିଗଲା ଗୋଡ଼ ତଳକୁ ତଳକୁ।" ଚାକିରି ବା କାହିଁ ? ମୁଁ ମେଧାବୀ ଛାତ୍ର ହୋଇପାରେ, କିନ୍ତୁ ଯାହା ମିଳିଛି ତାକୁହିଁ ମୁଣ୍ଡରେ ଛୁଇଁ ନେଇଯିବା କଥା। କାମରେ ଯୋଗଦେବାପାଇଁ ହେଡମାଷ୍ଟର ରାଜେନ୍ଦ୍ର ନାଥ ଦତ୍ତଙ୍କ ପାଖରେ ପହଞ୍ଚିବାରୁ, ସେ ଚପରାଶି ଚକ୍ରାକୁ ପଠାଇ ଏସିଷ୍ଟେଣ୍ଟ ହେଡମାଷ୍ଟର ଇନ୍ଦୁବାବୁଙ୍କୁ ଡକାଇ ଆଣିଲେ। ଇନ୍ଦୁବାବୁ ଆସି ମୋତେ ଚାହିଁ ପଚାରିଲେ- "କିରେ ବସନ୍ତ ତୁଇ ଜଏନ କରିବି ? ଭାଲ। ଆମର ପ୍ରିୟଛାତ୍ର; ଏକଟୁକୁ ଆଗେ ଏଲିନା ? ଆମି ଦସ୍ତଖତ କରେ ଫେରେଛି"। ଏହାକହି ଦଣ୍ଡେ ରହିଗଲେ। କ'ଣ

ଭାବିଲେ କେଜାଣି, ପୁଣି କହିଲେ-"ଆଚ୍ଛା, ଆମି ଆମାର୍ ନାମଟା କେଟେ ଦିଚ୍ଛି। ତୁଇ ତାର୍ ଉପରେ ତୋମାର ନାମ ଦସ୍ତଖତ୍ କର।" ଚାହୁଁ ଚାହୁଁ କାଟିଦେଲେ ତାଙ୍କ ନା'ଟା। ଗୋଟିଏ ଦିନର ଦରମା, ପ୍ରାୟ ତିନିଟଙ୍କା ସେ ମୋପାଇଁ ଛାଡିଦେଲେ। ଚାକିରୀ ଜୀବନର ସେଇଟା ଥିଲା ତାଙ୍କ ଶେଷ ଦିନ ଓ ମୋର ପ୍ରଥମ। ତାଙ୍କରି ଦୟାର୍ଦ୍ର ମୁହଁ ଓ ଛଳଛଳ ଦୁଇଟି ଆଖିକୁ ଦେଖି ମୁଁ ମନେପକାଇଲି ମୋର ପ୍ରାତଃ ସ୍ମରଣୀୟ ଶିକ୍ଷକମାନଙ୍କୁ। ପାନ୍ଧଡା ୟୁ.ପି. ସ୍କୁଲର ଭଗବାନ ମହାପାତ୍ର, ଶୀର୍ଷା ମାଇନର ସ୍କୁଲର ବୈକୁଣ୍ଠ ନାଥ ମିଶ୍ର, ବାରିପଦା ହାଇସ୍କୁଲର ଦୈତାରି ବାରିକ ଓ ରାମକୃଷ୍ଣ ନନ୍ଦ ଏବଂ ରେଭେନ୍ସା କଲେଜ ଜୀବନର ଗିରିଜା ଶଙ୍କର ରାୟ ଓ ପି.ଏସ୍. ସୁନ୍ଦରମ୍‌ଙ୍କୁ। ବହୁଦିନ ଧରି ଅଭ୍ୟାସ କରିଥିବା ମୋର ଖଣ୍ଡିଆ ଦସ୍ତଖତକୁ ଆଇ.ବି. (ଇନ୍ଦୁଭୂଷଣ) ଗୁପ୍ତଙ୍କ ନାମ ଉପରେ ଆଙ୍କିଦେଲି।

ସେଦିନ ଥିଲା ଶନିବାର୍। ଶନିବାର୍‌ରେ ଜଏନ ନକରିବା କଥା; କିନ୍ତୁ ମୁଁ କଲି। ଗୋଟିଏ ମାସର ଦରମା ୭୦ ଟଙ୍କା ବିଭକ୍ତ ୩୧ ଦିନ (୭୦/୩୧) ଅର୍ଥାତ୍ ଦୁଇଟଙ୍କା ଆଉ କେତେ ଅଣା ଆଉ କେତେ ପଇସା ମିଳିବ, ସେହି କଥା ଭାବିଲି। ଇନ୍ଦୁବାବୁ ନା କାଟିଦେଇ କେତେ ଟଙ୍କା ସେ ହରେଇଲେ ସେଇଟା ଭାବିଲି ନାହିଁ। ଶନିମହାଗ୍ରହ ସେଇଦିନଠାରୁ ବୋଧହୁଏ ମୋତେ ଜୀବନସାରା ଘାଣ୍ଟୁଛି। ଚାକିରୀ ଛାଡିବା ପର୍ଯ୍ୟନ୍ତ "ହାଅନ୍ନ", "ହା ପଇସା" ଚିନ୍ତା ଜୀବନସାରା ଲଦିଦେଇଛି। ଥରେ ଶନିମହାଗ୍ରହ ଆସିଲେ, ୨୪ବର୍ଷ ରହେ କୁଆଡେ। ଏ ଗ୍ରହପୀଡା ମୁଁ ବିଶ୍ୱାସ କରେନି, ଗ୍ରହଶାନ୍ତିର କିଛି ବ୍ୟବସ୍ଥା ବି ମୁଁ କରିନି। ଚାକିରି ସରିବା ପରେ ଆର୍ଥିକ ସ୍ୱଚ୍ଛଳତା କିଛିଟା ଅନୁଭବକଲି।

ସେଇଦିନ ଘରକୁ ଗଲି ଓ ସଞ୍ଜବେଳେ ରଥ ପୋଖରୀ ହୁଡାରୁ ଗାଁର ସାଙ୍ଗ ଆତ୍ମୀୟ ମାନଙ୍କ ଆଗରେ ଚାକିରି ପାଇବାର ଆନନ୍ଦ ପ୍ରକାଶକଲି ଏବଂ ଗର୍ବୀତ କଣ୍ଠରେ ବକ୍ତୃତା କରିଗଲି। ୭୦ ଟଙ୍କା ମାସକୁ କେତେ ବଡ ଦରମା। ଖାଲି ଦୁଧ, ଦହି ଦୁନିଆକୁ ପଶୁଛି ବୋଲି ମୋର ଧାରଣାହେଲା। ବାରିପଦାରେ ଦାମ୍ପତ୍ୟ ଜୀବନ କଟାଇବାପାଇଁ ତୁରନ୍ତ ବ୍ୟବସ୍ଥା କଲି ଘରଟିଏ। ଶୋକଜଡା ନାଳ କୂଳରେ ପାଇଲି ଚାଳଘରଟିଏ। ମାଟିକାନ୍ଥ, ଦୁଇଟି କୋଠରୀ। ଭିତରେ ପ୍ରଶସ୍ତ ବାରଣ୍ଡାଟିଏ; ରୋଷେଇ ଘର ପକ୍କା। ପାଇଖାନା ପାଖରେ ଯୋଡିଏ ପପେୟା ଗଛ। ସେତେବେଳେ ପପେୟା କିଏ ଖାଏ ? ଅଗଣାରେ ଗୋଟିଏ ଝଙ୍କା ତୁଳସୀ ଗଛ। ଗୋଟାଏ ବଡ କାଠପଲଙ୍କ, ମାସକୁ ଭଡା ୫ ଟଙ୍କା। ସମ୍ପତ୍ତି କହିଲେ- ହାଣ୍ଡିକୁଣ୍ଡି ଶେକପଟା ଛଡା ଆଉ କିଛି ନାହିଁ। ହାତଗଣା କେତେଟା

ଟଙ୍କା ପାଖରେ। ସବୁ ଠିକ୍ ଠାକ୍ ହେବା ପରେ ଦିନେ ମୁଁ ଘୋଡା ଗାଡ଼ିଟିଏ ନେଇ ଭଞ୍ଜପୁର ଷ୍ଟେସନକୁ ଗଲି, ସ୍ତ୍ରୀଙ୍କୁ ଆଣିବା ପାଇଁ। ବାରିପଦାରେ ସେଇ ଗୋଟିକ ଘୋଡାଗାଡ଼ି। ଟଣା ରିକ୍ସା କି ସାଇକେଲ ରିକ୍ସା ବୋଧହୁଏ ନ ଥିଲା। ୯ଟା ୧୬ରେ ଟ୍ରେନ ଆସେ, ତାଳବନ୍ଧ। ଏବେ ବି କେତେ ବର୍ଷ ହେଲା ବାଙ୍ଗିରିପୋଷିରୁ ଆସୁଛି। ଟ୍ରେନ୍‌ରୁ ପ୍ରଥମେ ଓହ୍ଲାଇଲେ ବାପା। ତାଙ୍କ ପଛକୁ ବଗାଳ ସାହିର ୯-୧୦ ବର୍ଷର ଝିଅଟିଏ। ସବାଶେଷରେ ସର୍ବାଙ୍ଗ ଭଞ୍ଜୀୟ ନାୟିକା ପରି ବିବିଧ ଅଳଙ୍କାର (ସବୁ ରୁପାର) ଲଗାଇ ୧୫-୧୬ ବର୍ଷର ସୁସ୍ଥ ଶରୀର ଝିଅଟିଏ ଓହ୍ଲାଇଲା। ମୋ ସ୍ତ୍ରୀ। ସେତେବେଳର ମୋର ମନର ଆନନ୍ଦ ଉଲ୍ଲାସ ଓ ଗର୍ବ ଜୀବନରେ କ୍ୱଚିତ ଦେଖାଦେଇଛି। ସେମାନେ ସାଙ୍ଗରେ କିଛି ଚାଉଳ ଓ କିଛି ଭଜା ମୁଗଡାଲି ଆଣିଥିଲେ ପାଥେୟ ଆକାରରେ। ଶ୍ୱଶୁର ଘରର ଯେଉଁ ଟିଣ ବାକ୍ସ ଦେଇଥିଲେ, ସେଗୁଡିକ ମଧ୍ୟ "ସାମାନ୍" ଭିତରେ ଥିଲା। ଯୋଡିଏ ପିଲା ଘର ଦ୍ୱାର ସଫା କରି ରଖିଥିଲେ ଆମପାଇଁ। ସେମାନେ ହେଉଛନ୍ତି କୁଳିଆ ଆଉ ବିପିନ୍। ସେ ଯୋଡିଏ ପିଲା ମୋ ପାଖରେ ଟିଉସନ ପଢିଲେ। ଭାରି ବୋଲକରା ଦୁହେଁଯାକ; ତାଙ୍କ ଅପେକ୍ଷା ବେଶି ମୋତେ ମାନନ୍ତି ତାଙ୍କ ବାପ ଦୁହେଁ। ଟିଉସନ ବାବାଦକୁ ୫ ଟଙ୍କା ଲେଖାଏଁ ବାନ୍ଧନ୍ତି ସେମାନେ। ମୋର ବୟସ ସେତେବେଳେ ପ୍ରାୟ ୨୬, ଅନ୍ନପୂର୍ଣ୍ଣା ବୟସରେ ମୋଠୁ ଦଶ ବର୍ଷ ସାନ। ବୈବାହିକ ତଥା ଦାମ୍ପତ୍ୟ ଜୀବନର ଏହି ହେଲା ପ୍ରାରମ୍ଭ। ରେଭେନ୍‌ସା କଲେଜର ଶେଷ ଭାଗରେ ମୋର ଯେଉଁ ଦେହର ଅବସ୍ଥା ଥିଲା, ସେହି ଜୀର୍ଣ୍ଣଶୀର୍ଣ୍ଣ ଅବସ୍ଥା ସେପର୍ଯ୍ୟନ୍ତ ପ୍ରାୟ ଥାଏ। ସେତେବେଳେ ଭଦ୍ରକ ଆଡୁ ପ୍ରଚୁର ଘିଅ ବାରିପଦାକୁ ଆସୁଥିଲା। ସେରକୁ ଦାମ୍: ଗୁଆଘିଅ ଟଙ୍କାଏ; ମଇଁଷି ଘିଅ ଟଙ୍କେ ପଚିଶ ପଇସା। ଅଧିକାଂଶ ଦିନ ଆମର କାକରା ପିଠା ହୁଏ ଏବଂ ଯେଉଁ ପିଲାମାନେ ଆସନ୍ତି ତାଙ୍କୁ ମଧ୍ୟ ଖାଇବାକୁ ଦିଆଯାଏ। ଆମକୁ ସକବାଜ କରିଦେଇ କେତେଦିନ ପରେ ବାପା ଘରକୁ ଫେରିଗଲେ; ସେଇ ଯେଉଁ ଝିଅଟି ଆସିଥିଲା, ସିଏ ବି ଏତେ କାନ୍ଦିଲା ଯେ, ବାପା ତାକୁ ସାଙ୍ଗରେ ଘରକୁ ଫେରାଇ ନେବାକୁ ବାଧ୍ୟହେଲେ। ଆମେ ରହିଲୁ ଦୁଇଜଣ।

ପରଦିନ କ୍ଲାସ ନେଲି। ୬ଷ୍ଠ ଶ୍ରେଣୀର କ୍ଲାସ। ଇଂରାଜୀ ପାଠ ମୁଁ ଯାହା ପଢାଇଥିଲି ୫୦-୫୫ ବର୍ଷ ପରେ ସେଦିନ ଜଣେ 'ପିଲା' ମୋ ଆଗରେ ସବୁ କହିଗଲା। ମୋତେ ଲାଜ ମାଡିଲା। ଶିକ୍ଷକତାର ଟ୍ରେନିଙ୍ଗ ମୋର ନଥିଲା। କେତେ ଦିନ ପରେ ହେଡମାଷ୍ଟର ଇନ୍ଦୁବାବୁଙ୍କ ରୁଟିନ ମୋତେ ଦେଲେ। ଦଶମ ଶ୍ରେଣୀରେ ମୁଁ ପଢାଇଲି The Pied Piper

of Hamelin କବିତାଟି ଖୁବ୍ ଉତ୍‌ଫୁଲ୍ଲ ହୋଇ, ତା'ର ସ୍ୱରରେ। ମୋର ପରିଧେୟ ଖୁବ୍ ପତଳା ମାଞ୍ଚେଷ୍ଟର ଧୋତି। ସରୁ ସରୁ ଫୁଲର ଧଡି। ଆଉ ଅଧି ପଞ୍ଜାବି। ଘଡି ଅଦ୍ୟାପି କିଣା ହୋଇନି। ଯାହା ପଢାଏ, ତାହା ପ୍ରାୟ ବୋର୍ଡରେ ଲେଖିଦିଏ। ମୋ ଲେଖାଗୁଡାକ ପଢି ରାମକୃଷ୍ଣ ବାବୁ ବା ବୈତାରି ବାବୁ କଣ ଭାବୁଥିବେ ବା ପିଲାମାନଙ୍କର କେଉଁ କାମକୁ ଆସିବ, ସେ କଥା ମୁଁ ଭାବେ ନାହିଁ।

ମୋର ପୁରୁଣା ଶିକ୍ଷକ କେତେ ଜଣ ଅଦ୍ୟାପି ଅଛନ୍ତି। ରିଟାୟର୍ ହୋଇ ନାହାନ୍ତି। ସେମାନଙ୍କର ସାଙ୍ଗରେ Common Roomରେ ଏକାଠି ବସି କାଳ କଟେଇବାକୁ ଲଜ୍ଜା ଓ ଭୟଆସେ। ମୋଟାମୋଟି ଭାବରେ ପିଲାମାନେ ଶାନ୍ତ, ଶିଷ୍ଟ ଓ ଯାହା ଲେଖିବାକୁ ଦେଲେ, ଲେଖିଆଣନ୍ତି। ପଚାରିଲେ- ଉତ୍ତର ଦିଅନ୍ତି। ଶିକ୍ଷକମାନେ ଚାପୁଡା ବିଧା ନ ମାରିଲେ ମଧ୍ୟ ହେଡମାଷ୍ଟରଙ୍କର ବେତ ପ୍ରତି ତାଙ୍କର ଭୟଥାଏ। ଓଡିଶାରେ ଟ୍ରେଣ୍ଡ୍ ଗ୍ରାଜୁଏଟ ମିଳିବା ସେତେବେଳେ ଦୁଷ୍କର। ତେଣୁ ଅଧିକାଂଶ ଶିକ୍ଷକ ବଙ୍ଗ ଦେଶରୁ ଆସୁଥିଲେ।

କେତେଦିନ ପରେ ସମ୍ପତ୍ତି ଅର୍ଜନକରିବାପାଇଁ ଇଚ୍ଛାହେଲା। ଗୋଟିଏ ରେଲେ ସାଇକଲ ବାରମିଙ୍ଗହାମ୍‌ର୍। ଖାଣ୍ଟି ବିଲାତି। ଦାମ୍ ୩୮ ଟଙ୍କା। ଯୋଗେଶ୍ୱର ରଣା ଦୋକାନୀ କିଛି ଟଙ୍କା ବାକିରେ ଦେଇପାରେ। ଇନ୍‌ଷ୍ଟଲମେଣ୍ଟରେ ମୁଁ ଦେଲି ୩୦ ଟଙ୍କା। ବାକି ଟଙ୍କା ମାସକୁ ମାସ ଶୁଝିଲି। ସର୍ବମୋଟ ୪୪ ଟଙ୍କା ପଡିଲା। ଆଜିକାଲି ଜଣେ ଲେକ୍‌ଚରର ସ୍କୁଟରଟିଏ କିଣି ଯେଉଁ ଆନନ୍ଦ ଓ ଗର୍ବପାଏ, ମୁଁ ସେତେବେଳେ ସେଇ ଆନନ୍ଦ ପାଇଲି। ତଫାତ୍ ଏତିକି ଯେ, ଜୀବନରେ କେବେ ସ୍ତ୍ରୀଙ୍କୁ ସାଇକେଲ ପଛରେ ବସେଇ ନାହିଁ।

ଦିନେ Recreation ଛୁଟିରେ Common Roomରେ ଆମେ ସମସ୍ତେ ବସିଥାଉ। ସାଇକେଲଟି ମୋର ମୋ କ୍ଲାସର ପଛପଟ ବାରଣ୍ଡାରେ teachers' mess ପଟେ ଥୁଆ ହୋଇଥାଏ। ଚାବିବି ପଡିଥାଏ, ହଠାତ୍ ଗୋଟେ ଶବ୍ଦ ହେଲା। ମୁଁ ସିଟ୍‌ରୁ ଉଠିବସି ଚିତ୍କାର କଲି, ମୋର ସାଇକେଲ୍। ଉଠିବସି ବାହାରକୁ ତୀବ୍ରବେଗରେ ଚାଲିଗଲି ଏବଂ ଯାଇ ଦେଖିଲି ଯାହା, ଭୟକରିଥିଲି ସେଇ କଥା। ଇନ୍‌ଷ୍ଟଲମେଣ୍ଟରେ କିଣା ହୋଇଥିବା ନୂଆ ବାରମିଙ୍ଗ୍‌ହାମ୍ ରେଲେ ସାଇକେଲ ତଳେ ପଡି ଚକ ଘୁରୁଚି। ମୁଁ ଯିମିତି ସାଇକଲ ପାଖରେ ପହଞ୍ଚିଛି, ମଚକ, ବିଶ୍ୱେଶ୍ୱର ଆଉ ରହିମ ବୋଲି ତିନିଜଣ ଛାତ୍ର ଛିଡା ହୋଇ ଖୁବ୍ କାତର ହୋଇ ମୋତେ ପଚାରିଲେ ସାର କ'ଣ ହେଲା ? ମୁଁ ସେମାନଙ୍କ ମୁହଁକୁ ଚାହିଁଲି। ବିରକ୍ତ

ହୋଇ କିଛି ଲାଭ ନାହିଁ । ସାରା ସ୍କୁଲରେ ସେଇ ତିନିଜଣ ପିଲା ହିଁ ମାରକାମାରା ପିଲା । ସାଇକେଲକୁ ଛିଡା କରିବାକୁ ଗଲାବେଳେ ସେମାନେ ସାହାଯ୍ୟ କଲେ ମୋତେ । ଦେଖିଲି ସାଇକେଲରୁ ଟ୍ୟୁବ କାଢିନେଇଛନ୍ତି । ଆଉ ବିଶେଷ କିଛି କ୍ଷତି ଘଟିନି । ତଥାପି ସାଇକେଲଟା ତଳେ ପଡିଗଲା । ସେଇଟାହିଁ ମୋତେ ଖୁବ୍ ଦୁଃଖଲାଗିଲା । ତା ପରେ ଷ୍ଟାଫ୍ କାଉନ୍‌ସିଲ ମିଟିଙ୍ଗ ହେଲା । ପିଲାମାନଙ୍କର ଏ ଦୁଃବ୍ୟବହାର କଥା ମୁଁ ଉଠାଇଲି ଏବଂ ପିଲାମାନଙ୍କୁ କୌଣସି ପ୍ରକାର କିଛି ଦଣ୍ଡ ଦିଆଯାଉ, ଏ କଥା କହିଲି । ହେଡମାଷ୍ଟର ମହୋଦୟ ମୋର କଥାର ଗୁରୁତ୍ୱ ଆଦୌ ଉପଲବ୍‌ଧି କଲେ ନାହିଁ । କହିଲେ, "ସେଇ ପିଲାମାନଙ୍କୁ ମନାକରିବେ ଏପରି ଆଉ ନ କରିବା ପାଇଁ ।" ମୁଁ ଖୁବ୍ ବିରକ୍ତ ହୋଇ କହିଲି ସମସ୍ତଙ୍କର ଆଗରେ, "ଦେଖନ୍ତୁ ସାର ! ମୁଁ ଗୋଟିଏ ବଗିଚା କରିଛି ବହୁ ପରିଶ୍ରମ କରି । ସେଠି ଷଣ୍ଢଟିଏ ପଶିବାପାଇଁ ଚେଷ୍ଟାକରୁଛି । ଆପଣ କଣ ତାକୁ ହାତଯୋଡି କହିବେ, 'ହେ ମହାଦେବଙ୍କ ବାହାନ, ଆପଣ ଭିତରକୁ ଆସନ୍ତୁ ନାହିଁ । ମୁଁ ବହୁ କଷ୍ଟରେ ଏ ବଗିଚା କରିଛି' ? ନା, ବଡ ଠେଙ୍ଗାଟିଏ ଧରି ତାର ମୁଣ୍ଡକୁ ଫଟାଇବାର ଚେଷ୍ଟା କରିବେ ?" ହେଡମାଷ୍ଟର ଟିକେ ଉତ୍ୟକ୍ତ ହୋଇଗଲେ ମୋ କଥାରେ । ସେ ଚୁମ୍ବକରେ କହିଲେ- "ଆପନି ଛେଲେ ଲୋକ । Administration କି ଆପନି ଜାନେନ୍‌ନି । ନୂତନ କାଯେ ଯୋଗ ଦିଏଛେନ୍" । ଭାବିଲି- "ଜୟ୍ ବିଶେଶ୍ୱର ! ଜୟ୍ ମଚକ ! ଜୟ୍ ରହିମ୍ !" ଶିକ୍ଷକତା ଜୀବନରେ ଏହି ହେଲା ମୋର ପ୍ରଥମ ଶିକ୍ଷା ଏବଂ ସେହିଦିନ ପାଖରୁ ଶିକ୍ଷକ ବା ଅଧ୍ୟାପକ ଜୀବନରେ ମୁଁ ଛାତ୍ରମାନଙ୍କ ପ୍ରତି କୌଣସି ଦୁଃବ୍ୟବହାର ପରିକଳ୍ପନା କରିନାହିଁ ।



## ॥ ଚଉତିରିଶ ॥

ପଢିବା ଆଉ ପଢେଇବା, ଏଇ ଦୁଇଟି କାମପାଇଁ ମଣିଷ ଜୀବନ ଅଭିପ୍ରେତ ବୋଲି ମୋର ଧାରଣା। ପଢାପଢି ସରିଲା; ପଢେଇବା ମଧ୍ୟ ଆରମ୍ଭକଲୁ। ହେଲେ, ବରାବର ମନେପଡିଲା ଦେଵ୍ହାନ ନିୟୋଗୀ ସାହେବଙ୍କର ସେହି ଗୋଟିଏ ବାକ୍ୟ "ଛେଲେଟା ଏମ୍ବିସାସ ନୟ୍"। ଦାରିଦ୍ର୍ୟ ଓ ଉଚ୍ଚାଭିଳାଷ ଏ ଦୁଇଟି ପରସ୍ପର ବିରୋଧୀ। ଶିକ୍ଷା ବିଭାଗରେ ଉଚ୍ଚାଭିଳାଷ କହିଲେ ବୁଝାଏ- ଅଧ୍ୟାପକ ଚାକିରୀ। ମୋର ସାଙ୍ଗ ସାଥୀ ଯେଉଁ ମାନେ ବା ମୋର ଉପର କ୍ଲାସର ପିଲାମାନେ ଚାକିରୀକଲେ। କିନ୍ତୁ ସେ କୋଡିଏ ଟଙ୍କିଆ ଚାକିରୀ। ସେମାନେ ବୋଲପୁର ଶାନ୍ତିନିକେତନକୁ ଯାଇ Co-operative ବା ଏମିତି କ'ଣ ଟ୍ରେନିଙ୍ଗ୍ ନେଇ ବାରିପଦା ଫେରିଲେ ଏବଂ ଲାଭ ଭିତରେ ଚାଷପାଇଁ ଜଙ୍ଗଲରେ ବୁଲି ବୁଲି କୁସୁମ, କୋଳି, ପଳାସ ଆଦି ଗଛ ଗଣିବା ଚାକିରୀକଲେ। ଏ କୋଡିଏ ଟଙ୍କା ବି ଢେର। କଲେଜରେ ପାଠ ପଢେଇବାର chance ବା କାହିଁ ? କଲେଜ ତ ସାରା ଓଡିଶାରେ ଗୋଟିଏ। ସେଠି ବା କେତେଜଣ ପ୍ରଫେସର ଦରକାର ? ସଦାଶିବ ମିଶ୍ର ପରି ଗୁଣୀ ଲୋକ କଟକ ପୁରି ସାଇଢରୁ ଆସି ବାରିପଦାରେ ବାବାଜୀ ଲାଲ ସାହେବଙ୍କୁ ମାସକୁ ୯୦ ଟଙ୍କା ଦରମାରେ ଘରୋଇ ଟିଉସନ କରିବାରେ ରହିଲେ। ଯେତେବେଳେ ମୟୁରଭଞ୍ଜରେ ସରକାରୀ ଚାକିରୀ ପାଇଲେ, ସେତେବେଳେ ସେ Economicsରେ M.A. ଥିବାରୁ ତାଙ୍କୁ Junior Marketing Officer, ସେଇ ୯୦ ଟଙ୍କାରେ ରଖାଗଲା। ସେ ବି ଜଣେ First Class M.A. (ପାଟନାରୁ) ପାସ୍ କରିଥିଲେ। କେତେ ଦିନ ପରେ ସେ Marketing Officer Senior ହେଲେ ୧୦୧ ଟଙ୍କାରେ। ମୟୁରଭଞ୍ଜ ଷ୍ଟେଟ୍‌ରେ ସେତେବେଳେ ଏଇଟାହିଁ gazetted ପୋଷ୍ଟ।

ଆଗରୁ ଉତ୍କଳମଣି ପଣ୍ଡିତ ଗୋପବନ୍ଧୁ ସରକାରୀ ଓକିଲ ଆକାର୍‌ରେ ବାରିପଦାରେ ରହୁଥିଲେ। ଉତ୍କଳ ଗୌରବ ମଧୁସୂଦନ ବି ମହାରାଜାଙ୍କର ଉପଦେଷ୍ଟା ଥିଲେ। ସଦାଶିବ ମିଶ୍ର ବଳଦ ଗାଡିରେ ମୟୁରଭଞ୍ଜ ଗସ୍ତକରି, ମୟୁରଭଞ୍ଜର Economic ସର୍ଭେ କରୁଥିଲେ। ସେତିକିବେଳେ ସେ ମୟୁରଭଞ୍ଜ କଲେଜ ହେବାକଥା ଶୁଣିଥିଲେ। ସେ କଲେଜରେ ସଦାଶିବ ମିଶ୍ର ପ୍ରିନସ୍‌ପାଲ ହେବେ ବୋଲି ମୁଁ କଟକରେ ଥିଲା ବେଳେ ଶୁଣିଥିଲି। ମୁଁ ଇଂରାଜୀ ଅଧ୍ୟାପକ ହୋଇଥାନ୍ତି ତାଙ୍କରି under ରେ। ତାଙ୍କ ସାଙ୍ଗରେ କଟକ stationରେ ଦେଖା କରି, ମୁଁ ଏ ସଂକ୍ରାନ୍ତରେ କଥାହୋଇଥିଲି। ତାପରେ କ'ଣ ହେଲା କେଜାଣି, କଲେଜ କଥାଟା ପବନରେ ମିଳେଇଗଲା। ସଦାଶିବ ମିଶ୍ର

ପାର୍ଲାମେଣ୍ଟାରି ଟ୍ରେନିଙ୍ଗପାଇଁ କଟକ ଚାଲିଗଲେ। ସେ ଆଉ ମୟୁରଭଞ୍ଜ ଫେରିଲେ ନାହିଁ। ଜଣାଗଲା ଯେମିତି ମୋତେ ଯାବତ୍‌ଜୀବନ ହାଇସ୍କୁଲ ମାଷ୍ଟରୀ କରିବାକୁ ପଡ଼ିବ। ମନ୍ଦ କ'ଣ ? "Contentment" ବୋଲି ଯେଉଁ ଇଂରାଜୀ କବିତାଟି, ତାକୁ ମନେମନେ ମୁଁ ଗୁଣଗୁଣେଇଲି। "Happy is the man whose wish and care are a few paternal acres bound." ସଂସ୍କୃତରେ ଯାହାକୁ କହନ୍ତି "ସନ୍ତୋଷା ମୃତ ତୃପ୍ତାନାଂ ଯତ୍ ସୁଖଂ" କିନ୍ତୁ ଭାଗ୍ୟ/ଦୁର୍ଭାଗ୍ୟ ଯେ, ମୋତେ ହାଇସ୍କୁଲ ଛାଡ଼ିବାକୁ ପଡ଼ିଲା।

ସେତେବେଳେ ମହାରାଜାଙ୍କର ଦୁଇ ପୁଅ ବିଲାତ ଯିବାର ଶୁଣାଗଲା। ଜଣେ ଗାର୍ଜିଆନ ତାଙ୍କର ଦରକାର। ମହାରାଜା ସବୁ କଥାରେ ତ୍ରିପାଠୀ ସାହେବଙ୍କୁ ପଚାରାଉଚାରା କରନ୍ତି। ଶିକ୍ଷା ବିଭାଗର ସର୍ବମୟ କର୍ତ୍ତା ତ୍ରିପାଠୀ ସାହେବ। ଗାର୍ଜିଆନ/ଟିଉଟରଟିଏ ବାଛିବା ପାଇଁ ମଧ୍ୟ ତ୍ରିପାଠୀ ସାହେବଙ୍କୁ କହିବାରୁ ସେ ଗୋକୁଳ ଚନ୍ଦ୍ର ଶତପଥୀଙ୍କୁ ସେ କାମପାଇଁ ବାଛିଲେ। ସେହି ସମୟରେ ତ୍ରିପାଠୀ ସାହେବ ଆସିଥାନ୍ତି ବାରିପଦା ହାଇସ୍କୁଲ visit କରିବାପାଇଁ, ବିହାର ଓଡ଼ିଶା D.P.I. ହିସାବରେ। ମୁଁ ହାଇସ୍କୁଲ teacher ଥାଏ କେତେମାସ ମାତ୍ର। ସ୍କୁଲରୁ ଗଲାବେଳେ ସେ ମୋତେ ଦେଖି ଦେଲେ ଏବଂ ହେଡମାଷ୍ଟରଙ୍କ ଆଡକୁ ଚାହିଁ କହିଲେ "Why do you keep such young men here? Appoint South Indians"। ମନେପଡ଼ିଲା, ରେଭେନ୍‌ସା କଲେଜରେ ତାଙ୍କର ସେଇ ପ୍ରଶ୍ନ : To which side of the river Subarnarekha do you belong? ସେ ପ୍ରଶ୍ନର ଗୁରୁତ୍ୱ ଏବଂ ଉଦ୍ଦେଶ୍ୟ ସେତିକିବେଳେ ଉପଲବ୍‌ଧି କଲି। ତ୍ରିପାଠୀ ସାହେବ ଚାଲିଗଲା ମାତ୍ରେ ହେଡମାଷ୍ଟର ରାଜେନ୍ଦ୍ର ନାଥ ଦତ୍ତ ଝିଞ୍ଜିରିବନ୍ଧ ବଣ ଜଙ୍ଗଲିଆ ରାସ୍ତା ଦେଇ ବେଲଗଡ଼ିଆ କୋଠିକୁ ସିଧା ଚାଲିଲେ ଏବଂ ମୋ ସଂକ୍ରାନ୍ତରେ ତ୍ରିପାଠୀ ସାହେବଙ୍କ ମନ୍ତବ୍ୟଟି ନିୟୋଗୀ ସାହେବଙ୍କୁ କହିଲେ। ନିୟୋଗୀ ମୋତେ ଭଲ ପାଉଥିଲେ। ତ୍ରିପାଠୀ ସାହେବଙ୍କ ସହିତ ତାଙ୍କର ବୋଧହୁଏ ପଟୁ ନଥିଲା। କେତେ ଦିନ ପରେ ସେ ମୋତେ ଡକେଇ ପଠେଇଲେ ଏବଂ ସିଧା କହିଲେ, "ବସନ୍ତ, ତ୍ରିପାଠୀ ସାହେବ ଏସେ ତୁମାକେ ବକାବକି କରେ ଗେଲେନ୍। ଉନି କେ ଆମାର ଛେଲେକେ....।" ରହିଯାଇ ସେ କହିଲେ, "ବସନ୍ତ ! ତୁମି Journalism training ଯାବେ।" ସେ ଟ୍ରେନିଙ୍ଗର ରୂପରେଖ ନ ଜାଣି ମୁଁ ହଁ କରିଦେଲି। ସେ କହିଲେ "ତୁମେ କଲିକତା ଯାବେ। ୟୁନାଇଟେଡ ପ୍ରେସ୍ ଅଫ ଇଣ୍ଡିଆ ଡିରେକ୍‌ଟର ବିଧୁ ବାବୁର କାଛେ ଚିଠି ଲିଖେଦିଛି। ତୁମି ଓର କାଛେ ଯାଓ।" କଲିକତା ଯିବାପାଇଁ ସବୁ ବ୍ୟବସ୍ଥା ସେ କରିଦେଲେ। ଦରମା

ଟଙ୍କାରେ ମୁଁ ଯିବି । କାଛାକାଛି ବର୍ଷେଟିଏ ମାତ୍ର । ବାରିପଦା ହାଇସ୍କୁଲରେ ମାଷ୍ଟରୀ କରି ମୁଁ ୬ ମାସପାଇଁ କଲିକତା ଟ୍ରେନିଂ ଗଲି, ଅନ୍ତଃସତ୍ତ୍ୱା ସ୍ତ୍ରୀକୁ ଗାଁରେ ରଖିଦେଇ ।

2B/ Hyat Khan Lane ରେ ରହିବାର ବ୍ୟବସ୍ଥା ହେଲା । ରେଭେନ୍ସାରେ ଥିଏଟର ହଉଥିଲା ବେଳେ, ସେଇଠିକାର ଡ୍ରେସାର ପ୍ରେଷ୍ଟର ଯାଇ "ଆଲମ୍‌ଗିର" ନାଟକରେ ରାମ ସିଂ ନାମକ ଚରିତ୍ରର make up କରିଥିଲେ । ଭାଗ୍ୟକୁ ସେଇ ପାଖ ହୋଟେଲରେ ସେତେବେଳେ କୃଷ୍ଣ ବାବୁ ଓ ମୋର କ୍ଲାସ ଫ୍ରେଣ୍ଡ ଧୀରାନନ୍ଦ ରହୁଥିଲେ । ମୁଁ ତାଙ୍କରି ଉପରେ ନିର୍ଭରକଲି । ସେତେବେଳର କଲିକତାକୁ ଯିବା ବା ରହିବା ଖୁବ୍ ଦୁଃସାହସିକ କାମ । ଟୋକା ଲୋକ । ଅତି ଦୁରୂହ ଓ ଦୁଃସାଧ୍ୟ କାମ କରିପାରୁଥିଲି । ଡେଲହାଉସି ସ୍କୋୟାରରେ United Press of India । ଜୀବନରେ "lift" ପ୍ରଥମ ଥର ପାଇଁ ଦେଖିଲି । ସେଠି ବିଧୁବାବୁଙ୍କ ସହିତ ଦେଖାକଲି ଏବଂ ନିୟୋଗୀଙ୍କ ଚିଠିଟି ଦେଲି । ସମ୍ବାଦ ଓ ସମ୍ବାଦ ପତ୍ର ବିଷୟରେ ମୋର ଟ୍ରେନିଂ ଆରମ୍ଭହେଲା । ଗୁଡାଏ ସାମ୍ବାଦିକ ବସିଥାନ୍ତି । Type Machine ଖଟଖଟ ଶବ୍ଦରେ ଘର ଭରପୂର । ସମସ୍ତେ ବଙ୍ଗାଳୀ । ଭାଗ୍ୟକୁ ବଙ୍ଗାଳୀ ଭାଷା ଜାଣିଥଲି; ବେଶ୍ କହି ପାରୁଥିଲି । ଧୋତି ପଞ୍ଜାବି ପିନ୍ଧିଥିବାରୁ ମୁଁ ଚେହେରାରେ ମଧ୍ୟ ବଙ୍ଗାଳୀ ବାବୁ ଭଳି ଦିଶୁଥିଲି । ତେଣୁ ସମସ୍ତଙ୍କ ସାଙ୍ଗରେ ମିଶି ପାରୁଥିଲି । ବାରମ୍ବାର ମୋତେ ସାଙ୍ଗମାନେ ପଚାରୁଥିଲେ "ଆପନି କି ବାଙ୍ଗାଲୀ ?"

ସେଠି ଅଳ୍ପ କିଛି ଦିନ ରହିଛି, ଟେଲିଗ୍ରାମ ଟିଏ ଯାଇ ପହଞ୍ଚିଲା "Blessed with a daughter" । ସ୍ୱାମୀ ହେବା ଅପେକ୍ଷା ପିତା ବୋଲେଇବା ବେଶି ଆନନ୍ଦପ୍ରଦ ବୋଲି ମୁଁ ସେତେବେଳେ ଭାବିଲି । ଝିଅକୁ ଦେଖିବା ଇଚ୍ଛା ଅତି ପ୍ରବଳ ହେଲା । ମୁଁ ତତ୍‌ଦଣ୍ଡେ ଗାଁକୁ ଯିବାର ବ୍ୟବସ୍ଥା କଲି । କଲେଜ ଷ୍ଟ୍ରିଟ୍ ମାର୍କେଟ୍‌ରୁ କୁନି ଝିଅପାଇଁ ପଶମର ପୋଷାକ ଯୋଗାଡକରି, ରାତି ପେସେଞ୍ଜର ଟ୍ରେନ୍ ଧରି, ତା'ପରଦିନ ସଂଧ୍ୟାରେ ଘରେ ପହଞ୍ଚିଲି । ଡିଙ୍କିଶାଳରେ ମା' ଓ ଝିଅକୁ ଦେଖି ଅପୂର୍ବ ଆନନ୍ଦ ଅନୁଭବକଲି; ବିଶେଷକରି ଡିବିରି ଆଲୁଅରେ ପାଞ୍ଚଦିନର ଛୁଆକୁ ଦେଖି ସ୍ୱର୍ଗସୁଖ ଲାଭକଲି । ମା'ର ବା ତା'ର ବାପାର ମୁହଁ, ଏ ମୁହଁ ଦୁଇଟିରୁ କେଉଁଟି ମୋତେ ବେଶି ଭଲଲାଗିଲା ମୁଁ କହିପାରିବିନି । ଝିଅକୁ ବସୁଧାକୁ ଆଣିବାପାଇଁ ମା'କୁ କେତେ କଷ୍ଟ ହୋଇଛି ତାହା ବିଭିନ୍ନ ଲୋକ ମୁହଁରୁ ଶୁଣିଲି । ତିନିଦିନ କାଳ ପ୍ରସବ ଯନ୍ତ୍ରଣାରେ ବ୍ୟାକୁଳ ଓ ଅତିଷ୍ଠହୋଇ, ସେ ମକାବାଡିର ଏମୁଣ୍ଡ ସେମୁଣ୍ଡ ଧାଁ ଦଉଡ କରିବାଠୁ ଆରମ୍ଭକରି, ମୋର ଅନୁପସ୍ଥିତରେ ଯେଉଁ ବ୍ୟତିବ୍ୟସ୍ତ, ହା' ହତାସ ହେଉଥିଲା ଏବଂ ସବା ଶେଷରେ ମୁମୂର୍ଷୁ ଅବସ୍ଥାକୁ ଆସିଥିଲା, ତାହା ମୋ ମା'

ମୁହଁରୁ ଶୁଣିଲି । ଗାଁରେ ଆମର ଯେଉଁ ତଥାକଥିତ ଅଭିଜ୍ଞ "ଧାଈ" ଥିଲା ତାର ଦିହ ଆଠହାତ ଦୂରରୁ ଗନ୍ଧାଏ । ଶୀଘ୍ର ଛୁଆ ଜନ୍ମହେବ ବୋଲି ମନ୍ତ୍ର, ଯନ୍ତ୍ର, ଭାଗବତ, ପୁରାଣ ଆଦି ସବୁ ଶ୍ୱଶୁର ପଡାପଡିକଲେ । ତଥାପି କିଛି ଫଳ ନ ହେବାରୁ ପିଲାକୁ ପେଟ ଭିତରୁ ହାତମାରି ଧାଇ ଟାଣିଆଣିଲା । "ଫୁଲ" ନ ପଡିବାରୁ, ଧାଈ ହାତରେ ଟଣାଟଣି କରି, ଛିଣ୍ଡାଇ ଯାହା ବାହାର କଲା, ତାକୁ ହି "ଫୁଲ" କୁହାଗଲା । ସମସ୍ତେ ଭାବିଥିଲେ "ଫୁଲ"ଟା ଛାତିକୁ ଉଠି ଯାଇଥିଲା । ଅସାଧ୍ୟ ସାଧନ କରି ବୁଢ଼ୀ ଧାଈ ଛାତି ଭିତରୁ ତାକୁ ଟାଣିଆଣିଲା । ତା ପରେ ୧୦୫ଡିଗ୍ରୀ-୧୦୬ଡିଗ୍ରୀ ଜ୍ୱର ସବୁବେଳେ ପ୍ରସୂତୀ ଦେହରେ ରହିଲା । ୬ ମାଇଲ ଦୂର ବାଙ୍ଗିରିପୋଷିରୁ ସାନଭାଇ ବର୍ଷା ରାତିରେ ଯାଇ ଡାକ୍ତରଙ୍କୁ ଡାକିଲା । ପ୍ରଭାସ ବାବୁ ଡାକ୍ତର । ବଡିଲା କତରା ନଈ ପାରହୋଇ ଗାଁକୁ ଆସିଲେ । କୌଣସି ଔଷଧ ଅଭାବରେ ମେଲେରିଆ ରୋଗର ଚିକିତ୍ସାକଲେ କୁଇନାଇନ୍ ଇଂଜେକ୍‌ସନ୍‌ଟିଏ ଦେଇ । 'ଯାହାକୁ ରଖିବେ ଅନନ୍ତ' । ଆଶ୍ଚର୍ଯ୍ୟ କଥା, ଦିନେ ପରେ ପଚା ପୂତିଗନ୍ଧମୟ "ଫୁଲ"ଟି ପାଣିହୋଇ ବାହାରିଆସିଲା । ରୋଗୀ-ପ୍ରସୂତୀ ଭଲ ହୋଇଗଲା; ବଞ୍ଚିଗଲା ।

ଦୁଇଦିନ ରହି କଲିକତା ଫେରିଗଲି । ମନ ଖୁସିରେ ଦିନେ ସାଙ୍ଗ ଧୀରାନନ୍ଦର କଥାରେ ପଡି ଚନ୍ଦନ ନଗରରୁ ଆସୁଥିବା "ସିଦ୍ଧିବରଫ, ମଲାଇ ବରଫ" ଖାଇ ଯେଉଁ ଅପଦସ୍ତ ଅବସ୍ଥାକୁ ଆସି କୃଷ୍ଣ ବାବୁଙ୍କ ପାଖରୁ ଭର୍ତ୍ସନା ଶୁଣିଥିଲି, ସେଟା ଅନ୍ୟତ୍ର କହି ସାରିଛି ।

କଲିକତା ଦେଖିବା ପରେ ମୁଁ ଏତେ ବାଉଳା ହୋଇଯାଇଥିଲି ଯେ, ମୁଁ କହୁଥିଲି, ଯେଉଁ ଓଡିଆ ଛାତ୍ର କଲିକତା ନ ଦେଖିଛି ତାକୁ ଏମ୍.ଏ. ଉପାଧି ଦେବା ଉଚିତ୍ ନୁହେଁ । ଯିଏ କଲିକତା ଦେଖିନି, ସେ କିଛି ଦେଖିନି । ଯେଉଁ ୬ମାସ ମୁଁ କଲିକତାରେ ରହିଲି, ସେହି ସମୟତକ ମୁଁ କଲିକତା ଘୂରାଘୂରି କରି ଦିନ କଟେଇଲି । ସକାଳୁ ଉଠି ବସିଲା ମାତ୍ରେ ହୋଟେଲରୁ ଦେଖେ ମହାତ୍ମାଗାନ୍ଧୀ ରୋଡରେ ଲୋକେ କାପ୍ ପରେ କାପ୍ ଚାହା ପିଉଛନ୍ତି । କେହି କେହି ପାଖ ମିଠା ଦୋକାନରେ କଚୁରୀ, ନ ହେଲେ ପୁରୀ ଚାରିପଇସାକୁ ଚାରିଟା ଲେଖାଁ ଖାଉଛନ୍ତି । ମୋର ସକାଳୁ ଜଳଖିଆ ହେଲା ଅଙ୍ଗୁର ଛଟାଙ୍କିଏ । ଦାମ ଦୁଇ ଅଣା । ହୋଟେଲରେ କଞ୍ଚା ଇଲିସି ମାଛର ଝୋଳ ସହିତ ଭାତ ଖାଇ ୟୁନାଇଟେଡ ପ୍ରେସ୍ ଯାଏ, ଟ୍ରେନିଂପାଇଁ ଟ୍ରାମ୍‌ରେ । ପ୍ରଥମ ଦିନ ଫେରିଲା ବେଳେ ମୁଁ ରାସ୍ତା ଭୁଲିଗଲି । କୃଷ୍ଣ ବାବୁ କହିଥାନ୍ତି- ରାସ୍ତା ଭୁଲିଗଲେ ପୁଲିସକୁ ପଚାରିବୁ, ଆଉ

କାହାକୁ ନୁହେଁ । ତେଣୁ ୪-୬ ଟା ପୁଲିସକୁ ପଚାରି ପଚାରି ସବା ଶେଷରେ ସଂଧ୍ୟା ୭ଟାରେ ହୋଟେଲରେ ଆସି ପହଞ୍ଚିଲି । କି ଆଶ୍ୱସ୍ତି !

ଅଫିସରେ ଦିନ ଯାକ ୧୦-୨୦ ଟା ଟାଇପ୍ ମେଶିନ୍‌ର କର୍ଣ୍ଣକଟୁ ଖଟ ଖଟ ଶବ୍ଦ ଭିତରେ ବୁଡ଼ିରହିଥାଏ । ସାଙ୍ଗ ସାମ୍ବାଦିକମାନଙ୍କ ପାଖରୁ ବୁଝାବୁଝିକରି, ନହେଲେ ତାଙ୍କ କଥାବାର୍ତ୍ତାରୁ ପାଠଶିଖେ । ମଝିରେ ମଝିରେ ଡାଇରେକ୍‌ଟର ପାଖରୁ ଉପଦେଶ ନିଏ । ରବିବାର ଦିନ କିଛି କାମ ନଥାଏ । ସେଦିନ କଲିକତା ସହର ବୁଲେ, ୬ ଅଣା ପଇସା ଦେଲେ ଟ୍ରାମ୍‌ରେ ଯେଣେ ଇଚ୍ଛା ତେଣେ ଯାଇହୁଏ । ସକାଳୁ ରାତି ପର୍ଯ୍ୟନ୍ତ ସେଇ ଏକା ରାସ୍ତାରେ ତିନିଥର-ଚାରିଥର ମଧ୍ୟ ଯାଏ । ରହଣି ଭିତରେ ମୁଁ ହାବଡା ପୋଲ, ଚଉରଙ୍ଗି, ଡେଲହାଉସି ସ୍କୋୟାର, ସେକ୍ରେଟେରିଏଟ୍, ହେଡପୋଷ୍ଟ ଅଫିସ୍, ଚିଡିଆଖାନା, ମିଉଜିୟମ, ମେଟ୍ରୋସିନେମା, ଭିକ୍‌ଟୋରିଆ ମେମୋରିୟାଲ, ଶ୍ରଦ୍ଧାନନ୍ଦ ପାର୍କ, ଚିତ୍ତରଞ୍ଜନ ପାର୍କ ଓ ଆହୁରି ଅନେକ ଅନେକ ଦର୍ଶନୀୟ ସ୍ଥାନ ବୁଲି ଦେଖିଛି; ସବୁ ସିନେମା, ରଙ୍ଗ ମହଲ, ବଙ୍ଗାଳୀ ନାଟକ ଦେଖିଛି । ମିନାରଭା ଆଦି ଥିଏଟରରେ, ମେଟ୍ରୋ ସିନେମାରେ ଥିଏଟର ଦେଖିଛି; ଇଡେନ୍ ଗାର୍ଡେନ୍‌ରେ ଫୁଟବଲ ଖେଳ ଦେଖିଛି । ବାପା, ଭାଇ ଓ ଏପରିକି ଗାଁର ଲୋକମାନଙ୍କୁ ବୁଲାଇ ଦେଖାଇଛି । ସାଙ୍ଗସାଥୀ କେହି ନାହିଁ । ଏକା ଏକା ଧୋତି, ପଞ୍ଜାବି ପିନ୍ଧି ବଙ୍ଗଳାରେ କଥାବାର୍ତ୍ତା କରି କଲିକତା ସହର ଧନ୍ଦିଦେଇଛି । ବୁଲୁ ବୁଲୁ ଥରେ ଧର୍ମତାଲା ଷ୍ଟ୍ରିଟର ଗୋଟିଏ ଚର୍ଚ୍ଚର ପ୍ରାଙ୍ଗଣରେ ଲଟାରୀ ଖେଳରେ ବି ଯୋଗଦେଇଛି । ଦୁଇ ଅଣା ପଇସାରେ ଟଙ୍କାଟିଏ ପାଇଛି । କଲିକତା ଦେଖାରେ ମନ ମାନିଗଲା । ଟ୍ରେନିଂ ସରିଲା ଏବଂ ମୁଁ ଘରକୁ ଫେରିଲି ନୂଆ ଚାକିରିରେ ଯୋଗଦେବା ପାଇଁ । ସାର୍ଟିଫିକେଟ୍‌ଟିଏ United Press ର ବିଧୁବାବୁ ପାଖରୁ ଆଣି ଦେଓ୍ୱାନ ନିଯୋଗୀଙ୍କୁ ଦେଲି । ସେତେବେଳକୁ ମୋର ସେକ୍ରେଟେରିଏଟକୁ ବଦଳି ହୋଇଯାଇଥାଏ । ଚାରି-ଛଅ ଦିନରେ ମୁଁ ହାଇସ୍କୁଲ ଛାଡିଲି । ପାଠ ପଢାଇବାର ଅଭିଳାଷ ମୋର ଆପାତତଃ ସରିଗଲା ।



## ॥ ପଇଁତିରିଶ ॥

ବାରିପଦା ହାଇସ୍କୁଲ ଛାଡି ମୟୂରଭଞ୍ଜ ସେକ୍ରେଟେରିଏଟ୍‌ରେ ଯୋଗଦେଲି। ଷ୍ଟେଶାଲ ଏସିଷ୍ଟେଣ୍ଟ। ଏସିଷ୍ଟେଣ୍ଟ ମାନେ ଯେ କିରାଣୀ, ଏ କଥା ମୁଁ ଜାଣି ନଥିଲି; ଦରମା ସେଇ ୭୦ ଟଙ୍କା। ପିଲା-ପିଲି ପୁଣି ବାରିପଦା ଆସିଗଲେ। ଜଣା ଯାଉଥାଏ ଯେମିତି ଏଇଟା ଆଉ ଗୋଟିଏ ଜାଗା। ମହାରାଜାଙ୍କ ଓ ଦେୱାନଙ୍କ ଅଫିସକୁ ମିଶାଇ ସେଇଟାକୁ ସେକ୍ରେଟେରିଏଟ୍ କୁହାଯାଉଥାଏ। ଫରେଷ୍ଟ ଅଫିସ ପାଖର ଖୁବ୍ ବଡ କୋଠାଟା; ତାହାରି ପାଖକୁ ହାଇକୋର୍ଟ। ମୁଁ ଜଏନ୍ କଲା ବେଳେ ସେକ୍ରେଟେରୀଏଟରେ ଥାନ୍ତି ଦେୱାନ (ସେକ୍ରେଟେରୀ), ମୁଖାର୍ଜୀ (ଏସିଷ୍ଟେଣ୍ଟ ସେକ୍ରେଟେରୀ), ଆଉ ଏକ ମୁଖାର୍ଜୀ (ସୁପରିଟେଣ୍ଡେଣ୍ଟ), ଏ.କେ. ବସୁ, ମଦନ ବାବୁ, ଭଗବାନ ବାବୁ, ଜୀବନ ବାବୁ ଏବଂ ବିଜୟ୍ ବାବୁ। ସେକ୍ରେଟେରିଏଟ୍ ହଲ ଭିତରେ ଗୁଡାଏ କାଠ- କେବିନ୍। ଗୋଟିକରେ ସୁପରିଟେଣ୍ଡେଣ୍ଟ ବସନ୍ତି। ମୋତେ ଯେଉଁ କେବିନ୍‌ଟି ମିଳିଲା, ତା ଭିତରେ ଜଣେ ଏସିଷ୍ଟେଣ୍ଟ ସହିତ ମୁଁ ବସିଲି। "ମୟୂରଭଞ୍ଜ ଗେଜେଟ", "ଭଞ୍ଜ ପ୍ରଦୀପ", "ମୟୂରଭଞ୍ଜ କ୍ରନିକଲ", "ପ୍ରଜାସଭା", ସଂକ୍ରାନ୍ତ ସବୁ ଫାଇଲ ମୋତେ ଦିଆଗଲା। କାଳକ୍ରମେ ଛାପାଖାନା "ଭଞ୍ଜ ପ୍ରଦୀପ" ଅଫିସକୁ ଉଠିଆସିଲା। "ଭଞ୍ଜ ପ୍ରଦୀପ" କିରାଣୀଟି ସହିତ "ପ୍ରଜାସଭା" ପାଇଁ ମଧ୍ୟ ଜଣେ କିରାଣୀ ରହିଲା।

ସେତେବେଳେ ଆଦିବାସୀମାନଙ୍କୁ ଚାକିରରେ ରଖିବାର ନୀତି ଅନୁସୃତହେଲା। ମୋ ପାଖରେ ପିଅନ ରହିଲା ମାଲଦାସ ମାଝୀ, ଦରମା ୮ ଟଙ୍କା। ସାନ୍ତାଳ ପିଅନଟିଏ ମୋତେ ମିଳିବାରୁ ମୋର ସ୍ତ୍ରୀ ଦୁଃଖ କଲେ। କାରଣ ସାନ୍ତାଳମାନେ "ପାଣିଚଳ" ନୁହନ୍ତି। ସେ ପାଣି ଆଣିଲେ ଆମେ ଖାଇବୁନି। ସେ ଟଙ୍କାରେ ଚାରି ସେର ହିସାବରେ ଚାଉଳ ପାଉଥାଏ। ସେତେବେଳେ ଆମେ ବଜାରରୁ ଦୁଇ ସେର କିଣୁ ଥାଉ। ମାଲ ଦାସ ହାଣ୍ଡିଆ ଦୋକାନ କଲା। କୋ-ଅପରେଟିଭ୍ ଡିପାର୍ଟମେଣ୍ଟର ପିଅନ ଚୈତନ୍ୟ ମାଝୀର ସ୍ତ୍ରୀକୁ ସାଙ୍ଗକଲା ଏବଂ ଦୁହେଁ ହେଇ ହାଣ୍ଡିଆ ବେପାର କଲେ। ବେପାର ବେଶ୍ ଚାଲିଲା। ମାଲଦାସର ତଥାକଥିତ ସ୍ତ୍ରୀ ଦେହଯାକ ରୁପା ଗହଣାରେ ଛାଇହୋଇଗଲା। ଚୈତନ୍ୟ ମାଝୀ ମଧ୍ୟ ତା ସ୍ତ୍ରୀ ପାଖକୁ ଯେବେତେବେ ଆସେ। ଦିନେ କ'ଣ ହେଲା କେଜାଣି, ଚୈତନ୍ୟ ତା ସ୍ତ୍ରୀକୁ ଖୁବ୍ ବାଡିଆବାଡିକରି ସବୁ ଗହଣାଗଣ୍ଡି ନେଇଗଲା। ମୁଁ ଅଫିସରୁ ଫେରି ଦେଖିଲା ବେଳକୁ, ମାଲଦାସ ଓ ଚୈତନ୍ୟର ସ୍ତ୍ରୀ ଆମ ଘରେ ବସିଛନ୍ତି। ମୁଁ ଦୁହିଁଙ୍କୁ ନେଇଗଲି, ମୋର ବନ୍ଧୁ ତଥା ଏସିଷ୍ଟେଣ୍ଟ ରେଜିଷ୍ଟ୍ରାର ମହେଶ୍ୱର ବାବୁ ପାଖକୁ ଏବଂ ମାଲଦାସକୁ ତାର ଆପତ୍ତି ଅଭିଯୋଗ ଜଣେଇବାକୁ କହିଲି। ମାଲଦାସ କହିଲା-

"ଦେଖ୍‌ନା ବାବୁ ଚୈତନ୍ୟ ବାବୁ ମୋର ତିର୍ଲ୍ଲୀକେ ମାରିକିରି କେମିତି ଗହଣା ସବୁ ନେଇ ଗଲେ"। ମହେଶ୍ୱର ବାବୁ ମାଲ ଦାସର ଓଡିଆ ଭାଷା ଅପପ୍ରୟୋଗ ଶୁଣି ଠୋ ଠୋ ହୋଇ ହସିଲେ, ମୁଁ ବି ହସ ସମ୍ଭାଳି ପାରିଲିନି।

ଅଫିସରେ ମାଲଦାସକୁ କଳସିରେ ପାଣି ଆଣିବା ଦାୟିତ୍ୱ ଦିଆହୋଇଥାଏ। ଆମକୁ ସ୍ଥାନର ଅଭାବ ହେବାରୁ (ତିନି ଜଣ କିରାଣୀ, ଜଣେ ପିଅନ, ଜଣେ ଅଫିସର) ସେକ୍ରେଟେରୀଏଟ୍ ହଲ ଭିତରୁ ବାହାରି ଆସି ମୟୂରଭଞ୍ଜ ଷ୍ଟେଟ ବ୍ୟାଙ୍କ ପାଖ ଯୋଡିଏ କୋଠରୀରେ ଅଫିସ କଲୁଁ। ମୁଁ ନିଜକୁ ଅଫିସର କହିପାରେନି। ଧୋତି ପଞ୍ଜାବି ପିନ୍ଧି କେହି ଅଫିସର ହୋଇପାରେ ? ଅନ୍ୟ ସବୁ ଅଫିସର ବଙ୍ଗାଳୀ, ବାହାରୁ ଆସିଥାନ୍ତି। ସେମାନଙ୍କର ସବୁ ପେଣ୍ଟ, ସାର୍ଟ, ଟାୟ୍। ବଣ ଜଙ୍ଗଲ ଇଲାକାରେ ସେହିମାନେ ସାହେବ, ଅଫିସର। ଗୋଟେ ହୀନମନ୍ୟତା କ୍ରମେ କ୍ରମେ ମୋତେ ଗ୍ରାସକଲା; ମୁଁ ନା କିରାଣୀ ନା ଅଫିସର। ମହାରାଜା ଓ ଦେୱାନ ମୋତେ ଅଫିସର ବୋଲି ଭାବନ୍ତି, କିନ୍ତୁ ମୁଁ ସ୍ପେଶାଲ ଏସିଷ୍ଟେଣ୍ଟ। ଅଫିସର ନୁହେଁ। ଦେୱାନକୁ ଦିନେ କହିଲି, ସେ ସାଙ୍ଗେ ସାଙ୍ଗେ ଫାଇଲ ମଗାଇ ଅର୍ଡର କଲେ, "He may be designated Publicity Officer"।

ମୟୂରଭଞ୍ଜ ସରକାରରେ ୧୦୧ ଟଙ୍କା ଦରମା ନ ପାଇଲେ କେହି ଅଫିସର ବୋଲାଇବନି। ଅଡୁଆ ତେଣୁ ତୁଟିଲାନି। ମୋର ଦୁଃଖ କଥା ମହାରାଜାଙ୍କୁ କହିଲି। ସେ କହିଲେ- "ଭଞ୍ଜପ୍ରଦୀପ" ଯେବେ ଠିକ୍ ସମୟରେ ବାହାରିବ ତେବେ ତୁମକୁ ୭୦ ଟଙ୍କା ଯାଗାରେ ୧୦୧ ଟଙ୍କା ମିଳିବ।' କିନ୍ତୁ ଛାପାଖାନାଟା ମୋ ଅଧୀନରେ ନାହିଁ। ଯାହାହେଉ, ଠିକ୍ ସମୟରେ ଛାପିବା ଦାୟିତ୍ୱ ମୋତେ ଦିଆହେଲା। କିନ୍ତୁ ପରମାନନ୍ଦ ଆଚାର୍ଯ୍ୟ ଥା'ନ୍ତି Press Officer। ଅତଏବ ଏ ଦ୍ୱୈତ୍ୟଶାସନରେ "ଭଞ୍ଜପ୍ରଦୀପ" ଠିକ୍ ସମୟରେ ବାହାରିଲା ନାହିଁ। ଅନେକ ବର୍ଷ ପରେ ବନ୍ଧୁ ଆୟସରେ ଯେତେବେଳେ ବାହାରିଲା, ସେତେବେଳେ ମୁଁ ପତ୍ରିକାର ଖଣ୍ଡିଏ କପି ନେଇ ରାଜବାଟୀକୁ ଗଲି। ମହାରାଜା ତାଙ୍କ ଶୋଇବା ଘର ବାରଣ୍ଡାରୁ ମୋତେ ଦେଖିପକାଇ ଚିତ୍କାର କଲେ, "ଯାଅ ! ତୁମର ୧୦୧ ଟଙ୍କା କରିଦେଇଛି। ଉପରକୁ ଆସିବାର ଦରକାର ନାହିଁ।" ଯାହାହେଉ, ଅଫିସଟା ସବୁଦିନ ଗଣ୍ଡଗୋଳିଆ ରହିଲା। ଆଦୌ ଶୃଙ୍ଖଳା ନାହିଁ; ଏ ନୂଆ ହୋଇ ଖୋଲିଥିବା ଡିପାର୍ଟମେଣ୍ଟ୍‌ପାଇଁ କାହାରି ସହାନୁଭୂତି ନାହିଁ। ଯେଉଁମାନେ ମାଲିକ, ସେମାନେ office କଥା କିଛି ବୁଝନ୍ତିନି। ଗଧ ଖଟଣି ସାର। ଅସନ୍ତୋଷ, ଅଶାନ୍ତି ସବୁବେଳେ। ଦେୱାନ ବୁଝନ୍ତି ପବ୍ଲିଶିଟି କଥା। ମହାରାଜା ବୁଝନ୍ତି ପ୍ରଜାସଭା କଥା। ସେକ୍ରେଟେରୀ ବୁଝନ୍ତି ଦରମା କଥା।

ମୋର ପ୍ରଥମ ଓ ପ୍ରଧାନ ଦାୟିତ୍ୱ ହେଲା ପବ୍ଲିଶିଟି ବା ସାମ୍ବାଦିକତା । ଦେଓ୍ୱାନ ସାହେବ ଲେଖାଲେଖି କରି Statesmen ପତ୍ରିକା ତରଫରୁ ଅଫିସର କଣେ କିରାଣୀକୁ ସମ୍ବାଦଦାତା ନିଯୁକ୍ତ କରାଇଥା'ନ୍ତି । ତା'ରି ନା'ରେ ସବୁ ସମ୍ବାଦ ପଠାହୁଏ । ପ୍ରଥମ ଯେଉଁ ସମ୍ବାଦ ପଠେଇଥିଲି, ତାହା ହେଲା "ମୟୂରଭଞ୍ଜ ହାଇକୋର୍ଟରୁ ଦେଓ୍ୱାନ ଅବ୍ୟାହତି ନେବା ଫଳରେ ବିଚାର ବିଭାଗ ସ୍ୱତନ୍ତ୍ର ଓ ସ୍ୱାଧୀନ ହେଲା" । ସମ୍ବାଦଟି ନିଜେ ଦେଓ୍ୱାନ ଡାକି ଦେଇଥିଲେ । ମୁଁ ସେତେବେଳେ ତାର ଗୁରୁତ୍ୱ କିଛି ବୁଝି ନଥିଲି । ସମ୍ବାଦ ପଠାଇବା ବାବଦକୁ କିଛି କିଛି ପଇସା ମଧ୍ୟ ମଝିରେ ମଝିରେ ଆସୁଥିଲା । ଫୁଟବଲ ଖେଳ ସମୟରେ ବହୁତ ସମ୍ବାଦ ଯାଉଥିଲା ଏବଂ ୨୫-୫୦ ଟଙ୍କା ମିଳି ଯାଉଥିଲା । ମହାରାଜା ସାହେବ ଏହି ସମୟରେ ଗୋଟିଏ କଥା ମୋତେ କହିଥିଲେ, "ଯଦି କୌଣସି ପତ୍ରିକାରେ ମୟୂରଭଞ୍ଜ ବିରୁଦ୍ଧରେ କିଛି ଖବର ବାହାରିଲା ତେବେ ତାକୁ କେବଳ ବାକ୍ୟରେ ବିରୋଧ ନ କରି, ତଥ୍ୟ ଛାପି ଖଣ୍ଡନ କରିବାକୁ ପଡ଼ିବ ।"

"ଭଞ୍ଜ ପ୍ରଦୀପ" ଓ "କ୍ରନିକ୍ଲ" ହେଉଛି ଆମ ସେକ୍‌ସନ୍‌ର ଆଉ ଗୋଟିଏ ଗୁରୁତ୍ୱପୂର୍ଣ୍ଣ ବିଭାଗ । କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ଅମଳରୁ ମୟୂରଭଞ୍ଜରେ ନାନା ପତ୍ରପତ୍ରିକା କେତେ ବେଳେ କେମିତି ବାହାରିଛି । ଯୁଗେ ଯୁଗେ ମୟୂରଭଞ୍ଜର ମହାରାଜାମାନେ ଓଡ଼ିଆ ସାହିତ୍ୟର ଶ୍ରୀବୃଦ୍ଧିପାଇଁ ପ୍ରଚେଷ୍ଟା ବା ସାହାଯ୍ୟ କରିଛନ୍ତି । ସ୍ଥାନୀୟ ପତ୍ରପତ୍ରିକା ମଧ୍ୟ ବାହାରିଛି । ପ୍ରେସ୍‌ର ପ୍ରକୃତ ଉନ୍ନତିହେଲା ପ୍ରିଣ୍ଟର ପଦ୍ମଚରଣ ଦାସଙ୍କଯୋଗୁଁ । ସେ "ପୂର୍ଣ୍ଣଚନ୍ଦ୍ର ଭାଷାକୋଷ"ରେ କାମ କରୁଥିଲେ । ସେ ଅନ୍ତଃକରଣରେ ମୟୂରଭଞ୍ଜ ଷ୍ଟେଟ ପ୍ରେସ୍‌ର ସର୍ବବିଧ ଉନ୍ନତିକାମନା କରିଥିଲେ । ଡଃ. ପି.କେ. ସେନ ଯେତେବେଳେ ମୟୂରଭଞ୍ଜକୁ ଦେଓ୍ୱାନ ହୋଇ ଆସିଲେ, ସେତିକିବେଳେ ସେ "ମୟୂରଭଞ୍ଜ ଗେଜେଟ୍" ବୋଲି ପତ୍ରିକାଟି ବାହାରକଲେ । ଉଭୟ ସାହିତ୍ୟ ପତ୍ରିକା ଓ ଗେଜେଟ୍‌ର କାମ ସେହି ପତ୍ରିକା କରୁଥିଲା । ମହାରାଜାଙ୍କର ହୁକୁମ ସହିତ ବିଭିନ୍ନ ବିଭାଗର ଉନ୍ନତିମୂଳକ କାର୍ଯ୍ୟକଳାପ, ସରକାରୀ କର୍ମଚାରୀମାନଙ୍କର ପ୍ରବନ୍ଧ ଏବଂ ବାହାର ଲେଖକଙ୍କର ସାହିତ୍ୟ ଏକତ୍ର ମିଶି ସେହି ଛୋଟ ପତ୍ରିକାଟିରେ ପ୍ରକାଶିତ ହେଉଥିଲା । Imitation art paper ରେ ମୁଦ୍ରଣ ପରିପାଟି ବେଶ୍ ସୁନ୍ଦର, ଛବିଳ, ବିଜ୍ଞାପନ ଭରା । ସୁଲଭ ମୂଲ୍ୟ; ଖଣ୍ଡିକ ତିନି ଅଣା । ପ୍ରାଇମେରୀ ସ୍କୁଲ ପର୍ଯ୍ୟନ୍ତ ବିନା ପଇସାରେ ଯାଏ । ସେହି ପତ୍ରିକାଟିର ବହୁବିଧ ଉନ୍ନତି କରିଥିଲେ ସମ୍ପାଦକ ଆକାରରେ ସୁନାମଧନ୍ୟ କବି, ଲେଖକ ଶ୍ରୀ କାଳିନ୍ଦୀ ଚରଣ ପାଣିଗ୍ରାହୀ । ପତ୍ରିକାଟି ପ୍ରତି ତିନି ମାସରେ ବାହାରୁ ଥିଲା । ଯାହାକୁ "Quarterly" କୁହାଯାଏ । ବଜାର ଦର, ପାଣିପାଗର ବିବରଣୀ ମଧ୍ୟ ତା ଭିତରେ ରହୁଥିଲା । ଏପରିକି ଆଇନ୍

ଅଦାଲତର ଗୁରୁତ୍ୱପୂର୍ଣ୍ଣ ରାୟ ମଧ୍ୟ ପ୍ରକାଶିତ ହେଉଥିଲା। ପି.କେ. ସେନ୍‌ଙ୍କ ପରେ ଦେୱାନ କେ.ସି. ନିୟୋଗୀ ଅନେକ କିଛି ପରିବର୍ତ୍ତନ ଆଣିଲେ। "ମୟୂରଭଞ୍ଜ ଷ୍ଟେଟ ଗେଜେଟ୍", "ଭଞ୍ଜପ୍ରଦୀପ", "ମୟୁରଭଞ୍ଜ କ୍ରନିକ୍ଲ" ସହିତ ଖଣ୍ଡେ ଗେଜେଟ୍‌ର କ୍ରୋଡ (supplement) ପତ୍ରଟିଏ ମଧ୍ୟ ପ୍ରକାଶିତହେଲା। ସେ କ୍ରୋଡପତ୍ରରେ ଜନସାଧାରଣଙ୍କୁ ସମ୍ବାଦ ଓ ଶିକ୍ଷାମୂଳକ ନାନାକଥା ଜଣାଇ ଦିଆଯାଉଥିଲା। ମୟୁରଭଞ୍ଜ କ୍ରନିକଲର proof ନିୟୋଗୀ ସାହେବ ନିଜେ ଦେଖୁଥିଲେ। ସେ କାର୍ଯ୍ୟରେ ସେ ଧୁରନ୍ଧର। ମୟୁରଭଞ୍ଜରେ ଯାହା କିଛି ଆଧୁନିକ ଏବଂ ଉନ୍ନତିମୂଳକ ଓ ପ୍ରଗତିମୂଳକ କାର୍ଯ୍ୟ ହୋଇଛି ସବୁ ନିୟୋଗୀ ସାହେବଙ୍କର ଦାନ। କାଳକ୍ରମେ ସେ ପୁନର୍ବସତି ବିଭାଗର ଏବଂ ପରେ ରେଲୱାୟି ବିଭାଗର କେନ୍ଦ୍ର ମନ୍ତ୍ରୀ ହୋଇ ଦିଲ୍ଲୀ ଚାଲିଗଲେ। ଇଷ୍ଟର୍ଣ୍ଣ ଷ୍ଟେଟ୍ ଏଜେନ୍‌ସି ପବ୍ଲିଶିଟି ବିଭାଗର କର୍ମଚାରୀ ହୋଇ କାଳିନ୍ଦୀ ଚରଣ ମୟୁରଭଞ୍ଜ ଛାଡ଼ିଲେ।

ମୋର କିରାଣୀ ବନ୍ଧୁଟି ମୋତେ ଅନେକ ସାହାଯ୍ୟ କରନ୍ତି, ଉତ୍ସାହ ଓ ଆଶ୍ୱାସନା ଦିଅନ୍ତି। ମୁଁ ତାଙ୍କରି ପାଖରୁ ପାଏ ପଦ୍ମଚରଣ ଦାସ ବୋଲି ପ୍ରିଣ୍ଟର। ସେ ଅକଥନୀୟ ପରିଶ୍ରମ ସହ୍ୟ କରିପାରନ୍ତି ଏବଂ ଅନେକ ସମୟରେ ସେ ବନ୍ଧୁ ଆକାରରେ ମତେ କର୍ମରେ ପ୍ରେରଣା ଯୋଗାଇଥା'ନ୍ତି। "ଭଞ୍ଜପ୍ରଦୀପ" ପତ୍ରିକାଟି "ତିନିମାସିଆ ଛବିଳ"। ଅର୍ଥାତ୍ ଅନେକ ଫଟୋଗ୍ରାଫ ଓ ଚିତ୍ର ସେଥିରେ ପ୍ରକାଶ ପାଏ। ପ୍ରଥମେ ପ୍ରଥମେ ମୟୁରଭଞ୍ଜ କଲେଜରେ କାମ କରୁଥିବା କର୍ମଚାରୀମାନେ ତାଙ୍କ ଡିପାର୍ଟମେଣ୍ଟ ସଂକ୍ରାନ୍ତ ଲେଖାମାନ ଦେଇଥାନ୍ତି। "ମୟୁରଭଞ୍ଜ କ୍ରନିକଲ" ବି ପ୍ରାୟ ସେହି ସାଇଜର। ସେଠି ବାହାର ଲେଖକ ଲେଖା ଦିଅନ୍ତି। ସନ୍ତ ନିହାଲ ସିଂ ପ୍ରତ୍ୟେକ ଫଟୋ ସମ୍ବଳିତ ଲେଖାପାଇଁ ୫୦ଟଙ୍କା ଲେଖାଏଁ ନିଅନ୍ତି। "ଭଞ୍ଜ ପ୍ରଦୀପ"ର ଲେଖକମାନଙ୍କୁ ମଧ୍ୟ ପାରିଶ୍ରମିକ ଦିଆଯାଇଥାଏ। ରାୟ ବାହାଦୂର ଗୋପାଳ ପ୍ରହରାଜ, ଶଶିଭୂଷଣ ରାୟ, ଗିରିଜା ଶଙ୍କର ରାୟ, ବିପିନ ବିହାରୀ ରାୟ, ଲକ୍ଷ୍ମୀକାନ୍ତ ମହାପାତ୍ର, ନିତ୍ୟାନନ୍ଦ ମହାପାତ୍ର, ମାୟାଧର ମାନସିଂହ, ମହେଶ୍ୱର ନାଏକ, ରାମକୃଷ୍ଣ ନନ୍ଦ ଏମିତି ବଡ ବଡ ଓଡ଼ିଆ କବି ଓ ଲେଖକଙ୍କ ଲେଖା "ଭଞ୍ଜ ପ୍ରଦୀପ"ରେ ପ୍ରକାଶିତହୁଏ। ସେମାନଙ୍କୁ ମଧ୍ୟ କାହାକୁ କେମିତି ସେଇ ୫୦ ଟଙ୍କା ହାରରେ ପାରିଶ୍ରମିକ ଦିଆଯାଇଥାଏ। ପତ୍ରିକାଟି ୩୦-୪୦ ବଡ ବଡ ପୃଷ୍ଠା ହୁଏ। ଚାରି ପୃଷ୍ଠା ଦେଶୀୟ ରାଜ୍ୟ ସମାଚାର, ଆଉ ଚାରିପୃଷ୍ଠା ମୟୁରଭଞ୍ଜ ସମ୍ବନ୍ଧୀୟ ସମ୍ବାଦ ଦିଆଯାଇଥାଏ। "ମୟୁରଭଞ୍ଜ ଗ୍ରେଜେଟ୍"ର ଧାନ ଚାଉଳ ଦର ବା ପାଣିପାଗ ବିବରଣୀ "ଭଞ୍ଜ ପ୍ରଦୀପ"ରୁ ଉଠାଇ ଦିଆଯାଉଥିଲା। ପତ୍ରିକାଟିର ଦାମ୍ ତିନି ଅଣା, ବର୍ଷକୁ ବାର ଅଣା। ଫଟୋସବୁ କଲିକତାରୁ ବ୍ଲକ ହୋଇ ଆସେ, ରଙ୍ଗିନ ଛବି

(painting) ବାରିପଦା ପ୍ରେସ୍‌ରେ ମଧ୍ୟ ଛପା ହେଉଥିଲା । ବିଦ୍ୟାଧର ବର୍ମା ଓ ଗୋପାଳ କାନୁନ୍‌ଗୋ ଦୁଇଜଣଙ୍କ ଛବି ମଧ୍ୟ କେତେବେଳେ କେମିତି "ଭଞ୍ଜ ପ୍ରଦୀପ"ରେ ଛପା ହେଇଛି, ପତ୍ରିକାଟି ସର୍ବମୋଟ ପ୍ରାୟ ୧୦୦ କପି ଛପା ହେଉଥିଲା । ତହିଁରୁ ଅଧିକାଂଶ କପି ଲେଖକମାନଙ୍କୁ ପୋଲାରେ ଯୋଗାଇ ଦିଆଯାଉଥିଲା ।

କାଳିନ୍ଦୀ ଚରଣ ପାଣିଗ୍ରାହୀ ୧୦୧ ଟଙ୍କା ଦରମା ପାଇ ଭଞ୍ଜ ପ୍ରଦୀପର ସମ୍ପାଦକ ହେଲେ । ସେତେବେଳେ ତାଙ୍କ ଭାଇ ଦିବ୍ୟସିଂହ ପାଣିଗ୍ରାହୀ ମୟୂରଭଞ୍ଜର ସରକାରୀ ଓକିଲ ଥା'ନ୍ତି । ତାଙ୍କ ଆଗରୁ ପଣ୍ଡିତ ଗୋପବନ୍ଧୁ ସେଇ କାମ କରୁଥିଲେ । କାଳିନ୍ଦୀ ବାବୁ ଇଷ୍ଟନ୍ ଷ୍ଟେଟ୍‌ସ ଏଜେନ୍‌ସିକୁ ଚାଲିଯା'ନ୍ତେ, ହରିହର ମହାପାତ୍ର ନାମକ ବାରିପଦା ହାଇସ୍କୁଲର ଶିକ୍ଷକ କେତେଦିନପାଇଁ ଅସ୍ଥାୟୀଭାବରେ ଏ ଦୁଇ ପତ୍ରିକାର ସହକାରୀ ସମ୍ପାଦକ ହୋଇଥିଲେ । Chief Revenue Officer ରାଧା ଗୋବିନ୍ଦ ଦାସ ଉଭୟ ପତ୍ରିକାର ସମ୍ପାଦକ ଦାୟିତ୍ୱରେ ଥିଲେ । ମୁଁ ପ୍ରଥମେ ସହକାରୀ ସମ୍ପାଦକ ଆକାରରେ କିଛି ବର୍ଷ ରହି, ପରେ ଅନ୍ୟାନ୍ୟ କାର୍ଯ୍ୟ ସହିତ ସମ୍ପାଦନା ମଧ୍ୟ କରୁଥିଲି । ଯେତେଯେତେ ନୂଆ ଆଇନ୍ କାନୁନ୍ ରାଜ୍ୟରେ ପ୍ରଚଳିତ ହେଇଥାଏ, ସେଗୁଡ଼ିକର ତର୍ଜମା ଚାରି ପୃଷ୍ଠିଆ କ୍ରୋଡପତ୍ରରେ ଛପା ଯାଉଥାଏ । ଦ୍ୱିତୀୟ ମହାଯୁଦ୍ଧ ଆସିଲା ବେଳକୁ ମୟୁରଭଞ୍ଜ ୱାର ସପ୍‌ଲିମେଣ୍ଟଟିଏ ଗେଜେଟ୍‌ରେ ଯୋଡାଗଲା । ପୁଣି ଯେତେବେଳେ ପ୍ରଜାମଣ୍ଡଳ ଆନ୍ଦୋଳନ ରାଜ୍ୟରେ ବ୍ୟାପିବାକୁ ଲାଗିଲା, ସେତେବେଳେ ମହାରାଜା କୃଷ୍ଣଚନ୍ଦ୍ର ଅମଳର "ମୟୁରଭଞ୍ଜ" ବୋଲି ପତ୍ରିକାର ପ୍ରଚାରପାଇଁ ହସ୍ତାକିଆ ପତ୍ରିକାଟିଏ ବାହାର କରାଗଲା । ସେଇ ସମୟରେ ଦିଲ୍ଲୀରେ ଦେଶୀୟ State Publicity Officer ମାନଙ୍କର ଯେଉଁ ଟ୍ରେନିଂର ବ୍ୟବସ୍ଥା ହୋଇଥିଲା, ସେଥିରେ ମୁଁ ଯୋଗଦେଇଥିଲି ।

ଏହି ସମୟରେ ମୟୁରଭଞ୍ଜରେ ଶରତ ଚନ୍ଦ୍ର ଦାସଙ୍କ ନେତୃତ୍ୱରେ ପ୍ରଜାମଣ୍ଡଳର ଆନ୍ଦୋଳନର ସୂତ୍ରପାତ ହେଲା । ବେତନଟୀ, ଆମ୍ବଯୋଡାରେ ପ୍ରଜାମଣ୍ଡଳର କ୍ୟାମ୍ପ ଖୋଲିଲା । ନିୟୋଗୀ ଜଣେ ବିଚକ୍ଷଣ ଦୂରଦର୍ଶୀ ଶାସକ ଥାଇ ମୟୁରଭଞ୍ଜ ଶାସନ ତନ୍ତ୍ରରେ ଏକ ବୈପ୍ଳବିକ ପରିବର୍ତ୍ତନ ସୂତ୍ରପାତକଲେ । ସେତେବେଳେ ଚାରିଆଡ଼େ ଦାୟିତ୍ୱ ମୂଳକ ଶାସନର ହାୱା ବହୁଥାଏ । ତେଣୁ ମୟୁରଭଞ୍ଜରେ ପ୍ରଜାସଭାମାନ ପ୍ରତିଷ୍ଠିତ ହେଲା । ସାବାଳକ ଭୋଟରେ ନିର୍ବାଚିତ ଲୋକ- ପ୍ରତିନିଧିଙ୍କ ସହିତ ମନୋନୀତ ପ୍ରତିନିଧି ମିଶି ମୟୁରଭଞ୍ଜରେ ପାଞ୍ଚଟି ପ୍ରଜାସଭା ସ୍ଥାପିତହେଲା । ଚାରି ସବ୍-ଡିଭିଜନ୍‌ରେ ଚାରୋଟି ଏବଂ ବାରିପଦାରେ ଗୋଟିଏ- ଏହି ପ୍ରକାର ପାଞ୍ଚଟି ସଭା । ଲୋକ ପ୍ରତିନିଧି ମାନେ ଶିକ୍ଷା, ସ୍ୱାସ୍ଥ୍ୟ, ଜଳ ସରବରାହ ଓ ସାଧାରଣ ଆପତ୍ତି ଅଭିଯୋଗ ବିଷୟକ ପ୍ରଶ୍ନ

ଓ ପ୍ରସ୍ତାବ ଉପସ୍ଥାପିତ କରିପାରିବେ। ପ୍ରଜାସଭାମାନଙ୍କରେ ଏସ୍.ଡି.ଓ. ମାନେ ହେଲେ ସଭାପତି। କେବଳ ବାରିପଦାକୁ ଛାଡ଼ି, ସଦର ସବ୍-ଡିଭିଜନରେ ବାରିପଦା ମ୍ୟୁନିସପାଲଟି ଏରିଆପାଇଁ ରହିବ। ଏହି ସବୁ ସଭାର ସମସ୍ତ ଦାୟିତ୍ୱ ମୋରି ଉପରେ ନ୍ୟସ୍ତହେଲା। ପ୍ରଜାସଭାମାନଙ୍କ ସମ୍ପର୍କରେ ମହାରାଜାଙ୍କ ପାଖରୁ ମୁଁ ସିଧା ସଳଖ ଉପଦେଶ ନେଇପାରିବି ବୋଲି ବ୍ୟବସ୍ଥାହେଲା। ଅନ୍ତତଃ ବର୍ଷକୁ ଦୁଇଥର ପ୍ରଜାସଭାମାନ ବସିବ, ଲୋକ ପ୍ରତିନିଧିମାନଙ୍କର ପ୍ରଶ୍ନର ଉତ୍ତର ସରକାରୀ କର୍ମଚାରୀ ତଥା ପ୍ରତିନିଧିମାନେ ଯୋଗାଇଦେବେ; ପ୍ରସ୍ତାବ ଆଲୋଚିତହେବ ଏବଂ ଭୋଟଦ୍ୱାରା ଗୃହୀତହେବ। ପରେ ଗୃହୀତ ପ୍ରସ୍ତାବସବୁ ଆମ ଅଫିସକୁ ଆସିବ ଏବଂ ସରକାରୀ ମହଲରେ ତାର କାର୍ଯ୍ୟାନୁଷ୍ଠାନହୋଇ ଉତ୍ତର ପ୍ରଜା ପ୍ରତିନିଧିମାନଙ୍କୁ ଯୋଗାଇ ଦିଆଯିବ।

ପ୍ରଜାସଭାରେ ଆଇନ୍ ପାସ୍ ହୁଏନି, କି ବଜେଟ୍ ଗୃହୀତ ହୁଏନି। ପ୍ରଜାସଭା କେବଳ ସୁପାରିଶ୍‌କରେ, ଯାହାକୁ କହନ୍ତି Recommendatory Body। ମହାରାଜାଙ୍କ ଛଡ଼ା ଅନ୍ୟ କେହି ସେତେ ଗମ୍ଭୀରତା ସହ ପ୍ରଜାସଭା କଥା ବୁଝନ୍ତି ନାହିଁ। ପ୍ରଜା ମାନଙ୍କର ଭଲମନ୍ଦ ଜାଣିବାପାଇଁ ବା ବୁଝିବାପାଇଁ ମୋ ବିଚାରରେ ପ୍ରଜାସଭାଗୁଡ଼ିକ ଅନେକ ଉପାଦେୟ ଦାୟିତ୍ୱ ତୁଲାଇଥା'ନ୍ତି। ମୁଁ ସ୍ଥାନୀୟ ଲୋକ ଏବଂ ମୟୁରଭଞ୍ଜର ଜଣେ ପ୍ରଜା। ସେଇଥିପାଇଁ ମହାରାଜା ମୋତେ ପ୍ରଜାସଭାର ଦାୟିତ୍ୱ ଦେଇଥିଲେ। ପ୍ରଜାସଭାରେ କ'ଣ ସୂଚନା ଦିଆଯିବ, ସେସବୁ ବିଷୟରେ ମହାରାଜା ବଡ଼ ଆଗ୍ରହୀ। ଯେଉଁ ଦିନ ପ୍ରଜାସଭା ଥାଏ, ସେଦିନ ମୋର କର୍ତ୍ତବ୍ୟହେଲା, ମହାରାଜାଙ୍କୁ ଭେଟିବା ଏବଂ ଏକାନ୍ତରେ ଟିକିନିଖି ବିବରଣୀ ତାଙ୍କୁ ଦେବା। ମୋତେ ମହାରାଜା ଅପେକ୍ଷା କରିଥାନ୍ତି। ମୁଁ ପହଞ୍ଚିବା ଖବର ପାଇଲା ମାତ୍ରେ, ମହାରାଜା ବୈଠକଖାନାର ଲୋକଙ୍କୁ ବିଦା କରିଦିଅନ୍ତି ଏବଂ ମୋତେ ଡାକନ୍ତି। କେତେବେଳେ ସେକ୍ରେଟେରୀଏଟରେ ତାଙ୍କ ଅଫିସକୁ, ଆଉ କେତେବେଳେ ରାଜବାଟୀ ନିର୍ଜନ ବୈଠକଖାନାକୁ। ଆଉ କେତେବେଳେ ସୁଇମିଙ୍ଗ୍ ପୁଲକୁ। ଜନ ମନୁଷ୍ୟ କେହି ନାହିଁ; ମୋଜାଇକ୍ ସୁଇମିଙ୍ଗ ପୁଲରେ କାଚପରି ନିର୍ମଳ ପାଣି ଝଲମଲ୍ କରୁଥାଏ ଏବଂ ପାଣି ତଳେ ବିଚିତ୍ର ଛବି ଦିଶୁଥାଏ। ସୁଇମିଙ୍ଗ ପୁଲ ବେଶି ଦିନର ନୁହେଁ। ଏକା ସମୟରେ ସେକ୍ରେଟେରୀଏଟ୍ ଘର, ହାଇକୋର୍ଟ, ପ୍ରାସାଦ, ବିଶ୍ରାମ ଭବନ, ଏକ କଲିକତା କମ୍ପାନୀ ଦ୍ୱାରା ତିଆରି ହୋଇଥାଏ। ମହାରାଜାଙ୍କ ସହିତ ସୁଇମିଙ୍ଗ ପୁଲର ଏକ ଅଂଶରେ ଖରାଦିନିଆ ବସିଥିଲା ବେଳେ ଯେ କେହି ଲୋକର ଆପେ ଆପେ ଆଖି ବନ୍ଦହୋଇ ନିଦ ମାଡ଼ିଆସିବ। ମହାରାଜା ବସିଥାନ୍ତି ସେଲି ଧଡ଼ି ୫୮ ଇଞ୍ଚିଆ କୁଞ୍ଚ କରା ଧୋତି ପିନ୍ଧି। ଦିହରେ ଧଳା ଫତୁଆ; ବିଶାଳ ସୌମ୍ୟ ମୂର୍ତ୍ତୀ। ପାଖରେ,

ବଟାରେ ପାନ । ଆମ ଆଗରେ, କାନ୍ଥ ଭିତରେ ଦୁଇଟା କାଚର ଏକ୍ୱାରିୟମ୍ । ନାନା ରଙ୍ଗ ବିରଙ୍ଗର ମାଛ ବୁଲୁଥାନ୍ତି, ଖେଳୁଥାନ୍ତି, ଫୁଟକା ଛାଡୁଥାନ୍ତି । ଅପୂର୍ବ ଦୃଶ୍ୟ । କେତେବେଳେ କେମିତି ମହାରାଜା ସିଗାରେଟ୍ ଲଗାନ୍ତି । ଆଉକେତେବେଳେ ପାନଟିଏ ଖାଇ ଲବଙ୍ଗଟି କାଡିଆଣି, ତାର ଫୁଲଟି ତଳେ ପକେଇଦିଅନ୍ତି । ଖୁବ୍ ମୃଦୁ 'ଟୁପ୍' କରି ଶବ୍ଦ ଶୁଭେ । ଏତେ ନିଶବ୍ଦ ସେ ସ୍ଥାନଟି । ଆମ ଦୁଇ ଜଣଙ୍କ ଛଡା ଆଉ କେହି ନାହିଁ । ସୁଇମିଙ୍ଗ ପୁଲରେ ସେତେବେଳେ ଅନେକ ସମୟରେ ନିକର ଛାତିର ଧକ୍ ଧକ୍ ଶବ୍ଦ ମୁଁ ଶୁଣିପାରେ । କେଉଁଦିନ ମୁଁ ପ୍ରଜାସଭାର ହାଲଚାଲ ବିସ୍ତୃତ ବିବରଣୀ ତାଙ୍କୁ ଦିଏ । କିଏ କଣ କହିଲା- ସେ ଶୁଣନ୍ତି । ଆଉ କେଉଁଦିନ ପ୍ରସ୍ତାବଗୁଡିକ ଉପରେ ତାଙ୍କର ମତାମତ ଦିଅନ୍ତି । ସେସବୁ ମୁଁ ଲିପିବଦ୍ଧକରେ । କେଉଁ ଦିନ ରାତି ୧ଟା ବାଜିଯାଏ । ମହାରାଜା ପ୍ରଜାସଭାର ପ୍ରାୟ ପ୍ରତ୍ୟେକ ସଭ୍ୟଙ୍କୁ ଜାଣିଥାନ୍ତି : କିଏ କି ପ୍ରକୃତିର ଲୋକ, ତାହା ମଧ୍ୟ ତାଙ୍କୁ ଜଣାଥାଏ । ନିହାତି ଦରକାରୀ କାମ କରିବାପାଇଁ ଆଗ୍ରହୀ ଯେଉଁ କେତେଜଣ ନେତା ସ୍ଥାନୀୟ ସଭ୍ୟ ଥିଲେ, ତାଙ୍କରି କଥାଗୁଡିକ ଉପରେ ମହାରାଜା ଗୁରୁତ୍ୱଦିଅନ୍ତି । ଦୁଇତିନୋଟି ଉଦାହରଣ ଦେବା ଆବଶ୍ୟକ ମନେକରୁଛି ।

ଶରତ ଚନ୍ଦ୍ର ଦାସ ଓରଫ୍ ଶରତ ଗାନ୍ଧୀ ସେତେବେଳେ ପ୍ରଜାମଣ୍ଡଳର ସଭାପତି ଥା'ନ୍ତି । ପୂର୍ବରୁ ସେ ବାରିପଦା ମ୍ୟୁନିସିପାଲଟିର ଭାଇସ-ଚେୟାରମ୍ୟାନ ମଧ୍ୟ ଥିଲେ । ସେତେବେଳେ ମହାରାଜା ନିଜେ ଚେୟାରମ୍ୟାନ । ସେତେବେଳେ ରାଜ୍ୟରେ ଚାରିଆଡେ ଅସନ୍ତୋଷ । କାରଣ, କିଏ ଜଣେ ହୁକୁମ କରିଥାଏ ଯେ, ଚିନି ନେବାକୁ ହେଲେ ହରଡଡାଲି ସେତିକି ପରିମାଣର ନେବାକୁ ପଡିବ । ଚାରିଆଡେ ଲୋକେ ସେହି ଅନ୍ୟାୟ ଯୋଗାଣ ବିଷୟରେ କଥାବାର୍ତ୍ତା କରୁଥାନ୍ତି । ପ୍ରଜାସଭାରେ ସେଦିନ ଅଧିକାଂଶ ପ୍ରଶ୍ନ ଓ ପ୍ରସ୍ତାବ ଏହି ଚିନି, ହରଡ ଡାଲି ଏକତ୍ର ବିକ୍ରି ବିରୋଧରେ । ପ୍ରଜାସଭା ସରିଲା ପରେ ମୁଁ ମହାରାଜାଙ୍କୁ ଭେଟିଲି ଏବଂ କିଛି ବିବରଣୀ ଦେବା ପୂର୍ବରୁ ମୁଁ କହିଲି- "ମହାରାଜା ସାହେବ ! ଆଜି ପ୍ରଜାସଭାରେ ଯାହା ହେଲା, ତାହା କଥାରେ କହିହେବ ନାହିଁ । ଶରତ ଦାସ ଖାଲି ଦିହରେ ସଭାକୁ ଯାଇଥିଲେ । ସେ ଏବଂ ତାଙ୍କ ଅନୁଚରମାନେ ସେହି ଗୋଟିଏ ବିଷୟରେ କହିଲେ । କିଏ ବା ପାଟିକରି, ଆଉ କିଏ ବା କାନ୍ଦିକରି ବକ୍ତୃତା କଲେ । ପ୍ରଜାମାନଙ୍କର କିଛି ଆପତ୍ତି, ଅଭିଯୋଗ ନାହିଁ । ଖାଲି ଆପଣମାନେ ଚିନି ହରଡ ଡାଲି ଅଲଗା ଅଲଗା ବିକ୍ରି ବ୍ୟବସ୍ଥା କରିଦିଅନ୍ତୁ ତ ।" ବିସ୍ଫାରିତ ଚକ୍ଷୁରେ ମୋକଥା ଶୁଣିସାରି ଚପରାଶିକୁ ହୁକୁମ କଲେ, ସେକ୍ରେଟାରୀ ଟି.ଏସ୍. ରାଜଗୋପାଳନ୍‌ଙ୍କୁ ତାଙ୍କ ବସାରୁ ଧରିଆଣିବାପାଇଁ । ଚପରାଶି ଗାଡି ନେଇ ଛୁଟିଲା । ରାଜଗୋପାଳନ ତେଲେଙ୍ଗା ଲୋକ ।

ସନ୍ଧ୍ୟାବେଳୁ ଖାଇ ଶୋଇପଡନ୍ତି । ଯେମିତି ଡାକରା ପାଇଲେ, ତରବରରେ ଧୋତିକୁ ଲୁଙ୍ଗି କରି, ହାଫ ସାର୍ଟ ପିନ୍ଧି, ଚପଲ ମାଡ଼ି ବାହାରି ଆସିଲେ । ଅଣନିଃଶ୍ୱାସୀ ଅବସ୍ଥାରେ ରାଜଗୋପଳନ୍ ମହାରାଜାଙ୍କ ସମ୍ମୁଖରେ ବସିଛନ୍ତି । ମହାରାଜା ତାଙ୍କୁ ସିଧା ପଚାରିଲେ- "ରାଜଗୋପାଳନ୍ ! କିଏ ଚିନି ହରଡ ଡାଲି ଏକତ୍ର ବିକ୍ରି କରିବାର ବ୍ୟବସ୍ଥାକରିଛି ?" ରାଜଗୋପାଳନ୍ କହିଲେ, "ମହାରାଜା ସାହେବ, ଆପଣ ନିଜେ ତ ଅର୍ଡର ଦେଇଛନ୍ତି, ବୋରାଏ ଚିନିକୁ ବୋରାଏ ହରଡ ଡାଲି ବିକ୍ରିହେବାପାଇଁ ।" ମହାରାଜା ଖୁବ୍ ବିରକ୍ତ ହୋଇଗଲେ ଏବଂ କହିଲେ, "କାହାରି ମୁଣ୍ଡରେ ବୁଦ୍ଧିଶୁଦ୍ଧି ନାହିଁ ଦେଖୁଛି । କିଏ ଜଣେ ଯାଇ ଭାରତ ସରକାର ପାଖରୁ ପଚା ଆଉ ପୁରୁଣା ହରଡ ଡାଲି କିଣି ଆଣିଲା । ବହୁକଷ୍ଟରେ ମୁଁ ଟାଟା କମ୍ପାନୀ ସହିତ କଥାବାର୍ତ୍ତା କରି; ଉଭୟ ଚିନି ଆଉ ହରଡ ଡାଲି ବିକ୍ରି ବ୍ୟବସ୍ଥାକଲି । ବୋରାଏ ଚିନିକୁ ବୋରାଏ ହରଡ ଡାଲି- ତାର ଅର୍ଥ ନୁହେଁ, ଆମ ରାଜ୍ୟରେ ଯେଉଁଠି ଚିନି ବିକ୍ରି ହେବ, ସେଇଠି ପଚରା ହରଡ ଡାଲି ମଧ୍ୟ ବିକ୍ରି ହେବ । Will you undo this at once ?" ତହିଁ ପରଦିନ ଚିନି ସହିତ ହରଡ ଡାଲି ପୃଥକ ବିକ୍ରିହେଲା ।

ଗଡଜାତର ଲୋକ ପ୍ରଜାସଭାରେ "ବାକ୍ ସ୍ୱାଧୀନତା" କେତେଦୂର ପାଉଥିଲେ, ତାର ଗୋଟିଏ ଉଦାହରଣ ଦେଉଛି । ବାରିପଦା ପ୍ରଜାସଭାରେ ଶରତ୍ ଗାନ୍ଧୀଙ୍କର ସାଥୀ ଲାଲ ମୋହନ ପତି ପ୍ରସ୍ତାବ ଆଣିଲେ ଏଇ ମର୍ମରେ ଯେ, ଟାଉନ୍ର ଝିଙ୍କିରିବନ୍ଧର ପାଣି ଖୁବ୍ ଦୂଷିତ । ତେଣୁ ସ୍ୱାସ୍ଥ୍ୟ ପକ୍ଷରେ ଅନିଷ୍ଟ କାରକ । ତୁରନ୍ତ ପାଣିକୁ ନିଷ୍କାସନ କରି, ଭଲ ଜଳର ବ୍ୟବସ୍ଥା କରାଯାଉ । ଏ ପ୍ରସ୍ତାବ ଉପରେ ମହାରାଜା ହୁକୁମ୍ ଦେଲେ, ତୁରନ୍ତ । କେବଳ ଝିଙ୍କିରିବନ୍ଧ କାହିଁକି ? ଅନ୍ୟାନ୍ୟ ଯେତେ ଜଳାଶୟ ବାରିପଦାରେ ଅଛି- ସେ ଗୁଡ଼ିକର ପାଣି ବୈଜ୍ଞାନିକ ଉପାୟରେ ବିଶ୍ଳେଷଣକରି କେତେ ଦୂଷିତ, ତାହା ଦେଖାଯାଉ । ତିନି ଚାରିଟା ପୋଖରୀର sample ପାଣି ପରୀକ୍ଷାହେଲା ଏବଂ ତା ଉପରେ ମହାରାଜା ପ୍ରଜାସଭାକୁ ଏହିମତେ ଜବାବ ଦେଲେ : "ପାଣି ସଫା କରିବାରେ ସରକାରଙ୍କର କିଛି ଆପତ୍ତି ନାହିଁ, କିନ୍ତୁ ଲୋକମାନଙ୍କର ଯେଉଁ ବଦଭ୍ୟାସ, ତାହା ନ ବଦଳିଲେ କିଛି ଲାଭ ହେବନି । ପାଣି ପରୀକ୍ଷାକରି ଦେଖାଗଲା ଯେ, ବହୁତ ପରିମାଣରେ ମଳାଂଶ ପାଣିରେ ରହୁଛି । ଲୋକେ ମଳମୂତ୍ର ସବୁ ପାଣିରେ ଛାଡୁଛନ୍ତି ।" ଲାଲ ମୋହନ ପତି ଖୁବ୍ ନିର୍ଭୀକ, କୁହାଳିଆ । ସେ ସରକାରର ପ୍ରସ୍ତାବ ଉପରେ ମନ୍ତବ୍ୟ ସହଜରେ ଦେଇ ନପାରି ଚିତ୍କାର କରି କହିଲେ "This is a reply which can come only from an autocratic government; autocratic government, I say."

ମହାରାଜା ଶୁଣିଲେ ଓ ଅଳ୍ପଟିକେ ମୁରୁକି ହସିଲେ। ଦଶହଜାର କୋଟି ଟଙ୍କା ଖର୍ଚ୍ଚ କରି ଗଙ୍ଗାଜଳ ପରିଷ୍କାର କରାଯିବ, ଏହି ପରିପ୍ରେକ୍ଷୀରେ ଏକଥା ମନେପଡୁଛି।

ମୟୁରଭଞ୍ଜରେ କଲେଜ ଗୋଟିକର ଆବଶ୍ୟକତା ବହୁତ ଦିନରୁ ଅନୁଭୂତ ହେଉଥିଲା। ସାରା ଓଡିଶାରେ ରେଭେନ୍‌ସାକୁ ଛାଡି ଦ୍ୱିତୀୟ କଲେଜ ନାହିଁ। ଦେୱାନ ନିୟୋଗୀ ବାରିପଦା ହାଇସ୍କୁଲକୁ କଲେଜରେ ପରିଣତକରିବାପାଇଁ ଚେଷ୍ଟିତଥିଲେ। ତାଙ୍କର ଅଭିପ୍ରାୟ ଥିଲା, ବାରିପଦା ହାଇସ୍କୁଲରେ ତଳ ଚାରୋଟି କ୍ଲାସ ଅଲଗା କରିଦେଇ ହାଇସ୍କୁଲକୁ କଲେଜ କରିଦିଅନ୍ତେ। ସେତିକିବେଳେ ସ୍ଥାନୀୟ କେତେକଣ କୁହାଳିଆ ଲୋକ, ଯେଉଁମାନଙ୍କର ଛୁଆମାନେ କଟକ କି କଲିକତା ଯାଇ କଲେଜ ପାଠ ପଢି ପାରୁଥିଲେ, ସେଇମାନେ କଲେଜ ସ୍ଥାପନକୁ ବିରୋଧକଲେ। ସଦାଶିବ ମିଶ୍ର- ଯିଏକି ପ୍ରସାରିତ କଲେଜର ଅଧ୍ୟକ୍ଷ ହୋଇଥାନ୍ତେ, ସେ ମୟୁରଭଞ୍ଜ ଛାଡି ଅନ୍ୟତ୍ର ଚାଲିଗଲେ, ଆଉ ଫେରିଲେ ନାହିଁ। ମୁଁ ଯେ ଆଶା କରିଥିଲି କଲେଜର ଅଧ୍ୟକ୍ଷ ହେବାପାଇଁ, ତାହା ଆଉ ହେଲାନି। ସ୍କୁଲ ମାଷ୍ଟର ହେଲି। ଏହି ମର୍ମରେ ଉତ୍ତରଟା ଯେତେବେଳେ ବାରିପଦା ପ୍ରଜାସଭାରେ ଦିଆଗଲା, ସେତେବେଳେ ତାହା ଭୀଷଣ ଝଡ ଓ ପ୍ରତିକ୍ରିୟା ସୃଷ୍ଟିକରିଥିଲା। ଲାଲ ମୋହନ ପତି ବହୁତ କ୍ଷୁବ୍ଧ ହୋଇଥିଲେ।

ବଣ ଜଙ୍ଗଲ ବିଷୟରେ ବହୁ ପ୍ରସ୍ତାବ ପ୍ରଜାସଭାରେ ଆସୁଥିଲା। ସମସ୍ତେ ମହାରାଜାଙ୍କୁ ଦୋଷ ଦେଉଥିଲେ ଯେ, କାଠ ସବୁ ବାହାରକୁ ଚାଲିଗଲା। ଲୋକମାନେ ଯେଉଁ ଅବାଧରେ ଜଙ୍ଗଲରୁ କାଠ ନେଇପାରୁଥିଲେ, ସେହି ସୁବିଧାରୁ ବଞ୍ଚିତହେଲେ। ଜାଳିବାପାଇଁ, ଘରକରଣାପାଇଁ କାଠର ଘୋର ଅଭାବହେଲା। ମହାରାଜା ଥରେ କିଛି କୁହାଳିଆ ପ୍ରଜାସଭା ସଭ୍ୟଙ୍କୁ ନେଇ ଜଙ୍ଗଲ ବୁଲେଇବାକୁ ଶିମିଳିପାଳର ଚହଲା ଆଡ଼କୁ ନେଇଗଲେ। ଅଗମ୍ୟ ସ୍ଥାନପାଇଁ ହାତୀର ବ୍ୟବସ୍ଥାହେଲା। ମହାରାଜା ନିଜେ ଜଙ୍ଗଲର ଶ୍ରୀବୃଦ୍ଧି ଓ ଉପକାରିତା ବିଷୟରେ ଗୋଟିଏ ଛୋଟ ଶାଳପୁହାକୁ ଦେଖେଇ କହିଲେ, "ସାଢେ ଚାରିଫୁଟ ମୋଟେଇ ହେବାପାଇଁ (exploitable girth) ଏହି ଛୋଟିଆ ଚାରାଟିକୁ ୧୨୦ ବର୍ଷ ଲାଗିବ। ଗୋଟିଏ ଗଛ କାଟିଦେଲେ ସେମିତି ଆଉ ଗୋଟିଏ ଗଛ ପାଇବା ପାଇଁ ଆମ ଜୀବଦଶାରେ ସମ୍ଭବ ହେବନାହିଁ। ଲୋକେ ନବୁଝି ନବିଚାରି ଗଛ କାଟି ଦେଉଛନ୍ତି, ଯେମିତି ପିଲା ଖେଳ।" ତାପରେ ସେଇ ହାତୀ ପିଠିରେ ବସି ଆମେ ପାହାଡ ଉପରକୁ ଆହୁରି ଚଢିଲୁ। ସେଠି ଦେଖିଲୁ ଗୁଡାଏ ଦୀର୍ଘକାୟ ଶାଳଗଛ ମରି ଶୁଖି ଯାଇଛି। ସେଗୁଡାକୁ ଦେଖେଇ ମହାରାଜା କହିଲେ- "ଏ ହାତୀର କାରସାଦି। ହାତୀପଲ ଆସନ୍ତି। ଦନ୍ତା ହାତୀଟା ତା ଦାନ୍ତ ଅଗରେ ଗଛ ଚାରିପଟର ବକଳକୁ କାଟିଦିଏ ଏବଂ

ଚୋପାଟାକୁ କିଛି ଅଂଶ ବାହାରକରି, ଥୋଡପାହାଡରେ ଗୁଡେଇ ଏତେ ଜୋରରେ ଉପରକୁ ଛାଡିଦିଏ ଯେ, ଗଛର ଛାଲିଟା ଦଶ କୋଡିଏ ହାତ ଛାଲିଯାଏ। ଅତି ଆନନ୍ଦରେ ଏ ଶାଳ ଛାଲିର ରସ ଚୋବାଇ ପଲଟିଯାକ ହାତୀ ଅନ୍ୟ ଜାଗାକୁ ଚାଲିଯାଆନ୍ତି। ଗଛ ସବୁ ମଲା ଅବସ୍ଥାରେ ଛିଡାହୋଇଥାନ୍ତି।" ଆହୁରି ଅନେକ ଜାଗା ଆମକୁ ଦେଖାଇଲେ, ଯହିଁରୁ ଆମେ ବେଶ୍ ବୁଝିପାରିଲୁ ମାଟି କେମିତି ଧୋଇହୋଇଯାଏ। ପାହାଡରୁ ପଥର ବାହାରି ପଡେ। ନଈଗର୍ଭ ପୋତିହୋଇଯାଏ। ମୁହାଣ ପୋତିହୋଇଯାଏ। ଫଳରେ ନଈରେ ବନ୍ୟା ଆସେ। ଏମିତି ଦେଖାଉଁ ଦେଖାଉଁ ଖାଇବା ବେଳ ହୋଇଯାଇଥାଏ। ସାଙ୍ଗରେ ଲୋକେ ଯାଇଥାଆନ୍ତି। କୌଣସି ଏକ ପାଖ ବଙ୍ଗଳାରେ ବା ଝରଣା କୂଳ ଗଛଛାଇ ତଳେ ପଥର ଚଟାଣରେ ରୋଷେଇହୁଏ। ଖଡିଆମାନେ ଖେକୁରିଆ ମାଛ ଧରି ଦିଅନ୍ତି। ଉପରଓଳି ଆଉ ସଞ୍ଜ ଯାକ ଜଙ୍ଗଲ ବୁଲାହୁଏ। ଗୋଟିଏ ଜାଗାରେ ଆମେ ଦେଖିଲୁ- ବଣୁଆ ହାତୀପଲ ଦୁଇ ପାହାଡ ମଝିରେ ଲମ୍ବା ଲମ୍ବା ଘାସ ଖାଉଛନ୍ତି। ସନ୍ଧ୍ୟାବେଳେ ଗାଡିରେ ଫେରିଲାବେଳେ ଗୋଟାଏ ଦୁଇଟା ସ୍ଥାନରେ ବାଘ ମଧ୍ୟ ଆମ ରାସ୍ତା ଅତିକ୍ରମକରି ଚାଲିବାର ଦେଖିଛୁ। ମହାରାଜାଙ୍କ ପାଖରେ ବନ୍ଧୁକଟା ନଥିଲା। ବାଘ ଶିକାରଟା ଦେଖିପାରିଲୁ ନାହିଁ। ବନ୍ଧୁକ ଥିଲେ ମଧ୍ୟ ସେ, ମାରି ନଥାନ୍ତେ। କାରଣ ଚହଲା ଶିକାରର ଅକଥନୀୟ ଦୁର୍ଦ୍ଦଶା ପରେ ମୟୁରଭଞ୍ଜରେ ଆଇନ ଦ୍ୱାରା ଶିକାର ବନ୍ଦ କରାଗଲା। କିନ୍ତୁ ଲୁଚାଚୋରାରେ ହରିଣ ଶିକାର ଅବାଧରେ ଚାଲିଥାଏ। ମହାରାଜା ମଝିରେ ମଝିରେ ଖକୁରିଆ ମାଛର ଶିକାରପାଇଁ ଆସାମ ଯାଆନ୍ତି। ଆମେ ଏଇ ମୟୁରଭଞ୍ଜର ପାହାଡିଆ ନାଳରେ ସେ ମାଛ ଦେଖିଲୁ, ଖାଇଲୁ ମଧ୍ୟ। ଛୋଟ ମାଛ, କିନ୍ତୁ ବହୁତ ମିଠା; ଇଲିସି ପରି।

ଦାୟିତ୍ୱମୂଳକ ଶାସନ ଆଡକୁ ମହାରାଜାଙ୍କ ସରକାର ଯେତେ ବ୍ୟବସ୍ଥା କରୁଥାଆନ୍ତି, ସେଗୁଡା ପ୍ରାୟତଃ ମୂଲ୍ୟହୀନ, ଅର୍ଥହୀନ ହୋଇଯାଉଥାଏ। କାରଣ ଓଡିଶାରେ ବଡବଡ ନେତାମାନେ ପ୍ରଜାମଣ୍ଡଳ ଜରିଆରେ ଛୋଟ ଛୋଟ ଗଡଜାତ ରାଜ୍ୟଗୁଡିକୁ ଗ୍ରାସିବା ମତଲବରେ ନାନା ପ୍ରକାର ଆନ୍ଦୋଳନ ଚଳେଇଥାଆନ୍ତି। ହରେକୃଷ୍ଣ ମହତାବ, କୈଳାଶ ମହାନ୍ତି, ଶାରଙ୍ଗଧର ଦାସ, ପବିତ୍ର ମୋହନ ପ୍ରଧାନ ଅଦି ମୋଗଲବନ୍ଦ ଓ ଗଡଜାତର ନେତାମାନେ ସକ୍ରିୟ ହୋଇ ଗଡଜାତ ମାନଙ୍କରେ ପ୍ରଜାମଣ୍ଡଳ ଗଡି ଲୋକମାନଙ୍କ ଭିତରେ ରାଜନୀତିକ ଜାଗରଣ ଜୋରସୋର୍‌ରେ ଆଣିଥାଆନ୍ତି। ଆମର ମହାରାଜା ମଧ୍ୟ ବିଚକ୍ଷଣ ରାଜନୀତିଜ୍ଞ। କେ.ସି. ନିୟୋଗୀଙ୍କୁ ପଲିଟିକାଲ ଏଡଭାଇଜର ରଖି, ବାହାର ନେତାମାନଙ୍କ ସହିତ ଟକ୍‌ରଦେବା ପ୍ରଚେଷ୍ଟା

କରିଥାଆନ୍ତି । ଇତି ମଧ୍ୟରେ ନିୟୋଗୀ କେନ୍ଦ୍ରକୁ ମନ୍ତ୍ରୀ ହୋଇ ଚାଲିଯିବାରୁ ସେ ଆଉ ଉପଦେଷ୍ଟା ଛଡା ଅନ୍ୟ କୌଣସି ଉପାୟରେ ସାହାଯ୍ୟ କରିପାରିଲେ ନାହିଁ । ତେଣୁ ସେ ମେଜର ବି.ପି. ପାଣ୍ଡେ ନାମକ ଜଣୈକ ବ୍ୟକ୍ତିଙ୍କୁ ଦେୱାନ ପଦରେ ଅଧିଷ୍ଠିତ କରି, ନିଜେ ଅନ୍ତରଧ୍ୟାନ ହୋଇଗଲେ । ନିୟୋଗୀ ଯଦି ଟ ୩୦୦୦/- ପାଉଥିଲେ ପାଣ୍ଡେ ଟ ୧୫୦୦/- ପାଇଲେ ।

ନୂଆ ଦେୱାନଟି ମିଲିଟାରି ମେଜର ନୁହଁନ୍ତି । ଏ ମେଜର ପଦବୀଟି ସର୍ବୀନ ବୋଲି ଗୋଟିଏ ଛୋଟ ଦେଶର ରାଜା ଦେଇଥିଲେ । ମେଜରଙ୍କୁ କିଛି ଏଡମିନିଷ୍ଟ୍ରେସନ ପ୍ରାୟ୍ ଜଣା ନଥିଲା । ସେ କେବଳ ନିୟୋଗୀଙ୍କ ପଦାଙ୍କ ଅନୁସରଣ କରି ଓ ମହାରାଜାଙ୍କ ପାଖରୁ ମଧ୍ୟେ ମଧ୍ୟେ ଭର୍ତ୍ସନା ଶୁଣି କାମ ଚଳାଉଥିଲେ । ବାଲାନ୍ ବୋଲି ଜଣେ ତାଙ୍କର ପି.ଏ. ବା ଷ୍ଟେନୋଗ୍ରାଫର୍ ଥିଲା । ସେ "ୱାର୍ ସପଲିମେଣ୍ଟିଏ" ଗେଜେଟ୍‌ରେ ଯୋଡ଼ିଲେ ଏବଂ ଯୁଦ୍ଧ ସମୟର ସବୁ ଖବର ସେଠି ଦିଆହେଉଥିଲା । ମେଜର ସାହେବ ମନେମନେ ଜଣେ ଶିକାରୀ, ବହୁଚେଷ୍ଟା କରି ମଧ୍ୟ ମୟୂରଭଞ୍ଜରେ ଗୋଟେ ହେଲେ ଜୀବ ମାରିପାରି ନାହାନ୍ତି । ମୟୂରଭଞ୍ଜରେ ଥିଲାବେଳେ ସେ ତାଙ୍କର ଝିଅ ବାହାଘର କଲେ ଏବଂ ବହୁ ଦିନ ସାଧନା କରି ପୁତ୍ର ସନ୍ତାନଟିଏ ପାଇଲେ । ଶାସନ ଯନ୍ତ୍ର ଗତି ଧୀରସ୍ଥିର ହୋଇଗଲା ଏବଂ ପ୍ରାୟ୍ ଅଚଳ ଅବସ୍ଥାକୁ ଆସିଗଲା ।

ଏତିକିବେଳେ ଭାରତବର୍ଷ ସ୍ୱାଧୀନହେଲା ଏବଂ ଗଡଜାତଗୁଡିକ ସାର୍ବଭୌମ୍ୟ ରାଷ୍ଟ୍ର ହୋଇଗଲେ । ମୟୂରଭଞ୍ଜ ମଧ୍ୟ ସାର୍ବଭୌମତା ପାଇଲା । ସବୁ ଗଡଜାତ ପରି ମୟୂରଭଞ୍ଜର ମଧ୍ୟ ଏଇଟି ଗୋଟିଏ ସଙ୍କଟସନ୍ଧିକାଳ । ଏଗୁଡିକର ଭବିଷ୍ୟତ କଣ ହେବ, ସର୍ଦ୍ଦାର ପଟେଲଙ୍କ ହାତରେ । ହାଇଦ୍ରାବାଦରେ ପୋଲିସ ଏକ୍‌ସନ ହେଲା । ଏହାଫଳରେ ହାଇଦ୍ରାବାଦ ପରି ରାଜ୍ୟ ମଧ୍ୟ ଟଳିପଡିଲା । ହରେକୃଷ୍ଣ ମହତାବଙ୍କର ଦୂରଦର୍ଶିତା ଓ ପ୍ରଚେଷ୍ଟା ଫଳରେ ସର୍ଦ୍ଦାର ପଟେଲ ଓଡ଼ିଶାର ଛୋଟଛୋଟ ଗଡଜାତଗୁଡ଼ିକ ଆଡକୁ ଆଖି ବୁଲାଇଲେ । ଢେଙ୍କାନାଳର ବାଜିରାଉତ, ରଣପୁରର ବେଜେଲ ଗେଟ୍ ହତ୍ୟା ଏବଂ ନୀଳଗିରି ଆଦି ଷ୍ଟେଟ୍‌ମାନଙ୍କରେ ଯେଉଁ ଅତ୍ୟାଚାର ଘଟିଲା, ତାହାରି ଫଳରେ ଅନ୍ୟ ଗଡଜାତମାନଙ୍କର ଅବସ୍ଥା ଖୁବ୍ ଖରାପ ହୋଇଗଲା । ସରଦାର ପଟେଲ ନିଜେ ଓଡ଼ିଶାକୁ ଆସିଲେ ଏବଂ ସବୁଗଡଜାତ ରାଜାମାନଙ୍କୁ ଡକାଇଲେ । ଲୌହ ମାନବଙ୍କର (Iron Man) ଆଙ୍ଗୁଳି ପ୍ରଦର୍ଶନରେ ଗଡଜାତଗୁଡ଼ିକ ଏକାଦିନକେ ନିଶ୍ଚିହ୍ନ ହୋଇଗଲେ । ସରଦାର ପଟେଲ କାହାକୁ କ'ଣ କହିଲେ, ସେଇକଥାଗୁଡିକ ଗୁଜବ୍ ଆକାରରେ ଲୋକମାନଙ୍କ ମୁହଁରୁ ଶୁଣାଗଲା । ଢେଙ୍କାନାଳର ରାଜା ଓ ରଣପୁରର ରାଜାମାତା ତାଙ୍କ

ପୁଅ ସହିତ ସରଦାର ପଟେଲ ପାଖକୁ ଯାଇଥିଲେ । ଖୁବ୍ ସାହସ କରି ପୁଅଟି କ'ଣ ପଦେ କଥା ସରଦାର ପଟେଲଙ୍କୁ କହିବାପାଇଁ ଯାଇଥିଲା । "ଚୁପ୍ ! ଗାଲ ଚିପିଦେଲେ ଦୁଧ ବାହାରିବ ! କଥା କହୁଛି" ଏହି ପଦେ କଥାରେ ରଣପୁରର ରାଜା ଝୁଅ ଚୁପ୍ ହୋଇଗଲା । ଢେଙ୍କାନାଳର ରାଜାସାହେବ ଯେତେବେଳେ ଗଡକୁ ଫେରିଲେ ଲୋକମାନେ ତାଙ୍କୁ ପଚାରିଲେ- "ହଜୁର କ'ଣ ହେଲା ?" ରାଜା ସାହେବ କହିଲେ, "ତୁମେମାନେ 'ଦାୟିତ୍ୱ ମୂଳକ ଶାସନ' ଚାହୁଁଥିଲ ପରା ! ସରଦାର ପଟେଲଙ୍କୁ 'ଶାସନ' ଦେଇଦେଲି । ହରେକୃଷ୍ଣ ମହତାବଙ୍କୁ ଦେଲି- 'ଦାୟିତ୍ୱ' ଆଉ ତୁମମାନଙ୍କପାଇଁ 'ମୂଳକ'ଟି ଆଣିଛି" ।

ପ୍ରଜାସଭାଗୁଡାକ ମୟୁରଭଞ୍ଜରେ କିଛି ଅଂଶରେ ବିଧାୟକ ସଭାର କାମ କରୁଥିଲେ । ମୟୁରଭଞ୍ଜରେ ପ୍ରଜାସଭା ସ୍ଥାପିତହେବା ପରେ ମହାରାଜା ନିୟୋଗୀଙ୍କ ଉପଦେଶରେ ପାର୍ଲ୍ୟାମେଣ୍ଟ ପରି କେନ୍ଦ୍ରସଭାଟିଏ ସ୍ଥାପନର ବ୍ୟବସ୍ଥାକଲେ । ଏମାନଙ୍କୁ ସାମାନ୍ୟ ଉଚ୍ଚସାହ୍ୟା ଦିଆଗଲା । ଏଠି ରହିଲେ ପ୍ରଜାସଭାରୁ ନିର୍ବାଚିତ ଲୋକ-ପ୍ରତିନିଧି ଏବଂ ଷ୍ଟେଟର ଯେତେ heads of department (ବିଭାଗୀୟ ମୁଖ୍ୟ ଗଣ) । ସରକାରୀ, ବେସରକାରୀ ଉଭୟ ଦଳ ପ୍ରାୟ ସମାନ ସମାନ । କେନ୍ଦ୍ର ପରିଷଦ ସ୍ଥାପନପାଇଁ ଗୋଟିଏ ହୁକୁମନାମା ତିଆରିହେଲା ଏବଂ ଯେଉଁଦିନ ତାର ଉଦ୍‌ଘାଟନହେବ, ସେଦିନ ଗୋଟିଏ ଲୋକ-ପ୍ରତିନିଧି ଓ ସରକାରୀକର୍ମଚାରୀ ମାନଙ୍କର ବିରାଟ ସଭା ବସିଥିଲା । ସେକ୍ରେଟେରୀଏଟ୍ ଆଗରେ ମହାରାଜା ସାହେବ ନିଜେ ଉପସ୍ଥିତଥିଲେ । ସେ ଭୋଜି ସଭାରେ ପ୍ରଜା ପ୍ରତିନିଧି ଛଡା ବିଶିଷ୍ଟ ଲୋକମାନେ ଉପସ୍ଥିତଥିଲେ । କେନ୍ଦ୍ର ପ୍ରଜାସଭା ଉଦ୍‌ଘାଟନ ପରେପରେ ଓଡିଶାର ଗଡଜାତଗୁଡିକ ଓଡିଶାରେ ମିଶିଗଲେ । କେବଳ ମୟୁରଭଞ୍ଜ ଅଲଗା ରହିଲା । ୧୯୪୮ ପହିଲାର ଘଟଣା । ମୟୁରଭଞ୍ଜ ସାର୍ବଭୌମ ରାଷ୍ଟ୍ର ଆକାରରେ ସ୍ୱତନ୍ତ୍ର ରହିଲା । ମୟୁରଭଞ୍ଜରେ କନ୍‌ଷ୍ଟିଚୁଏଣ୍ଟ୍ ଏସେମ୍‌ଲିଟିଏ ଦରକାର ପଡିଲା । ମୟୁରଭଞ୍ଜ ଭବିଷ୍ୟତ ଶାସନପାଇଁ ବିଶିଷ୍ଟ ନେତା ବିଧିବିଧାନ ଗଢିବେ ବୋଲି ଭାରତୀୟ କନ୍‌ଷ୍ଟିଚୁଏଣ୍ଟ ଏସେମ୍‌ଲି ପେଟାର୍ନରେ । ଆଇନଜ୍ଞ ଶ୍ରୀ ବ୍ରଜଗୋପାଲ ଘୋଷାଲ ଏହାର ସଭାପତି ହେଲେ ।

ଗଡଜାତର ଅନ୍ୟ ରାଜାମାନେ ଇନ୍‌ଷ୍ଟ୍ରୁମେଣ୍ଟ୍ ଅଫ ମାର୍ଜରରେ ଦସ୍ତଖତ କରିଥାନ୍ତି । କେବଳ ମୟୁରଭଞ୍ଜ ମହାରାଜା କରିନଥାନ୍ତି । ଅନ୍ୟାନ୍ୟ ରାଜାମାନଙ୍କ ସହିତ ସିଏ ମଧ୍ୟ ସର୍ଦ୍ଦାର ପଟେଲ ପାଖକୁ ଯାଇଥିଲେ । କିନ୍ତୁ ମହାରାଜା କହିଲେ ଯେ, ସେ ପ୍ରଜା ମାନଙ୍କୁ କ୍ଷମତା ହସ୍ତାନ୍ତର କରିଦେଇଛନ୍ତି । ସେଥିପାଇଁ ତାଙ୍କୁ "Merger" documentରେ

ଦସ୍ତଖତ କରିବାକୁ କୁହାଗଲା ନାହିଁ। ମୟୁରଭଞ୍ଜ ସ୍ୱତନ୍ତ୍ର ସାର୍ବଭୌମ ରାଷ୍ଟ୍ର ହୋଇ ରହିଲା ଏବଂ ଶରତ ଦାସ ହେଲେ ଏହି ରାଷ୍ଟ୍ରର ପ୍ରଧାନମନ୍ତ୍ରୀ, ମୁଖ୍ୟମନ୍ତ୍ରୀ ନୁହନ୍ତି।

ମୟୁରଭଞ୍ଜରେ ମନ୍ତ୍ରୀମଣ୍ଡଳ ଗଢାଗଲା। କେନ୍ଦ୍ର ପରିଷଦକୁ କନଷ୍ଟିଚୁୟେଣ୍ଟ ଏସେମ୍ବ୍ଲି ପରିଣତ କରାହେଲା। ତିନିଜଣ ମନ୍ତ୍ରୀ ହେଲେ। ପ୍ରଧାନ ମନ୍ତ୍ରୀ ଶ୍ରୀ ଶରତ ଚନ୍ଦ୍ର ଦାସଙ୍କ ବ୍ୟତୀତ ଅନ୍ୟ ଦୁଇଜଣ ମନ୍ତ୍ରୀ, ଶ୍ରୀ ବିଦ୍ୟାଧର ମହାପାତ୍ର ଏବଂ ଶ୍ରୀ ମହେଶ୍ୱର ନାଏକ, ଯଥାକ୍ରମେ ଆଇନ୍ ମନ୍ତ୍ରୀ ଆଉ ଡେଭଲପମେଣ୍ଟ୍ ମନ୍ତ୍ରୀ। ମୁଖ୍ୟମନ୍ତ୍ରୀ ହାତରେ ଫାଇନେନ୍ସ ରହିଲା। ମନ୍ତ୍ରୀ ମଣ୍ଡଳ କାମ ଆରମ୍ଭ କରିଦେଲେ।

ମନ୍ତ୍ରୀମାନେ ଅଭୂତପୂର୍ବ ଉତ୍ତେଜନା ଓ ଅଭିନିବେଶ ନେଇ କର୍ତ୍ତବ୍ୟରେ ନିଃସ୍ୱାର୍ଥପର ଭାବରେ ଲାଗିପଡ଼ିଲେ। ମହାରାଜା ବୀତସ୍ପୃହହୋଇ ଶାସନରୁ ଓହରିଗଲେ। ସର୍ବପ୍ରଥମ ବଡ଼ କାମଭାବରେ ମନ୍ତ୍ରୀମଣ୍ଡଳ ମହାତ୍ମାଗାନ୍ଧୀଙ୍କର ଚିତାଭସ୍ମ ବାରିପଦା ଆଣିବାରେ ଆଗ୍ରହୀ ଓ ବ୍ରତି ରହିଲେ। ଡେଭଲପ୍‌ମେଣ୍ଟ ମନ୍ତ୍ରୀ ମହେଶ୍ୱର ନାଏକ ପବିତ୍ର ଭସ୍ମ ଆଣିବାର ଦାୟିତ୍ୱରେ ରହିଲେ। ପ୍ରଥମେ ତାଙ୍କପାଇଁ ଗୋଟିଏ ମଟର ଗାଡ଼ି ଆମେ ନିଜେ ଯାଇ କଲିକତାରୁ କିଣିଆଣିଲୁ। ପ୍ରଚାର ବିଭାଗପାଇଁ ଆଉ ଗୋଟିଏ ସ୍ୱତନ୍ତ୍ର ଗାଡ଼ି ମଧ୍ୟ ଆସିଲା। ବହୁମୂଲ୍ୟରେ କିଣାହୋଇଥିବା ଏହି ଗାଡ଼ିଟି ବିଚିତ୍ର। ତା ଭିତରେ ରେଡ଼ିଓ, ପ୍ରଚାରର ଯନ୍ତ୍ରପାତି, ଦାମିକା ମାଇକ୍ ଆଦି ଖଞ୍ଜାଗଲା। ସିନେମାପାଇଁ ମଧ୍ୟ ବ୍ୟବସ୍ଥା ରହିଲା। ଡେଭଲପ୍‌ମେଣ୍ଟ ମନ୍ତ୍ରୀ ମ୍ୟୁନିସିପାଲଟି ଅଫିସ ନିକଟବର୍ତ୍ତୀ ଫରେଷ୍ଟ ଅଫିସରଙ୍କର ବଙ୍ଗଳାରେ ରହିଲେ।

ମହେଶ୍ୱର ନାଏକ ଥିଲେ ମୋର ଅନ୍ତରଙ୍ଗ ବନ୍ଧୁ। ଅଧିକାଂଶ ସମୟ ମୁଁ ତାଙ୍କ ସହିତ ଆଲୋଚନାରେ କଟାଉଥିଲି। ତାଙ୍କୁ ମୁଁ ହରାଇବସିଲି। ମୟୁରଭଞ୍ଜ ଗ୍ରେଜେଟ୍‌ର କ୍ରୋଡ଼ପତ୍ରରେ ତାଙ୍କର ପରିଚୟ ଦେବାପାଇଁ ଯାଇ ମୁଁ ତାଙ୍କୁ ଆଦିବାସୀ ପ୍ରତିନିଧି ବୋଲି ଲେଖିଥିଲି, ସେଇଟା ମହେଶ୍ୱର ବାବୁଙ୍କୁ ସୁହାଇଲା ନାହିଁ, ବରଂ ବାଧିଲା। ପରବର୍ତ୍ତୀ କାଳରେ ସେ ମୟୁରଭଞ୍ଜର ଆଦିବାସୀ ପ୍ରତିନିଧି ଆକାରରେ ପାର୍ଲାମେଣ୍ଟର ମେମ୍ବର ହେଲେ। ମନ ଥରେ ଫାଟିଗଲେ ଯୋଡ଼ିବା ବହୁତ କଷ୍ଟହୁଏ। ଯାହାହେଉ, ସୁହାଇଲା ନାହିଁ; ବରଂ ବାଧିଲା। ମୁଁ ପ୍ରାୟ ଭୁଲ ପ୍ରାୟଶ୍ଚିତ କରିବାପାଇଁ ଦିନେ ସାଇକେଲ ଚଢ଼ି କରଞ୍ଜିଆରୁ ୧୪/୧୫ ମାଇଲ ଦୂର ଐତିହାସିକ ଖିଚିଂ ପାଖରେ ଗାଲୁସାହିର ତାଙ୍କ ବାସ ଭବନକୁ ଯାଇଥିଲି, ଏବଂ କ୍ଷମାଭିକ୍ଷା କରିଥିଲି। ଆମେ ପୁନର୍ବାର ବନ୍ଧୁ ହେଲୁ। ଅନେକ ବନ୍ଧୁ-ବାନ୍ଧବଙ୍କୁ ମୁଁ ହରାଇଛି। ମହେଶ୍ୱର ବାବୁଙ୍କର ମୃତ୍ୟୁ ମୋ ପକ୍ଷରେ ଏକ

ଦାରୁଣ ଦୁର୍ବିସହ ଘଟଣା ମନରେ ଲିପିବଦ୍ଧ ରହିଛି । କ୍ୱଚିତ୍ ଏମିତି ସ୍ନେହୀ ବନ୍ଧୁ ମିଳନ୍ତି । ସାହିତ୍ୟ କରିଆରେ ଏମିତି ବନ୍ଧୁତା ମିଳିଥାଏ ।

ଏହା ଭିତରେ ମୋ ଅଫିସ କାମ ଖୁବ୍ ବଢିଗଲା । ଅଫିସରେ ଯେତେ ଅଡୁଆ ଗୋଳମାଳିଆ କାମ, ମୋ ଉପରେ । ପୂର୍ବରୁ କହିଛି, ପ୍ରଜାସଭା, କେନ୍ଦ୍ର ପରିଷଦ ଏପରିକି କନଷ୍ଟିଚୁଏଣ୍ଟ୍ ଏସେମ୍ବ୍ଲି କାମ ସହିତ ପବ୍ଲିସିଟି, "ଭଞ୍ଜପ୍ରଦୀପ", "ମୟୂରଭଞ୍ଜ କ୍ରନିକଲ" ଇତ୍ୟାଦି ଯାବତୀୟ୍ କାମ ମୋତେ ନିଜେ କରିବାକୁ ପଡେ । ଦୁଇଜଣ ସହକାରୀ ମଧ୍ୟରୁ ଜଣେ ଆତ୍ମୀୟ୍ ବନ୍ଧୁବାସ । ତାଙ୍କର ସ୍ୱାସ୍ଥ୍ୟ କାରଣରୁ ପ୍ରାୟ୍ ବର୍ଷେ ଧରି ଛୁଟିରେ ରହିଲେ । ଅନ୍ୟଜଣେ ସହଯୋଗୀ, ଯେ କି ଗୋରୁ-ଗଧ ପରି ଖଟିପାରନ୍ତି ଏବଂ ବିନା ସାଇକେଲରେ ବାରମ୍ବାର ସହର ପରିକ୍ରମା କରିପାରନ୍ତି, ଅହରାତ୍ର ମୋତେ ସାହାଯ୍ୟ କରିବାରେ ତତ୍ପରଥା'ନ୍ତି । ତାଙ୍କର ମାନସିକ ଅବସ୍ଥା, ପାରିବାରିକ୍ ଅଶାନ୍ତି ହେତୁ ସ୍ୱାସ୍ଥ୍ୟ ପ୍ରାୟ୍ ଭୁଷୁଡି ପଡୁଥାଏ । ସେ ବି ଜଣେ କବି ଭାବାପନ୍ନ ବ୍ୟକ୍ତି । ଗୋଲ ଗୋଲ ପରିଷ୍କାର ଅକ୍ଷର, ନିର୍ମଳ ସ୍ୱଭାବ, ନିରୀହ, ଧୈର୍ଯ୍ୟବାନ ଓ ସହନଶୀଳ । ତାଙ୍କର ଗୋଟିଏ ଛୋଟ କବିତାର ନିମ୍ନ କେତୋଟି ଧାଡି ମନେପଡୁଛି -

"ନିଶୀଥ ରାତିରେ
ମନଟା ସତେ
କେମିତି କେମିତି କରେ ।
ଆସିବେ ନା କି
ସୁନାର ବର
ଆଜି ମୋର ଘରେ ।
ନିଶୀଥ ରାତରେ ।।
ଦୁଆର ଫାଳେ ରହିଛି ମେଲା
ଦିନ ଯାଇ ସନ୍ଧ୍ୟା ହେଲା
ଚାହିଁ ଚାହିଁ ଆଖିର ପାଣି ମରେ
ନିଶୀଥ ରାତରେ ।।
କଜଳ ଜଳା ଗଗନ ତଳେ
ଅନ୍ଧାର ଚିରି ଝିଲିକି ଜଳେ
ଛାତିଟା ମୋର ବିଷମ ଥରେ
ନିଶୀଥ ରାତରେ ।।

ପଦେକ ତାଙ୍କ ପାଟିର କୁହା
ଟିକିଏ ତାଙ୍କ ହାତର ଛୁଆଁ
ପାଇଲି ଯଦି ବଞ୍ଚିଗଲି ତ ରେ
ନିଶୀଥ ରାତରେ ।।"

ଏଇ ଯେଉଁ ପ୍ରେମିକ କବି, ସେ ମୋର ସହକର୍ମୀ ଓ ବନ୍ଧୁ । ତାଙ୍କ ପ୍ରଣୟର କରୁଣ ପରିସମାପ୍ତି ଘଟିଲା ଦିନେ । ଦିନରାତି ଅଫିସରେ କାମ କରିବା ଫଳରେ, ତାଙ୍କ ପ୍ରଣୟିନୀ ଦ୍ୱିତୀୟ ସ୍ତ୍ରୀ ଇତସ୍ତତଃ ହୋଇଗଲେ ଏବଂ ସ୍ୱାମୀଙ୍କ ସ୍ଥାନରେ ଅନ୍ୟ ପୁରୁଷ ସହିତ ରହିଲେ । ବିଶେଷ କରି ସ୍ୱାମୀ ମୋ ଅଫିସରେ କାମ କରୁଥିବା ବେଳେ । ଦିନେ ତାଙ୍କ ସ୍ତ୍ରୀ ବାପଘରକୁ ବାହାରିଲେ । ବନ୍ଧୁ କିଛି ନଜାଣିଲା ପରି, ତାଙ୍କୁ ସାଙ୍ଗରେ ନେଇ ଛୋଟ ରେଳ ଷ୍ଟେସନକୁ ଯାଇ ସେଇଠି ଟିକଟଟିଏ କାଟିଦେଲେ । ଟ୍ରେନରେ ଚଢିବା ପୂର୍ବରୁ ସେହି ମହୀୟସୀ ମହିଳା ସ୍ୱାମୀଙ୍କ ପାଦରୁ ଜୋରଜବରଦସ୍ତ ଧୂଳି ନେଲେ ଏବଂ ତାଙ୍କ ପିନ୍ଧା ଲୁଗାରୁ ଟିକିଏ କନା ଚାହିଁଲେ । ପତ୍ନୀ ସେତେବେଳକୁ ଜାଣି ସାରିଲେଣି, ସ୍ୱାମୀ ବୋଧହୁଏ ଚିରଦିନପାଇଁ ତାକୁ ବିସର୍ଜନ କରୁଛନ୍ତି । ତାଙ୍କର ପୂର୍ବପତ୍ନୀର ଝିଅଟିପାଇଁ ସେ ମିଠା ନେବେ ବୋଲି ମାଗିଲେ । ମୋ ବନ୍ଧୁ କହିଲେ "ତୁମ ହାତରୁ ମୋ କୁନିଝିଅ ମିଠା ଖାଇଲେ ତାର ମୃତ୍ୟୁ ହୋଇଯିବ, ତୁମର ଯେଉଁ ଚରିତ୍ର !" ଟ୍ରେନ ଚାଲିଗଲା । ବନ୍ଧୁ ଅଫିସକୁ ଫେରିଆସିଲେ । ନିର୍ବିକାର ଚିତ୍ତ ! କେଡ଼େ ବଡ଼ ମାଡ଼କୁ କେଡ଼େ ନିର୍ବିକଳ୍ପ ଚିତ୍ତରେ ସେ ସମ୍ଭାଳିନେଲେ !

ବନ୍ଧୁ ପ୍ରକୃତରେ ଥରେ ନୁହେଁ, ବହୁତ ଥର ଆଖିରେ ଦେଖିଛନ୍ତି କିଛିଟା ଦ୍ୱିତୀୟ ସ୍ତ୍ରୀର ଦୁଷ୍କର୍ମ, ଚାରିତ୍ରିକ ସ୍ଖଳନ । ଏଇ ଘଟଣାର ଦୁଇବର୍ଷ କି ତିନିବର୍ଷକାଳ ପ୍ରାୟ ବୁଝେଇ ବୁଝେଇ ମୁଁ ଓ ଅନ୍ୟ ବନ୍ଧୁମାନେ ତାଙ୍କୁ ଆଉଥରେ ବାହା ହେବାକୁ ପ୍ରବର୍ତ୍ତାଇଲୁ । ସେ ବାହାହେଲେ ଏବଂ ଶେଷ ଜୀବନ ସୁଖରେ କଟାଇବାର ମୁଁ ଖବର ପାଇଛି । ପୂର୍ବରୁ ଦିନେ କଥା ଛଳରେ କହୁଥିଲେ- "ମୋର ଦ୍ୱିତୀୟ ସ୍ତ୍ରୀଠୁ ବଳି ସେବା କାର୍ଯ୍ୟରେ କେହି ଦୁନିଆରେ ନଥିବେ । ମୋତେ କେବେ ଖାଇବାରେ, ପିନ୍ଧିବାରେ ତ୍ରୁଟି କରିନାହାନ୍ତି । ତାଙ୍କର ଶ୍ରଦ୍ଧା ଓ ସ୍ନେହ ଅବାରିତ ଜଣାପଡୁଥିଲା । ମୁଁ ନିଜକୁ ଖୁବ୍ ଭାଗ୍ୟବାନ ମନେ କରୁଥିଲି । ମୁଁ ସ୍ୱପ୍ନରେ ମଧ୍ୟ କେବେ ଭାବି ନଥିଲି ଯେ ପତ୍ନୀ ସ୍ୱାମୀର ଏମିତି ସେବା ଶୁଶ୍ରୂଷା କରିପାରେ ।" ତାଙ୍କର ମନ୍ତବ୍ୟ- ଅତିବେଶି ସ୍ନେହ, ଶ୍ରଦ୍ଧା କରୁଥିବା ସ୍ତ୍ରୀକୁ ସ୍ୱାମୀ ସବୁବେଳେ ସତର୍କ ଦୃଷ୍ଟିଦେଉଥିବା ଉଚିତ ।



## ॥ ଛତିଶ ॥

ହଁ ପ୍ରଧାନମନ୍ତ୍ରୀଙ୍କ କଥା କହୁଛି । ଶରତ "ଗାନ୍ଧୀ" ଯଥାର୍ଥରେ ଗାନ୍ଧୀଆନ । ପ୍ରାୟ ନିଃସ୍ୱାର୍ଥ ଜନସେବକ । ତାଙ୍କର ଜନସେବାରେ ଅଭିଜ୍ଞତା ମଧ୍ୟ ଥିଲା । ବାହାରର ନେତାମାନଙ୍କ ସହିତ ମିଳିମିଶି ସେ ଅନେକ କଥା ଶିଖିଥିଲେ । ଏତେବଡ ଦାୟିତ୍ୱ ବହନ କରି ସେ ଘାବୁଡାଇଗଲେ । ମୟୂରଭଞ୍ଜ ପକ୍ଷରେ ଗୋଟାଏ ସଙ୍କଟର କ୍ଷଣ । ତାଙ୍କର ଉପଯୁକ୍ତ ସହକର୍ମୀ ବା ଉପଦେଷ୍ଟା ଅଭାବହେଲା । ଆଦିବାସୀ ନେତାମାନେ ଏକତ୍ର କାମ କରୁଥିଲେ ମଧ୍ୟ ଅଲଗା ମନୋଭାବ ନେଇ କାମକଲେ । ହାଟୁଆ, ଅଣହାଟୁଆ ଭାବ ସବୁବେଳେ ହୃଦୟରେ ଜାଗ୍ରତ ରହିଲା । କର୍ମୀମାନେ ସବୁବେଳେ ତାଙ୍କୁ ଘେରିରହିଲେ । ତାଙ୍କୁ ଖାଇବାକୁ, ଶୋଇବାକୁ ମଧ୍ୟ ବେଳେବେଳେ ଦିଅନ୍ତି ନାହିଁ । ରାତି ୧୦/୧୧ଟା ବେଳେ ଗାଡିରେ ଆସି ମୋ କ୍ୱାଟର୍‌ରେ ପହଞ୍ଚନ୍ତି, ତାଙ୍କର ଅତ୍ୟନ୍ତ ବିଶ୍ୱସ୍ତ ଚପରାଶିକୁ ଧରି । ମୁଁ ତାଙ୍କ ସାଙ୍ଗରେ ଯାଏଁ ମୟୂରଭଞ୍ଜ ରାଜ୍ୟର ସୀମାନ୍ତକୁ । କାଳେ ଚୋରାରେ ଧାନ ଚାଉଳ ବାହାରକୁ ଚାଲିଯାଉଥିବ, ତାକୁ ଅଟକାଇବାପାଇଁ । ତାଙ୍କ ଶରୀରରେ ଉତ୍ତାପ ଥାଏ । କଥାବାର୍ତ୍ତା କରିବାର ଶକ୍ତି ନଥାଏ । ନିଦ ଆସିଯାଏ । ସ୍ୱାର୍ଥପର, ଖୋସାମତିଆ ଓ ଟାଉଟର ଶ୍ରେଣୀର ଲୋକେ ଖଣ୍ଡେ ଖଣ୍ଡେ ଜମି ନିଜ ନାଁରେ କରିନେବାରେ ବ୍ୟସ୍ତ । ଆଉ ଯେଉଁ କେତେଜଣ ବାହାର ଅଫିସର ଥିଲେ, ସେମାନଙ୍କର ମୟୂରଭଞ୍ଜ ପ୍ରତି ସ୍ନେହ ଶ୍ରଦ୍ଧା ଆଦର କୁଆଡୁ ଆସିବ ? ତାଙ୍କର ଦରମା ଗଣ୍ଡିକ ପାଇଲେ, ନୂଆ କିଣା ହୋଇଥିବା ଝଟ୍‌କା ବା ଗାଡି ଖଣ୍ଡେ ପାଇଲେ ହେଲା । ଏହି ସମୟରେ ଆମର ଷ୍ଟେଟ୍ ପ୍ରେସ (ଆଜି ଯେଉଁଠି ଷ୍ଟେଟ୍ ବ୍ୟାଙ୍କ ହୋଇଛି) ଉତ୍କଳ ୟୁନିଭରସିଟି ହାତରେ ସମର୍ପଣ କରାଗଲା । ସେକ୍ରେଟାରୀରେ ଥିଲେ ଆମର ଖୁବ୍ ଗୁଣୀ, ଜ୍ଞାନୀ, Parisରୁ ଡକ୍‌ଟରେଟ୍ ପାଇଥିବା ଏସ୍. ମୁଖାର୍ଜୀ । ତାଙ୍କର ପ୍ରରୋଚନାରେ ସାଢେ ସାତଲକ୍ଷ ଟଙ୍କାରେ ବନାରସ ହିନ୍ଦୁ ୟୁନିଭରସିଟିରେ Mayurbhanja Chair of Sanskrit Learning and Languages ପ୍ରତିଷ୍ଠିତ ହେଲା । ସାର୍ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍ ବାରିପଦା ଆସିଲେ, ବିଶ୍ରାମ ଭବନରେ ରହିଲେ । ବାରିପଦା ହାଇସ୍କୁଲ ହଲରେ ବକ୍ତୃତା ଦେଇଥିଲେ । ମୁଁ ଚାରିଜଣ ଷ୍ଟେନୋଗ୍ରାଫର ନେଇ ତାଙ୍କର ବକ୍ତୃତା ରେକର୍ଡକରିବାର ବ୍ୟବସ୍ଥା କରିଥିଲି । ସମସ୍ତେ ମିଳିମିଶି ଯାହା ରେକର୍ଡ କରିଥିଲେ, ତାକୁ ସର୍ବପଲ୍ଲୀଙ୍କ ହାତରେ ଫେରାଇଦେଲେ । ସର୍ବପଲ୍ଲୀଙ୍କ ବକ୍ତୃତା କରିବା ସମୟର ଭଙ୍ଗୀ ଆଶ୍ଚର୍ଯ୍ୟଜନକ । ବିରାଟ ପଗଡି ଲଗାଇ ସେ ଧ୍ୟାନସ୍ଥଯୋଗୀ ପରି ବିରାସନରେ ବସିଲା

ପରି ବସିଯାଆନ୍ତି ଏବଂ ଏକଧ୍ୟାନରେ ଶୂନ୍ୟକୁ ଚାହିଁ ତନ୍ମୟ ହୋଇ ବକ୍ତୃତାକରନ୍ତି। ମିନିଟକୁ ୧୦୦ କି ୨୦୦ କି ୩୦୦ ଶବ୍ଦ ତାଙ୍କ ପାଟିରୁ ବାହାରେ, କହିହେବ ନାହିଁ। ଏପରି ମହାଜ୍ଞାନୀ ଯୋଗପୁରୁଷ ଭାରତବର୍ଷର ପ୍ରଥମ ରାଷ୍ଟ୍ରପତି ହେବାର ଯେ ଯୋଗ୍ୟତମ ବ୍ୟକ୍ତି, ସେଥିରେ ବା କଣ ସନ୍ଦେହ ଥିଲା ? ଆଶ୍ଚର୍ଯ୍ୟ ପୁରୁଷ ! ଯିଏ ତାଙ୍କୁ ଦେଖିଛି ବା ଶୁଣିଛି, ସେ ଧନ୍ୟ।

ପ୍ରଜାସଭା ଓ କେନ୍ଦ୍ର ପରିଷଦ ସଂକ୍ରାନ୍ତ କାଗଜ ପତ୍ର ଧରି ମୁଁ ଅନ୍ତତଃ ଚାରିଥର ମହାରାଜାଙ୍କର ପତ୍ରବାହକ ହୋଇ ଦିଲ୍ଲୀ ଯାଇଛି। ପୁନର୍ବସତି ମନ୍ତ୍ରୀ ଓ ରେଲୱେ ମନ୍ତ୍ରୀ ଥିବା ନିୟୋଗୀଙ୍କ ପାଖକୁ, ଏକା ଏକା। ମୟୂରଭଞ୍ଜ କେନ୍ଦ୍ର ପ୍ରଜାସଭାର ଓଡିଆ ତର୍ଜମା ଅର୍ଡର ମୁଁ ନେଇଥାଏ। ଦିଲ୍ଲୀକୁ ଟ୍ରେନରେ ଯିବା ହାଓ୍ୱାଡା ଦେଇ ଏବଂ ୨୮/୩୦ ଘଣ୍ଟା ଯାତ୍ରାରେ ଦୀର୍ଘ ପଥ ଅତିକ୍ରମ କରିବା ଏବଂ ଅଜ୍ଞାତ ସହରରେ ନିୟୋଗୀଙ୍କୁ ପାଇବା, ମୋ ପକ୍ଷରେ କାଠିକର ପାଠ।

ନିୟୋଗୀ ଭାରି ସ୍ନେହୀ ଏବଂ ସହାନୁଭୂତି ସମ୍ପନ୍ନ। ସମ୍ବେଦନଶୀଳତାରେ ଅଦ୍ୱିତୀୟ। ତାଙ୍କରି ଘରେ ମୁଁ ଖାଏ ଓ ରୁହେ। ଅବସର ସମୟରେ ସେ କାଗଜପତ୍ରର ଆଲୋଚନା କରନ୍ତି, ବୁଝାଇ ଦିଅନ୍ତି। ଥରେ ହଠାତ୍ କର୍ଫ୍ୟୁ ଜାରିହେଲା। ଗୁଡାଏ ଲୋକ ଇତସ୍ତତଃ ହେବାକୁ ଲାଗିଲେ। ମୁଁ ଆଉ ବନମାଳୀ ବୋଲି ଚପରାଶିଟି ଅଲଗା ଅଲଗା ହୋଇଗଲୁ। ନିୟୋଗୀଙ୍କ ଘରେ ଯେତେବେଳେ ଆମ ଦୁଇଜଣଙ୍କର ପୁନର୍ମିଳନ ହେଲା, ସେତେବେଳେର ଆନନ୍ଦ କହିଲେ ନସରେ। ପୋଟଳ ଆଦି କିଛି କିଛି ପନିପରିବା ସାଙ୍ଗରେ ନେଇଥିଲି। ସେଗୁଡା ମନ୍ତ୍ରୀଙ୍କର ତଥା ଆମର ବହୁତ ଉପକାରରେ ଆସିଲା।

ଦିଲ୍ଲୀ ବିରାଟ ସହର। ତାର ଆଗ, ପଛ, ମୂଳ, ଶେଷ, କିଛି ଜଣା ନଥିଲା। ଜାଣିଥିଲେ ମଧ୍ୟ ପ୍ରକୃତ ରାସ୍ତା ଭୁଲି ଯାଉଥିଲି। ଥରେ ବନମାଳୀ ସାଙ୍ଗରେ ରାସ୍ତା ହରାଇ ଟାଙ୍ଗାରେ ବୁଲୁ ବୁଲୁ ଦିନ ବାରଟା କି ୧ଟା ବେଳେ ଗୋଟାଏ ପ୍ରାୟ ନିର୍ଜନ ସ୍ଥାନରେ ପହଞ୍ଚିଲୁ। ଚାରିଆଡେ ବଡ ବଡ ପକା ଘର। ଖରାରେ ବୁଲି ବୁଲି ଖୁବ୍ ଶୋଷ ଲାଗିଲା। ପାଖରେ ପାନ ଦୋକାନଟାଏ ଦେଖି ବନମାଳୀକୁ ପାନ ଦୁଇଟା ଆଣିବାପାଇଁ କହିଲି। ସେ ଟାଙ୍ଗାରୁ ଓହ୍ଲାଇ ପାନ ଦୋକାନ ଆଗକୁ ଚାଲିଗଲା। ମୁଁ ତାର ଫେରିବା ରାସ୍ତାକୁ ଚାହିଁରହିଲି। ହଠାତ୍ ପାଖ ଗଳିରୁ ଯୋଡାଏ କି ତିନିଟା ବୀସନି କଞ୍ଚି ଟୋକା ମୋ ଆଡକୁ ଜୋରରେ ଭିଡିଆସିଲେ ଏବଂ ବଡିଆ ମିଠା ସ୍ୱରରେ କହିଲେ "ବଙ୍ଗାଳୀ ବାବୁ ଆଇଏ। ଛୋକରୀ ଚାହିଏ ?" ମୁଁ କ'ଣ କହୁଛି, ପିଲାଟା ବୁଝି ପାରିଲାନି। ପୁଣି ତା ପାଖ

ଟୋକାଟା ଅଭିନୟ କରି ସେଇ କଥା ଦୋହରାଇଲା । ମୋତେ ହିନ୍ଦୀ ଭଲ ଆସେନି, ସେମାନେ କ'ଣ କହୁଛନ୍ତି ମୁଁ ବୁଝି ପାରିଲି ନାହିଁ ବୋଲି ଠାରି କହିଦେଲି । ସେମାନେ ଟାଙ୍ଗା ଉପରକୁ ଚଡି ଆସିଲେ । ମୁଁ ଏତିକି ବୁଝିଲି- ସେମାନେ ମୋତେ ବଙ୍ଗାଳୀ ରସିକ ଠଉରାଇଛନ୍ତି ଏବଂ ପ୍ରଲୋଭନ ଦେଖାଇ ଡାକୁଛନ୍ତି କୌଣସି ଏକ ଅଗମ୍ୟ ଗୃହକୁ । ଭାଗ୍ୟକୁ ବନମାଳୀ ପାଚିଲା ଛାଚି ପାନ ଯୋଡାଏ ଧରି ଆସିଗଲା ଏବଂ ମୋ ଉପରେ ଏଇ ଯେଉଁ ଅଶ୍ଳୀଳ ଆକ୍ରମଣ, ତାର ଗୁରୁତ୍ୱ ଉପଲବ୍‌ଧି କଲା । ସେତେବେଳେ ବେଳ ଦୁଇ ପ୍ରହର ଗଡିଯିବା ଉପରେ । ଭୀଷଣ ଖରା । ଦିଲ୍ଲୀରେ ଭୟଙ୍କର ଉତ୍ତାପ । ମୋତେ କିଛି ନ କହି ବନମାଳୀ ଟାଙ୍ଗାବାଲାକୁ ଅନ୍ୟ ରାସ୍ତାରେ ଯିବାପାଇଁ ଆଦେଶଦେଲା । ପିଲାମାନେ ଆପେ ଆପେ ଓହ୍ଲେଇଗଲେ । କିଛି ଦୂର ଯିବାରୁ ବନମାଳୀ କହିଲା, "ସାର୍ ଆପଣଙ୍କର ପୋଷାକ ପତ୍ର (ଧୋତି, ପଞ୍ଜାବି) ଏବଂ ଅସମୟରେ ଜନମାନବ ଶୂନ୍ୟ ସ୍ଥାନରେ ଦେଖି ଆକ୍ରମଣ କରୁଥିଲେ । ଏ ରାସ୍ତାରେ ମୋର ଆସିବାର ନଥିଲା । ଏ areaଟା ଭଲ ନୁହେଁ ।" ଏବେ ମୁଁ ଧୋତି ପଞ୍ଜାବୀ ପିନ୍ଧିଲେ, ସେହିଦିନ ଦୁଇ ପହରରେ ଅକାଗାରେ ଦିଲ୍ଲୀରେ ବୁଲା ବୁଲି କରିବା କଥା ମନେପଡେ ।

ମୟୂରଭଞ୍ଜ ଚାକିରି କାଳରେ ମୋର ପଦୋନ୍ନତି କ୍ଷେତ୍ରରେ ଏ ଧୋତି ପଞ୍ଜାବି ପୋଷାକ ଉନ୍ନତିର ଅନ୍ତରାୟ ହେଲା ବୋଲି ଉପଲବ୍‌ଧିକଲି । ଫେରିଲା ବେଳକୁ ନିୟୋଗୀ ଗୋଟାଏ ସ୍ପେଶାଲ୍ ଟ୍ରେନ୍‌ରେ କଲିକତା ଆସୁଥିଲେ । ଗୋଟିଏ ଇଞ୍ଜିନ୍ ଆଉ ତିନିଟା ଡବା ସେ ଟ୍ରେନରେ ଲାଗିଥାଏ । ମନ୍ତ୍ରୀଙ୍କର ଗୋଟିଏ ଡବା ଓ ତାଙ୍କର ଅନୁଚର ମାନଙ୍କପାଇଁ ଆଉ ଗୋଟିଏ ଡବା ଏବଂ ମୋପାଇଁ ପୂରାପୂରି ଗୋଟିଏ ଖାଲି ଡବା । ପରିଷ୍କାର ପରିଛନ୍ନ । ହାତେ ଉଚ୍ଚ ଗଦି । ଯୋଡା ଯୋଡା ପଙ୍ଖା । ପର୍ଦ୍ଦା ସବୁ ଝରକା କବାଟରେ ଏତେ ଆରାମଦାୟକ ଯେ, ମୋର ଭୋକଶୋଷ ସବୁ ମରିଗଲା । ନିଦ ହେଲା ନାହିଁ । ନିୟୋଗୀ ବହି ପ୍ରିୟ । ବଡ ବଡ ଷ୍ଟେସନ୍ କେଉଁଠି ଆସିଲେ, ସେ ଗାଡିରୁ ଓହ୍ଲେଇ ପଡନ୍ତି । ହ୍ୱିଲର୍ ଷ୍ଟଲରୁ ବହି ଓ ମେଗାଜିନ୍ କିଣନ୍ତି । ପରବର୍ତ୍ତୀ ଷ୍ଟେସନ୍ ପହଞ୍ଚିଲା ବେଳକୁ ଆଉ ଥାକେ କିଣନ୍ତି । ମୋ ପାଖକୁ ଖାନା ଜଳଖିଆ ଆସେ, କେତେବେଳେ କେମିତି ରେଷ୍ଟୋରାଁ ଡକାନ୍ତି ଓ ମହାରାଜାଙ୍କପାଇଁ ଚିଠିପତ୍ର ଡାକି ଦିଅନ୍ତି । ମୋ ପକ୍ଷରେ ଏ ଯାତ୍ରା ଏକ ବିଚିତ୍ର ଅନୁଭୂତି ।

ଏହି ସମୟରେ ଭାରତର ସ୍ୱାଧୀନତା ପ୍ରାପ୍ତି ପରେ ପରେ ମହାତ୍ମା ଗାନ୍ଧୀଙ୍କର ଆତତାୟୀର ଗୁଳିରେ ସ୍ୱର୍ଗ ପ୍ରୟାଣ ଏବଂ ଦିଲ୍ଲୀରେ ଦଙ୍ଗା ହାଙ୍ଗାମା, ସାମ୍ପ୍ରଦାୟିକ ଗଣ୍ଡଗୋଳ, ବିଭୀଷିକା, ହତ୍ୟାକାଣ୍ଡ ତଥା ନାନା ପ୍ରକାର ଅସ୍ଥିରତା ଓ ଅଶାନ୍ତି ଦେଶକୁ

ଆସିଥାଏ ଏବଂ ମୟୂରଭଞ୍ଜରେ ତହିଁର କୁପ୍ରଭାବ ପଡିଥାଏ। ତେଣୁ ଆଉଥରେ ଦିଲ୍ଲୀକୁ ଗଲାବେଳେ ଅଭୂତପୂର୍ବ ଅବସ୍ଥାଦେଇ ଅତିକ୍ରମ କରିଥିଲି। ଅଧାବାଟ ପରେ ଟ୍ରେନ୍ ଦିଲ୍ଲୀକୁ ଗଲା ନାହିଁ। ଟ୍ରେନରେ ଖୁବ୍ କମ୍ ଲୋକ ଥିଲେ। ପୋଲିସ୍ କହିଲା, ଦିଲ୍ଲୀର ଅବସ୍ଥା ଏମିତି ଯେ ସେମାନେ କୌଣସି ଲୋକର ଧନ ଜୀବନର ନିରାପତ୍ତା ଦାୟିତ୍ୱ ନେଇ ପାରିବେ ନାହିଁ। ପ୍ରତ୍ୟେକ ପେସେଞ୍ଜାରକୁ ପୋଲିସ ପଚାରିଲା- ସେମାନେ ସେଠାରେ ଓହ୍ଲେଇ ଯିବେ କିମ୍ବା ଆଗକୁ ଯିବେ। ଦିଲ୍ଲୀ ଷ୍ଟେସନ୍‌ରେ ପହଞ୍ଚିଲା ବେଳକୁ ଦେଖିଲି, ଷ୍ଟେସନଟା ଗୋଟିଏ ପୋଲିସ୍ ଓ ମିଲିଟାରୀ ଛାଉଣୀ ହୋଇଯାଇଛି। ପ୍ରତି ଖୁଣ୍ଟ ପାଖରେ ଜଣେ ବନ୍ଧୁକଧାରୀ ପୋଲିସ। କୁଲି ଜିନିଷ ପତ୍ର ନେଇ ଏତେ ଜୋରରେ ଆଗେଇଗଲା ଯେ, ମୁଁ ତାକୁ ଧରିପାରିଲି ନାହିଁ। ଷ୍ଟେସନରେ କୁଆଡେ ଯିବି, ତାକୁ କେଉଁଠି ଖୋଜିବି, ଜିନିଷ ପତ୍ର କେଉଁଠି ରହିଲା ? ଅଣନିଃଶ୍ୱାସୀ ହୋଇ ଉପରୁ ତଳ ହୋଇ ଧାଁ ଧପଡ କରୁ କରୁ ଅକସ୍ମାତ୍ ଜିନିଷ ସବୁ ପାଇଗଲି। କୁଲି କୁଆଡେ ଅର୍ନ୍ତଧ୍ୟାନ ହୋଇଯାଇଥିଲା। ଟାଙ୍ଗାବାଲା ପାଞ୍ଚ ଦଶ ଟଙ୍କା ଯାଗାରେ ୪୫ ଟଙ୍କା ନେଲା।

ଆଉଥରେ Chamber of Princes ଦ୍ୱାରା ଆୟୋଜିତ Eastern State Publicity Officers ମାନଙ୍କର ଟ୍ରେନିଙ୍ଗରେ ଯୋଗଦେବାପାଇଁ ଦିଲ୍ଲୀ ଯାଇଥିଲି। ଦୌବାତ୍ ଟ୍ରେନ୍‌ରେ ଜଣେକ ଚତୁର୍ବେଦୀଙ୍କ ସହିତ ଦେଖାହେଲା। ସେ ତିନିଟା ବିଷୟରେ M.A. ଏବଂ ଉତ୍ତର ପ୍ରଦେଶର ଶିକ୍ଷା ବିଭାଗରେ ଜଣେ ଇନିସ୍‌ପେକ୍‌ଟର। Class-I ପାହ୍ୟାର୍ କର୍ମଚାରୀ। ସେ ଏତେ ଜ୍ଞାନୀ ଓ ତାଙ୍କ କଥାବାର୍ତ୍ତା ଏତେ ଭଦ୍ର ଓ ମଧୁର ଯେ, ମୁଁ ତାଙ୍କ ସହିତ ବାର୍ତ୍ତାଳାପ କରୁ କରୁ ଦିଲ୍ଲୀ ପହଞ୍ଚିଗଲି। ଜଗନ୍ନାଥଙ୍କ ଦେଶର ଲୋକ ମୁଁ। ସେତିକି ତାଙ୍କ ସହିତ ଆତ୍ମୀୟତାର ମୂଳ କାରଣ। ଷ୍ଟେସନରେ ପହଞ୍ଚି ସେ ମୋତେ ତାଙ୍କ ସାଙ୍ଗରେ ତାଙ୍କ ଘରକୁ ଯିବାପାଇଁ ଡାକିଲେ। ଦରିଆଗଞ୍ଜରେ ତାଙ୍କର ଘର। ତାଙ୍କ ଘରେ ମୁଁ ଦୁଇଦିନ ରହିଲି। ସେ ଜଣେ ଆର୍ଯ୍ୟସମାଜର ଲୋକ। ସେମାନେ ମାଛ ମାଂସ ଖାଆନ୍ତିନି। ସବୁବେଳେ ତାଙ୍କର ଦୁଃଖ ଯେ, ମୋ ମନ ମୁତାବକ ଖାଇବାକୁ ସେମାନେ ଦେଇପାରିଲେନି। ଅତିଥି ପରାୟଣତା ଓ ସେବା ମନୋଭାବ କ'ଣ ଜିନିଷ ତାହା ମୁଁ ସେଇଠି, ସେମାନଙ୍କ ପାଖରୁ ଶିଖିଲି। ଦୁଇଦିନ ତାଙ୍କ ଘରେ ରହିଲା ପରେ ୱେଷ୍ଟର୍ନ କୋର୍ଟରେ ରହିଲି, କନ୍ନଟପ୍ଲେସ୍‌ରେ। ମୁଁ ଚାଲିଆସିବାରେ ସେମାନଙ୍କର ବେଶି ଦୁଃଖ ନା ମୋର ବେଶି ଦୁଃଖ ଜାଣିପାରିଲି ନାହିଁ।

ହୋଟେଲ୍‌ରେ ପହଞ୍ଚି ସାଙ୍ଗସାଥୀମାନଙ୍କ ମେଳରେ ସେମାନଙ୍କ କଥା ଭୁଲିଗଲି। ହୋଟେଲର ସାଜ ସରଞ୍ଜାମ, ଗାଧୋଇବା, ଖାଇବା, ପିଇବାର ବ୍ୟବସ୍ଥା ଦେଖି ଆମେ

ଯାବେରେଇ ଗଲୁ । ବଡ଼ ବଡ଼ bath tub । ରାଶି ତେଲ ମାଖି, ଆମଭିତରୁ କଣେ ଅଧେ ରଙ୍ଗିନ ମସିଆ ଗାମୁଛାରେ ଘଷିହୋଇ, bath tub କୁ ନର୍ଦ୍ଦମାରେ ପରିଣତକଲେ । ଆଉ କେହି କେହି ସେ ତଉଲିଆକୁ ଏମିତି ଅକାଗାରେ ଟାଙ୍ଗିଲେ ଯେ, କେହି କେହି ବଲାଙ୍ଗିର ଫ୍ଲେଗ୍, କଳାହାଣ୍ଡି ଫ୍ଲେଗ୍ ଆଖ୍ୟାଦେଲେ । ଆଉ କେହି କେହି ୩୦-୪୦ ପିସ୍ ମାଛ ଖାଇ ଝାଡ଼ା-ଜ୍ୱରରେ ପଡିଗଲେ ।

ହୋଟେଲରୁ ଆମେ ପ୍ରତିଦିନ ଟାଙ୍ଗାରେ ପାର୍ଲାମେଣ୍ଟ ହାଉସ୍‌କୁ ଯାଉ । ସେଇଠି ଆମର ତାଲିମ୍ ବ୍ୟବସ୍ଥା ହୋଇଥାଏ । ତାଲିମ୍ ସରିଲା । ବଡ ବଡ ଖବର କାଗଜର ସମ୍ପାଦକମାନେ ଏବଂ ପ୍ରଖ୍ୟାତ ସାମ୍ବାଦିକଗଣ ବକ୍ତୃତାମାନ ଦେଲେ । ନାନା ଉପଦେଶ ସମ୍ବଳିତ ଜ୍ଞାନଗର୍ଭକ ବକ୍ତୃତା ମାଳା । ଏହି ସମୟରେ ଆମେ ପ୍ରଖ୍ୟାତ ବ୍ୟଙ୍ଗଚିତ୍ରକାର (କାର୍ଟୁନିଷ୍ଟ) ଶଙ୍କରଙ୍କୁ ଟ୍ରେନ୍‌ରେ ଭେଟିଥିଲୁ । ଆମେ ତାଙ୍କୁ ସଦଳବଳେ ଦେଖାକଲୁ ଏବଂ ପଚାରିବାକୁ ଚାହୁଁଥିଲୁ, ସେ ଆମ ବିଷୟରେ କ'ଣ ଭାବୁଛନ୍ତି । ଆମର ଗାଇଡ୍ ମନା କଲା ଦୁଃସାହସ କରିବାକୁ ଏବଂ କହିଲା "ଶଙ୍କର ଥରେ ଏକ ସୁନ୍ଦରୀ ଝିଅ ସହିତ ଯାତ୍ରା କରୁଥିଲେ । ସେ ଝିଅର ମନେ ମନେ ଗର୍ବ ଯେ, ସେ ଅତି ସୁନ୍ଦରୀ । ଆତ୍ମୀୟତା ହେବା ପରେ ଝିଅଟି ଶଙ୍କରଙ୍କୁ କହିଲା, 'ଆପଣ ଦୟାକରି ମୋ ବିଷୟରେ ଯେଉଁ impression ନେଲେ, ତାକୁହିଁ ରୂପ ଦେଇ ଛବିଟିଏ କରନ୍ତୁତ ।' ଶଙ୍କର ସାଙ୍ଗେ ସାଙ୍ଗେ କାମରେ ଲାଗିପଡିଲେ । ଯୋଡାଏ ତିନିଟା ଷ୍ଟେସନ୍ ପରେ ସେ ଝିଅଟି ଓହ୍ଲେଇ ଗଲା । ଶଙ୍କର ତାକୁ ଡାକି ତା'ହାତକୁ କାଗଜଟିଏ ବଡାଇ ଦେଲେ । ସେ ଝିଅଟି ଆଗ୍ରହରେ ସେଇ କାଗଜଟା ନେଲା, କିନ୍ତୁ ଫିଟେଇ ଦେଖିଲା ବେଳକୁ ଗୋଟିଏ ମାଈ ବିରାଡିର ଛବି । ସାମାନ୍ୟ ଟିକେ ଶଙ୍କର ଆଡକୁ ଚାହିଁ, ମୁରୁକି ହସିଦେଇ ଝିଅ ଅର୍ନ୍ତଧ୍ୟାନ ହୋଇଗଲା ।" ଆମେ ଭାବି ଚାଲିଲୁ, ଯଦି ସେ ଆମ ବିଷୟରେ ଛବିଟିଏ କରିଥା'ନ୍ତେ, କ'ଣ କରିଥାନ୍ତେ ?

ଖୁବ୍ ଉତ୍ସାହରେ ମୟୁରଭଞ୍ଜ କନଷ୍ଟିଚୁଏଣ୍ଟ ଏସେମ୍ବ୍ଲି, ପ୍ରଥମ ଅଧିବେଶନ ବସିଲା ଏବଂ ଭାରତୀୟ ସମ୍ବିଧାନର ଅନୁରୂପ ଗୋଟାଏ ବିରାଟ କିନିଷ ପ୍ରସ୍ତୁତି କରିବାରେ ମନ ବଳାଇଲା । କେନ୍ଦ୍ର ପରିଷଦରେ ଯେଉଁ ସଭ୍ୟମାନେ ଥିଲେ, ମୁଖ୍ୟତଃ ସେହିମାନେ ହିଁ ସମ୍ବିଧାନର ପ୍ରଣୟନ ସଂସ୍ଥାନରେ ରହିଲେ । ଉଭୟ ସଭାରେ ମୁଁ announcer ବା ଘୋଷକର କାମ କରେ ଏବଂ ଲମ୍ବା ଲମ୍ବା ଇଂରାଜୀ ବକ୍ତୃତାର ମଧ୍ୟ ସାଙ୍ଗେ ସାଙ୍ଗେ ଓଡିଆ ଅନୁବାଦ ସଭ୍ୟମାନଙ୍କ ଆଗରେ ଉପସ୍ଥାପନକରେ । କେବଳ ସେତିକ ନୁହେଁ, ବକ୍ତୃତା କେମିତି ଉଭୟ Oriya, English ରେ ଛପାହେବ, ତାର ବି ବ୍ୟବସ୍ଥାକରେ । ଯେଉଁମାନେ ମୋର ପ୍ରଭୁ, ସେମାନଙ୍କୁ ଏସବୁ କାମର ପରିମାଣ କଣା ନାହିଁ ଏବଂ ମୋ ପକ୍ଷରେ ତାହା

କେତେ ଗୁରୁ ଦାୟିତ୍ୱ, ତାହା ମଧ୍ୟ ଉପଲବ୍ଧି କରିପାରନ୍ତିନି। ଅହୋରାତ୍ର କାମର ଚାପ। କେବଳ ମୋର ସେହି କିରାଣୀଟି ସହିତ ରହି ମୁଁ କାଳକଟାଏ।

ଏତିକିବେଳେ ଓଡିଶାରେ ବାଲେଶ୍ୱର, ସମ୍ବଲପୁର ଆଦି ଚାରୋଟି ସ୍ଥାନରେ ସରକାରୀ କଲେଜ ହେବାର ନିଷ୍ପତ୍ତି ହେଲା। ତ୍ରିପାଠୀ ସାହେବ ଲେକ୍‌ଚରର ଖୋଜି ଖୋଜି ବୁଲିଲେ ଏବଂ ସାଙ୍ଗେ ସାଙ୍ଗେ ଏପଏଣ୍ଟମେଣ୍ଟ ହାତେ ହାତେ ଧରେଇଦେଲେ। ମୁଁ ବାରିପଦା ଛାଡି ଚାଲିଗଲି। ମହାରାଜା କାଳେ ମୋତେ ନିମକ୍‌ହାରାମ୍ ଭାବିବେ, ସେଥିପାଇଁ ତାଙ୍କ ଅନୁମତି ଆଣିବାକୁ ରାଜବାଟିକୁ ଗଲି। ମହାରାଜା କହିଲେ, "ଏତେ ବ୍ୟସ୍ତ ହେଉଛ କାହିଁକି ? ଆମର କ'ଣ କଲେଜ ହେବନି ? ଏଠି ତୁମେ ୧୦୧ ଟଙ୍କା ଦରମା ପାଉଛ। ଟଙ୍କାରେ ୧୬ ସେର ଚାଉଳ। ଆଳୁଅ ପାଣି ବିନା ପଇସାରେ। ୧୨୫ ଟଙ୍କା ସେଠି ଦରମା। ଏଠି କ'ଣ କମ ହେଲା ?" ମୁଁ ବୁଝିଗଲି ଏବଂ ପୁଣି ଫେରିଆସିଲି।

ଯେତେକିଛି ହଇରାଣ ହରକତ୍ ଓ ଜୀବନ ଜଞ୍ଜାଳ ସବୁ ମୁଁ ଭୁଲିଯାଏ "ଭଞ୍ଜପ୍ରଦୀପ", "ମୟୁରଭଞ୍ଜ ଗେଜେଟ୍" ଓ ତାହାର କ୍ରୋଡପତ୍ର ଏବଂ "ମୟୁରଭଞ୍ଜ କ୍ରିନିକଲ୍" କାର୍ଯ୍ୟରେ। ଏଥିରେ ସାହିତ୍ୟରସ ପିପାସା ମୋର ମେଣ୍ଟିଯାଏ। ବଞ୍ଚିବାପାଇଁ ଆଗ୍ରହ ଆସେ। ଯେତେବେଳେ ଓଡିଶାର ସବୁ ଦେଶୀୟ ରାଜ୍ୟ Instrument of Merger ରେ ସ୍ୱାକ୍ଷରକରି ନିଜର ସତ୍ତା ହରାଇଲେ, ସେତିକିବେଳେ ମୟୁରଭଞ୍ଜ ସାର୍ବଭୌମ ରାଷ୍ଟ୍ର ରୂପେ ସ୍ୱୀକୃତି ଲାଭକରି ସ୍ୱତନ୍ତ୍ର ରାଜ୍ୟ ରୂପେ ରହିଲା। କ୍ରମେ ମୟୁରଭଞ୍ଜର ସ୍ୱତନ୍ତ୍ର ସତ୍ତା ଉପରେ ଚାରିଆଡୁ ବିପଦର ଘନଘଟା ଛାଇହେବାକୁ ଲାଗିଲା ଏବଂ ମୟୁରଭଞ୍ଜର ସ୍ୱାତନ୍ତ୍ର୍ୟ ପ୍ରତି ଆଶଙ୍କା ଓ ବିପଦ ମାଡିଆସିଲା। ମହାରାଜା ବେଶ୍ ଆଭାସ ପାଇଗଲେ ଯେ, ମୟୂରଭଞ୍ଜର ଭବିଷ୍ୟତ ଅନୁଜ୍ଜ୍ୱଳ। ଶାସନରେ ବିତସ୍ପୃହ ହୋଇ ମନ୍ତ୍ରୀମଣ୍ଡଳକୁ ଦାୟିତ୍ୱ ଶାସନ ଅର୍ପଣ କରି, ସେ କଲିକତା କୋଠୀରେ ରହିବାକୁ ଲାଗିଲେ। ମନ୍ତ୍ରୀ ମଣ୍ଡଳର ସଭ୍ୟମାନେ ଭାବିଲେ ଯେ, ଏବେ ସେମାନେ ହିଁ ମୟୁରଭଞ୍ଜର ରାଜା। ପ୍ରଜାମଣ୍ଡଳ କର୍ମୀମାନେ ଭାବିଲେ ସେମାନେ ରାଜା। ବଡ ବଡ କର୍ମଚାରୀମାନେ ବିଶେଷ କରି ସ୍ଥାନୀୟ ଓ ଉତ୍କଳୀୟଗଣ ଭାବିଲେ, ସେମାନଙ୍କ ଉପରେ ଆଉ କେହି ନାହିଁ। ବାହାର ନେତାମାନେ ମୟୂରଭଞ୍ଜକୁ ଏକୁଟିଆ ରହିଯିବାର ଦେଖି rape କରିବାକୁ ମନସ୍ଥକଲେ। ତେଣେ ମହାତ୍ମାଗାନ୍ଧୀଙ୍କ ମୃତ୍ୟୁ। ଏଣେ ବଡବଡ ଦେଶୀୟ ରାଜ୍ୟମାନଙ୍କ ଉପରେ ପୋଲିସ ଏକସନ୍। ସର୍ବତ୍ର ଅଶାନ୍ତି, ଅନିଶ୍ଚିତତା ବାତାବରଣ ଭିତରେ ସାମ୍ପ୍ରଦାୟିକତାର ବୀଭତ୍ସ ଲୀଳା। ଭାବିଲେ ନିଃଶ୍ୱାସ ରୁଦ୍ଧ ହୋଇଯାଏ।

ଡେଭେଲପ୍‌ମେଣ୍ଟ ମନ୍ତ୍ରୀ ମହେଶ୍ୱର ନାଏକଙ୍କ ଜରିଆରେ ମହାତ୍ମାଗାନ୍ଧୀଙ୍କ ଚିତାଭସ୍ମ ଆସିଗଲା । କେଉଁଠି ଜନସାଧାରଣଙ୍କର ଦର୍ଶନପାଇଁ, ସମ୍ମାନ ପ୍ରଦର୍ଶନପାଇଁ ଚିତାଭସ୍ମ ପାତ୍ରଟି ରଖାଯିବ ? ନାନା ତର୍କବିତର୍କ ପରେ ନିଷ୍ପତ୍ତି ହେଲା, ପ୍ରଧାନ ମନ୍ତ୍ରୀଙ୍କ କୁଟୀର ସାମନାରେ ତାହା ଥାପନାହେବ। ସାମିଆନା ଟଣାଗଲା। ପୋଲିସ ଗାର୍ଡ ଅହୋରାତ୍ର ରହିଲେ। ରାଜବାଟୀ, ସେକ୍ରେଟାରୀଏଟ୍ ସମ୍ମୁଖ କିମ୍ବା ଲାଇବ୍ରେରୀ ସାମନା ଆଦି ନାନା ସ୍ଥାନ ନିରୂପଣ କରାଯାଇଥିଲା। ପ୍ରଧାନମନ୍ତ୍ରୀଙ୍କ ଘର ଆଗ ଦିନରାତି ଲୋକାରଣ୍ୟ ହେଲା । ତା ପରେ ଏକ ବିରାଟ ଶୋଭାଯାତ୍ରାରେ ଚିତାଭସ୍ମକୁ ନେଇ ବାରୁଣୀ ଘାଟର ବଳଙ୍ଗ ନଈରେ ବିସର୍ଜନ କରାଗଲା ।

"ଭଞ୍ଜପ୍ରଦୀପ"ରେ ରାୟବାହାଦୂର ଗୋପାଳ ପ୍ରହରାଜଙ୍କର "ଦୁନିଆ ରୀତି", ଗିରିଜା ଶଙ୍କର ରାୟଙ୍କର "ନଜିଆ ନାଟକମ୍", ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କ "ଜୀବନ ସଙ୍ଗୀତ" ଓ କେତୋଟି ଗଳ୍ପ, ନିତ୍ୟାନନ୍ଦ ମହାପାତ୍ରଙ୍କର ପ୍ରସିଦ୍ଧ "କାସ୍ତାକାସ୍ତି" ଗଳ୍ପ ଓ ସେମିତି କେତେକେତେ ଉତ୍କୃଷ୍ଟ ଲେଖା ମୋ ସମୟରେ ଛପାଯାଉଥିଲା । କେତୋଟି ସଂଖ୍ୟା ସଂପାଦନା କରିବା ପରେ ମୋର ନିକର ଲେଖିବାକୁ ଇଚ୍ଛାହେଲା । 'ଛାୟାକାୟା' ନାମକ ଗଳ୍ପଟିଏ ଲେଖିଲି ଏବଂ ସମ୍ପାଦକ ରାଧାଗୋବିନ୍ଦ ଦାସଙ୍କ କଟାଛଟା ପରେ ପତ୍ରିକାର ଶେଷ ଅଂଶରେ ଛାପିଲି। "ଭଞ୍ଜପ୍ରଦୀପ"ରେ ମୁଁ ପ୍ରଥମେ ଲେଖିଥିଲି ଗୋଟିଏ ବହିର ସମାଲୋଚନା। ବହିଟି ପଦ୍ମଚରଣ ପଟ୍ଟନାୟକଙ୍କ "ସ୍ୱର୍ଣ୍ଣରେଣୁ"। ମୁଁ ସେଥିରେ ସମ୍ପାଦକଙ୍କୁ ସେତେବେଶି ପ୍ରଶଂସା କରିନଥିଲି। ସମାଲୋଚନାଟି ପଢିଥିଲି କଟକର ସହକାର ପ୍ରେସରେ ବାଳକୃଷ୍ଣ କର, କାଳନ୍ଦୀ ଚରଣ ପାଣିଗ୍ରାହୀ, ମାୟାଧର ମାନସିଂହ ଆଉ କେତେକଣ ସାହିତ୍ୟଙ୍କ ସମ୍ମୁଖରେ। ପରେ ପରେ ମୁଁ ଆଉ କେତୋଟି ପ୍ରବନ୍ଧ "ଭଞ୍ଜପ୍ରଦୀପ"ରେ ଛାପିଥିଲି । ସେଗୁଡିକ ହେଲା- "ଜଳକ୍ରୀଡା" ଏବଂ "ସାଧବ ଝିଅ"। ଦୁଇଟି ଯାକ ସମାଲୋଚନାରେ ମୁଁ ଡଃ. ମାନସିଂହଙ୍କର ରୋମାଣ୍ଟିକ ଚେତନାର ପ୍ରଶଂସା କରିଥିଲି ।



## ॥ ସଇଁତିରିଶ ॥

ଏ ପ୍ରସଙ୍ଗରେ ମୋର ମନେପଡୁଛି ପ୍ରଖ୍ୟାତ ହେଡମାଷ୍ଟର ରାୟବାହାଦୂର ବିଶ୍ୱମ୍ଭର ମିଶ୍ରଙ୍କୁ। ମୁଁ ସେତେବେଳେ ହାଇସ୍କୁଲ ଫାଟକର ପାଖ କ୍ୱାଟାର୍‌ସରେ ଥାଏ। ରାୟ ବାହାଦୂର ପ୍ରାକ୍ତନ ଟିଚ୍‌ରସ୍ ମେସ୍‌ରେ ସପରିବାର ଥାଆନ୍ତି। ତାଙ୍କ ସାଙ୍ଗରେ ତାଙ୍କ ପୁଅ କରିଆରେ ମୋର ଆତ୍ମୀୟତା ହେଲା। ପୁଅ ବୈଦ୍ୟନାଥ ମିଶ୍ର ସେତେବେଳେ ଏହ୍ଲାବାଦରେ ଇଂରାଜୀରେ ଏମ୍. ଏ. ପଢୁ ଥାଆନ୍ତି। ତାଙ୍କୁ ଡିକେନ୍‌ସ ପଡାଇବାପାଇଁ ରାୟବାହାଦୂର ମୋତେ ଅନୁରୋଧକଲେ। ରାୟବାହାଦୂର ଭାରି ଗରୁ ଗମ୍ଭୀର ପ୍ରକୃତିର ଲୋକ। କମ୍ କଥାବାର୍ତ୍ତା କରନ୍ତି। ମୋ ଜାଣିବାରେ ଜଣେ ହାଇସ୍କୁଲର ହେଡମାଷ୍ଟର ବ୍ରିଟିଶ ସରକାର ପାଖରୁ ରାୟସାହେବ ଉପାଧି ପାଇପାରନ୍ତି, କିନ୍ତୁ ରାୟ ବାହାଦୂର ପଦବୀ ପାଇବା ଶିକ୍ଷକ ବିରଳ। ମୁଁ ମୋ ନିଜ ଆଖିରେ ଦେଖିଛି, ସେ ରାତି ୧୦ଟା ବେଳେ ସ୍କୁଲର ସମସ୍ତ କୋଠରି ତାଲା ପଡିଛି କି ନାହିଁ ତଦାରଖ କରିବା। କଠୋର ନିୟମାନୁବର୍ତ୍ତିତା, ଚରିତ୍ରବତ୍ତା ଓ ଶିକ୍ଷାଦାନ ପଦ୍ଧତିରେ ତାଙ୍କୁ ବଳି ହେଡମାଷ୍ଟର କେହି ନଥିଲେ। ମହାରାଜା ତାଙ୍କୁ ତ୍ରିପାଠୀ ସାହେବଙ୍କ ଜରିଆରେ ବାରିପଦା ହାଇସ୍କୁଲକୁ ଅଣେଇଥିଲେ।

ମେଟ୍ରିକୁଲେସନ ପରୀକ୍ଷା ହେଉଥାଏ, ଦୁଇଜଣ ସ୍କୁଲ ଶିକ୍ଷକ (ଜଣେ ମୋର ଆତ୍ମୀୟ ଆଉ ଜଣେ ମାଇନର ସ୍କୁଲର ମୋର ଶିକ୍ଷକ୍) ମୋତେ ଟ୍ରାନସ୍‌ଲେସନ୍‌ରେ ସାହାଯ୍ୟ କରିବାପାଇଁ ଅନୁରୋଧ କରିଥାଆନ୍ତି। ପ୍ରଶ୍ନ ପତ୍ରଟି ସେମାନେ ହଲରୁ ଆଣି ମୋର ବାଡ କଡରେ ଥୋଇଦେବେ। ମୁଁ ତାକୁ ଅନୁବାଦ କରିଦେଲେ, ସେମାନେ ଆଣି ପିଲାମାନଙ୍କୁ କପି ଯୋଗାଇବେ। ସେମାନଙ୍କର ସାନୁନୟ ଅନୁରୋଧରେ ଏ ଦୁଷ୍କର୍ମପାଇଁ ହଁ ଭରିଥିଲି। କିନ୍ତୁ ସାହସ ନଥିଲା। ଭାଗ୍ୟକୁ ସେଦିନ ମହାରାଜା ମୋତେ ଦୀର୍ଘ ସମୟ ତାଙ୍କ ପାଖରେ ଅଟକାଇ ଦେଲେ। ମୁଁ ଫେରିଲା ବେଳକୁ ପ୍ରଥମ ପ୍ରଶ୍ନପତ୍ରର ପରୀକ୍ଷା ଶେଷ। ଭଗବାନଙ୍କୁ ଧନ୍ୟବାଦ ଦେଲି।

ପରେ ଯେବେ ମୁଁ ରାୟ ବାହାଦୂରଙ୍କ ଘରକୁ ଯାଏ, ସେଠି ବସି ଏଣୁ ତେଣୁ ଗପୁ। ଦିନେ ଫକୀରମୋହନଙ୍କ 'ଛ' ମାଣ ଆଠଗୁଣ୍ଠ' ବିଷୟରେ ଆଲୋଚନାହେଲା। ପ୍ରସଙ୍ଗ କ୍ରମେ ଉପନ୍ୟାସର ଚରିତ୍ରଗଣଙ୍କ ବିଷୟରେ ଆଲୋଚନାକଲୁ। ଆଲୋଚନା ବେଳେ ହସିବାକୁ ଆରମ୍ଭ କଲୁଁ। ରାୟ ବାହାଦୂର ଏତେ ଖୋଲା ପାଟିରେ ହସିଲେ ଯେ, ତାଙ୍କ ଘର ଲୋକେ ଧାଇଁଆସିଲେ। ସେମାନେ ତାଙ୍କୁ କେବେ ଏତେ ଖୋଲା ହସ ହସିବାର ଶୁଣି

ନଥିଲେ, କି ଦେଖି ନଥିଲେ। ମୁଁ ତହିଁ ପରଦିନ ଠାରୁ ଫକୀରମୋହନ ବିଷୟରେ ଲେଖା ଆରମ୍ଭକଲି। ଯାହାର ପ୍ରଥମ ଭାଗଟି "ଭଞ୍ଜପ୍ରଦୀପ"ରେ "ଫକୀର ମୋହନ ସେନାପତି" ନାମରେ ଛପା ହୋଇଥିଲା। ଅନେକ ସମାଲୋଚକଙ୍କ ମତରେ ମୋର ସେହି ଅସମ୍ପୂର୍ଣ୍ଣ ଲେଖାଟି ସୁରେନ୍ଦ୍ର ମହାନ୍ତିଙ୍କ ତତ୍‌ସମ୍ପର୍କୀୟ ଆଲୋଚନାର ଅଗ୍ରଗାମୀ କୁହାଯାଇପାରେ। ଏହା "ଭଞ୍ଜପ୍ରଦୀପ"ର ସଂ୧୫ ଓ ସଂ୧୬ ଭାଗରେ ପ୍ରକାଶିତ।

"ଭଞ୍ଜପ୍ରଦୀପ" ଓ "ମୟୂରଭଞ୍ଜ କ୍ରନିକଲ" ବ୍ୟତୀତ ଅନାକର୍ଷଣୀୟ Mayurbhanj Administration Report ବର୍ଷବର୍ଷ ଧରି ମୋତେ ହିଁ କରିବାକୁ ପଡିଥିଲା। ଆଗରୁ କହିଛି, Administration କିଛି ନଜାଣି ରିପୋର୍ଟ ଲେଖୁଥିଲି। ଏପରିକି ମୟୂରଭଞ୍ଜ କନ୍‌ଷ୍ଟିଚୁଏଣ୍ଟ ଏସେମ୍ବ୍ଲିର ବିବରଣୀ ମୁଁ ଲେଖୁଥିଲି। ମୟୂରଭଞ୍ଜ ଓଡ଼ିଶାରେ ମିଶିଗଲା ପରେ ତାହା ଲେଖାଲେଖିରୁ ରକ୍ଷାପାଇଲି। ଏହାଛଡା ଏହି ସମୟରେ ମୟୂରଭଞ୍ଜ ମହାରାଜାଙ୍କର 'ସ୍ୱନକ୍ଷତ୍ର' ପାଳନହେଉଥିଲା ଏକ ଜାତୀୟ ଉତ୍ସବ ଆକାରରେ; ଖୁବ୍ ରଙ୍ଗୀନ, ଖୁବ୍ ଜାକ୍‌ଜମକ୍। ବିରାଟ ରାଜବାଟୀର ସେହି ପ୍ରାଙ୍ଗଣ- ଯେଉଁଠି ସୁପ୍ରସିଦ୍ଧ ଛଉନାଟ ବର୍ଷକୁ ବର୍ଷ ତିନିଦିନ ଧରିହୁଏ ସେଇଠି। ବାହାରୁ ଅନେକ ରଜାରାଜୁଡା ଆସି ଏହି ଛଉନାଟ ଉପଭୋଗକରନ୍ତି। ଉତ୍ତର ସାହିର ଦାୟିତ୍ୱରେ ଥାଆନ୍ତି ପୋଲିସ ସୁପରିନ୍‌ଟେଣ୍ଡେଣ୍ଟ ରାମଚନ୍ଦ୍ର ଦାସ। ଦକ୍ଷିଣ ସାହି ଦାୟିତ୍ୱରେ ଥାଆନ୍ତି ଶ୍ରୀ ସୁରେଶ ଚନ୍ଦ୍ର ମିଶ୍ର, ଯେ କି ଜନୈକ ସୁପ୍ରସିଦ୍ଧ କଳାକାର, ନାଟ୍ୟାଭିନେତା। ଏହି ସମୟରେ ସ୍ୱନକ୍ଷତ୍ର ଉପଲକ୍ଷରେ କେବଳ ସମଗ୍ର ବାରିପଦା ସହର କାହିଁକି, ସମଗ୍ର ମୟୂରଭଞ୍ଜ ପ୍ରଜାମାନେ ଉତ୍ସବରେ ସମବେତହୋଇ ମାନପତ୍ରଟିଏ ମହାରାଜାଙ୍କୁ ଦିଅନ୍ତି। ମହାରାଜା ରାଜକୀୟ ପୋଷାକ ପରିହିତହୋଇ ସଭାମଣ୍ଡପକୁ ଆସନ୍ତି। ସମଗ୍ର ରାଜ୍ୟବାସୀ ତରଫରୁ ଏକ ନମ୍ବର ପ୍ରଜା ଆକାରରେ ଗୁରୁ ଗମ୍ଭୀର ସ୍ୱରରେ ଲାଲମୋହନ ପତି ସ୍ପଷ୍ଟ ଉଚ୍ଚାରଣ କରି ମାନପତ୍ରଟି ପଢନ୍ତି। ତହିଁରେ ମହାରାଜାଙ୍କର ଗୁଣଗାନ କରାଯାଇଥାଏ। ମାନପତ୍ର ପଢା ସରିଲେ ମହାରାଜା ତହିଁର ଉତ୍ତରଦିଅନ୍ତି। ଯେଉଁ ଉତ୍ତରରେ ରାଜା-ପ୍ରଜା ସୁ-ସମ୍ପର୍କରେ ସୁଶାସନ ସମ୍ଭବ ହୁଏ ବୋଲି ମହାରାଜାଙ୍କର ବିଶ୍ୱାସ। ସକାଳେ Treasure hunt ହୁଏ, ବାଣ ଫୁଟେ, ରାତିଯାକ ଧୁମସା, ମାଦଳ ନାଚହୁଏ, ଯାତ୍ରା, ଥିଏଟର, ପାଲା ଗାଉଣ ସ୍ଥାନେ ସ୍ଥାନେ ଦେଖିବାକୁ ମିଳେ। ରାତିରେ ବିରାଟ ଭୋଜିଟିଏ ରାଜବାଟିରେ ମୁଖ୍ୟ ପ୍ରଜା ଓ କର୍ମଚାରୀମାନଙ୍କୁ ଦିଆଯାଏ। ଯାହାକୁ କୁହାଯାଏ ଭୂରି ଭୋଜନ। ମହାରାଜାଙ୍କ କକା ଶ୍ରୀରାମ ଚନ୍ଦ୍ର ଭଞ୍ଜ ବୁଲାବୁଲି କରି ଅତିଥି ଚର୍ଚ୍ଚାକରନ୍ତି। ମହାରାଜା କଦାପି ସାହିତ୍ୟିକବର୍ଗଙ୍କୁ ଭୁଲନ୍ତି ନାହିଁ।

ସେମାନଙ୍କୁ ଦେଖିଲା ମାତ୍ରେ ମହାରାଜା ଖୁବ୍ ଆନନ୍ଦରେ ଚିତ୍କାରକରନ୍ତି। ତାଙ୍କ ଅମଳରେ Literary Corner ବସିଛି। ଆମେ ଥାଉଁ- କବି ମହେଶ୍ୱର ନାଏକ, ମହେଶ ଚନ୍ଦ୍ର ମହାପାତ୍ର, ସୁରେଶ ମିଶ୍ର, କ୍ଷୀରୋଦ ଚନ୍ଦ୍ର ପାଲ, କୈଳାସ ଚନ୍ଦ୍ର ପତି ଓ ଆହୁରି କେତେଜଣ; ଯେଉଁମାନେ କି ମୟୁରଭଞ୍ଜର ସାହିତ୍ୟ, କଳା, ସଂସ୍କୃତି ସହିତ ଓତଃପ୍ରୋତ ଭାବେ ସଂଶ୍ଳିଷ୍ଟ। ଯେଉଁ ମାନପତ୍ରଟି ମହାରାଜାଙ୍କୁ ଦିଆଯାଏ- ତହିଁର ଉତ୍ତରଟି ଯଥା ସମୟରେ ମୋତେ ଡକାଇ ମହାରାଜା Dictate କରିଦିଅନ୍ତି। ଛୋଟ ଉତ୍ତରଗୁଡ଼ିକ ଇଂରାଜୀରେ ସେ ଡାକିଥାଆନ୍ତି; ମୁଁ ତାର ଓଡ଼ିଆ ଅନୁବାଦକରି ମହାରାଜାଙ୍କୁ ଦେଖାଏ। ବେଶ୍ ଗୋଲଗୋଲ ବଡବଡ ଅକ୍ଷରରେ ଆମର ଅଫିସ କିରାଣୀ କବି ଶ୍ରୀ ଅନୁକୂଳ ଚନ୍ଦ୍ର ନାଏକ ତାକୁ ଉତାରି ମହାରାଜାଙ୍କୁ ଦେଇଥାନ୍ତି। ମହାରାଜାଙ୍କର ସାହିତ୍ୟ ଜ୍ଞାନ ବେଶ୍ ଉଚ୍ଚ ଧରଣର। ଥରେ ଅନୁବାଦରେ in detailକୁ ମୁଁ 'ତନ୍ନ ତନ୍ନ' ବୋଲି ଅନୁବାଦ କରିଥିଲି, ମହାରାଜା କହିଲେ- " 'ପୁଙ୍ଖାନୁପୁଙ୍ଖ' ବୋଲି ଯେଉଁ ଶବ୍ଦଟି ଅଛି ସେଇଟି ବ୍ୟବହାର କରୁନ।"

ଶଙ୍କରାଭରଣର ରାଗର କେମିତି ଶାସ୍ତ୍ରୀୟ ରୂପ, ତାକୁ ନିର୍ଦ୍ଧାରଣ କରିବାପାଇଁ ମହାରାଜା ଥରେ ଓଡ଼ିଶାର ଚାରିଆଡୁ ଅନେକ ଅନେକ ପଣ୍ଡିତଙ୍କୁ ନିମନ୍ତ୍ରଣକରିଥିଲେ। ମୁଁ ନିଜେ.ମଧୁସୂଦନ ରାଓଙ୍କର 'ସ୍ତବ' କବିତାରୁ ଶେଷ ଦୁଇଟି ପଦ ଗାଇ ମହାରାଜାଙ୍କୁ ଶୁଣେଇଥିଲି। ତାଙ୍କର ମନପୁତ ହେଲା କି ନାହିଁ, ଜାଣେ ନାହିଁ ଅବଶ୍ୟ। ଏହିପରି ଉତ୍ସବ ସମୟରେ ମୋତେ ଓ ମୋ ଅଫିସ, ତଥା ପ୍ରେସ୍‌ରେ ବହୁତ ଖଟିବାକୁ ପଡେ। ଏହି ଅବସରରେ ଛାପାଖାନାରେ ଗୋଟିଏ "ସୋଭେନିଅର" ବା ସ୍ମରଣିକା ପ୍ରକାଶିତ ହୁଏ। ସେଥିରେ ମୟୁରଭଞ୍ଜର ସ୍ମରଣୀୟ ଘଟଣାଗୁଡିକ ସଚିତ୍ର ରଙ୍ଗୀନ ଛପାଯାଏ ଓ ଶହଶହ ସଂଖ୍ୟାରେ ବଣ୍ଟାଯାଏ। ବାରିପଦାର ସୁପ୍ରସିଦ୍ଧ Recreation Club ନାଟକ ପରିବେଷଣ କରନ୍ତି; ଯେଉଁଥିରେ ଉମେଶ ମହାନ୍ତି, ଶ୍ରୀରାମ ଦାସ, ସୁରେଶ ଚନ୍ଦ୍ର ମିଶ୍ର, ବ୍ରଜ ସୁନ୍ଦର ଦାସ ଆଦି କୁଶଳୀ ଅଭିନେତା ଚମତ୍କାର ଅଭିନୟକରିଥାନ୍ତି। ମହାରାଜା ଉପସ୍ଥିତ ଥାଆନ୍ତି। ଯେଉଁ ନାଟକଗୁଡିକ ଅଭିନୀତ ହୋଇଗଲା, ସେଗୁଡିକ ହେଲା "କଙ୍କାବତୀର ଘାଟ", "କୋଣାର୍କ", "ଗାୟ୍ତ୍ଶୂର" ଇତ୍ୟାଦି। ଏତେ ଉଚ୍ଚମାନର ସେହି ନାଟକ ଓ ସେଗୁଡ଼ିକରେ ଅଭିନୟ ଯେ, ବହୁଦିନ ଧରି ବାରିପଦାର ଗଗନପବନରେ ତାହା ଖେଳିବୁଲୁଥିଲା। ଥରେ ମୁଁ ନିଜେ 'ଗକଡ ଧବ' ବୋଲି ହାସ୍ୟରସାତ୍ମକ ଏକାଙ୍କିକାଟିଏ ଲେଖିଥିଲି ଓ ଅଭିନୟ ମଧ୍ୟ କରିଥିଲି। ମହାରାଜା ସାହେବ ନାଟିକାରେ ପରିବେଶିତ

ହାସ୍ୟରସରେ ଏତେ ବିଭୋର ହୋଇଯାଇଥିଲେ ଯେ, ବଡବଡ ଗେର୍ଦ୍ଦଗୁଡିକୁ ଅଟ୍ଟହାସ୍ୟ ସହିତ ଶୂନ୍ୟକୁ ଫୋପାଡୁଥିଲେ। ଏକାଙ୍କିକା ପରେ ଯେଉଁ ନାଟକ ପର୍ଯ୍ୟବେକ୍ଷିତ ହେଲା, ମହାରାଜା ତାହା ଆଉ ନଦେଖି ଉଠିଚାଲିଗଲେ। ଉଦ୍ୟୋକ୍ତା ମାନଙ୍କୁ ଅପମାନହେଲା। ନାଟିକାଟି ଏତେ ରିଏଲିଷ୍ଟିକ ହୋଇଥିଲା ଯେ, କ୍ଷୁବ୍ଧହୋଇ ଜଣେ ଦୁଇଜଣ ସହରବାସୀ ମୋ ନାମରେ କେସ୍‌କରିବେ ବୋଲି ମହାରାଜାଙ୍କର ଅନୁମତି ଚାହିଁଥିଲେ। ମହାରାଜା କହିଥିଲେ, "କେଶ୍ କରିବାପାଇଁ ମୁଁ ଅନୁମତି ଦେଉଛି, କିନ୍ତୁ କେଶ୍ କରିବା ପୂର୍ବରୁ ବସନ୍ତ ନା'ରେ ଯାଙ୍କାତା ଲେଖି ଗୋଟିଏ ଅଭିନୟ କରିବାକୁ ବି ମୁଁ ଅନୁମତିଦେଉଛି। ଏତେ ଅସହିଷ୍ଣୁ ତୁମେ ସବୁ ନା ?" ଏମିତି କହି ସେମାନଙ୍କୁ ଭର୍ତ୍ସନାକଲେ। ସେ ବର୍ଷର ଉତ୍ସବ ମହାରାଜାଙ୍କର ମନକୁ ଖୁବ୍ ପାଇଥିଲା। ସକାଳୁ ଡିରେକ୍ଟର ତ୍ରିପାଠୀ ସାହେବ ମହାରାଜାଙ୍କୁ ଦେଖାକରିବାକୁ ଆସିଲେ। ମହାରାଜା ଖୁବ୍ ଖୁସିରେ କହିଲେ, "ତ୍ରିପାଠି ! କାଲି ରାତିରେ ଏମିତି ଗୋଟାଏ ନାଟକ ଦେଖିଲି, ଯହିଁରେ ମୁଁ ହସିହସି ବେଦମ ହୋଇଯାଇଛି। ରାତିରେ ନିଦ ହେଲା ନାହିଁ। ଏହି କ୍ଷଣି ବି ହସ ମାଡୁଛି।" ମହାରାଜା ସେଇ ଦିନ ରାତିରେ ଆଉ ଥରେ ଅଭିନୟ ଦେଖିବାପାଇଁ ଚାହିଁଲେ। ପୁଣି ମୋତେ ଓହ୍ଲାଇବାକୁ ପଡିଲା। ମଞ୍ଚରେ ମୋର ପ୍ରୋଗ୍ରାମଟା ପ୍ରଥମେ ନ କରି, ଶେଷରେ କରିବାରୁ ମୋର ବା ମହାରାଜାଙ୍କର ସେଥିରେ ଉତ୍ସାହ ବା ଆଗ୍ରହ ସେମିତି କିଛି ରହିଲା ନାହିଁ। ସେହି ବର୍ଷର ସ୍ୱନକ୍ଷତ୍ର ଉତ୍ସବ ମୟୂରଭଞ୍ଜର ବୋଧହୁଏ ଶେଷ ଆନନ୍ଦମୁଖର ସାଂସ୍କୃତିକ ଉତ୍ସବ।

●

## ॥ ଅଡ଼ତିରିଶ ॥

୧୯୪୮ ସାଲ। କିଏ ଜାଣିଥିଲା ଏହା ମୟୂରଭଞ୍ଜ ରାଜ୍ୟର ଅସ୍ତିତ୍ୱ ଶେଷ ବର୍ଷ ବୋଲି ? ୧୮ଟି ଗଡଜାତ ନିଶ୍ଚିହ୍ନ ହୋଇଯିବା ପରେ ମହାରାଜା ବା ତାଙ୍କର ରାଜନୀତିକ ଉପଦେଷ୍ଟାଗଣ ଧରିନେଇଥିଲେ ଯେ, ମୟୂରଭଞ୍ଜର ଭବିଷ୍ୟତ ନାହିଁ। ଘଟଣା ଆଉ ପରିବେଶ ସବୁ ମୟୂରଭଞ୍ଜର ସ୍ୱାତନ୍ତ୍ର୍ୟ ବିରୋଧରେ ରହିଲା। ଇଂରାଜୀରେ ଗୋଟିଏ କଥା ଅଛି "Even rats leave a sinking ship"। ଅର୍ଥାତ୍ ବୁଡ଼ି ଯାଉଥିବା ଜାହାଜରୁ ମୂଷାମାନେ ମଧ୍ୟ ଛାଡ଼ି ଚାଲିଯାନ୍ତି। ଯେତେ ସବୁ କର୍ମଚାରୀ- ବଙ୍ଗଳା, ବିହାର, ଆସାମ, କାଶ୍ମୀର, ମହୀଶୂର, ରାଜସ୍ଥାନ, ଉତ୍ତର ପ୍ରଦେଶ ଆଦି ସ୍ଥାନମାନଙ୍କରୁ ଆସି ବାରିପଦାରେ ବସତି ବାନ୍ଧିଥିଲେ, ସେମାନେ କ୍ରମେ କ୍ରମେ ନାନା ଆଳରେ ମୟୂରଭଞ୍ଜ ଛାଡି ଅର୍ନ୍ତଧ୍ୟାନ ହୋଇଗଲେ। ଯେଉଁ ସ୍ଥାନୀୟ କେତେକଣ ବଡ ବଡ ଅଫିସର ବାରିପଦାରେ ରହିଲେ, ସେମାନଙ୍କର ଧୈର୍ଯ୍ୟଚ୍ୟୁତି ଘଟିଲା। ସେମାନେ ଭାବିଲେ, ଓଡିଶାରେ ମିଶିଗଲେ ସେମାନଙ୍କୁ ବଡ ପାହ୍ୟା ମିଳିବ, ବେଶି ଟଙ୍କା ପାଇବେ। ବେସରକାରୀ ବଡବଡିଆ ଓଡିଶାର ମନ୍ତ୍ରୀତ୍ୱ ଆଶାବାନ୍ଧିଲେ। ଯେଉଁମାନେ ଖାଣ୍ଟି ମୟୂରଭଞ୍ଜି ବୋଲାଉଥିଲେ, ସେମାନେ ଖାଣ୍ଟି ଓଡିଶାର ଲୋକ ବୋଲାଇଲେ। ମୟୂରଭଞ୍ଜର ଓଡିଶାର ସାହିତ୍ୟ, ସଂସ୍କୃତି ଓ ସଭ୍ୟତା ପ୍ରତି ଯାହାକିଛି ଅବଦାନ, ତାହା ପାସୋରି ଦେଲେ। ଯେଉଁମାନେ ମନ୍ତ୍ରୀ ହେଲେ, ସେମାନେ ବ୍ୟସ୍ତରହିଲେ କିପରି ତାଙ୍କ ସ୍ଥିତିରେ କିଛି ତ୍ରୁଟି ବା ବ୍ୟାଘାତ ନ ଘଟେ। ସେମାନେ ବି ମହାଭାରତୀୟ ଭାବ ପ୍ରଦର୍ଶନ କରିବାକୁ ଭୁଲିଲେ ନାହିଁ। ଆଦିବାସୀମାନେ ମନେପକାଇଲେ ୧୯୧୭ ସାଲର ମେଳି କଥା। ସେମାନେ ଅହେତୁକ ଭୟରେ ଇତସ୍ତତଃ ହେଲେ। ବିହାରର ଆଦିବାସୀ ମାନଙ୍କର ପ୍ରଭାବରେ ଅତିଷ୍ଠହେଲେ। ସେମାନେ ଜଣେ leader ଖୋଜିବୁଲିଲେ। ଆଦିବାସୀ ଜୟପାଲ ସିଂଙ୍କ ନାମ ମୟୂରଭଞ୍ଜରେ ପଶିଲା। ଏହି ସମୟରେ ଶୁନାରାମ ସୋରେନ୍ଙ୍କ ଆବିର୍ଭାବହେଲା। ନେତାଙ୍କ ଶୂନ୍ୟସ୍ଥାନ ସେ ପୂରଣକଲେ। ମହେଶ୍ୱର ନାଏକଙ୍କର ମନ୍ତ୍ରୀ ପାହ୍ୟାରେ ନେତୃତ୍ତ୍ୱ, ସେମାନଙ୍କର ମନକୁ ପାଇଲା ନାହିଁ। ସେମାନେ ହୁଏତ ତାଙ୍କୁ ଅଣଆଦିବାସୀ ବୋଲି ଭାବିଲେ। କାରଣ ସେ ଥିଲେ ସରକାରୀ ଚାକିରିଆ ଏବଂ ଜୀବନଯାକ ହାଟୁଆମାନଙ୍କ ସହିତ ମିଳିମିଶି ସେମାନଙ୍କର ସଂସ୍କୃତି ଓ ସଭ୍ୟତା ସହିତ ମିଶିଗଲେ।

ପ୍ରଧାନମନ୍ତ୍ରୀ ଭାବରେ ଶରତ୍ ବାବୁ (ମୟୂରଭଞ୍ଜ ଗାନ୍ଧୀ) କୂଳ କିନାରା କିଛି ନ ପାଇ ଉବୁଟୁବୁ ହେଲେ। ତାଙ୍କର ଯେଉଁ ସାଙ୍ଗସାଥି ଓ ଦଳୀୟ କର୍ମୀ, ସେମାନେ ତାଙ୍କ

ଦାୟିତ୍ୱର ଗୁରୁତ୍ୱ ଉପଲବ୍‌ଧି କଲେ ନାହିଁ। ଶରତ୍‌ ଗାନ୍ଧୀଙ୍କର ଆଦର୍ଶ ଅନୁସନ୍ଧାନ କରି କର୍ମୀମାନଙ୍କ ସାଙ୍ଗରେ ଦିନ କଟିଯାଏ। ରାତିରେ ଭାବିଭାବି ତାଙ୍କର ନିଦ ହୁଏନି। ରାତି ୧୨ଟା ବାଜିଲେ ଅନ୍ତର୍ଯ୍ୟାମୀ ଡ୍ରାଇଭରକୁ ଧରି ମୋ ବସାରେ ପହଞ୍ଚନ୍ତି। କେଉଁଠି କ'ଣ ବାହାରକୁ ଧାନ ଚାଲାଣହେଉଛି, ସେସବୁ ଅନୁସନ୍ଧାନ କରିବାପାଇଁ ବାହାରି ପଡନ୍ତି। ସାଙ୍ଗେ ସାଙ୍ଗେ ନିଦ ହୋଇଯାଏ। ଫେରୁଫେରୁ ରାତି ଦୁଇଟା-ତିନିଟା। ଜ୍ୱର ବି ଆସିଯାଏ। କର୍ମୀମାନେ ଯେ ଜଣେ ନେତାଙ୍କ ପକ୍ଷରେ କେତେ ଜଞ୍ଜାଳର କାରଣ, ତାହା ମୁଁ ଆଖି ଆଗରେ ଦେଖିଛି। କେତେଟା ଦିନରେ ବାରିପଦା ଟାଉଟରମୟ ହୋଇଗଲା। ଏହାକୁ ଜମି ଦିଅ, ତାକୁ ଜାଗାଦିଅ- ଏଇଗୁଡ଼ାକରେ ପ୍ରଧାନମନ୍ତ୍ରୀଙ୍କର ଫାଇଲ କାମ ଚାଲେ। ଏହି ସମୟରେ ମହାତ୍ମା ଗାନ୍ଧୀଙ୍କ Constructive work ମୟୂରଭଞ୍ଜରେ ବ୍ୟାପି ଗଲା। ଶଙ୍ଖ ହୁଳହୁଳୀଫୁଙ୍କି ପୁରୁଷ ସ୍ତ୍ରୀ ବନ୍ଧ ପୋଖରୀ ଖନନରେ ଲାଗିଗଲେ। ବଡଯୋଡ ବନ୍ଧ ସେହି ସମୟର କୀର୍ତ୍ତି। ଓଡିଶାର କଂଗ୍ରେସ କର୍ମୀମାନଙ୍କ ପାଖରୁ ପରୋକ୍ଷ ପ୍ରରୋଚନା ପାଇ, ମୟୂରଭଞ୍ଜର ତୁଙ୍ଗ ନେତାମାନେ ମାତିଉଠିଲେ ବୃହତ୍ତର ଓଡ଼ିଶାରେ ମିଶିବାପାଇଁ। ସେମିତି ତୁଙ୍ଗ ଆଦିବାସୀ ନେତାମାନେ ବିହାରୀ ତୁଙ୍ଗ ନେତା ମାନଙ୍କର ପ୍ରଚୋଦନାରେ ବିହାରରେ ମିଶିବାପାଇଁ ମାତିଲେ। ଘନ ଘନ ଓଡିଶାର କଂଗ୍ରେସ ନେତା ଓ କର୍ମୀ ନାନା ବାହାନାରେ ମୟୁରଭଞ୍ଜ ଭିତରକୁ ମାଡି ଆସିଲେ। ଦଳେ ଦଳେ କୁଜିନେତା ମୟୁରଭଞ୍ଜର ଜଙ୍ଗଲରେ ପଶି, ଜଙ୍ଗଲ ଆଇନ ଭାଙ୍ଗି ହରିଣ ଶିକାର ମଧ୍ୟ କଲେ। ତାଙ୍କୁ ବାଧାଦେବାପାଇଁ କେହି ନାହିଁ।

ଓଡିଶାର ମୁଖ୍ୟମନ୍ତ୍ରୀ ହରେକୃଷ୍ଣ ମହତାବ ସେତେବେଳେ ବାଲେଶ୍ୱର ଆସିଥା'ନ୍ତି। ଶରତ୍‌ ଦାସଙ୍କଠାରୁ ଏକ ଚିଠି ନେଇ ମୁଁ ତାଙ୍କ ହାତରେ ଦେବାପାଇଁ, ଏକ ସ୍ୱତନ୍ତ୍ର ଗାଡିନେଇ ବାଲେଶ୍ୱର ଯାଇଥାଏ। ବାଲେଶ୍ୱର କେନ୍ଦ୍ରସ୍ଥଳରେ ଗୋଟାଏ ରାଇସମିଲ ପାଖରେ ଏକ ବିରାଟ ଦଳୀୟ ସମ୍ମିଳନୀ ଚାଲିଥାଏ। ମୁଁ କୌଣସି ମୋତେ ଚିଠିଟି ହାତେ ହାତେ ତାଙ୍କୁ ଦେଇପାରିଲି ନାହିଁ। ତାଙ୍କ ସହିତ ଦେଖାହେବାର ସୌଭାଗ୍ୟ ମଧ୍ୟ ହେଲା ନାହିଁ। ଏଇଟି ଶରତ୍‌ ବାବୁଙ୍କର ବ୍ୟକ୍ତିଗତ ଚିଠି। ସେତିକି ବେଳେ ବାରମ୍ବାର ତାଙ୍କ ମୁହଁରୁ କହିବାର ଶୁଣିଛି, ନୀଳଗିରିର ପ୍ରଜା ମଣ୍ଡଳର ଅନ୍ୟତମ ନେତା କୈଳାଶ ମହାନ୍ତିଙ୍କ ନାମ।

ସେହି ସମୟରେ ମୋର କାମହେଲା- ମହାରାଜା କୃଷ୍ଣଚନ୍ଦ୍ର ଭଞ୍ଜଙ୍କ ଅମଳରେ "ମୟୂରଭଞ୍ଜ" ବୋଲି ଏକ ସାପ୍ତାହିକ ପତ୍ରିକାର ନୂତନ ପ୍ରସ୍ଥ ବାହାର କରି ସେଥିରେ ମୟୁରଭଂଜର ଓଡିଶାରେ ମିଶ୍ରଣ ବିରୁଦ୍ଧରେ ଲେଖା ପ୍ରକାଶକରିବା। Constructive

work ର ଫୋଟଗ୍ରାଫ୍‌ମାନ ବହୁ ସଂଖ୍ୟାରେ ସଂଗ୍ରହକରିବାପାଇଁ ମୋର ଚେଷ୍ଟାଚାଲିଲା । ମୟୂରଭଞ୍ଜର ଅଫିସିଏଲ ଫଟୋଗ୍ରାଫର ଥିଲା କଲିକତାର Bourne and Shepherd । ପରେ ପରେ ବାରିପଦାର ମନମୋହନ ମହାପାତ୍ର ସେହି କାମ କରୁଥିଲେ । ବଡ ବଡ କାର୍ଯ୍ୟକ୍ରମରେ ଅତିଥି ଅଭ୍ୟାଗତଙ୍କ ଫୋଟ ତୋଳିବା ତାଙ୍କ କାମ ଥିଲା । ଶୁଣାଯାଏ, ସେ ମୟୂରଭଞ୍ଜ ମହାରାଜାଙ୍କ ସାଙ୍ଗରେ ବିଲାତ ଯାଇଥିଲେ, ପରମାନନ୍ଦ ଆଚାର୍ଯ୍ୟ ଓ ଶ୍ରୀରାମ ଚନ୍ଦ୍ର ଦାସଙ୍କ ସହିତ । ଆଗରୁ କହିଛି- କିପରି ତାଙ୍କୁ ଲୋକେ କନ୍ ସାହେବ ବୋଲି ଜାଣନ୍ତି । କିପରି ତାଙ୍କର ପୋଷାକ ପତ୍ର, ଆଦବକାଇଦା ସବୁ ସାହେବି ଧରଣର । ଅଳ୍ପ କାମରେ ସେ ବାହାରନ୍ତିନି । ତାଙ୍କୁ ଫଟୋଗ୍ରାଫ୍‌ପାଇଁ ଯିଏ ନେବ; ସେ ସାଙ୍ଗରେ ଘୋଡାଗାଡି ନେଇଆସିବ । ସାଧାରଣ ଲୋକ ତାଙ୍କୁ ଡାକିବାକୁ ସାହସ କରନ୍ତିନି । ତାଙ୍କର ଘରଟି ମଧ୍ୟ ସାହେବ ବଙ୍ଗଳା ପରି ଫୁଲଫଳ ଶୋଭିତ । ମୁଁ କଲିକତାରୁ ଜଣେ ଫୋଟଗ୍ରାଫର ଆଣିଥିଲି ଏଇ ଗଠନମୂଳକ କାମର ଛବି ତୋଳିବାପାଇଁ । ଏତିକି ବେଳେ ମୋର ବରାଦ ଦିଆହୋଇଥିବା କଲିକତା Publicity Van ବି ଆସିଯିବାରୁ, ମୁଁ ତାଙ୍କୁଇ ଧରି ଅଧିକାଂଶ ଦିନ ବାହାରିଯାଏ ଆଦିବାସୀ ବହୁଳ ଇଲାକାକୁ ଏବଂ ମୟୂରଭଞ୍ଜ ଓଡିଶାରେ ମିଶିବାର ସୁଫଳ ଗାନ କରେ । ହାଟ ବଜାର ଯେଉଁଠି ଆଦିବାସୀମାନଙ୍କର ସମାଗମ, ସେଇଠି ଓଡିଶା ସହିତ ମିଶ୍ରଣ ବିରୁଦ୍ଧରେ ପ୍ରଚାରକରେ । ମୁଁ କାୟମନବାକ୍ୟରେ ରାଜ୍ୟ, ରାଜା ଓ ରାଜତ୍ୱକୁ ଭଲ ପାଏ, ପ୍ରଶଂସାକରେ । ମୋର ନିଶ୍ଚିତ ଧାରଣାଥିଲା ଯେ, ଓଡିଶାରେ ବା ଯେ କୌଣସି ରାଜ୍ୟ ସହିତ ମୟୂରଭଞ୍ଜର ମିଶ୍ରଣ ମୟୂରଭଞ୍ଜ, ପକ୍ଷରେ କ୍ଷତିକାରକ ହେବ । କିନ୍ତୁ ସରକାରୀ ଚାକିରିଆ ହିସାବରେ ମୋର କର୍ତ୍ତବ୍ୟ କେଉଁଠି- ତାହା ମୁଁ ସ୍ଥିର କରେ । ଏଇ ଅବସରରେ ମୁଁ ପ୍ରଚାର ବିଭାଗର ଗାଡି ସାହାଯ୍ୟରେ ରାଜ୍ୟର ସବୁ ଦର୍ଶନୀୟ ସ୍ଥାନ ବୁଲିଛି, ଦେଖିଛି ଓ ସୌନ୍ଦର୍ଯ୍ୟ ଉପଲବ୍ଧି କରିଛି ।



## ।। ଅଣଚାଳିଶ ।।

୧୯୪୮ ଜୁନ-ଜୁଲାଇ କଥା । ଶରତ୍ ବାବୁ ମୟୁରଭଞ୍ଜ ରାଜ୍ୟର ପ୍ରଥମ ଓ ଶେଷ ପ୍ରଧାନମନ୍ତ୍ରୀ । ସେତେବେଳେ ସବୁରାଜ୍ୟର ମୁଖ୍ୟମନ୍ତ୍ରୀଙ୍କୁ ପ୍ରଧାନମନ୍ତ୍ରୀ କୁହାଯାଉଥିଲା । କାରଣ ବ୍ରିଟିଶ ଶକ୍ତି ଚାଲିଯିବାପରେ ସାର୍ବଭୌମତ୍ୱ, ସାନ ହେଉ ବଡ ହେଉ, ସବୁ ରାଜ୍ୟ ଉପରେ ସ୍ୱତ୍ୱ ନ୍ୟସ୍ତହେଲା । ଗାଡିପଠାଇ ମୋତେ ଡକାଇନେଲେ । କହିଲେ- "ବସନ୍ତ ତୁମେ କଲିକତା ଯାଅ । ମହାରାଜାଙ୍କୁ ମୋ ନା ଧରି କହିବ- ସେ ବାରିପଦା ଆସନ୍ତୁ । ବେଶି ଦିନପାଇଁ ନ ହେଲେ ମଧ୍ୟ, ଦିନେ ଦୁଇଦିନପାଇଁ । ଆମର ନୂଆ କଲେଜ, ଯାହାକୁ ଆମେ ତାଙ୍କ ବଡ ଭାଇ ପୂର୍ଣ୍ଣଚନ୍ଦ୍ରଙ୍କ ନାମରେ ନାମିତ କରିଛୁ ତାକୁଇ ଅନୁଷ୍ଠାନିକ ଭାବରେ ବା ଔପଚାରିକ ଭାବରେ ଉଦ୍‌ଘାଟନକରିବେ ଏବଂ ରଥଯାତ୍ରାରେ ରଥଟଣା ଉତ୍ସବ କାର୍ଯ୍ୟ ପାରମ୍ପରିକ ରୀତିରେ ସମାହିତ କରିବେ ।" ସେଇ ଦିନ ସନ୍ଧ୍ୟାରେ ଏକ ସରକାରୀ ଗାଡି ମୋତେ ରୁପ୍‌ସା ଜଙ୍କସନ୍‌ରେ ହାୱଡାଗାମୀ ଟ୍ରେନରେ ବସାଇଦେଲା ।

ଶରତ୍ ଗାନ୍ଧୀ ମୋତେ ଖୁବ୍ ସ୍ନେହକରୁଥିଲେ, ବିଶ୍ୱାସ କରୁଥିଲେ ଏବଂ ସବୁ ମନ୍ତ୍ରଣା ଓ ଯୋଜନାରେ ମୋର ଉପସ୍ଥିତି କାମନାକରୁଥିଲେ । ମୋର ଏବେବି ବିଶ୍ୱାସ ଯେ, ଶିଖି ମନାଇ ତାଙ୍କ ସହିତ ହାତ ମିଳାଇଥିଲେ, ଗୋପବନ୍ଧୁଙ୍କ ପରି ମୟୁରଭଞ୍ଜରେ ପୂଜ୍ୟ ଏବଂ ଉପାସ୍ୟ ହୋଇପାରିଥାନ୍ତେ ଏବଂ ସେ ନିଃସ୍ୱ, କପର୍ଦ୍ଦକଶୂନ୍ୟ ହୋଇ ଅନ୍ତିମ ଜୀବନଯାପନ କରିନଥା'ନ୍ତେ । ତାଙ୍କୁ ତାଙ୍କ କର୍ମୀମାନେ ବିପଦଗାମୀ କଲେ । ଏପରିକି ଅନ୍ତରଙ୍ଗ ବନ୍ଧୁମାନେ ତାଙ୍କ ପତନ ଚାହିଁଲେ । ତାଙ୍କର ପରିଧାନ ଥିଲା ଅଣଓସାରି, ଖଦଡ ଧୋତି, ଖାଲି ଦେହ ଉପରେ ଖଦଡ ଚାଦର; ନିଜ ହାତ-କଟା ସୂତାରେ । ବାରିପଦା ମ୍ୟୁନ୍‌ସିପାଲଟିର ସେ ବି ଦିନେ ଭାଇସ୍-ଚେୟାରମେନ ଥିଲେ ଏବଂ ମୟୁରଭଞ୍ଜର ସ୍ୱାୟତ୍ତ ଶାସନ ସହିତ ଗୋପବନ୍ଧୁଙ୍କ ପରି ଜଡିତଥିଲେ । ବାରିପଦା ମ୍ୟୁନିସିପାଲଟି ଭବନ ଆଗରେ ଗୋପବନ୍ଧୁଙ୍କର ପ୍ରତିମୂର୍ତ୍ତି ସହିତ ଶରତ୍ ଗାନ୍ଧୀଙ୍କର ଆବକ୍ଷ ପ୍ରତିମୂର୍ତ୍ତିଟିଏ ପ୍ରାପ୍ୟଥିଲା ।

ପରବର୍ତ୍ତୀ ସକାଳେ କଲିକତାରେ ପହଞ୍ଚି, ଟ୍ରାମ ଧରି ସିଧା ସଳଖ ମୟୁରଭଞ୍ଜ ରୋଡରେ ମୟୁରଭଞ୍ଜ କୋଠିକି ଗଲି । ଭାଗ୍ୟକୁ ସେଠିକାର କେଅାର ଟେକର ଶ୍ରୀଯୁକ୍ତ ବୀର୍‌ଙ୍କ ସହିତ ମୋର ପୂର୍ବରୁ ବାରିପଦାରେ ଦେଖା ସାକ୍ଷାତ୍, ଆଳାପ-ମେଳାପ ହୋଇଥିଲା । ପତଳା ଶ୍ୱେତ ବସ୍ତ୍ର ପରିହିତ ବନ୍ଧୁଟି, ଯାହାକୁ କହନ୍ତି ପକା ବଙ୍ଗାଳୀ

ଜେଣ୍ଟେଲ ମେନ୍ (ଭଦ୍ରଲୋକ), ତାଙ୍କଠୁ ଆଦର ଅଭ୍ୟର୍ଥନା ପାଇ, ତାଙ୍କ ସହିତ କୋଠି କି ଗଲି। ସେ ମହାରାଜାଙ୍କୁ ଖବର ଦେଲେ।

ନାନା କାରଣରୁ ମୋର ମୟୁରଭଞ୍ଜ ମହାରାଜାନୁଗତ ପ୍ରାଣ। ସେମାନେ ମୋର ଅନ୍ନଦାତା, ଶିକ୍ଷାଦାତା, ଦୈବ, ବିଧାତା। ସେମାନଙ୍କଯୋଗୁଁ ଭିକାରୀ ବ୍ରାହ୍ମଣ ଛୁଆଟିଏ ବଣଜଙ୍ଗଲ ଭିତରୁ ପଦାକୁ ବାହାରି ଜୀବନରେ ନାନା ଖ୍ୟାତି ଅର୍ଜନକରିଛି। ଏଗାର ବର୍ଷରୁ ଅଧିକ କାଳ ଧରି ଏକାଧିକ କ୍ରମେ ମହାରାଜା ମୋତେ ଜାଣନ୍ତି। ମୁଁ ବି ତାଙ୍କର ବିଶ୍ୱାସଭାଜନ ହେବାପାଇଁ ପ୍ରାଣପଣେ ଚେଷ୍ଟାକରିଛି। ଏପରିକି, ଉପାସନା ମଧ୍ୟ କରିଛି। କଥା ପ୍ରସଙ୍ଗରେ ମୋତେ ନାନା କହିବା ନ କହିବା କଥା ମଧ୍ୟ କହିଥା'ନ୍ତି, ବୈଠକଖାନାରୁ ସମସ୍ତେ ଉଠିଯିବା ପରେ, ସେ ମୋ କଥା ଏକାନ୍ତରେ ଶୁଣନ୍ତି, ପ୍ରଜାସଭା, କେନ୍ଦ୍ରସଭା ଆଦି ଗଣତାନ୍ତ୍ରିକ ଅନୁଷ୍ଠାନର ସମ୍ପାଦକ ଭାବରେ ତାଙ୍କ ଆଗରେ ପ୍ରଜା ମାନଙ୍କର ଯେଉଁ ସବୁ ଅଭାବଅଭିଯୋଗ ଉପସ୍ଥାପିତ ହୋଇଥାଏ, ତାହା ମୁଁ ବୟାନ କରେ, ବନ୍ଧୁ ଆକାରରେ ମୁଁ ଯେମିତି ଶରତ୍ ବାବୁଙ୍କ ପ୍ରିୟପାତ୍ର, ମହାରାଜାଙ୍କର ମଧ୍ୟ ତଦନୁରୂପ। ଦିନ ଥିଲା- ଯେବେ ମୁଁ ତାଙ୍କୁ ପ୍ରଜାମଣ୍ଡଳର ପ୍ରତୀକ, ପ୍ରତିନିଧି ଓ ସର୍ବମୟ କର୍ତ୍ତା ଆକାରରେ ସମ୍ମାନ ଦେଉଥିଲି, ଯେତେବେଳେ ଜାଣିଲି ଯେ, ସେବି ଶରତ୍ ବାବୁଙ୍କ କାର୍ଯ୍ୟକଳାପ ପ୍ରଶଂସମାନ ଚକ୍ଷୁରେ ଦେଖିଛନ୍ତି, ମୁଁ ତାଙ୍କୁ ବିହିତ ସମ୍ମାନ ଦେବାରେ କେବେ ପଶ୍ଚାଦପଦ ହୋଇନାହିଁ। ଏ ପ୍ରକାର ଦ୍ୱୈତ୍ୟ ଗୁରୁ ଦାୟିତ୍ୱ ସେ ମୋତେ ଆଗରୁ ଥରେ ଦେଇଥିଲେ।

ସେ ଯାହାହେଉ, ସେଦିନ ମୋର ଭାରି ଭୟ ହେଉଥାଏ, ମହାରାଜା ମୋତେ ନିକମ୍ମାହାରାମ ମନେକରି କୋଠିରୁ ଘଉଡାଇ ଦେବେନି ତ। ମୋର ଆଚାର ବ୍ୟବହାରରେ ସେ ହୁଏତ ପ୍ରତାରଣା ଲକ୍ଷ୍ୟକରୁଥିବେ। ଦେଖାହେବା ମାତ୍ରେ ମୋର ସେ ଭୟ ଅହେତୁକ ଜଣାଗଲା। "କି ହୋ ବସନ୍ତ ! ଏତେ ଦିନ କୁଆଡେ ଥିଲ ? ଆଜି କେମିତି ମନେପଡିଲା ?" ଗଳାରେ ସାମାନ୍ୟ ଶ୍ଳେଷ ଥିଲା। ଆତ୍ମୀୟତା ଓ ଘନିଷ୍ଠତାର ସାମାନ୍ୟ ସ୍ମିତ ସହିତ ଦେଖିଲି, ସେହି ଦୀର୍ଘକାୟ ୬ ଫୁଟ ୪ ଇଞ୍ଚ ଲମ୍ବର ସୌମ୍ୟ ମୂର୍ତ୍ତି, ୫୮ ଇଞ୍ଚ କିଆ-ଲାଲି-ଧଡି-ଧୋତି ପରିହିତ ପଦ୍ମପଲାସ-ଲୋଚନ ମହାରାଜଙ୍କୁ; ଫ୍ଲାଇଟ୍ ଲେଫ୍ଟେନେଣ୍ଟ ମହାରାଜ ସାର ଶ୍ରୀ ପ୍ରତାପ ଚନ୍ଦ୍ରଙ୍କୁ; ଗୁଣିରାମ ରାମଚନ୍ଦ୍ର ଭଞ୍ଜକଞ୍ଜ ରବିଙ୍କ କନିଷ୍ଠାତ୍ମଜଙ୍କୁ। ମନ୍ତ୍ରମୁଗ୍ଧ ତାହାଣିଟିଏ ହେଲା ମୋର ଉତ୍ତର। ପଚାରିଲେ- "ତୁମର ଶରତ୍ ଦାସଙ୍କ ମନ୍ତ୍ରୀ ମଣ୍ଡଳ ଖବର କି ? ମୟୁରଭଞ୍ଜର ଖବର କ'ଣ ?"

ଶରତ୍ ବାବୁ ଦେଇଥିବା ଚିଠି ଓ ନିମନ୍ତ୍ରଣ ପତ୍ରଟିଏ ତାଙ୍କ ହାତକୁ ବଢାଇଦେଲି। ଛୋଟ ଚିଠିଟା ଅଳ୍ପକେ ପଢିସାରି, ମୋ ଆଡକୁ ଚାହିଁ କହିଲେ- "ଏଇ କେତେଟା ଦିନ ଭିତରେ ସମସ୍ତେ ପାଗଳ ହୋଇଗଲଣି ଦେଖୁଛି। ତୁମର ଶରତ୍ ବାବୁ ମୋପାଇଁ ଚାକିରୀ ଖଣ୍ଡିଏ ଯୋଗାଡ କରିପାରିଲେନି ? କାହିଁକି, ମୋତେ ସେକ୍ରେଟେରୀ କରିଥିଲେ ମୁଁ କ'ଣ କରିପାରି ନଥା'ନ୍ତି ? ତୁମେ ତ ଆଖି ଆଗରେ ଦେଖିଲ, ମହୀଶୂରର ଏତେ ବଡ ଇଞ୍ଜିନିୟର, କି' କରି କେତେ ମାଇଲ ରାସ୍ତା ରିପିୟର କରିପାରିଲା ନାହିଁ, ବାଲେଶ୍ୱରର ଫୁଲାଡି ପାଖରୁ ରାଇରଙ୍ଗପୁର ଯାଏଁ ରାସ୍ତାଟାକୁ, ଜିପ୍‌ରେ ଯା'ଆସ କରି ସକାଳୁ ସନ୍ଧ୍ୟା ଯାଏ ଲାଗି, ସାତ-ଆଠଟା ଦିନରେ ସାରିଦେଲି। ସିଭିଲ ସାପ୍‌ଲାୟସରେ ମଧ୍ୟ କିଛି ଦିନ ଚେକ୍ କାଟନ୍ତି। ସେ କେତେ ଦିନ ମୋର ପ୍ରଜା ଥିଲେ। ମୁଁ କ'ଣ ତାଙ୍କ ଅବାଧ୍ୟ ପ୍ରଜା ହୋଇଥା'ନ୍ତି ? ସେକ୍ରେଟେରିଏଟ୍‌ରେ ମୋତେ ସେକ୍ରେଟେରି କରି ବସେଇ ଦେଇଥିଲେ, ଅବାଧ୍ୟ ଓ ଅଯୋଗ୍ୟ କର୍ମଚାରୀଙ୍କୁ ମୁଁ କ'ଣ ସିଧା କରିଦେଇ ନଥା'ନ୍ତି ? ମୋତେ କାଠପଥରର ମହାଦେବ ବା ଜଗନ୍ନାଥ ମୂର୍ତ୍ତି ଭାବିଛ ଯେ, ମୁଁ ରଥରେ ବା ମନ୍ଦିରରେ ବସିଥିବି। କଲେଜ କରିବା ବେଶ୍ ଭଲ କଥା। ଆଗ ମୟୁରଭଞ୍ଜର ଭବିଷ୍ୟତ ଅଛି କି ନାହିଁ ଦେଖ। ତା ପରେ ଅନ୍ୟ କଥା। ରଥଟଣାପାଇଁ ମୁଁ ବାରିପଦା ଯାଇପାରିବିନି। ତୁମର ଏସ୍.ପି. ଶ୍ରୀରାମ ଦାସଙ୍କୁ କହିଲେ, ସେ ତ ଟାଣିଦେବ।"

ମୋର ଛାତିରେ ଛନକା ପଶିଲା। ଶରତ ବାବୁଙ୍କ ତରଫ ନେଇ କରୁଣ ସ୍ୱରରେ ମୁଁ କହିଲି- "ସେଠାରେ ହଜୁର ପ୍ରଜାମାନେ ଆପଣଙ୍କୁ ଦେଖିବାପାଇଁ ଅପେକ୍ଷାକରି ରହିଛନ୍ତି।" ଅଧା କଥା କାଟିଦେଇ ସେ କହିଲେ- "ମୁଁ କି ତୁମର ଜଗନ୍ନାଥ ହେଇଛି ଯେ ସେମାନେ ମୋତେ ଦେଖିବେ ?"

ମହାରାଜା ରାଜ୍ୟ ଛାଡି ଏଠାରେ କାହିଁକି ଅବସ୍ଥାନ କରୁଛନ୍ତି, ତାହା ମୋତେ ଜଣା। ମହାରାଜା ବେଶ୍ ଜାଣନ୍ତି ଯେ, ଅଦୂର ଭବିଷ୍ୟତରେ ମିଶ୍ରଣ ଦ୍ୱାରା ପ୍ରଜାଙ୍କ ହିତ କ'ଣ, ଅହିତ ସାଧିତହେବ। ବାରିପଦା ବା ମୟୁରଭଞ୍ଜରେ ଯେଉଁଠି ରହିଲେ ମଧ୍ୟ ରାଜଭକ୍ତ ଆଦିବାସୀ ଅବୁଝା ପ୍ରଜା ତାଙ୍କୁ ଏକ ଅଡୁଆ ପରିସ୍ଥିତିରେ ପକାଇବେ। ଯାହା ଫଳରେ ଓଡିଶା ସରକାର ସହିତ ତାଙ୍କୁ ମୁକାବିଲା କରିବାକୁ ପଡିବ। ତେଣୁ ମୟୁରଭଞ୍ଜ ପ୍ରତି, ଜନ୍ମଭୂମି ପ୍ରତି ଅଗାଧ ସ୍ନେହ, ଶ୍ରଦ୍ଧା, ଭକ୍ତି ସତ୍ତ୍ୱେ ସେ ରାଜ୍ୟ ଛାଡି ଏଠାରେ ଅପେକ୍ଷାକୃତ ଶାନ୍ତ ବାତାବରଣରେ ନିଶ୍ଚିନ୍ତହୋଇ କାଳଯାପନ କରିବାର ଚେଷ୍ଟା କରୁଛନ୍ତି।

କେତେକଣ ନାମକାଦା (ହାରାମକାଦା)ଙ୍କ କୁଶଳ ପ୍ରଶ୍ନ ପଚାରିବା ପରେ ମହାରାଜା କହିଲେ- "ବସନ୍ତ ପାଗଳାମି ଛାଡ। ଶରତ୍ ବାବୁଙ୍କୁ କୁହ- ପ୍ରଥମେ ସେ ମୟୂରଭଞ୍ଜର ଭବିଷ୍ୟତ କଥା ସର୍ଦ୍ଦାର ପଟେଲଙ୍କଠାରୁ ବୁଝନ୍ତୁ। ତା ପରେ କଲେଜ ଉଦ୍‌ଘାଟନ ହେବ, ରଥ ଗଢିବ ବା ଆଉ ଯାହା ହେବ। ଯଦି ସେ କହିବେ- ମୁଁ ବି ତାଙ୍କ ସାଙ୍ଗରେ ଦିଲ୍ଲୀ ଯିବି। ଅନିଶ୍ଚିତ ଅବସ୍ଥାରେ ଆଉ ବେଶି ଦିନ ରହିବା ଠିକ୍ ହେବନି Chance ଆମେ ହରେଇ ଦେଇଛୁ। ବୁଢା (ମହାତ୍ମା ଗାନ୍ଧୀ) ବଞ୍ଚିଥିବା ବେଳେ ତାଙ୍କୁ ଭେଟି କିଛି କରିପାରିଥିଲେ ହୋଇଥା'ନ୍ତା। ସର୍ଦ୍ଦାର ପଟେଲଙ୍କୁ ବୁଝାଇବା ବା ବାଗକୁ ଆଣିବାର କଥା ଛାଡ। ତଥାପି...." ମହାରାଜା ଅନ୍ୟ କାମରେ ଚାଲିଗଲେ।

କୋଠି ଛାଡିବା ପୂର୍ବରୁ ଚାରିପଟେ ବୁଲିଲି। ପିଲା ଦିନରେ ମା ଗାଉଥିବା "କଲିକତା ଦଲାଣର, କାନ୍ଦେ ସେନ କେମା ହୋଇ କାତର" ଗୀତଟି ମନେପଡିଲା। ଏଇଟି ସେଇ ଦଲାଣ, ଯେଉଁଠି କେଶବ ସେନଙ୍କର ମହାରାଣୀ ସୁଚାରୁ ଦେବୀ, ସ୍ୱାମୀ ରାମଚନ୍ଦ୍ର ଭଞ୍ଜଙ୍କୁ ହରାଇ କିଭଳି ହୋଇ କାନ୍ଦୁଥିଲେ, ତାହା କୁହା ଯାଇଥିଲା। ମୟୁରଭଞ୍ଜ ରାଜବଂଶର ବହୁସ୍ମୃତି ବିଜଡିତ ଏଇ ସେଇ ଐତିହାସିକ ରାଜପ୍ରାସାଦ। ଆଦର୍ଶ ପ୍ରେମିକପ୍ରେମିକା ରୂପେ ଏଇଠି ପୁଣ୍ୟ ଶ୍ଳୋକ ମହାରାଜା ଶ୍ରୀ ରାମଚନ୍ଦ୍ର ଭଞ୍ଜଙ୍କ ଓ ସୁଚାରୁ ଦେବୀଙ୍କର ଜୀବନର ରୋମାଞ୍ଚକର ପ୍ରେମ କାହାଣୀର ଅଧ୍ୟାୟଟିଏ ରଚିତ ହୋଇଥିଲା। ସେ ଦୁହିଁଙ୍କ ସ୍ମୃତିକୁ ପ୍ରଣତି ଜଣାଇ ବାରିପଦା ଫେରିଲି।



## ॥ ଚାଳିଶ ॥

କଲିକତାରୁ ମହାରାଜାଙ୍କ ସନ୍ଦେଶ ନେଇ ବାରିପଦା ଫେରିବା ପରେ ପରେ କେବେ ଦିଲ୍ଲୀ ଯିବେ ବିଚାର ବିମର୍ଷ ଚାଲିଲା; କିଏ କିଏ ଯିବେ ଏବଂ କ'ଣ ଆନୁସଙ୍ଗିକ ବ୍ୟବସ୍ଥାର ପ୍ରୟୋଜନ ହେବ। ନାନା ମସୁଧା ମନ୍ତ୍ରଣା ବିଭିନ୍ନ ମହଲରେ। ପ୍ରକୃତରେ ସର୍ବମୟ ସ୍ୱାଧୀନତାପାଇଁ ମୟୁରଭଞ୍ଜ ପ୍ରଜାଏ ପ୍ରସ୍ତୁତ ନ ଥିଲେ। ଅଚାନକ ଏ ସ୍ୱାଧୀନତା ବା ସ୍ୱାତନ୍ତ୍ୟ- ମୁଖ୍ୟତଃ ଅଶିକ୍ଷିତ, ଅପାରଗ, ଅନଭିଜ୍ଞ, ଅପ୍ରସ୍ତୁତ ପ୍ରଜାଙ୍କ ଉପରେ। ମୟୁରଭଞ୍ଜ ସାର୍ବଭୌମ୍ୟ ରାଜ୍ୟ ଏବଂ ସାର୍ବଭୌମ୍ୟ କ୍ଷମତାର ଅଧିକାରୀ। କନୈକ ମଳିମୁଣ୍ଡିଆ ପ୍ରଜା, ଯେକି ଆନ୍ଦୋଳନ ଚଳାଇ ଦେଶକୁ ସାର୍ବଭୌମତ୍ତ୍ୱ ଆଣିଦେଇପାରନ୍ତି। ମାତ୍ର ଯାହାଙ୍କର ରାଜ୍ୟ ଶାସନକରିବାର ଅଭିଜ୍ଞତା ନାହିଁ ବା ସୁଶାସନ କହିଲେ କ'ଣ ବୁଝାଏ, ତାର ଧାରଣା ବି ନାହିଁ। ୬-୭ ମାସର ଶାସନ କାଳ ମଧ୍ୟରେ ବଜେଟ୍ ହେବ। କେନ୍ଦ୍ର ପରିଷଦ ବଜେଟ୍ ପାଶକରିବ, ମହାରାଜଙ୍କ Civil List ଓ ବଜେଟ୍ ନିୟନ୍ତ୍ରଣକରିବ- ବିନା ମହାରାଜା ଓ ବିନା ସୁଦକ୍ଷ ଦେୱାନରେ। ରାଜ୍ୟରେ ତେଣେ ଅରାଜକତା। ସ୍ୱାଧୀନତା ମାନେ ସ୍ୱେଚ୍ଛାଚାର। ଯଦି ୧୯୪୮ ଜାନୁଆରି ପହିଲାରେ ଓଡିଶାର ଅନ୍ୟାନ୍ୟ ଗଡଜାତ ସହିତ ମୟୁରଭଞ୍ଜ ସାମିଲ ହୋଇଯାଇଥା'ନ୍ତା, ତେବେ ଏପରି ଏକ ଅଭାବନୀୟ ପରିସ୍ଥିତି ଉପୁଜି ନଥା'ନ୍ତା। ମହାରାଜା ତେଣୁ ସରଦାର ପଟେଲଙ୍କୁ ବୁଝାଇଦେଲେ ଯେ ପ୍ରଜାମାନଙ୍କୁ ସାର୍ବଭୌମତ୍ତ୍ୱ କେନ୍ଦ୍ର ପରିଷଦ ଜରିଆରେ ଅର୍ପଣ କରିସାରିଛନ୍ତି ଓ ତାଙ୍କର କିଛି କର୍ତ୍ତୃତ୍ୱ ନାହିଁ। ଏହି ସମୟରେ ମହତାବ ଯୁକ୍ତି ବାଡିଲେ, ଯେହେତୁ ମୟୁରଭଞ୍ଜ, ସରେଇକଳା ଓ ଖରସୁଆଁକୁ ରାସ୍ତା ଦେଉ ନାହିଁ, ତେଣୁ ସେ ଦୁଇ ରାଜ୍ୟ ମଧ୍ୟ ବିହାରରେ ମିଶିବା ଉଚିତ୍। ଏଣୁ ମୟୁରଭଞ୍ଜ ସ୍ୱତନ୍ତ୍ର ରାଜ୍ୟ ହୋଇ ରହିଲା ଏବଂ ଅପାତସ୍ଥିତି ଓ ଭବିଷ୍ୟତ ଏହି ମତେ ଆପେ ଆପେ ନିର୍ଣ୍ଣିତ ହୋଇଗଲା। ମନ୍ତ୍ରୀ ମଣ୍ଡଳ ଧରିନେଲା- ଯାହା ଉପରେ ସାର୍ବଭୌମତ୍ତ୍ୱ ରହିଛି, ତାକୁଇ ସ୍ଥାୟୀ କରିବା। ଯୁକ୍ତି ହେଲା- ତ୍ରିପୁରା ଓ କୁଚବିହାର ପରି ଛୋଟ ଛୋଟ ରାଜ୍ୟ ଭାରତର ପୂର୍ବାଞ୍ଚଳ ରାଜ୍ୟ ହୋଇ ରହିଥିବାରୁ ଏବଂ ପ୍ରତିରକ୍ଷା ଦୃଷ୍ଟିରୁ ଗୁରୁତ୍ୱପୂର୍ଣ୍ଣ ହୋଇଥିବାରୁ, ଯଦି ସ୍ୱାତନ୍ତ୍ୟର ଅଧିକାରୀ ହୋଇପାରୁଛି, ତେବେ କ୍ଷୁଦ୍ର ରାଜ୍ୟ ହେଲେ ମଧ୍ୟ ମୟୁରଭଞ୍ଜ କାହିଁକି ସ୍ୱାତନ୍ତ୍ୟର ଅଧିକାର ହୋଇ ନ ପାରିବ ? ଏଣୁ ୧୧ ମାସର ଏହି ସ୍ୱତନ୍ତ୍ର ମୟୁରଭଞ୍ଜକୁ ଆଖି ଆଗରେ ରଖି ଶାସନତନ୍ତ୍ର ପରିଚାଳିତ ହେବାକୁ ଲାଗିଲା।

ପ୍ରଥମ କର୍ତ୍ତବ୍ୟ ହେଲା, କନଷ୍ଟିଚୁଏଣ୍ଟ ଏସେମ୍ବ୍ଲିଟିଏ ଗଢିବା। ଯାହାର କାମ ମୟୁରଭଞ୍ଜପାଇଁ ଭାରତୀୟ କନଷ୍ଟିଚୁଏଣ୍ଟ ଏସେମ୍ବ୍ଲି ମଡେଲରେ ଏକ ଶାସନ ପ୍ରଣାଳୀ

ପ୍ରସ୍ତୁତକରିବା । ଆଇନ ଏବଂ ରାଜସ୍ୱ ମନ୍ତ୍ରୀ ତଥା ପୂର୍ବତନ ରାଜସ୍ୱ ଓ ବିଚାର ବିଭାଗୀୟ କର୍ମଚାରୀ ଶ୍ରୀଯୁକ୍ତ ବିଦ୍ୟାଧର ମହାପାତ୍ରଙ୍କୁ ଏହି ସଭାରେ ସଭାପତି କରାଗଲା । ପ୍ରିଏମ୍ବଲ ପ୍ରସ୍ତୁତ, ଆଲୋଚିତ ଏବଂ ଗୃହୀତ ହେଲା ଏବଂ ଆଗକୁ ଆଗକୁ ଭବିଷ୍ୟତ ଶାସନତନ୍ତ୍ର ଗଢା ଚାଲିଲା । ତତ୍‌କାଳୀନ ସରକାରୀ ଓକିଲ ଶ୍ରୀ ସୁରେଶ ଚନ୍ଦ୍ର ଦାସ Draft ତିଆରି କରିବାର ଦାୟିତ୍ୱରେ ରହିଲେ ।



## ।। ଏକଚାଳିଶ ।।

ମହାରାଜାଙ୍କ କଥା ଅନୁସାରେ ଦିଲ୍ଲୀରେ ସରଦାର ପଟେଲଙ୍କୁ ସାକ୍ଷାତ୍‌କରି ମୟୁରଭଞ୍ଜର ଭବିଷ୍ୟତ ନିର୍ଦ୍ଧାରଣ କରିବାକୁ ପ୍ରଜାମଣ୍ଡଳ ସରକାର ଉଚିତ୍ ମନେକଲେ । Delegation ରେ କିଏ କିଏ ରହିବେ ତାହା ନିର୍ଦ୍ଧାରଣ କରିବାକୁ କିଛି ସମୟ ଲାଗିଲା । Delegation ବି ଯେମିତି ବ୍ୟୟ ସାପେକ୍ଷ ନ ହୁଏ, ଅଥଚ ପ୍ରତିନିଧିମୂଳକ ହୁଏ, ସେଥିପାଇଁ ସମସ୍ତେ ତତ୍ପରହେଲେ । ପ୍ରଧାନ ମନ୍ତ୍ରୀ ତଥା ପ୍ରଜାମଣ୍ଡଳର ସଭାପତି ଶ୍ରୀ ଶରତ୍ ଚନ୍ଦ୍ର ଦାସ ହେଲେ ନେତା । ମନ୍ତ୍ରୀମଣ୍ଡଳର ଅନ୍ୟତମ ମନ୍ତ୍ରୀ, ଶ୍ରୀଯୁକ୍ତ ମହେଶ୍ୱର ନାୟକ ଯିବାପାଇଁ ଖୁବ୍ ଆଗ୍ରହୀଥିଲେ । ତାଙ୍କୁ ଆଦିବାସୀମାନଙ୍କ ପ୍ରତିନିଧି ଭାବରେ ନେବା ଓ ଅନ୍ତର୍ଭୁକ୍ତକରିବା ସମିଚୀନ ମନେହେଲା । ସରକାରୀ କର୍ମଚାରୀ ଆକାରରେ ପ୍ରତିନିଧି ହେଲେ, ତତ୍କାଳୀନ ପୋଲିସ୍ ସୁପିରଟେଣ୍ଡେଣ୍ଟ ଶ୍ରୀରାମ ଚନ୍ଦ୍ର ଦାସ । ଚେହେରା, ଗୁଣ, ଗ୍ରାମ, ଅଭିଜ୍ଞତା ସବୁ ଦୃଷ୍ଟିରୁ ତାଙ୍କୁ ନ ନେବା ଏକ ଅପରାଧ ହେବ । କଲିକତା, ଦିଲ୍ଲୀ ଆଦି ବଡ ବଡ ସହରରେ ଆଚାର ବ୍ୟବହାର ଚାଲିଚଳନ ଆମକୁ ସେହିଁ କେବଳ ଶିଖାଇପାରିବେ । ଶ୍ରୀ ସୁରେଶ୍ ଚନ୍ଦ୍ର ଦାଶ୍ ଷ୍ଟେଟ ଓକିଲ । ମୋଟାମୋଟି ଆମେ ସମସ୍ତେ ତାଙ୍କର ଯୋଗ୍ୟତା ନିକଟରେ ନିଜନିଜକୁ ସମର୍ପଣକଲୁ । ତାଙ୍କୁ ସରଦାର୍ ପଟେଲ୍ ପାଖକୁ ପୋଲିସ କର୍ମଚାରୀ ଆକାରରେ ନେଇ ହେବ ନାହିଁ । ସେ ଯିବେ ଡେଲିଗେସନ୍‌ର ସେକ୍ରେଟେରି ଭାବରେ । ତାଙ୍କର ପୋଷାକ, ପରିଛଦ, ଚେହେରା ରାଜପୁତ୍ ପରି । ଗେଜେଟ୍ ଇସ୍ତାହାରରେ ବାହାରିବ । ତାଙ୍କୁ ସେହି ପଦବୀ ଦେଇ, ପ୍ରଜାମଣ୍ଡଳ ତରଫରୁ ଗୌରମୋହନ ମହାପାତ୍ର, ଗୌର ମୋହନ ପ୍ରଧାନ, ଗିରୀଶ୍ ରାୟ ଡେଲିଗେସନ୍‌ର ଅର୍ନ୍ତଭୁକ୍ତ ହେଲେ । ଆଦିବାସୀ ନେତା ସୁନାରାମ ସୋରେନ୍ ଏବଂ ତାଙ୍କର ଗୋଷ୍ଠୀର ତିନି, ଚାରି ଜଣଙ୍କୁ ମଧ୍ୟ ନିଆଗଲା । ମୁଁ ସେମାନଙ୍କ ସହିତ ଗଲି Publicity Officer

ଆକାରରେ। ମୁଁ ସେଥିପାଇଁ ନିଜକୁ ଅନେକ ଦିନ ଧରି ନିୟୋଜିତକରିଛି। ପ୍ରଧାନମନ୍ତ୍ରୀଙ୍କ ସହିତ ସେତେବେଳେ ମହାତ୍ମାଗାନ୍ଧୀ ତଥା କଂଗ୍ରେସ ସରକାର ଗଠନମୂଳକ କାର୍ଯ୍ୟ ଉପରେ ଜୋର ଦେଉଥାନ୍ତି। ଆମର ପ୍ରଧାନମନ୍ତ୍ରୀ ବନ୍ଧ, ପୋଖରୀ ଖୋଳାଇବାରେ ତତ୍ପରଥାନ୍ତି। ବଡ଼ଜୋଡ଼ ବନ୍ଧ ସେହି ସମୟରେ ହୋଇଥିଲା। ଗାଁ ଗଣ୍ଡାରୁ ଶଙ୍ଖ ହୁଳହୁଳି ଦେଇ ଦଳ ଦଳ ପୁରୁଷ ସ୍ତ୍ରୀ ଗଠନ ମୂଳକ କାର୍ଯ୍ୟରେ ଯୋଗ ଦେଇଥିଲେ। ମୁଁ ସେହି ସବୁ କାର୍ଯ୍ୟରେ ଅଗ୍ରଣୀ ଥାଏ। କଲିକତାରୁ ଜଣେ ଫଟୋଗ୍ରାଫର ମୋ ସାଙ୍ଗରେ ରହି ଏସବୁ ଫଟୋ ଉଠାଇଥାନ୍ତି। ଅଳ୍ପ ଦିନ ଭିତରେ କଲିକତାରୁ ସବୁ ଫଟୋ ଆସିଗଲା ଏବଂ ଦିଲ୍ଲୀଯିବା ପୂର୍ବରୁ ସବୁ photograph ସଜାସଜି କରି ମୁଁ ସାଙ୍ଗରେ ଧରିଲି। ମହାରାଜାଙ୍କର କନ୍ଭୋତ୍ସବ ସମୟରେ ଯେଉଁ ରଙ୍ଗୀନ ଛବି ଉଠିଥିଲା ସେଗୁଡ଼ାକ ମଧ୍ୟ ଫାଇଲ୍‌ରେ ରଖିଥାଏ।

ଯିଏ ଯାଆନ୍ତୁ ନା କାହିଁକି, ଦୁଇଜଣ ଗଲେ ନାହିଁ। ଜଣେ ହେଲେ- ପୁରୁଖା ଓ ବୟସ୍କ ବିଦ୍ୟାଧର ମହାପାତ୍ର, ଆଉ ଜଣେ ହେଲେ ପୁରୁଖା ମଣ୍ଡଳ କର୍ମୀ ହରିହର ମହାନ୍ତି। ପ୍ରଜାମଣ୍ଡଳରେ ଯେ ବିଭେଦ ସୃଷ୍ଟି ହୋଇସାରିଥିଲା, ଏବେ ତାହା ଜଳଜଳ ହେଇ ଦିଶିଲା। କିରାଣୀ ବିଜୟ ବାବୁ ଓ ଜୀବନ ବାବୁ ଗଲେ ଅଫିସିଏଲ ଆକାରରେ। କେବେ ଯିବା, କେତେ ଟଙ୍କା ସାଙ୍ଗରେ ନେବା, ସେସବୁ ପ୍ରଧାନ ମନ୍ତ୍ରୀ ଓ କନଫିଡ଼େନସିଏଲ କିରାଣୀ ଦୁଇଜଣ ସ୍ଥିରକରିବେ।

ଶୁଭ ମୁହୂର୍ତ୍ତ ଦେଖି, ନାକରେ ନିଃଶ୍ୱାସ ଗତିବିଧି ଲକ୍ଷ୍ୟକରି ବାହାରିପଡ଼ିଲୁ। ୧୦-୧୨ ଜଣ। ରୂପସା ଓ କଲିକତା ଦେଇ ଏକ ଐତିହାସିକ ମିଶନରେ। ଟ୍ରେନ୍‌ଟିକଟ ଆଗରୁ କରାହେଇଥିଲା। କଲିକତାରେ ପହଞ୍ଚିବା ପରେ ଆମର ଗତିବିଧି ନିୟନ୍ତ୍ରିତହେଲା ଶ୍ରୀରାମ ଦାସଙ୍କ ଦ୍ୱାରା। ସେ ଯାହା କହନ୍ତି, ସେହି ଅନୁସାରେ କାମ ହୁଏ। ହୋଟେଲରେ ରହିଲୁଁ। ଅନ୍ୟାନ୍ୟ କିଛି କାମ ନ ଥିବାରୁ ଚୌରଙ୍ଗୀର ମେଟ୍ରସିନେମା ଆଗରେ ବୁଲାଫେରାକରି ନାନା ବେଶରେ ଲୋକଙ୍କୁ ଦେଖିଲୁ। ନିଷ୍ପତ୍ତି ହେଲା, ମେଟ୍ରୋ ସିନେମାରେ ଇଂରାଜୀ ଛବିଟିଏ ଦେଖିବା। ମେଟ୍ରୋରେ କି ସିନେମା ସେଦିନ ପଡ଼ିଥିଲା ଆମକୁ ଜଣା ନ ଥାଏ। ପ୍ରଧାନମନ୍ତ୍ରୀଙ୍କ ପାଖରେ ଅନ୍ତର୍ଯ୍ୟାମୀ ଡ୍ରାଇଭର ସବୁବେଳେ ଉପସ୍ଥିତ ଥାଏ। ପ୍ରଧାନମନ୍ତ୍ରୀ ପ୍ରଚୁର ପାନ ଖା'ନ୍ତି, ମାତ୍ର ଗୁଆ ଚୋବାଇ ପାରନ୍ତି ନାହିଁ। ପିତଳର ପାନକୁଟା ଯନ୍ତ୍ରଟି ଅନ୍ତର୍ଯ୍ୟାମୀ ପାଖରେ ଥାଏ। "ଅନ୍ତର୍ଯ୍ୟାମୀ" ଡାକିଦେଲେ, ସେ ପାନ ପ୍ରସ୍ତୁତ କାମରେ ଲାଗିଯାଏ। ପ୍ରଧାନମନ୍ତ୍ରୀ ବସିଯିବା ମାତ୍ରେ ଶୀତତାପନିୟନ୍ତ୍ରଣ

ହଲରେ ଶୋଇଗଲେ। ଥରେ ଥରେ ପଚାରିଦିଅନ୍ତି- "କ'ଣ ହେଉଛି" ଇଂରାଜୀ ଛବି ବିଷୟରେ ମୁଁ ବି କିଛି କହିପାରେନି।

କଲିକତାରେ ସିନେମା ଦେଖିବାପାଇଁ ଯାଇଥିଲୁ। ସିନେମା ହଲ ଆଗରେ ବୁଲୁ ବୁଲୁ ଆମେ ଦେଖିଲୁ ଅନିନ୍ଦ୍ୟ ସୁନ୍ଦରୀ ଝିଅଟି ticket counter ରେ ବସିଛି। ତାକୁ ଦେଖି ଭାବିଲୁ- ସିନେମାରେ ଖାଲି ସେମିତି ଝିଅ ଥିବେ। ପ୍ରଧାନମନ୍ତ୍ରୀ cinema ଦେଖନ୍ତି ନାହିଁ, ତଥାପି ବଳେଇ ଭିତରକୁ ନେଇଗଲୁ। ଛବିଟି ଇଂରାଜୀ। ଆମେ ଓ ସେ କେହି film ବୁଝୁ ନାହୁଁ। ମଝିରେ ମଝିରେ ପ୍ରଧାନ ମନ୍ତ୍ରୀଙ୍କ ନିଦ ଭାଙ୍ଗିଯାଏ। ପାଖରେ ବସିଥାଏ ଅନ୍ତର୍ଯାମୀ- ପାନ ଛେଚିବା ବାଲା। ସାମାନ୍ୟ ଇଙ୍ଗିତରେ ସେ ଆରମ୍ଭ କରିଦିଏ ପାନ ଛେଚା। ପିତ୍ତଳ ହେମଦସ୍ତାରେ ଭୀଷଣ ଖଟ୍ ଖଟ୍ ଶବ୍ଦ। କ'ଣ ଦୁର୍ଘଟଣା ଘଟିଲା ଭାବି ସିନେମାବାଲା ଭିତରକୁ ପଶିଆସି ଦେଖନ୍ତି।

କେବଳ ସମୟ କଟାଇ ଅର୍ଦ୍ଧରାତ୍ରରେ ହୋଟେଲକୁ ଫେରିଲୁ। ପରଦିନ ଦିଲ୍ଲୀ ଯାତ୍ରା। ସମସ୍ତଙ୍କପାଇଁ ଏରୋପ୍ଲେନ୍ ଟିକେଟ୍ ବ୍ୟବସ୍ଥା ହୋଇଗଲା- କେଉଁ ଏକ ଟ୍ରାଭେଲ ଏଜେନ୍ସି ଜରିଆରେ।

ନିର୍ଦ୍ଧାରିତ ଦିନରେ, ଦୁଇଟା ଗାଡ଼ିରେ ପ୍ରତିନିଧି ଦଳ ରୁପସା ଅଭିମୁଖେ ଟ୍ରେନ୍ ଧରିବାକୁ ବାହାରିଲେ। ଅନ୍ୟମାନଙ୍କ ମଧ୍ୟରେ ପ୍ରତିନିଧି ଦଳରେ ଥିଲେ ବିଜୟ ବାବୁ ଓ ଜୀବନ ବାବୁ-ଦୁଇ କାରିଣି ଭାଇ। ସେ ଦୁହେଁ ପ୍ରଧାନମନ୍ତ୍ରୀଙ୍କ ପ୍ରିୟ ପାତ୍ର। ଜଣେ ଷ୍ଟେନୋଗ୍ରାଫର ଏବଂ ଅନ୍ୟ ଜଣକ ଟଙ୍କାପଇସା ଦାୟିତ୍ୱରେ ରହିଥାନ୍ତି। ଶାସନର ସବୁ କଥା ଦୁହିଁଙ୍କୁ ଜଣା। ଭାରି ବିଶ୍ୱସ୍ତ। ଆଉ ଜଣେ ହେଉଛନ୍ତି- ପ୍ରଧାନମନ୍ତ୍ରୀଙ୍କ ଅନ୍ତରଙ୍ଗ ସହଚାରୀ। ତାଙ୍କ କାମ ପ୍ରଧାନମନ୍ତ୍ରୀଙ୍କୁ ପାନ ଯୋଗାଇବା ଏବଂ ଅନ୍ୟାନ୍ୟ ବ୍ୟକ୍ତିଗତ କଥା ବୁଝିବା। ଟ୍ରେନ୍‌ଟି ସନ୍ଧ୍ୟାବେଳେ ବେଶି ସମୟ ଛିଡ଼ାହୁଏ ନାହିଁ; କିନ୍ତୁ ଯେଉଁଠି ଏସ୍.ପି. ରାମବାବୁ ଅଛନ୍ତି, ସେଠି ଟ୍ରେନ୍‌ର ସମୟ ଜ୍ଞାନ ନ ଥାଏ। ବିଶ୍ୱେଶ୍ୱର ବାବୁ କହୁଥିଲେ- ଥରେ ପୂର୍ଣ୍ଣଚନ୍ଦ୍ର ଭଞ୍ଜ ମେଲରେ ରୁପ୍‌ସା ଚଢ଼ିଲେ ଏବଂ ଛାଡ଼ିଲା ବେଳକୁ ଦେଖାଗଲା ଯେ, ତାଙ୍କର ରାଜକୀୟ ଟୋପିଟି ବାରିପଦାରେ ରହିଯାଇଛି। ଚେନ୍ ଟଣାଗଲା "ରୋଲ୍‌ସ ରୟେସ୍" ଗାଡ଼ି ବାରିପଦା ରାଜବାଟୀ ଅଭିମୁଖେ ଛୁଟିଲା। ପ୍ରତିଥର ଟ୍ରେନ୍ ଛାଡ଼ିଲା ବେଳକୁ ଚେନ୍ ଟଣା ଯାଉଥାଏ। ଏହିପରି ଆଠ ଥର ଟାଣିଲା ପରେ ବାରିପଦା ଆଡ଼ୁ ଗାଡ଼ି ପହଞ୍ଚିଗଲା। ଶେଷରେ ସେ ଦିଲ୍ଲୀ ଗଲେ। ରାଜକୀୟ ଟୋପି ବିନା ସେ କେମିତି ଦିଲ୍ଲୀ ଯିବେ। ଆମେ ତ ରାଜରାଜୁଡ଼ା ଲୋକ ନୋହୁଁ, ସାଧାରଣ ଯାତ୍ରୀ।

ହରିଶନ୍ ବା ମହାତ୍ମାଗାନ୍ଧୀ ରୋଡରେ ଗୋଟିଏ ହୋଟେଲ୍‌ରେ ରହିଲୁ। ହୋଟେଲ୍‌ରେ ଆଡମ୍ବର ଯେମିତି ନାହିଁ। କିନ୍ତୁ ସେଠି ଆମେ ଯେଉଁ ଇଲିସି ମାଛ ଝୋଳ ଖାଇଥିଲୁଁ; ତାହା ଗଙ୍ଗା, ପଦ୍ମା, ବଳଙ୍ଗ, ସୁବର୍ଣ୍ଣରେଖା ବା କଲାଘାଟ୍‌ର ମାଛ, ତାହା କହି ନପାରିଲେ ମଧ୍ୟ, ସ୍ୱାଦ ଆଜିଯାଏ ଜିଭ ଅଗରେ ରହିଯାଇଛି। ସକାଳୁ ସମସ୍ତଙ୍କ ଟିକେଟ୍ ମିଳିଯାଇଛି। ମଧ୍ୟାହ୍ନଭୋଜନ ପରେ ଏୟାର୍‌ଲାଇନର ବସ୍ ଆସିଗଲା। ଆମେ ଗୋଠଟି ଯାକ ତା ଭିତରେ ବସିଯାଇ ଦମ୍‌ଦମ୍ ଏୟାର୍‌ପୋର୍ଟକୁ ଚାଲିଲୁ। ସେଠି ଲାଉଞ୍ଜରେ ଅଧଘଣ୍ଟାଏ ଖଣ୍ଡେ ବସିଛୁ କି ନାହିଁ, ଡାକରା ଆସିଲା ଏରୋପ୍ଲେନ୍ ପାଖକୁ ଯିବାପାଇଁ। ସେଠି ଯେ ଯାହା ମନମାଫିକ୍ ସିଟ୍‌ରେ ନିଜନିଜ ସାଙ୍ଗ ସହିତ ବସିଗଲୁ। ଅଚିରେ ଏରୋପ୍ଲେନ ଷ୍ଟାର୍ଟ୍ ହୋଇଗଲା। ଆମେ ଇଷ୍ଟଦେବଙ୍କୁ ସ୍ମରଣକରି ବସିଲୁ। କେବଳ ଆମର ସେକ୍ରେଟାରୀ ରାମବାବୁଙ୍କ ଛଡା ଆଉ କେହି କେବେ ଏରୋପ୍ଲେନ୍‌ରେ ଚଢିନାହାନ୍ତି। ଦୀର୍ଘକାୟ ପାଇଲଟ୍ ଆମ ସାମ୍ନାରେ ଛିଡାହୋଇ, ଆମକୁ ପ୍ରସ୍ତୁତ ହେବାକୁ କହିଲା। ଅର୍ଥାତ୍ ସିଟ୍ ବେଲ୍ଟରେ ଆମ ଦେହ ବାନ୍ଧିବାକୁ କହିଲା। ଆମ ଆଗରେ ଏକ ଖୋପ ଭିତରେ କାନରେ ଦେବାପାଇଁ ତୁଳା ଏବଂ ବାନ୍ତି ପକାଇବାପାଇଁ ପ୍ଲାଷ୍ଟିକ ଥଳୀ ପ୍ରତି ଆମର ଦୃଷ୍ଟି ଆକର୍ଷଣକଲା। ଆମର ହୃତ୍‌ସ୍ପନ୍ଦନ ପ୍ରଚଣ୍ଡ ବେଗରେ ବଢିଯାଇଥାଏ। ଖଣ୍ଡେଦୂର୍ ଦଉଡି ଯାଇ ଫେର୍ ଗତି କମାଇ, ଭୀଷଣ କର୍ଣ୍ଣକଟୁ ଶବ୍ଦ କରି ଏରୋପ୍ଲେନ୍ ଆଗର ଚକ ଭୂଇଁରୁ ଛାଡିଗଲା ଓ ତା ପରେ ପରେ ପଛଟି ବି ଛାଡିଗଲା। ଦଣ୍ଡେ ପ୍ରାୟ ଆମେ ସେଇଟା ହାଓ୍ୱାଡା ବ୍ରିଜ୍, ସେଇଟା ଭିକ୍ଟୋରିଆ ମେମୋରିଆଲ, ସେମିତି କହୁ କହୁ ଦୁଇ ତିନିଥର କଲିକତା ଉପରେ ଘୂରି ବୁଲିଲୁ ଏବଂ ତାପରେ ଏରୋପ୍ଲେନ୍ ଆହୁରି ଉପରକୁ ଉଠିଲା ଏବଂ ସିଧା ଚାଲିଲା ଦିଲ୍ଲୀ ଅଭିମୁଖେ।

ଶରତ କାଳ ଶେଷ ହେବା ଉପରେ। ନୀଳ ଆକାଶରେ ବରଫାଚ୍ଛାଦିତ ଧଳା ପାହାଡ ପରି ଖଣ୍ଡ ଖଣ୍ଡ ମେଘ ଦିଶୁଥାଏ। କେତେବେଳେ ଆମେ ସେହି ମେଘ ଭିତର ହେର୍‌ଫେର୍ ହୋଇଯାଉ। ତଳକୁ ଚାହିଁଲେ ସେମିତି ଧଳା ଦିଶେ। ଯତେଯେମିତି ଆମେ କାଶତଣ୍ଡି ଫୁଲର କିଆରିରେ। କ୍ରମେ କ୍ରମେ ଭଲ ଲାଗିଲା, ସାହସ ବଢିଲା। କିଛି ସମୟ ଯିବା ପରେ ଗୋଟାଏ ଜାଗାରେ ଆମରି ସାମ୍ନାରେ ଲେଖାହେଲା- ଆମେ ଏଗାର ହଜାର ଫୁଟ ଉପରେ ଯାଉଛୁ। ଆଉ ଦଣ୍ଡେ ପରେ ଲେଖାଗଲା- **fasten seat belt** ଆମେ ତରବରରେ ନିଜକୁ ବାନ୍ଧି ପକାଇଲୁ। ଯିଏ ବାନ୍ଧି ନଜାଣିଲା, ସେ ଅନ୍ୟର ସାହାଯ୍ୟ ଲୋଡିଲା। ଆମେ ଜାଣିପାରିଲୁ aeroplaneଟି ସେତେ ଆରାମଦାୟକ ନୁହେଁ।

କାଳିଦାସଙ୍କର ରଘୁବଂଶର ଶ୍ଳୋକ ମନେପଡିଲା । ରାମଙ୍କୁ ସୀତା କହୁଛନ୍ତି-"ଗୋ ସୀତେ ! ଦେଖ ! ଆମ ପୁଷ୍ପକ ବିମାନ କେତେବେଳେ ଆକାଶ ପଥ, କେତେବେଳେ ଦେବତାମାନଙ୍କ ଯାତାୟତା ପଥରେ, ଆଉ କେତେବେଳେ ମେଘମାନେ ସଞ୍ଚରଣ କରୁଥିବା ପଥରେ ଚାଲିଛି । ଆଉ କେତେବେଳେ ଅବା ଚଢେଇମାନଙ୍କ ଉଡ଼ିବା ପଥରେ ଚାଲିଛି ।" ଆମ ଏରୋପ୍ଲେନ୍‌ର ଉଠିବାପଡିବା ବହୁତ ଅଶ୍ୱସ୍ତିର କାରଣହେଲା । ବହୁତ ବାନ୍ତିବାନ୍ତି ଲାଗୁଥାଏ । ନିଃଶ୍ୱାସ ବନ୍ଦହୋଇଗଲା ପରି ଲାଗିଲେ, ଆମ ପାଖରେ ଥିବା ଗୋଟାଏ ସୁଇଚ୍ ତଳକୁ କରିଦେଉ । ଭୁସକରି ପ୍ରଚୁର ପବନ ଭିତରକୁ ପଶି ଆସେ ଏବଂ ଭିତର ଥଣ୍ଡା ହୋଇଯାଏ । ଏହା ପରେ ଆମେ ବିହାର ଅତିକ୍ରମ କରି ଉତ୍ତରପ୍ରଦେଶ ଆଡକୁ ଚାଲିଲୁ । ବିହାର ଉପରେ ଗଲାବେଳେ ଓ ଆସିଲା ବେଳେ railway line ସ୍ପଷ୍ଟ ଦେଖିପାରୁ, ସୂତାଖିଅ ପରି । ବଣ ଜଙ୍ଗଲ ମଧ୍ୟ ଦିଶେ । କିନ୍ତୁ ଉତ୍ତର ପ୍ରଦେଶର ଶହ ଶହ ମାଇଲ କଳାର୍ଣ୍ଣବ । ତଳକୁ ଚାହିଁଲେ ପାଣି, ଖାଲି ପାଣି । ବର୍ଷା ମଧ୍ୟ ହେଉଥାଏ । ମେଘ ଭିତର ଦେଇ ଆମେ ଆଉ ଆଗକୁ କିଛି ଦେଖିପାରୁ ନାହିଁ । କେତେବେଳେ ଏରୋପ୍ଲେନ୍‌ର ଡେଣାରୁ ଝର ଝର ହୋଇ ପାଣି ଖସି ପଡ଼ିବାର ଦେଖାଯାଏ । ଥରେ ଥରେ ବିଜୁଳି ମଧ୍ୟ ଏରୋପ୍ଲେନ୍ ବାଜିବାର ଦେଖାଯାଏ । ଏୟାରପକେଟ୍‌ରେ ପଡିଗଲେ, ଆମର ଏରୋପ୍ଲେନ୍‌ଟି ଧପାସ୍ ହୋଇ ୪୦୦, ୫୦୦ ଫୁଟ୍ ତଳକୁ ଖସିଆସେ ଏବଂ ପୁଣି ଉପରକୁ ଉଠେ । ସେଠି ସାହା ଭରସା କେହି ନାହିଁ । କେବଳ ସତ୍ୟନାରାୟଣ ପୂଜା ମନାସିବା ଆମର ଏକମାତ୍ର ଉପାୟ । ଛାତି ଉପରେ ହାତ ରଖିଥାଉ ଏବଂ ସ୍ପଷ୍ଟ ରୂପେ ଅନୁଭବକରୁଥାଉ heart beat । ଆମର ପ୍ରଧାନମନ୍ତ୍ରୀ ଆରାମରେ ଶୋଇଥାନ୍ତି । ତାଙ୍କର ପୃଥିବୀ ପୃଷ୍ଠରେ ନିଦ ପ୍ରାୟ ହୁଏ ନାହିଁ । ଏରୋପ୍ଲେନ୍‌ରେ ମଧ୍ୟ ଅନ୍ତର୍ଯାମୀ ସେହି ପାନଛେଚିବା ଯନ୍ତ୍ରଟି ବାହାର କରି ଯେମିତି ଖଟ୍ ଖଟ୍ କରିଛି, ଦୀର୍ଘକାୟ ପାଇଲଟ୍ ଉଠିଆସି ଦେଖିଗଲା ଏବଂ ସିଟ୍ ତଳରୁ ସେ ଶବ୍ଦଟା ଆସୁଥିବାର ଅନୁମାନକରି ଖୋଜାଖୋଜିକଲା । ଯେମିତି ଇଷତ୍ ହଳଦିଆ ପିତ୍ତଳ ଯନ୍ତ୍ରଟି ଦେଖି ଦେଇଛି, ସେ ମୁର୍କି ହସଦେଇ ପୁଣି ତାର ସ୍ଥାନକୁ ଚାଲିଗଲା । ଜାଣିଗଲା ଯେ ଏଇଟା ସେମିତି ମାରାତ୍ମକ ଯନ୍ତ୍ର ନୁହେଁ । ଛ'ଟା ବାଜିବାକୁ ଅଳ୍ପ ସମୟ ଥାଏ । ଦୂରରୁ ପାଲାମ୍ ବନ୍ଦର ଦିଶିଗଲା । ଯେଉଁ ସତର୍କତା ଅବଲମ୍ବନ କରିବା କଥା, ତାହା ଆମେ ନ କରି ଖୁସିରେ ଓହ୍ଲେଇ ପଡିଲୁ । କିନ୍ତୁ ଏକ'ଣ କାନରେ ଭୀଷଣ ଘର୍ ଘର୍ ଶବ୍ଦ । ଛାତିରେ ଯନ୍ତ୍ରଣା । ବହୁ କଷ୍ଟରେ ଚାଲିଚାଲି ଯାଇ ଏରୋଡ୍ରମ୍ ଭିତରେ ପହଞ୍ଚିଲୁ । କାନରେ ତୁଳା ନ ଦେଇ ଏ ଦୁରବସ୍ଥା । ବହୁ ବର୍ଷ

ପରେ ଏବେ ଥରେ ବନାରସ୍‌ରୁ ଦିଲ୍ଲୀ ଗୋଟାଏ ଜେଟ୍ ପ୍ଲେନ୍‌ରେ ଯାଇଥିଲୁ। ସେହି ଏରୋପ୍ଲେନ୍‌ର ଆରାମ କେଉଁଠାରେ ନାହିଁ।

ଦିଲ୍ଲୀରେ କନଟ୍‌ପ୍ଲେସ୍‌ରେ ରହିଲୁ। ଗୋଟାଏ ବାଜେ ଘର। କାଠ ପଟାର ଛାତ। ଅନ୍ଧାର ହେବା ଆଗରୁ କିଛି ଆଲୋକ ବ୍ୟବସ୍ଥା କରାଯାଇ ନଥିବାରୁ ଏମିତି ଦୁରବସ୍ଥାରେ ପଡ଼ିଲୁ। ପରଦିନ ସକାଳେ ତଳକୁ ଯାଇ ନିରୁଲା ହୋଟେଲରେ ଜଳଖିଆ ଜଲୁ। ଦୁଧ ଓ କର୍ଣ୍ଣଫ୍ଲେକସ୍ ଜଳଖିଆ କେବେ ଜୀବନରେ ଖାଇ ନଥିଲୁ। ଦୋଷା ଖାଇବାରୁ ପେଟର କ୍ଷୁଧା ଟିକେ ଉପଶମ ହେଲା। କେତେ ସମୟ ପରେ ବୋକଚା ପତ୍ର ବାନ୍ଧି, ସେଠାରୁ ଚାଲିଲୁ Meridian ହଟେଲ୍‌କୁ। ଅପେକ୍ଷାକୃତ ଭାରି ଭଲ ହୋଟେଲ୍। ଏଠି ବଡ଼ ବଡ଼ ଲୋକ ରହନ୍ତି। ସନ୍ଧ୍ୟାରେ ଏଠାରେ କେବେକେବେ ନାଚ ହୁଏ। ବଡ଼ ବଡ଼ ଲୋକ ବହୁତ ବହୁତ ପଇସା ଖର୍ଚ୍ଚକରି ନାଚଗୀତ ଦେଖନ୍ତି।

ପରବର୍ତ୍ତୀ ପ୍ରୋଗ୍ରାମ୍ ସରଦାର୍ ପଟେଲଙ୍କୁ ଭେଟିବା। ତାଙ୍କ ଅଫିସ୍ ପାର୍ଲ୍ୟାମେଣ୍ଟ ଭବନର ଗୋଟାଏ ପାଖରେ, ଯେଉଁଠି ଚ୍ୟାମ୍ବର ଅଫ୍ ପ୍ରିନ୍‌ସେସ୍ ଅଫିସ୍ ଅଛି ସେଇଠି। ଦଳଟା ଯାକ ପ୍ରସ୍ତୁତହୋଇ ବାହାରିଲୁ, ଯେଉଁଠି state ମାନଙ୍କ ବିଷୟ ବୁଝାସୁଝା କରାଯାଏ। ସେକ୍ରେଟେରି ମେନନ୍‌ଙ୍କ ଅଫିସ୍ ଯୋଉଠି, ସରଦାର୍ ପଟେଲ୍ ମଧ୍ୟ ସେଇଠି ଅଫିସ୍ କରନ୍ତି। କିନ୍ତୁ ଦୁଃଭାଗ୍ୟର କଥା- ଘରେ ନ ପଶୁଣୁ ମୁଣ୍ଡରେ ଚାଳ। "ସରଦାର୍ ପଟେଲ୍ ଅଫିସରେ ନାହାନ୍ତି। ସେ ଅସୁସ୍ଥ। କେବେ ଆସିବେ କହିହେବ ନାହିଁ।"

ଶୁଣିଲୁ ମହାରାଜା ସାହେବ (ପ୍ରତାପ ଚନ୍ଦ୍ର) ମଧ୍ୟ ସେଇ Meridian Hotel ରେ ଆସି ପହଞ୍ଚିଛନ୍ତି। ସେ ମୟୁରଭଞ୍ଜର ଭବିଷ୍ୟତ ନିର୍ଦ୍ଧାରଣ ବିଷୟରେ ବଡ଼ ଆଗ୍ରହୀ। ଯାହା ହେଉ, ଗୋଟିଏ ନିଷ୍ପତ୍ତି ହେଇଯାଉ। ଅଧାପନ୍ତରିଆ ଅବସ୍ଥାରେ ବା 'ନ ଯଯୌ ନ ତସ୍ଥୌ' ରାଜ୍ୟ ପକ୍ଷରେ ଆଦୌ ଭଲ ନୁହେଁ। ପ୍ରଜାମଣ୍ଡଳ ଶାସନ ତାଙ୍କୁ ଆଦୌ ମନପୂତ ହେଲା ନାହିଁ। ସ୍ୱାର୍ଥ, ଈର୍ଷା ଆଦିରେ ମନ୍ତ୍ରୀମଣ୍ଡଳର ସଭ୍ୟମାନେ ଜଡ଼ିତହୋଇଗଲେ। କାହାରି ସାଙ୍ଗରେ କାହାରି ପଟିଲା ନାହିଁ। କର୍ମଚାରୀମାନେ ମଧ୍ୟ ଏପାଖ ସେପାଖ ହେଲେ। ମହାରାଜା କୌଣସିଥିରେ ଜଡ଼ିତ ହେବାପାଇଁ ଚାହୁଁ ନ ଥିଲେ। ସେ ଭାବିଲେ, ବାରିପଦାରେ ରହିଲେ ରାଜତନ୍ତ୍ରରେ ପାଳିତ ଆଦିବାସୀ ପ୍ରଜା ମହାରାଜାଙ୍କ ତରଫ ହୋଇ ବିଦ୍ରୋହୀ ହୋଇଉଠିବେ। ମହାରାଜା ସାହେବ ଜାଣିଥିଲେ ଯେ ମୟୁରଭଞ୍ଜର ଭବିଷ୍ୟତ ନାହିଁ। ଗୋଟାଏ ପାଖରେ ସରଦାର୍ ପଟେଲ୍ ଏବଂ ଡ. ମହତାବ ଏବଂ ଅନ୍ୟ ପକ୍ଷରେ କଳହ ଓ ବିବାଦରତ ମନ୍ତ୍ରୀମଣ୍ଡଳ ଏବଂ ଅତୀବ ସ୍ୱର୍ଣକାତର ଜିଦ୍‌ଖୋର୍

ଆଦିବାସୀ ଜନତା। କେତେବେଳେ ନିଆଁ ଲାଗିଯିବ କେତେବେଳେ ଗୁଳିଗୋଳା ଫୁଟିବ କହିବା ମୁସ୍କିଲ୍। ଆମେ ଆହୁରି ହତୋତ୍ସାହ ହେଲୁ। ଉଭୟ କେନ୍ଦ୍ର ସରକାର ଏବଂ ଓଡିଶା ସରକାର କେତେବେଳେ ଚାହୁଁ ନଥିଲେ ଯେ, ଓଡିଶା ଛଡା ଅନ୍ୟ କୌଣସି ପ୍ରଦେଶ ସହିତ ମୟୁରଭଞ୍ଜ ମିଶୁ। ଯେତେବେଳେ କେନ୍ଦ୍ର ପରିଷଦ ସିଭିଲ ଲିଷ୍ଟକୁ ଭୋଟ ସାପେକ୍ଷ କଲା ଏବଂ ଭାରତ ସରକାର ହାତରୁ ପାଇଥିବା ଟଙ୍କା ଅପେକ୍ଷା ବହୁତ କମ୍‌ରେ କେନ୍ଦ୍ର ପରିଷଦ ନିର୍ଦ୍ଧାରିତ କଲା, ସେତେବେଳେ ମହାରାଜା ବିରକ୍ତ ଓ ଉତ୍ୟକ୍ତହେଲେ। ଧନୁ ତୀର ଧରି ରାଜବାଟୀ ପ୍ରାଙ୍ଗଣରେ ଦୁଇ ପୁଅଙ୍କୁ ଆଦିବାସୀଙ୍କ ଧର୍ନୁବିଦ୍ୟା ଶିକ୍ଷାଦେଲେ ଏବଂ ମୟୁରଭଞ୍ଜ ଛାଡିବାକୁ ଶ୍ରେୟ ମନେକରି କଲିକତାରେ ରହିଲେ। ରାଜଧାନୀକୁ କ୍ୱଚିତ୍ ଆସିଲେ। ଏଣେ ଶାସକବର୍ଗ ଗୁରୁତର କାମ ଆଡକୁ ମନ ନ ବଳେଇ, ବାରିପଦା ସହରରେ ଫିତା ଧରି ଜମି ବାଣ୍ଟିବାକୁ ଲାଗିଲେ। ଦୁଡିବନ୍ଧ ପାଖରେ ମତେ ଅସମତଳ ଖାତ ପରିପୂର୍ଣ୍ଣ ପ୍ଲଟ୍‌ଟିଏ ୪୧୩ ଟଙ୍କାରେ ମିଳିଥିଲା। କିନ୍ତୁ ପରବର୍ତ୍ତୀ କାଳରେ ତାହା ସରକାର ନେଇଗଲେ ଓ ପଇସା ଫେରେଇ ଦେଲେ, ଯାହାକି ମୟୁରଭଞ୍ଜରୁ ବିଦାୟ ନେଇ କଟକ ସେକ୍ରେଟେରୀଏଟ୍‌କୁ ଯିବାପାଇଁ ବ୍ୟୟ ତୁଲେଇଲା। ମୁଁ ମୟୁରଭଞ୍ଜ ଛାଡିଲି। ମହାରାଜାଙ୍କୁ ଯେତେବେଳେ କଲିକତାରେ ଭେଟିଥିଲି, ସେ କହିଥିଲେ "କଲେଜ କରିବା, ରଥ ଟାଣିବା ଏସବୁ କଥା ଛାଡ। ସରଦାର୍ ପଟେଲ୍ ପାଖକୁ ଯାଇ ମୟୁରଭଞ୍ଜର ଭବିଷ୍ୟତ ନିର୍ଦ୍ଧାରଣକରି ଫେରିଲେ, ଯାହା କରିବା।"

ଡେଲିଗେସନ୍ ସରଦାର୍ ପଟେଲ୍‌ଙ୍କୁ ଭେଟିବାପାଇଁ ଯିବାର ଖବର ପାଇ ମହାରାଜା ନିଜେ ନିଜ ଏରୋପ୍ଲେନ୍ ଚଳାଇ ଦିଲ୍ଲୀରେ ଆସି ଆମ ହୋଟେଲ୍‌ରେ ରହିଛନ୍ତି। ଆମକୁ ଖୁସି ଲାଗିଲା, ସାହାସ ମଧ୍ୟ ଆସିଲା। ବାହାରି ପଡିଲୁ ଚ୍ୟାମ୍ବର ଅଫ୍ ପ୍ରିନ୍‌ସ୍‌ସରେ ସେକ୍ରେଟେରୀ ଅଫ୍ ଷ୍ଟେଟ୍ ଅଫିସ୍‌କୁ । ଆମର ଏତେ ପରିଶ୍ରମ, ଏତେ ଖର୍ଚ୍ଚ, ଏତେ ଉତ୍ସାହ ସବୁ ଦବିଗଲା, ଯେଉଁ ମୁହୂର୍ତ୍ତରେ ଶୁଣିଲୁ ଯେ, ସରଦାର ପଟେଲ୍ ଅସୁସ୍ଥ। ସେ ଅଫିସ୍ ଆସିବେ ନାହିଁ, ଦିନେ କି ଦୁଇଦିନପାଇଁ। ନିଷ୍ପତ୍ତି କଲୁ, ସେକ୍ରେଟାରୀ ମେନନ୍‌ଙ୍କୁ ଦେଖାକରିବା।

ମେନନ୍‌ଙ୍କ ସହିତ ଦେଖା କରିବାରେ କିଛି ଅସୁବିଧା ହେଲା ନାହିଁ। ଆମେ ସମସ୍ତେ ଏକତ୍ର ବସି ଆପୋଷ ଆଲୋଚନାକଲୁ। ପ୍ରଧାନମନ୍ତ୍ରୀ ସମସ୍ତଙ୍କର ମୁରବୀ ଥାଇ ଖଣ୍ଟିଆ ଇଂରାଜୀରେ ଆଲୋଚନା ଚଳେଇଥାନ୍ତି। ଆମର ବକ୍ତବ୍ୟ ହେଉଛି- ଆମେ ବର୍ତ୍ତମାନ କାହାରି ସହିତ ମିଶିବା ଅବସ୍ଥାରେ ନାହୁଁ। ଆଦିବାସୀ ବହୁଳ ରାଜ୍ୟରେ ଲୋକେ କେତେ ବେଳେ ମେଳି କରିବସିବେ, ଯେମିତି ୧୯୧୭ ରେ ହୋଇଥିଲା ଏବଂ ପଲିଟିକାଲ ଏଜେଣ୍ଟ

ଓ ଗୁଳିଗୁଳା ସାହାଯ୍ୟରେ ବିଦ୍ରୋହ ଦମନକରାଯାଇଥିଲା । ଆମେ ରକ୍ତପାତ ଏଡେଇବାକୁ ଚାହୁଁ । ବର୍ତ୍ତମାନ ଆମେ ପ୍ରଚାର ମାଧ୍ୟମରେ ଲୋକମାନଙ୍କୁ ମିଶ୍ରଣ ଆଡକୁ ନେବାପାଇଁ ଚାହୁଁଛୁ । ଗଠନମୂଳକ ବା ରଚନାତ୍ମକ କର୍ମରେ ଲୋକମାନଙ୍କୁ ନିୟୋଜିତ କରି ଶାନ୍ତି ଓ ଶୃଙ୍ଖଳା ଜରିଆରେ ମିଶ୍ରଣ ଆଡକୁ ନେବାପାଇଁ ଚାହୁଁଛୁ । ଆମର କିଛି ସମୟ ଲୋଡା । ଆମେ ଯେ ସ୍ୱତନ୍ତ୍ର ରହିବୁ, ତାହା ନୁହେଁ । ଆମେ ଗଣ୍ଡଗୋଳ ଓ ବିଭ୍ରାଟ ଏଡେଇବାକୁ ଚାହୁଁ । ବିହାର ଆଦିବାସୀମାନଙ୍କ ସହାୟତାରେ ସବୁବେଳେ ବିଦ୍ରୋହର ସୂଚନା ଯେତେବେଳେ ସେତେବେଳେ ମିଳୁଛି ।

ମେନେନ୍ ଗୋଟିଏ ପଏଣ୍ଟ ଉପରେ ସବୁବେଳେ ରହିଥାନ୍ତି । ମୟୂରଭଞ୍ଜ କଦାପି Union ର Viable Unit ହୋଇପାରିବ ନାହିଁ । ସୁତରାଂ କାହା ସାଙ୍ଗରେ ହେଉ, ମୟୂରଭଞ୍ଜକୁ ଅଲ୍‌ବତ୍ ମିଶିବାକୁ ପଡିବ । ଆମେ ମୟୂରଭଞ୍ଜର ଅତୀତ ଇତିହାସ, ତାର ରାଜଭକ୍ତି ସାଙ୍ଗରେ ସବୁବେଳେ କିପରି ଜଡିତ, ତାହାର ଉଦାହରଣ ଦେଲୁଁ । ଯେତେବେଳେ ଆମେ ଭାବୁ ଯେ ଆମେ ଜିତିଗଲୁ ଓ ମୟୂରଭଞ୍ଜ ଅଲଗା ରହିବ, ଠିକ୍ ସେତିକି ବେଳେ ମେନନ୍ ସାହେବ ସର୍ଦ୍ଦାରଜୀଙ୍କ କଥା କୁହନ୍ତି । ପଟେଲ ସବୁ ନିଷ୍ପତ୍ତି କରିବେ । କିନ୍ତୁ ସେତ ସହଜରେ ମିଳିବା ଲୋକ ନୁହନ୍ତି । ଅଜଗର ସାପ ବିରୁଦ୍ଧରେ କୁଟାରୀ ହରିଣ କି ସଂଗ୍ରାମ କରିପାରିବ ? ଯେଉଁଠି ହାଇଦ୍ରାବାଦ ଓ ମହୀଶୂର ଆଦି ବଡ ବଡ ମହାଦ୍ରୁମ ଆଦେଶରେ ଲଟିପଡିଲେ, ସେଠି ମୟୂରଭଞ୍ଜର ହାଲୁକା ସିମୁଳି ଗଛ ବା କେତେ ଦିନ ଟେକିବ ? ଆମର ସବୁ ଯୁକ୍ତିତର୍କ ପ୍ରାୟ ନିଷ୍ଫଳ ହୋଇଗଲା । ଶେଷ ବାକ୍ୟ ସରଦାର୍ ପଟେଲ୍‌ଙ୍କ ମୁଖରୁ ବାହାରିବ । ତାହା ଶୁଣିବାପାଇଁ ଆମେ ଅପେକ୍ଷା କଲୁ; ମାତ୍ର କେବେ ସେ ସୁସ୍ଥ ହେବେ ଓ କେବେ ସେ ଆମ ସହିତ କଥାବାର୍ତ୍ତା କରିବେ, ତାହା ଭବିଷ୍ୟତ ବାର୍ତ୍ତାରେ ।

ହର୍ତ୍ତା କର୍ତ୍ତା ବିଧାତା ସରଦାର୍ ପଟେଲ୍‌ଙ୍କୁ ଭେଟିବାରେ ବ୍ୟର୍ଥ ମନୋରଥ ହୋଇ ପାହାଚ ଦେଇ ଧୀରେ ଧୀରେ ଓହ୍ଲାଇ ଯାଉଯାଉ ମୋର ସାର୍ଟକୁ କିଏ ଜଣେ ଟାଣି ଧରିଲା । ମଣିଷର ବିପଦ ପହଞ୍ଚିଲେ ଅକସ୍ମାତ ଅନେକ ଆଶ୍ଚର୍ଯ୍ୟ କଥା ଘଟିଯାଏ । ପଛକୁ ଚାହିଁ ଦେଖିଲି ଜଣେ ୩୦/୩୫ ବର୍ଷ ଯୁବକ । ମୋତେ ଗୋଠରୁ ଅଲଗା ସ୍ଥାନକୁ ଟାଣିନେଲା ଏବଂ ପଚାରିଲା, "ଆପଣମାନେ କ'ଣ ସରଦାର ପଟେଲଙ୍କୁ ଦେଖା କରିବାକୁ ଚାହୁଁଛନ୍ତି ?" ଏବଂ ସଙ୍ଗେ ସଙ୍ଗେ କହିଗଲା- ସରଦାର୍ ପଟେଲ୍ ଅସୁସ୍ଥ ଏବଂ ଅନିର୍ଦ୍ଦିଷ୍ଟ କାଳ ତାଙ୍କ ସହିତ କାହାରି ହୁଏତ ଦେଖାହେବ ନାହିଁ । ଖୁବ୍ ବ୍ୟସ୍ତ ବିକଳ ହୋଇ ଇଙ୍ଗିତପୂର୍ଣ୍ଣ ଚକ୍ଷୁରେ ଚାହିଁ ପଚାରିଲି, "କୌଣସି ମୋତେ କ'ଣ ଦେଖା ହୋଇ ପାରିବ

ନାହିଁ । ଆପଣ କ'ଣ ଚେଷ୍ଟାକରି ଆମ ସହିତ ତାଙ୍କର ଭେଟକରାଇ ପାରିବେ ?" ପିଲାଟି ଈଷତ୍ ମୁର୍କି ହସି କହିଲା, "ମୁଁ ଚେଷ୍ଟା କରିବି । ସଫଳ ହେବିକି ନା କହିପାରୁ ନାହିଁ ।"

ଦକ୍ଷିଣ ଭାରତୀୟ ଲୋକଟି ଗ୍ରେ ରଙ୍ଗର କୋଟ୍ ପେଣ୍ଟ ପିନ୍ଧିଥାଏ । କଳା ରଙ୍ଗର ପିଲାଟିର ଉଚ୍ଚତା ୫ ଫୁଟ ହବ କି ନାହିଁ । ତାର ନାମ ଭେଙ୍କଟ୍‌ରମଣ ବା ସୁବ୍ରମନ୍ୟମ୍ ବା ସେମିତି କିଛି ହୋଇପାରେ । ମନେ ପଡୁ ନାହିଁ । ଆଖି ଭଙ୍ଗୀରୁ ଓ ମୁହଁ ଭଙ୍ଗୀରୁ ମୁଁ ଜାଣିପାରିଲି, ସେ ହୁଏତ ଏ ଦୁସ୍କର କାମ କରିପାରିବ । ବୋଧହୁଏ ଅର୍ଥ ପ୍ରୟୋଜନ । ଆମର ଯେମିତି ଭାବରେ ଟଙ୍କା ପଇସା ଖର୍ଚ୍ଚ ହେଉଥାଏ । ମୁଁ ଭାବିଲି, ଯଦି ଅସମ୍ଭବକୁ ସମ୍ଭବ କରିପାରିବ, ତାହା ହେଲେ ଯେତେ ଯାହା ନବ, ଆମର ଦେବା ଉଚିତ୍ । ପଚାରିଲି- କେତେ କ'ଣ ପଡିବ ଦେଖା କରାଇଦେବାପାଇଁ । ଏଥର ସେ ଯୋଡାଏ ଆଙ୍ଗୁଳି ଦେଖାଇ ଇଙ୍ଗିତ ଦେଲା ଯେ, ଦୁଇ ହଜାର୍ ଟଙ୍କା ସେ ଚାହୁଁଛି । ଏତେ ସହଜରେ ସେ ଦୁଇ ହଜାର ଟଙ୍କା ପାଇବାର ଦେଖି ମୁଁ ବି ପ୍ରଲୁବ୍ଧ ହେଲି ଏବଂ କିଛିଟା ଗମ୍ଭୀର ହୋଇ କହିଲି, ତୁମେ ଦୁଇ ହଜାର ପାଇବ ମୋପାଇଁ, ହେଲେ ହଜାରେ ରଖ । ଇଂରାଜୀରେ କହିଲା "Sir, make it three then" । ମୁଁ final ଜବାବ ଦେବା ପୂର୍ବରୁ ପ୍ରଧାନମନ୍ତ୍ରୀଙ୍କ ପାଖକୁ ଚାଲିଗଲି ଓ ଚୁପେ ଚୁପେ ତାଙ୍କୁ କହିଲି- ଆମର କଥାବାର୍ତ୍ତାର ସାରାଂଶ । ସେ ପିଲାଟା ଆମ ସହିତ Meridian Hotel କୁ ଗଲା ଏବଂ ପ୍ରଧାନମନ୍ତ୍ରୀଙ୍କ ପାଖରୁ ମୁଁ ୩,୦୦୦ ଟଙ୍କା check ଟିଏ ଆଣି ଯୁବ ବନ୍ଧୁଙ୍କ ହାତରେ ଦେଲି । ଦିନେ ଛାଡି ପରବର୍ତ୍ତୀ ଦିନକୁ ସେ ଦେଖା କରାଇଦେବ କହିଲା । ଆମେ ପିଲାଟି କଥାକୁ ବିଶ୍ୱାସକଲୁ । ଧାର୍ଯ୍ୟ ଦିନରେ ସେ ପିଲା ଆମ ପାଖରେ ପହଞ୍ଚିଗଲା । ଆମେ ନିର୍ଭର ପ୍ରତିଶ୍ରୁତି ପାଇଲାପରି ଚାଲିଲୁ ସରଦାର ପଟେଲ୍‌ଙ୍କ ବାସଭବନକୁ ।

ଦିନ ସେତେବେଳେ ପ୍ରାୟ ୨ଟା । ଆମେ ପହଞ୍ଚିଲୁ ୭, ଆଉରଙ୍ଗଜେବ୍ ରୋଡରେ । ଫାଟକରେ ଦଳେ ପୋଲିସ ଛାଉଣିପକେଇ ବସିଥାନ୍ତି । ମହାତ୍ମାଗାନ୍ଧୀ ସହିତ ସରଦାର୍ ପଟେଲ୍ ଓ ଜବାହରଲାଲଙ୍କ ମଧ୍ୟରେ ବହୁତ ତର୍କବିତର୍କ ବିର୍ଲା ଭବନରେ ଚାଲିଥିଲା- ଗୁଳିକାଣ୍ଡର ଅବ୍ୟବହିତ ପୂର୍ବରୁ । ଅକ୍ଳେଶରେ ସେ ଯୁବକଟି ଆମକୁ ନେଇ ସରଦାର୍ ପଟେଲ୍‌ଙ୍କ ବାସଭବନରେ ବୈଠକଖାନାରେ ପହଞ୍ଚାଇଦେଇ କୁଆଡେ ଅର୍ନ୍ତଧ୍ୟାନ ହୋଇଗଲା । ତାହା ସହିତ ଆମର ଆଉ ଦେଖାହୋଇ ନାହିଁ । ଆମେ ଭାବିଲୁ- ବୋଧହୁଏ ଆମେ ଏକ ଦଲାଲ୍ ହାବୁଡରେ ପଡିଯାଇଛୁ । କିନ୍ତୁ ଯେତେବେଳେ ଆମେ ବୈଠକ ଖାନାରେ ବସିଲୁ, ଆମର ଭୟ ଦୂରହେଲା । ବୋଧେ ସରଦାରଜୀ ସହିତ ଦେଖା ହୋଇପାରେ । ଅସମ୍ଭବ ବି ସମ୍ଭବ ହୋଇପାରେ । Aurangjeb ଙ୍କ ନାମଟି ସେ ରାସ୍ତାର

ନାମ ସହିତ ସଂଶ୍ଲିଷ୍ଟ ଥିବାରୁ ଆମକୁ ଭାରି ଡରମାଡିଲା । ଅନ୍ୟ ଉପାୟ ନ ପାଇ ଆମେ ବସିଗଲୁ । ଚୁପ୍‌ଚାପ୍, ଧୀରସ୍ଥିର । କଣ୍ଟେଟିଏ ପଡିଲେ ବି ଶବ୍ଦ ଶୁଣାଯିବ । ଗୋଟାଏ ଆହେତୁକ ଭୟ ଆମକୁ ଜାବୁଡିଧରିଲା ପରି ଜଣାପଡିଲା । ସେଠି ବସି ମନ ହାଲୁକା କରିବାପାଇଁ କିଛି ଚିଜ ପାଇଲୁ ନାହିଁ । ସେ roof ରେ beam ନାହିଁ rafter ନାହିଁ, କାହିଁ ରଙ୍ଗ ନାହିଁ କି, କାହିଁ ଚିହ୍ନ ନାହିଁ । ବୁଡିଆଣୀଟିଏ ବି କାହିଁ ଚାଲୁ ନାହିଁ । ଏକାବେଳେ ଧଳା । ଆଲମାରୀ ନାହିଁ କି ବହି ନାହିଁ । ସୋଫା ସେଟ୍‌ର କନା ଗୁଡିକ ଦେଖିଲୁ-ସେଗୁଡିକ ଖଦଡ ଭାବିଥିଲୁ । କିନ୍ତୁ ପରୀକ୍ଷା ନିରୀକ୍ଷା କରି ଦେଖିଲୁ ସେଗୁଡାକ ଜାପାନୀ ଖଦଡ । ପୁଣି ଉପରକୁ ଚାହିଁଲୁ, ସେଠି skylight ରେ ସରଦାରଜୀଙ୍କର ମାର୍ବଲ କିମ୍ବା ପ୍ଲାଷ୍ଟିକ ମୁଣ୍ଡଟା ଅଛି । ଅବିକଳ ସରଦାର୍ ପଟେଲ୍‌ଙ୍କ ମୁଣ୍ଡ ଓ ମୁହଁ । ଆମେ ସେଇଟାକୁ ଚାହିଁରହିଥାଉ ।

ବାରିପଦାର ରାଣୀବାଗରେ ଥରେ ଦେଖିଥିଲି ଗୋଟିଏ ବଡ ଅଜଗର ସାପ, ଆଉ ତାକୁ ଧରିବାକୁ ଦିଆ ଯାଇଥିବା ଛୋଟ କୁଟାରୀ ହରିଣ । ଅଜଗରଟି ହରିଣ ଉପରେ ଯେଉଁ ଦୃଷ୍ଟି ଦେଇଥାଏ, ସେଥିରେ ଭୟଭୀତ ହୋଇ ହରିଣ ଛୁଆଟି କାଠ ବନି ଯାଇଥାଏ । ଖୁବ୍ ବିକଳିଆ କରୁଣତାର ଦୃଶ୍ୟ । ଆମେ ସେହି ଅବସ୍ଥାରେ ଥାଉ । ଛାତି ଉଠ୍‌ପଡ୍ ହେଉଥାଏ; ନିଃଶ୍ୱାସ ବି କେମିତି କେତେବେଳେ ଜୋର୍‌ରେ ବହୁଥାଏ । ୨ ବାଜିଲା, ୩ ବାଜିଲା, ୪ ବାଜିଲା । ଆମେ ଅତିଷ୍ଠହେଲୁ ଅପେକ୍ଷା କରିକରି । ନିଃଶ୍ୱାସ ବନ୍ଦହେବାକୁ ଯାଉଛି । ଏତିକି ବେଳେ ଡକରା ଆସିଲା ସର୍ଦ୍ଦାରଜୀଙ୍କ ପାଖରୁ । ବାସଭବନ ପ୍ରାୟ ୨୦, ୨୫ ହାତ ଦୂରରେ । ଖୁବ୍ ଶାଗୁଆ ଘାସ ପଡିଆଟି । ସେଇଠି ସର୍ଦ୍ଦାରଜୀଙ୍କ ସହିତ ଭେଟ ହେବ । ମୁଣ୍ଡ ଗଣତି ଅନୁସାରେ ଚେୟାର୍ ସବୁ lawn ରେ ପଡିଲା । ଆମେ ଜ୍ୟେଷ୍ଠ, କନିଷ୍ଠ କ୍ରମେ ଅଗ୍ର, ପଶ୍ଚାତ କରି ଯାଇ ବସିଲୁ । ଗୋଟାଏ chair ରେ ସର୍ଦ୍ଦାର ପଟେଲ୍ ବସିଥାନ୍ତି ଧଳା ଧୋତି ପିନ୍ଧି । ତାଙ୍କ ପାଖକୁ ଆଉ ଗୋଟିଏ ଚେୟାରରେ ତାଙ୍କର ଭଉଣୀ ମଣୀବେନ୍ ପଟେଲ୍ । Lawn ର ଚାରିପଟେ ଛୋଟ ଛୋଟ ବୁଦା ଓ ଫୁଲଗଛକୁ ଲାଗି ମାଳି ଭଳି ଦେଖାଯାଉଥିବା ୮/୧୦ ଲୋକ ଜଣ ବସିଥାନ୍ତି । ସେଠି ବି ସମସ୍ତେ ଚୁପ୍‌ଚାପ୍ । ଆମେ ବସିଲୁ ସେମିତି ଅବସ୍ଥାରେ ପ୍ରାୟ ୫ ମିନିଟ୍ । କିଏ ଆରମ୍ଭ କରିବ ବକ୍ତୃତା ସେଇଟାକୁ ସମସ୍ତଙ୍କର ଅପେକ୍ଷା । ସର୍ଦ୍ଦାର ପଟେଲ୍‌ଙ୍କୁ ଦେଖିଲେ ଜଣାପଡୁଥାଏ, ତାଙ୍କ ଦେହ ଭଲ ନଥିଲା । ଆଖିରେ ଲେଞ୍ଜରା ଲାଗିଛି । ନିର୍ବିକଳ୍ପ ମୂର୍ତ୍ତୀ । ପ୍ରଧାନମନ୍ତ୍ରୀ ଖୁବ୍ ସର୍ନ୍ତପଣରେ ଆରମ୍ଭ କଲେ- "Sir, we come from Mayurbhanj"। ଚେତାପାଇଲା

ପରି ସର୍ଦ୍ଦାର ପଟେଲ୍ ଗର୍ଜିଉଠିଲେ, "What is Mayurbhanj ? A pocket, a pocket, I say !". ସେଇ ପଦେ କଥାରୁ ଆମେ ଭବିଷ୍ୟତ ଜାଣିଗଲୁ ।

"ତଦା ନାଶଂସେ, ବିଜୟାୟ ସଂଜୟତ୍"

ପୁଣି ନୀରବତା, ସମସ୍ତେ ଚୁପ୍‌ଚାପ୍ । ଦଣ୍ଡେପରେ ପ୍ରଧାନମନ୍ତ୍ରୀ କହିଲେ, "କୁଚ୍ ବିହାର, ତ୍ରିପୁରା ଆଦି ଅନେକ ଛୋଟ ଛୋଟ State Indiaରେ ନ ମିଶି ରହିଯାଇଛି । ମୟୁରଭଞ୍ଜ ଛୋଟ ରାଜ୍ୟ ହେଲେ ମଧ୍ୟ ତାର ଐତିହ୍ୟ ଅଛି । ବହୁ ପୁରାତନ ସେ ରାଜ୍ୟ । ସେଠି ଗଣତନ୍ତ୍ର ଶାସନ ଚାଲିଛି । ମହାରାଜା ସବୁ କ୍ଷମତା ପ୍ରଜାମାନଙ୍କୁ ଅର୍ପଣକରି ଦେଇଛନ୍ତି । ରାଜ୍ୟରେ ଶାନ୍ତି ଶୃଙ୍ଖଳା ବିରାଜମାନ କରୁଛି ।"

ଆମେ ଦଶ ବାର ଜଣ ଲୋକ ସେଠି ବସିଥିଲେ ମଧ୍ୟ, ପ୍ରାୟ ନୀରବ ନିଷ୍ପନ୍ଦ ସ୍ଥାନ । ପ୍ରଧାନମନ୍ତ୍ରୀ ଏକା ଯାହା କୁହନ୍ତି । ଅନ୍ୟମାନେ ଚୁପ୍ ଚାପ୍ । ଏପରିକି ଆଦିବାସୀମାନଙ୍କ ବିଷୟରେ ଆଲୋଚନା ହେଲେ ମଧ୍ୟ ସେମାନଙ୍କ ନେତା ସୁନାରାମ ସୋରେନ୍ କିଛି କହନ୍ତି ନାହିଁ । ତାଙ୍କର ବକ୍ତବ୍ୟ ବୋଧେ କିଛି ନଥାଏ । ସର୍ଦ୍ଦାର ପଟେଲ୍‌ଙ୍କୁ ସାହାଯ୍ୟ କରିବାପାଇଁ କେହି ଅଫିସର ନଥାନ୍ତି । ଆମେ ଯେତେ ସମୟ ସେଠାରେ ରହିଲୁ ତାଙ୍କ ପାଖରେ ବସିଥିବା ଭଉଣୀ କିଛି କହି ନାହାନ୍ତି । ସର୍ଦ୍ଦାର ପଟେଲ୍‌ଙ୍କର ଅହଙ୍କାର "What is Mayurbhanj ? A pocket, I say !" ଆମ ସମସ୍ତ ବକ୍ତବ୍ୟରେ ପୂର୍ଣ୍ଣଚ୍ଛେଦ ପକାଇଥିଲା । Menon ବି ପ୍ରାୟ ସେହି କଥା କହିଥିଲେ । ମୟୁରଭଞ୍ଜ A viable Union of India ହୋଇପାରିବ ନାହିଁ । ତଥାପି ଆମର ପ୍ରଧାନମନ୍ତ୍ରୀ କହୁଥାନ୍ତି । ତ୍ରିପୁରା, କୁଚ୍‌ବିହାର ଆଦି ଛୋଟ ଛୋଟ ରାଜ୍ୟ Border State ବୋଲି ସ୍ୱତନ୍ତ୍ର ରହିଯାଇଛି ।

ଅଥଚ ମୟୁରଭଞ୍ଜ ତ ଗୋଟିଏ Border State । ଅତୀତରେ ମୋଗଲ ମରହଟ୍ଟା ସହିତ ସଂଗ୍ରାମ କରିଛି ଏବଂ ବ୍ରିଟିଶ୍ ସରକାର ପାଖରୁ ସମ୍ମାନପାଇଛି । ପ୍ରଧାନମନ୍ତ୍ରୀଙ୍କର ଏ ଦୀର୍ଘବକ୍ତବ୍ୟ ସର୍ଦ୍ଦାର ପଟେଲ୍‌ଙ୍କ କୌଣସି ପ୍ରତିକ୍ରିୟା ପ୍ରକାଶ ପାଉ ନଥିଲା । ଆଖି ବନ୍ଦ କରି ସେ ଚୁପ୍‌ଚାପ୍ ବସିଥାନ୍ତି । ଶୋଇଛନ୍ତି କି ଢୁଳାଉଛନ୍ତି ଜାଣିହେଉ ନ ଥାଏ । ତଥାପି ଆମର ପ୍ରଧାନମନ୍ତ୍ରୀ ଶରତ୍ "ଗାନ୍ଧୀ" ସାହାସର ସହିତ ଆଉ ଗୋଟିଏ point ବାହାର କଲେ । କହିଲେ- ମୟୁରଭଞ୍ଜ ଗୋଟିଏ ଆଦିବାସୀ ରାଜ୍ୟ । ଲୋକଗୁଡିକ ଜିଦ୍‌ଖୋର । ଏକବାଗିଆ, ମେଳିଆ ମଧ୍ୟ । ଥରେ ୧୯୧୭ ସାଲ୍‌ରେ ସାମାନ୍ୟ କଥାରେ ଏମିତି ଉତ୍ତ୍ୟକ୍ତ ହୋଇଯାଇଥିଲେ ଯେ Political Department ରୁ ସାହାଯ୍ୟ ନେବାପାଇଁ

ପଡ଼ିଲା ଓ Military ଆଣି ବିଦ୍ରୋହ ଦମନକରିବାକୁ ପଡ଼ିଲା । କାଳେ ସେଥିରେ ପୁନରାବୃତ୍ତି ଘଟିବ ବୋଲି ଆମର ଭୟହେଉଛି । ସେମାନେ ଭାରି ସ୍ପର୍ଶକାତର । ଶିକ୍ଷା ଦୀକ୍ଷାର ଅଭାବ ଫଳରେ ସେମାନେ ଭୀଷଣ ଉତ୍‌କ୍ଷିପ୍ତ ହୋଇଉଠନ୍ତି । ଏଥର ସର୍ଦ୍ଦାର ପଟେଲ୍ ଆଖି ଖୋଲିଲେ ଏବଂ ଉତ୍ତ୍ୟକ୍ତ ହୋଇ ଟିକିଏ ବଡ଼ ପାଟିରେ କହିଲେ, "Shoot them ! We did so in Bihar !" ଆମେ ପୁଣି ନୀରବ ନିସ୍ତବ୍ଧ । ପ୍ରଧାନମନ୍ତ୍ରୀ ବହୁ ପରିଶ୍ରମ କରି ଯାହା କହୁଥାନ୍ତି, ତାକୁ ପଦେ କଥାରେ ସର୍ଦ୍ଦାର ପଟେଲ୍ ଶେଷକରିଦିଅନ୍ତି । ସୁନାରାମ ସୋରେନ୍ ଏଠି ମଧ୍ୟ କିଛି କହିଲେ ନାହିଁ, ଯଦିଚ୍ ପରବର୍ତ୍ତୀ କାଳରେ ସେମାନେ ସେୟା କଲେ ଏବଂ ଗୁଳି ମଧ୍ୟ ବରଣ କଲେ ।

ପ୍ରଧାନମନ୍ତ୍ରୀ ତା ପରେ ଆଉ ଗୋଟିଏ କଥା ଉଠାଇଲେ । କହିଲେ, "ଆମେ ବର୍ତ୍ତମାନ ମହାତ୍ମାଗାନ୍ଧୀଙ୍କ ପ୍ରବର୍ତ୍ତିତ ରଚନାତ୍ମକ କାର୍ଯ୍ୟପନ୍ଥା ଗ୍ରହଣକରିଛୁ ଏବଂ ଏହାଦ୍ୱାରା ଆଦିବାସୀମାନଙ୍କୁ mainstream କୁ ଆଣିବାପାଇଁ ନାନା ଚିନ୍ତାକରୁଛୁ । ଆମେ ସ୍ୱାଧୀନ ହେବାକୁ ଚାହୁଁନାହୁଁ । ଆମେ ଗୋଳା ବାରୁଦ ଏଡ଼ାଇବାକୁ ଚାହୁଁ, ଯେହେତୁ ଆମେ peace loving, ଆମେ ନୀରିହ ଜାତି, ଗାଁରେ ଗାଁରେ ଆମେ ସମସ୍ତେ ଲାଗିପଡ଼ିଛୁ ବନ୍ଧ ପୋଖରୀ ଉଖାଳିବାପାଇଁ । ଗୋଟାଏ ବିରାଟ ବନ୍ଧ ଏବେ ଏବେ ତିଆରି କରି ସାରିଛୁ । ସେ ଗୋଟିଏ ଅପୂର୍ବ ଦୃଶ୍ୟ । ଜାତି, ଧର୍ମ ନିର୍ବିଶେଷରେ ପୁରୁଷ ସ୍ତ୍ରୀ ଶଙ୍ଖ ହୁଳୁହୁଳି ଦେଇ ହଜାର ହଜାର ସଂଖ୍ୟାରେ ମାଟି ଖୋଳୁଛନ୍ତି । ଦେଖିଲେ ମନ ଖୁସି ହୋଇଯିବ ।" ଏତିକି କହି ପ୍ରଧାନମନ୍ତ୍ରୀ ମୋ ଆଡ଼କୁ ଚାହିଁ କହିଲେ- "ବସନ୍ତ । ଆମର ଯେଉଁସବୁ ଫଟୋ ଉଠିଥିଲା ସେଗୁଡ଼ାକ ସର୍ଦ୍ଦାରଜୀଙ୍କୁ ଦେଖାଅ ତ !" Menonଙ୍କ ପାଖରେ ସେଗୁଡ଼ାକ ଲୋଡ଼ା ନ ଥିଲା । ମୁଁ ପ୍ରସ୍ତୁତ ଥିଲି, ବାହାର କରି ଦେଖାଇବା ପାଇଁ । ୫୦ ରୁ ବେଶି ଛବି photographs bag ରୁ ବାହାର କରି ସେଗୁଡ଼ିକୁ ଅତି ସନ୍ତର୍ପଣରେ ସର୍ଦ୍ଧାର୍ ପଟେଲ୍‌ଙ୍କ ଆଗରେ ରଖାଯାଇଥିବା ଗୋଲ୍‌ଟେବୁଲଟା ଉପରେ ଥୋଇ ଦେଇଛି କି ନାହିଁ, ସିଏ ତାଙ୍କର ମୋଟା ମୋଟା ଆଙ୍ଗୁଳିରେ ସେଗୁଡ଼ାକ ଧରି, "What constructive work ! ?" ମନ୍ତବ୍ୟ ଦେଇ ଏମିତି ଜୋର୍‌ରେ ଛିଞ୍ଚାଡ଼ି ଦେଲେ ଯେ, ଫଟୋଗୁଡ଼ାକ ଛିନ୍ନ ଭିନ୍ନ ହୋଇ lawnରେ ଫଡ୍‌ଫଡ୍ କରି ଉଡ଼ିଗଲା । ମାସେ ଧରି ଖରାରେ ବୁଲି ବୁଲି କଲିକତା ଫଟୋଗ୍ରାଫର୍ ପଛରେ ଯେଉଁ ଲାଗିଥିଲି, ଏହି ତାହାର ଶେଷ ପରିଣତି । ପଟେଲ୍ ମୋତେ ସେ ଆଡ଼କୁ ଚାହିଁଲେ ନାହିଁ । ମୁଁ ସେଗୁଡ଼ିକୁ ତରବର ହୋଇ କୌଣସି ମତେ ଗୋଟାଇ ବେଗ୍‌ରେ ପୂରାଇଲି । ପ୍ରଧାନମନ୍ତ୍ରୀ ମଧ୍ୟ ଏ ପ୍ରକାର ରିସେପ୍‌ସନ୍ ସର୍ଦ୍ଧାରଜୀଙ୍କ ପାଖରୁ ଆଶା କରି ନଥିଲେ । ଆମର ବକ୍ତବ୍ୟ କିଛି ନଥିଲା ।

ସବା ଶେଷରେ ପ୍ରଧାନମନ୍ତ୍ରୀ କହିଲେ- ଆମକୁ ଆଉ କିଛି ଦିନ ସମୟ ଦିଅନ୍ତୁ ମିଶିବା ପାଇଁ। ସର୍ଦ୍ଦାର ପଟେଲ୍ ଏଥର ଶେଷ ଥୋପ କୋରରେ ଦେଲେ। କହିଲେ, "Don't argue ! Don't be a frog in the well, swim there in the high seas."

ଆମେ ଉଠିଲୁ। ଆମ ପାଖରେ କିଛି ଜିନିଷ ନ ଥିଲା ! ଉଠି ସିଧା ଫାଟକକୁ ଗଲୁ। ଯେଉଁଠି ପୋଲିସ୍ ବସିଥାନ୍ତି। ପ୍ରଧାନ ଫାଟକ ଦେଇ ସେଇ ଯେଉଁ grey coat ଏବଂ black tie ପିନ୍ଧିଥିବା ପିଲାଟି କୋଉଁ ଆଡକୁ ଗଲା ଜଣାପଡିଲା ନାହିଁ। ମୋର ଯୋଉ ପାଉଣା ପାଇବା ଥିଲା, ତାହା ପାଇଲି ନାହିଁ। ଜାଣି ପାରିଲି ନାହିଁ, ମିଳିଥିଲେ କଣ କରିଥାନ୍ତି। ନିଜ ପତ୍ନୀପାଇଁ ପିଟା ସୁବର୍ଣ୍ଣର ବଳା ଦିଟା କରିଥାନ୍ତି ବୋଧହୁଏ।

ସିଧା Meridian Hotel କୁ ଫେରିଲୁ। ମହାରାଜା ବୋଧହୁଏ ଅପେକ୍ଷା କରିଥିଲେ। Hotel ର ଗୋଟିଏ କୋଣରେ ତାଙ୍କର କୋଠରୀଗୁଡିକ। ସେ ବାହାରି ଆସିଲେ। ମନ୍ତ୍ରୀ ମହେଶ୍ୱର ନାୟକକୁ ଦେଖିଦେଇ ପଚାରିଲେ- "କିହୋ ମହେଶ୍ୱର ! ସର୍ଦ୍ଦାର ପଟେଲ୍ କ'ଣ କହିଲେ ?" କଇଁ କଇଁ ହୋଇ ମହେଶ୍ୱର ବାବୁ କାନ୍ଦିଉଠିଲେ। ଦୂରରେ ଅସ୍ତ ହୋଇଯାଉଥିବା ସୂର୍ଯ୍ୟ ଦେବଙ୍କୁ ଦେଖାଇ କବି ଭାବାପନ୍ନ ମନ୍ତ୍ରୀ ମହୋଦୟ କହିଲେ- "ହଜୁର୍ ! ମୟୂରଭଞ୍ଜର ଭାଗ୍ୟରବି ଅସ୍ତମିତ ହୋଇଗଲା।" ଏବଂ ଆଉ ଥରେ କାନ୍ଦିଉଠିଲେ। ମହାରାଜା ସାହେବ ତାଙ୍କୁ ଆଶ୍ୱାସନା ଦେବାକୁ ଯାଇ କହିଲେ- "ମୋର ଶହ ଶହ ବର୍ଷ ଶାସନକରି ଯେଉଁ ରାଜ୍ୟ ଚାଲିଗଲା, ସେଥିରେ ମୁଁ ଦୁଃଖିତ ନୁହେଁ। ତୁମର ୫୦୦ ଟଙ୍କିଆ ମନ୍ତ୍ରୀତ୍ୱଟା ଚାଲିଯିବ ବୋଲି ତୁମେ ପିଲାଙ୍କ ପରି ଭେଁ ଭେଁ କାନ୍ଦୁଛ ?" ଏହା କହି ମହାରାଜ୍ ତାଙ୍କ କୋଠରୀକୁ ଚାଲିଗଲେ। ମହାରାଜା ବୋଧହୁଏ ସର୍ଦ୍ଦାରଜୀଙ୍କୁ ଦେଖାକରିଛନ୍ତି। ଆମର ଦେଖା ସାକ୍ଷାତ୍ ପୂର୍ବରୁ; merger agreement ବୋଧହୁଏ sign କରିନେଇଛନ୍ତି। କିଏ କହିଲା- ତାଙ୍କୁ ପୂର୍ବଦିନ ରାତିରେ ଡିନର୍‌କୁ ଡକା ହୋଇଥିଲା। ଆମର ଡେଲିଗେସନ୍‌ର ମିଶନ୍ ଫେଲ୍‌ମାରିଲା। ସର୍ଦ୍ଦାର ପଟେଲ୍‌ଙ୍କ ଆଜ୍ଞାଅନୁସାରେ ଅଠର ଗଡଜାତ ସହିତ ଏ ମଧ୍ୟ ଗଲା। High seaରେ ପହଁରିବାପାଇଁ ଆମେ ପ୍ରସ୍ତୁତହେଲୁଁ। ବୁଡିବୁ କି ଭାସିବୁ ସେତେବେଳେ ଆମକୁ କିଛି ସ୍ପଷ୍ଟ ଭାବରେ ଦେଖାଗଲା ନାହିଁ।



## ।। ବୟାଳିଶ ।।

ମୟୁରଭଞ୍ଜ ଓଡ଼ିଶାର ଅନ୍ୟାନ୍ୟ ରାଜ୍ୟଗୁଡ଼ିକ ସହିତ ୧୯୪୭, ୧୪ ଡିସେମ୍ବରରେ ଯଦି ମିଶିଥା'ନ୍ତା, ତାହେଲେ ପରବର୍ତ୍ତୀ କାଳର ଆନ୍ଦୋଳନ ହୁଏତ ଘଟି ନଥା'ନ୍ତା । ୧୯୪୮ ସାଲ୍ ଆରମ୍ଭ ବେଳକୁ ମୟୁରଭଞ୍ଜର ବିଭିନ୍ନ ଦଳ ବାହାରିଲେ ଏବଂ କେତେକ କହିଲେ ଓଡ଼ିଶା ସହିତ ମିଶିବେ । ଆଉ କେତେକ ମୟୁରଭଞ୍ଜ ସ୍ୱାଧୀନ ରହୁ ବୋଲି କହିଲେ । ମୟୁରଭଞ୍ଜରେ କେନ୍ଦ୍ର ସରକାର ପ୍ରାୟ ଦୁଇମାସ କାମ ଭାର ସମ୍ଭାଳିଲେ ଏବଂ Chief Commisioner ଭଲ ଭାବରେ ରାଜ୍ୟର ଅବସ୍ଥା ଅଧ୍ୟୟନ କରିବାରେ ସୁବିଧାସୁଯୋଗ ପାଇଲେ । ତାଙ୍କର ପରାମର୍ଶ ଓ ସୁପାରିଶ୍ କ୍ରମେ ଭାରତ ସରକାର ଓଡ଼ିଶା ସହିତ ମୟୁରଭଞ୍ଜର ମିଶ୍ରଣର ନିଷ୍ପତ୍ତିନେଲା । ୧୯୪୯ ସାଲ୍ ଜାନୁଆରୀ ପହିଲାରେ (ଠିକ୍ ବର୍ଷକ ପରେ) ଓଡ଼ିଶା ସହିତ ମିଶିଗଲା ଏବଂ ଗୋଟିଏ ଜିଲ୍ଲା ଆକାରରେ ପରିଣତହେଲା । ଓଡ଼ିଶା ସରକାର ବଦଳ ଦାୟିତ୍ୱ ଗ୍ରହଣ କରିବାକୁ ଆଦିବାସୀମାନଙ୍କ ମଧ୍ୟରେ ଦଳେ ବାହାର ଲୋକଙ୍କ ପ୍ରରୋଚନାରେ ଆନ୍ଦୋଳନ ଚଳାଇଲେ । କିନ୍ତୁ ମାସକ ଭିତରେ ସବୁ ଶାନ୍ତପଡିଗଲା ୧୫୯୮ ମସିହାରୁ ମହାରାଜା ଜୟସିଂ ପାଖରୁ ଯେଉଁ ରାଜ୍ୟ ସୁପ୍ରତିଷ୍ଠିତହୋଇ ରହିଆସିଥିଲା, ତାର ସ୍ୱାତନ୍ତ୍ର୍ୟ ସେହି ଦିନ ଲୋପ ପାଇଲା । ୯ ତାରିଖ ନଭେମ୍ବର ୧୯୪୮ ରେ ଶାସନ କେନ୍ଦ୍ର ସରକାରକୁ ମହାରାଜା ହସ୍ତାନ୍ତର କଲେ । ମିଶ୍ରଣ ଚୁକ୍ତିରେ ରହିଲା ଯେ, ମହାରାଜାଙ୍କ ଯାହା କିଛି ସୁବିଧା ସୁଯୋଗ ଉପଭୋଗ କରୁଥିଲେ, ତାହା ଯେମିତି ଥିଲା ସେମିତି ରହିଲା । ମହାରାଜା ବର୍ଷକୁ ୩ ଲକ୍ଷ ୩୬ ହଜାର ୫୦୦ ଟଙ୍କା ପାଇବେ ଏବଂ ସେହି ଟଙ୍କାରେ ତାଙ୍କର ପରିବାର ବର୍ଗଙ୍କ ରହିବା ଓ ବିବାହ ଖର୍ଚ୍ଚ ଅର୍ନ୍ତଭୁକ୍ତ । ମହାରାଜାଙ୍କର ପ୍ରାଇଭେଟ୍ ସମ୍ପତ୍ତି ଯାହା ଥିଲା, ତହିଁରେ ମାଲିକାନାତ୍ୱ ରହିଲା । ୧୯୪୮, ୧୭ ତାରିଖ ଡିସେମ୍ବର ପୂର୍ବରୁ ତାଙ୍କର ଯାହା ସ୍ଥାବର ସମ୍ପତ୍ତି ସେସବୁର ତାଲିକା ଭାରତ ସରକାର ଯୋଗାଇବେ । ଭାରତ ସରକାର ସ୍ଥାୟୀ ଚାକିରୀରେ ଥିବା କର୍ମଚାରୀ ମାନଙ୍କର ସୁବିଧା ସୁଯୋଗକୁ ବଜାଇ ରଖିବେ । ସେମାନଙ୍କର ପେନ୍‌ସନ୍ ଏବଂ ଛୁଟି ଦରମା ଅବସର ଗ୍ରହଣକାଳୀନ ପ୍ରାପ୍ୟ ଅକ୍ଷୁଣ୍ଣ ରଖିବେ । ଏଗ୍ରିମେଣ୍ଟଟି ସ୍ୱାକ୍ଷର କରିଥିଲେ ଫ୍ଲାଇଟ୍ ଲେଫ୍‌ନେଟ୍ ମହାରାଜା ସାର୍ ପ୍ରତାପ ଚନ୍ଦ୍ର ଏବଂ ଭାରତ ସରକାର ତରଫରୁ M.K. Velod : ୧୭ ଅକ୍‌ଟୋବରରେ ।

ପୂର୍ବରୁ ସର୍ଦ୍ଦାର ପଟେଲ୍‌ଙ୍କର ପ୍ରଧାନମନ୍ତ୍ରୀ ଶରତ ଚନ୍ଦ୍ର ଦାସଙ୍କୁ ଦିଲ୍ଲୀରେ ଯେଉଁ ଉପଦେଶ ଦେଇଥିଲେ Go ! Merge with Orissa ! Don't be a frog in the well !

Swim in the high seas, ସେଥିରୁ ଆମେ ଇଙ୍ଗିତପାଇଲୁ ଆମର ପ୍ରଧାନମନ୍ତ୍ରୀ ଶରତ୍ ଚନ୍ଦ୍ର ଦାସ ମିଶ୍ରଣ ପରେ ଓଡିଶାରେ କିଛି ନ ହେଲେ ମଧ୍ୟ ମନ୍ତ୍ରୀଟିଏ ହେବେ। ଆମେ କେତେ ଜଣ ଖୁସାମତିଆ ତାଙ୍କୁ ଧରି ଦିଲ୍ଲୀ ଛାଡ଼ିବା ପୂର୍ବରୁ ବଜାରକୁ ଗଲୁ ଏବଂ 'ପ୍ରଧାନମନ୍ତ୍ରୀ'ଙ୍କୁ ଓଡିଶାର ମନ୍ତ୍ରୀପଦପାଇଁ ସଜବାଜ ହେବାକୁ ବାହାରିଲୁ। ପ୍ରଥମେ କିଣା ଗଲା ଗୋଟିଏ ପଶମ ଶାଲ୍, ଖଦଡର ଗାନ୍ଧୀ ଟୋପି, ହାତକଟା ସୂତାର ପଞ୍ଜାବି ଓ ଖଦଡର ଧୋତି ଏବଂ ଝାଲେ ଚପଲ। ପ୍ରଧାନମନ୍ତ୍ରୀ 'ନା' 'ନା' କହିବା ସତ୍ତ୍ୱେ, ଏଗୁଡିକ ତାଙ୍କପାଇଁ କିଣିଦିଆଗଲା। ସେ ମଧ୍ୟ ମନ୍ତ୍ରୀତ୍ୱର ଅଚିର ଭବିଷ୍ୟତରେ ଆଶା ବାନ୍ଧି କିଣିବାକୁ ରାଜିହେଲେ।

ତହିଁ ପରଦିନ ଆମେ ଘର(ମୟୁରଭଞ୍ଜ ଓଡ଼ିଶା)କୁ ଫେରିବାକୁ ବାହାରିଲୁ। ସମର ପ୍ରତ୍ୟାବୃତ୍ତ ପରାସ୍ତ ସୈନିକ ପରି ଆମେ କେତେ ଜଣ ଡରୁଆ ଟ୍ରେନ୍‌ରେ ଆସିବାକୁ ପସନ୍ଦକଲୁ। ଦିଲ୍ଲୀ ଗଲାବେଳକୁ ଏରୋପ୍ଲେନ୍‌ରେ ଆମକୁ ଏତେ ଭୟଲାଗିଲା, ଯହିଁରେ ଆମେ ଠାକୁରଙ୍କୁ ବାରମ୍ବାର ଭୋଗମନାସି ଆସିଥିଲୁ। ଆମେ ଆସି ବାରିପଦାରେ ପହଞ୍ଚିଲା ବେଳକୁ ମୟୁରଭଞ୍ଜର ଓଡିଶା ସହିତ ମିଶ୍ରଣ କଥା ଚାରିଆଡେ ପ୍ରଘଟ ହୋଇଯାଇଥାଏ। ଆମେ କେତେଜଣ unwanted ଜୀବ ଯେଝା ଘରେ ପଶିଲୁ।

କେତେଦିନ ପରେ Commissioner Rege ଶାସନ ଭାର ଗ୍ରହଣକଲେ ଏବଂ ମନ୍ତ୍ରୀମଣ୍ଡଳର ଆପେ ଆପେ ପତନ ଘଟିଲା। ତା ପରେ ଆରମ୍ଭହେଲା ଆଦିବାସୀ ଆନ୍ଦୋଳନ। ଆମ ସହିତ ଯୋଉଁ ଆଦିବାସୀ ସଭ୍ୟମାନେ ଯାଇଥିଲେ, ସେମାନେ ମେନନ୍ ବା ସର୍ଦ୍ଦାର ପଟେଲ୍ ଆଗରେ ମୁହଁ ବନ୍ଦକରି ଚୁପ୍‌ଚାପ୍ ରହିଥିଲେ। ବିଶେଷ କରି ଯେତେବେଳେ ସର୍ଦ୍ଦାର ପଟେଲ୍ କହିଲେ 'Shoot them; we did so in Bihar' ସେମାନେ ନୀରବ ରହିଥିଲେ। ମୟୁରଭଞ୍ଜ ମାଟି ମାଡିବା ସଙ୍ଗେସଙ୍ଗେ ସେମାନଙ୍କର ବୀରତ୍ୱ ଓ ଚକ୍ରାନ୍ତ ପଦାକୁ ଫୁଟିଉଠିଲା। ଚାରିଆଡେ ସଭାସମିତି, ବିଶେଷତଃ ବାମନଘାଟିରେ ଜାତିଅଜାତି ଗଣ୍ଡଗୋଳ ଚାଲିଲା। ମୁଁ ପବ୍ଲିସିଟି ଭେନ୍‌ଟି ଧରି ରାଇରଙ୍ଗପୁର୍‌ରେ ରହିଥାଏ। ଏବଂ, ଚାରିଆଡକୁ ଯାଇ ଗୀତ ବଜାଇ ଦୀକ୍ଷିତ ଭାଷଣ ଦେଉଥାଏ। ଏସବୁ ଦିଲ୍ଲୀ ଯିବା ପୂର୍ବରୁ ଯେଉଁ ଭାଷଣ ଦେଉଥିଲି ତାର ଠିକ୍ ଓଲଟା। ସେତେବେଳେ କହୁଥିଲି ମିଶିବା ନାହିଁ। ଏତେବେଳେ କହିଲି- ମିଶିଲେ ଭଲହେବ। ପବ୍ଲିସିଟି ପ୍ରତି ମୋର ବିତୃଷ୍ଣା ସେହିଦିନୁ ଆସିଲା। କେତେବେଳେ କଣ ହେବ। ଆଦିବାସୀ ମାନଙ୍କ ତୀରରେ ପ୍ରାଣଯିବ, ଏହି ଭୟ ଯୋଗୁଁ ତ୍ରସ୍ତ ହେଉଥାଏ।

କେତେଦିନ ଏମିତି ବୁଲିବୁଲି ବକ୍ତୃତାଦେବା ପରେ, ମୋର ଦୁର୍ଭାଗ୍ୟକୁ ରାଇରଙ୍ଗପୁର୍‌ର ଅଳ୍ପ ଦୂରରେ ହେଉଥିବା ଗୋଟିଏ ମିଟିଙ୍ଗ୍‌ରେ ବିଶୃଙ୍ଖଳ ଆଦିବାସୀ ଜନତା ଉପରେ firing ହେଲା । S.P. Clerisy ମୋତେ S.D.O.ଙ୍କର ବୈଠକଖାନାକୁ ଡକାଇଲେ । ପଚାରିଲେ "Publicity Officer କ'ଣ ଦେଖୁଛନ୍ତି ?" ମୁଁ କହିଲି- "ଲୋକ ଗୁଡାକ କିଛି ବୁଝୁ ନାହାନ୍ତି । ଚୁପ୍‌ଚାପ୍ ହୋଇ ଗୀତଶୁଣନ୍ତି । ବକ୍ତୃତା ଶୁଣନ୍ତି । ମୁଁ ଫେରିଲା ମାତ୍ରେ ବାଣ୍ଟିଥିବା ପ୍ରଚାରପତ୍ରକୁ ଚିରିଦିଅନ୍ତି । ଚିତ୍କାର କରିଉଠନ୍ତି 'ବାଙ୍ଗ୍‌ମିଶା' ଅର୍ଥାତ୍ 'ଆମେ ମିଶିବା ନାହିଁ' ।" Clerisy ସାହେବ ମୋତେ ପଚାରିଲେ- "ଏହି ଅବସ୍ଥାରେ ଆପଣଙ୍କର କ'ଣ କର୍ତ୍ତବ୍ୟ ବୋଲି କହୁଛନ୍ତି ?" ମୁଁ କହିଲି- "ଯେତେ Ring Leader ବା ନେତାକୁ ଗିରଫ କରି ନ ନେଲେ ଅବସ୍ଥା ଅସମ୍ଭାଳହେବ ।" ଆଦିବାସୀମାନଙ୍କର ତତ୍କାଳୀନ ନେତା ସୁନାରାମ ସୋରେନ୍ ସେତେବେଳକୁ ପ୍ରାୟ ଆତଙ୍କବାଦୀ ହୋଇ ଉଠିଲେଣି । ତାଙ୍କୁ ଲୋକମାନେ ଏତେ ଭଲପାଉଛନ୍ତି ଯେ, ସିଏ ଯାହା କହିଲେ ତାହା ମାନୁଛନ୍ତି । ମାଇଲ୍ ମାଇଲ୍ ରାସ୍ତା, ହଜାର ହଜାର ଆଦିବାସୀ ଯୁବତୀ ତାଙ୍କୁ କାନ୍ଧ ନହେଲେ କାଖକରି ମାଇଲ୍ ମାଇଲ୍ ରାସ୍ତା ଚାଲନ୍ତି ତାଙ୍କର ଜୟଗାନକରି । ଏକାବେଳେକେ ଉନ୍ମତ୍ତ । ଏହି ସମୟରେ ସେମାନେ ବିହାରର ଆଦିବାସୀମାନଙ୍କ ସାହାଯ୍ୟ ନେଇଥାନ୍ତି । ବଣ ଜଙ୍ଗଲ କାଟିଦେଉଥାନ୍ତି । ଜଣେ Ranger କୁ ଘାଟି ଭିତରେ ହାଣି ଟୁକୁରା ଟୁକାରା କରି ଠାକୁରାଣୀ ପାଖରେ ବଳିଦେଲେ । ଓଡିଶା ସରକାର ବାଧ୍ୟ ହୋଇ ପଲଟନ୍ ଆଣିଲେ । ଆଦିବାସୀମାନେ ଦେଉପଟା ପାଖରେ ସେମାନଙ୍କୁ ଅବରୁଦ୍ଧ କଲେ ଏବଂ "human wall" କରି ରାସ୍ତା ଅବରୋଧକଲେ । ଏତେ ସଂଖ୍ୟାରେ ସେମାନେ ଥିଲେ, ଆଉ ରାସ୍ତାଟା ଏତେ ଅଣ ଓସାରିଆ ଯେ, ମିଲିଟାରୀ ବାଧ୍ୟ ହୋଇ ମେସିନ୍‌ଗନ୍ ବ୍ୟବହାରକଲେ । ଏବଂ ଲୋକ କହିବା ଅନୁସାରେ ଅସଂଖ୍ୟ ଲୋକ ବଳି ପଡିଲେ । ଏବେ ବି ଦେଉପଟା ବୋଲିକି ସ୍ଥାନଟି ସେହି ଅମାନୁଷିକ firing ପାଇଁ କୁଖ୍ୟାତ । ଲୋକ ମୁଖରୁ ଶୁଣାଯାଏ- କୁଡ କୁଡ ମୁର୍ଦାର ଟ୍ରକ୍‌ରେ ନେଇ ଚାନ୍ଦିପୁର ସମୁଦ୍ର କୂଳ ବାଲିରେ ପୋତାଗଲା । ବାରିପଦା ସହରରେ ମଧ୍ୟ ଆଦିବାସୀମାନଙ୍କର ଗୋଟିଏ ସଭା Police Line ପଡିଆରେ ହୋଇଥିଲା । ସେମାନଙ୍କୁ ଆଗରୁ ପ୍ରସ୍ତୁତଥିବା ପୋଲିସ୍ ବାହିନୀ ଏମିତି ଜୋର୍‌ରେ ଭୟଭୀତ କରାଇଲେ ଯେ, ସାରା ସହର ଏଣେତେଣେ ଛିନ୍ନ ଛତ୍ର ହୋଇଗଲେ । ମୁଁ ସେତେବେଳେ ଛୁଟିରେ ଥାଏ । ମୋ ଝିଅମାନଙ୍କ ଦେହ ଭଲ ନଥାଏ; ବିଶେଷ କରି ବଡ ଝିଅର ଶାରିରୀକ ଅବସ୍ଥା ଭୀଷଣ ଖରାପ । ମୁଁ ତେଣୁ ମୋ କ୍ୱାର୍ଟରରୁ ଥାଇ ଦେଖିପାରିଛି ପୋଲିସ୍‌ର ଆଦିବାସୀ ଜନତାଙ୍କ ଉପରେ ଆକ୍ରମଣ । ସେଇଟା ପ୍ରାୟ

ଦିନ ଦୁଇପହରର ବେଳର ଘଟଣା। କିଏ କୁଆଡେ ଗଲେ ଜଣା ପଡିଲା ନାହିଁ। ସହରବାସୀ ମଧ୍ୟ ଭୀୟତ୍ରସ୍ତ ହୋଇଗଲେ, କାଳେ ଦେଉପଟାର ନିର୍ମମ୍ firing ରାଜଧାନୀ ଭିତରେ ଅନୁଷ୍ଠିତହେବ।

ଧୀରେ ଧୀରେ ମୟୂରଭଞ୍ଜ ସ୍ୱାଭାବିକ ଅବସ୍ଥାକୁ ଆସିଲା ସିନା, କିନ୍ତୁ ଭୟ ଆତଙ୍କ ସବୁବେଳେ ଜନସାଧାରଣଙ୍କ ଭିତରେ ରହିଲା। ତା ପରେ ଚାଲିଲା ବଦଳି ପର୍ବ। କିଏ କ'ଣ ହୋଇ କେଉଁ ପୋଷ୍ଟରେ ଓଡ଼ିଶାର କେଉଁଠାକୁ ଯିବ, ତାହା ଉପରେ ସମସ୍ତଙ୍କର ନଜର ରହିଲା। ଯେଉଁମାନେ retired କର୍ମଚାରୀ ଥିଲେ, ଯେଉଁମାନେ ବାହାର ଲୋକ ଥିଲେ, ସେମାନେ ଅଦୃଶ୍ୟ ହୋଇଗଲେ। ତତ୍କାଳୀନ ଦେଓ୍ୱାନ Major B.P. Pande ବି କୁଆଡେ ଅର୍ନ୍ତଧ୍ୟାନ ହୋଇଗଲେ। ମୋର କ୍ଷତି ଭିତରେ ପୂର୍ବତନ ଗଭର୍ନମେଣ୍ଟ ଦେଇଥିବା ଜମି ନେଇଗଲା। ଅବଶ୍ୟ ୪୦୦ କେତେ ଟଙ୍କା ମୁଁ ଫେରସ୍ତପାଇଲି। ମୋର ମନର ଅବସ୍ଥା ସେତେବେଳେ ଆଦୌ ଭଲ ନଥାଏ। ଅନେକ ଲୋକ ସେହି ସମୟରେ ଡିଆଁ ମାରିଲେ। ମୟୂରଭଞ୍ଜ ତାର ସ୍ୱତନ୍ତ୍ରତା ହରାଇଲା। ଟଙ୍କାପଇସା, ଚାକିରିବାକିରୀ ସବୁ ସୁବିଧା ହେବ। ନୂଆ ସରକାର ହେବ। ସରକାରଙ୍କ ଭାଷାରେ ଆମେ ପବନରେ ପହଁରିଲୁ। ପ୍ରଥମେ ଆସିଲା ବଡ ବଡିଆଙ୍କ ବଦଳି। ଚିଫ୍ ରେଭିନିୟୁ ଅଫିସର ରାଧାଗୋବିନ୍ଦ ଦାସ୍ କଲେକ୍ଟର ହେଲେ, ପ୍ରମୋଟେଡ୍ ଆ.ଇ.ଏସ୍ ମଧ୍ୟ ହୋଇଗଲେ। ଶ୍ରୀରାମ ଚନ୍ଦ୍ର ଶତ୍‌ପଥୀ ପୁରୀରେ ଏସ୍.ପି. ହୋଇ ଚାଲିଗଲେ। ଶିକ୍ଷା ବିଭାଗର ସୁପରିନ୍‌ଟେଣ୍ଡେଣ୍ଟ ଗୋକୁଳ ଚନ୍ଦ୍ର ଶତପଥୀ ଉତ୍କଳ ୟୁନିର୍ଭାସିଟିର ରେଜିଷ୍ଟ୍ରାର ହୋଇଗଲେ ଓ ପରେ ପରେ ଓଡିଶାର ଡି.ପି.ଆଇ ହେଲେ। ଶ୍ରୀ ଦୁର୍ଗାଚରଣ ପାତ୍ରୀ- ଯିଏକି ଆସିଷ୍ଟାଣ୍ଟ ଇଞ୍ଜିନିୟର ଥିଲେ, ସେ ଓଡିଶାର ଚିଫ୍ ଇଞ୍ଜିନିୟର ହୋଇଗଲେ। ଆହୁରି ସେମିତି ଶରତ୍ ଚନ୍ଦ୍ର ଦାସଙ୍କ ପରି ସଚ୍ଚୋଟ ଅଫିସର ପାହୁୟାରେ ଚଢିଗଲେ।

ମୁଁ ବଡ଼ ଅଡୁଆ ଅବସ୍ଥାରେ ପଡିଗଲି। କାରଣ ମୋର ୪, ୫ଟା ଚାକିରି ଥିଲା। ପବ୍ଲିସିଟି ଅଫିସର୍, ସେକ୍ରେଟେରୀ ପ୍ରଜାସଭା, ସେକ୍ରେଟେରୀ କେନ୍ଦ୍ରସଭା, ସମ୍ପାଦକ ଭଞ୍ଜ ପ୍ରଦୀପ ଓ ମୟୂରଭଞ୍ଜ ପ୍ରଦୀପ, ମୟୂରଭଞ୍ଜ କନ୍‌ଷ୍ଟିଚୁଏଟ୍ ଆସେମ୍ଲି କେତେବେଳେ କେମିତି ଅଫିସ ଇନ୍ ଚାର୍ଜ ମୟୂରଭଞ୍ଜ ଷ୍ଟେଟ୍ ପ୍ରେସ୍। ମୋର ପ୍ରେସ୍ ଟ୍ରେନିଂ ଥିଲା ଜର୍ନାଲିଜିମ୍ ଟ୍ରେନିଂ ଥିଲା। ନୂଆ ମାଲିକମାନେ ମୋର କେବଳ ସେହି ପବ୍ଲିସିଟି ଅଫିସର ପଦବୀ ରଖିଲେ ଏବଂ ମୁଁ ପବ୍ଲିକ୍ ରିଲେସନସ୍ ଡିପାର୍ଟମେଣ୍ଟର ଜିଲ୍ଲା ଅଫିସର ଆକାରରେ ଗଣ୍ୟହେଲି। ଶେଷରେ ମୁଁ ପି.ଏ. ଟୁ ଦି ଡାଇରେକ୍ଟର ପବ୍ଲିକ୍ ରିଲେସନସ୍ ହୋଇ କଟକରେ ଥିବା ଓଡିଶା ସେକ୍ରେଟେରୀଏଟକୁ ବଦଳିହେଲି। ମୁଁ ଛୁଟିରେ ଥିବାରୁ, ଯିଏ

ଅଫିସର Rege ସାହେବଙ୍କୁ advise ଦେଉଥିଲେ, ସେ ତାଙ୍କର ପୁରୁଣା ଅହନ୍ତା କାୟମ ରଖି ମୋତେ ତଳକୁ ଖସାଇଦେଲେ। ୨୬୦ ଟଙ୍କା ଦରମା ଜାଗାରେ ୧୬୦ ହେଲା। କଟକ ଓ ଭୁବନେଶ୍ୱରର ଛୋଟଛୋଟ କିରାଣି ମଧ୍ୟ ଭବିଷ୍ୟତକୁ ନିଜର ରଖି କଟକ ବଦଳ ହୋଇଗଲେ। ମୋଟା ମୋଟି ବିଷୟ ବୁଦ୍ଧି ଅଭାବରୁ ମୋର ବହୁତ କ୍ଷତିହେଲା। ମୟୁରଭଞ୍ଜର ନୂଆ କଲେଜକୁ ଖସିଯିବା ମତ୍‌ଲବ୍‌ରେ ଥିଲି, କିନ୍ତୁ ଚାକିରୀ କାଳରେ ତ ମୁଁ ମିଶ୍ରଣ ବିରୋଧୀ କାମକରୁଥିଲି ବୋଲି ଲୋକଙ୍କ ଧାରଣା ହୋଇଥିଲା। ତେଣୁ ମୁଁ ଭାବିଲି- ଯଦି ସରକାର ପ୍ରତିହିଂସାପରାୟଣ ହୁଏ- ତେବେ ମୁଁ ଯେଉଁଠି ଥିଲେ ବି ମୋତେ "ନଗି" ଲଗାଇ ଟାଣିନେବ। ଅତଏବ ଯେଉଁ ଲମ୍ବା ଛୁଟି ନେଇଥିଲି ତାର ଶେଷରେ ପିଲା କବିଲା ଧରି କଟକ ଯିବାକୁ ହେବ। ଦୁଇଟା ମାସ ଭିତରେ ମୟୁରଭଞ୍ଜର ରୂପ ବଦଳି ଗଲା। ମହାରାଜାବିହୀନ ମୟୁରଭଞ୍ଜ ରାଜ୍ୟରେ ଯେଉଁମାନେ ନିଛକ ରାଜଭକ୍ତ ଥିଲେ, ସେମାନେ ନିଜକୁ ଅନେକ ଦିନ ଧରି ନିରାପଦ ଭାବିପାରିଲେ ନାହିଁ।

ଆସିଲା ଜାନୁଆରି ପହିଲା। ଆସିଲେ ନୂଆ କଲେକ୍ଟର ବି. ମୁଖାର୍ଜୀ। ସେହି ଦିନ ଓଡ଼ିଶା ସରକାର ଅନୁଷ୍ଠାନିକ ଭାବରେ ଦାୟିତ୍ୱ ଗ୍ରହଣକରିବ। ଦାୟିତ୍ୱଗ୍ରହଣ ଅଭିଯାନ ବଡ ଉନ୍ମାଦମୟ। ଗୁଣ୍ଡାଏଲୋକ କିଲକିଲା ରାବକରି ବଜାର ଭିତର ଦେଇ ମାଡି ଚାଲିଗଲେ। ସେକ୍ରେଟେରୀଏଟ୍ (ବର୍ତ୍ତମାନ କଲେକ୍ଟରେଟ୍)ରେ ଥିବା ପ୍ରଚାର ଗାଡି ତାଙ୍କର ଥିଲା। ମୁଁ ମଧ୍ୟ ମୋର ପ୍ରଚାର van (ଯାହାକୁ ଧରି ମୁଁ ମୟୁରଭଞ୍ଜର ଗ୍ରାମେ ଗ୍ରାମେ ବୁଲିଛି) ନେଇ ସେହି ପ୍ରସେଶନ୍‌ରେ ଯୋଗଦେଇଥିଲି। ଯେଉଁ ମୁହଁରେ "ଏହି ମୋର ଭଞ୍ଜଭୂମି ଓ ଏହି ମୋର ମହାରାଜା; ଜନ୍ମେ ଜନ୍ମେ କରୁଥିବି ମୁଁ ଏହି ଦୁହିଁଙ୍କୁ ପୂଜା" କହୁଥିଲି, ସେହି ମୁହଁରେ ଗାଇଲି- "ସର୍ଦ୍ଦାରଙ୍କ ଜୟ ହେଉ। ହରେକୃଷ୍ଣ ମହତାବ୍‌ଙ୍କର ଜୟ ହେଉ, ଓଡ଼ିଶା ସରକାରଙ୍କ ଜୟହେଉ।" ନିଦାରୁଣ ଦୁଃଖ ଧ୍ୱନି ମୋ ବକ୍ଷରେ। ପୂର୍ବଦିନ ରାତିରେ ଓଡ଼ିଶା ସରକାରରେ joining ରିପୋର୍ଟ ଦେଇଥିଲି ଏବଂ ମୟୁରଭଞ୍ଜର ଚାକିରିଆଟି ଓଡ଼ିଶା ସରକାରର ଚାକିରିଆ ହେଲା।

ଆମର ଯେଉଁ ହାଇକୋର୍ଟ ଥିଲା, ତାହା ସେସନ୍ କୋର୍ଟ ହୋଇଗଲା। ଏହି ଯେଉଁ ଅଭିନବ ଶାସକଙ୍କର ଶାସନ ପ୍ରଣାଳୀ ବୁଝିବାପାଇଁ ସବୁ କର୍ମଚାରୀ ବ୍ୟସ୍ତ ହୋଇ ଉଠିଲେ। ଓଡ଼ିଶା ବିରୋଧୀ ଧ୍ୱନି କେବଳ ଆଦିବାସୀ ନେତାମାନଙ୍କ ମୁହଁରେ ରହିଲା। ମୟୁରଭଞ୍ଜରୁ କିଏ ମନ୍ତ୍ରୀ ହେବ, ଏହି ବିଷୟରେ ସମସ୍ତେ ମୁଣ୍ଡପୂରାଇଲେ। କିଏ କହିଲା ଶରତ୍ ଗାନ୍ଧୀ, ଯିଏ ବର୍ଷଟିଏ ମୟୁରଭଞ୍ଜର ପ୍ରଧାନମନ୍ତ୍ରୀ ହୋଇଥିଲେ, ସେହି ଅନ୍ତତଃ ଜନସାଧାରଣ ମନ୍ତ୍ରୀ ହେବେ। କ୍ୟାବିନେଟ୍ ସାହାଯ୍ୟରେ। ଆଉ କିଏ ଭାବିଲେ-

ମୟୁରଭଞ୍ଜର ଖ୍ୟାତନାମା ଓକିଲ, ଲାଲମୋହନ ପତିଙ୍କ କଥା । ପବ୍ଲିକ ଲିଡର ଭାବରେ କେବଳ ପ୍ରଜାମାନେ ନୁହନ୍ତି, ମହାରାଜା ମଧ୍ୟ ତାଙ୍କୁ ବରିଷ୍ଠ ନେତା ସ୍ଥାନ ଦେଇଥିଲେ । ସବୁ ସଭା ସମିତି, ଅଭିଷେକରେ ସେ ଉଚ୍ଚସ୍ଥାନରେ ଥିଲେ । ଏ ଦୁଇଜଣଙ୍କୁ ଛାଡି ଆଉ ତୃତୀୟ ବ୍ୟକ୍ତିର ନାମ ଶୁଣାଯାଉ ନ ଥିଲା । ଶରତ୍ ଗାନ୍ଧୀଙ୍କପାଇଁ ଆମେ ତ ସର୍ଦ୍ଦାର ପଟେଲ୍‌ଙ୍କ ପାଖରୁ ଇଙ୍ଗିତ ପାଇ ମନ୍ତ୍ରୀର ପୋଷାକପତ୍ର କିଣିଦେଇଥିଲୁ । ମୁଁ ସେତେବେଳକୁ କଟକରେ ପବ୍ଲିସିଟି ଡିପାର୍ଟମେଣ୍ଟରେ ଯୋଗଦେଇଥାଏ । ସେକ୍ରେଟେରୀ, ଆଇ.ସି.ଏସ୍. କର୍ମଚାରୀ ସହନୀ ସାହେବଙ୍କ ପି.ଏ. ହୋଇ । ସକାଳୁଆ ଅଫିସରେ ଯୋଗ ଦେଇ ଦେଖିଲି ଯେ, ସେକ୍ରେଟେରୀଏଟ୍‌ର ପ୍ରତି ଟେବୁଲରେ ବହିଟିଏ ଥୁଆ ହୋଇଛି । ଗୋଟିଏ ବହି– ଅନେକ କପି । ବହିର ନାମ ହେଉଛି- "ମୟୁରଭଞ୍ଜର ଜଣେ" । ତାଙ୍କୁ ଚିହ୍ନିବାକୁ ଅସୁବିଧା ନାହିଁ । ତାଙ୍କର ବିରାଟ ଫଟୋ ବହିର କଭର ଉପରେ ଥାଏ । ସେ ଜଣକ ହେଉଛନ୍ତି ହରିଶଚନ୍ଦ୍ର ଦାଶ । ବହିରେ ପ୍ରତିପାଦନ କରାଯାଇଛି ଯେ, ସିଏହିଁ ମନ୍ତ୍ରୀ ହେବାପାଇଁ ଯୋଗ୍ୟ ବ୍ୟକ୍ତି ଏବଂ ସାରା ବହିରେ ତାଙ୍କର କୀର୍ତ୍ତି ବର୍ଣ୍ଣନା କରାଯାଇଛି । ଯଥାଃ- ସେ ମେଟ୍ରିକ୍ୟୁଲେଶନ୍ ପାସ୍ କରିଛନ୍ତି, ଫୁଟବଲ୍ ନିଜେ ନଖେଳିଲେ ମଧ୍ୟ ଅନ୍ୟମାନଙ୍କୁ ଖେଳାଇଛନ୍ତି । Theatre କରାଇଛନ୍ତି ବଜାରରେ, ନିଜେ ନାଟକରେ ଅଭିନୟ ନ କରିଥିଲେ ମଧ୍ୟ, ସେବାସଂଘ ଗଢି ଶବଦାହ ବ୍ୟବସ୍ଥା କରିଛନ୍ତି । ଏମିତି ଆହୁରି କେତେ କଥା । ଅତିକାୟ ଲୋକଟି ଏସ୍.ପି.ଙ୍କର ଭାଇ । ଦେଓ୍ୱାନ ସାହେବଙ୍କ ପାଖରେ ବସି ନାନା ବାଜେ ଉପଦେଶ ଦେଉଥିବାର ଶୁଣାଯାଇଛି । ଏ ବହିଟି ପଛରେ ଉଦ୍ଦେଶ୍ୟ ହେଉଛି- ଲାଲ୍ ମୋହନ୍ ପତି, ଶରତ୍ ଗାନ୍ଧୀ କିଛି ନୁହନ୍ତି; ମନ୍ତ୍ରୀ ହେବାର ଯୋଗ୍ୟତା ଏମାନଙ୍କର ନାହିଁ । ଏଇ ବହିଟି ମହ୍ତାବଙ୍କର ବହୁତ କାମରେ ଆସିଲା । ସେ ଯୁକ୍ତି କରିପାରିଲେ ଯେ, ଏଇ ତିନିଜଣ ଯାକ ମଧ୍ୟରୁ କେହି ମନ୍ତ୍ରୀ ହୋଇପାରିବେ ନାହିଁ । ତେଣୁ ଯଥା ସମୟରେ ମନ୍ତ୍ରୀ ହେଲେ ସୁନାରାମ ସୋରେନ୍ । ତାଙ୍କର ସବୁଠାରୁ ବଡ଼ ଯୋଗ୍ୟତା ହେଲା ଯେ, ସିଏ ଆଦିବାସୀ ମେଳି ମେଣ୍ଟ କରିପାରିଥିଲେ । ଧୁମ୍‌ସା, ମାଦଳ, ହାଣ୍ଡିଆ, ନାଚ, ଗୀତ, ଏସବୁରେ ସେ ଥିଲେ ନିପୁଣ ଏବଂ ମନ୍ତ୍ରୀ ହେଲାପରେ ଆଦିବାସୀ ସଂସ୍କୃତିର ବନ୍ୟା ଛୁଟାଇ ଦେଇଥିଲେ । ଏମିତି ଦିନ ବି ଆସିଲା, ଯେତେବେଳେ ସେ ବାରମ୍ବାର ରାଞ୍ଚି ପାଗଳାଗାରରେ କଟେଇଥିଲେ । ଶରତ୍ ଗାନ୍ଧୀଙ୍କର ଭଙ୍ଗା କୁଡିଆ, ଲାଲ ମୋହନ ପତିଙ୍କର ଚାରିତାଲା କୋଠା- ବାରିପଦା ମଝିରେ ଏବେବି ପାଖପାଖ ହୋଇ ରହିଛି ।



## ॥ ତେୟାଳିଶ ॥

ମୟୂରଭଞ୍ଜ ସିନା ଓଡ଼ିଶାରେ ମିଶିଗଲା । କିନ୍ତୁ ଗୁଡ଼ାଏ ଗୌଣ କାରଣରୁ ସରେଇକଳା ଓ ଖରସୁଁଆ ବିହାରରେ ରହିଗଲା । ମୟୂରଭଞ୍ଜରେ ମୋର ଆଉ ରହିବା ନ ହେଲା । କେବେ ଭାବି ନଥିଲି ଯେ ଜୀବନରେ ମୟୂରଭଞ୍ଜ ଛାଡ଼ି ମୋତେ ଅନ୍ୟତ୍ର ଚାକିରି କରିବାକୁ ପଡ଼ିବ । ସେ ଯାହା ହେଉନା କାହିଁକି, ମୁଁ ମିଶ୍ରଣ ସଙ୍ଗେସଙ୍ଗେ କଟକ ଯାଇ ପାରିଲି ନାହିଁ । ଛୁଆ ପିଲାମାନଙ୍କର ବିଶେଷ କରି ବଡ଼ ଝିଅର ଶାରିରୀକ ଅସୁସ୍ଥତା ଯୋଗୁଁ । ବଡ଼ଝିଅକୁ ଯେଉଁ ଟାଇଫଏଡ଼୍ ହୋଇଥିଲା, ତାହା ମାରାତ୍ମକ । ଆରୋଗ୍ୟ ହେବା ପାଇଁ ୯୫ ଦିନ ଲାଗିଲା । ୩୦, ୩୫ ଦିନ ଅଁଚେତ୍‌ହୋଇ ପଡ଼ିଥିଲା । ବଂଚିବାର ଆଶା ନ ଥିଲା । ଥରେ ଚେତା ବୁଢ଼ିଆସୁଥିଲା, ଏହି ସମୟରେ ଡାକ୍ତର ପାଟିଭିତର ଟେମ୍ପରଚର୍ ମାପିବାପାଇଁ ଚେଷ୍ଟାକଲେ ଓ ଥର୍ମମିଟର ପୂରାଇଲେ । ଝିଅ ଅଚେତ ଅବସ୍ଥାରେ କଡ଼କଡ଼ କରି ଥର୍ମମିଟର କାମୁଡ଼ି ଭାଙ୍ଗିଦେଲା ଏବଂ ଦାନ୍ତପାଟି ପଡ଼ିଗଲା । ଭାଗ୍ୟକୁ ଆଙ୍ଗୁଳି ପୂରାଇ ଭଙ୍ଗା ଥର୍ମମିଟର ଟୁକୁରା ସବୁ ଡାକ୍ତର ଭାଗ୍ୟକୁ ବାହାର କରିଆଣିଥିଲେ । ତଥାପି ପାଟି ଘା ହୋଇଗଲା । ଜ୍ୱର ସାଙ୍ଗକୁ ପାଟିଭିତରେ ଘା'ଟା ବେଶି ବିପଜ୍ଜନକ ହେଲା । ରକ୍ତ ବାହାରି ଝିଅ କିଛି ଖାଇ ନ ପାରି ମରି ଯାଇଥାନ୍ତା । ଭାଗ୍ୟକୁ ତାର ସେହି ସମୟରେ ଗୋଟିଏ ଦାନ୍ତ ଭାଙ୍ଗିଥାଏ । ଏବଂ ଶାମୁକାରେ ସେହି ଛୋଟ କଣାଦେଇ ଔଷଧ ଓ ଖାଦ୍ୟ ତାହାଦ୍ୱାରା ଦିଆଯାଇ ପାରିଥିଲା । ସେତେବେଳେ ଦୈବକୁ ପେନ୍‌ସିଲିନ୍ ଆବିଷ୍କାର ହେଇଥାଏ ଏବଂ ୯୫ ଟଙ୍କା ଦେଇ ପେନ୍‌ସିଲିନ୍ ଇନ୍ ଅଏଲ୍ ବଜାରରୁ ପାଇଗଲି । ଟାଇଫଏଡ୍ ଛାଡ଼ିଗଲା, କିନ୍ତୁ ଉତ୍ତାପ ପୂରାପୂରି ଛାଡ଼ିଲା ନାହିଁ । ହୋମିଓପାଥି ଚିକିତ୍ସାରେ ଜ୍ୱରର ଶେଷାଂଶ ଛାଡ଼ିଲା । ଶ୍ରୀ ମଳେଶ୍ୱର ମହାଦେବ ପାଖକୁ ଯାଇ ମନାସୀ ଥିବା ସହସ୍ର କୁମ୍ଭର ଅନୁଷ୍ଠାନକଲି । ସେହି ସମୟ ମୋର ଏକ ଦୁଃସ୍ଥ କାଳ । ପବ୍ଲିସିଟ୍ ଡିପାର୍ଟମେଣ୍ଟର ଗ୍ରାମୋଫୋନ୍ ରେକର୍ଡରୁ ଭଜନ ଶୁଣି ନିରୁପାୟ ହୋଇ ସମୟ କଟାଏ ଓ ସାନ୍ତ୍ୱନାପାଏ ।

ତଥାପି କାହିଁକି କେଜାଣି ଅଡୁଆ ଲାଗୁଥାଏ । ଦୁଃଖର ସୀମା ନାହିଁ । ଦୈବକୁ ଏହି ସମୟରେ ଆମ ଡିପାର୍ଟମେଣ୍ଟର ସୁଧୀର ବୋଷ୍ ଗାଡ଼ି ନେଇ ବାରିପଦା ଆସିଲେ ଏବଂ ତାଙ୍କରି ସହିତ ମୁଁ କଟକ ଚାଲିଯାଇ ନୂଆ ଚାକିରିରେ join କଲି । ସୁଧୀର ବାବୁଙ୍କ ଘରେ ରହିଲି । ସେ ଏବଂ ତାଙ୍କ ସ୍ତ୍ରୀ ସ୍ନେହୀ ଓ ପରମ ଅତିଥି ପରାୟଣ । ମୁଁ କ୍ୱାଟରସ୍ ପାଇ ନ ଥାଏ । ଶୁଣିଲି ପାଇବାକୁ ସମୟ ମଧ୍ୟ ଲାଗିବ । ମୁଁ ଜାଣିପାରିଲି, ଯେଉଁଠି ସେହି କ୍ୱାଟରସ୍ ମିଳିବ, ତା'ର ଗୋଟିଏ ପାଖରେ ବାରବାଟୀ ଷ୍ଟାଡ଼ିୟମ୍‌ର ପ୍ରତିଷ୍ଠାତା ଭୈରବ

ମହାନ୍ତି ରହୁଥାନ୍ତି । ରେଭେନ୍ସା କଲେଜରେ ତାଙ୍କ ସାଙ୍ଗରେ ମୋର ଚିହ୍ନା ପରିଚୟ ହୋଇଥିଲା । ସେ ଆଣ୍ଟି କଂଗ୍ରେସ୍ ଥିଲେ ।

ଅଫିସ୍ କଥା କହୁଛି । ସକାଳ ସନ୍ଧ୍ୟା ଉକନହୁଏ । ରାଜକୃଷ୍ଣ ବୋଷ ଥା'ନ୍ତି ବିଭାଗୀୟ ମନ୍ତ୍ରୀ, ଆଇ.ସି.ଏସ୍.; ସାହାନୀ ଥାଆନ୍ତି ସେକ୍ରେଟେରୀ; ସୁଧୀର ବୋଷ୍ ହେଉଛନ୍ତି ଡିପାର୍ଟମେଣ୍ଟର ମୁଖ୍ୟ । ମୁଁ ତାଙ୍କ ପାଖରୁ ଉପଦେଶ ନିଏ । ସେ ଅଧିକାଂଶ ସମୟ ବାହାରେ ଘୁରାଫେରା କରୁଥାନ୍ତି । ଅଫିସରେ କମ୍ ବସନ୍ତି । ସଦାଶିବ ବାବୁ ଥାନ୍ତି ହେଡ କ୍ଲର୍କ । ଏମାନେ ସମସ୍ତେ ଭଦ୍ର ଲୋକ । ଅଳ୍ପଦିନ କାମ କରି ମୁଁ ବେଶ୍ ଆନନ୍ଦ ପାଇଲି । ଯଦିଓ କାମଗୁଡାକ ମୋତେ ଭଲ ଲାଗୁ ନଥାଏ । ଫୋନ୍‌ଟା ମୋତେ ସବୁଠୁ ଅଡୁଆ ଲାଗେ । ଗୁଡାଏ ପବ୍ଲିସିଟି ୱାର୍କର ଥା'ନ୍ତି ମଫସଲ୍‌ରେ । ସେମାନେ ଫୋନ୍‌କରନ୍ତି ବାରମ୍ବାର, ଦରମା, ଛୁଟି ବିଷୟରେ । ବିରକ୍ତ ହୋଇ "ଗୁଡ୍ ମର୍ଣ୍ଣିଂ" ଜାଗାରେ "ଗୁଡ୍ ନାଇଟ୍"; ସିଏ "ନମସ୍କାର" କହିବା ଜାଗାରେ ମୁଁ "ନମସ୍କାର" କହେ । ଏମିତି କେତେ ବିଭ୍ରାଟ । ମୟୂରଭଞ୍ଜରେ ଯେଉଁ କାମ କରୁଥିଲି, ତା'ର ଓଲଟା ।

ଚିନ୍ତାମଣି ଦାସ ମୋର ଜଣେ ବନ୍ଧୁ । ତାଙ୍କ ସହିତ ଖୁସିଗପ କରିବାକୁ ମୋତେ ଭଲଲାଗେ । ହେଡ୍ କ୍ଲର୍କ ମୋତେ ବହୁତ ଆଶ୍ୱାସନା ଦିଅନ୍ତି । ସମସ୍ତଙ୍କ ଉପରେ ଥା'ନ୍ତି "ଭଞ୍ଜ ଭାରତୀ"ର ପ୍ରତିଷ୍ଠାତା ବିଚ୍ଛନ୍ଦ ପଟ୍ଟନାୟକ । ମୁଁ ଏମ୍.ଏ. ପଢୁଥିଲା ବେଳେ ସେ Law ପଢୁଥିଲେ । ସେ ଜଣେ ଭଞ୍ଜପ୍ରେମୀ । ଭଞ୍ଜୀୟ ରୀତିରେ ସେ ଆଶୁ ଗୀତ ପ୍ରଣୟନ କରିପାରନ୍ତି । ଗୋଟାଏ କବିତାର କିଛି ଅଂଶ ମୋର ଏବେ ମନେପଡୁଛି ।

'ଏବେ ସେ ହୋଇବ ନାହିଁ'
ଏ' ବେଶ ହୋଇଲେ ପାଷାଣ ତରଳେ
ମଧୁତି ରହିବ କାହିଁ
ହସିତ ମାଧୁରୀ ମୋଦମ୍ କତୁରୀ
ମନ୍ଦେ ହସିଦେବୁ ନାହିଁ
ହସିବାର ହେଲେ ଝଲିଲା ବରରେ
ତରଙ୍ଗେ ନ ଦେବୁ ଚାହିଁ
କାଞ୍ଚିବାରେ ଭର ଭନ୍ଧତ ଉନ୍ନତି ଥିବୁରେ ଯେବେ ଲୁଚାଇ
ମୋରାଣ ସଂଗୀତ ଅଳସ ଭଞ୍ଜନେ
ଭୁକ ଟେକି ଦେବୁ ନାହିଁ ॥

ଥରେ ସେକ୍ରେଟେରୀ ସାହାନୀ ସାହେବ ଉତ୍କଳର ଉନ୍ନତିପାଇଁ କ'ଣ କ'ଣ କରାଯାଇପାରେ, ତାର ଏକ ରିପୋର୍ଟ ମୋତେ ଦେବାପାଇଁ କହିଲେ। ମୁଁ ବହୁ ପରିଶ୍ରମ କରି, ମହୀଶୂର ଓ ହାଇଦ୍ରାବାଦ ଆଦି ପୂର୍ବତନ ଗଡଜାତମାନଙ୍କର ଯେଉଁ ପତ୍ର ପତ୍ରିକା ବାହାରୁ ଥିଲା, ସେଗୁଡ଼ାକ ଅନୁସରଣ କରି ଦୀର୍ଘ ରିପୋର୍ଟଟିଏ ଦେଲି। ମୋର ସେହି ରିପୋର୍ଟକୁ ବିଚ୍ଛେଦ ତର୍ଜମାକଲେ ଏବଂ ସେ ଆଉ ଗୋଟିଏ ଓଲଟା report ଦେଲେ। ଦୁଃଖ ଓ ବିରକ୍ତିରେ ମୋର ହୃଦୟ ଭରିଗଲା। ମୋଟା ମୋଟି ଡିପାର୍ଟମେଣ୍ଟର କାମରେ ମୋର ମନ ମାନୁନଥାଏ। ଦରମା ମିଳିବ, କିନ୍ତୁ କାମରେ ଆନନ୍ଦ ନାହିଁ ବା ଉତ୍ସାହ ନାହିଁ। ଏମିତି ଚାକିରୀରେ ମୋର ସ୍ପୃହା ନଥିବା ସ୍ୱାଭାବିକ।

ଏହି ସମୟରେ ମୟୂରଭଞ୍ଜର ପ୍ରଧାନମନ୍ତ୍ରୀ ଶରତ୍ ଗାନ୍ଧୀଙ୍କ ଦେହ ଖରାପ ହେଲା। ମନ୍ତ୍ରୀ ହେବାପାଇଁ ଯେଉଁ ପୋଷାକପତ୍ର କିଣାଯାଇଥିଲା ତାହା ଅବ୍ୟବହୃତ ହୋଇରହିଲା। କଟକରେ ଥାଇ ଶୁଣିଲି- ସେ ମୋତେ ଖୋଜୁଥିଲେ ଓ ମନେପକାଉଥିଲେ। ମୋତେ ଭାରି ଦୁଃଖ ଲାଗିଲା ଯେ ଯେତିକି ସେ ଗୌରବ ଓ ସମ୍ମାନ ମୟୂରଭଞ୍ଜର ଲୋକମାନଙ୍କଠାରୁ ପାଇଥାନ୍ତେ, ତାହା ସେ ପାଇପାରିଲେ ନାହିଁ। ବାରିପଦା ହାସପାତାଲରେ ସେ ପଡିଥିଲାବେଳେ ଡଃ ହରେକୃଷ୍ଣ ମହତାବ ତାଙ୍କୁ ଦେଖିବାପାଇଁ ଯାଇଥିଲେ।

ଏହି ସମୟରେ ପଣ୍ଡିତ ନେହେରୁ କୋଣାର୍କ ଯାଇ ବୁଲି ଦେଖିଥିଲେ। ଏବଂ ତାଙ୍କର ଗୋଟାଏ ଜନସଭାର ବକ୍ତୃତାଟି ମୁଁ ଅନୁବାଦକରିଥିଲି। Cyclostyle କରି ଗୁଡାଏ କପି ମୟୂରଭଞ୍ଜ ଭିତରେ ବାଣ୍ଟିବା ବ୍ୟବସ୍ଥା କରିଥିଲି। ବକ୍ତୃତା ପ୍ରସଙ୍ଗରେ ଜବାହରଲାଲ କହିଥିଲେ- "ମୁଁ ନିଜେ ମୟୂରଭଞ୍ଜ ଗୁଳିକାଣ୍ଡ ବିଷୟରେ ତଦାରଖ କରିଛି ଏବଂ ମୋର ଦୃଢ଼ ବିଶ୍ୱାସ ଯେ, ମାତ୍ର ୯୦ ଜଣରୁ ଅଧିକ ଲୋକ ସେହି ଗୁଳିକାଣ୍ଡରେ ମରିନାହାନ୍ତି।"

ମୟୂରଭଞ୍ଜରେ କିନ୍ତୁ ଗୁଡାଏ ଲୋକ ମରିଛନ୍ତି ଏବଂ ଚାନ୍ଦିପୁର ବାଲିରେ ମୂର୍ଦ୍ଧାର ସବୁ ରାତି ଅଧିଆ ପୋତା ହୋଇଥିଲା ବୋଲି ଗୁଜବଉଠିଥିଲା। ଦିନେ ସକାଳିଆ କଚେରିରେ ମୋତେ ଡକରା ଆସିଲା ମୁଖ୍ୟମନ୍ତ୍ରୀ ଡଃ ମହତାବ ପାଖରୁ। ମୁଁ ଯାଇ ଦେଖିଲି- ଡଃ. ମହତାବଙ୍କ ସହିତ ଅଛନ୍ତି ମନ୍ତ୍ରୀ ରାଜକୃଷ୍ଣ ବୋଷ। ନୀଳମଣି ସେନାପତି ମୋତେ ପଚାରିଲେ- ସେମାନେ ମୋ ମୁହଁରୁ ଜାଣିବାକୁ ଚାହାନ୍ତି ସର୍ଦ୍ଦାର ପଟେଲଙ୍କୁ ଦେଖାକରିବାରେ କେତେ ଟଙ୍କା ଖର୍ଚ୍ଚହେଲା। ମୁଁ ବଡ ଅଡୁଆରେ ପଡିଲି। ମୁଁ ବଡ ଡରୁଆ ଲୋକ। ଆଗପଛ ନବିଚାରି ଅନେକ ସମୟରେ ଅନେକ କଥା କହିଯାଏ, କରିଯାଏ।

ମୋ ଛାତି ଦକଦକ ହେଉଥାଏ, କାଳେ ଧରାପଡିଯିବି କେତେ ଟଙ୍କା ମୋତେ ମିଳିଛି। Grey ରଙ୍ଗର ପୋଷାକ ପିନ୍ଧିଥିବା ଟୋକାଟା ସର୍ଦ୍ଦାରଙ୍କ ସହିତ ସାକ୍ଷାତ କରିବାପାଇଁ ଦଲାଲି କରି। ସାହସ କରି କହିଲି- "Oath of Secrecy" ନେଇ ନଥିଲେ ମଧ୍ୟ ମୁଁ ଗୋପନୀୟ କଥା କହିପାରିବି ନାହିଁ। ମୋ ପାଖରେ ଯଦିଓ ସେତେବେଳେ ଶରତ ଗାନ୍ଧୀ ଦେଇଥିବା ବ୍ୟାଙ୍କ ଚେକ୍ ନମ୍ବର ଓ ଡେଟ୍‌ର ରେକର୍ଡ ଥିଲା। ଭାଗ୍ୟ ଭଲ- ସେମାନେ ମୋତେ ଆଉ କେରା କମାନବନ୍ଦୀ କରି ନଥିଲେ ଓ ମୁଁ ମିଶ୍ରଣ ବିରୋଧୀ ବୋଲି ପ୍ରତିଶୋଧ ପରାୟଣ ହୋଇନଥିଲେ।

ଯାହାହେଉ, କ୍ରମେ କ୍ରମେ ମୁଁ ପ୍ରଚାର ବିଭାଗ ପ୍ରତି ବିମୁଖ ହୋଇଗଲି। କେମିତି ଖସିଯିବି ସୁବିଧା ସୁଯୋଗ ଖୋଜୁଥିଲି। ବନ୍ଧୁ ସୁଧୀର ବୋଷ ବହୁ ଚେଷ୍ଟା କରି ମୋପାଇଁ ରହିବା ସ୍ଥାନଟିଏ ଠିକଣାକଲେ। ବଡ ଡାକ୍ତରଖାନା ମୁହାଁମୁହିଁ ଯେଉଁ ସର୍କିଟ୍ ହାଉସ ଥିଲା- ତାର ପଛପଟକୁ ମହାନଦୀ କୂଳ ବନ୍ଧକୁ ଲାଗି ଷ୍ଟେନୋଗ୍ରାଫରପାଇଁ ୪, ୬ଟା କୋଠରୀ ଥିଲା। ତହିଁରୁ ୨ଟା ମୋତେ ଦିଆଗଲା। ଛୋଟ ଛୋଟ କୋଠରୀ ୧୨ ଫୁଟ୍‌ରେ ୧୨ ଫୁଟ୍ ହେବ, ବୋଧେ ମୋର ଦୁଇପଟେ ଦୁଇଜଣ କିରାଣି ରହିଥାନ୍ତି। ଜଣେ family ସହିତ ଆଉଜଣେ stenographer ଏକୁଟିଆ ଥାଏ। ବାରିପଦାରୁ ଛୁଆପିଲା, ଲୁଗାପଟା, କୁକୁଡା ମାଙ୍କଡା ଧରି ଟ୍ରେନ୍‌ରେ ଯାଇ ପହଞ୍ଚିଲି। ଅର୍ଥାତ୍ ସାଙ୍ଗରେ ସ୍ତ୍ରୀ, ୪ ପୁଅ ଓ ଝିଅ ଏବଂ ଦଣ, ବାର ବର୍ଷର ସାନଭାଇ ଓ ପାଞ୍ଚଟି ବିଲାତି କୁକୁଡା, ଦୁଇ ତିନିଟା ଜେଲଖାନାର ସବେଇ ଘାସରେ ବୁଣା ଚୌକି। ସେଇଠି ୪, ୫ ମାସ ମୋତେ ଯେଉଁ କଷ୍ଟ ଭୋଗିବାକୁ ପଡିଛି, ତାର ବର୍ଣ୍ଣନା କରିହେବ ନାହିଁ।

ଆଗରୁ କହିଛି- ବାରିପଦା ଛାଡିଲା ବେଳେ ୫୮ ଟଙ୍କା ମୋ ହାତରେ ଥିଲା। ସେତେବେଳେ pay slip ନ ଆସିଲେ ଦରମା ମିଳୁନଥିଲା। ମୋତେ ନୂଆକାଗାରେ ଧାର ଉଧାର କରି ଚଳିବାକୁ ପଡିଥିଲା। ମୁଁ ଯେମିତି ଅବିବେକୀ, ସେମିତି ଅପରିଣାମଦର୍ଶୀ। ସାଙ୍ଗରେ ଚାଉଳ ବି ନେଇନଥିଲି। ଶୂନରୁ କାହିଁକି minus(–)ରୁ ମୋତେ ଜୀବନ ଆରମ୍ଭ କରିବାକୁ ପଡିଲା। ୬ ବର୍ଷ ରେଭେନ୍‌ସା କଲେଜରେ ଷ୍ଟୁଡେଣ୍ଟ ଜୀବନ ଯେମିତି ମଧୁମୟ, ଆନନ୍ଦମୟ ଓ ଗୌରବମୟ ଥିଲା, ଏଇଠି ଠିକ୍ ତାର ଓଲଟା। ଦୁଃଖ, ଦୈନ୍ୟ, ଦାରିଦ୍ର୍ୟ ଭିତରେ ଜୀବନ କଟାଇବାକୁ ପଡିଲା। ଛୁଆ ପିଲାଙ୍କୁ typhoid, paratyphoid ଗୋଟିକ ପରେ ଗୋଟିକ ଧରିଲା। ଦ୍ୱିତୀୟ ଝିଅଟିକୁ ଗୋଟାଏ injection ଦିଆଗଲା ଯାହାଫଳରେ ତାର ଦିହ ଥଣ୍ଡା ହୋଇଗଲା। ମରିବ କି ବଞ୍ଚିବ ଦୁଇଦିନ ପରେ ଜଣା

ଗଲା । ଡାଃ ଗରିଜା ଶଙ୍କର ମହାପାତ୍ରଙ୍କ ସହିତ ମୋର ଚିହ୍ନା, ଆତ୍ମୀୟତା ଥିଲା । ଅସ୍ତବ୍ୟସ୍ତ ହୋଇ ତାଙ୍କୁ ମୋ ଦୁଃଖ କଥା କହିଲି । ସେ ଚାଲି ଚାଲି Medical Collegeରେ ପୂର୍ବ ପଟରୁ ପଶ୍ଚିମ ପାଚେରୀ ପଟକୁ ଆସିଲେ ଏବଂ ବହୁ ଯତ୍ନ କରି ମୋର ଝିଅ ଦେହରେ ଉତ୍ତାପ ଫେରାଇଆଣିଲେ ।

ଆଉ ଗୋଟିଏ ଦୁର୍ଘଟଣା ମଧ୍ୟ ସେହି ସମୟରେ ଘଟିଲା । ଛୁଆପିଲାଙ୍କପାଇଁ ଚାରି ଅଣାର ବାଦାମ ଓ ଚାରିଅଣାର ଗଯ୍ଯାକୋଳି ଧରି ରାଣୀହାଟରୁ ସାଇକେଲରେ ମଙ୍ଗଳାବାଗ ଆଡକୁ ଆସୁଥାଏ । ଦେଖିଲି ମୋ ସାମ୍ନାରେ ଦୁଇକଣ ପିଲା ସମାନ୍ତରଳ ଭାବରେ ଦୁଇଟା ସାଇକେଲରେ ପ୍ରଚଣ୍ଡ ଜୋର୍‌ରେ ମୋ ଆଡକୁ ଆସୁଛନ୍ତି । ମୁଁ ରାସ୍ତାର ମଝିରେ କେଉଁଠି ଚାଲିଥିଲି, ସେମାନେ ସମାନ୍ତରଳ ସରଳରେଖାରେ ଆସି ମୋର ପାଖରେ ଏମିତି ମିଶିଲେ, ଯହିଁରେ ମୁଁ ବାଁ ପଟରୁ ଯାଇ ଡାହାଣ ପଟର ସଡକ କଡରେ ପଡିଲି । ସେମାନେ ମଧ୍ୟ କୁଆଡେ ପଡିଲେ ମୁଁ ଜାଣିପାରିଲି ନାହିଁ । ଚେତା ଆସିଲା ବେଳକୁ ଦେଖିଲି ମୋ ମୁହଁ ପଶ୍ଚିମ ଓ ସାଇକେଲ ପୂର୍ବ ମୁହଁ ହୋଇଯାଇଛି । ମୁଁ ଯେଉଁ କୋଳି ଓ ବାଦାମ ଆଣିଥିଲି, ତାହା ମୋ ଚାରିପଟେ ଭିଣିହୋଇ ପଡିଛି । ରାସ୍ତାପ୍ରାୟ ଜନଶୂନ୍ୟ । ଯା' ହେଉ ବଂଚିଗଲି । କିଛି ବିଶେଷ କ୍ଷତିହେଲା ନାହିଁ ମୋର । ଯେତିକି ବାଦାମ ଓ କୋଳି ପାଇଲି, ତାକୁ ଧରି quarter ଆଡକୁ ଆସିଲି । ଛୁଆମାନଙ୍କୁ ଦେଲି ।

ସେହି ସମୟରେ ଆମର ଦୁରାବସ୍ଥାର ଅନୁମାନ କରାଯାଇପାରେ ଅନ୍ୟ କିଛି ସାମାନ୍ୟ କଥାରୁ । କୁକୁଡାଗୁଡାକ ଅଣ୍ଡା ଦେଉଥାଆନ୍ତି । ପୁଷ୍ଟି ଅଭାବରେ ଅନେକ ଦିନ ଅଣ୍ଡାଗୁଡିକ ନରମହୁଏ । ପାଖରେ ଗୋଟିଏ ତାଳଗଛର ବଡିଆ ବଡବଡ ତାଳ ପଡୁଥାଏ । ତାଳପିଠା ମୋର ବଡ ପ୍ରିୟ । କିନ୍ତୁ ସେଇ ଇଲାକାର ଲୋକ କହିଲେ, ସେଠି ତାଳପିଠା କେହି ଖାଆନ୍ତି ନାହିଁ । ମୋର ଛୁଆମାନେ ଯେତେ ତାଳ ଥିଲା, ତାହା ଫୋପାଡି ଦେଲେ । ଆମ ଘର ସେପାଖ ଗୋଟିଏ ଅଶ୍ୱସ୍ତ ଗଛ ମୂଳରେ ତିନି ଚାରି ଦଳ ଗୁଜୁରାଟୀ କରତିଆ ବଡବଡ କାଠ କାଟି ବିକୁ ଥାଆନ୍ତି ସକାଳୁ ସନ୍ଧ୍ୟା । ପତଳା କରତିଆ ଲୋକଗୁଡ଼ାକ । କିନ୍ତୁ ବହୁତ ଶକ୍ତି । ଭାତ ଓ ଡାଲ୍‌ମା, ଘିଅ ତାଙ୍କର ଆହାର । ଯେଉଁ ଲୁଗା ଗୁଡ଼ିକ ପିନ୍ଧିଥାଆନ୍ତି, ଝାଳରେ ସେଗୁଡାକ ଓଦା ହୋଇଯାଏ । ତାକୁ ଚିପୁଡି ପୁଣି ପିନ୍ଧନ୍ତି ।

ଦୈନିକ ଆମର ଅତେଇ ତିନିଟଙ୍କା ଦରକାର । ସାନଭାଇ କାଗଜ ଫୁଲ ବନେଇପାରେ । ସେ ବାଉଁଶ କାଠି ଓ କଇଁଚିରେ ରଙ୍ଗିନ କାଗଜ କାଟେ । ବଡଝିଅ ଅଠାରେ ସେଗୁଡା ଜୋଡି ଫୁଲକରେ । ଦୁହେଁ ମିଶି ସୁନ୍ଦର ରଙ୍ଗୀନ ଫୁଲ ତିଆରି କରନ୍ତି ।

ସକାଳୁ ସାନଭାଇକୁ ସାଙ୍ଗରେ ନେଇ ରାସ୍ତା ଦେଖାଇଦିଏ। ଗୋଟାଏ ଫୁଲକୁ ଦୁଇଅଣା ଦାମ୍‌ରେ ସେ ବିକ୍ରୀକରେ ଏବଂ ଅଳ୍ପ ବହୁତ ଯାହା ପଇସା ମିଳେ, ତାହା ନେଇ ଚାଉଳ କିଣାଯାଏ। ମହାନଦୀ କୂଳରେ ଆମେ ଥାଉ। ସନ୍ଧ୍ୟାହେଲେ ସାନଭାଇକୁ ସାଙ୍ଗରେ ଧରି ମାଛ ଧରିବାକୁ ଯାଏ। ପ୍ରଥମେ ପ୍ରଥମେ ଖାଲି ସୂତାରେ ଜିଆ ଗୁନ୍ଥି ଛୋଟ ବଡ ଚିଙ୍ଗୁଡି ଧରୁଥାଏ। ମାଛ ତରକାରି ପ୍ରାୟ ପ୍ରତିଦିନ ଦୁଇ ଓଳି ହୁଏ। ଜାଲ ପକାଇବାକୁ ଇଛା ହେଲା। କିନ୍ତୁ ଖୋଜି ଖୋଜି ଜାଲଗୋଟେ ମିଳିଲା ନାହିଁ। ଦିନେ ମହାନଦୀ ଆନିକଟ ପାଖକୁ ବୁଲିଯାଇଥିଲି। ସେଇଠି ପଚାରି ପଚାରି ବୁଝିଲି, ପାଖରେ କେଉଟ ସାହି। ସାହି ଭିତରକୁ ଗଲି, ଅକସ୍ମାତ୍ ଜାଲଟିଏ ମିଳିଗଲା। ପୁରୁଣା ଜାଲ। ଶିଖା ଗୋଡି। ସମୁଦାୟ ୨ ଟଙ୍କାରେ ମିଳିଲା। ଯେଉଁଦିନ କିଣିଲି, ସେ ଦିନ ସନ୍ଧ୍ୟାରେ ପ୍ରାୟ ୮ଟା ବେଳେ ସାନଭାଇ ସାଙ୍ଗରେ ନଦୀ ପାଖକୁ ଗଲି। ଭଗବାନଙ୍କୁ ସ୍ମରଣ କରି ଗାଧୁଆ ତୁଠରେ ଜାଲ ଫିଙ୍ଗିଲି। ପ୍ରାୟ କିଲେ ହେବ କଳାବାଉଁଶି ମାଛଟାଏ ପଡିଗଲା। ଜାଲ ପଇସା ଉଠିଗଲା। ସେହି ଜାଲରୁ ମୁଁ କେତେ ମାଛ ଖାଇଛି, ତାର ହିସାବ ନାହିଁ। ଦିନେ ନଈରେ ଗୋଳିପାଣି ଆସିଲା। ଶୁଖିଲା ବାଲି ଉପରେ ଆଙ୍ଗୁଳି ଦି ଆଙ୍ଗୁଳି ପାଣି ମାଡିବା ସଙ୍ଗେ ବଡ ବଡ ଚିଙ୍ଗୁଡି ଡିଆଁ ମାରିମାରି ଖେଳିବୁଲିଲେ। ଟର୍ଚ୍ଚ ପକାଇଲେ ସେମାନଙ୍କର ଆଖି ଗୁଡିକ ଜଳିଉଠେ। ପ୍ରାୟ ଦୁଇ ସେର ହେବ ଚିଙ୍ଗୁଡ଼ି ଧରି ଘରକୁ ଫେରିଲି। Departmentର pump light ଜଳୁଥାଏ। ତା ଆଗରେ ଚିଙ୍ଗୁଡ଼ି ସବୁ ବାରଣ୍ଡାରେ ଛାଡି ଦେଲି। ସେଗୁଡା ଯେତେବେଳେ ଖେଳିବୁଲିଲେ, ମନ ମୋର ବହୁତ ଖୁସିହେଲା। ପାଖ ଦୋକାନରୁ ଅଳ୍ପ ଟିକିଏ ତେଲ ଆଣି ଚିଙ୍ଗୁଡି ସବୁ ଭାଜିଲି। ତହିଁ ପରଦିନ ସକାଳୁ ବଳକା ଭଜା ଚିଙ୍ଗୁଡିକୁ ଧରି ଅଫିସ୍ ବାହାରିଗଲି। ଏବଂ ବଡବାବୁଙ୍କୁ ଦେଇଦେଲି। ବହୁତ ଖୁସିରେ ସେମାନେ ସମସ୍ତେ ଖାଇଲେ।

ଜାଲରେ ହେଉ ବା ବନିଶୀରେ ହେଉ ବା ଅନ୍ୟ ଯେଉଁ ଉପାୟରେ ହେଉ, ମାଛ ଧରିବା କଥା ପଡିଲେ, ମୋର ନିଦ ହୁଏନାହିଁ। ଜୀବନଟା ଯାକ ମୁଁ ମାଛଧରାକୁ ଶ୍ରେଷ୍ଠ hobby ବୋଲି ଭାବିଛି। ଦିନେ ଖରାଦିନେ, ଜହ୍ନ ଆଲୁଅ, ରାତି ୧୨ଟା ବେଳେ ଜାଲଟା ଧରି ବାହାରି ପଡିଲି। ମାଛ ଦରକାର ନଥିଲା। ଖାଲି ଖିଆଲରେ ଜାଲଧରି ସାନଭାଇ ସାଙ୍ଗରେ ନଦୀକୂଳକୁ ଚାଲିଗଲି। ଦେଖିଲି- କୂଳରୁ ମଝିନଈ ପର୍ଯ୍ୟନ୍ତ ଆଠଗଡ ଆଡୁ ଗୁଡାଏ ପାହାଡିଆ ବାଉଁଶ ବୋଝ ଭାସିଆସୁଛି। ଇଛାହେଲା ସେଗୁଡାକ ଉପରେ ମାଡିମାଡି ମଝି ନଈକୁ ଯିବି ଏବଂ ବାଉଁଶ ବୋଝ ଉପରେ ଛିଡାହୋଇ ଜାଲ ଫିଙ୍ଗିବି। ଅଗାଧ ପାଣି। ନିର୍ମଳ, ଶାନ୍ତ, ସ୍ଥିର। ଭାବିଲି ମାଛଗୁଡାକ ସେହି ବାଉଁଶ ବୋଝକୁ

ଆଶ୍ରାକରି ତଳେ ବିଶ୍ରାମ ନେଉଥିବେ। ରାତିରେ ଧୀରସ୍ଥିର ହୋଇ ଶୋଇ ସ୍ୱପ୍ନ ଦେଖୁଥିବେ। ଜାଲଟିକୁ ବଡିଆ ଫୁଟେଇ ବିସ୍ତୀର୍ଣ୍ଣ ସ୍ଥାନ ଦଖଲକଲି। ଭାବିଥିଲି ବଡମାଛ ଜାଲ ଭିତରେ ପଡି ଛଟ୍‌ପଟ୍ ହୋଇ କମେଇଦେବ। ଜାଲଟି ତଳେ ପଡ଼ିବା ପାଇଁ ଖୁବ୍ ସମୟ ଲାଗିଲା। ଉପରକୁ ଟାଣି ଆଣିବାକୁ ଚେଷ୍ଟା କଲି। କିନ୍ତୁ ଜାଲ ମୋଟେ ଆସିଲା ନାହିଁ। ଟିକେ ଜୋର୍‌ରେ ଟାଣିଲି, ପୁରୁଣା ଜାଲଟା ତ, କଟ୍‌କାଟ୍ କରି ଚିରିବାକୁ ଆରମ୍ଭ କଲା। ମୋର ଭୟଥିଲା, ଜାଲ ଲୁହା ତାରରେ କେବେ ଦିନେ ଲାଗିରହିବ। ଏତେ ରାତିରେ ପାଣି ଭିତରକୁ ବୁଡିବ କିଏ ? କୁମ୍ଭୀର ବି ଥାଇ ପାରନ୍ତି। ଜାଲଟା ବାଉଁଶ ବୋଝରେ ବାନ୍ଧି ଦେଇ ମନଦୁଃଖରେ ଘରକୁ ଫେରିଲି। ତହିଁ ଆରଦିନ ଭୋର ସକାଳୁ ଯାଇ ଦେଖିଲି, ଚୋରି ହୋଇନାହିଁ। କିନ୍ତୁ କଉଁଠି ଏତେ ଜୋର ଲାଗିଯାଇଛି ଯେ, ଉପରକୁ ଆସୁନାହିଁ। ୪/୬ ଜଣ କଟକିଆ ଟୋକା ଏହି ସମୟରେ ଗାଧୋଇବାକୁ ଆସିଲେ। ମୁଁ ତାଙ୍କୁ ଜାଲଟିକୁ ଉଦ୍ଧାର କରିବାକୁ ଅନୁରୋଧକଲି। ସେମାନଙ୍କର ଆନନ୍ଦର ସୀମା ନାହିଁ। ବୁଡିବାର ଆରମ୍ଭକଲେ। ହୋ ହୋ ହସୁଥାନ୍ତି। ଜାଲ ଉପରକୁ ଉଠାଇ ଆଣିବାକୁ ଚେଷ୍ଟାକରୁଥାନ୍ତି। କେତେବେଳେ ଛିଣ୍ଡା ଜାଲ ହାତେ ଦୁଇହାତ ନେଇ ଉପରକୁ ଆସୁ ଥାଆନ୍ତି। ସବାଶେଷରେ ଜାଲର ଲୁହା ଗୋଡ଼ିଗୁଡିକ ଉପରକୁ ଆସିଲା। ଖୁବ୍ ମନଦୁଃଖରେ କାନ୍ଦକାନ୍ଦହୋଇ ଘରକୁ ଫେରିଲି। ଏମାନଙ୍କ ଭିତରୁ ଦିକଣ ସେଦିନ ସେ ସାଇକେଲ୍ ଆକ୍‌ସିଡେଣ୍ଟ୍ କରିନଥିଲେ ତ !

ଏମିତି ଗୁଡାଏ ଅଦ୍ଭୁତ ରୋମାନ୍‌ଟିକ୍ ଘଟଣ ଅଘଟଣ ନେଇ ଜୀବନ କଟିଲା। ବାରିପଦା ଜୀବନର ଠିକ୍ ଓଲଟା। ବେଳେବେଳେ ଭାବିଲି- ଇଂରାଜୀ ପାଠପଢି ଅନର୍ସ ପାଇ ଏମ.ଏ. ପାସ୍ କରିବା (ରେଭେନ୍‌ସା ଓଡିଶାର ଏକମାତ୍ର ଇଂରାଜୀ ଏମ୍ ଏ. ଛାତ୍ର) କ'ଣ ବା ଲାଭହେଲା। ସମଗ୍ର ଷ୍ଟେଟ୍‌ରେ ଗୋଟିଏ ମାତ୍ର କଲେଜ। ସେଠି ଇଂରାଜୀ ଅଧ୍ୟାପକ ପାଇଁ ସ୍ଥାନ ନାହିଁ। ଡି.ପି.ଆଇ. ଶ୍ୟାମ ତ୍ରିପାଠୀ ମୋତେ ଅକ୍ଳେଶରେ ରଖି ଦେଇପାରିଥାନ୍ତେ। କିନ୍ତୁ ମହାରାଜାଙ୍କ କଥା ମାନି ମୁଁ ମୟୂରଭଞ୍ଜ ଛାଡିଲି ନାହିଁ। ସ୍କୁଲରେ ଟିଚର୍ ହେବା ଏବଂ କଲେଜରେ ଲେକ୍‌ଚରର ହେବା ମୋର ଜୀବନର ଲକ୍ଷ୍ୟ। ପାଠ ପଢ଼ାଇବାରେ ମୋର ସ୍ୱର୍ଗୀୟ ଆନନ୍ଦ। ମାତ୍ର ଫଳ କ'ଣ ହେଲା ? ଭାଗ୍ୟକୁ ନୂଆ ନୂଆ ତିନି ଚାରିଟା କଲେଜ ଖୋଲିଲା। କିନ୍ତୁ ସେଠିକାର ଚାନ୍‌ସ ମଧ୍ୟ ହରେଇଲି। ଦିନେ ଶିକ୍ଷାମନ୍ତ୍ରୀ ପଣ୍ଡିତ ଲିଙ୍ଗରାଜ ମିଶ୍ରଙ୍କ ପାଖକୁ ଗଲି। ସେ ଦୁଇପହରରେ ଶୋଇଥିଲେ। ତାଙ୍କର ନିଦ ଭାଙ୍ଗିଗଲା। ଖୁବ୍ ସହାନୁଭୂତି ସହିତ ମୋ କଥା ସେ ଶୁଣିଲେ। କହିଲେ, "ଆମେ ପୁରୀଆ ଲୋକ ତ ! ଭାଙ୍ଗ ଖାଇ ଶୋଇଯାଇଥିଲି।" ହାତଲେଖା ଦରଖାସ୍ତଟା

ନେଲେ ମୋ ହାତରୁ। ସେକ୍ରେଟେରୀ ସାହାନି ସାହେବ ଅତି ଆନନ୍ଦର ସହିତ ମୋର ଦରଖାସ୍ତଟି ତାଙ୍କ ପାଖକୁ ଫର୍‌ୱାର୍ଡ କରିଦେଇଥିଲେ। ଅଫିସ୍‌ରେ ସେତେବେଳକୁ ଫାଇଲ୍‌ରେ ମୋର ନୋଟିଙ୍ଗ ଦେଖି ଜାଣିପାରିଥିଲେ ଯେ, ଇଏ ଅଫିସ୍‌ପାଇଁ ଯେତେ ଉପଯୁକ୍ତ ନୁହଁ, କଲେଜପାଇଁ ସେତେ ଉପଯୁକ୍ତ। ପଣ୍ଡିତ ଲିଙ୍ଗରାଜ କହିଲେ, "କେତେ ଗୁଡାଏ ପୋଷ୍ଟପାଇଁ ଏବେ ଦରଖାସ୍ତ ପଡିଛି। ଆପଣ ସେହି ପୋଷ୍ଟପାଇଁ ଦରଖାସ୍ତ କରନ୍ତୁ। ମୁଁ ଏ ଦରଖାସ୍ତକୁ ପଠେଇ ଦେଉଛି।" ମୁଁ ଉତ୍ସାହିତ ହୋଇ ଫେରିଆସିଲି। ସେତେବେଳେ ଶୁଣିଲି- ଡେପୁଟି ମାଜିଷ୍ଟ୍ରେଟ୍‌ପାଇଁ ଗୋଟିଏ ବିଜ୍ଞାପନ ବାହାରିଛି। ସେଠି କୁଆଡେ ହଜାରେ ଖଣ୍ଡେ କେଣ୍ଡିଡେଟ୍ ଆସିବେ। ଲିଖିତ ପରୀକ୍ଷା ନାହିଁ, କେବଳ ଇନ୍‌ଟର୍ଭ୍ୟୁ ଏବଂ ସେଇଟାପାଇଁ ମଧ୍ୟ ମୁଁ ଦରଖାସ୍ତକଲି।

ମାତ୍ର କେଇଟା ଦିନ ଭିତରେ ଡାକରା ଆସିଲା Lecturer in English ପାଇଁ। ମୋର ପ୍ରସ୍ତୁତି କିଛି ନାହିଁ। ୧୧ ବର୍ଷ ତଳେ ଏମ.ଏ. ପାସ୍ କରିଥିଲି। ଏହି ଦଶନ୍ଧିଟି ସାରା ଇଂରାଜୀ ପଡିବା ବା ପଢେଇବା ସହିତ ମୋର ସମ୍ବନ୍ଧ ନାହିଁ। ଅଫିସ୍‌ରେ ଯେଉଁ ଇଂରାଜୀ ପେପର ଆସେ ତାକୁ ଓଲଟାଏ; ଇନ୍‌ଟର୍ଭ୍ୟୁପାଇଁ ନୁହେଁ, ଖବରପାଇଁ। ବାରିପଦାରେ ଥିଲାବେଳେ ଦେୱାନ୍, ମହାରାଜା, ସେକ୍ରେଟେରୀମାନଙ୍କ ଡାକରା (dictation) ଶୁଣେ। ସେମାନଙ୍କ ବରାଦ ଅନୁସାରେ କାମକରେ। ଭଞ୍ଜପ୍ରଦୀପ ସମ୍ପାଦନ କରେ। ଇଂରେଜୀ କହିଲେ ୩ ମାସିଆ Plan Equity ମୋର ସହଚର। ଇଂରେଜୀ ପଡିବା ବା ପଢେଇବା ମୋର ଅବକାଶ ନାହିଁ। ଇନ୍‌ଟର୍ଭ୍ୟୁକୁ ଡକରା ପତ୍ରଟି ଦେଖି ମୋର ହଲକ୍ ଶୁଖିଗଲା। ୩ଟା ଶବ୍ଦ ପାଇଲି, ଯେଉଁଗୁଡାକ ମୋର ମନରେ ଭୀତି ସଂଚାର କଲା। ସେଗୁଡାକ ହେଲା "dress and deportment"। Dictionary ଦେଖି ବୁଝିଲି ଯେ- ଏହାର ଅର୍ଥ ହେଲା, ମୋତେ ଭଲଭାବରେ ସାଜିବାଜି ହୋଇ ସର୍ଭିସ କମିଶନର ସାମ୍ନାରେ ଠିଆ ହେବାକୁ ପଡ଼ିବ। ମୁଁ କେବେ ଇନ୍‌ଟର୍ଭ୍ୟୁପାଇଁ କାହା ଆଗରେ ଠିଆହୋଇ ନଥିଲି। ସର୍ଭିସ୍ କମିଶନର୍ ଚେୟାରମ୍ୟାନ ଥିଲେ ଶ୍ୟାମା ଏଲ୍. ଦାଶ। ଭାରି ଗୁଣୀ ଓ ଜ୍ଞାନୀ। ମୋର ନିଜର ପୋଷାକ ପତ୍ର କିଛି ନ ଥିଲା। କାରଣ ବାରିପଦା ଚାକିରି କାଳ ଭିତରେ ଧୋତି ପଞ୍ଜାବି ପିନ୍ଧି କାମ ଚଳାଉଥିଲି। ଦରମା ବି ପାଇନଥିଲି ପୋଷାକ ତିଆରି କରିବାପାଇଁ। ବନ୍ଧୁ ଚିନ୍ତାମଣି ବାବୁଙ୍କୁ ମୋର ଦୁଃଖ କଥା କହିଲି। ସେ ମୋର ଅପେକ୍ଷା ବେଶ୍ ସୁସ୍ଥ ସବଳ। ତାଙ୍କ ଜାମା ପ୍ୟାଣ୍ଟ ମୋତେ ଢୁଏତ ଢିଲାହେବ। ତାଙ୍କ ସ୍ତ୍ରୀ ମୋତେ ସାହାଯ୍ୟକଲେ। ସ୍ୱାମୀଙ୍କ ସାର୍ଟ ପ୍ୟାଣ୍ଟତକ ମଣ୍ଡ ଦେଇ କଡା ଇସ୍ତ୍ରୀ କରିଦେଲେ- ଯାହା ଫଳରେ ଢିଲା ନ ହୋଇ ଟାଇଟ୍‌ହେବ। ଇନଟର୍ଭ୍ୟୁ ଆଗରୁ ତାଙ୍କରି ଘରେ ମୁଁ ସକବାଜ

ହେଲି । ଗୁଡାଏ ଲୁଚି ଓ ଆଳୁଦମ୍ ଖାଇବାକୁ ଦେଲେ । ପାଣି ୨, ୩ ଗ୍ଲାସ ପିଇଲି । ପେଟଟା ଟାଇଟ୍ ହୋଇଗଲା ଏବଂ ପେଣ୍ଟ ସାର୍ଟ ଫିଟ୍‌କରିବା ପରି ଲାଗିଲା ।

ବନ୍ଧୁ ମୋତେ ନେଇଗଲେ କଫଲା ବଜାର । ସେଠି ଇନ୍‌ଟର୍ଭ୍ୟୁ ହେଉଥାଏ । କାରଣ ସ୍ୱତନ୍ତ୍ର ପବ୍ଲିକ୍ ସର୍ଭିସ୍ କମିଶନର୍ ଅଫିସ୍ ନଥାଏ । ଗୁଡାଏ ସମୟ ମୋତେ ଅପେକ୍ଷା କରିବାକୁ ପଡିଲା । ୫ଟା ପୋଷ୍ଟକୁ ୩ ଜଣ କେନ୍‌ଡିଡେଟ୍ । ସେହି ମୋର ଏକମାତ୍ର ଆଶା ଭରସା । ସଂଖ୍ୟା ଦୃଷ୍ଟିରୁ ଚାକିରି ପ୍ରାୟ ନିଶ୍ଚିତ । ମୋର ଆଗ ଦୁଇକଣ କେନ୍‌ଡିଡେଟ୍‌ଙ୍କୁ ବହୁତ ବେଶି ପ୍ରଶ୍ନ ପଚ଼ରାଓଚ଼ରା କଲେ । ଅପେକ୍ଷାରତ ଥିଲା ବେଳେ ମୁଁ କ୍ରମେ କ୍ରମେ ଦମ୍ଭହୀନ ହେଉଥାଏ । ମୋତେ ଡାକରା ହେଲା ବେଳକୁ ଖାଇଥିବା ସବୁ କିନିଷ ହଜମ ହୋଇଯାଇଥିଲା । ଅଣ୍ଟା ଓ ପେଟର ସାଇଜ୍ ଏକାବେଳେ କମିଯାଇଥିଲା । ସର୍ଭିସ୍ କମିଶନର୍ ଏକ୍ସପର୍ଟ ବା ସ୍ପେସାଲିଷ୍ଟ ଥିଲେ ପି.ଏସ୍. ସୁନ୍ଦରମ୍ । ଇଂରାଜୀରେ ଯେମିତି ରଥି ଓ ପୋଷାକ ପତ୍ରରେ ମଧ୍ୟ ସେମିତି ନିଖୁଣ । ମୁଁ ଏମ୍.ଏ.ରେ ତାଙ୍କର ଏକମାତ୍ର ଛାତ୍ର ଥିଲି । ମୁଁ ତାଙ୍କୁ ହିଁ ଦେଖି ଫଳାଫଳ ଉପରେ ଆଶାନ୍ୱିତ ଥିଲି । ମୋତେ ଦେଖି ସେ ଚିହ୍ନିପାରିଲେ ନାହିଁ । ପ୍ରଶ୍ନଟି ପଚାରିଲେ, "Would you please deliver a talk on Shelley ?" ମୁଁ ହତବୁଦ୍ଧି ହୋଇଗଲି । Publicity worker ମାନଙ୍କର ଛୁଟି, ଦରମା, ଆପତ୍ତି ଅଭିଯୋଗ ଶୁଣି ମୋର ମଥା ଖରାପ ହୋଇଯାଇଥାଏ । ମୁଁ ଘାବରେଇ ଗଲି । ଟିକେ ଦମ୍ଭପାଇବା ପାଇଁ ମୁଁ ଓଲଟି ପ୍ରଶ୍ନଟିଏ ପଚାରିଲି, "ସାର୍ । ମୁଁ ବସିକରି କହିବିନା, ଲେକଚାର୍, ମାନେ କ୍ଲାସ୍‌ରେ ଯେମିତି ଠିଆହୋଇ କହନ୍ତି, ସେମିତି କହିବି ?" ଏହି ପ୍ରଶ୍ନଟି ପଚାରୁ ପଚାରୁ ମୁଁ Shelley ବିଷୟରେ କ'ଣ କହିବି ଭାବିନେଲି । "Better sit and talk" expert Sundaram କହିଲେ । ମୁଁ ଆରମ୍ଭ କରିଦେଲି : "A beautiful ineffectual angel beating his luminous wings in void in vain" said Matthew Arnold. Later critics have differed from this view: They have commented that the only void we could think of is in Matthew Arnold" । ସେତିକିରେ ମୋତେ ବନ୍ଦ କରିଦେଲେ ସୁନ୍ଦରମ ସାର୍ । ତାପରେ ପଚାରିଲେ, "ଗୋଟିଏ ଆଧୁନିକ କବିତା recite କରିପାରିବ ?" ମୁଁ କହିଲି- "ମୁଁ ଧାଡିଏ ମଧ୍ୟ ଆଧୁନିକ କବିତାରୁ କହିପାରିବି ନାହିଁ । କେବେ ପଢିଥିଲି ମନେ ନାହିଁ ।" ତାପରେ ଆଉ ଗୋଟିଏ ଦୁଇଟା ପ୍ରଶ୍ନ ଆଧୁନିକ ଲେଖକମାନଙ୍କ ସମ୍ପର୍କରେ ପଚାରିଲେ । ମୁଁ କୌଣସି ଉତ୍ତର ଦେଇପାରିଲି ନାହିଁ । ସୁନ୍ଦରମ୍ କହିଲେ "old fashioned and outdated" ଅର୍ଥାତ୍ ପୁରୁଣା କାଳିଆ । ଆଧୁନିକ କବିତାର ଧାର ଧାରନ୍ତିନି । ସେତେବେଳକୁ ମୁଁ

ଭାବିଚାଲିଥାଏ, କେମିତି ସେମାନଙ୍କ ଆଗରୁ ଖସିଯାଇ କୋଠରିରୁ ବାହାରି ଆସିବି। ପ୍ୟାଣ୍ଟଟି ଏକାବେଳେ ଢିଲା ହୋଇଗଲାଣି। ହଠାତ୍ ବୁଲିପଡି ପ୍ୟାଣ୍ଟକୁ ଗୋଟିଏ ହାତରେ କାବୁଡିଧରି ବାହାରକୁ ପଳାଇଆସିଲି। ମୋର ଉପଲବ୍ଧି ହେଲା ଯେ, ଇନ୍‌ଟର୍ଭ୍ୟୁରେ ମୁଁ ଫେଲ୍।

ଅଳ୍ପ କେତେଦିନ ପରେ ଆସିଲା O.A.S.-II, interview। ଶୁଣିଲି ପ୍ରାୟ୍ ହଜାରେ ପ୍ରାର୍ଥୀ ଅଛନ୍ତି। ଲିଖିତ କିଛି ପରୀକ୍ଷା ନାହିଁ। ସବୁ ମୌଖିକ। ଯେତେଶୀଘ୍ର ଆମକୁ ବିଦା କରିଦେଲେ Commission ସେତିକି ଖୁସିହେବେ। କଣ ପଚାରିଲେ ଓ ମୁଁ କଣ ଉତ୍ତର ଦେଲି, ତାହା ମନେନାହିଁ। ଏ ଚାକିରିରେ ମୋର ଆଗ୍ରହ ନାହିଁ। ତଥାପି 'ପଛଘୁଞ୍ଚା ନାହିଁ ବୀରର ଜାତକେ'। ଅଳ୍ପଦିନ ପରେ ଯୋଡିଏଯାକର ଫଳ ମିଳିଗଲା । English Lecturer post ପାଇଲି। ୫ଟା ସ୍ଥାନକୁ ୩ଟି ପ୍ରାର୍ଥୀ। O.A.S. ମଧ୍ୟ ପାଇଲି। O.A.S.ରେ ସପ୍ତମ ସ୍ଥାନ ପାଇଲି। Interview ଦିନ ମୋତେ Chairman କହିଲେ- ଆପଣ ଦୁଇଟି ପୋଷ୍ଟରୁ କୋଉଁଠି ଆପଣଙ୍କର ଗ୍ରହଣ ଯୋଗ୍ୟ ହେବ, Lecturer ନା Deputy ? ମୁଁ କହିଲି, "ମୋତେ Lecturer ଚାକିରିଟା ଦିଅନ୍ତୁ।" ଶୁଣାଗଲା- କେଉଁ Departmentକୁ Commission ମୋ ବିଷୟରେ ଲେଖିଛି "ଆମେ ତାକୁ ଯୋଡିଏ ଯାକ ପଦପାଇଁ ଯୋଗ୍ୟ ବିବେଚିତ କରିଛୁ। କିନ୍ତୁ ସେ ଲେକଚରର ହେବାପାଇଁ ଚାହୁଁଛି। ତେଣୁ ତାକୁ ଲେକଚର ହେବାପାଇଁ ଦିଆଯାଉ।" ଦୁଇ ଦିନ ପରେ କଟକ ଷ୍ଟେସନ୍‌କୁ ଯାଇଥାଏ। ସେଇଠି ପ୍ରଥମେ ଲାଲା ଗୋବିନ୍ଦ ବାବୁଙ୍କ ସହିତ ଦେଖାହେଲା। ସେ ଆଇ.ଏ.ଏସ୍. ହୋଇ ଢେଙ୍କାନାଳ ଯାଉଛନ୍ତି। ସେ ମୋର ହିତକାଂକ୍ଷୀ। ତାଙ୍କୁ ପଚାରିଦେଲି, "ଡେପୁଟି ନା ଲେକ୍‌ଚରାର୍ ହେବି ସାର୍ ?" ସେ କହିଲେ, "ଲେକ୍‌ଚରାର୍ ହୁଅ।" ପରେ ପରେ ସେହି ପ୍ଲାଟ୍‌ଫର୍ମରେ ଜଣେ ନୂଆ ଆଇ.ପି.ଏସ୍‌ଙ୍କୁ ଭେଟିଲି। ସେ ଏସ୍.ପି. ହେବାପାଇଁ ପୁରୀ ଯାଉଥାନ୍ତି। ତାଙ୍କୁ ବି ସେହି ପ୍ରଶ୍ନ ପଚାରିଲି। ସେ କହିଲେ, "ବେଟର୍ ଗେଟ୍ ଇନ୍‌ଟୁ ଏ କଲେଜ।" କୌଣସି ବିଷୟରେ କେବେ ଏ ଦୁଇଜଣଙ୍କର ଏକମତ ଥିବାର ଜାଣିନାହିଁ। ସେ ଆଇ.ପି.ଏସ୍. ଆହୁରି ମଧ୍ୟ କହିଲେ- "ଅନ୍ୟ ଦୃଷ୍ଟିରୁ ଡେପୁଟି ଚାକିରି ଭଲ ଯେ, କିନ୍ତୁ ମନ୍ତ୍ରୀଙ୍କ ପାଖରେ ଡାନସ୍ ଆଟେଣ୍ଡାନ୍‌ସ କରିପାରିବ ନାହିଁ।"

ସାମନ୍ତ ଚନ୍ଦ୍ରଶେଖରଙ୍କର କଲେଜରେ ମୋର ନିଯୁକ୍ତିପତ୍ର ଆସିଲା। ପ୍ରଥମେ ସମ୍ବଲପୁର ହୋଇଥିଲା। ଜଗନ୍ନାଥଙ୍କ ଡୋର ମୋର ବେକରେ ପଡିଲା। ବହୁଦିନ ପରେ ଆନନ୍ଦମିଳିଲା ଯେ, ଯେଉଁ ଚାକିରି ବର୍ଷ ବର୍ଷ ଧରି ଖୋଜୁଥିଲି, ସେଇଟା ପାଇଲି।



## ॥ ଚଉରାଳିଶ ॥

ମୁଁ ତହିଁ ପରଦିନ ଫେର କୁକୁଡା ମାଙ୍କଡ ବାନ୍ଧି ଜଗନ୍ନାଥ ଧାମକୁ ଚାଲିଲି । ଜିନିଷ ପତ୍ର ସେମିତି ଗୁଡାଏ ନଥିଲା । ଗୋଟାଏ ଦୁଇଟା ସାଧାରଣ କାଠ ଚେୟାର, ଦୁଇଟା ଖଟ, ଅଚଞ୍ଚା ଶାଳ କାଠ, Folding ଖଟ । କିନ୍ତୁ ସେଗୁଡାକ ଉପରେ ରାତିରେ କୁକୁଡା ବିଶ୍ରାମ ନେଉଥିଲେ । କାଠ ଖଟ ଦୁଇଟାକୁ ୨୮ ଟଙ୍କାରେ ପ୍ରିଣ୍ଟର୍ ପଦ୍ମ ବାବୁ (ପଦ୍ମଲୋଚନ ଦାଶ) ପାଖରୁ କିଣିଥିଲି । ସାମାନ୍ୟ କିଛି ଏମ୍.ଏ. କ୍ଲାସ୍‌ର ମାଗିଅଣା ବା ଚୋରିକରା Everyman Library Collection । ଜୀବଜନ୍ତୁ କହିଲେ ଆଲେକ୍‌ଜାଣ୍ଡାର୍ ବୋଲି ବଡ ଗଂଜାଟାଏ, ସେଇ ଜୀବଟି ଦର୍ଶନୀୟ ଓ ତାର ଫେମିଲି । ବାକି ଦରମା ଟଙ୍କା ଯେତେ, ଦୈବକୁ ସେତିକି ବେଳେ ମିଳିଗଲା । ପ୍ରାୟ ୧୩୫୮ ଟଙ୍କା । ଧାର୍‌ରେ କଟକରେ ଚଳୁଥିଲି । ସବୁ ପଇସା ଧାର୍ ଶୁଝିବାରେ ଖର୍ଚ୍ଚହୋଇଗଲା । ଯେଉଁ କେତେ ଟଙ୍କା ରହିଲା ତାହା ରିକ୍ସାଭଡା ଓ ଟ୍ରେନ୍ ଭଡାପାଇଁ । ଅର୍ଡର ପାଇବା ସଙ୍ଗେ ସଙ୍ଗେ ଏକାଦିନରେ ପୁରୀ ବାହାରି ଯିବାର ଅର୍ଥ, ଭୟହେଲା କାଳେ ନିଯୁକ୍ତି ଅଡରଟା କେନ୍‌ସେଲ୍ ହୋଇଯିବ । ପୁରୀରେ ପହଞ୍ଚିଲି ପ୍ରାୟ ୫ଟା ସମୟରେ । ଫେମିଲି ମେମ୍ବର କହିଲେ ୯/୧୦ ବର୍ଷର ପୁଅ ଆଉ ଗୋଟିଏ ଦୁଇଟା ଝିଅ ଆଉ ସେମାନଙ୍କର ମାଆ । ମହାମହିମ ପୋଲିସ ସାହେବ ଗୋଟିଏ ଚପରାସୀ ସହିତ ଷ୍ଟେସନକୁ ଗାଡି ପଠାଇଥାନ୍ତି । ଉଦ୍ଦେଶ୍ୟ ଯେଉଁ ଘର ସେ ଆମପାଇଁ ଠିକ୍ କରିଥାନ୍ତି ସେହି ଘର ଦେଖାଇ ଦେବାପାଇଁ । ଘରଟିର ଅବସ୍ଥିତି ଏକାବେଳେ ସମୁଦ୍ର କୂଳରେ । ନୋଳିଆ ସାହିରେ, ଚାରିଆଡେ ମାଛ, ଜାଲ, ଶୁଖୁଆର ଗନ୍ଧ । ଘରଟି ପୁରୁଣା କାଳିଆ, ଲୁଣିପାଣିରେ ଚୂନ ଧୋଇହୋଇ ଯାଇଛି, ଖସି ପଡିଛି, ଭଡା ବହୁତ ବେଶି । ୫୦ ଟଙ୍କା । ଯାହା ହେଉ, ରହିବାପାଇଁ ଆମପକ୍ଷେ ଯଥେଷ୍ଟ । ସମୁଦ୍ର ଗର୍ଭରେ ରହିବାପାଇଁ ବହୁତ ଇଚ୍ଛା । ଅହରାତ୍ର ବଡବଡ ଢେଉର ଶବ୍ଦ, ଗଛବୃଛ କାହିଁ କିଛି ନାହିଁ, ଫୁଲଗଛ କହିଲେ ଗୁଡାଏ ବଣୁଆ ଗନ୍ଧହୀନ ଗୋଲାପୀ ରଙ୍ଗର ଆଇଁଶକାତି ଫୁଲ । ସେହି ଫୁଲରେ ଠାକୁର ପୂଜା ହୁଏ ନାହିଁ । କୁକୁଡା ରଖିବା ପାଇଁ ଭିତର ଅଗଣାରେ ପ୍ରଶସ୍ତ ସ୍ଥାନ । ବାହାର କମ୍ପାଉଣ୍ଡରେ ସେଗୁଡାକ ଦିନସାରା ଘୁରାଫେରା କରନ୍ତି । ମୋଟା ମୋଟା ହେଇଥିବାରୁ ଉଡି ଯାଇପାରନ୍ତି ନାହିଁ । ୩/୪ଟା ମାତ୍ର । ମୋ ଭଳି ପାହାଡିଆ ଲୋକଙ୍କପାଇଁ ସ୍ଥାନଟି ବୈପରିତ୍ୟରେ ବେଶ୍ ଆକର୍ଷଣୀୟ । ଖେଳିବାପାଇଁ ଛୁଆମାନଙ୍କପାଇଁ ଯଥେଷ୍ଟ ବାଲି । ସକାଳୁ ଉଠି ସୂର୍ଯ୍ୟୋଦୟ ଦେଖା । ଉପର ବେଳା ସମୁଦ୍ରବାଲିରେ ଘୂରାଫେରା କରୁ କରୁ ସୂର୍ଯ୍ୟାସ୍ତ ଦେଖିବା, ନୋଳିଆ ପିଲାମାନେ

ଦେଇଥିବା କଙ୍କଡା, ଛୋଟ ଛୋଟ ମାଛଖାଇବା ଇତ୍ୟାଦି ଉଲ୍ଲେଖଯୋଗ୍ୟ ଅନୁଭୂତି। ଛୋଟଛୋଟ ଢେଉରେ ଛୁଆମାନଙ୍କୁ ଗାଧୋଇବାପାଇଁ ବଡିଆଲାଗେ। ସ୍ତ୍ରୀ ପହଁରା ଜାଣନ୍ତି। ତାଙ୍କୁ ସମୁଦ୍ର ଡରନାହିଁ। ମୁଁ ବରଂଚ ଡରେ। ଢେଉ ଭାଙ୍ଗି ସେ ବହୁତ ଆନନ୍ଦପାନ୍ତି। ମୋଟାମୋଟି ବାରିପଦା ଓ କଟକ ଅପେକ୍ଷା ସ୍ଥାନଟି ଆମ ପକ୍ଷରେ ବେଶ୍ ଆନନ୍ଦମୟ। ଦିନେଦିନେ ରାତିରେ ପବନ ଏକାବେଳେ ବନ୍ଦ ହୋଇଯାଏ, ପୁଣି କେତେବେଳେ ସୁଲୁସୁଲିଆ ପବନ ସମୁଦ୍ରଆଡୁ ମାଡିଆସେ।

ସନ୍ଧ୍ୟାବେଳେ ଦିନେ ଦିନେ ପୋଲିସ ସାହେବଙ୍କ ଘର ଆଡେ ବୁଲିବାକୁ ଯାଉଁ। ତାଙ୍କୁ ବଳି ଅତିଥି ପରାୟଣରେ ଲୋକ କ୍ୱଚିତ୍ ଦେଖାଯାନ୍ତି। ଥରେ ସେ ମୋତେ ହରିଣ ଶିକାରକୁ ଡାକିଥିଲେ, ରାତି ଅଧିଆ। ବନ୍ଧୁକର ଗୁଳି ଶବ୍ଦ ମୋତେ ବଡ ଆତଙ୍କଦିଏ। ତଥାପି ତାଙ୍କ ସହିତ ଯାଉଥିଲି। ଦୟାନଦୀ ଯେଉଁଠି ସମୁଦ୍ରରେ ମିଶିଛି, ତାହାରି ପାଖରେ ଝାଉଁ ଓ ପଳାଶ ବଣ। ସେଇଠି ଗୁଳି ଶବ୍ଦ ମୁଁ ଶୁଣିଲି ଓ ଅସ୍ତବ୍ୟସ୍ତ ହୋଇଗଲି। ସଙ୍ଗେସଙ୍ଗେ ଜଣେ ପୋଲିସ କନେଷ୍ଟବଳ ବଣଭିତରୁ ଗୋଟାଏ ଘାୟଲ ହୋଇଥିବା ହରିଣକୁ ବହିଆଣିଲା। ସେ ଦୃଶ୍ୟ ମୁଁ ଦେଖି ପାରେନାହିଁ। ରାତି ଅଧରେ ଘରେ ମାଂସ ପହଞ୍ଚିଲା। ଶୁଣିଲି, ହରିଣଟି ପେଟରେ ପିଲା ଥିଲା। ମୁଁ ବଡ ଦୁଃଖିତ ହେଲି ଏ ନୃଶଂସ ଶିକାରରେ, ଏବଂ ସେ ମାଂସ ଖାଇପାରିଲି ନାହିଁ।

୧୩ ତାରିଖ ସେପ୍‌ଟେମ୍ବର ୧୯୪୯ରେ ମୁଁ ସାମନ୍ତ ଚନ୍ଦ୍ରଶେଖର କଲେଜରେ ଇଂରାଜୀ ଅଧ୍ୟାପକ ରୂପେ ଯୋଗଦେଲି। ମୋର ଛାତି କୁଣ୍ଢେମୋଟ ହୋଇଗଲା। ସେତେବେଳକୁ ବଲାଙ୍ଗୀର, ବାଲେଶ୍ୱର, ପୁରୀ କଲେଜମାନ ଅଳ୍ପଦିନ ଆଗରୁ ଖୋଲିଥାଏ। ହେଲେ ମୁଁ ବଡ ଡରିଗଲି। ୧୦/୧୧ ବର୍ଷ ପୂର୍ବେ ଯେତେବେଳେ ମୁଁ ବାରିପଦା ସ୍କୁଲରେ ଯୋଗଦେଇଥିଲି (୫/୮/୧୯୨୯) ସେତିକି ବେଳେ ଯାହା ଇଂରାଜୀ ପଡେଇ ଥିଲି। ପ୍ରାୟ୍ ଏହାଭିତରେ ଭୁଲିଗଲିଣି। କଲେଜରେ ସେତେବେଳେ T. Jairman Head of the Deparment ଥାଆନ୍ତି। ତାଙ୍କୁ ଅନୁରୋଧ କରି ମୁଁ first year ରେ Matthew Arnold ଙ୍କର "ସୋହରାବ ଓ ରୁସ୍ତମ" ପଢେଇଲି। ଅନର୍ସ ପାଇଁ ଆଗ୍ରହ ଦେଖାଇବାରୁ ସେ ମୋତେ Galsworthyଙ୍କର "Justice" ପଡାଇବାପାଇଁ କହିଲେ। ପୁରୁଣା "ମାନେ" ବହି ଦେଖି ଭଲ ଭାବରେ ପ୍ରସ୍ତୁତହୋଇ ପାଠପଢେଇଲି। ପିଲାମାନଙ୍କର ଯେ କି impression ହେଲା ମୁଁ କହିପାରିବି ନାହିଁ। ତଥାପି ବିରାଟ ହଲରେ ପିଲାମାନଙ୍କ reaction ମୋତେ ବହୁତ ଆଶ୍ୱାସଦେଲା। ୧୯୩୮ ରେ କିଣିଥିବା

ଇଂରାଜୀରେ Raleigh cycleରେ ମୁଁ ଯା'ଆସ କରେ। ସେତେବେଳେ ପ୍ରିନ୍‌ସପାଲ୍ ଥାନ୍ତି କିଶୋରୀ ମୋହନ ଦ୍ୱିବେଦୀ। ମୋର ଏବେବି ମନେ ପଡୁଛି ବାପ ପୁଅ କେମିତି ପରସ୍ପରକୁ ଖୋଜା ଖୋଜି କରନ୍ତି ସିଗାରେଟ୍ ପିଇବା ବିଷୟରେ।

ଦିନେ କଲେଜ ପାଖରେ ଥିବା, ପୁରୀ ହୋଟେଲ ଦେଖିବା ପାଇଁ ଯାଇଥିଲି। ବିଶ୍ୱକବି ରବୀନ୍ଦ୍ରନାଥ ଠାକୁର ସେଠାରେ ରହୁଥିଲେ ଓ କାବ୍ୟ କବିତା ଲେଖୁଥିଲେ। ସମୟ ମିଳିଲେ ସଞ୍ଜବେଳେ ଜଗନ୍ନାଥ ଦର୍ଶନକୁ ଯାଏ। ସ୍ତ୍ରୀ ଛୁଆମାନଙ୍କୁ ଧରି ଥରେ ଶିବରାତ୍ରି ସମୟରେ ଶ୍ରୀ ଲୋକନାଥ ମନ୍ଦିରକୁ ଯାଇଥିଲି। ପୁରୀରେ ଧର୍ମସ୍ଥାନ ସଂଖ୍ୟାତୀତ। ଯେତେ ଦେଖିଲେ ବି ସରିବ ନାହିଁ। ପ୍ରତ୍ୟେକ ସ୍ଥାନ ସହିତ ଗୋଟିଏ ଗୋଟିଏ କାହାଣୀ ବି ରହିଛି। ପଣ୍ଡାମାନଙ୍କ ସହିତ ଭେଟହେଲେ ସେମାନେ ସବୁ କାହାଣୀ କହିବାକୁ ଛାଡିଲେ ନାହିଁ। ପଇସା ନେବାପାଇଁ ମଧ୍ୟ ଛାଡିଲେ ନାହିଁ। ସ୍ତ୍ରୀଙ୍କୁ ଛୁଆମାନଙ୍କୁ ମୁଁ ଅନେକ ଦର୍ଶନୀୟ ସ୍ଥାନ ଦେଖାଇଛି ଓ ନିଜେ ମଧ୍ୟ ଦେଖିଛି। ଇନ୍ଦ୍ରଦ୍ୟୁମ୍ନ ପୁଷ୍କରିଣୀ ପାଖରୁ (ଯେଉଁଠି ବଡ ବଡ କୁରୁମ ଥା'ନ୍ତି। ନାମ ଧରି ଡାକିଲେ ଶୁଣନ୍ତି ଓ ଆସି ହାତରୁ ନେଇ ଯାନ୍ତି ଲଡୁ) ନରେନ୍ଦ୍ରରେ ଠାକୁରମାନଙ୍କର ଚାପଖେଳ ଦେଖିଛି। ରେଳବାଇ ହୋଟେଲ୍, ରେଳଷ୍ଟେସନ, ସୁନାର ଗୌରାଙ୍ଗ ଠାରୁ ଆରମ୍ଭ କରି ସ୍ୱର୍ଗ ଦ୍ୱାର ପର୍ଯ୍ୟନ୍ତ, ସବୁ ଦେଖିଛି। ପୁରୀ ସହରରେ ଖାଲିପାଦରେ ଚାଲିବାକୁ ଭୟଲାଗେ। ଭୋଗକୁଣ୍ଡି ଟୁକୁରା ପ୍ରତି ଇଞ୍ଚ ଜାଗାରେ। ଯେମିତି ପ୍ରତି ଇଞ୍ଚ ଜାଗାରେ ରଥଯାତ୍ରାରେ ମଣିଷ। ପ୍ରତିଦିନ ସକାଳୁ ଲାଲ୍ ଟକଟକ ବାଳଭାନୁଟି ମା କୋଳକୁ ପିଲା ପରି ଡେଇଁ ଆସି ଓ ପୁଣି ପଶ୍ଚିମ ଦିଗକୁ ଖସିଯାଇ ଅଦୃଶ୍ୟ ହୋଇଯାଏ। ପାହାଡ଼ ପରି ବିରାଟ ବିରାଟ ଢେଉ। ହେଲେ ସେହି ଏକାଜିନିଷ ଦେଖି ଦେଖି ସୁନ୍ଦର ତୃପ୍ତିରେ ବି ଅବସାଦ ଆସିଯାଏ। ସେହି ଡଙ୍ଗା, ସେଇ ନଡିଆ ଗଛ ଦେଖିଦେଖି କ୍ରମେ ଇନ୍ଦ୍ରିୟ ସବୁ ଥକିଗଲେ।

୫୦ ଟଙ୍କା ଘରଭଡା ଦେବା ସମ୍ଭବହେଲା ନାହିଁ। ପୋଲିସ୍ ସାହେବ ବଦଳି ହୋଇଗଲେ। ଦିନେ ପୁଣି ବୋକଚା ପତ୍ର କୁକୁଡା ମାଙ୍କଡା ବାନ୍ଧି ବାହାରି ପଡିଲି। ହେରା ଗୌରି ସାହିର ଗୋଟିଏ ଚାଳଘର। ସାଙ୍ଗ ଲେକ୍‌ଚରର୍ ଜଣେ ତହିଁର ମାଲିକ। ୩୦/ ୩୫ ଟଙ୍କା ଭଡା। ସେ ମୋତେ ଘରଟି ଦେଲେ। ହେରାଗୌରୀ ସାହି ଅପେକ୍ଷାକୃତ ନିର୍ମଳ। ବାସିନ୍ଦା ସବୁ ପ୍ରାୟ ସ୍ୱଜାତିର। ପାଖରେ ଗୋଟିଏ ବଡ ସ୍କୁଲ। ପୁଅ ଝିଅଙ୍କ ପଢିବାପାଇଁ ଉପଯୁକ୍ତ ବିଦ୍ୟାଳୟଟି। ସେମାନଙ୍କୁ ମଧ୍ୟ ଭଲ ଲାଗିଲା। ମୁଁ ବି ନିଃଶ୍ୱାସ ମାରିଲି। ସେଠି ବି ବେଶିଦିନ ରହିପାରିଲି ନାହିଁ। ଗୋଟିଏ ପଡୋଶୀ ବିଧବା ବୁଢୀ

ମୋତେ ଅତିଷ୍ଠ କରିଦେଲା । ଦିନେ ତାର ବାଡିର ପିଜୁଳି ଗଛରୁ ଦାନ୍ତକାଠିପାଇଁ ଡାଳଟିଏ ଭାଙ୍ଗିଦେଲି । ପୁରୀଆ ଭାଷାରେ ଯେଉଁ ଗାଳି ଗୁଲଜକଲା, ତାହା ମୋତେ ଖୁବ୍ ଅଶ୍ଳୀଳ ଜଣାଗଲା । କାନ ବନ୍ଦକଲି । ପରେ ଜଣାଗଲା ବୁଢୀ ପିଜୁଳି ପତ୍ର ବିକ୍ରିକରେ । ଅଫିମ ଯେଉଁମାନେ ବିକନ୍ତି, ସେମାନେ ଅଫିମରେ ପିଜୁଳି ପତ୍ର ମିଶାନ୍ତି । ସୁତରାଂ ତା ଦୃଷ୍ଟିରୁ ପିଜୁଳିପତ୍ର ଖୁବ୍ ମୂଲ୍ୟବାନ । ତହିଁଆର ଦିନ ଆଲେକ୍‌ଜାଣ୍ଡାର ବୋଲି ମୋର ଗଞ୍ଜାଟି ତାର ବାଡିରେ ପଶି ଘଷି ଗୋବରକୁ ଭିଣିଦେଲା । ସେଦିନ ବି ସେମିତି ଗାଳିଗୁଲଜ । ଛୁଆପିଲା ଭାଗ୍ୟକୁ ସ୍କୁଲରେ ଥାନ୍ତି । ଆମେ ଦୁହେଁ କବାଟ ବନ୍ଦକରି ତାରି ଭିତରେ ପଶି ରହିଲୁ, ଯେ ପର୍ଯ୍ୟନ୍ତ ସେ ତାର loud speaker ବଜାଉଥାଏ । କାନ ବନ୍ଦକରି ଅଧଘଣ୍ଟେ ରହିଲା ପରେ ଆମେ ଶାନ୍ତିପାଇଲୁ । ପଡିଶାର ବୁଢୀଟିଏ ଉପ୍ତାତ ସାଙ୍ଗକୁ ଛୁଆମାନଙ୍କର ଦେହ ଖରାପହେଲା । ବଡ ବଡ ଜିଆ ସବୁ ସେମାନଙ୍କ ପେଟରୁ ବାହାରିଲେ । ସ୍ତ୍ରୀଙ୍କ ଦେହବି ଖୁବ୍ ଖରାପ ହୋଇଗଲା ।

ଦିନେ ଜଗନ୍ନାଥଙ୍କ ଉପରେ ଭୀଷଣ ରାଗିଯାଇ ରାତି ୧୨ଟା ବେଳେ ମନ୍ଦିର ଆଡକୁ ଚାଲିଲି । ମନ୍ଦିର ଖୋଲାଥିଲା । ମୁଁ ଏକୁଟିଆ ଜଗନ୍ନାଥଙ୍କ ଆଗରେ ଛିଡାହେଲି ଏବଂ ଗାଳିଗୁଲଜ କରିବାକୁ ଆରମ୍ଭକଲି । "ମୋର ଜଗା ରେ ! ମୋର ତ posting ସମ୍ବଲପୁର ହୋଇଥିଲା । ତୁ ଜୋର ଲଗାଇ ଆମକୁ ତୋ ପାଖକୁ ଟାଣିଆଣିଲୁ କାହିଁକି ? ମୋର କ'ଣ ଏଇଠି ଶେଷହେବ ?" ଦଣ୍ଡେ ରହି ଆଉ ଥରେ ଉର୍ଦ୍ଧନାକଲି । "ଏମିତି ହସୁଛୁ କ'ଣ ? ଛୁଆପିଲାଙ୍କୁ ଧରି କଣ୍ଟ୍ରୋଲ୍ ଜିନିଷ, ଚିନି, ଗହମ, ମୋଟି ସାହି ପାଖ ଦୋକାନରୁ ଛୁଆମାନଙ୍କୁ ଲଗାଇ ଆଣୁଛି । ଏ ଦୃଶ୍ୟଟି କ'ଣ ଭଲ ଦିଶୁଛି ?" ବିରକ୍ତ ହୋଇ ଘରକୁ ଆସିଲି ଏବଂ ତହିଁ ପରଦିନଠୁଁ ପୁରୀ ଛାଡି ଅନ୍ୟତ୍ର ଆସିବାକୁ ମନ ବଳାଇଲି ।

ସେତେବେଳେ ଡି.ପି.ଆଇ. ଅଫିସ୍ କଟକ କାଠଯୋଡି କୂଳରେ ଥାଏ । ମହେଶ୍ ପ୍ରଧାନ ଥାନ୍ତି ଡାଇରେକ୍ଟର୍ । ତାଙ୍କରି ପାଖ କ୍ୱାଟର୍‌ରେ ଥାନ୍ତି ବନ୍ଧୁ ଗୋକୁଳ ଚନ୍ଦ୍ର ଶତ୍‌ପଥୀ, Joint ଡି.ପି.ଆଇ. । କାର୍ଡଟି ପଠେଇଲି । ଗୋକୁଳ ବାବୁଙ୍କ ପାଖରେ ବହୁତ ସମୟ ବସିଲା ପରେ ଡାକରା ଆସିଲା । ଡି.ପି.ଆଇ. ପାଖରେ ମୋର ଅଭାବ ଅସୁବିଧା ବିକଳହୋଇ ପ୍ରକାଶକଲି । ସେ ଖୁବ୍ ବିରକ୍ତ ହେଲାପରି ମୋତେ ଜଣାଗଲା । ମାତ୍ର ୪/୬ ମାସ ରହିଛି କି ନାହିଁ ବଦଳି ପାଇଁ ପ୍ରାର୍ଥନା ତାଙ୍କୁ ଖୁବ୍ absurd ଜଣାଗଲା । "କେଉଁଠାକୁ ବଦଳି ହେବା ପାଇଁ ଚାହାନ୍ତି ?" ମୁଁ କହିଲି, "ବାରିପଦା ।" ସେ ଟେବୁଲରେ

ହାତ ବାଡେଇ କହିଲେ, "କଦାପି ବାରିପଦା ଆପଣଙ୍କର ହେବ ନାହିଁ। ଯଦି ବାରିପଦା ଲୋକ ବାରିପଦାକୁ ଯିବାକୁ ଚାହିଁବେ, ବାଲେଶ୍ୱର ଲୋକ ଯଦି ବାଲେଶ୍ୱରକୁ ଯିବେ, ପ୍ରତ୍ୟେକ ଲୋକ ଘରେବସି କଲେଜ କରିବେ, ତେବେ ଶିକ୍ଷା ବିଭାଗ ଚାଲିବ କେମିତି ?" ଦଣ୍ଡେ ରହିଗଲେ। ଚିନ୍ତାଗ୍ରସ୍ତ ହୋଇ ପଚାରିଲେ, "ଗସ୍ତ ଖର୍ଚ୍ଚ ନ ନେଇ ଆପଣ ଯିବାକୁ ପ୍ରସ୍ତୁତ ଅଛନ୍ତି ?" ମୁଁ ମନେମନେ ଭାବୁଥାଏ, ସରକାର ଖର୍ଚ୍ଚ କ'ଣ ? ମୁଁ ମୋ ହାତରୁ ପଇସା ଦେଇ ବାରିପଦା ଯିବାକୁ ଚାହୁଁଛି। ଗ୍ରୀଷ୍ମଛୁଟି କେତେ ଦିନ ଥାଏ। ମୋର ବଦଳି ଅର୍ଡର ପୁରୀରେ ପହଞ୍ଚିଲା।

ବାରିପଦାକୁ ମୁଁ ମୋର ନିଜଖର୍ଚ୍ଚରେ। ଆନନ୍ଦ ବିହ୍ୱଳ ହୋଇଗଲି। ମାତ୍ର ୬ଟି ମାସ ପୁରୀ କଲେଜରେ ମୁଁ ରହିଛି। କଲେଜ ବା କଲେଜ ଶିକ୍ଷକ ବା ଛାତ୍ରମାନଙ୍କ ସହିତ ଆତ୍ମୀୟତା ହୁଏତ ଜମି ନାହିଁ। ଏ ଭିତରେ ଗୋଟଏ ଦୁର୍ଘଟଣା ଘଟିଗଲା। ଆଲେକ୍‌ଜାଣ୍ଡାର ବୋଲି ଯେଉଁ ଦଳପତି ଗଞ୍ଜା, ତା'ର ତୋଳାରେ ଗୋଟିଏ ବିଚିତ୍ର ଘା ହେଲା ଏବଂ କେତେ ଦିନ ମୁମୂର୍ଷ ହୋଇଗଲା। ତାହା ସହଧର୍ମିଣୀ ମନ୍ଦୋଦରୀ ମଧ୍ୟ ସେହି ରୋଗରେ ଆକ୍ରାନ୍ତ ହେଲା। ଦଉଡୋଟା ପାଖରେ ରହୁଥିବା ଜଣେ ମୋଚିକୁ ଡାକି ସେମାନଙ୍କୁ ଦାନକରିଦେଲି। ମୁଁ ବର୍ତ୍ତମାନ ଆଉ ଭାରାକ୍ରାନ୍ତ ନୁହେଁ। ଗ୍ରୀଷ୍ମଛୁଟି ବେଳକୁ ପୁଣି ପେଡିପତ୍ର ଧରି ପୁରୀ ପ୍ୟାସେଞ୍ଜରରେ ଘରମୁହାଁ ଧରିଲି। ବିଦାୟ ସମ୍ବର୍ଦ୍ଧନା ମିଳିନାହିଁ। ଆସିଲା ବେଳେ କଟକରୁ ଯେମିତି କେହି farewell ଦେଇ ନଥିଲେ ବା ଯେମିତି ମୟୁରଭଞ୍ଜ ଛାଡିଲା ବେଳେ କେହି ମୋତେ ବିଦାୟ ସମ୍ବର୍ଦ୍ଧନା ଜ୍ଞାପନ କରିନାହାନ୍ତି। ରୂପ୍‌ସା ଷ୍ଟେସନରେ ଓହ୍ଲାଇଲି। ମୋର କନୈକ ବନ୍ଧୁଙ୍କ ବସ୍‌ରେ ଜିନିଷପତ୍ର ସବୁ ଲୋଡ୍‌କଲି। ରୂପ୍‌ସା ଷ୍ଟେସନ୍‌ରେ ଭାବିଥିଲି ଯେ, ବିନା ଭଡାରେ ମୋ ଜିନିଷପତ୍ର ନେବେ। କିନ୍ତୁ କଣ୍ଡକ୍ଟରଟି ଖୁବ୍ ପ୍ରଭୁ ଭକ୍ତ। ସେ ତା ମାଲିକକୁ ଯାଇ ଭଡା କଥା ପଚାରିଲା। ମୋର ସେଇ ବନ୍ଧୁ ଜଣକ ୧୪ଟଙ୍କା ମୋପାଖରୁ ନେଲେ। ଶେଷରେ ବାରିପଦାରେ ପହଞ୍ଚିଲି। ମୋର ପୁରୁଣା ଛାତ୍ରାବାସରେ। ସେଠାରେ ଏକ କୋଠରୀରେ ମୋର ସବୁ ଜିନିଷ ରଖିଦେଇ, ଅତିଥି ହିସାବରେ ସଷ୍ଟୀକ ହଷ୍ଟେଲ୍ ଖାଦ୍ୟପାଇଁ ଚାଲିଲି। ଅବିସ୍ମରଣୀୟ ଏ ଯାତ୍ରା ମୋର।

ପୁରୀ ଜଗନ୍ନାଥଙ୍କୁ ଛାଡି ବାରିପଦା ଜଗନ୍ନାଥଙ୍କୁ ଧରିବା ପୂର୍ବରୁ, ପୁରୀର କେତୋଟି କଥା ମନେପଡୁଛି। ପୁରୀ କଲେଜରେ ମୁଁ ଥିଲାବେଳେ ସାତକୋଡି ହୋତା ବି.ଏ. ପାସ୍‌ରେ ପଢୁଥିଲେ। ମୁଁ କିନ୍ତୁ ତାଙ୍କୁ ଆଦୌ ପଢେଇନି। ଅଥଚ୍ ସେଇଠି ଥିଲାବେଳେ

ଏକଦା ବାରିପଦାରେ ମୋର ହାଇସ୍କୁଲ ଛାତ୍ର ଖ୍ୟାତନାମା କବି ଗୁରୁପ୍ରସାଦ ମହାନ୍ତିଙ୍କୁ ସହକର୍ମୀ ଆକାରରେ ଭେଟିଥିଲି। "ଆଲେକ୍‌ଜାଣ୍ଡାରସ୍ ଫିଷ୍ଟ" କବିତାଟି ପଢେଇବା ସମୟରେ ସେ ପ୍ରାୟ ପାଗଳ ହୋଇଯାଉଥିଲେ। ସେହି କବିତାର rhythm ତାଙ୍କୁ ମନ୍ତ୍ରମୁଗ୍ଧ କରୁଥିଲା। ସେ ସେହି ସମୟରେ ଭାନୁଜୀ ରାଓ ସହିତ ମିଶି "ନୂତନ କବିତା" ବହିଟି ଲେଖି ଓଡିଆ କବିତାର ନୂତନ ଯୁଗଟିଏ ସୃଷ୍ଟିକରିଥିଲେ। ସେ ମୋତେ ତଥାପି ଗୁରୁ ପରି ମାନୁଥିଲେ ଏବଂ "ସାର୍ ସାର୍" ଡାକି ଆନନ୍ଦ ପାଉଥିଲେ। ଆଉ ଜଣେ ରଥୀ ଶିକ୍ଷକ ଥିଲେ ସତ୍ୟବାଦୀ ମିଶ୍ର। ତାଙ୍କର ବାଗ୍ମିତା ଓ ଦର୍ଶନଶାସ୍ତ୍ର ଜ୍ଞାନ ଅସାଧାରଣ। ସେ ବାହାହେବାକୁ ଅମଙ୍ଗ ହେଉଥିଲେ। ଗୋପବନ୍ଧୁଙ୍କର ନାତି ବୋଲି ଆମେ ସମସ୍ତେ ତାଙ୍କୁ ଯଥୋଚିତ ସମ୍ମାନ କରୁଥିଲେ। ମୋର ତାଙ୍କ ସହିତ ନିବିଡ ଆଳାପମେଳାପ ଥିଲା। ସେତେବେଳକୁ ତାଙ୍କ ବିବାହ ମଫସଲର ଏକ ଗାଁରେ ବାରିପଦାରେ ଚାକିରି କରୁଥିବା ବୈଦ୍ୟନାଥ ତ୍ରିପାଠୀ ଓ ବୀର ଓଡିଆ ଲେଖକ ଆନନ୍ଦ ଶତପଥୀଙ୍କର ସମ୍ପର୍କୀୟ ଝିଅଙ୍କ ସହିତ ସ୍ଥିର ହେଲା। ସତ୍ୟବାଦୀ ବାବୁ ଜିଦ୍ ଧରି ବସିଲେ, ଯଦି ମୁଁ ବରଯାତ୍ରୀ ହୋଇଯାଏ ସେ ବାହାହେବେ। ଅଗତ୍ୟା ମୁଁ ଗଲି। କିନ୍ତୁ ଏହି ସର୍ତ୍ତରେ ଯେ, ମୁଁ ରାତାରାତି ଫେରି ଆସିବି। ରାତିରେ ଗଲି, ରାତିରେ ଫେରିଆସିଲି। ମୋର କିଛି ଆଇଡିଆ ନାହିଁ, ଗାଡି କେତେବେଳେ ଆସି ଘର ପାଖରେ ପହଞ୍ଚିଲା। ଡ୍ରାଇଭର ଏତେ ଜୋର୍‌ରେ ବ୍ରେକ୍ ମାରିଲା ଯେ, ଡୋଳାଉଥିବା ମୋର ପୁଅଟି ସିଟ୍‌ର ତଳକୁ ଖସିପଡିଲା ଓ କାଠ ପଟାରେ ମୁଣ୍ଡ ବାଜି କେନ୍ଦୁ ପରି ଫୁଲିଗଲା। ସେହିଦିନ, ସେହିରାତିରେ ପ୍ରିନ୍‌ସିପାଲଙ୍କ ପୁଅର ମଧ୍ୟ ବାହାଘର ଥିଲା। କିନ୍ତୁ ମୁଁ ଯାଇ ପାରିଲି ନାହିଁ। ପ୍ରିନ୍‌ସିପାଲ ଟିକିଏ ବିରକ୍ତ ହେଲାପରି ଜଣା ପଡିଲେ। ସର୍ଭିସ୍ ବହିରେ ଧାଡିଏ ଲେଖିଲେ- ଯାହା ମୋ ବିରୁଦ୍ଧରେ ନୁହେଁ, କିମ୍ବା ମୋ ତରଫରୁ ନୁହେଁ।



## ॥ ପଇଁଚାଳିଶ ॥

ପୁଣି ବାରିପଦା ଏବଂ, ତୃତୀୟ ଥର ପାଇଁ। ଯେଉଁ ବାରିପଦାର ହାଇସ୍କୁଲରେ ମାଟ୍ରିକ୍ୟୁଲେଶନ୍ ପାସ୍ କରିଥିଲି, ଯେଉଁ ବାରିପଦାର ହାଇସ୍କୁଲରେ ବର୍ଷଟିଏ ମାଷ୍ଟର ହୋଇଥିଲି, ଯେଉଁ ବାରିପଦାରେ ପ୍ରାୟ ଦଶବର୍ଷ ବିଭିନ୍ନ କାମରେ ଦେୱାନ, ମହାରାଜା, କେନ୍ଦ୍ର ପରିଷଦ, Constituent Assembly, Gazett, 'ଭଞ୍ଜ ପ୍ରଦୀପ' ଆଦି କର୍ମରେ ନିଜକୁ ନିୟୋଜିତ କରିଥିଲି, ପୁଣି ସେହି ବାରିପଦାକୁ ଲେଉଟିଲି କଲେଜ ଶିକ୍ଷକ ହିସାବରେ। ନୂଆ ଜୀବନରେ କିଛି ଆନନ୍ଦ ଓ ପୂର୍ଣ୍ଣତା ଆସିଲା। ୧୯୩୮ ରେ ଏମ୍.ଏ. ପାସ୍‌କରିବାଠାରୁ ୧୯୫୦ରେ କଲେଜ ଲେକ୍‌ଚରର ହେବା ପର୍ଯ୍ୟନ୍ତ ଜୀବନଟା ପ୍ରାୟ ନଷ୍ଟ ହୋଇଗଲା ବୋଲି ଭାବିଲି। କିନ୍ତୁ ସେତେବେଳେ କଲେଜ ଜୀବନର ଯେଉଁ ସମ୍ମାନ ଓ ଗୌରବ, ପଢେଇବାରେ ଯେଉଁ ଆନନ୍ଦ, ଯେଉଁ ପରିତୃପ୍ତି, ତାହା ଜୀବନରେ ସ୍ମରଣୀୟ ହୋଇରହିଲା। ଗୋଟିଏ ବଡକଥା ହେଲା, ଆଗାମୀ ଜୀବନରେ ଯେଉଁଠି ରହିଲେବି ସାଙ୍ଗରେ ଗୋଟିଏ କଲେଜ ଥିବ ଏବଂ ଛୁଆପିଲାଙ୍କ ଉଚ୍ଚଶିକ୍ଷାରେ ବାଧା, ବିଭ୍ରାଟ, ସୃଷ୍ଟି ହେବ ନାହିଁ।

ସେତେବେଳେ ଯେଉଁ ନୂଆନୂଆ କଲେଜ ହେଲା, ସେଗୁଡାକ ହାଇସ୍କୁଲରେ ହେଉଥିଲା। କାରଣ, କଲେଜପାଇଁ ନୂଆ ପ୍ରାସାଦ ତିଆରିକରିବା Government ପକ୍ଷରେ ସେତେ ସହଜ ନଥିଲା। ସକାଳବେଳା କଲେଜ, ଉପରବେଳା ହାଇସ୍କୁଲ। ଏହା ସ୍ୱତନ୍ତ୍ର କଲେଜ ଗୃହ ନହେବା ପର୍ଯ୍ୟନ୍ତ ନୀତି ଥିଲା। ସ୍ମରଣ କରାଯାଇ ପାରେଯେ ମୁଁ ବାରିପଦା ଛାଡି ବାହାରକୁ ଯିବା ପୂର୍ବରୁ ଶରତ୍ ଚନ୍ଦ୍ର ଦାସଙ୍କ ଅମଳରେ କଲେଜ ପ୍ରତିଷ୍ଠିତ ହୋଇଥିଲା ଏବଂ ସେଥିପାଇଁ ମୟୂରଭଞ୍ଜ ଷ୍ଟେଟ୍ ସରକାର ଅଧ୍ୟାପକ ଓ ଅନ୍ୟାନ୍ୟ ଆନୁଷଙ୍ଗିକ ବ୍ୟବସ୍ଥା କଲେଜପାଇଁ କରିଥିଲେ। ସେତିକିବେଳେ କଲେଜ ପ୍ରତି ମୋର ଯଥେଷ୍ଟ ଆଗ୍ରହ ଥିବାରୁ ମୁଁ ପ୍ରଧାନମନ୍ତ୍ରୀଙ୍କ ଦେଇ ଇଂରାଜୀ ଅଧ୍ୟାପକ ଭାବରେ ନିଯୁକ୍ତ କରାଇ ନେଇଥିଲି ସିନା, କିନ୍ତୁ କଲେଜରେ ଯୋଗଦେଇ ନାହିଁ କିମ୍ବା ଦିନେ ହେଲେ ପଡାଇ ନାହିଁ। ଡଃ ମହତାବଙ୍କ ପାଖରୁ ଖସିଯିବା ସମ୍ଭବ ନୁହେଁ ଭାବି ପୁଣି ପୁରୁଣା ଚାକିରୀରେ ରହିଗଲି ୩୦୦ ଟଙ୍କା ଦରମାରେ। କିନ୍ତୁ Commissioner Rege ସାହେବ ମୋତେ "ପୁନଃମୂଷିକ ଭବ" କରିଦେଲେ। Public Service Commission ଜରିଆରେ ଲେକ୍‌ଚରର୍ ନିଯୁକ୍ତି ମୋର ଭବିଷ୍ୟତ ଜୀବନ ନିର୍ଦ୍ଧାରିତ କରିଦେଲା ଏବଂ ମୁଁ ଶିକ୍ଷା ବିଭାଗରେ ରହିଲି ବୋଲି କେବେ ଜୀବନରେ ଦୁଃଖ ବା ପଶ୍ଚାତାପ କରିନାହିଁ।

ଗ୍ରୀଷ୍ମଛୁଟି ପରେ ଯେତେବେଳେ କଲେଜ ଖୋଲିଲା, ସେତିକିବେଳେ ଛୁଆପିଲା ଧରି ବାରିପଦାରେ ପହଞ୍ଚିଲି, ଏବଂ ଅକସ୍ମାତ ସେହି ସମୟରେ ମୋର କକାଶ୍ୱଶୁର ହରିହର ନନ୍ଦଙ୍କ ଘର ଖାଲି ପଡିଥିବାରୁ ମୁଁ ସେହିଠି ରହିଲି। ଫ୍ରେଜାର ହଷ୍ଟେଲରୁ ମୋର ଯାହା ଜିନିଷପତ୍ର ଥିଲା ଉଠାଇଆଣିଲି।

ମୟୂରଭଞ୍ଜ ସରକାର ବେଶି ବଙ୍ଗାଳୀଲୋକଙ୍କୁ ଚାକିରୀରେ ରଖି ଥିବାରୁ ଲୋକେ ସେତେବେଳେ ତୀବ୍ର ନିନ୍ଦାକରୁଥିଲେ। ଅତଏବ କଲେଜରେ ଯେତେବେଳେ ନିଯୁକ୍ତିଦେବା ଦାୟିତ୍ୱ ଆମ ଉପରେ ପଡିଲା, ଆମେ ନିଷ୍ପତ୍ତିନେଲୁ ବାହାରର ଲୋକ ଆଣି ରଖିବୁ। ପ୍ରିନ୍‌ସିପାଲ ପଞ୍ଜାବର ଲୋକ ଗୁରୁ ଦୟାଲ ସିଂ, ଅର୍ଥନୀତି ଅଧ୍ୟାପକ କାଶ୍ମୀରରେ ଶ୍ରୀଯୁକ୍ତ ଧର, ଗଣିତ ଅଧ୍ୟାପକ ରାଜସ୍ଥାନର ଭାର୍‌ଗୋ। ବଙ୍ଗାଳୀ ଅଧ୍ୟାପକ ପ୍ରାୟ ନଥିଲେ। ଯେଉଁ ଅଧ୍ୟାପକମାନେ ଥିଲେ ସେମାନେ ହେଲେ ବ୍ରହ୍ମପୁରର ରାମଚନ୍ଦ୍ର ପଟ୍ଟନାୟକ, କେମିଷ୍ଟ୍ରିର କଲ୍ୟାଣୀ ମୁଖାର୍ଜୀ, ଫିଜିକ୍‌ସରେ ସନ୍ତୋଷ ରାୟ, ଇଂରାଜୀରେ ଦୁର୍ଗାଚରଣ କୁଅଁର, ଲଜିକ୍‌ରେ କାଙ୍ଗାଳି ଚରଣ ପତି। ଏମାନେ ସମସ୍ତେ ଛାତ୍ରବତ୍ସଳ, ଅତି ଉପଯୁକ୍ତ ଶିକ୍ଷକ ଏବଂ ପିଲାମାନଙ୍କର ବିଶ୍ୱାସ ଓ ସମ୍ମାନ ଭାଜନ। କାହାରି ଦୋଷ, ତ୍ରୁଟି, ଦୁର୍ବଳତା ପ୍ରାୟ ନଥିଲା। ହିଂସା, ଦ୍ୱେଷ ବିବର୍ଜିତ ଓ ନିଷ୍ଠାପର । ଆଦର୍ଶ କଲେଜରେ ଯେମିତି ଅଧ୍ୟାପକ ରହିବା କଥା, ଏମାନେ ସେହି ଧରଣର। ଫଳରେ କେଲଜରେ ବିକ୍ଷୋଭ, ଆନ୍ଦୋଳନ, ଧର୍ମଘଟ ନ ଥାଏ। ଅଭିଭାବକମାନଙ୍କର କୌଣସି ଆପତ୍ତି ଅଭିଯୋଗ ନ ଥାଏ। ପରୀକ୍ଷାଫଳ ଖୁବ୍ ସନ୍ତୋଷଜନକ। କ୍ଲାସରୁମ୍‌ର ଅଭାବ ପଡେନାହିଁ, କିମ୍ବା ଛୁଟି ହୁଏ ନାହିଁ ଯେତେବେଳେ ସେତେବେଳେ। ପଢାପଢି ଭଲ ଚାଲିଥିବାରୁ ଏବଂ କଲେଜରେ ଶୃଙ୍ଖଳା ରହିଥିବାରୁ କପି ବୋଧେ ଆଦୌ ନ ଥାଏ। ୟୁନିଭରସିଟି ପରୀକ୍ଷା ପ୍ରାୟ ଠିକ୍ ସମୟରେ ହୁଏ ଏବଂ ଫଳ ଠିକ୍ ସମୟରେ ବାହାରେ। ମୋର ସମୟରେ ଛାତ୍ର ଥିଲେ ନିହାରରଞ୍ଜନ ହୋତା Arts ରେ University ରେ ପ୍ରଥମ ଓ ଯୋଗେଶ୍ ଚନ୍ଦ୍ର ପତି Science ରେ ପ୍ରଥମ। ଏକାବର୍ଷ ସେମାନେ ଦୁହେଁ ମୋତେ ବଜାର ସୌଦା କରିବାରେ ସାହାଯ୍ୟ କରନ୍ତି ପୃଥକ୍ ପୃଥକ୍ ଭାବରେ। ଯିବା ଆସିବା ରାସ୍ତାରେ ୫ଟା ବା ୧୦ଟା ପ୍ରଶ୍ନ ଆଲୋଚନା ବା ତର୍ଜମା ହୋଇଥାଏ। ନିହାର ମୋର ବନ୍ଧୁବାସ। ଯୋଗେଶ୍ ବନ୍ଧୁବାସ ନ ହେଲେ ମଧ୍ୟ ତାର ବାପା ସହିତ ମୋର ଯଥେଷ୍ଟ ଆତ୍ମୀୟତା ହୋଇଥିଲା ଘର ତିଆରି କଲାବେଳେ। ଟ୍ୟୁସନ୍ ବୋଲି କଥାଟିଏ କେବଳ ଇଂରାଜୀରେ ଥିଲା ଏବଂ ଅନ୍ୟାନ୍ୟ ବିଷୟରେ ପ୍ରାୟ ନ ଥିଲା। ପ୍ରଫେସର୍‌ମାନେ ପ୍ରିନ୍‌ସିପାଲଙ୍କ ନେତୃତ୍ୱରେ ସବୁଦିନ କଲେଜ ଆଗରେ ଟେନିସ୍ ଖେଳୁଥିଲେ। ଯେଉଁ

ଜଣେ ଅଧେ ଟ୍ୟୁସନ କରୁଥିଲେ ସେମାନଙ୍କୁ ୟୁନିଭରସିଟି ପରୀକ୍ଷାରେ ନିରୀକ୍ଷକ ଭାବେ ରଖାଯାଉ ନ ଥିଲା । ନମ୍ବରପାଇଁ ଧରାଧରି ପ୍ରାୟ ଜଣାନଥିଲା । ଅଧ୍ୟାପକମାନେ ଘରେ ଭଲକରି ପଢାପଢିକରି ପ୍ରସ୍ତୁତହୋଇ ଆସୁଥିଲେ । ଥରେ ମୁଁ ତୃତୀୟ ବର୍ଷ କ୍ଲାସରେ 'Approach to Life' ବୋଲି prose selectionଟି ପଢାଉଥିଲି । ମୁଁ ସେହି ବହିର selectionକୁ ଆଦୌ ପସନ୍ଦ କରୁ ନ ଥିଲି । ଥରେ କ୍ଲାସରେ ମଧ୍ୟ କହିଲି ଏଇଟା Approach to life ନୁହେଁ Approach to Death। ଗୋଟିଏ Lesson ଛଡା ସବୁ କିଟ୍‌ମିଟିଆ । ପିଲାମାନଙ୍କର ଆଦୌ ଚିତ୍ତାକର୍ଷକ ନୁହେଁ । ଯଥେଷ୍ଟ ପ୍ରସ୍ତୁତି ପରେ ମୁଁ ପିଲାମାନଙ୍କୁ ପଢାଉଥିଲି । ତଥାପି ଦିନେ ଲେଖା ହୋଇଥିବାର ଦେଖିଲି-

"ପଢେଇ ପାରିଲେ ଭଲ
ନପଢେଇ ପାରିଲେ ପାଣ୍ଡଚା ଚାଲ"

ସେହି ସମୟରେ ମୋର ଅନ୍ୟ ଛାତ୍ର ଥିଲେ ସନ୍ତୋଷ ସାହୁ, କଲ୍ୟାଣୀ ଦାସ, ଦୀପକ୍ ଷଡଙ୍ଗୀ ଆହୁରି କେତେ ଛାତ୍ର ରଥୀ । ମୁଁ ନୀରବ ରହି ଅଶ୍ରୁ ବିସର୍ଜନକଲି ମୋର ଅଯୋଗ୍ୟତାପାଇଁ । ଏହି ସମୟରେ ମୁଁ ଗୋବର୍ଦ୍ଧନ ଭାଗେକୁ ପଢାଉଥିଲି । ପ୍ରଥମ ଦିନ ଟ୍ୟୁସନ ଖାତା ଦେଖି ପିଲାଟିର ଉଜ୍ଜ୍ୱଳ ଭବିଷ୍ୟତ ମୁଁ ଜାଣିପାରିଥିଲି ।

ଯେଉଁ ୭/୮ବର୍ଷ ଏମ୍.ପି.ସି. କଲେଜରେ ଥିଲି, ସେହି ଭିତରେ ବିଭିନ୍ନ କିସମର ପ୍ରଫେସରମାନଙ୍କ ସମ୍ପର୍କରେ ଆସିଛି । ସେମାନେ ସମସ୍ତେ ବିଚିତ୍ର ଲୋକ, ବହୁତ ଚିତ୍ତାକର୍ଷକ । ସେମାନଙ୍କୁ ଜାଣିପାରିଲେ ଓ ସେମାନଙ୍କ ସହିତ ମିଶିପାରିଲେ ଆତ୍ମୀୟତା ବହୁତ ବଢିଯାଏ । ସେମାନେ ନିଜର ହୋଇଯାନ୍ତି ଦୁଃଖ-ସୁଖରେ । ଶହେଜଣ ଅଧ୍ୟାପକଙ୍କ ବିଷୟରେ ଜଣେ ଯଦି ବହିଟିଏ ଲେଖନ୍ତା (ଧରି ନିଅନ୍ତୁ, ଗୋଲ୍‌ଡସ୍ମିଥଙ୍କର ଭିଲେଜ ସ୍କୁଲମାଷ୍ଟର ଠାରୁ ଆରମ୍ଭ କରି ବିଶ୍ୱଗୁରୁ ସର୍ବପଲ୍ଲୀ ରାଧାକୃଷ୍ଣନଙ୍କ ସହିତ ମୋର ନିଜର ଶିକ୍ଷକ ବୈତ୍ୟାରି ବାରିକ ବା ଅଧ୍ୟାପକ ଗିରିଜାଶଙ୍କର ରାୟ ପର୍ଯ୍ୟନ୍ତ) ତାହା ଯେ କୌଣସି ଉପନ୍ୟାସର ଚରିତ୍ର ଅପେକ୍ଷା ଅଧିକ ମନମୁଗ୍ଧକର ହୁଅନ୍ତା ।

କଲେଜର ପ୍ରଥମ ପ୍ରିନ୍‌ସିପାଲ ଗୁରୁ ଦୟାଲ ସିଂ । ଉଭୟ ଚେହେରା ଓ ଚରିତ୍ର ଆକର୍ଷଣୀୟ । ଦାଢି, ପଗଡି, ପାନିଆ, ହାତବଲା ସାଙ୍ଗକୁ ଡୋରି ଡୋରିକା କୋଟ୍, ତାଙ୍କୁ sportsman ଚେହେରା ଦେଇଦିଏ । ବିଶେଷକରି କଲେଜର ସାମ୍‌ନା ଟେନିସ୍ ପଡିଆରେ । ଶୁଣାଯାଏ ଇଂରାଜୀରେ ସେ ଆପେ ଆପେ କବିତା ପୁସ୍ତକ I.A ଓ ISc. କ୍ଲାସ୍‌ରେ ପଢେଇବାକୁ ଆରମ୍ଭକଲେ । ସିଲାବସ୍ ନଦେଖି ବହିଟି ଏମୁଣ୍ଡରୁ ସେମୁଣ୍ଡ ପଢେଇ ଦେଇଗଲେ । ପିଲା କିଏ ବୁଝିଲେ କି ନାହିଁ ସେକଥା ସିଏ ବୁଝିଲେ ନାହିଁ । ମୁଁ

ଯେତେବେଳେ ପିଲାଙ୍କୁ poem ପଢାଇଲି, ପିଲା କହିଲେ ବିଷୟ ସରିଯାଇଛି। ମୋତେ ପୁଣି ପଢେଇବାକୁ ପଡିଲା। ଥରେ ଷ୍ଟାଫ୍ କାଉନ୍‌ସିଲ ମିଟିଂ ହେଉଥାଏ। ମୋର ଜଣେ ସହକର୍ମୀ ଦର୍ଶନ ଅଧ୍ୟାପକ, ଯିଏ କି ଏନ୍.ସି.ସି. ଦାୟିତ୍ୱରେ ଥିଲେ, ସେ କାମରେ ଅବହେଳା କରିଥିବାରୁ ତାଙ୍କୁ ମୃଦୁ ଭର୍ତ୍ସନା ଯେମିତି କରିଛନ୍ତି, ସେମିତି ଯୁବଅଧ୍ୟାପକ ବନ୍ଧୁ ଜଣକ ଚିଡ଼ିକି ଉଠି କହିଲେ "I have seen many a loafer and duffer principaling over institutions. Do you know I can pluck your beard ?" ମୁଁ ପାଖରେ ବସିଥିଲି। ପ୍ରିନ୍‌ସିପାଲ ଅନ୍ୟ ଉପାୟ ନପାଇ ମୋତେ ଚାହିଁ କହିଲେ "Satpathy, what does he say ?" କିଛିଦିନ ପରେ ସେ ଅଧ୍ୟାପକ ଆଉ କଲେଜକୁ ଆସିଲେ ନାହିଁ। ଜଣାଗଲା ଯେ ଚାକିରି ଛାଡିଦେଇଛନ୍ତି ଏବଂ ପଣ୍ଡିଚେରୀ ଆଶ୍ରମକୁ ଚାଲିଯାଇ ଜଣେ ବଡ ପ୍ରତିପତ୍ତି ସମ୍ପନ୍ନ ଧର୍ମଗୁରୁ ହୋଇଯାଇଛନ୍ତି।

ମୟୁରଭଞ୍ଜ ସରକାର ବେଳେ ମୁଁ ଯେଉଁ ଘରେ ଥିଲି ସେହି କ୍ୱାର୍ଟରଟାରେ ରହୁଥିଲେ ଫିଜିକ୍‌ସ ଅଧ୍ୟାପକ କେ.କେ.ଏସ୍. ମୂର୍ତ୍ତୀ। କେବଳ ବିଜ୍ଞାନରେ ନୁହେଁ ସେ ଅନ୍ୟାନ୍ୟ ବିଷୟରେ ମଧ୍ୟ ଖୁବ୍ ବିଜ୍ଞ। ସେ ପିଲାମାନଙ୍କୁ ଇଂରାଜୀ ମୁଫତରେ ପଢାଉଥିଲେ। ଏପରିକି ଇଲିଏଟଙ୍କ କବିତା "The Hollow Man" ଉପରେ ନୋଟ ପିଲାଙ୍କୁ ଡାକି ଦେଉଥିଲେ। ପିଲାମାନଙ୍କୁ ସବୁମୁହୂର୍ତ୍ତରେ ସାହାଯ୍ୟ ସହାନୁଭୂତି ଦେଖାଉଥିଲେ। ପିଲାମାନେ ତାଙ୍କୁ ଖୁବ୍ ଭକ୍ତି ଓ ସମ୍ମାନ କରୁଥିଲେ। ଡଃ ବେଣୀମାଧବ ପାଢୀ ଜଣେ ଓଡିଆ ଓ ସଂସ୍କୃତର ଗବେଷକ। ସେ ରାଜବାଟୀରେ ରହୁଥିଲେ ପରିବାର ସହିତ, ଏକଦା ରାଉତରାୟ ରହୁଥିବା କୋଠରିରେ। ରାମଚନ୍ଦ୍ର ପଟ୍ଟନାୟକ ଅର୍ଥନୀତି ପଢାଉଥିଲେ, ଏବଂ ପିଲାମାନେ ତାଙ୍କୁ ଦେବତା ବୋଲି ମାନୁଥିଲେ। ସେତିକିବେଳେ, ମନେପଡୁଛି, ଅର୍ଥନୀତି ଏବଂ ରାଜନୀତି ବିଜ୍ଞାନ ଦୁଇ ଭାଗରେ ବିଭକ୍ତ ହୋଇଗଲା। ରାମବାବୁ ସନ୍ଧ୍ୟାହେଲେ ଦୁଇଜଣ ସାଙ୍ଗଙ୍କୁ ଧରି ବାହାରି ପଡନ୍ତି KMBM Talkiesକୁ। ଯାକୁ ତାକୁ ଯାହାକୁ ଦେଖିଲେ ଡାକନ୍ତି "ଆସ ହେ ବାବୁ, ଭଲ ଛବିଟିଏ 'ମୋଗଲେ ଆଜମ୍' ପଡିଛି, ମଧୁବାଳା ଥିବାର ଏକା। ଆସ। ତୁଚ୍ଛାଟାକୁ ଘରେ ବସି କଣ କରିବ?" କୌଣସି ଦିନ ସିନେମା ସେ ଛାଡନ୍ତି ନାହିଁ। ତାସ୍ ପକାନ୍ତି। ସିରିଅସ୍ ମଧ୍ୟ ହୋଇଯାନ୍ତି। ନିରାମିଷାଶୀ, କିନ୍ତୁ ପ୍ରଚୁର ଖାଆନ୍ତି। ବହୁତ ଭଲ ଜିନିଷ ଖାନ୍ତି; ଯେତେ ଦାମିକା ହେଲେ ମଧ୍ୟ। ଘରୁ ତାଙ୍କର ମୁଗ ବିରି ଆଦି ଯାବତୀୟ ଖାଦ୍ୟ ପଦାର୍ଥ ଆସେ। ସେ ଦୁଃଖ କରିବାର ଆମେ କେବେ ଦେଖିନୁ। ରବିନାରାୟଣ ବରାଳ ମଧ୍ୟ ଥିଲେ ଜଣେ ଓଡିଆ ଅଧ୍ୟାପକ । ସେ ବକ୍ତୃତା ଦେଉଥିଲା ବେଳେ କାହିଁ କେଉଁଠି ବନ୍ଦ ହୁଅନ୍ତି ନାହିଁ, ନିର୍ଭୁଲ

କହିଯାନ୍ତି । ତାଙ୍କର ଜ୍ଞାନର ପରିସର ଓଡିଆ ସାହିତ୍ୟରେ ଖୁବ୍ ବ୍ୟାପକ । ଅମାୟିକ ପୁରୁଷ, ସାମାନ୍ୟ ହାସ୍ୟରସିକ ମଧ୍ୟ । ଯେଉଁ କଲେଜରେ ସେ ରହନ୍ତି, ଓଡିଆ ବିଭାଗ ଆପେ ଆପେ ଅଳଙ୍କୃତ ହୋଇଯାଏ । ତାଙ୍କ ଛଡ଼ା ଗବେଷଣା କ୍ଷେତ୍ରରେ ରହିଥିଲେ ନଟବର ସାମନ୍ତରାୟ; କରିତକର୍ମା, ଯୁଗଜନ୍ମା ଅଧ୍ୟାପକ, ଏକଦା ସେ ସ୍କୁଲ ଶିକ୍ଷକ ଥିଲେ । ପରମାନନ୍ଦ ଆଚାର୍ଯ୍ୟଙ୍କ ସହିତ ବନ୍ଧୁ ସମୟରେ ଆଳାପ ମଧ୍ୟ କରୁଥିଲେ । ମୁଖାର୍ଜୀ ତାଙ୍କର ଗବେଷଣା କାଳରେ ତାଙ୍କୁ ସାହାଯ୍ୟ କରୁଥିବା ଜନୈକ ଛାତ୍ରୀଙ୍କୁ ବ୍ରାହ୍ମଧର୍ମ ମତାନୁଯାୟୀ ବିବାହ କରିଥିଲେ । ଜୀବନରେ ପ୍ରଥମ ଓ ଶେଷଥର ପାଇଁ ଅତୀବ ଚିତ୍ତାକର୍ଷକ ବ୍ରାହ୍ମଧର୍ମର ବିବାହଟିଏ ଦେଖିଲି । ଅଦ୍ୟାପି ସେ ବିବାହର ପ୍ରସିଡିଂସ ପ୍ରାଞ୍ଜଳ ଭାବରେ ମନେପଡୁଛି ।

ସେତେବେଳେ କଲେଜର ହେଡକ୍ଲର୍କ ଥିଲେ ଶୀର୍ଷାର ଈଶ୍ୱର ଚନ୍ଦ୍ର ପାଲ । ଭାରି ଭଲ ଲୋକ । ସରଳ, ଅମାୟିକ୍ । କେବେ କୌଣସି ଛାତ୍ର ପାଖରୁ କିଛି ଆଦାୟକରିବା ଜଣା ନାହିଁ । ତାଙ୍କର ତିନିପୁଅ ଭିତରୁ ଦୁଇଜଣ ସତ୍ୟରଞ୍ଜନ ଓ ଚିତ୍ତରଞ୍ଜନ ମୋର ଛାତ୍ର । ସେମାନେ ଉଭୟ ଆଇ.ଏ.ଏସ୍. ଏବଂ ବଡବଡ ପଦବୀରେ ଅଧିଷ୍ଠିତ । ସେ ଦୁହେଁ ମଧ୍ୟ ଛାତ୍ରାବସ୍ଥାରେ ତାଙ୍କ ପିତାଙ୍କ ପରି ଶାନ୍ତ ଶିଷ୍ଟ ଓ ସରଳ ଥିଲେ । ଅଦ୍ୟାପି ଦେଖାସାକ୍ଷାତ ନହେଲେ ମଧ୍ୟ ସେମାନେ ମୋତେ ଭକ୍ତି କରୁଥିବାର ମୁଁ ଜାଣେ ।

ଗଣିତରେ ରାଜସ୍ଥାନର ଭାର୍ଗବ ବାବୁ ଥିଲେ ଦୀର୍ଘକାୟ । ଅସମ୍ଭବ ସ୍ମରଣ ଶକ୍ତି । ଯେ କୌଣସି ଛାତ୍ରର ରୋଲ ନମ୍ବର କହିଦେବେ ସେ । ସାଙ୍ଗେ ସାଙ୍ଗେ କହିଦେବେ ସେହି ମୁହୂର୍ତ୍ତରେ, ସେ ପିଲାଟି କେତେ ନମ୍ବର ରୁମରେ ଥିଲା । ଏକୁଟିଆ ଲୋକ । ତାଙ୍କର ବଜାରସୌଦା କରିବାପାଇଁ ଗୋଟିଏ ଥଳି ଥିଲା । ସେ ଥଳିଟି ଏତେ ଛୋଟ ଓ ଏମିତି ବେସାଇଜର୍ ଯେ, ଜଣେ ଲୋକର ପନିପରିବା ଆଣିବା ମଧ୍ୟ କଷ୍ଟକର । ଗୋଟିଏ କିଲୋ ପନିପରିବା ଧରିବାପାଇଁ ଯଥେଷ୍ଟ । ସେ ତାଠାରୁ ବଡସାହ୍ୟାର ଚାକିରି ପାଇ ଅଳ୍ପଦିନ ପରେ ଚାଲିଗଲେ । କିଛି ଦିନ ପରେ ଆସିଲେ B.K.R.S. Somaya Julu । ବହୁବର୍ଷ ଯାଏ ସେ ଅବିବାହିତ ଥିଲେ । ତାଙ୍କର ମାତୃଭକ୍ତି ଅସୀମ । ମା'ଦ୍ୱାରା ସେ ପରିଚାଳିତ ହେଉଥିଲେ । ସେ ଭାରି କଡା ଏବଂ ସବୁବେଳେ ଶାନ୍ତିଶୃଙ୍ଖଳା ଉପରେ ନଜର ଦିଅନ୍ତି । ଇଂରାଜୀ ଅଧ୍ୟାପକ ଥିଲେ T.E. Jayraman । ଦକ୍ଷିଣ ଭାରତୀୟ । ତାଙ୍କର ଇଂରାଜୀ କେବଳ ଭଲପିଲା ଛଡା ଅନ୍ୟମାନେ ବୁଝିପାରନ୍ତି ନାହିଁ । ସେ ମେକଲେଙ୍କର Life of Johnson ପଢାଉଥିଲେ । ମୋର ବଡପୁଅ ତାଙ୍କର ପଢେଇବା ଶୈଳୀକୁ ଭାରି ଭଲପାଉଥିଲା । ଜୟରମଣଙ୍କର ଖାଦ୍ୟପାନୀୟ, ଚାଲିଚଳନ ସବୁ ଅସାଧାରଣ । ତାଙ୍କର

ଖାଦ୍ୟପାନୀୟ କଥା ମୁଁ ବୁଝୁଥିଲି । ଯେଉଁ ଅରୁଆ ଚାଉଳର ଭାତ ସେ ଖାଆନ୍ତି, ତାହା ଏ ଇଲାକାରେ ମିଳୁନଥିଲା । ଯେଉଁ ବାଇଗଣ ବଜାରରୁ କିଣା ହୋଇଆସୁଥିଲା, ତାକୁ ସେ ମୋଟେ ପସନ୍ଦ କରୁନଥିଲେ ଏବଂ ସେ ବିକୃତ ଭାବରେ ବର୍ଣ୍ଣନା କରୁଥିଲେ ତାର ରୂପରେଖ । ତାଙ୍କର ଗୋଟିଏ ଗୋଡ ପୋଲିଓରେ ଆକ୍ରାନ୍ତ ହୋଇଥିଲା । ବଡ ଦୁଃଖରେ ସେ କାଳ କାଟୁଥିଲେ । ସବୁବେଳେ ରିକ୍ସା ବ୍ୟବହାର କରୁଥିଲେ । ଆମର ଏହି ଇଲାକାର ପିଲା ତାଙ୍କ କ୍ଲାସରେ କିଛି ବୁଝୁ ନଥିଲେ । ତାଙ୍କର ଇଂରାଜୀ ଖୁବ୍ ଉଚ୍ଚଧରଣର ।

ମୋର ବାରିପଦା ରହଣିକାଳ ଘଟଣାପୂର୍ଣ୍ଣ । ମୋତେ ଟ୍ୟୁସନ କରିବାକୁ ପଡିଲା ଆର୍ଥିକ ଅନଟନ ଓ ଗୃହଜଞ୍ଜାଳପାଇଁ । ବିନୟ ଶର୍ମା ବୋଲି ମାରୁଆଡି ପିଲାଟିକୁ ମୁଁ ପଢାଉଥିଲି । ମାସକୁ ୩୦ ଟଙ୍କା ଲେଖା । ପରେପରେ ଯେତେବେଳେ ନୂଆ ଘର କଲି ସେତେବେଳେ ବେଶିବେଶି ପିଲା ଆସିଲେ । ଭଲ ଟ୍ୟୁସନ ମାଷ୍ଟର ବୋଲି ନାମହେଲା । ବିନା ଧରାଧରିରେ ପିଲାଗୁଡାକ ପାସ୍‌କରିଗଲେ । ଭଲ ଫଳ ମଧ୍ୟ କଲେ ।

K.C. Neogy ଦେଓ୍ୱାନ ଦିନେ କହିଥିଲେ, 'ଛେଲେଟା ambitious ନୟ୍' । ସାନଭାଇ ବରାବର କହେ, "ନନାଙ୍କର ଘରକରଣା ବୁଦ୍ଧି ସେମିତି ପ୍ରଖର ନୁହେଁ ।" ମୋର ଚାକିରି ଦଶବାର ବର୍ଷ ହୋଇଯିବା ପରେ ସ୍ତ୍ରୀଙ୍କର ପ୍ରରୋଚନାରେ କିଛି ବୁଦ୍ଧି ଉଦୟହେଲା । ଦୁଇ ଚାରି ଟଙ୍କା ହାତକୁ ଆସିଯିବାରୁ ପାଖ ପଡିଶାଙ୍କୁ ଧାର ଉଧାର ଦେବାକୁ ଆରମ୍ଭକଲି । ଇଂଜିନିୟରିଙ୍ଗ ପଢୁଥିବା ଜଣେ ପଡୋଶୀଙ୍କ ପୁଅର ଖର୍ଚ୍ଚପାଇଁ ପ୍ରାୟ ୨୫୦ ଟଙ୍କା ପଡିଶା ଘରେ ସ୍ତ୍ରୀଙ୍କୁ ଧାର ଦେଇଥିଲି । ସେ ଟଙ୍କା ଶୁଝିପାରିଲେ ନାହିଁ, ଯଦିଓ ତାଙ୍କ ସ୍ୱାମୀ ଡି.ଏଫ୍.ଓ. ଥିଲେ । ଭଲ ଗାଈଟିଏ ତାଙ୍କର ଥିଲା । ଟଙ୍କା ବାବଦରେ ସେ ମୋତେ ଗାଈଟି ଦେଲେ । ଲକ୍ଷ୍ମୀ ଆସିଗଲା ।

ଏହି ସମୟରେ ଅଚାନକ ଡଃ ମାୟାଧର ମାନସିଂହ ବଦଳି ହୋଇ ଇଂରାଜୀ ଡିପାର୍ଟମେଣ୍ଟର ମୁଖ୍ୟ ଭାବରେ ଆମ କଲେଜକୁ ଆସିଲେ । ଡଃ ମାନସିଂହଙ୍କର ଏକ ଦଣ୍ଡ ଆକାରରେ ବଦଳି ହୋଇଥିଲା । ମୁଁ ତାଙ୍କର ଜଣେ ଭକ୍ତ ଓ ସ୍ତାବକ ଥିଲି । ଅନେକ ଭଲମଣିଷ ଉପରିସ୍ଥ କର୍ମଚାରୀଙ୍କର ଅବିବେକିତାପାଇଁ ନିପୀଡିତ ହୋଇଥାନ୍ତି । ସେ ଦୁଇ ଦିନ ପରେ ଚାଲିଗଲେ । ମୋ ମତରେ ସେ ନିର୍ଦ୍ଦୋଷ fallen angel; ସ୍ୱର୍ଗର ନିର୍ବାସିତ ଦେବଦୂତ ।

ପ୍ରିନ୍‌ସପାଲ ଗୁରୁଦୟାଲ ସିଂଙ୍କର ବଦଳି ପରେ ଆସିଲେ ଶ୍ରୀ ଜଗଦାନନ୍ଦ ମହାନ୍ତି । ତାଙ୍କର ପୋଷାକପତ୍ର, ଚାଲିଚଳନ, ଆଚାରବ୍ୟବହାର, ରୀତିନୀତି ଦେଖିଲେ ଯେ କୌଣସି ଲୋକ କହିବ ସେ ଜଣେ ଆଦର୍ଶ ଖ୍ରୀଷ୍ଟିଆନ ଓ ଭଦ୍ରଲୋକ । ସେ ଇତିହାସ

କେବେ କେମିତି ପଡଉଥିଲେ। ଟେନିସ୍ ଖେଳୁଥିଲେ। ପ୍ରଫେସରମାନଙ୍କ ଶନିବାରିଆ କ୍ଲବ୍ ଗଢି ତାଙ୍କ ବାସଭବନକୁ ନିମନ୍ତ୍ରଣକରି ବିବିଧ ଆମୋଦ-ପ୍ରମୋଦର ବ୍ୟବସ୍ଥା କରୁଥିଲେ। ଯେ କୌଣସି ଅଧ୍ୟାପକଙ୍କ ଉପରେ ବିପଦଆପଦ ପଡିଲେ, ସେ ସସ୍ତ୍ରୀକ ଯାଇ ତାଙ୍କ ଘରେ ଛିଡାହୁଅନ୍ତି। ସେ ଦିନେ ମୋର ନୂଆଘରେ ଅକସ୍ମାତ୍ ସସ୍ତ୍ରୀକ ଉପସ୍ଥିତ ହେଲେ। ଶୁଣିଲେ ଯେ ବହୁଦିନ ଧରି ନେଫ୍ରାଇଟିସ୍‌ରୋଗରେ ପୀଡିତ ମୋର ସାନଝିଅଟିର ପ୍ରାୟ୍ ଦେହାନ୍ତ ହୋଇଯାଇଛି। ସେ ଭୋରରୁ ଆସି ମୋର ନୂଆଘରେ ଆଶ୍ୱାସନା ଦେବାପାଇଁ ପହଞ୍ଚିଗଲେ। ଝିଅ ସେତେବେଳକୁ ବର୍ଷେ ଖଣ୍ଡେ ଶଯ୍ୟାଗତ ହେଲାଣି। ସେ ରୋଗଟା ଗୋଟିଏ ନିଉଛୁଆ ରୋଗ। ସହଜରେ ଭଲ ହୁଏନାହିଁ। ଦେହ, ହାତ, ମୁହଁ, ଗୋଡ, ଆଖି ସର୍ବାଙ୍ଗରେ ପାଣି ଜମାହୋଇ ଫୁଲିଯାଏ। ଆଖିଗୁଡାକ ଛୋଟଛୋଟ ବଲ ପରି ଦିଶେ। ମୋର ଝିଅ ଏମିତି ଫୁଲିଗଲା। ତାକୁ ଚାହିଁ ହେଲା ନାହିଁ। ଜଣେ ଆମେରିକା ଫେରନ୍ତା ଡକ୍ଟରଙ୍କ ଚିକିତ୍ସାରେ ବହୁତ ଦିନଧରି ଥିଲା। ଦିନେ ରାତି ୯ଟା ବେଳେ ସେ ଆସିଲେ। ବହୁ କଷ୍ଟରେ ଶିରାଟିଏ ପାଇ ତହିଁରେ injection ଟିଏ ଦେଲେ। କହିଲେ ଏ ରୋଗ ଦୁରାରୋଗ୍ୟ; ଏହାକୁ ଭଲ କରିବା ଆମ ପାଠରେ ନାହିଁ। ବର୍ଷେ କାଳ ସାଧ୍ୟମତେ ଚିକିତ୍ସାକଲୁ, ଆଉ ଘଣ୍ଟାଏ ମଧ୍ୟରେ ସେ ଶେଷ ହୋଇଯିବ। ବହୁ ଦିନରାତି ଉଜାଗର ରହି ତା ମା ଓ ମୁଁ ଶୋଇପଡିଛୁ।

ଶୋଇବା ପୂର୍ବରୁ ବି.ଏ. କ୍ଲାସରେ ପଢୁଥିବା ବାସୁଦେବ ବୋଲି ମୋର ଅତୀବ ବିଶ୍ୱସ୍ତ ଓ ଆତ୍ମୀୟ୍ ପିଲାଟିକୁ କାନ୍ଦକାନ୍ଦ ହୋଇ କହିଲି "ବାସୁ। ତୁମେ ସେଇଠି ବସିଥାଅ"। ଦଣ୍ଡେ ପରେ, ଡାକ୍ତରଙ୍କ କଥା ଅନୁଯାୟୀ ଭାବିଲୁ ଝିଅ ଚାଲିଗଲା। ସେଥିପାଇଁ ତାକୁ ଖଟରୁ ତଳକୁ ଓହ୍ଲାଇଦେଲୁ। ଉତ୍ତରକୁ ମୁଣ୍ଡକରି ଶୁଆଇଦେଲୁ। ଯେତେ ଡାକିଲେ ସୁଦ୍ଧା ଶବ୍ଦ କିଛି ନାହିଁ। ତା ପାଖରେ ଶେଯରେ ରଖିଦେଲୁ ତାର ଯାହାକିଛି ପାର୍ଥିବ ଜିନିଷପତ୍ର, ଯଥାକ୍ରମେ: ସ୍ଲେଟ୍‌ଟିଏ, କିଛି ଖଡି, ବର୍ଣ୍ଣମାଳା ବହିଟିଏ। ଆଉ କେତେଗୁଡିଏ ପଇସି ଦୁଇପଇସି। ଗୋଟିଏ ପୁଟୁଳା କରି ତାର ପିନ୍ଧା ପେଣ୍ଟଜାମା, ଯେଉଁଗୁଡିକ ତାର ଦେହକୁ ଆଦୌ ଫିଟ୍ କଲା ନାହିଁ, ଏମିତି କେତେ କ'ଣ। କାଶୀନାଥ ବାବୁ ସ୍କାଉଟ୍ ମାଷ୍ଟରଙ୍କୁ ଅପେକ୍ଷା କଲୁଁ। ପୋଡା-ପୋତା କାମରେ ସେ ରଥୀ ଓ ଧୁରନ୍ଧର। ସେ ଘରେ ନ ଥିଲେ। ତାଙ୍କ ଘରେ ଖବର ଦିଆଗଲା। ରାତି ୧୦/୧୧/ ୧୨, ଏମିତି କି ଗୋଟାଏ ବାଜିଲା। ଆମେ ଦୁଇଜଣ ଶୋଇଗଲୁ କେତେ ମିନିଟ୍‌ପାଇଁ। ଆମ ପାଖରେ ଶୋଇଥିବା ସାନ ପୁଅଟି ବିଳବିଳେଇ ହଠାତ୍ ଉଠି ବସି କହେ 'ହାଇରେ ସୁଧା'; ପୁଣି ଶୋଇଯାଏ। ରାତି ପ୍ରାୟ୍ ୨ଟା ହେବ, ବାସୁଦେବ ଚିତ୍କାର କଲା "ସାର୍,

ଝିଅର ପାଟିରୁ ଗଁ ଗଁ ଶବ୍ଦ ବାହାରୁଛି ।" ଆଉ ଦଣ୍ଡେ ପରେ ବାସୁଦେବ ପୁଣି ଚିତ୍କାରକଲା "ସାର୍, ମୋ ହାତକୁ କାବୁଡ଼ି ଧରିଛି ।" ମୁଁ କହିଲି- "ବାସୁଦେବ, ହାତ ଛଡ଼ାଇ ଆଣ, ମଲାହାତ ଫିଟିବ ନାହିଁ, କାଟିବାକୁ ପଡ଼ିବ" ପୁଣି ଦଣ୍ଡେ ପରେ କହିଲା- "ସାର୍, ପୁଣି ଜୋର୍‌ରେ ଧରୁଛି ।" ମୁଁ ଦୌଡ଼ିଗଲି । ବାସୁଦେବଠାରୁ ତା ହାତକୁ ଛଡ଼ାଇଆଣି ସେ ଜାଗାରେ ମୋର ହାତକୁ ଧରେଇଦେଲି । କହିଲି- "ମା'ରେ, ମୋ ହାତକୁ କାବୁଡ଼ି ଧର୍, ଯେତେ ଜୋର୍‌ରେ ପାରିବୁ ।" ଶୁଣିଛିକି ନାହିଁ ମୋର ବେକକୁ ଧରିଲା । ମୁଁ କହିଲି- "ଯେତେ ଜୋର୍‌ରେ ଚିପି ପାରିବୁ ଚିପି ଦେ, ମୁଁ ମରିଯାଏ ତୁ ବଞ୍ଚିଥା ।" କ'ଣ ଗୁଜିଏ କହିଲା ପରି କଣାଗଲା । ସୁଧାକୁ ପଚାରିଲି- "ଉପରେ ଆଲୁଅଟା ଜଳୁଛି, ଦିଶୁଛି ମା?" ବହୁ କଷ୍ଟରେ ତା ପାଟିରୁ ବାହାରିଲା- "ମୋତେ କିଛି ଦିଶୁନି ବାପା ।" ମୁଁ ଚାହୁଁଚାହୁଁ ଯେଉଁ ମଶିଣାରେ ତାକୁ ଗୋଡ଼ାଇ ଶୋଆଇଥିଲି ତାହା ଫିଟାଇଦେଇ ତା ମାଆ ପାଖକୁ ନେଇଗଲି । ଫୁଲାରେ ଦେହ ମୁହଁ ବୀଭତ୍ସ ଦିଶୁଥାଏ । ସକାଳ ହେଲା ପର୍ଯ୍ୟନ୍ତ ସେମିତି ବସି ରହିଲୁ ।

ଭାଗ୍ୟ ଭଲ, କାଶୀନାଥ ବାବୁ ଆସିଲେ ନାହିଁ । ନ ହେଲେ ଡାକ୍ତରଙ୍କ କଥାରେ ପଡ଼ି ତାକୁ ଜୀବନ୍ତ ସମାଧି ଦେଇଥାନ୍ତୁ । ସୁଧା ମରିଲା ନାହିଁ, ବଞ୍ଚିଗଲା । ସାଇକେଲ୍ ଧରି ବାହାରି ପଡ଼ିଲି ଚିକିତ୍ସା ପଦ୍ଧତି ବଦଳେଇ ନୂଆ ଚିକିତ୍ସକଟିଏ ଡାକିବାପାଇଁ । ମୁଁ ବାହାରି ଯାଉଛି- ପ୍ରିନ୍‌ସିପାଲ ମୋତେ ଡାକି ଚୁପେଚୁପେ କହିଲେ- "ବସନ୍ତବାବୁ ଝିଅ ବଞ୍ଚିବା ନବଞ୍ଚିବା ଭଗବାନଙ୍କ ଉପରେ । ଆପଣ ମନେପକାନ୍ତୁ ଆପଣଙ୍କ ସ୍ତ୍ରୀଙ୍କ ସହିତ କୌଣସି କିଛି ମନୋମାଳିନ୍ୟ ଝଗଡ଼ାଝାଟି ହେଉଛି କି ? ଆପଣଙ୍କ ଭାଗବତରେ ବି ଅଛି 'ପିତାମାତାଙ୍କ ପୁଣ୍ୟ ଫଳେ । ସୁପୁତ୍ର ଉପୁଜଇ କୋଳେ ।' ଯଦି କିଛି ଅଘଟଣ ହେଉଥାଏ, ତାହେଲେ ସେଇଟା ସୁଧାରି ନିଅନ୍ତୁ । ଝିଅ ଆପେଆପେ ଭଲ ହୋଇଯିବ ।" ତାଙ୍କ କଥାକୁ ମୁଁ ତିଳେହେଲେ କାନ ନ ଦେଇ ଆଗେଇଲି । ମନର ଅବସ୍ଥା ଏମିତି କାହିଁକି କୁଆଡ଼କୁ ଯାଉଛି ଭାବିପାରୁ ନଥାଏ । ଘରୁ ଖଣ୍ଡେ ଦୂର ଯାଇଛି, ଯେଉଁଠି ଛୋଟିଆ ରେଳଲାଇନ୍‌ଟି ବାସ୍ତାରୋଡ଼୍‌କୁ ଛେଦକରିଛି, ସେଇଠି ଦେଖିଲି ରିକ୍ସାରେ ଛତା ଫୁଟାଇ ମୋ ଆଡ଼କୁ ଆସୁଚନ୍ତି ପଞ୍ଚୁ କବିରାଜ । ମୟୂରଭଞ୍ଜର ଖ୍ୟାତନାମା ଆର୍ଯ୍ୟୁବେଦ ବିଶାରଦ । ମୁଁ ତାଙ୍କୁ ସମ୍ମାନକରେ । ସେ ମୋତେ ଚିହ୍ନନ୍ତି । ତାଙ୍କ ରିକ୍ସା ଅଟକାଇଲି । ମୁଁ ତାଙ୍କୁ ରିକ୍ସାରୁ ଓହ୍ଲାଇବାକୁ ନକହି ସିଧା କହିଗଲି, "କବିରାଜ ମହାଶୟ, ଆପଣଙ୍କୁ ଭଗବାନ ବୋଲି ମୋର ପ୍ରତ୍ୟୟ ହେଉଛି । ମୋର ଝୁଆଟି ମରିଯାଉଥିଲା, ବଞ୍ଚିଛି । ଆପଣ ଟିକେ ଆସି ଦେଖିବେ ।" ମୋର ଅବସ୍ଥା ଓ କଥା ଶୁଣି ତାଙ୍କର ଗନ୍ତବ୍ୟ ସ୍ଥାନକୁ ନ ଯାଇ, ମୋ ଘରକୁ

ଆସି ଦେଖିଲେ । କଣ ପରୀକ୍ଷା ନିରୀକ୍ଷା କରି, ନାଡି ଦେଖି ସେ କହିଲେ- "ଆପଣଙ୍କର ପୁଅକୁ ମୋ ସହିତ ପଠାନ୍ତୁ"। ସେ ଘରକୁ ଫେରିଗଲେ । ତାଙ୍କ ଘର ଜଗନ୍ନାଥ ମନ୍ଦିରର ଦକ୍ଷିଣକୁ ଲାଗିକରି । ପୁଅହାତରେ ସେ କେତେଟା ବଟିକା ଦେଲେ; ଆଉ ହିମାଳୟର କଣ ଚେରମୂଳିକାକୁ ଚନ୍ଦନପେଡିରେ ଘଷାଘଷିକରି ବୋତଲେ ଔଷଧ ଦେଲେ । ମାସେ ଖଣ୍ଡେ ପୁଅ ପଡାପଡି ଛାଡି ଔଷଧ ନେବା ଆଣିବାରେ ସକାଳଟି କଟାଏ । ସେହି ଔଷଧ ଖାଇବାରୁ ଆଶ୍ଚର୍ଯ୍ୟ ଫଳମିଳିଲା । ଝିଅର ୩୦/୩୫ ଥର ପାଣି ପରି ତରଳ ଝାଡା-ପରିସ୍ରା ହୁଏ । ତାହୁଁତାହୁଁ ତାଦେହର ଫୁଲା କମିବାକୁ ଲାଗିଲା । ଆଖିଗୁଡାକ ସାଧାରଣ ହୋଇଆସିଲା, ଏବଂ ତାପରେ ଫୁଲା ଏତେ ମାତ୍ରାରେ କମିବାକୁ ଲାଗିଲା, ଯେପରି ତା' ଦେହରେ ଖାଲି ହାଡ-ପଞ୍ଜରା ରହିଲା; ଗୋଡହାତ କୁଙ୍କୁଡିଗଲା । କବିରାଜ ଆଉ ପାରିଲେ ନାହିଁ । ମୁଁ ପୁଣି ଆମେରିକା-ଡାକ୍ତର ପାଖକୁ ଗଲି । ସେ ଆସି ଆଶ୍ଚର୍ଯ୍ୟ ହେଲେ ଯେ ଝିଅ କେମିତି ବଞ୍ଚିଛି, ଏବଂ ତା' ଦେହର ପାଣି ଗଲା କୁଆଡେ ! ଯାହାହେଉ ସେ ପୁଣି ଚିକିତ୍ସା ଆରମ୍ଭକଲେ । ଭିଟାମିନ୍ ଜାତୀୟ ଔଷଧ ଦେଲେ, ଝିଅର ସାଧାରଣ ସ୍ୱାସ୍ଥ୍ୟ ଫେରିଆସିଲା ଏବଂ ସେ ପଡାପଡି ଆରମ୍ଭକଲା ।

ପରବର୍ତ୍ତୀ କାଳରେ ସେ ବିଭିନ୍ନ କଲେଜରେ ପାଠ ପଢି ଇକୋନୋମିକ୍ସରେ ଏମ୍.ଏ. ପାସ୍‌କଲା, ବାହାହେଲା, ପିଲାଛୁଆ ଜନ୍ମକଲା । କିନ୍ତୁ ଦଇବର ବରାତ ଅଲଗା । ତାର ନିଜର ବଡପୁଅ ଯେତେବେଳେ ୧୦/୧୧ ବର୍ଷର, ସେତେବେଳେ ତାକୁ ସେଇ ମାରାତ୍ମକ 'nephritis' ଧରିଲା । ଯଦିଓ ଦୀର୍ଘ ୨୦/୨୫ ବର୍ଷ ପରର ଦୁନିଆ ଏବଂ ଚିକିତ୍ସା ଜଗତରେ ନାନା ଅମୋଘ ଔଷଧ, ମହୌଷଧି ବାହାରି ସାରିଥାଏ, ନେଫ୍ରାଇଟିସ୍‌କୁ ଭଲ କରାଯାଇପାରିଲା ନାହିଁ । କଟକ ମେଡିକେଲର ପାଖରେ ଥାଇ ମଧ୍ୟ କିଛି ଲାଭ ହେଲାନାହିଁ । ନାତିକୁ ପୁଣି ବୃଦ୍ଧ ପଞ୍ଚୁ କବିରାଜ ପାଖକୁ ନେଇଗଲି । ସେ ସେହି ଔଷଧ ଦେଲେ । କିନ୍ତୁ ସବୁ ଚେଷ୍ଟା ବିଫଳହେଲା । ସେ ଛୁଆଟି ଚାଲିଗଲା । ତାର ମାଆକୁ ଅନନ୍ତ ରଖିଥିଲେ । ମାତ୍ର ଛୁଆକୁ କେହି ବଳବନ୍ତ ରଖିପାରିଲେ ନାହିଁ ।

ନୂଆ ଘରକୁ ଆସିବା ପୂର୍ବରୁ ବାଘଡା ରୋଡରେ ସେହି ପୁରୁଣା ଘରେ ୩ ନମ୍ବର ପୁଅ ଜନ୍ମ ହେଲା ୧୯୫୧ ମସିହାରେ । ତା ଆଗ ପୁଅ କିନ୍ତୁ ଜନ୍ମ ହୋଇଥିଲା ହାଇସ୍କୁଲ ଫାଟକ ପାଖ ବସାରେ । ସେ ଜନ୍ମହେଲା ପରେ ମୋର ଲାଗଲାଗ ତାକୁ ମିଶାଇ ତିନି ପୁଅ ଜନ୍ମ ହୋଇଥିଲେ । ନୂଆ ପୁଅର ବହୁତ ଧୁମ୍‌ଧାମ୍‌ରେ ଏକୋଇଶିଆ କରିଥିଲି । ଜଗନ୍ନାଥ ମନ୍ଦିରରୁ ଭୋଗ ଆଣି ବନ୍ଧୁମାନଙ୍କୁ ଆପ୍ୟାୟିତ କରିଥିଲି ।

ଏତିକିବେଳେ ସ୍ତ୍ରୀର କଣ ଗୋଟାଏ ରୋଗ ଧରିଲା, nephratis ପରି ଫୁଲାରୋଗ। ତାଙ୍କୁ ହୋମିଓପ୍ୟାଥିକ୍ ଚିକିତ୍ସାରେ ରଖିଲି। ଅନନ୍ତ ରଥ ବୋଲି ଜଣେ ଖୁବ୍ ନାମକାଦା ପୁରୀ ଜିଲ୍ଲାର ଲୋକ ଥାନା ଆଗରେ ରହି ରୋଗୀ ଦେଖାଶୁଣା କରୁଥାନ୍ତି। ଦିନେ କଲେଜ କାମ ସାରି ତାଙ୍କର ଡାକ୍ତରଖାନାରେ ପହଞ୍ଚିଗଲି। ଖୁବ୍ ଆତ୍ମୀୟତା ଥିବାରୁ ସିଧାସଳଖ ଉଠିଯାଇ ବସିଗଲି ଖାଲି ପଡିଥିବା ଗୋଟିଏ ଚେୟାରରେ। ଲଗେଇଥିବା ସିଗାରେଟ୍‌ଟିକୁ ଶେଷ ଦୁଇତିନି ଥର ଟୋକିଦେଇ ପିଣ୍ଡା ତଳକୁ ଫୋପାଡି ଦେଲି, ଏବଂ ଇଂରାଜୀ ଢାଞ୍ଚାରେ କହିଲି "May I smoke doctor ?" Doctor ଏତେ ଉତ୍ତ୍ୟକ୍ତ ହୋଇଗଲେ ଯେ, ସେ ଆମର ସବୁ ଆତ୍ମୀୟତା ଭୁଲିଯାଇ କହିଲେ- "You have become a slave to such a nasty habit"। ମନେମନେ ରାଗିଗଲି। ମୁଁ ଇଂରାଜୀ ଅଧ୍ୟାପକ। ମୋତେ ସିଏ ଇଂରାଜୀରେ ଗାଳିଦେଲେ। ମନେପଡିଲା, ଫ୍ରେଜର ହଷ୍ଟେଲର ନବମ ଶ୍ରେଣୀର ବନ୍ଧୁ ନରେନ୍ଦ୍ର ପଟ୍ଟନାୟକ। ତାକୁ ମନେମନେ ଗୁଡାଏ ଗାଳିଦେଲି।

ପ୍ରକୃତରେ ସିଗାରେଟ୍ ଛାଡିବା, ବିଶେଷ କରି ଜଣେ chain-smoker ପକ୍ଷରେ, ଯେ କେତେ କଷ୍ଟ ସେ କଥା ଯେକେହି ଲୋକ ପରୀକ୍ଷା କରି ଜାଣିପାରିବେ ଘଣ୍ଟାଏ ଭିତରେ। କିନ୍ତୁ ଭୀଷ୍ମଙ୍କର ଯେଉଁ ପ୍ରତିଜ୍ଞା, ମୋର ପ୍ରତିଜ୍ଞା ସେମିତି ହେଲା। ଫଳରେ କ୍ରମେକ୍ରମେ ମୋର ଗୋଡହାତ ପଡିଗଲା। ମୁଁ ଦୁର୍ବଳ ହୋଇଗଲି। କଡ ଲେଉଟାଇବା ବି କଷ୍ଟକର ହେଲା। ସ୍ତ୍ରୀ ବଡ ବ୍ୟସ୍ତ ବିକଳ ହୋଇଗଲେ। ଥରେ କହିଲେ- "ରାଣ ଅଛି ତୁମେ ଗୋଟିଏ ହେଲେ ବିଡି ଖାଅ"। ତଥାପି ମୁଁ ତାଙ୍କର ଅନୁରୋଧ ରକ୍ଷାକଲି ନାହିଁ।

ମୟୂରଭଞ୍ଜ ମହାରାଜା ମୋତେ ପରୀକ୍ଷା କରିବାପାଇଁ କହିଲେ- "ତୁମେ ପରା ସିଗାରେଟ୍ ଛାଡି ଦେଇଛ ? ମୁଁ ୫୫୫ ନମ୍ବର ସିଗାରେଟ୍ ଆଣିଛି, ଖାଅ।" ମୁଁ କହିଥିଲି, "ମହାରାଜ୍ ମୋତେ ଆପଣ ମଦ ଖାଇବାପାଇଁ କହିବେ, ମୁଁ ପାରିବି; ବେଶ୍ୟାଳୟକୁ ଯିବାକୁ କହିବେ ମୁଁ ଯିବି, କିନ୍ତୁ ସିଗାରେଟ୍ ଟାଣିବି ନାହିଁ। ୧୮ ବର୍ଷ ଧରି ମୁଁ ଜଣେ hard chain-smoker। ଥରେ ଛାଡିଲି, ଆଉ ନାହିଁ।" ୧୧ ମାସ ଧରି ମୁଁ ସିଗାରେଟ୍ ଛାଡିଦେଲି।

ଲୋକଙ୍କ ଗାଳିଗୁଲଜରେ ଯେମିତି ଛାଡି ଦେଇଥିଲି, ଲୋକଙ୍କର ଅନୁନୟ ବିନୟରେ ମୁଁ ପୁଣି ଧରିଲି। ଯେତେବେଳେ ପାରଳାଖେମୁଣ୍ଡି କଲେଜକୁ ଗଲି, ସେଇଠି କେ.ସି. ଦେବ୍ ବୋଲି ଜଣେ ଇଂରାଜୀ ଅଧ୍ୟାପକ ଥାନ୍ତି। ଇଂରାଜୀ ସାହିତ୍ୟ, ବ୍ୟାକରଣ

ଓ ଉଚ୍ଚାରଣ ଆଦିରେ ସେ ଜଣେ ରଥୀ ଏବଂ ତାଙ୍କ ଶିକ୍ଷାଦାନ ପଦ୍ଧତି ଅତୀବ ଚିତ୍ତାକର୍ଷକ। ସେ ମୋତେ ଭାରି ଭଲପାଉଥିଲେ। ଆଦର୍ଶ ବଙ୍ଗାଳୀ ସେ। ମଧୁର ବ୍ୟବହାର । ସେ ଦିନେ କଲେଜ ଛୁଟି ସମୟରେ କହିଲେ- "ବସନ୍ତବାବୁ, ଆପଣଙ୍କୁ ଗୋଟିଏ ସିଗାରେଟ୍ ଦେବି। ମୁଁ ଜାଣେ ଆପଣ ଜଣେ ଧୂମପାୟୀ।" ମୁଁ ତାଙ୍କ ଠାରୁ ଘୁଞ୍ଚିଯାଇ ହାତ ହଲାଇ ଯେମିତି କହିଲି- "ମୁଁ ଧୂଆଁ ଛାଡିଦେଇଛି ଏବଂ ମୟୁରଭଞ୍ଜ ରାଜାସାହେବ ମୋତେ ସିଗାରେଟ୍ ଖୁଆଇପାରି ନାହାନ୍ତି ।" ସେ କହିଲେ, "ମୁଁ ସିନେଟ୍ ନିର୍ବାଚନରେ ଜିତିଛି। ସେ ଆନନ୍ଦରେ ଭାଗନେବା ବ୍ୟକ୍ତି ଆପଣଙ୍କ ଛଡା ଆଉ କାହାକୁ ଦେଖୁନାହିଁ"। ଖୁବ୍ ଅନୁନୟ ବିନୟ ହୋଇ ସେ ସିଗାରେଟ୍ ମୋ ଆଡକୁ ବଢାଇଦେଲେ। ମୋର ପ୍ରିୟ ସିଗାରେଟ୍ କେପ୍‌ଷ୍ଟାନ୍। They are blended better ଲେଖାହୋଇଛି ପେକେଟ୍ ଖୋଳରେ। ହଁ, ନା, କରୁକରୁ ସିଗାରେଟ୍‌ଟି ମୁଁ ଧରିଲି। ସେ ଲଗେଇଦେଲେ ଦିଆସିଲି ଜାଳି। ମୋର ୧୨ ବର୍ଷର ତପସ୍ୟା ଶୁଖୁଆପୋଡାରେ ଗଲା। ରାସ୍ତାରେ ଦୁଇଚାରିଥର ଟାଣିଛି। ମୁଣ୍ଡ ବୁଲେଇଦେଲା। କ୍ୱାଟର୍ସରେ ପହଞ୍ଚି ଖଟଟାଏ ପକାଇ ଶୋଇଗଲି। ଜୋରରେ ମୁଣ୍ଡବୁଲାଇଲା। ସିଗାରେଟ୍‌ଟା ହାତରୁ ଖସିପଡିଲା। ସିଗାରେଟ୍ ତଳେ ପଡି କୁହୁଳୁଥାଏ। ସ୍ତ୍ରୀ ମୋର ଏ ଦୂରାବସ୍ଥାର କାରଣ ଜାଣି ପାରିଲେ। ପିଲାମାନଙ୍କୁ ଡାକି କହୁଥାନ୍ତି "ଆସରେ ବାବୁ ସୌଭାଗ୍ୟ, ସୁଧା, ସଞ୍ଜୟ, ଦେଖ ତୁମ ବାପାଙ୍କ ଅବସ୍ଥା।" ଏ ଘଟଣାର କେତେ ଦିନ ପରେ ସିଦ୍ଧେଶ୍ୱର ହୋତା ମଧ୍ୟ ସିନେଟ୍ ନିର୍ବାଚିତ ହେଲେ। ସେ ସିଗାରେଟ୍ ଯାଚିଲେ। ମୁଁ ଯେମିତି "ନାଁ" କହିଛି, ସେ କହିଲେ, "କ୍ଷିତୀଶ ଦେବ ସିନେଟ୍‌ରେ ଜିତି ସିଗାରେଟ୍ ଦେବା ବେଳକୁ ଆପଣ ଟାଣିଲେ; ମୁଁ ଦେଲାବେଳକୁ ନାହିଁ କରୁଛନ୍ତି। ମୁଁ ଓଡିଆ ତ। ଆପଣଙ୍କର ବଙ୍ଗାଳୀ ପ୍ରୀତି ଟିକେ ବେଶି ଅଛି।" ମୋତେ ବାଧିଲା। ତାଙ୍କ ସିଗାରେଟ୍‌ଟା ନେଇ ମୁଁ ଧରାଇଲି। ପାରଳାଖେମୁଣ୍ଡିରେ ବିଯ୍ୟୋତ୍‌କେଶ ତ୍ରିପାଠୀ ଇଂରାଜୀ ଅଧ୍ୟାପକ ହୋଇ ଯୋଗଦେଲେ। ସେ ମୋତେ ଭାରି ଭଲପାଆନ୍ତି। ମୁଁ ଇଂରାଜୀ କ୍ଲାସରୁ ଝାଳନାଳ ହୋଇ ଫେରିଲା ମାତ୍ରେ, ସେ ଗୋଟିଏ ସିଗାରେଟ୍ ରୋଲ୍ କରିପକାନ୍ତି, ପକେଟ୍‌ରୁ କାଗଜ ବାହାର କରି ଦୋକ୍ତାରେ ଭର୍ତ୍ତି କରିଦିଅନ୍ତି ଏବଂ ମୋ ଓଠ ପାଖରେ ଦେଖାନ୍ତି। ମୁଁ ଜିଭରେ ଛେପ ଲଗାଇଦିଏ ଓ ଟାଣିବାକୁ ଆରମ୍ଭକରେ। କିଛି ଦିନ ପରେ ଭାବିଲି, ସିଗାରେଟ୍ ଗୋଟିଏ ଗୋଟିଏ ଖାଇବି। କିଣି ଖାଇବି ନାହିଁ, କିଏ ଦେଲେ ଖାଇବି। ପୁଣି ଧୂଆଁ ଟାଣିଲି। ଆଉଥରେ ଅଭ୍ୟାସହୋଇଗଲା । ବାଲେଶ୍ୱର ବଦଳି ହୋଇ ଯିବାରୁ ସେଇଠି ସିଗାରେଟ୍ କିଣିବାକୁ

ଆରମ୍ଭକଲି; ବିଡି ଛାଡିଦେଲି । ତିନି ପ୍ୟାକେଟ୍ ସିଗାରେଟ୍ ପ୍ରତିଦିନ ଖାଏ; ଘରଯାକ ଖଣ୍ଡିଆ ସିଗାରେଟ୍‌ରେ ଭରପୂର । ୧୧ ମାସରେ ପୂର୍ବ ପ୍ରତିଜ୍ଞା ଭଙ୍ଗକଲି ।

ମଝିରେ ଦିନେ ଭାଇ ଓ ତା ଝିଅ ସାଙ୍ଗରେ କଟକ ଯାଇଥାଏ । ବାଟ ଯାକ ଧୂଆଁ ଟାଣିଟାଣି କାଶୁଥାଏ । ଆଖି ନାକରୁ ପାଣି ବାହାରୁଥାଏ । ଝିଆରୀ ତା ବାପାକୁ କହିଲା- "ବାପା ! ଚାଲ ଦଦେଇକୁ କଟକରେ ଦେଖାଇବା । ତାଙ୍କୁ କ'ଣ ଖରାପ କାଶ ଧରିଲାଣି" । ମୁଁ ତଥାପି ସିଗାରେଟ୍ ଛାଡିଲି ନାହିଁ । ବାଲେଶ୍ୱରରେ ଅକସ୍ମାତ ଦେଖାହୋଇଗଲା ବାୟ୍ଯ ବାରିକ ସେଲୁନ୍ ଆଗରେ ବାରିପଦାର ସେହି ହୋମିଓପାଥ ଡଃ. ଅନନ୍ତ ରଥଙ୍କ ସହ, ଯିଏ ସିଗାରେଟ୍ ଖାଇବା ଛଡେଇଥିଲେ । Nasty habit ବୋଲି କହି । ମୁଁ ଯେ ପୁଣି ସିଗାରେଟ୍ ଧରିଛି, ଏ କଥା ତାଙ୍କୁ ଅଛପାରହିଲା ନାହିଁ । ମୁଁ ମୋର ପାପ ତାଙ୍କ ଆଗରେ ପ୍ରକାଶକଲି ଏବଂ ତାଙ୍କୁ କହିଲି- ସ୍ତ୍ରୀ ମରିଯିବା ପରେ ମୁଁ ପୁଣି ଲେଡି ନିକୋଟିନର ଆଶ୍ରାନେଇଛି । ସେ କହିଲେ- ଆପଣ ଆଉଥରେ ବାହା ହୁଅନ୍ତୁ ବରଞ୍ଚ କିନ୍ତୁ ସିଗାରେଟ୍ ଛାଡିଦିଅନ୍ତୁ । ତାଙ୍କରି କଥାରେ ପୁଣି ସିଗାରେଟ୍ ଧୂଆଁ ଛାଡିଦେଲି । ଟେବୁଲ ଉପରେ ସବୁ ସିଗାରେଟ୍ ପଡିରହିଲା । ସେହିଦିନଠାରୁ ଆଜିକୁ ୩୨ ବର୍ଷ ହୋଇଗଲା, ମୁଁ ଆଉ ଧୂଆଁ ପାଖକୁ ଯାଇନାହିଁ । ମୁଁ ଏବେବି ଅନୁତାପ କରୁଛି, କାହିଁକି ମୁଁ ଧୂଆଁ ପିଉଥିଲି । ସ୍ତ୍ରୀଲୋକମାନେ ମଦ ପିଉଥିବା ସ୍ୱାମୀକୁ ବରଦାସ୍ତ କରିପାରନ୍ତି ନାହିଁ; କିନ୍ତୁ କେହି ସ୍ତ୍ରୀଲୋକ ଧୂଆଁ ଟାଣୁଥିବା ସ୍ୱାମୀକୁ ଭଲପାଇପାରେ ନାହିଁ । ଯାହା ହେଉ ଜୀବନରେ ଧୂଆଁଟଣା ଶିଖିବାଠାରୁ ଧୂଆଁ ଟଣା ଛାଡିବା ବେଶି କଷ୍ଟକର । ମୋର ଦୁଇଟି ଅବଶୋଷ ରହିଗଲା । ବଙ୍ଗଳା ଫିଲ୍ମ "ବିରାଜ ବୋଉ"ରେ ସ୍ୱନାମ ଧନ୍ୟ ପ୍ରାନ୍ ବନ୍‌ସୀ ପକାଉ ପକାଉ ଯିମିତି ସିଗାରେଟ୍ ଟାଣି ରିଙ୍ଗ ଛାଡୁଥିଲା ଢାବାରେ, ମୁଁ ତାହା ନକଲ କରିବାର ଚେଷ୍ଟାକରି ସଫଳ ହୋଇପାରିଲି ନାହିଁ । ଏବଂ, ରେଭେନ୍‌ସା କଲେଜ ହଷ୍ଟେଲର "ଜାଗରଣ" ପତ୍ରିକାରେ 'The art of smoking' ନାମକ ଇଂରାଜୀରେ ରମ୍ୟ ରଚନା ଲେଖି ଯେଉଁ ପୁରସ୍କାର ପାଇଥିଲି, ତାହାର ପୁନରାବୃତ୍ତି କରିବାର ସୁଯୋଗ ଆଉ ଜୀବନରେ ମିଳିଲା ନାହିଁ । ମୋର ଜୀବନର ଶେଷ achievement ହେଲା- ଦୀର୍ଘ ବର୍ଷ ଧୂଆଁ ଟାଣି ୧୧ ମାସ ଛାଡିଲି, ଆରମ୍ଭ କରି ପୁଣି ୧୮ ମାସ ପରେ ପୂରାପୂରି ଛାଡିଲି ।



## ।। ଛୟାଳିଶ ।।

ବାରିପଦା କଲେଜରେ ଥିଲାବେଳେ ପାଛଡା ଗାଁ ଆଡକୁ ମନଡକିଲା । ଆଜିକାଲି ସମସ୍ତେ ଗାଁକୁ ଫେରିଚାଲ କୁହନ୍ତି; କିନ୍ତୁ କେବେ କେହି ରହନ୍ତି ନାହିଁ । ସେମାନଙ୍କୁ କୁହା ହେଲା "ସହରକୁ ଚାଲ", ଗାଁରେ ସବୁ ଟାଉଟର୍, ମଦୁଆ । ଆମ ସମୟରେ ସେମିତି ନ ଥିଲା । ଗାଁରେ ଆମେ ରହୁଥିଲୁ । ଯେତେଦିନ ରହୁଥିଲୁ, ତାର ମଙ୍ଗଳ କରିବାର ଚେଷ୍ଟା କରୁଥିଲୁ । ଗାଁ ଛାଡି ଅନ୍ୟତ୍ର ଚାଲିଗଲେ ବି ଗାଁକଥା ଭାବୁଥିଲୁ । ଗାଁରେ ଖେଳ, ତାମ୍‌ସା ଏବଂ ନାନା ଆମୋଦ-ପ୍ରମୋଦର ବ୍ୟବସ୍ଥା ସେତେବେଳେ କରୁଥିଲୁ । ଗାଁ ଭିତରେ ମେଳ, ମେଣ୍ଟ ଓ ସହଯୋଗିତା ଥିଲା । ଗାଁରେ ସଞ୍ଜବେଳେ ଡାକହାକ ହୋଇ ମୁରିବମାନେ ବସନ୍ତି ଏବଂ ମୁଁ ସେମାନଙ୍କ ଆଲୋଚନା ଆଗ୍ରହରେ ଶୁଣେ । ଥରେ ଆଲୋଚନା ହେଲା, ଗାଁରେ ମାଇନର ସ୍କୁଲ୍‌ଟାଏ କରିବା । ୫୦ ବର୍ଷ ହେଲାଣି ସରକାରୀ ଉଚ୍ଚ ପ୍ରାଥମିକ ସ୍କୁଲଟାଏ ଅଛି । ତାର ନାମ ଯଶ ଖ୍ୟାତି ବଡିବଡି ଚାଲିଛି । ଅନେକ ଦୂରର ଛୋଟଛୋଟ ପିଲାମାନେ ଆକୃଷ୍ଟହୋଇ ଚାଲିଚାଲି ଆସି ସ୍କୁଲ୍‌ରେ ପଡନ୍ତି । ସାରା ରାଜ୍ୟରେ (ମୟୁରଭଞ୍ଜ) ସ୍କୁଲ୍ ପିଲା ୧ମ, ୨ୟ ହୁଅନ୍ତି । ମାଇନର ସ୍କୁଲ୍‌ଟିଏ କଲେ ଅନେକ ପିଲା ଶିକ୍ଷିତ ଓ ଉପକୃତ ହେବେ । ସେତେବେଳେ ମୟୁରଭଞ୍ଜ ରାଜ୍ୟରେ ୫ଟା ମାଇନର୍ ସ୍କୁଲ । ସବୁଠୁ ପାଖ ସ୍କୁଲଟି ୬ ମାଇଲ୍ ଦୂରରେ । ଦୁଇ ଦିନି ଜଣ ମାଇନର୍ ସ୍କୁଲ୍ ସ୍ଥାପନକରିବା ତରଫରେ କହନ୍ତି, ଏବଂ ଅନ୍ୟ ସମସ୍ତେ ନା କରନ୍ତି । ସେମାନଙ୍କୁ ଯୁକ୍ତି ହେଲା, ଗାଁଟା ସହର ହୋଇଯିବ । ଥାନାବାଲା, ଫରେଷ୍ଟର ଗାଁକୁ ଆସିବେ; ପୋଲାରେ ଯା'ଘରେ ତା'ଘରେ ଖାଇବେ, ଚୋରାକାଠ ଧରିବେ, ମାଲିମକଦମା, ବିଚାର କରିବେ । ଶେଷରେ ମାଇନର୍ ସ୍କୁଲ୍ କଥା ଆଉ ଉଠେ ନାହିଁ ।

ଗାଁରେ ୫/୬ଟା ଛୋଟ ବଡ ପୋଖରୀ । ସେଗୁଡାକରେ କେହି କେବେ ମାଛଚାଷ କରନ୍ତି ନାହିଁ । ବର୍ଷାଦିନରେ ପାଖ ବିଲରୁ କେରାଣ୍ଡି, ଦଣ୍ଡକିରା ଗଡିଶ, ମାଗୁର ଆସି ଆଶ୍ରା ନିଅନ୍ତି । ଦଳ, ଘାସରେ ପୋଖରୀଯାକ ଭରପୁର୍ ହୋଇଯାଏ । ଖରାଦିନ ଆସିଲେ ବ୍ରାହ୍ମଣ ଗୋସେଇମାନେ ବାହାରି ପଡନ୍ତି ମାଛପାଇଁ । ହାଟରେ ଶନିବାର, ମଙ୍ଗଳବାର ଢେଙ୍କୁରା ଦିଆଯାଏ । ପାଖ ଆଖ ଗାଁର ଜାଲୁଆମାନେ ଆସନ୍ତି ନିର୍ଦ୍ଦିଷ୍ଟ ଦିନରେ । ପୋଖରୀଗୁଡା ଲୋକାରଣ୍ୟ । ଜାଲୁଆମାନେ ଅଧା ଭାଗ ନେଇଯାନ୍ତି; ବାକିତକ ଭାଗିଦାର୍‌ମାନଙ୍କର । ପାଢେ ୧୪ ଭାଗ ହୁଏ । ଧାଡି ଧରି ଯେ ଯାହା ଭାଗ ଧରି ଗୋସେଇଁମାନେ ଘରକୁ ଯାନ୍ତି । ଯାହା ମାଛ ପୋଖରୀରେ ରହିଗଲେ, ତାକୁ ଯେଉଁ

ମାନଙ୍କର ମୁଣ୍ଡଘୂରା ଜାଲ ବା ପୋହଳ ଥାଏ, ସେହିମାନେ ସେ ଇଜ୍‌ମାଲି ପୋଖରୀକୁ ନେଇଯାନ୍ତି । ଗୋଟିଏ ବର୍ଷ ନିଷ୍ପତ୍ତି ହେଲା, ପୋଖରୀକୁ ପଟ୍ଟା ଦିଆଯିବ; କିନ୍ତୁ ଏ ନିଷ୍ପତ୍ତିରେ ଯେଉଁମାନେ ମାଛ ବରାବର ଚୋରାରେ ଧରୁଥିଲେ, ସେମାନଙ୍କ ସ୍ୱାର୍ଥରେ ବାଧାଆସିଲା । ସେମାନେ ପଟ୍ଟାଦେବା ବିପକ୍ଷରେ ଭୋଟ୍‌ଦେଲେ ।

ଯାହାହେଉ ଲୋକମାନଙ୍କୁ ବୁଝେଇ ଶୁଝେଇ ଥରେ ମୁଁ ପୋଖରୀ ପଟ୍ଟା ନେଲି । ଗାଁରେ ସାନ ଭାଇ ଥିଲା । ତାର ସାହାଯ୍ୟନେଲି । ବାରିପଦାରେ ରହି ଝିଞ୍ଜିରି ବନ୍ଧରେ ମାଛ ଚାଷ କରୁଥିବା ବଡବାବୁଙ୍କର ସାହୁକାର ବଙ୍ଗଳା, ବାଗ୍‌ନାନ୍‌ରୁ ଯାଆଁଳ ଆଣି ମାଛ ଚାଷ ଆରମ୍ଭକଲି । ରାତି ୯ଟା ବେଳେ ପାଇକାରୀ ଆସି ମୋତେ ଡାକି କହିଲା, "ସାର୍ ଆସନ୍ତୁ, ଆପଣଙ୍କ ପୋଖରୀରେ ଗୋଟିଏ ମାଛ ଦେଖିବେ ।" ଭାକୁଡ ମାଛଟା ବାର ସେର ଥିଲା । ଜୀବନରେ ମୁଁ ବନ୍‌ସିରେ ଧରିଥିବା ସବୁଠାରୁ ବଡମାଛର ଓଜନ ପ୍ରାୟ ୧୮ ସେର ଥିଲା; କରଞ୍ଜିଆ ଖକୁରୀ ସାଗରର ମାଛ । ତିନିବର୍ଷପାଇଁ ପଟ୍ଟା ନେଲି; ମାଛ ଭଲ ବଢିଲେ । ଦିନରାତି ଜଗିବାପାଇଁ ପଡିଲା, ବିଶେଷତଃ ଖରାଦିନରେ । କାରଣ ସେତେବେଳେ ପୋଖରୀରେ ପାଣି କମିଯାଏ । ଲୋକମାନେ ହାତରେ ଅଣ୍ଟାଳି ଜଳଭିତରୁ ମାଛ ନେଇଯାନ୍ତି । ପ୍ରଥମ ଦୁଇବର୍ଷ ମାଛ ବିକ୍ରି କଲିନାହିଁ । ତୃତୀୟବର୍ଷ ବାରିପଦାରୁ ପାଇକାରୀ ନେଇ ମାଛ ବିକିଲି । ଗୋଟିଏ ମାଛ ବାରସେର ପର୍ଯ୍ୟନ୍ତ । ମହଣ ଦଶଟଙ୍କା ବଢିଥିଲା । ଗାଁବାଲାଙ୍କୁ ମଧ୍ୟ ଦେଲି । କିଛି ପଇସା ବୁଡିଗଲା । ପଟ୍ଟା ବାବଦକୁ ଯାହା ଦେୟ ତାହା ଗ୍ରାମବାସୀଙ୍କୁ ନ ଦେଇ ନିଜ ପାଖରେ ରଖିଲି । ଦିନେ ଗାଁ ମିଟିଙ୍ଗରେ କେହି ଜଣେ ବ୍ୟକ୍ତି ପାଟିକରି ମନ୍ତବ୍ୟ ଦେଲେ, "ଯଦି ବସନ୍ତ ଶତ୍‌ପଥୀ ପଟ୍ଟା ବାବଦକୁ ୨୧୪ ଟଙ୍କା ଫେରାଏ, ତେବେ ମୋ ନାମରେ ଜୋତା ବାନ୍ଧିଦେବ ।" ମୁଁ ନିଜକୁ ଅପରାଧୀ ମନେକଲି; ଟଙ୍କା ଦେଲେ ୧୪ ଭାଗରେ ବାଣ୍ଟିକୁଣ୍ଟିକରି ନେଇଯିବେ, କୌଣସି କାମକୁ ଆସିବ ନାହିଁ ।

ସେତେବେଳେ ବାରିପଦାରେ ପ୍ରାତଃ ସ୍ମରଣୀୟ ଦିନବନ୍ଧୁ ମିଶ୍ର ଅମାୟିକ ତଥା ଧାର୍ମୀକ । କଥା ପ୍ରସଙ୍ଗରେ ତାଙ୍କୁ ହିଁ ପଚାରିଲି, ମାଇନର ସ୍କୁଲଟିଏ ଗାଁରେ ସ୍ଥାପନ କରିବା କଥା । ସେ ଅନେକ ଉତ୍ସାହଦେଲେ । ଘରଟିଏ ଦରକାର । ପୁରୁଣା ପ୍ରାଇମେରୀ ସ୍କୁଲ୍‌ର ଉତ୍ତର ପାଖ ବାଡକୁ ଲାଗି ଜମି ଆମର । କେତେଗୁଡିଏ ବାଉଁଶ ବଣ ମଧ୍ୟ ଥିଲା । ପାଖରେ ପାଣି । ପୁଣି ମିଟିଙ୍ଗ୍ ବସିଲା । ଟଙ୍କା ଖର୍ଚ୍ଚକରି କାଠ ଆଣିବାର ବ୍ୟବସ୍ଥାହେଲା । ଆମ ଜମି ପାଖରେ କୃଷ୍ଣଚନ୍ଦ୍ର ମିଶ୍ରଙ୍କ ଗୋଟିଏ ଜାଗା ଥିଲା । ତାଙ୍କୁ ଅନୁରୋଧ କରି ତାକୁ ମିଶାଇ ଦେଲୁ । ଦୁଇଟା କୋଠରୀ ହେଲା । ପିଲା କିନ୍ତୁ ହେଲେ ନାହିଁ । ଅତିକମ୍‌ରେ ଦଶ

ଜଣ ନ ହେଲେ ସ୍କୁଲ ଖୋଲିବ ନାହିଁ । ଏ ଆଡୁ ସେ ଆଡୁ ଧାଁ-ଦୌଡ କରି ୯ ଜଣ ପିଲା ଯୋଗାଡ କଲି । ଆଉ ଜଣେ ପିଲା ଅଭାବ ହେଲା । ବାରିପଦା ପାଖ ତକତ୍‌ପୁର୍‌ରେ ଆମ ଗାଁ ପାଖ ଖଡିପାହାଡିରୁ ଭୂୟାଁ ପିଲାଟିଏ ପଢୁଥିଲା । ସେ ଆଉ ପଢିଲା ନାହିଁ, ଗାଁକୁ ଫେରି ଆସିଲା । ସେହି ପିଲାପାଇଁ ତକତ୍‌ପୁର୍ ଯାଇ ତାର ଯାହା ଦେୟ, ତାହା ଦେଇ ଟି.ସି. ଅଣାଗଲା । ପିଲା ଦଶଜଣ ହୋଇଗଲେ । ସୁପରିଟେଣ୍ଡେଣ୍ଟ୍ ଦିନବନ୍ଧୁ ବାବୁ ତତ୍କାଳୀନ ଏ.ଡି.ଏମ୍. ଆଚାର୍ଯ୍ୟଙ୍କୁ ଅନୁରୋଧକରି ସ୍କୁଲ ଉଦ୍‌ଘାଟନର ବ୍ୟବସ୍ଥାକଲେ । ସଭା ହେଲା । ବ୍ରାହ୍ମଣ ଗୋସେଇଁମାନେ ଚିତାଚୈତନ୍ୟ କରି, ଚାଦର ପକାଇ ସଭାସ୍ଥଳରେ ପହଞ୍ଚିଗଲେ । ବେଦପାଠ ହେଲା । ଗାଁରେ ହରିଜନବସ୍ତିରୁ ଗୁଡାଏ ପିଲାଙ୍କୁ ଧାଡିକରି ଛିଡାକରାଗଲା । ଉଦ୍‌ଘାଟକ ସେମାନଙ୍କୁ ମିଠା ବାଣ୍ଟିଲେ । ସେହି ସ୍କୁଲ ବଢି ବଢି ସରକାରୀ ସ୍ୱୀକୃତିପାଇଲା ଏବଂ ତାପାଇଁ ସରକାର ଘର କଲେ । ସରକାରୀ ମାଇନର ସ୍କୁଲଟି ଛିଡାହେଲା ଆମରି ଜମି ଉପରେ । କାଳକ୍ରମେ ସେହି ମାଇନର୍ ସ୍କୁଲ୍‌କୁ ଲାଗି ହାଇସ୍କୁଲ୍‌ଟିଏ ଆରମ୍ଭହେଲା ଏବଂ ପଣ୍ଡାବିଲାର କନୈକ ବଦାନ୍ୟ ବ୍ୟକ୍ତି ସାହାଯ୍ୟ ସହାନୁଭୂତି ଦେଖାଇ ହାଇସ୍କୁଲ୍‌ଟିଏ ପ୍ରତିଷ୍ଠାକଲେ, ଯାହା ଏବେ 'ହରିଶ୍ଚନ୍ଦ୍ର ବିଦ୍ୟାପୀଠ' ନାମରେ ଖ୍ୟାତ । ଅଳ୍ପ କେତେ ବର୍ଷ ହେଲା ମାଇନର୍ ସ୍କୁଲର ରୌପ୍ୟ ଜୟନ୍ତୀ ପାଳିତ ହେଲା । All India Radioର artistମାନେ ଆସିଥିଲେ । ବେଶ୍ ଜାକ୍‌ଜମକ୍‌ରେ ଉତ୍ସବ ହେଲା । ଉଦ୍ୟୋଗିମାନେ ଖଣ୍ଡିଏ ନିମନ୍ତ୍ରଣ ପତ୍ର ମଧ୍ୟ ମୋ ପାଖକୁ ପଠେଇଲେ ନାହିଁ । ମୋର ଭାରି ଇଚ୍ଛାଥିଲା ଗାଁରେ କଲେଜଟିଏ କରିବାପାଇଁ । ଚେଷ୍ଟା କରିଥିଲେ ହୁଏତ ମହିଳା କଲେଜଟିଏ ଅକ୍ଲେଶରେ ହୋଇପାରିଥାନ୍ତା; କିନ୍ତୁ ତା' ମଧ୍ୟ ହେଲା ନାହିଁ । ଗ୍ରାମବାସୀ ଓ ହାଇସ୍କୁଲର ଅଧିକାରୀବର୍ଗ ଭିନ୍ନମୁଖୀ ହେଲେ ।

ସେ ଯାହାହେଉ ନା କାହିଁକି, ସବୁବେଳେ ମୋ ମନକୁ ଯୋଡିଏ କଥା ଆସୁଥାଏ । ପ୍ରଥମହେଲା- ଦେଓ୍ୱାନ୍ ନିୟୋଗୀଙ୍କ ମନ୍ତବ୍ୟ 'ଛେଳେଟା ambitious ନୟ' । ଦ୍ୱିତୀୟ କଥାଟି ହେଲା, ମୋ ସାନଭାଇ କଥା ଯେ- ଘରକରଣା ବିଦ୍ୟା ମୋତେ ଜୁଆଡେ ଜଣାନାହିଁ । ସ୍ତ୍ରୀ ମଧ୍ୟ ଥରକୁ ଥର ବାରିପଦାରେ ଘରଟିଏ କରିବାପାଇଁ କହୁଥାନ୍ତି । କିନ୍ତୁ ବିଷୟ ବୁଦ୍ଧି ନଥିବାରୁ ମୁଁ ସେ ଆଡକୁ ଆଗଉ ନ ଥିଲି । ବାରିପଦାର ବଡଲୋକଙ୍କ ମଧ୍ୟରେ ଥିଲେ କ୍ଷେତ୍ରମୋହନ ବାବୁ, ପ୍ରାୟ ନିରକ୍ଷର । କିନ୍ତୁ ତାଙ୍କୁ ଅନେକ ବିଦ୍ୟା ଜଣାଥିଲା । ମଟର ମରାମତିଠାରୁ ବଢେଇକାମ ପର୍ଯ୍ୟନ୍ତ । ଏମିତିକି ତାଙ୍କ ଘରକୁ ସେ ଏକ ପ୍ରାଇଭେଟ ଟେକ୍ନିକାଲ୍ ଇନ୍‌ଷ୍ଟିଚ୍ୟୁଟରେ ପରିଣତ କରିଦେଇଥିଲେ । ତାଙ୍କୁ ଲୋକେ କ୍ଷେତ୍ରମୋହନ କମ୍ପାନୀ ବୋଲି କହୁଥିଲେ । ଶାନ୍ତ ସରଳ ଅମାୟିକ ଲୋକ, ଶିକାରରେ

ଧୁରନ୍ଧର। ତାଙ୍କ ବନ୍ଧୁକର ଗୁଳି ବ୍ୟର୍ଥ ହୁଏ ନାହିଁ। ମହାରାଜା ସାଙ୍ଗରେ ସେ ବସାଉଠା କରନ୍ତି। ତାଙ୍କର ଗୁଡ଼ିଏ ଜମି ସହରରେ ଥିଲା । ଘରଡିହ ହେବା ଯୋଗ୍ୟ ଜମି। ସେ ବୁଢ଼ା ହୋଇଆସିଲେ, ସମ୍ପତ୍ତି ରକ୍ଷଣାବେକ୍ଷଣ କରିବା କ୍ରମେ କଷ୍ଟକରହେଲା। ବାଘଡ଼ାରୋଡ୍ କଡ଼ରେ ଥିବା କେତେକ ଜମି ସେ ବିକିବାକୁ ମନସ୍ଥ କରି ପ୍ଲଟ୍ ତିଆରି କଲେ ଏବଂ ବିକ୍ରି ଆରମ୍ଭକଲେ। ମୁଁ ଦିନେ ବସି ପିଲାମାନଙ୍କୁ ପଢ଼ାଉଥାଏ। ସେ Baby Austin ଗାଡ଼ିକୁ ମୋ ଘର ଆଗର ସଡ଼କ ଉପରେ ଛିଡ଼ାକରି ତଳକୁ ଓହ୍ଲାଇ ଆସିଲେ ଏବଂ ଖଣ୍ଡେ ଜମିର ବିକ୍ରିପଟା ମୋ ହାତକୁ ବଢ଼ାଇଦେଲେ। ସହର ଜାଗାରେ ଗୋଟିଏ ଘରକରିବା ଅଭିଳାଷ ମୋର ଥିଲା। ମନ୍ତ୍ରୀ ଶରତ ବାବୁ ଭାଦୁଡ଼ି ବନ୍ଧ ପାଖରେ ଖଣ୍ଡିଏ ଜମି ଦେଇଥିଲେ, କିନ୍ତୁ ଦିଲ୍ଲୀରୁ ଫେରିଲା ପରେ ଜାଣିଲି Commissioner Rege ସାହେବ ସବୁଜମିକୁ ବାଜ୍ୟାପ୍ତ କରିଦେଇଛନ୍ତି ଏବଂ ଯେଉଁ ସଲାମି ଆମେ ଦେଇଥିଲୁ, ତାହା ଆମକୁ ଫେରାଇଦେଇଛନ୍ତି। ଟାଉନ୍‌ରେ ଘରକରିବାର ଅଭିଳାଷ ପୁନର୍ଜୀବିତ ହେଲା। କ୍ଷେତ୍ରମୋହନ ବାବୁ ହସିହସି ଜମିପଟା ମୋ ହାତକୁ ବଢ଼ାଇଦେଲେ। "ଏହି ଜମି ଖଣ୍ଡିକ ଆପଣଙ୍କୁ ଦେଉଛି, ଆପଣ ଘର କରିବେ ପରା !" ବାଞ୍ଛାବଟ ଡାକ୍ତର ମୋତେ କହିଲେ- "ଆପଣ କ'ଣ ଜମି ଖୋଜୁଛନ୍ତି ? ଜମିର ପରିମାଣ ୬ ଗୁଣ୍ଠ, ୮ ବିଶ୍ୱା, ୮ ଗଣ୍ଡା। ମୋତେ ୮୦୦ ଟଙ୍କା ଯେବେ ସୁବିଧା ହେବ, ଦେବେ; ମୁଁ ପରେ ଆସିବି।" ଦୈବାତକୁ ସେତିକିବେଳେ ପିଛିଲା ଦରମା ବାବଦକୁ ମୁଁ କିଛି ଟଙ୍କା ପାଇଥାଏ। ହଜାରେ ଖଣ୍ଡେ ଟଙ୍କା ମୋ ହାତରେ ଥାଏ। ସଞ୍ଜବେଳେ ମାର୍କେଟ୍‌କୁ ଗଲି; ସେଇଠି ଦେଖାହେଲା ବାଞ୍ଛାବଟ ଡାକ୍ତରଙ୍କ ସହିତ। ଶୀର୍ଷାରେ ମାଇନର ପଢ଼ୁଥିଲା ବେଳେ ତାଙ୍କୁ ଜାଣିଥିଲି ଓ ଦେଖିଥିଲି। ସେ କଟକରେ ଡାକ୍ତରି ପଢ଼ୁଥାନ୍ତି। ତାଙ୍କ ଭାଇ ମାଇନର ସ୍କୁଲରେ ହେଡମାଷ୍ଟର। ତାଙ୍କୁ ଦେଖାକରିବା ମାତ୍ରେ ସେ କହିଲେ, "ବସନ୍ତବାବୁ, ଘର କେବେ କରୁଛ ? ଆଜି କ୍ଷେତ୍ରମୋହନ ବାବୁ ତୁମକୁ ଜମିଜମା ନିଶ୍ଚୟ ଦେଇଥିବେ। ପିଛିଲା ଦରମାତ ମିଳିଥିବ। ଜମି ଖଣ୍ଡକ କିଣି ପକେଇଥାଅ।"

ସେ ନିଜେ ତାଙ୍କ ଘର କରୁଥାନ୍ତି ଏବଂ ଇଟାବାଲା ପଇସା ନେବାପାଇଁ ଆସି ତାଙ୍କ ପ୍ରେମକୁମାରୀ ବାଳିକା ସ୍କୁଲ ପାଖରେ ଥିବା ଚେମ୍ବରରେ ଛିଡ଼ାହୋଇଥାନ୍ତି। ସେମାନଙ୍କୁ ଚାହିଁ ଡାକ୍ତର ବାବୁ କହିଲେ, "ଆରେ, ଦଶ ହଜାର ଇଟା ଆମର ବସନ୍ତସାରଙ୍କର ବାଘଡ଼ାରୋଡ୍ ଜମି ଉପରେ ରଖିଦେବ। କାଲି ସକାଳୁ ମୁଁ ଯାଇ ଜାଗା ଦେଖାଇ ଦେବି"। ସତକୁ ସତ ତହିଁ ପରଦିନ ହିଁ ଦେଖିଲି ୬/୭ ଖଣ୍ଡ ବଳଦଗାଡ଼ି ଇଟା ବୋଝେଇକରି ପ୍ରସେସନ୍‌ରେ ମୋର ଘର ଆଗ ଦେଇ ଯାଉଥାନ୍ତି। ଡାକ୍ତର ବାବୁ ସାଙ୍ଗରେ ରହି

ପଚାରୁଥାନ୍ତି, "କାହାର ଇଟା ଯାଉଛି, ତାଙ୍କୁ ଯେମିତି କିଏ ଶିଖେଇଦେଇଛି," ସେମାନେ କହନ୍ତି- "ଲେକ୍‌ଚରର ବସନ୍ତ ବାବୁଙ୍କ ଇଟା।" ମୁଁ ଭାବିଲି- ବୋଧେ ମୋ ବିରୁଦ୍ଧରେ ଚକ୍ରାନ୍ତଚାଲିଛି। ମୁଁ ଗାଡିବାଲାଙ୍କ ସାଙ୍ଗରେ ଚାଲିଲି। ମୋର ପଟ୍ଟାରେ ଦସ୍ତଖତ ହୋଇନଥାଏ। ମୋ ଜମି କୁଆଡୁ ଆସିଲା, ମୋ ଇଟା କୁଆଡୁ ଆସିଲା ? ଡାକ୍ତର ବାବୁ ମୋତେ ଉତ୍ସାହଦେଇ କହିଲେ- "ଆପଣ କିଛି ଭାବନ୍ତୁ ନାହିଁ; ଦେଖିବେ ମହଲା କିପରି ଛିଡା ହୋଇଯିବ।" ଇଟାର ଦାମ ୧୪୦ ଟଙ୍କା। ସେହିଦିନ ଯାଇ ଇଟାବାଲାକୁ ଦେଇ ଆସିଲି। କ୍ଷେତ୍ରମୋହନ ବାବୁଙ୍କୁ ଦେଖାକରି ୫୦୦ ଟଙ୍କା ଦେଇ କହିଲି, "ବାକି ପରେ"।

କେତେଦିନ ପରେ ୪ଟା ଛୁଆ ଓ ବାପାଙ୍କୁ ସାଙ୍ଗରେ ନେଇ ସେ ଜାଗା ଦେଖି ଆସିଲି। ଦିନ ୧୧/୧୨ ଟାରେ ପୂଜାବିଧିର ସବୁ ସରଞ୍ଜାମ ଧରି ଜାଗାରେ ଉପସ୍ଥିତ ହେଲି। ଭୂମିପୂଜାପାଇଁ ଶଙ୍ଖଟିଏ ଧରି ମୋ ସ୍ତ୍ରୀ ମଧ୍ୟ ଚାଲିଥିଲା। ବାପା ଜାଗା ଖଣ୍ଡକ ଦେଖିଲେ ଓ କହିଲେ "ମୋତେ ଖୁବ୍ ହସ ମାଡୁଛି, ଏ ଧୁତ୍‌ମା ପଡିଆରେ କି କରିପାରୁ, ପକ୍କାଘର, ଚାଳଘର, ଇଟା ନା ମାଟି ?" ଯାହାହେଉ ଭଲ ଭୂମିପୂଜା ହେଲା, ଘର ଶୁଭ ଦିଆଗଲା। ଦେଖିଲି ଇଟାଗୁଡାକ ଥାକଥାକ ହୋଇ ଛିଡାହୋଇଛି। ତା' ଉପରେ ଛେଳି ଉଠି ଠିଆହୋଇଛନ୍ତି ଏବଂ ଡିଆଁମାରୁଛନ୍ତି। ଗୋଟିଏ ଗୋଟିଏ ଇଟା ବି ତଳେ ପଡି ଭାଙ୍ଗିଯାଉଛି। କ'ଣ ହେଉଛି, କ'ଣ ହେବ କିଛି ମୁଁ ଭାବି ପାରୁନଥାଏ। ସବୁ ଯେମିତି ମେଜିକ୍, ସବୁ ଯେମିତି ଚକ୍ରାନ୍ତ।

ଏହାପରେ serious ହେବାପାଇଁ ଚେଷ୍ଟାକଲି। ପଇସା କଉଡିଟିଏ ହାତରେ ନାହିଁ। ୪/୫ଟା ଛୋଟ ଛୁଆ। ଘର ବନ୍ଧାପକାଇବା ବ୍ୟବସ୍ଥା ଅବାସ୍ତବ। ବ୍ୟକ୍ତିଗତ ଜାମିନରେ ସେତେବଳେ ମୟୂରଭଞ୍ଜ ଷ୍ଟେଟ୍ ବ୍ୟାଙ୍କ ବାରଶହ ପର୍ଯ୍ୟନ୍ତ ଟଙ୍କା ଦେଉଥାଏ। ସୁତରାଂ ନିଜକୁ ବନ୍ଧାପକାଇ ଟଙ୍କା ବ୍ୟାଙ୍କରୁ ଆଣିବାକୁ ଠିକ୍‌କଲି। ମାସକୁ ଶହେ ଟଙ୍କା ଯେମିତି ହେଉ ଶୁଝିଦେବି। କଥା ଉଠିଲା, କାହା ନାଁରେ ଜମି କିଣାହେବ। ମୁଁ ଜାଣୁଛି ସ୍ତ୍ରୀ ଚାହିଁବେ ତାଙ୍କ ନାଁରେ ଜମି କିଣିବାପାଇଁ; କାରଣ ତାଙ୍କ ଗାଁରେ କେତେ ସ୍ତ୍ରୀଲୋକଙ୍କ ନାଁରେ ଜମି କିଣାହୋଇଛି। ମୋର ବି ଇଚ୍ଛା, ଜମିଟା କିଣାହେଉ। କିନ୍ତୁ ମୁଁ ଥଟ୍ଟାରେ ତାଙ୍କୁ କହିଲି, "ତୁମ ନାଁରେ ମୁଁ କିଣି ପାରିବି ନାହିଁ। ତୁମକୁ କୋଟ୍ କଚେରୀକୁ ଯିବାକୁ ପଡିବ। ବ୍ୟାଙ୍କ ମ୍ୟାନେଜର ବି ଭଲଲୋକ ନୁହେଁ। ସୁନ୍ଦରୀ ସ୍ତ୍ରୀଲୋକଙ୍କ ଉପରେ ତାର ଭାରି ନଜର।" ମୋ ଆକ୍ଷେପମୂଳକ କଥା ଶୁଣି ସେ କହିଲେ- "ମୋର ଜମି ଦରକାର ନାହିଁ। ତୁମେ ଯାହା କରିବ, କର।" ଯାହାହେଉ ବ୍ୟାଙ୍କରୁ ୧୨୦୦ ଟଙ୍କା ଆସିଲା ଧାର୍ ସୂତ୍ରରେ। ମୋର ଜଣେ ବନ୍ଧୁ ସେତେବେଳେ ଟ୍ରକ୍‌ଟିଏ କିଣିଥାନ୍ତି। ତାଙ୍କୁ କହିବାରୁ ସେ କହିଲେ, ଯେ

ଦୁଇଦିନପାଇଁ ଦେବେ । ଯେତେ ଇଚ୍ଛା ସେତେ ବାଲି ନଈରୁ ଆଣି ଜମା କଲି । ବାକି ରହିଲା ଚୂନ । ସେତେବେଳେ ସିମେଣ୍ଟ ବସ୍ତା ୩ ଟଙ୍କା ୨ ଅଣା । ପୋର୍ଟଲେଣ୍ଡ ସିମେଣ୍ଟ ସାତ ଟଙ୍କା । ମୁଁ ଚୂନରେ ଘର କରିବି ଠିକ୍‌କଲି । ଭଞ୍ଜପୁର ଷ୍ଟେସନର ମାଇଲେ ଦୂରରେ ଜଙ୍ଗଲିଆ ଜାଗା ଭିତରେ ଥାଏ ଚୂନଭାଟିଟିଏ । ଜଣେ କୁଷ୍ଠରୋଗୀ କରିଥାଏ । ତାଠୁ ଆବଶ୍ୟକ ମୁତାବକ ଚୂନ ଆସିଲା ଏବଂ ଘର ପାଖରେ ପଡିଥିବା ଏକ ଘଣାରେ ତାକୁ ପେଷାଇ ମୁଁ ବ୍ୟବହାରକଲି ।

ଘର ତିଆରି ସ୍ଥାନ ପାଖରେ ମୋର ରହିବା ଆବଶ୍ୟକ ପଡିଲା । ଦୈବାତ୍ ଗୋଟିଏ ଘର ଫାଙ୍କା ଥାଏ ମୋ ଜମିକୁ ଲାଗି । ଘର ଭଡା ପ୍ରାୟ ଦୁଇଗୁଣ ପଡିଲା । ତଥାପି କକାଶ୍ୱଶୁରଙ୍କ ଘର ଛାଡି ନୂଆ ଭଡା ଘରକୁ ଆସିଲି । ନୂଆ ଘରେ ଦୁର୍ଘଟଣାଟିଏ ଘଟିଲା । ନିଛାଟିଆ ଜାଗା, ଚୋର ଭୟ କିନ୍ତୁ ନଥିଲା । ଏଠି ମୋ ଜାଗାକୁ ରାସ୍ତା ନାହିଁ । ପାଣିକଳ ନାହିଁ । ଇଲେକ୍‌ଟ୍ରିକ୍ ନାହିଁ । ଲୋକ ଯାତାୟତ କମ । ରୋଡ୍‌କୁ ଛାଡି । ଦିନେ ରାତିରେ ୯ଟା ବେଳେ ଛୁଆମାନେ ପଡାପଡି ବନ୍ଦକରିବାକୁ ଯାଉଛନ୍ତି । ବାଡିପଟ କବାଟରେ ଠକ୍ ଠକ୍ ଶବ୍ଦ ଶୁଭିଲା । ଫିଟେଇ ଦେଖିଲାବେଳକୁ କେହିନାହାନ୍ତି । ଆଉଥରେ ଅଧଘଣ୍ଟା ପରେ ଠକ୍ ଠକ୍ ହେଲା । ଛୁଆମାନେ ଶୋଇଗଲେଣି, ମୋ ସ୍ତ୍ରୀ କବାଟ ଫିଟେଇ ଦେଖିଲେ । କେହି ନାହାନ୍ତି । ଡର ମାଡିଲା । ରାତି ୧୧ଟା ବେଳେ ମୁଁ ବାଡିପଟ ପାଇଖାନାକୁ ଯାଉଥାଏ, ଦେଖିଲି ଗୁହାଳକୁ ଲାଗି ଯେଉଁ ପାଳଗଦା ଥିଲା, ସେଇଠି ଗୋଟିଏ ଲୋକ ଖାଲିଦେହରେ ଅନ୍ଧାରରେ ମିଶିଯାଇ ପାଳକୁ ଆଉଜି ଶୋଇଛି । ମୁଁ ଡରିଗଲି । ଦଣ୍ଡେ ପରେ ସାହସ ବାନ୍ଧି ଡାକିଲି । କହିଲି, "ଏଇଠି କାହିଁକି ଶୋଇଛୁ ? ଘର ଆଗ ପିଣ୍ଡାରେ ଶୋଇବୁ ଯା । ମୁଢ଼ି ବା ରୁଟି ଯା' ହେଉ ଦେବି, ଯା !" ପାଗଳ ପରି ଦିଶୁଥାଏ । ସେ ଯେମିତି ଉଠି ବସିଲା, ମୁଁ ଆହୁରି ଡରିଗଲି । ଏଆଡେ ସେଆଡେ ଚାହିଁ କିଛିକ୍ଷଣ ପରେ ଦଉଡିବାକୁ ଆରମ୍ଭକଲା ପାଇଖାନା ପାଖଦେଇ । ପଛପଟେ ମୋର ଘର ତିଆରିପାଇଁ ଇଟା ଭିଜାଇବାକୁ ଚଉବଚାଟିଏ କରିଥାଏ । ସେଠି ଟର୍ଚ୍ଚ ଦେଖେଇ ମୁଁ ତାକୁ ସାବଧାନ କରିଦେଲି, "ଦେଖିବୁ ଆଗରେ ଚଉବଚା ପାଣିକୁଣ୍ଡ ଅଛି ।" ସେ କିନ୍ତୁ ଚାହୁଁ ଚାହୁଁ ବେଳେ ପାଣି ଥିବା ଚଉବଚାରେ ପଡିଯାଇ ଓଦା ସରସରହୋଇ ଉଠିଆସିଲା ସାଙ୍ଗେ ସାଙ୍ଗେ ଏବଂ ପୂରାପୂରି ଲଙ୍ଗଳା ହୋଇ ଲୁଗା ଚିପୁଡିବାକୁ ଆରମ୍ଭକଲା । ମୁଁ ତାକୁ ଧରିବି କେମିତି ? ଧରିବି କି ନାହିଁ ନିଷ୍ପତ୍ତି କରୁକରୁ, ସେ ପୁଣି ଦଉଡିବାକୁ ଆରମ୍ଭକରି କୁଆଡେ ଅନ୍ଧାରରେ ଅନ୍ତର୍ଦ୍ଧାନ ହୋଇଗଲା । ମୋ ଡାକ ଶୁଣି ପାଞ୍ଚହତା ମରଦଟିଏ ଆସିଗଲା ଏବଂ ଦେଖୁଁଦେଖୁଁ ପାଣି କାଦୁଅ ଲାଗି ରହିଥିବା ଚୋରଟାକୁ ଜାବୁଡି ଧରିଲା । ଆଉ ଦୁଇ

ଚାରିଜଣ ଲୋକ ମଧ୍ୟ "ଚୋର ! ଚୋର !" ଡାକ ଶୁଣି ଆସି ପହଞ୍ଚିଗଲେ। ଗୁହାଳରେ ଗାଈଟା ସେତେବେଳେ ଚମକିଯାଇ ବାହାରି ଚାଲିଗଲା। ଆମେ ଚୋରକୁ ବାନ୍ଧେଇ କରି ଥାନାକୁ ନେଇଗଲୁ। ପୋଲିସ୍ ଖୁବ୍ ଖୁସିହୋଇ କହିଲା, "ଯାକୁ କେଉଁଠି ପାଇଲେ ? ଏଇଟା ଗୋଟିଏ ଦାଗୀ, ଆମେ ତାକୁ ଖୋଜୁଛୁ ମାସେ ଧରି। ଆମର ଚାକିରି ଚାଲିଯାଇଥାନ୍ତା, ଆପଣ ବଞ୍ଚାଇଦେଲେ।" ଖୁବ୍ ଗୋଟିଏ ବଡ କାମ କରିଛୁ ଭାବି ଆମେ ରାତି ୧୧ଟାରେ ଘରେ ପହଞ୍ଚିଲୁ।

ଯଥା ସମୟରେ କୋର୍ଟକୁ ଆମକୁ ଡକରା ହେଲା। କାଠଗଡାରେ ଥିବା ଚୋର ଆଉ ମୁଁ ମୁହାଁମୁହିଁ ହେଲୁ। ଚୋର ହାକିମଙ୍କୁ କହିଲା- "ହଜୁର ମୁଁ ଗରିବ ଲୋକ, ମୋର କେହି ନାହିଁ। ମୁଁ ଚୋରି କରିନାହିଁ। ମୋର ଓକିଲ ନାହିଁ। ମୁଁ ସାରଙ୍କୁ ଗୋଟିଏ ପ୍ରଶ୍ନ ମାତ୍ର ପଚାରିବି। ଆଚ୍ଛା ସାର୍। ମୋ କଥା ଶୁଣନ୍ତୁ ଭଲ କରି; ଆମେ ପିଲାଦିନେ ଏକାସାଙ୍ଗେ ଖେଳୁଥିଲୁ ମନେଥିବ। ସେମାନେ ମୋତେ ଯେତେବେଳେ ଧରିନେଇ ଭଇଁଦୁଙ୍କାଟା ଉପରେ ଛିଡାକରି ବିଧା ଚାପୁଡା ମାରୁଥାନ୍ତି- ଆପଣ କହି ନଥିଲେ କି 'ତାକୁ ଛାଡିଦିଅ, ମାରନି।' ପୁଣି କହିଥିଲେ, 'ନା ସେ ଚୋରିକରିନି- ତାକୁ ଛାଡିଦିଅ।' ସତ ନା ମିଛ ?" ମୁଁ ଟିକେ ବିଚଳିତହେଲି। ଉତ୍ତର ଦେବାକୁ ଡେରିହେଲା। ସେତିକିବେଳେ ଶାସ୍ତି ଦେବାରେ ପାରଙ୍ଗମ ହାକିମ ତାକୁ ଆଉ କିଛି କହିବାକୁ ଦେଲେନି। ବିଚାର ସରିଲା ପରେ ଶୁଣିଲି ତାକୁ ପାଞ୍ଚବର୍ଷ ଜେଲ୍ ହୋଇଯାଇଛି। ମୋତେ ଖୁବ୍ ଦୁଃଖ ଲାଗିଲା।

ଏହା ଆଗରୁ ୨, ୩ ଥର ଚୋରି ହୋଇଛି ମୋର ଅସାବଧାନତା ହେତୁରୁ। ଥରେ ପୂଜାଛୁଟିରେ ଘରେ ତାଲା ପକେଇ ଗାଁକୁ ଯାଇଥିଲି। କିନ୍ତୁ ଅଗଣାକୁ ଜଣେ ସହଜରେ ବଉଳ ଗଛର ଆଶ୍ରା ନେଇ ପାଚେରୀ କାଛ ଡେଇଁ ଭିତରକୁ ପଶିଲା ଏବଂ ମୁଁ କଲିକତାରୁ ଆଣିଥିବା ବଡ ଆଇନାଟିଏ ବାରନ୍ଦା କାନ୍ଥରେ ଝୁଲୁଥିବା ଦେଖି ନେଇଗଲା। ମହୁବାକ୍ସରେ ଥିବା ମାଛି ସବୁ ଉଡିଗଲେ। ଆଉ ଥରେ ଘର କବାଟ-ତାଟି ଖୋଲା ରଖି ଲାଇଟ୍ ଜାଳି ଦେଇ ଆମେ ଦୁହେଁ ଶୋଇଥାଉ। ନିଦ ଭାଙ୍ଗିଗଲା ଭୋର ବେଳେ। ଉଠି ଦେଖିଲୁ, ଆଲୁଅ ଜଳୁଛି। ଯେତେ ବାସନକୁସନ ଅଗଣାରେ ପଡିଥିଲା ସବୁ ସଫାହୋଇଯାଇଛି। ମୋ ନୂଆ ଲୁଙ୍ଗିଟାକୁ ମଧ୍ୟ ନେଇଯାଇଛି। ଚୋର ଜଣାପଡିଥିଲେ ବି ପୋଲିସ୍ ତାକୁ ଧରିବାକୁ ଆଗେଇଲା ନାହିଁ ଏବଂ ଏତେ ମନ୍ଥର ଗତିରେ ଗଲା ଯେ, ଚୋର ସେତେବେଳକୁ ମୟୂରଭଞ୍ଜ ସୀମା ପାର ହୋଇଯାଇଥିବ।

ହଁ, ଘର ତିଆରି କଥା କହୁଥିଲି। ନକ୍ସା ନାହିଁ ପ୍ଲାନ୍ ଏଷ୍ଟିମେଟ୍ ନାହିଁ। ଏତିକି ବେଳେ ଦିନେ କୈଳାସ ପତି ଆସି ଆମ ଘରେ ପହଞ୍ଚିଲେ। ଡାକ୍ତରଖାନା ପାଖର ତାଙ୍କର

ତିନି ତାଲା କୋଠା ସେତେବେଳେ ତିଆରି ହେଉଥାଏ । ମୁଁ ଘର ତିଆରି କଥା କହିଲି । ସାଙ୍ଗେ ସାଙ୍ଗେ କାଗଜ କଲମ ଧରି ଘରର ନକ୍ସା ଆରମ୍ଭକଲେ । ମୁଁ ତାଙ୍କୁ କହିଲି, ବଡ ବଡ କୋଠରୀ ହେବ, ୪ ପୁଅ ପାଇଁ ୪ଟା । ଏମିତି ଡିଜାଇନ୍ ହେବ, ଯେପରିକି ଗୋଟିଏ ଘରେ ପମ୍‌ଲାଇଟ୍‌ଟିଏ ବସେଇଦେଲେ ସବୁ ଆଡକୁ ଆଲୁଅ ହେବ । ସାଙ୍ଗେ ସାଙ୍ଗେ ସେ ସ୍କେଚ୍ ଡ୍ରଇଂଟିଏ କରିଦେଲେ । କେବଳ ଗୋଟିଏ କଥା ସେ ଉପଦେଶ ଦେଲେ ଯେ, ଘର ଗୁଡାକରେ ଡିଜାଇନ୍ ଡେକୋରେସନ୍ କିଛି କରିବ ନାହିଁ । ସାଧା ସିଧା ହେବ । Municipality sanction କଥା ଭାବିଲି ନାହିଁ । ଘର ତିଆରିକଲେ sanction କରିବା କଥା । ତହିଁ ପରଦିନ ଘରର ନିଅଁ ଖୋଳାହେଲା । ତାଙ୍କ ଘରେ କାମ କରୁଥିବା ନାରାୟଣ ମିସ୍ତ୍ରୀ ଆସିଗଲା । ସେ ଘର ତିଆରି ସାକସରଞ୍ଜାମ; ଅର୍ଥାତ୍ କୋଦାଳ, କଡା, ଇତ୍ୟାଦି ଭଡାରେ ନେଇଆସିଲା । ତାର ମଜୁରୀ ୩ ଟଙ୍କା, ମୂଲିଆମାନେ ୨୫ ପଇସା, ରେଜାମାନେ ୩ ଅଣା ବା ୧୦ ପଇସା । ମଲ୍ଲୀ, ଚମ୍ପା, ସୁବାସିନୀ ଆଦି ୧୦, ୧୫ ଜଣ, ୧୬, ୧୭ ବର୍ଷିଆ ଝିଅ କାମରେ ଲାଗିଗଲେ । ଦିନଯାକ କୋଳାହଳମୟ ହୋଇଗଲା ସେହି ନିର୍ଜନ ସ୍ଥାନରେ ଏବଂ ୨୦/୨୧ ଦିନ କାଳ ନିର୍ଧୁମ କାମଚାଲିଲା । ଧୂର୍ମୁସ୍‌ର ତାଳ ସହିତ କେତେ ଥଟ୍ଟା-ପରିହାସ ଆନନ୍ଦ, ଉତ୍ସବ ମଧ୍ୟରେ ଘର କାମ ଚାଲିଥାଏ । ବହୁତ ଖୁସି ଲାଗୁଥାଏ । କାମ ବନ୍ଦ ହେଲେ ଭାରି ଦୁଃଖ । ଗୁରୁବାର ଦିନଟି ଛୁଟି ଦିନ; ଇଲାକାଟା ଶୂନ୍‌ଶାନ୍ ହୋଇଯାଏ । ବୁଧବାର ସନ୍ଧ୍ୟାବେଳେ ହପ୍ତାକିଆ ମଜୁରି ଦିଆଯାଏ । ମୋ ସ୍ତ୍ରୀ ବାଦାମି କାଗଜର ଖାତା ଖଣ୍ଡେ ଧରି ହିସାବ ଲେଖନ୍ତି ଓ ପଇସା ଦିଅନ୍ତି । ଛୁଆ ଗୁଡାକ ବାଲିରେ ଖେଳୁଥାନ୍ତି । କୋଣାର୍କ ତିଆରି ଚାଲିଥାଏ । Plinth level କୁ ଆସିଗଲା । ସେଦିନ ଚା ଖାଇଲି plinth ଉପରେ ବସି । ପୁଣି ବ୍ୟାଙ୍କରୁ ଆସିଲା ଲୋନ୍ ୧୨୦୦ ଟଙ୍କା । କାନ୍ଥ ଉପରକୁ ଉଠିଲା । ଗାଁରୁ ଦୁଇ ତିନି ଶହ ଟଙ୍କାରେ ଟ୍ରକରେ କାଠ ବୁହାହୋଇ ଆସିଲା ଏବଂ ଚଉକାଠ, ଝରକା କବାଟ ବସିଗଲା । ଘରଯାକ କବାଟ ଝରକା ଦକ୍ଷିଣା, କାହିଁକି ନା ଚାରିଆଡୁ ପବନ ଆସିବ । କୈଳାସ ପତି ପୁଣି ଦିନେ ଆସିଲେ କାମର ଅଗ୍ରଗତି supervise କରିବାକୁ । ସେ ତାଙ୍କର ନିଜ ଇଟାରୁ ୬୦୦୦ ଇଟା ଟ୍ୟୁସନ୍ ପଇସା ବାବଦରେ ମଞ୍ଜୁର କରିଗଲେ ।

ଇଟା ସବୁ ସରିଗଲା । ଛାତ ପର୍ଯ୍ୟନ୍ତ କାନ୍ଥ ଉଠିଗଲା । ନାରାୟଣ ମିସ୍ତ୍ରୀ ମଧ୍ୟ କୈଳାସ ପତିଙ୍କର ତିନି ତାଲା କାମକୁ ଫେରିଗଲା । ବାଉଁଶ, କାଠ, ଯାହା ଥିଲା ତାକୁ ଉପରକୁ ଟେକିଦେଲି । ବର୍ଷେପାଇଁ କାମ ବନ୍ଦ । ପଞ୍ଚବାର୍ଷିକି ଯୋଜନାରେ ଏ ଘର । ଦିନେ ଦିନେ ଭାରି ଦୁଃଖ ଲାଗେ । କାହିଁକି ପଇସା ପତ୍ର କିଛି ନ ଥାଇ, ଘର ତିଆରି କରିବାର

ବ୍ୟବସ୍ଥାକଲି । ଟିକେ ambitious ହୋଇଗଲା । ହାସ୍ୟାସ୍ପଦ ଅବସ୍ଥାକୁ ଆସିଲି । ଦିନେ ଆମେ ଦୁହେଁ କାନ୍ଦିଲୁ ଘରର ଭବିଷ୍ୟତ କ'ଣ ହେବ । ବଡ ବଡ ଲୋକ ଦୁଇ ତିନି ଜଣଙ୍କୁ ସାହାଯ୍ୟ ପ୍ରାର୍ଥନାକଲି, ଧାଉଁମାଗିଲି । କ୍ଲାସ୍ ୧୦ରେ ପଢୁଥିବା ବଡ ପୁଅକୁ ତାଙ୍କ ପାଖକୁ ପଠେଇଲି । କିଛି ଲାଭ ହେଲା ନାହିଁ । ପୁଣି ଦିନେ ବସି କାନ୍ଦିଲୁ । ଗାଁର ଜମି ବିକିବା କଥା ଉଠିଲା ନାହିଁ । ବାପାଙ୍କ ଜମି । ସେ ଥାଉଁଥାଉଁ କାହାକୁ ବିକି ଦେବେ ନାହିଁ, ବା ବିକ୍ରୀ ହେବ ନାହିଁ । ଅତିପୂତ ପବିତ୍ର ସେ ମାଟି ।

ଏ ଭିତରେ ଘରର ଅବସ୍ଥା ଆଦୌ ଉନ୍ନତି କରିନାହିଁ । ମୋର ବ୍ୟସ୍ତତା ଓ ବିକଳ ଭାବ ଦେଖି ସ୍ତ୍ରୀ କ'ଣ ଭାବିଲେ କେଜାଣି, ହାତରୁ ସୁନା ଚୁଡ଼ି ଚାରିପଟ ବାହାରକରି ମୋ ହାତକୁ ବଢେଇଦେଲେ । କହିଲେ- 'ନିଅ ମୋର କାଚ ଚୁଡ଼ି ହେଲେ ଚଳିଯିବ । ତଥାପି ଘର ଛାତ ପଡ଼ିବ' । ମୁଁ ଗଲି ଦୋକାନକୁ । ମାତ୍ର ୮୦ ଟଙ୍କା ଦେଇ ବିକିଦେଲି ସେ ଚୁଡ଼ି ଚାରିପଟ ବ୍ରୋଞ୍ଜ ଚୁଡ଼ି ଉପରେ । ସୁବର୍ଣ୍ଣ ପାତ ଦିଆ ଚାରିପଟ ଚୁଡ଼ି ଆଣିଦେଲି ଏବଂ ରଡ୍ ଆଣିବାପାଇଁ ବାଲେଶ୍ୱର ବାହାରିଗଲି । ଘରର ଶେଷ ପ୍ରସ୍ତୁ କାମ ଚାଲିଲା । ଲୁହା ରଡ୍ ଦେଇ କେମିତି ଢଳାଇକରାଯାଏ, ସେଇଟା ମୋତେ ଜଣା ନଥିଲା । ସିଧା ସଳଖ ଛୋଟିଆ ଛୋଟିଆ ରଡ୍ ଗୁଛି ଜାଲ କରିଦେଲି । କିଏ ଜଣେ କହିଲା, ଏ ଛାତ ରହିବ ନାହିଁ । ଜଣେ ପଡ଼ିଶା ଆଣିଛି ଲଗାଇବାପାଇଁ । କିନ୍ତୁ ତାଙ୍କ ଛାତରେ ଲଗାଇଲେ ନାହିଁ । ସେ ୬ ଇଞ୍ଚ ଢଳେଇ କଲେ । ମୋ ଢଳେଇ ୩ ଇଞ୍ଚିଆ । ଭଗବାନଙ୍କୁ ସ୍ମରଣକରି ଢଳେଇ କାମ ଶେଷ କଲି ଏବଂ ପାଣି ବାନ୍ଧି ରଖିଦେଲି ଛାତ ଉପରେ । ୧୯୫୩ ସାଲ୍ ସେପ୍ଟେମ୍ବର ବେଳକୁ କୌଣସି ପ୍ରକାରର ରହିବାଯୋଗ୍ୟ ହେଲା ଘର- ୧୨' x ୧୬'ରେ ୩ଟା ବଡ କୋଠରୀ । ଆଗରେ ୬' x ୬' ବାରଣ୍ଡା । ପଛରେ ସେହି ସାଇଜ୍‌ର ପିଡ଼ିଘର । ସିଡ଼ି କରି ପାରିଲି ନାହିଁ । ରହେମାନ୍ ବୋଲି ଗୋଟିଏ ନୂଆ ମିସ୍ତ୍ରୀ ଲଗେଇଲି । ସେ ବାରଣ୍ଡା କାମଟି କଲା । କହିଲା, "ଆମି ଘରେର ନାକ୍‌ଟା କରେ ଦିଏଛି । ଖୁବ୍ ସୁନ୍ଦର ଦେଖାଯାବେ ।" ବହୁଦିନ ପରେ ପିଡ଼ିଘର ଛାତ ପଡ଼ିଲା । ଘଟଣା ଚକ୍ରରେ ସେ ଘର ସେତିକିରେ ଶେଷ । ଆମେ ନୂଆ ଘରକୁ ଉଠି ଆସିଲୁ । ବାପା, ମାମୁଁ ଦୁଇଜଣ, ଭେଣେଇ, ଜଣେ ସମୁଦିକୁ ନେଇ ଘର ପ୍ରତିଷ୍ଠାକଲୁ ଏବଂ ପ୍ରାୟ ପାଞ୍ଚଟି ବର୍ଷ ସେହି ଘରେ ରହିଲୁ, ମୟୂରଭଞ୍ଜର Headquarters Townରେ ଘରଟିଏ କରିବା ମନସ୍କାମନା ପୂର୍ଣ୍ଣହେଲା । ମାଲିମକଦମା ପାଇଁ, ଦେହପଥପାଇଁ, ଛୁଆମାନଙ୍କ ପାଠପାଇଁ, ଅନ୍ୟାନ୍ୟ ସୁବିଧାପାଇଁ ଓ ଭବିଷ୍ୟତ ବଂଶଧରଙ୍କର ସୁବିଧାପାଇଁ ରାସ୍ତା ଖୋଲିଗଲା । ଘରେ ରହିଲା ୩ଟା ବଡ କୋଠରୀ, ଗୋଟିଏ ବାରଣ୍ଡା । ଗୋଟିଏ ଅସମ୍ପୂର୍ଣ୍ଣ ପିଡ଼ିଘର, ଗୋଟିଏ store ଘର । ଗୋଟିଏ

ରୋଷେଇ ଘର, ପାଖକୁ ଲାଗି ଗୋଟିଏ ବଡ ଚାଳିଆ । ତହିଁରେ ଗୁହାଳ, ଢିଙ୍କିଘର, ଅଦୂରରେ ଗୋଟିଏ କଞ୍ଚାବରପାଲି ପାଇଖାନା । ରେଭେନ୍‌ସା କଲେଜରେ ପୁରସ୍କାର ପାଇଥିବା ପଙ୍କଲାଇଟ୍‌ଟି ଜାଳିଦେଲେ ଘରଗୁଡିକ ଆଲୋକିତ ହୋଇଯାଏ । ଗାଈଟିଏ, ଗୋଟିଏ କୁକୁର, କେତୁଟା ରଙ୍ଗବେରଙ୍ଗୀ ପାରା ଘରେ ଥାନ୍ତି । ଦୁଆର ଏମିତି କିସମର ହୋଇଥାଏ, ଯେମିତି ରୋଷେଇ ଘର ଭିତରେ ଥାଇ ସ୍ତ୍ରୀ ଚାଳଘରର କୁକୁର, ଗାଈ, ଚାକର, ଢିଙ୍କି ତତ୍ତ୍ୱ ନେଇପାରିବେ । ଏବଂ ଡାହାଣ ପାଖକୁ ଦୋଳିରେ ଶୋଇଥିବା ଛୋଟ ଝିଅ, ବଡ ପୁଅର ପଢାଘର, ମୋର ଟ୍ୟୁସନଘର ଏବଂ ସାମ୍‌ନା ବଗିଚା ତଥା ଫାଟକର ତତ୍ତ୍ୱ ନେଇପାରିବେ ।



## ॥ ଶତଚାଳିଶ ॥

ଥରେ ଗ୍ରୀଷ୍ମଛୁଟି ହୋଇଥାଏ । ପ୍ରିନ୍‌ସପାଲ ନଥାନ୍ତି । ଅନ୍ୟ କେହି ଲେକ୍‌ଚରର୍ ମଧ୍ୟ ନଥାନ୍ତି । ସମସ୍ତେ ବାହାରିଆ ଲୋକ । ମୋତେ କଲେଜ୍ ଚାର୍ଜରେ ରଖିଦେଇ ପ୍ରିନ୍‌ସପାଲ ତାଙ୍କଘରକୁ ଚାଲିଗଲେ ଓ କହିଗଲେ ଡାଃ ପରିଜା ରାଜବାଟୀ ଦେଖିବାପାଇଁ ଆସିବେ । ସରକାର ରାଜବାଟୀକୁ କିଣିନେଇଛନ୍ତି କଲେଜପାଇଁ । ସେ ଘରସବୁ କେତେ ଉପଯୁକ୍ତ ସେଇଟା ତନଖି କରିବାପାଇଁ ସେ ଆସୁଛନ୍ତି । ମୋତେ ଖୁବ୍ ଖୁସିଲାଗିଲା । ଏ ଦାୟିତ୍ୱ ମୁଁ ବେଶ୍ ତୁଲାଇପାରିଲି । କାରଣ ଯେତେବେଳେ ମହାରାଜା ରାଜବାଟୀରେ ଥିଲେ, ସେତେବେଳେ ମୁଁ ସେ ସବୁ ଘର ବୁଲି ଦେଖିଛି । ଏବଂ କେଉଁ ଘରେ କ'ଣ ହେଉଥିଲା, ତାହା ମଧ୍ୟ ଜାଣିଛି ।

ଯଥା ସମୟରେ ପରିଜା ସାହେବ ଆସିଲେ । ଟାଣୁଆ ଖରା ପଡିଯାଇଥାଏ । ତାଙ୍କୁ ମୁଁ ରାଜବାଟୀକୁ ନେଇଗଲି । ତ୍ରିପାଠୀ ସାହେବ ମଧ୍ୟ ସାଙ୍ଗରେ ଥିଲେ । ସେ ମୋତେ ବୋଟାନି ପଢେଇ ନ ଥିଲେ ବି ମୁଁ ତାଙ୍କୁ ଗୁରୁ (ଅଜ୍ଞାତରେ) ମାନେ । ଅନେକ ଦିନ ସିଏ West Hostel ର Superintendent ଥିଲେ । ମୁଁ ଯେତେବେଳେ ରେଭେନ୍‌ସାରେ ପଢୁଥିଲି ଏବଂ West Hostel chargeରେ ରହୁଥିଲି । ସେ ମୋ ଗୁଣଗ୍ରାମ ଭଲକରି ଜାଣନ୍ତି ଓ ମୋତେ ପ୍ରଶଂସା ଚକ୍ଷୁରେ ମଧ୍ୟ ଦେଖନ୍ତି । କଲେଜ ଛାଡିଲା ବେଳେ ମୋତେ ଯେଉଁ ଟାଇପ୍ କରା ସାର୍ଟିଫିକେଟ୍ ଦେଇଥିଲେ, ତାହା ଏବେବି ମୋ ପାଖରେ ଅଛି । ରେଭେନ୍‌ସାରେ ମୁଁ କ'ଣ ଥିଲି ଓ କ'ଣ କରୁଥିଲି ତାହାର ସବୁ ବିବରଣୀ ସେ

ସାର୍ଟିଫିକେଟରେ ରହିଛି, ପ୍ରିନ୍‌ସପାଲ ପରିଜା ସାହେବଙ୍କର ଅନିନ୍ଦ୍ୟ ସୁନ୍ଦର ଦସ୍ତଖତ ସହିତ। ରାଜବାଟୀ ଭିତରେ ପଶିଯାଇ ଦେଖିଲି ବିରାଟ ପ୍ରସାଦ ଜନମାନବ ଶୂନ୍ୟ, କୌଣସି ଘରେ କିଛି ଆସବାବପତ୍ର ନାହିଁ।

ପାହାଚରେ ଉଠିଯାଇ ପ୍ରଥମେ ଦେଖାଇଲି, ଯେଉଁ ବିରାଟ ହଲ୍‌ଟି ବ୍ୟବହୃତ ହେଉଥିଲା ଦରବାରପାଇଁ। ସେଠି ଯେଉଁ ଆଲୋକ ଗୁଚ୍ଛ ସେଭଳି ନାହିଁ। ଖାଲି କାନ୍ଥ ଗୁଡ଼ାକ। ଆସବାବ ପତ୍ର ନାହିଁ। କହିଲି "ସାର୍, ଏ ଘରଟା ଖୁବ୍ କମ୍ ବ୍ୟବହୃତ ହେଉଥିଲା। କେବେ ବ୍ୟବହୃତ ହେବାର ମୁଁ ଦେଖିନାହିଁ। ଏଇଟା ଥିଲା ରାଜଦରବାରର ଦରବାର ଘର। ମହାରାଜା ରାଜ୍ୟର ସରଦାର ଓ ସର୍ବରାକାର ସହିତ ବସୁଥିଲେ। ସ୍ୱତନ୍ତ୍ର ଉତ୍ସବ ଅନୁଷ୍ଠିତ ହୋଇଥାଏ। ଏ ପାଖ ଘରଗୁଡ଼ାକ ରାଜରାଜୁଡ଼ା ଓ guest ଆସିଲେ ରହିଥାନ୍ତି। ଏ ପାଖ ବଡ଼ ରୁମ୍‌ଟା ବିଲିଆଡ୍ ରୁମ୍। ଏ କାନ୍ଥ ଗୁଡ଼ାକରେ ଜୀବଜନ୍ତୁଙ୍କର ଚମଡ଼ା, ଶିଙ୍ଗ, ଦାନ୍ତ ଆଦି staffed ହୋଇ କାନ୍ଥରେ ଝୁଲୁଥିଲା। ଫେରିଗଲୁ ବାରଣ୍ଡାରୁ ପଛକୁ, staircase ଆଡ଼କୁ। ଯେଉଁ ବିରାଟ ଲମ୍ବା ଚୌଡ଼ା ବାରଣ୍ଡା ଥିଲା, ସେଇଟା ଏବେକାର construction । ପାଖ ରୁମ୍ ବୈଠକଖାନା। ତାକୁ ଲାଗି ପାଠାଗାର। ବିଭିନ୍ନ ପ୍ରକାର ବିଲାତି ମଦ ବୋତଲରେ ଏବଂ ନାନା ରଙ୍ଗର ପାନ ପତ୍ରରେ ଘରଟା ରମଣୀୟ ଦିଶୁଥିଲା। ତା ପର କୋଠରୀଟା ଭିଜିଟର୍‌ମାନଙ୍କର ବୈଠକଖାନା। ତାକୁ ଲାଗି ମହାରାଜାଙ୍କର ଅଫିସ୍ ରୁମ୍। ସେଇଠି ସେ ଲୋକମାନଙ୍କୁ ଇନ୍‌ଟର୍‌ଭିଉ ଦେଉଥିଲେ। ତା ପର ରୁମ୍‌ଟି ବେଡ୍‌ରୁମ୍। ସେଇଠୁ ଅନ୍ତଃପୁରକୁ ଯିବାର ରାସ୍ତା। ପାଖକୁ ଲାଗି ମହାରାଜାଙ୍କର ବୈଠକଖାନା। ସେଇଠି ମହାରାଜା ଧୋତି ଓ କୁର୍ତ୍ତା, ୫୮ ଇଞ୍ଚିଆ ଲାଲ ଧଡ଼ି କୁଞ୍ଚକରା କଷାୟନ ବସ୍ତ୍ର ପିନ୍ଧି ବସିଥାନ୍ତି। ସେହି ଘରେ ଏସ୍.ପି. ପରମାନନ୍ଦ ଆଚାର୍ଯ୍ୟ, ଆହୁରି ଅନେକ ଅନେକ ବିଶ୍ୱସ୍ତ କର୍ମଚାରୀ ମହାରାଜାଙ୍କୁ ଦେଖାକରୁଥିଲେ ଏବଂ ରାଜ୍ୟର ହାଲ୍ ହରକତ୍ କହୁଥିଲେ। ମହାରାଜା ସେଇଠି କ୍ଷିଅର ହେଉଥିଲେ ଇଲେକ୍ଟ୍ରିକ୍ ଲୋଜର୍‌ରେ। ଚାଇନା କ୍ଲେ (ଚିନା ମାଟିରେ) ମୂର୍ତ୍ତି ମଧ୍ୟ ଗଢ଼ୁଥିଲେ। ପାଖ music room ରୁ କ୍ବେବେ କେମିତି ହାର୍‌ମୋନିୟମ୍ ଓ ଡିଗିତବଲା ଆସୁଥିଲା। ସେହି କୋଠରୀରେ ସଙ୍ଗୀତ- ଚର୍ଚ୍ଚା ହେଉଥିଲା। ମହାରାଜା ନିଜେ ହାର୍‌ମୋନିୟମ୍ ବଜାଉଥିଲେ। ତାଙ୍କ ଆଙ୍ଗୁଳିଗୁଡ଼ା ଏତେ ମୋଟା ଓ ବଡ଼ ଯେ 'ସା' ରେ ହାତ ଦେଲାବେଳେ 'ରେ' ବାଜୁ ଥିଲା। ମହାରାଜା ସାହିତ୍ୟିକ ଥଲେ। ସେଇଠି ବସି ପ୍ରଜା ସାଧାରଣଙ୍କୁ ଦେଉଥିବା ଇଂରାଜୀର ବାଣୀ ଓଡ଼ିଆରେ ଅନୁବାଦ ଶୁଣୁଥିଲେ। ସଂଶୋଧନ କରୁଥିଲେ। ଥରେ ତାଙ୍କର ଝୁଙ୍କ୍‌ବସିଲା ରାଗଭୈରବୀରେ। ଗଞ୍ଜାମରୁ କେବେ କେମିତି

ଓସ୍ତାଦ ଡକାଯାଏ, ସ୍ୱରରେ ଗାନ୍ କରାଯାଏ ଓ ଗାୟକମାନଙ୍କୁ ଗସ୍ତ ଖର୍ଚ୍ଚ ଦେଇ ଅଣାଯାଏ। ତା ପର କୋଠରୀରେ ଥିଲା ମାଛଧରା ସରଞ୍ଜାମ ବନ୍ସି ଖଡା, ଦେଶ ବିଦେଶର ରିଲ୍ (ଯାହାକୁ "wheel" ଆମେ କହୁଁ) । ସେଇଠି ଛିଡା ହୋଇ ବାରମ୍ବାର ମୁଁ ଦେଖାଇ ଦେଲି ତଳ ପ୍ରାଙ୍ଗଣକୁ, ଯେଉଁଠି ପଣା ସଂକ୍ରାନ୍ତି ବେଳେ ଛଉନାଚ ପରେ ବାଦିନାଚ ହୁଏ। ଆଉ ଦେଖାଇ ଦେଲି ଗୋଲ୍ ବାରଣ୍ଡା। ଯେଉଁଠି ମହାରାଜାଙ୍କ କକା ରାଉତ୍‌ରାୟ ସାହେବ ଅଫିସ୍ ବେଉସା ସବୁ କରୁଥିଲେ। ତା ପରେ ମୁଁ ପରିଜା ସାହେବଙ୍କୁ ନେଇ ନାରୀମହଲ ଦେଖାଇବାକୁ ଚାହିଁଲି- ଯେଉଁଠି ମହାରାଣୀ ଥିଲେ ଏବଂ ଯାହାର ବାରଣ୍ଡାରେ ଛିଡାହେଲେ ବଳଙ୍ଗ ନଇ, ଉତ୍ତରରୁ ଦକ୍ଷିଣ ଲମ୍ବିଥିବା ଶିମିଳିପାଳ ପର୍ବତ ଓ ମନୋରମ ସୂର୍ଯ୍ୟାସ୍ତର ଦୃଶ୍ୟ ଦେଖାଯାଏ।

ବୁଲି ବୁଲି ପରିଜା ସାହେବ ଥକି ଗଲାପରି ମୋତେ ଜଣାଗଲା। ସେ କହିଲେ, "ଯାହା ଦେଖାଇଲ, ବୁଝାଇଲ ସବୁ ଦେଖିଲି, ବୁଝିଲି। ଆଉ ଆଗକୁ ଯିବାନି। ତୁମର ଅତି ବେଶି local patriotism ହୋଇଯାଉଛି। ଏଥର ତଳକୁ ଯିବା।" ଓହ୍ଲେଇଗଲୁ ତଳକୁ। ଗାଡି ଭିତରକୁ ଆସିଥାଏ, ସେହି ମଣ୍ଡପ ପାଖକୁ, ଯେଉଁଠି ରାଜା ରାଜୁଡା ଓ ବଡ ବଡିଆ ବସି ଛଉନୃତ୍ୟ ଉପଭୋଗ କରୁଥିଲେ। ତଳକୁ ଓହ୍ଲାଇ ଯାଉ ଯାଉ ପରିଜା ସାହେବ ପଚାରିଲେ- "ତଳ କୋଠରୀଗୁଡାକ କ'ଣ ହେଉଥିଲାକି ?" ମୁଁ କହିଲି- "ସେଗୁଡାକ ଭିତରକୁ ଯାଇନାହିଁ କି ତା ଭିତର ଦେଖିନି। କ'ଣ ଥିଲା କହି ପାରିବି ନାହିଁ।" ଆମେ ବାହାରି ଆସିଲା ବେଳକୁ ତିନିଟା। ରାଜବାଟୀ ଆଗରେ ପରିଜା ସାହେବଙ୍କୁ ଛାଡି ମୁଁ ଘରକୁ ଫେରିଲି।

କି ରିପୋର୍ଟ ସେ ସରକାରଙ୍କୁ ଦେଲେ ମୁଁ କହି ପାରିବି ନାହିଁ। ମୁଁ ଖୁସିହେଲି। ସାଧ୍ୟମତେ ତାଙ୍କୁ ଘରଗୁଡିକ ଦେଖାଇଛି ଓ ସେ ବିଷୟରେ କହିଛି। ପରଦିନ ଶୁଣିଲି- ପରିଜା ସାହେବ କଟକ ପହଞ୍ଚିପାରିଲେ ନାହିଁ। ଜର୍କା ବଙ୍ଗଳାରେ ରହିଗଲେ। ଘୋର ଅସୁସ୍ଥ ହୋଇପଡିଲେ। ମୁଁ ଅନୁତାପକଲି- କାହିଁକି local patriotism ଦେଖେଇ ପରିଜା ସାହେବଙ୍କୁ ଏତେ ତନ୍ନତନ୍ନ କରି ଖାଲିପଡିଥିବା ଶୁଖିଲା ଘରଟିକୁ ବୁଲାଇ ଦେଖାଉଥିଲି।

ପରେ ଶୁଣିଲି, ଖୁବ୍ କମ୍ ପଇସାରେ (ଶୁଣା ଶୁଣି ୪ ଲକ୍ଷ) ମହାରାଜା ଓଡିଶା ସରକାରଙ୍କୁ ତାଙ୍କ ରାଜବାଟୀ ବିକ୍ରି କରିଦେଇଛନ୍ତି। ଥରେ କଥା ପ୍ରସଙ୍ଗରେ ମହାରାଜାଙ୍କୁ ପଚାରିଲି- ଏତେ କମ୍ ଦାମ୍‌ରେ କାହିଁକି ରାଜବାଟୀ ବିକିଦେଲେ। ସେ କହିଥିଲେ- "ମୁଁ ତ ସେ ଘରକୁ repair କରିପାରିବି ନାହିଁ କି ଚୂନ ଦେଇପାରିବିନି।

କାହିଁକି ରଖିବି ?" ରାଜବାଟୀ ସଂଲଗ୍ନ ସୁଇମିଙ୍ଗ୍ ପୁଲ୍ ବିଷୟରେ ପଚାରିବାରୁ, ସେ ତାର ଭବିଷ୍ୟତ ବିଷୟରେ ନୀରବ ରହିଲେ। ସେଇଟା ପରେ କାଠପଟାରେ ବନ୍ଦକରି ଦିଆଗଲା ; ସେ ଦିବ୍ୟ ସୁନ୍ଦର ଦର୍ଶନୀୟ ସ୍ଥାନଟି ଆଉ କେବେ କେହି ଦେଖିପାରିଲେ ନାହିଁ। ମାର୍ବଲ ପଥରଗୁଡ଼ାକ କୁଆଡେ ଅନ୍ତର୍ଦ୍ଧାନ ହୋଇଗଲା ଓ ସ୍ଥାନଟି ଶ୍ରୀହୀନ ହୋଇଗଲା। ମୁଁ ଅନେକ ଦିନ ମହାରାଜାଙ୍କ ସହିତ ସେହି ସୁରମ୍ୟ ଇନ୍ଦ୍ରଭବନଟିରେ କାମକରିଛି। ହାଇଦ୍ରାବାଦ ଓ ମହୀଶୂର palace ଦେଖିଲା ପରେ, ମୁଁ ଭାବେ ମୟୂରଭଞ୍ଜର ସେହି ଛୋଟିଆ ସମ୍ପଦଟିକୁ ସରକାର ମ୍ୟୁଜିୟମ୍ ବା ସଂଗ୍ରହାଳୟ ନକରି କାହିଁକି କଲେଜ୍‌ଟିଏ କଲେ ଓ ଆଜକୁ ପ୍ରାୟ ୫୦ ବର୍ଷ ଧରି ପରିତ୍ୟକ୍ତ ଅବସ୍ଥାରେ କାହିଁକି ସେ ପୁଣ୍ୟ ପୀଠଟିକୁ ରଖିଛନ୍ତି। ଆଜି ପର୍ଯ୍ୟନ୍ତ ନିଷ୍ପତ୍ତି ହୋଇପାରିଲା ନାହିଁ ଯେ କଲେଜଟି ସେଇଠି ରହିବ, ନା ଗୁଡାଏ ସମ୍ପତ୍ତି ଥିବା ତକତ୍‌ପୁରକୁ ଉଠିଯିବ।



## ।। ଅଢ଼ଚାଳିଶ ।।

ଏବକାର ଶିକ୍ଷାନୀତି ଓ ପଦ୍ଧତିରେ ଟ୍ୟୁସନ୍ ପ୍ରଥା ଏକ ଦୂରାରୋଗ୍ୟ କେନ୍‌ସର। ଏହାର ଚେର ମୂଳ ଏମିତି ସୁଦୂର ପ୍ରସାରିତ ହୋଇଯାଇଛି ଯେ, ତାର ମୂଳପ୍ରାଟନକରିବା ସହଜ ନୁହେଁ। ଏଠୁ ମୂଳ ଉପାଡିଲେ ଆଉ କେଉଁଠି ବାହାରୁଛି। ଏମ୍.ପି.ସି. କଲେଜରେ ଯୋଗଦେଇ ଦେଖିଲି ଯେ, ଏଠି ଟ୍ୟୁସନ୍ ପ୍ରଥା ନାହିଁ। କିଏ କେଉଁଠି ମାଷ୍ଟର କିମ୍ବା ଶିକ୍ଷକ ତା ପାଖକୁ ଯାଇ ଗୋଟାଏ ଅଧେ doubt clear କରିଆସେ। ସେଥିପାଇଁ ପଇସା ପଡେ ନାହିଁ। ମୋ ସମୟରେ କୌଣସି ସମୟରେ ଟ୍ୟୁସନ ପ୍ରଥା ନ ଥିଲା। ହାଇସ୍କୁଲ୍‌ରେ ଜଣେ ଅଧେ କିଏ କରୁଥିବେ। ମାସକୁ ଦଶଟଙ୍କାରେ ମାଷ୍ଟର ଥିଲାବେଳେ ବର୍ଷେ କାଳ ପାଞ୍ଚ ପାଞ୍ଚ ଟଙ୍କାରେ ଯୋଡିଏ ପିଲାକୁ (ବିପିନ୍ ଓ କୁଳିଆ) ପଢାଉଥିଲି। ତାଙ୍କ ବାପାଙ୍କ ଚାଳଘରେ ରହିବା ବାବଦକୁ। ଟ୍ୟୁସନ ପ୍ରଥାର ମୁଁ ଘୋର ବିରୋଧୀ। ମୁଁ ନିଜେ କେବେ ପଢିନି। ସାଙ୍ଗସାଥିମାନଙ୍କୁ ପଚରାଉଚରା କରି, ବିଶେଷକରି ଅଙ୍କ ସମ୍ବନ୍ଧୀୟ କାମ ଚଳାଉଥିଲି। କଲେଜ ସ୍ତରରେ ଏକମାତ୍ର ରେଭେନ୍‌ସା କଲେଜରେ  କେବେ କେହି ଟ୍ୟୁସନ ପଢେଇବାର ମୁଁ ଦେଖିନି। ରାଜା ରାଜୁଡାଙ୍କ ପୁଅକୁ ଗିରିଜାବାବୁ ପଢାଉଥିବାର ଶୁଣିଥିଲି।

ଏହା ସତ୍ତ୍ୱେ କିଛିମାସ ବାରିପଦାରେ ମୋତେ ଟ୍ୟୁସନ କରିବାକୁ ପଡିଲା । ଘର ଧାର କରକ କରି ମଧ୍ୟ ଅଧାରେ ରହିଗଲା ବର୍ଷେକାଳ । ଅକସ୍ମାତ୍ ତିନି ଜଣ ଆଇ.ଏ., ଆଇ.ଏସ୍‌ସି. ପିଲା ଇଂରାଜୀ ପଢିବାପାଇଁ ମୋ ଘରକୁ ଆସିଲେ । ଜଣେ କଣ୍ଟ୍ରାକ୍ଟରର ପୁଅ, ଆଉ ଜଣେ ଧନୀ ମାରୁଆଡ଼ିର ପୁଅ ଏବଂ ଆଉ ଜଣେ ସୁଦୂର ବିହାରର କୌଣସି ଦୋକାନୀର ପୁଅ । ସେ ଭିତରୁ ଦୁଇଟି ଗଧ । ଗୋଟିଏ ଖୁବ୍ intelligent । ମାସକୁ ତିରିଶ୍ ଟଙ୍କା ଲେଖାଏ ଦିଅନ୍ତି । ତେଜରାତି ଦୋକାନୀର ପୁଅ ଥରେ ଖାଲି ତମ୍ବା ପଇସା ଗୁଡା ୩୦ ଟଙ୍କା ଆଣିଦେଲା । ମୋ ସ୍ତ୍ରୀ ତାକୁ ଘଣ୍ଟାଏ ଦିଘଣ୍ଟା କାଳ ଗଣିବାରେ ବେଶ୍ ପରିଶ୍ରମ କରିଥିଲେ । ସେ ତିନିଜଣଙ୍କ ବ୍ୟତୀତ ଜଣେ Science ଆଉ ଜଣେ Arts ର ପିଲା, ମୋ ପାଖକୁ ବୁଝାବୁଝି କରିବାପାଇଁ ଆସୁଥିଲେ । ସନ୍ଧ୍ୟା ୫ରେ । ଗଲାବେଳେ ଓ ଆସିଲା ବେଳେ ମୁଁ ପ୍ରାୟ ୧୦, ୧୦ଟା ପ୍ରଶ୍ନର ଉତ୍ତର କହିଦେଉଥିଲି । ସେମାନଙ୍କ ପାଖରୁ ପଇସା ପତ୍ର ନେଉ ନଥିଲି ।

ଏ ସମୟରେ ଆମର ଗୋଟିଏ ମକଦମା ଚାଲିଥାଏ । ଓକିଲକୁ ପଇସା ଦବା ମୋ ପକ୍ଷରେ କଷ୍ଟହେଲା । ତାଙ୍କର ୪ ଜଣ ଝିଅ ଥିଲେ । ସେ ଝିଅଟି ପଛରେ ଆଉ ଦୁଇ ଜଣ ମଧ୍ୟ ଯୋଗଦେଲେ । ମୁଁ ସେମାନଙ୍କ ଘରେ ପଢାଉଥିଲି । ସମସ୍ତଙ୍କପାଇଁ ସମାନ ରେଟ୍ : ସେହି ତିରିଶ୍ ଟଙ୍କା । ସନ୍ଧ୍ୟା ୭ ରେ ଯାଏ, ରାତି ପ୍ରାୟ ୧୦ଟା ବେଳେ ଫେରେ । ସ୍ଥାନୀୟ ଏସ୍.ପି.ଙ୍କ ଝିଅର ମଧ୍ୟ ଟ୍ୟୁସନ ଲୋଡାପଡିଲା । ତାଙ୍କ ଘରେ ୫/୬ ଜଣ ଓଡିଆ ଝିଅ ଯୁଟିଲେ । ସେଠି ସକାଳ ବେଳା ବା ଉପର ବେଳା ସାଇକେଲ୍ ଧରି ପହଞ୍ଚିଯାଏ । ଏ ଦୁଇଦଳ ଛଡା ଦଳେ ପୁଅ କେତେବେଳେ କେମିତି ଆସିଯାନ୍ତି । ବି.ଏ. କ୍ଲାସର ପିଲା ସେମାନେ । ୫୦ ଟଙ୍କା ଲେଖାଏ ଦିଅନ୍ତି । ବର୍ଷକିଆ ଟ୍ୟୁସନ୍ ନୁହେଁ । ପରୀକ୍ଷା ପୂର୍ବର ଦୁଇତିନି ମାସପାଇଁ । ମୋର ବି ତାଙ୍କ ପାଖରୁ ପାଉଣା ପାଇବାରେ ସନ୍ଦେହ ଥାଏ; କିନ୍ତୁ ଅବଶେଷରେ ସେମାନେ ଦେଇଦିଅନ୍ତି । ସେମାନଙ୍କ ଅଭିଭାବକ ମୋର ଚିହ୍ନା ପରିଚୟ ଲୋକ । ସେମାନେ ମତେ ସମ୍ମାନ ଦିଅନ୍ତି; ତାଙ୍କ ପୁଅମାନେ ମଧ୍ୟ । କେବେ କେହି ମୋପାଖରେ ପଢୁଥିବା ପିଲା ଫେଲ୍ ହୋଇ ନାହାନ୍ତି । ମୁଁ ଉତ୍ତର ଗୁଡାକ ଡାକିଦିଏ ନାହିଁ । ପିଲାଙ୍କ ଷ୍ଟାଇଲ୍ ଓ ଷ୍ଟାଣ୍ଡାର୍ଡ ସାଙ୍ଗରେ ମିଶାଇ ତାଙ୍କୁ ଉତ୍ତର କହିଦିଏ । ସେମାନେ ଲେଖି ନିଅନ୍ତି ବା ଘରେ ଲେଖିଆଣି ଦେଖାନ୍ତି । ସମସ୍ତଙ୍କ ଉତ୍ତର ଯେପରି ଭିନ୍ନ ଭିନ୍ନ ହେବ ସେ ବ୍ୟବସ୍ଥା କରିଥାଏ । ଏବେ ଯେମିତି ଗୋଟିଏ ଗୋଟିଏ କଲେଜର ସବୁଖାତା ରଦ୍ଦ ହୋଇଯାଏ, ସେମିତି ହେବାର ଚାନ୍‌ସ ନଥାଏ । ପିଲାଙ୍କ original ଲେଖା । ମୋର ମନେପଡୁଛି- ବି.ଏ. ପଢୁଥିବା ଗୋଟିଏ ପିଲା ୫୦ ଟଙ୍କା ନଦେଇ, ମାତ୍ର ୨୫ ଟଙ୍କା

ଦେଲା । ପରୀକ୍ଷାରେ ପାସ୍ କରିସାରି ସେ ଆସି ମୋତେ ଜୁହାରହେଲା ଏବଂ ଆନନ୍ଦ ଗଦ୍‌ଗଦ୍ ହୋଇ କହିଲା, "ସାର୍ ମୁଁ ପାସ୍ କରିଛି । ଆପଣଙ୍କ ପଇସା ଦେଇପାରିଲି ନାହିଁ ।" ମୁଁ ତାଙ୍କୁ କହିଲି, "ବାବା, ମୋର ପଇସା ଆଉ ଦରକାର ନାହିଁ । ଖାଲି ତୁମେ ନାମ ଶେଷରେ ଯେତେବେଳେ ବି.ଏ. ଲେଖିବ, ସେତେବେଳେ ଯୋଡ଼ିବ, 'ବି.ଏ. -ଟୁପିକ୍ ୨୫' ।"

ମୋର ଦେଖି ବାହାରୁ ଆସିଥିବା ଜଣେ ଦୁଇଜଣ ଅଧ୍ୟାପକ ଟ୍ୟୁସନ୍ ଆରମ୍ଭ କଲେ । କିନ୍ତୁ ମୁଁ ସେମାନଙ୍କ ଅପେକ୍ଷା ଟିକେ ବୟସ୍କ ହୋଇଥିବାରୁ ଅଭିଭାବକମାନେ ଟୋକାଟାକଳିଆ ଅଧ୍ୟାପକ ଅପେକ୍ଷା ମୋତେ ପସନ୍ଦକରୁଥିଲେ । ଇଂରାଜୀ ଛଡ଼ା ଆଉ କୌଣସି ବିଷୟରେ ପିଲାମାନେ ଟ୍ୟୁସନ୍ ଲୋଡୁନଥିଲେ । ଜନସଂଖ୍ୟାର ବିସ୍ଫୋରଣ ପରି, ବର୍ଷକୁ ବର୍ଷ ଛାତ୍ରସଂଖ୍ୟା ବିସ୍ଫୋରଣହେଲା । ଶିକ୍ଷକମାନେ ପଢ଼େଇବାରେ ଢିଲାହେଲେ । କଲେଜ ୟୁନିଅନ୍ ଗଢାହେଲା । ପିଲାମାନଙ୍କ ଭିତରେ ରାଜନୀତି ପଶିଗଲା । ବିଶୃଙ୍ଖଳା ଧିରେ ଧିରେ ମୁଣ୍ଡଟେକିଲା । ତା ସାଙ୍ଗକୁ ଏନ୍.ସି.ସି., ଏନ୍.ଏ.ଏସ୍.ଏସ୍. ଇଂରାଜୀରେ Double tutorial, Proctorial, Excursion ଆଦି ନାନା ଶିକ୍ଷା ଅତିରିକ୍ତ ବିଷୟ ପାଠ୍ୟକ୍ରମ ଭିତରକୁ ଆସିଲା । ସେ ଯାହେଉ, ଦିନରାତି ପରିଶ୍ରମକରିବା ଫଳରେ ମୋର ଦେହ ଭଲ ରହିଲା ନାହିଁ । ଦଳଦଳ ଝିଅମାନଙ୍କୁ ପଢାଇବା ଯୋଗୁଁ ସ୍ତ୍ରୀ ମୋ ଉପରେ ବିରକ୍ତି ଭାବ ପ୍ରକାଶକଲେ ଏବଂ ଟ୍ୟୁସନ୍‌ରୁ ଫେରିଲାମାତ୍ରେ ତାଙ୍କର ରୋଷ କଷାୟିତ ଚକ୍ଷୁ ସମ୍ମୁଖୀନ ହେବାପାଇଁ ପଡ଼ିଲା । କିନ୍ତୁ ମାସ ଶେଷରେ ଯେତେବେଳେ ଟ୍ୟୁସନ୍ ପଇସାଟା ହାତକୁ ଦେଇଦିଏ, ସେ ଅଳ୍ପ ହସିଦିଅନ୍ତି । ଯେତେବେଳେ ସେହି ପଇସା ମଜୁରି, ମୂଲିଆକୁ ଦିଅନ୍ତି, ସେତେବେଳେ ଟିକେ ଗର୍ବ ଅନୁଭବକରନ୍ତି । ଘରକାମ ବାକି ରହିଗଲା ବୋଲି ଆମେ ଦୁହେଁ ଯେ ରାତି ଅଧିଆ କନ୍ଦାକଟା କରୁଥିଲୁ, ଉଜାଗର ରହୁଥିଲୁ ତାହା ଆଉ ହେଲା ନାହିଁ । ଘର ତିଆରି ପ୍ରାୟ ସରିଗଲା । ସେତେବେଳେ ଯେଉଁ ଲୋକେ ମୋର ଅର୍ଥ ଉପାର୍ଜନକୁ ଭଲ ଆଖିରେ ଦେଖୁ ନଥିଲେ, ସେମାନେ ବେଶି ହିଂସ୍ର ହୋଇ ଉଠିଥିଲେ । ମୋ ଉପରେ ସଣ୍ଟୁଆସି ଆକ୍ରମଣ ହେଲା । ଖବର କାଗଜରେ ଟ୍ୟୁସନ ବିରୋଧରେ ଲେଖାହେଲା । ସେତେବେଳେ ଡି.ପି.ଆଇ. ଖୁବ୍ ସ୍ପର୍ଶକାତର ଥିଲେ । ସାଙ୍ଗେ ସାଙ୍ଗେ ହୁକୁମ ଜାରିହେଲା । ଟ୍ୟୁସନ୍ ବନ୍ଦ । ଅଧ୍ୟାପକମାନେ ଯେମିତି ଟ୍ୟୁସନ କରି ନପାରନ୍ତି, ସେଥିପାଇଁ ଅଧ୍ୟକ୍ଷମାନଙ୍କୁ ଲେଖାହେଲା । ମୋର ରୋଜଗାର ପନ୍ଥା ବି ରୁଦ୍ଧ ହୋଇଗଲା । ହେଲେ ଘର କାମଟି ଆପାତତଃ ସରିଥାଏ । ଏଣେ ଶାରୀରିକ ଅସୁସ୍ଥତା ଏବଂ ନିୟମିତ ପରିବାର ବୃଦ୍ଧି, ମୋତେ ମୁହ୍ୟମାଣ କରିଦେଲା ।

ଅଭାବରେ ପଡି ଅର୍ଥପାଇଁ ଟ୍ୟୁସନ କରୁଥିଲି ସିନା, ବାରିପଦା ଛାଡିଲା ପରେ ଜୀବନରେ କେବେ ଟ୍ୟୁସନ କରିନାହିଁ। କେବଳ ବାଲେଶ୍ୱରରେ ଦୁଇଟି ପିଲାଙ୍କୁ ପଢାଉଥିଲି। ସେମାନେ ବୋର୍ଡିଂରୁ ମୋ ଗାଇପାଇଁ ଦୁଇଟିଣ ପେକ ଆଣି ଦେଉଥିଲେ। ଏହି ଟ୍ୟୁସନ ପ୍ରଥା କ୍ରମେ ଭୟାବହ ହୋଇଉଠିଲା। ୧୯୭୦ ସାଲରେ ଯେବେ ମୁଁ ଶିକ୍ଷା ବିଭାଗରୁ retire କଲି, ସେତେବେଳକୁ ନାନା ଭାବରେ ଦୁର୍ନୀତି ବଢିଯାଇଥାଏ, mass ଟ୍ୟୁସନ୍ ମୁଣ୍ଡ ଟେକୁଥାଏ। କପି କଥା ଶୁଣା ଯାଉଥାଏ। କେତେବର୍ଷ ପରେ ଯେତେବେଳେ ମୁଁ ଗୋଟିଏ private କଲେଜରେ ପ୍ରିନ୍‌ସିପାଲ୍ ହେଲି, ସେତେବେଳେ ପରିଚାଳକ ମଣ୍ଡଳୀ ଚାହିଁଲେ- ନୂଆ ହୋଇ ସ୍ଥାପିତ କଲେଜରେ ମାଟ୍ରିକ୍ୟୁଲେଶନ୍ ପରୀକ୍ଷା ହେଉ। କଲେଜର prestige ବଢିଯିବ। କେନ୍ଦ୍ରରେ ବହୁତ ପିଲା ପରୀକ୍ଷା ଦେଲେ। ଶୃଙ୍ଖଳା ପାଇଁ ପୋଲିସ୍ ମଗାଇଲି। ପୁରୀ, କଟକ, ଦିଲ୍ଲୀରୁ ମଧ୍ୟ ପିଲା ଆସି ପରୀକ୍ଷା ଦେଲେ। ଛାତ୍ରମାନଙ୍କ ଅଭିଭାବକମାନେ ବଡବଡ ଥଳୀରେ ବହିପତ୍ର ରଖି, କେହି କେହି ଶିକ୍ଷକମାନଙ୍କୁ ଧରି ପହଞ୍ଚିଲେ। କଲେଜ ପରିସର ଲୋକାରଣ୍ୟ ହୋଇଗଲା। ଅନେକ ଥର ନିଜେ ମଧ୍ୟ ଅଫିସ୍ ବାହାରିଯାଇ ଦୁର୍ବୃତ୍ତଙ୍କୁ ଘଉଡାଇବାକୁ ଗଲି। ଭାରି ସୁନ୍ଦରୀ ଯୋଡିଏ ଝିଅ ପରୀକ୍ଷା ଦେଉଥାନ୍ତି। ପୋଲିସ୍ ସାହାଯ୍ୟ ନେଇ ସେ ଦୁଇକଣଙ୍କୁ protection ଦେଲି। ତା ପର ଦିନଠାରୁ ମାଟ୍ରିକ୍ୟୁଲେଶନ୍ ପରୀକ୍ଷା କେନ୍ଦ୍ର ସେଠୁ ଉଠିଗଲା। ଉଭୟ ହାଇସ୍କୁଲ୍ ଓ କଲେଜମାନଙ୍କରେ ମହାମାରି ପରି କପି ବଢିବାକୁ ଲାଗିଲା। ଜଣେ ଜଣେ ଅଧ୍ୟାପକ ୨୫/୩୦ ପିଲାଙ୍କୁ ଟ୍ୟୁସନ୍ ପଢାଇଲେ। ସ୍ଥାନ ଅଭାବରେ ପରିତ୍ୟକ୍ତ ଘର ବା ଅବ୍ୟବହୃତ ଘର ବା ରାତିରେ ପଢା ନଥିବା ସ୍କୁଲ ଘର ଆଦି ଯାହା ଯେଉଁଠି ମିଳିଲା, ତାହା ଟ୍ୟୁସନ୍ ଘର ରୂପେ ବ୍ୟବହାର କରାଗଲା। ସ୍ଥଳବିଶେଷରେ ହେଡ୍‌ମାଷ୍ଟରଙ୍କ ପରାମର୍ଶ ଆସିଲା। କାରଣ ତାଙ୍କର ଅଧ୍ୟାପକ ଜଣେ ସେହି ଅନୁଷ୍ଠାନ ଚଳାଉଥିଲେ। ସେହି ଅନୁଷ୍ଠାନକୁ ଦଳ ଦଳ ପିଲା ଆସନ୍ତି। ଗୋଟିଏ ବିଷୟ ବଦଳରେ ୪ଟା ୬ଟା ବିଷୟ ପଢାଇବାର ବ୍ୟବସ୍ଥା କରାଗଲା। ବଡ କଲେଜ୍ ପାଖରେ ଏକ ଛୋଟ କଲେଜ୍ ଚାଲିଲା। ହେଡ୍‌ମାଷ୍ଟର କିମ୍ବା ପ୍ରିନ୍‌ସପାଲ ପିଲାମାନଙ୍କୁ ଛତୁ ପରି ଫୁଟିଉଠୁଥିବା କଲେଜରେ ପଢିବାକୁ ଉତ୍ସାହ ଦେଲେ। ଅଭିଭାବକମାନେ ଦେଖିଲେ ଦଳଦଳ ହୋଇ ପିଲା ତାଙ୍କ ଘର ଆଗରେ ସାଇକେଲରେ ଚାଲିଛନ୍ତି। ଏମାନେ କୁଆଡେ ଯାଉଛନ୍ତି କେହି କେବେ ଜାଣିବାକୁ ଚେଷ୍ଟାକଲା ନାହିଁ। ପୁଅଝିଅ ସଙ୍ଗରେ ଏକାଠି ହେଲେ। କଲେଜ ତ ଖାଲି ନାମକୁ ରହିଲା। ପଢାଶୁଣା ଯେତେ ହୁଏ, ତାଠୁ ବେଶି ହୁଏ ନାଚ, କୁଦ, ତାମ୍‌ସା। ପ୍ରଶ୍ନ ପତ୍ର leakout ହୁଏ। କେନ୍ଦ୍ର ବନ୍ଦ ହୋଇଯାଏ। ପରୀକ୍ଷାପାଇଁ ଇନ୍‌ସପେକ୍ଟର

appointment ଯା'ନ୍ତି । ପ୍ରିନ୍‌ସପାଲ୍ common roomକୁ ରାଜନୀତି ଦଳ ଯା'ନ୍ତି । କଲେଜ union ବାଲା ଦାବିପତ୍ର ଦିଅନ୍ତି । ବିକ୍ଷୋଭ କରନ୍ତି । ଶିକ୍ଷାମନ୍ତ୍ରୀ ବା ବିଧାନ ସଭାରେ କୌଣସି କଲେଜରେ ଦିଆଯାଉଥିବା ଟ୍ୟୁସନ୍ ପ୍ରଥା ଉଠାଇଦେବାପାଇଁ ଦାବିହେଲା ନାହିଁ ବା କେମିତି କଲେଜ୍‌ରେ admission ହେବ ସେକଥା ଉଠିଲା ନାହିଁ । ଅନ୍ୟ ଦେଶରେ ବ୍ୟାପକ ଦୁର୍ନୀତିର ପ୍ରଭାବ ଶିକ୍ଷା କ୍ଷେତ୍ରରେ ମଧ୍ୟ ପଡିଛି । ଶିକ୍ଷା ପଦ୍ଧତିରେ ଯେଉଁ ଆଦର୍ଶ ତାହା ସବୁ ତଳି ତଳାନ୍ତ ହୋଇଯାଇଛି । ଖାଲି ସର୍ବତ୍ର Home tuition, coaching centre ଦେଖାଯାଉଛି । ଯେଉଁମାନେ ଜ୍ଞାନବର୍ଦ୍ଧକ ବହି ଛାପୁଥିଲେ, ସେମାନେ ବ୍ୟବସାୟିକ ଦୃଷ୍ଟିରୁ ବିଭିନ୍ନ କିସମର "ମାନେ" ବହି ଛାପୁଛନ୍ତି । କେତେ ବେଳେ ସେଗୁଡାକୁ "Possible" ଓ ଆଉ କେତେବେଳେ "Impossible" ନାମ ଦେଇ ବା test paper/ model question answer ଇତ୍ୟାଦି ଆକାରରେ ଛପାଯାଇ ବିକ୍ରିହେଉଛି । ସରକାର ମଧ୍ୟ ସମାଜର ଚାହିଦା ପୂରଣପାଇଁ ନୂଆ ନୂଆ ଶିକ୍ଷାନୀତି ନିର୍ଦ୍ଧାରଣ କରୁଛନ୍ତି । କେତେବେଳେ ଯୁକ୍ତ ଦୁଇ (+୨) ତ ଆଉ କେତେବେଳେ ବିଯୁକ୍ତ ଦୁଇ (–୨), ଆଉ କେତେବେଳେ ମାଇନସ ଥ୍ରୀ (-୩) ତ ଆଉ କେତେବେଳେ ପ୍ରସ ଥ୍ରୀ (+୩) ହେଉଛି । କେତେବେଳେ Science stream, Arts stream, Commerce stream ଇତ୍ୟାଦି ଖୋଲାଯାଉଛି । ମୂଳତଃ ଆମେ ପଢୁଥିବା ବେଳେ ଯେଉଁ ସବୁ ପାଠ ଥିଲା ସେଇଆ ରହିଛି, କିନ୍ତୁ ପିଲାଙ୍କର ହଇରାଣ ହରକତରେ ସୀମା ନାହିଁ । ଯେଉଁ ଡିପାର୍ଟମେଣ୍ଟ ଶିକ୍ଷା ଶୃଙ୍ଖଳା ରକ୍ଷା ଦାୟିତ୍ୱପାଇଁ ଅଛି, ତାହା ଖୁବ୍ ଢିଲା ଓ ବିଶୃଙ୍ଖଳର ଆଦର୍ଶ ଆକାରରେ ଛିଡାହୋଇଛି । ସ୍ଥଳ ବିଶେଷରେ Cancer ରୋଗ ଆରୋଗ୍ୟ ହେଉଛି, କିନ୍ତୁ ଶିକ୍ଷା ବିଭାଗ cancer କେବେ ଯେ ଆରୋଗ୍ୟ ହେବ, ତାହା କହିହେବ ନାହିଁ । ଯାହା ମୁଣ୍ଡକୁ ଯାହା ଆସିଲା, କ୍ଷମତା ବଳରେ ତାକୁ ଆଣି ଛାତ୍ର ଓ ଅଭିଭାବକ ମୁଣ୍ଡରେ ଲଦି ଦିଆଯାଉଛି । ବ୍ୟୟ ବୃଦ୍ଧି ଚାଲିଛି ଶିକ୍ଷା ବିଭାଗରେ । ଶିକ୍ଷା ଓ ଶିକ୍ଷକଙ୍କର ମାନ ବଢାଇବା ପାଇଁ ଶିକ୍ଷାବିତ୍‌ମାନଙ୍କର ମସ୍ତିଷ୍କରୁ ବାହାରିଲା ଏମ୍.ଫିଲ୍., ପି.ଏଚ୍.ଡି. । ଯଦି ଥାର୍ଡ କ୍ଲାସ୍ ହୋଇଗଲା, ତାହା ହେଲେ ମଧ୍ୟ କେହି ହତାଶ ହେବ ନାହିଁ । ସେପାଇଁ ସରକାରୀ ବ୍ୟବସ୍ଥା ଅଛି ।

ଆମ ହାଇସ୍କୁଲର ହେଡମାଷ୍ଟର ଶ୍ରୀଯୁକ୍ତ ଶଚୀନ୍ଦ୍ର ନାଥ ଦାସଙ୍କ କଥା ଆଗରୁ କହିଛି । ଅଗାଧ ପାଣ୍ଡିତ୍ୟ ଓ ଜ୍ଞାନ । କଲିକତାରେ ଇଂରାଜୀରେ ଏମ୍.ଏ. ପଢୁଥିଲେ । ଯୋଡାଏ ପେପର ଭଲ ହେଲା ନାହିଁ ବୋଲି ଫେଲ୍ ହେବାପାଇଁ ଚେଷ୍ଟାକଲେ ଦୁଇଟା ପେପର ନଦେଇ । କିନ୍ତୁ ଦୁଇଟା ପେପର ନ ଦେଇ ମଧ୍ୟ ମେଧାବୀ ଥିବାରୁ ସେ ଥାର୍ଡ କ୍ଲାସ୍

ପାଇଗଲେ। ପରେ ସେ law ପଢିଲେ ଓ ବି.ଇଡି. ପଢିଲେ। ସଭା ଶେଷରେ ଖୁବ୍ ଭଲ ଟିଚର୍ ହୋଇ ମଧ୍ୟ ହାଇସ୍କୁଲର ହେଡମାଷ୍ଟର ଏବଂ ଅର୍ଦ୍ଧପାଗଳ। ଏବେ କିନ୍ତୁ ପିଲା ବାରମ୍ବାର ପରୀକ୍ଷା ଦେଉଥିବେ, ଓ ପାସ୍ କରୁନଥିବେ। ୫୪% ରଖିଲେ ଲେକ୍‌ଚରର ହୋଇପାରିବ। ଅଙ୍କ ବା chemistryରେ ୫୪% ରଖାଯାଇ ପାରେ, କିନ୍ତୁ ଇଂରାଜୀରେ ୫୪% ରଖିବ କିଏ ? ତା ପରେ ଅଛନ୍ତି ତିନି କିସମର ଅଧ୍ୟାପକ- ଲେକ୍‌ଚର୍, ରିଡର୍, ପ୍ରଫେସର୍। ଜଣେ ଲେକ୍‌ଚରର ଥାର୍ଡ କ୍ଲାସ୍ ପାଇ ମଧ୍ୟ ଯଦି ଏମ୍.ଫିଲ୍. କରିଦେଲା, ତେବେ ସେ ଲେକ୍‌ଚର ହେବାପାଇଁ ଯୋଗ୍ୟ। ଆଗରୁ ଯେମିତି ଓଡିଆ M.A.ରେ ଗୋଟିଏ ଇଂରାଜୀ ବହିର ଓଡିଆ ଟ୍ରାନ୍‌ସଲେସନ୍ ପେପର ଥିଲା ଓ ପିଲାମାନେ ଯେନତେନ ପ୍ରକାରେ ସେ ଟ୍ରାନ୍‌ସଲେସନ୍ କରାଇ ପାରୁଥିଲେ। ଏବେ ବି ସେମିତି ଅନ୍ୟମାନଙ୍କ ଦେଇ ଏମ୍.ଫିଲ୍. ହାସଲ କରିହେଉଛି। କିଛି ନ ହେଲେ ପରୀକ୍ଷକଙ୍କୁ ହଜାର ହଜାର ଟଙ୍କା ଘୁସ୍‌ଦେଇ ଏମ୍.ଫିଲ୍. କରି ଡକ୍ଟରେଟ୍ ପାଇ ହେଉଛି। କେହି ବୁଝୁ ନାହିଁ, ଜୁନିଅର କଲେଜ ବା ନୂଆ ନୂଆ କଲେଜରେ ଖୁବ୍ ନିମ୍ନମାନର ବହି ପଢେଇବାପାଇଁ ଉଚ୍ଚମାନର ଡିଗ୍ରୀର କମ୍ ଆବଶ୍ୟକତା ଅଛି। ତା ଛଡା, ଯେଉଁ ପ୍ରକାରରେ ନୀତି ନିୟମ ଓ ବିଶୃଙ୍ଖଳାରେ ପରୀକ୍ଷା ଚାଲିଛି, ସେଥିରେ ପିଲାମାନଙ୍କର ପାଠ ପଢିବା କି ଦରକାର। ଅଧେ ଦିନ ଛୁଟି । ଆଡ୍‌ମିସନ୍ ହେଉ ହେଉ ପୂଜା ଛୁଟି ପହଞ୍ଚିଯାଏ। ୟୁନିଭର୍‌ସିଟି ବା କାଉନ୍‌ସିଲ କେବଳ ପରୀକ୍ଷା କରିବାପାଇଁ ରହିଛନ୍ତି। କେତେବେଳେ ପ୍ରଶ୍ନ leakout ହୋଇଯାଉଛି। ଧରାଧରିର ଆଦି, କି ଅନ୍ତ ନାହିଁ। କାର୍ଡ ନମ୍ବର ଦେଇ ପରୀକ୍ଷା ଚାଲେ। କେନ୍ଦ୍ରୀୟ ମୂଲ୍ୟାୟନ ବି କେତେବେଳେ ହୁଏ। ଯେତେ ଯାହା ହେଲେ ବି ପରୀକ୍ଷା ସୁଚାରୁ ରୂପେ ପରିଚାଳିତ ହୁଏ ନାହିଁ। ଯିଏ ଥାର୍ଡ ଡିଭିଜନ୍‌ରେ ପାସ୍ କରିବାକଥା, ସେ ଫାଷ୍ଟ ଡିଭିଜନ୍‌ରେ ପାସ୍‌କରେ ବା ଓଲଟା ଫଳହୁଏ। ଯଦି ପାରନ୍ତେ, ତେବେ ପରୀକ୍ଷା ଫଳ ପ୍ରକାଶ ପରେ ପରେ ଶହ ଶହ ବା ହଜାର ହଜାର ମକଦମା ଚାଲନ୍ତା। ସେଣ୍ଟ୍ରାଲ ପବ୍ଲିକ୍ ସର୍ଭିସ୍ କମିସନ୍‌ଦ୍ୱାରା ପରିଚାଳିତ ପରୀକ୍ଷାରେ କିଛି ଭୁଲ୍‌ଭଟକା ହୁଏ ନାହିଁ। Superviser, Inspector, Flying Squad, Police, ସମସ୍ତ ବ୍ୟବସ୍ଥା ସତ୍ତ୍ୱେ ପରୀକ୍ଷା ହଲ୍‌ରେ ଉତ୍ତର ଡାକି ଦିଆଯାଉଛି। ପରୀକ୍ଷା ଫି ସହିତ ଭଲକରିବାପାଇଁ ପିଲାଙ୍କଠୁ ଚାନ୍ଦା ଆଦାୟ ହେଲା। ମୋଟାମୋଟି ଘୋର ଅବ୍ୟବସ୍ଥା ଓ ଦୁର୍ନୀତି ଭିତରେ ପରୀକ୍ଷା ଚାଲିଲା। ନା ଅଭିଭାବକ, ନା ଛାତ୍ର ନା ୟୁନିଅନ୍, ନା ମନ୍ତ୍ରୀ, ନା ଡି.ପି.ଆଇ. କେହି ପରିବର୍ତ୍ତନ ଚାହାନ୍ତି ନାହିଁ। ବ୍ରିଟିଶ୍ ଅମଳରେ ବରଞ୍ଚ ଭଲ ଥିଲା ବୋଲି ପୁରୁଣା କାଳିଆ ଲୋକେ କହୁଛନ୍ତି। ଅବସ୍ଥା ସୁଧାରିବା ଚେଷ୍ଟା ନାହିଁ, ବରଂ ଅବକ୍ଷୟହେଉଛି। ଗୋଟେ

ଗୋଟେ କଲେଜରେ ୧୦୦ / ୨୦୦ ଅଧ୍ୟାପକ। କେଉଁ ପ୍ରିନ୍‌ସପାଲ ସେମାନଙ୍କୁ କଣିପାରିବ ବା କଣ୍ଟ୍ରୋଲ ରଖିପାରିବ। ଆଗରୁ ଆମେ ରେଭେନ୍‌ସାରେ ପଢୁଥିବା ବେଳେ ସମସ୍ତେ ଥିଲେ ପ୍ରଫେସର୍। ଏବେ ଲେକ୍‌ଚରର୍, ରିଡର୍, ପ୍ରଫେସର, ପି.ଏଚ୍.ଡି., ଏମ୍.ଫିଲ୍., ଡି.ଲିଟ୍. ଆଦି କେତେ କ'ଣ। ସମସ୍ତେ ଜାଣନ୍ତି- ପଦବୀ ପାଇଗଲେ ପାଠପଢାଇବାର ମାନ ଉନ୍ନତହୁଏ ନାହିଁ। କିନ୍ତୁ ଚିହ୍ନିବାପାଇଁ ଏ ପ୍ରକାର ଗୁଡାଏ ବ୍ୟବସ୍ଥା ରଖାଯାଇଛି। ମୋ ସମୟରେ ପ୍ରମୋସନ୍‌ପାଇଁ ରିସର୍ଚ୍ଚ ପେପର ଦରକାର ବୋଲି ଡି.ପି.ଆଇ. ନିୟମ ବାହାର କଲେ। ମୁଁ ବି ରିସର୍ଚ୍ଚ ପେପର ଆଡକୁ ଆଖି ଦେଲି। କିନ୍ତୁ ଇଂରାଜୀରେ କଣ ରିସର୍ଚ୍ଚ କରିବି India ରେ ରହି ? London, Oxford, Cambridge ଆଦି ସ୍ଥାନରେ ଥିଲେ ଅବା ସବୁ ବହିପତ୍ର, ପାଣ୍ଡୁଲିପି ଓ ଅନ୍ୟାନ୍ୟ କାଗଜ ମିଳିଥାନ୍ତା। ବଡ ବଡ ଲୋକମାନଙ୍କୁ ଭେଟିଥା'ନ୍ତି, ବା ସେମାନଙ୍କର ସମାଧିକୁ ଯାଇଥାନ୍ତି। ଭାରତ ବର୍ଷରେ ଇଂରାଜୀରେ ରିସର୍ଚ୍ଚ କରିବାରେ କେଉଁ ସୁବିଧା ଅଛି ? ସଂସ୍କୃତରେ ମଧ୍ୟ ପ୍ରକୃତ ଗବେଷକକୁ England, Germany ଯିବାପାଇଁ ପଡିବ। ମୁଁ ଇଂରାଜୀ ଭାଷା ସାହିତ୍ୟ ସମ୍ପର୍କରେ ଆସି ଓଡିଆ ଭାଷାର କିଛି ଉନ୍ନତି ବିଧାନ କରିବା ପାଇଁ ଇଂରାଜୀରେ ଏମ୍.ଏ. ପଡିଲି। ଇଂରାଜୀରେ ଲେଖାଲେଖି ମୋ ଦେଇ ସେମିତି ଉନ୍ନତ ଧରଣର ହୁଏ ନାହିଁ। ଥରକୁ ଥର ଯେତେବେଳେ ରିସର୍ଚ୍ଚ ପେପର ମଗାଯାଏ, ସେତେବେଳେ ମୁଁ ଓଡିଆ ପତ୍ର ପତ୍ରିକାକୁ କାଟି ଡି.ପି.ଆଇ. ଅଫିସ୍‌କୁ ପଠାଇଦିଏ। ଫେର୍ ବର୍ଷେ ପରେ ଆଉ ବେଳେ ମଗାଯାଏ। ଫେର୍ ପତ୍ରିକାରୁ କାଟି ପଠେଇବାକୁ ପଡେ। ଜେରକ୍ସ ମେସିନ୍ ସେତେବେଳେ ନଥିଲା ! ଅନ୍ୟ ବିଷୟରେ ଯଥା Physics, Chemistry, Political Science ଅଧ୍ୟାପକମାନେ ପ୍ରମୋସନ୍ ପାଇଗଲେ। ଦୁଃଖର କଥା ଇଂରାଜୀ ଅଧ୍ୟାପକମାନଙ୍କର ରିସର୍ଚ୍ଚ ପେପର ସବୁ କୁଆଡେ ହଜିଗଲା କି, ଗାଏବ ହୋଇଗଲା। ପ୍ରମୋସନ୍ ବହୁଦିନ ଧରି ହେଲା ନାହିଁ। ରିସର୍ଚ୍ଚ ପେପରର ଅଭାବରେ ମୋତେ ୧୮ ବର୍ଷ ଲାଗିଲା ପ୍ରମୋସନ୍ ପାଇବାକୁ। ଅବସର ନେବାପାଇଁ ମାସେ ଥାଏ ରିଡର୍ ହେଲି। ମୋର ଚାକିରୀ ଜୀବର ପ୍ରଥମ ୧୧ ବର୍ଷ କାଳ ନାନା ବିଭାଗରେ ମୟୁରଭଞ୍ଜର ଷ୍ଟେଟ୍ ସାଇନ୍‌ସରେ କଟାଇଥିବା ହେତୁ ଶିକ୍ଷା ବିଭାଗରେ ମୋର ଚାକିରି କାଳ ଅନେକ କମିଗଲା। ସେତେବେଳେ ବୁଢାକାଳରେ ଶୁଆ କେଁ କଟର ହେବା ଛଡା ଆଉ କିଛି କାମକୁ ନାହିଁ।



## ॥ ଅଣଚାଶ ॥

ସରକାରୀ କଲେଜରେ ଧନୀପିଲାମାନେ ପ୍ରତିବର୍ଷ excursionରେ ବାହାରନ୍ତି। ଜଣେ ଦୁଇଜଣ ଅଧ୍ୟାପକ ସେମାନଙ୍କ ଦାୟିତ୍ୱରେ ଥାନ୍ତି। ସେଗୁଡାକୁ extra curricular activitiesରେ ଗଣାଯାଏ। ଯେମିତି ଏନ୍.ଏସ୍.ଏସ୍. କେମ୍ପ ପରିଚାଳିତହୁଏ। ଧନ୍ଦାମୂଳକ ଶିକ୍ଷା ସାଙ୍ଗକୁ ଆଉ ଗୁଡିଏ ଧନ୍ଦା। ପିଲାଙ୍କ ଉତ୍ସାହ, ଆଗ୍ରହର ସୀମା ନାହିଁ; ସରକାରର ପଇସା ଖର୍ଚ୍ଚର ସୀମା ନାହିଁ। ପାଠ ସହିତ ଏସବୁ ଧନ୍ଦାର କିଛି ସମ୍ପର୍କ ଥାଉ ବା ନ ଥାଉ, ମୋର ସେ ବର୍ଷ excursion ଦାୟିତ୍ୱ ଆସିଲା। ଆଗରୁ ଥରେ ଅଧେ ଉତ୍ତର ଭାରତକୁ ଯାଇଥିଲି। ସେଥିପାଇଁ ପ୍ରାୟ ୨୦/୨୫ ପିଲାଙ୍କୁ ଧରି କଲିକତା ଦେଇ ଦିଲ୍ଲୀ ଯିବାର ବ୍ୟବସ୍ଥାହେଲା। ଛୁଆପିଲାଙ୍କୁ ଘରେ ଛାଡିଦେଇ ସଦଳବଳ ବାହାରିଲି। ଛାତ୍ରମାନଙ୍କୁ ରେଳରେ କନ୍‌ସେସନ୍ ମିଳେ। ପିଲାମାନଙ୍କ ଛଡା ସାଙ୍ଗରେ ସ୍ତ୍ରୀଙ୍କୁ ଏବଂ ଭଉଣୀ-ଭିଣୋଇଙ୍କୁ ନେଇ ବାହାରିଲି।

ପ୍ରଥମେ କଲିକତା ଗଲି। କଲିକତାରେ ଗୋଟିଏ ଦିନ ରହି ଚିଡିଆଖାନା, ଇଡେନ୍‌ଗାର୍ଡେନ୍, ଡାଇମଣ୍ଡ ହାରବର, ଭିକ୍ଟୋରିଆ ମୋମୋରିଆଲ, ଚୌରଙ୍ଗି, ଯାଦୁଘର ଆଦି ଐତିହାସିକ ଓ ଦର୍ଶନୀୟ ସ୍ଥାନ ଦେଖାଇଲି। ତା ପରେ ଚାଲିଲି ଉତ୍ତର ଭାରତ ଅଭିମୁଖେ। ବାଟରେ ଏଲ୍ଲାବାଦ, ବନାରସ୍, ଆଗ୍ରାର ତାଜମହଲ୍ ଦେଖିଦେଖି ଗଲୁ। ଭାଗ୍ୟ ଭଲ, ପିଲାଗୁଡିକ ଅଧିକାଂଶ ବି.ଏ. ଶ୍ରେଣୀର, ସୁଶୃଙ୍ଖଳିତ ଏବଂ ନୂଆ ସ୍ଥାନ ଦେଖିବାପାଇଁ ଆଗ୍ରହୀ। ଅନେକ କଥା ସେମାନେ manage କରିନିଅନ୍ତି; ମୋତେ କିଛି କରିବାପାଇଁ ପଡେନି। ଅବଶେଷରେ ଦିଲ୍ଲୀ ପହଞ୍ଚିଲୁ। ସେଠି ଲାଲକିଲ୍ଲା, ଜାମା ମସ୍‌ଜିଦ୍, କନ୍ନଟପ୍ଲେସ୍, ପାର୍ଲ୍ୟାମେଣ୍ଟ ଭବନ, ରାଷ୍ଟ୍ରପତି ଭବନ, ପ୍ଲାନେଟୋରିଅମ୍, ପୁରୁଣା ଦିଲ୍ଲୀ, ରେଡିଓ ଷ୍ଟେସନ ଆଦି ଯେତେ ବିଖ୍ୟାତ ସ୍ଥାନ, ଗୋଟିଗୋଟି କରି ପିଲାଙ୍କୁ ଦେଖାଇଲି। ହୋଟେଲଗୁଡାକରେ ରହୁ ଓ ଖାଉ। ବନାରସ୍‌ରେ ହୋଟେଲ୍‌ବାଲା ଗୋଟିଏ ବାଇଗଣ କାଟିକରି ଭଜା ଦେଇଥିଲା। ଆମେ ସମସ୍ତେ ସେହି ଗୋଟିଏ ବାଇଗଣରେ ଚଳିଗଲୁ। ଏତେ ବଡ଼ ବାଇଗଣ, କିଲେ କି ଦୁଇକିଲୋ ହେବ। ଆମକୁ ସେଇଟା ଆଶ୍ଚର୍ଯ୍ୟ। ଏଲ୍ଲାବାଦରେ 'ଆନନ୍ଦ ଭବନ' ମଧ୍ୟ ଦେଖିଥିଲୁ। ପ୍ରୟାଗର ତ୍ରିବେଣୀରେ ବୁଡ ମାରିଥିଲୁ; କାଶୀ ବିଶ୍ୱନାଥ ଦେଖିଥିଲୁ। ଆମ ଇଲାକା ଅପେକ୍ଷା ଉତ୍ତର ଭାରତ କେତେ ସୁନ୍ଦର, କେତେ ଉର୍ବର ଓ କେତେ ସମୃଦ୍ଧ, ତାହା ବର୍ଣ୍ଣନାତୀତ।

ଅବଶେଷରେ excursion ସାରି ଆମେ ବାରିପଦା ଫେରିଲୁ। ଦିନଥିଲା,

ଯେତେବେଳେ ମୋର ଭ୍ରମଣ-ପିପାସା ଖୁବ୍ ବେଶିଥିଲା । ନୂଆନୂଆ ଜାଗା ବୁଲିବା ଓ ଦେଖିବାରେ ମୋର ଭାରି ଆନନ୍ଦ । ବଡପୁଅ ସାଙ୍ଗରେ ମୁଁ ନଇନିତାଲ୍, ସିମ୍‌ଲା ଦେଖିଛି । ତା ତଳ ପୁଅ ମୋତେ ଦକ୍ଷିଣ ଭାରତକୁ ନେଇଯାଇଛି । ମାନ୍ଦ୍ରାଜ୍, ମହୀଶୂର, ଉଟ୍‌କାମଣ୍ଡ ଆଦି ନାନା ସ୍ଥାନ ବହୁତ ଉପଭୋଗ କରିଛି । ଭ୍ରମଣ ସମୟରେ କେବେ କେଉଁଠି ଦେହପା ଖରାପ ହୋଇନି ।

ମୁଁ କେବେ କେବେ ଅଭିନୟ ମଧ୍ୟ କରୁଥିଲି । ଥରେ ମୋ ପ୍ରିୟବନ୍ଧୁ ଦୁର୍ଗାଚରଣ କୁଅଁର Dramatic Society ର President ଥାଇ "ଘରସଂସାର" ନାଟକ ବହିଟି ଅଭିନୟ କରାଇଥିଲେ । ମୁଁ ସେହି ନାଟକରେ ପୁରୋହିତ ପାର୍ଟଟି କରୁଥିଲି । ତାହା ଛାତ୍ରମାନଙ୍କର ତଥା ଜନସାଧାରଣଙ୍କର ବେଶ୍ ଉପଭୋଗ୍ୟ ହୋଇଥିଲା ଏବଂ ଅଭିନୟ ପାଇଁ ସୁଖ୍ୟାତି ଲଭିଥିଲି । ମୋର ବେଶ୍ ହୃଦ୍‌ବୋଧହୋଇଛି, ଜଣେ ଭଲ ଅଧ୍ୟାପକ ଓ ଭଲ ଅଭିନେତା ମଧ୍ୟରେ ଅନେକ ସାମଞ୍ଜସ୍ୟ ଅଛି ।

ମୋର ଶିକ୍ଷାଦାନ ପଦ୍ଧତି ଅନ୍ୟ ଅଧ୍ୟାପକମାନଙ୍କ ଠାରୁ ଟିକେ ଭିନ୍ନ ଥିବାରୁ ଏବଂ ଅଧିକାଂଶ ଅଂଶ ମାତୃଭାଷା ମାଧ୍ୟମରେ ପଡାଉଥିବାରୁ ପିଲାମାନଙ୍କର ହୃଦୟଗ୍ରାହୀ ହେଉଥିଲା । ଟ୍ୟୁସନ୍ ପଡାଇବାରେ ମୋର ଖ୍ୟାତି ରେଭେନ୍‌ସା କଲେଜ ପର୍ଯ୍ୟନ୍ତ ଚାଲିଗଲା । ସେଠିକାର କେତେ ଜଣ ଏମ.ଏ. କ୍ଲାସ୍‌ର ଛାତ୍ର ମୋ ପାଖକୁ ବାରିପଦା ଆସୁଥିଲେ । ମୁଁ ସେମାନଙ୍କୁ "Matthew Arnoldଙ୍କର Culture and Anarchyell Selction from Aldous Huxley. Bertnand Russellଙ୍କର ପ୍ରବନ୍ଧବଳୀ ଶନିବାର ରବିବାରର ଅବସର ସମୟ ଦେଖି ପଡାଉଥିଲି । ସେଥିପାଇଁ ସେମାନଙ୍କ ପାଖରୁ କିଛି ନେଇନାହିଁ । ଏଇ ହେଉଛି ଶ୍ରଦ୍ଧାର କାମ ବା labour of love । ପ୍ରସଙ୍ଗ କ୍ରମେ ମୁଁ କହିରଖୁଛି- ଯେତେଯେତେ ପିଲାଙ୍କୁ ପଡାଉଥିଲି, ସେମାନେ ସମସ୍ତେ ମୋତେ ଦକ୍ଷିଣା ଦେଇଥାନ୍ତୁ ବା ନଦେଇଥାନ୍ତୁ, ପାସ୍‌କରୁଥିଲେ ଏବଂ ଆଜିଯାଏ ମୋତେ ସେମାନେ ବହୁତ ଶ୍ରଦ୍ଧା ଓ ଭକ୍ତି କରନ୍ତି ।

ଆଗରୁ କହିଛି- ମୋର କେତେ ଜଣ ବନ୍ଧୁ ଟ୍ୟୁସନ କରିବାକୁ ପସନ୍ଦକଲେ ନାହିଁ । ସେମାନଙ୍କ ହାତରେ ଖବର କାଗଜ ଥିଲା । ବରାବର ସେମାନେ ଟ୍ୟୁସନ ବିଷୟରେ ଆପତ୍ତି ଅଭିଯୋଗ କରି ଡି.ପି.ଆଇ.ଙ୍କ ଦୃଷ୍ଟି ଆକର୍ଷଣକଲେ । ଏହି ଯୋଗୁଁ ମୋର excursionରେ ସେମାନଙ୍କୁ ଆଉ ଗୋଟିଏ ମଉକା ମିଳିଲା ମୋ ବିରୁଦ୍ଧରେ ଷଡଯନ୍ତ୍ରପାଇଁ । ଡି.ପି.ଆଇ.ଙ୍କ ପାଖକୁ ମଧ୍ୟ ଲେଖିଲେ । ଅଭିଯୋଗ ହେଲା, ପିଲାଙ୍କ

ପଇସା ମାରିଦେଇଛି, ତୋଷରଫ କରିଛି। ଡି.ପି.ଆଇ. ଲେଖିଲେ ପ୍ରିନ୍‌ସପାଲ ପାଖକୁ। ଯେହେତୁ ୪ ଜଣ ଅଣଛାତ୍ରଙ୍କୁ excursionରେ ନେଇଥିଲି concessionରେ, ସେଥିପାଇଁ Railwayକୁ କିଛି କ୍ଷତି ସହିବାକୁ ପଡିଛି। ମୁଁ Railway ସହିତ କଥାବାର୍ତ୍ତା କରି, ହିସାବ କିତାବ କରି ଟଙ୍କା କ୍ଷତିପୂରଣ ଦେବି। ବାରିପଦା ଷ୍ଟେସନ୍ ମାଷ୍ଟରଙ୍କୁ ଭେଟିଲି। ସେ କିଛି କରିପାରିଲେ ନାହିଁ। ବାଲେଶ୍ୱର ଗଲି; ସେଇଠି ହିସାବହେଲା। ମୋତେ ପ୍ରାୟ ୧୦ ଟଙ୍କା Railwayକୁ ଦେବାକୁ ପଡିଲା। ମୁଁ ଦେଲି ଓ ରସିଦ୍ ଆଣି ପ୍ରିନ୍‌ସପାଲଙ୍କୁ ଦେଖାଇଲି। ସେ ଡି.ପି.ଆଇ.ଙ୍କୁ ଦେଖାଇଲେ; ମୁଁ କ୍ଷମାପାଇଲି।

ବାରିପଦାରେ ଥିବା ସମୟରେ history classରେ ପଢୁଥିବା ଗୋଟିଏ ପିଲାକୁ ଦେଖି ଖୁସିହେଲି ଏବଂ ତାକୁ ବଡ ଝୋଇଁ କରିବାର ମନସ୍ଥକଲି। ପିଲାଟିର ବାପା ଆମ ଇଲାକାର ଜଣେ ସମ୍ପତ୍ତିସମ୍ପନ୍ନ ବ୍ୟକ୍ତି। ସେ ମଧ୍ୟ ମୋ ଝିଅକୁ ପସନ୍ଦକଲେ। ଝିଅ ସାନ ଥାଏ। ବାଲ୍ୟ ବିବାହ ସେ ସମୟରେ ମନା ନଥିଲା। ନିଜ ଗାଁ ପାଲଙ୍କାରେ ନିର୍ବନ୍ଧ ହେଲା। ବରପକ୍ଷ ଅପେକ୍ଷାକୃତ ସ୍ୱାସ୍ଥ୍ୟବତୀ ଝିଅକୁ ଦେଖି କହିଲେ, ବସନ୍ତ ଶତପଥୀ ବଡ ଝିଅକୁ ଛୋଟ କହି ଆମକୁ ଭୁଲାଇଦେଲେ। ପ୍ରାୟ ବର୍ଷେ ପରେ ବିଧି ଅନୁସାରେ ମୁଁ ସମୁଦି ଘରକୁ ହଳଦିଆ ପତ୍ର ପଠାଇଲି, ଯେଉଁ ପତ୍ରରେ ଝିଅ ପ୍ରାପ୍ତ ବୟସ୍କ ହେବାର ସମ୍ବାଦ ଥିଲା। ଉଭୟ ନିର୍ବନ୍ଧ ଓ ଝିଅ ପଠାଇବାରେ ମୋର ୨, ୩ ହଜାର ଟଙ୍କା ଖର୍ଚ୍ଚ ହୋଇଗଲା। ଝିଅ ଚାଲିଯିବା ପରେ ଆମେ ବାପ, ମା ବହୁତ କନ୍ଦାକଟାକଲୁ। କାଳକ୍ରମେ ନାତିଟିଏ ଜନ୍ମହେଲା।

ସେ ଯାହାହେଉ, ବାରମ୍ବାର ମୋ ବିରୁଦ୍ଧରେ ସ୍ଥାନୀୟ ଲୋକେ ଆପତ୍ତି କରୁଥିବାରୁ punishment transfer ଆକାରରେ ମୋତେ ବଦଳିକଲେ ପାରଳାଖେମୁଣ୍ଡିର S.K.C.G. Collegeକୁ। ଓଡିଶାର ଉତ୍ତର ପ୍ରାନ୍ତରୁ ଦକ୍ଷିଣ ପ୍ରାନ୍ତକୁ, ଏକ ଭିନ୍ନ ବିଚିତ୍ର ଦୁନିଆକୁ। ଧରାଧରିକରିବା, କାହାକୁ ପଇସାପତ୍ର ଦେଇ ବଦଳି କେନ୍‌ସେଲ୍ କରିବା ସେତେବେଳେ ସମ୍ଭବ ହେଉନଥିଲା। କାହାକୁ ଘର ଭଡାଦେବି, ନା ଘରଦ୍ୱାର କାହା ଦାୟିତ୍ୱରେ ରଖିବି, ଏହି ଚିନ୍ତାରେ ରହିଲି। ଏହି ସମୟରେ ଦେହ ଖରାପ ହେଲା। ଘର କରିବା ପରିଶ୍ରମ ସମ୍ଭାଳି ପାରିଲି ନାହିଁ। ମନଦୁଃଖରେ ଦେହ ଦୁର୍ବଳ ହେଲା।

ଚିକିତ୍ସାପାଇଁ କଲିକତା ଗଲି। ପୂରାପୂରି ଦେହ ଭଲ ହୋଇନଥାଏ। ଯେଉଁ ଝିଅ ଫୁଲାରୋଗରେ ପ୍ରାୟ ମରିଯାଇଥିଲା, ସେ ମଧ୍ୟ ପୂର୍ଣ୍ଣ ଆରୋଗ୍ୟ ହୋଇନଥାଏ। କଲେଜ ଖୋଲିଲା ଗ୍ରୀଷ୍ମଛୁଟି ପରେ; ଜିନିଷପତ୍ର ପେକିଂ ଆରମ୍ଭହେଲା। ଗୋରୁଗାଈ ଗାଁକୁ

ପଠାଇଦେଲି। ବାଡି ପଛରେ ହଳ କରୁଥିବା ମୁସଲ୍‌ମାନ ଭାଇଟି, ସେ ମୋର ପାରା, କୁକୁର, ବିରାଡି ଆଦି ସବୁ ନେଇଗଲା। ପରେ ପାରଳାଖେମୁଣ୍ଡିରୁ ଶୁଣିଲି, ସେ କୁକୁର ବଳଙ୍ଗନଦୀ ପାର୍ ହୋଇ ଦୁଇତିନି ଥର ମୋର ନିର୍ଜନ ଘର ପରିସର ମଧ୍ୟରେ ଶୋଉଥିଲା, ଆମକୁ ଖୋଜିଖୋଜି। ସ୍ତ୍ରୀ ଖୁବ୍‌ବେଶି ବିବ୍ରତ, ବ୍ୟସ୍ତହେଲେ ମୋର ବଦଳିରେ। ତ୍ରିନାଥ ମେଳା, ସତ୍ୟନାରାୟଣ ପୂଜା, କାଳୀ ମନ୍ଦିର, ଅମ୍ବିକା ମନ୍ଦିର, ଜଗନ୍ନାଥ ମନ୍ଦିରେ କେତ କ'ଣ ପୂଜା ସଅଣିକଲେ। କିଛି ଲାଭ ହେଲାନାହିଁ। ତାଙ୍କର ମସ୍ତିଷ୍କ ବିକୃତି ଦେଖାଗଲା। ଅବଶେଷରେ ଆମେ ବୋଗୁଚା ପତ୍ର ବନ୍ଧାବନ୍ଧି କରି ୬/୭ଟି ପିଲାଙ୍କୁ ଧରି ବାହାରିଲୁ ନୂଆ କର୍ମସ୍ଥଳକୁ।

ମୟୂରଭଞ୍ଜ ମହାରାଜାମାନଙ୍କର ସାହିତ୍ୟ ପ୍ରୀତିର ନିଦର୍ଶନ ହେଉଛି କଟକର ଶ୍ରୀରାମଚନ୍ଦ୍ର ଭବନ ଏବଂ ଉତ୍କଳ ସାହିତ୍ୟ ସମାଜ। ବାରିପଦାରେ ମହାରାଜା ପ୍ରତାପ ଚନ୍ଦ୍ରଙ୍କର ଓଡ଼ିଆ ସାହିତ୍ୟ ପ୍ରତି ଶ୍ରଦ୍ଧାର ନିଦର୍ଶନ ଆକାରରେ 'ବାରିପଦା ସାହିତ୍ୟ ସମାଜ' ପ୍ରତିଷ୍ଠିତ ହେଲା। ମୁଁ ଯେତେବେଳେ କଲିକତାରୁ ସାମ୍ବାଦିକତା ଟ୍ରେନିଂ ଲାଭ କରି ଫେରିଆସିଥିବା କଥା ଆଗରୁ କହିଛି।

ସେତେବେଳେ ବାରିପଦା ସାହିତ୍ୟ ସମାଜରେ ସ୍ଥାନୀୟ ତଥା ଓଡ଼ିଶାର ଲବ୍ଧପ୍ରତିଷ୍ଠ ଲେଖକବର୍ଗ ସଭ୍ୟଥାନ୍ତି। ରବିବାର ବା ଅନ୍ୟାନ୍ୟ ଛୁଟିଦିନରେ ସାହିତ୍ୟ ସମାଜର ସଭା ହୁଏ। ବାହାରୁ ବଡବଡ ଲେଖକ ଆସନ୍ତି। ପଣ୍ଡିତ ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର ଆଦି ରାଜନୀତିଜ୍ଞ ଓ ସାହିତ୍ୟିକବର୍ଗ ଆସୁଥିଲେ। ସେମାନଙ୍କର ଲେଖାଗୁଡିକ 'ଭଞ୍ଜ ପ୍ରଦୀପ'ରେ ଛପା ହେଉଥିଲା। ବାରିପଦାର ମାମୁଲି ସାହିତ୍ୟସଭାମାନଙ୍କର ଉଚ୍ଚକୋଟୀର ପ୍ରବନ୍ଧ ପଠିତ ଓ ଆଲୋଚନା ହେଉଥିଲା। ବେଳେବେଳେ ବଡ ସଭାଗୁଡିକ ହାଇସ୍କୁଲ ଘରେ ହେଉଥିଲା। ସ୍ଥାନୀୟ ଲେଖକମାନଙ୍କ ଭିତରେ ଯେଉଁମାନଙ୍କର ନାମ ଉଲ୍ଲେଖଯୋଗ୍ୟ, ସେମାନେ ହେଉଛନ୍ତି କଚଟତପର ଲେଖ ଡାଃ କ୍ଷୀରୋଦ ଚନ୍ଦ୍ର ପାଲ୍, ମହେଶ୍ୱର ନାଏକ, ମହେଶ୍ ଚନ୍ଦ୍ର ମହାପାତ୍ର। ଏହି ସଭାଗୁଡିକରୁ ରବିବାର ସଭାରେ ମୁଁ ମହେଶ୍ୱର ନାୟକଙ୍କର 'ପାଷାଣୀ' କାବ୍ୟ ତର୍ଜମା କରୁଥିଲି କ୍ରମିକ ଭାବରେ। ସେ 'ପାଷାଣୀ' କାବ୍ୟ ଆରମ୍ଭର କେତେଗୁଡିଏ ଧାଡି ମୋର ଅଦ୍ୟାପି ମନେ ଅଛି। କବିତାର ଆରମ୍ଭ-

ନିକାଞ୍ଚନ ନିଶିଥର କୃଷ୍ଣ ଆବରଣ
ଭେଦିଯେବେ ଦିଗ ମୁଣେ ଉଲେ ନିଶାମଣି
ଶ୍ରାନ୍ତ, କ୍ଳାନ୍ତ, କପତି ଚନ୍ଦ୍ରାସମତଳେ

ଜନମେ ପ୍ରଭାତ ଭ୍ରାନ୍ତି ;
ଅହଲ୍ୟା ଚେଷତନ

କବି ମହେଶ୍ୱର ନାୟକ ଉଚ୍ଚକୋଟିର କବିତା ଲେଖୁଥିଲେ ।

କବିଗୁରୁ ରବୀନ୍ଦ୍ରନାଥଙ୍କ ବିଷୟରେ କବିତା ଲେଖିଥିଲେ । "ପାରଦ ସ୍ପର୍ଶ" ନାମକ ଆଉ ଏକ "ପ୍ରତି କବିତା" ମଧ୍ୟ ଖୁବ୍ ଉଚ୍ଚକୋଟୀର ଥିଲା । ସେ ଅଳ୍ପ ଲେଖୁଥିଲେ । କିନ୍ତୁ ଯାହା ଲେଖୁଥିଲେ, ସେସବୁରେ ସାହିତ୍ୟ ଭରିରହିଥିଲା । ତାଙ୍କ ସହିତ ପରମାନନ୍ଦ ଆଚାର୍ଯ୍ୟଙ୍କର "ସୋରାବ ଓ ରୋସ୍ତମ୍"ର ଓଡ଼ିଆ ଅନୁବାଦ ଓ କ୍ଷୀରୋଦ୍ ପାଲଙ୍କର 'କଚଟତପ' 'ଭଞ୍ଜପ୍ରଦୀପ'ରେ ମୁଁ ଛାପିଥଲି । ଲକ୍ଷ୍ମୀକାନ୍ତ ମହାପାତ୍ରଙ୍କର ଗୁଡ଼ାଏ ଗଳ୍ପ, ନିତ୍ୟାନନ୍ଦ ମହାପାତ୍ରଙ୍କର 'କପ୍‌ତା କାପ୍‌ତୀ' ଗଳ୍ପ 'ଭଞ୍ଜ ପ୍ରଦୀପ'ରେ ଛପା ହୋଇଥିଲା । ଏତେ ଶସ୍ତାରେ ଓ ଏତେ ସୁନ୍ଦର Art paperରେ ଛପାହୋଇ ମଧ୍ୟ ଭଞ୍ଜପ୍ରଦୀପର କାଟ୍‌ତି ନଗଣ୍ୟ । ବହୁତ ଭଲଭଲ ଲେଖା ଏବେ ଅମିଳ । 'ଭଞ୍ଜ ପ୍ରଦୀପ'ରେ ଶିଳ୍ପୀ ବିମ୍ବାଧର ବର୍ମା ଓ ଗୋପାଳ କାନୁନ୍‌ଗୋଙ୍କର ଦୁଇଟି ତ୍ରିରଙ୍ଗ ଛବି ପ୍ରକାଶିତ ହୋଇଥିଲା ଓ ବହୁ ଆଦରଲାଭ କରିଥିଲା ଶୁଦ୍ଧି ସମାଜରେ । ତଥାପି ପତ୍ରିକା ଦୁଇଟି ଠିକ୍ ସମୟରେ ବାହାରି ନ ପାରିବାଯୋଗୁଁ ପାଠକବର୍ଗଙ୍କର ସମୁଚିତ ଦୃଷ୍ଟି ଆକର୍ଷଣ କରିପାରିଲା ନାହିଁ । ତାହାର କାରଣ, ଛାପାଖାନା ଅଫିସର ଜଣେ ଓ ସମ୍ପାଦନା ଦାୟିତ୍ୱରେ ଥିବା ଆଉ ଜଣକର ମିଳିତ ଉଦ୍ୟମର ଅଭାବ ଫଳରେ ପତ୍ରିକାଗୁଡ଼ିକୁ ଏ ଦୁର୍ଦ୍ଦଶା ଭୋଗିବାକୁ ପଡ଼ିଥିଲା ।

ଏତିକିବେଳେ ଓଡ଼ିଶା ସରକାର ବାରିପଦା 'ସାହିତ୍ୟ ସମାଜ'କୁ "Learned Body"ର ମାନ୍ୟତା ଦେଲେ ଏବଂ ଜଣେ ସିନେଟ୍ ସଭ୍ୟ ଆସନ ପାଇବାକୁ ସ୍ୱୀକୃତି ପଠାଇବାକୁ କହିଲେ । ସବୁ ନିର୍ବାଚନରେ ପ୍ରାୟତଃ ଦ୍ୱନ୍ଦ୍ୱ ଥାଏ । ସେଥିପାଇଁ ମୁଁ ଏବଂ ମୋର ଜଣେ ବନ୍ଧୁ ଦୁଇଜଣ ସଭ୍ୟ ହେବାକୁ ଇଚ୍ଛୁକହେଲୁ । ଆମ ଭିତରେ ମନୋମାଳିନ୍ୟ ବଢ଼ିଲା ଏବଂ ତାହା ସାହିତ୍ୟିକ ସଭ୍ୟମାନଙ୍କ ଭିତରେ ଖେଳିଗଲା । ନିର୍ବାଚନପାଇଁ ପ୍ରତିଯୋଗିତା ହେଲା । ପରିଶେଷରେ ମୁଁ ପ୍ରାୟ ନିର୍ଦ୍ୱନ୍ଦରେ ସଭ୍ୟହୋଇ ସିନେଟ୍‌କୁ ଗଲି । ବଦଳି ହେବାର ଏହା ଅନ୍ୟ ଏକ କାରଣ ।

ବାରିପଦା ଛାଡ଼ିଲା ପୂର୍ବରୁ କଲେଜରେ ପ୍ରଥମ ଦିନଟି ମୋର ମନେପଡୁଛି । ମୁଁ ଯେଉଁ ଦିନ କଲେଜରେ join କଲି ସେଦିନ ଚତୁର୍ଥ ବାର୍ଷିକ କଳାଶ୍ରେଣୀର କ୍ଲାସ୍ ନେବାକୁ ଯାଇ ଚମକିପଡ଼ିଲି, କାରଣ ୧୫/୧୬ ଜଣ ପିଲା ଗୋଟିଏ ଅତିକାୟ କାଠର ପ୍ଲାଟ୍‌ଫର୍ମ ଉପରେ ବସିଥାନ୍ତି । ସେମାନଙ୍କ ମଧ୍ୟରେ ଏକମାତ୍ର ଝିଅପିଲାଟିଏ ବସିଥାଏ । ତାକୁ ଝିଅ

କହିହେବ ନାହିଁ, କାରଣ ସେ ବି ଅତିକାୟ। ତା ପାଖରେ ଗୋଟିଏ ତିନି ଚାରି ବର୍ଷର ପୁଅପିଲା ମଧ୍ୟ ବସିଥାଏ। ସେ ପିଲାକୁ ମୁଁ ଘଉଡାଇବା ଚେଷ୍ଟାରେଥିଲି। କାରଣ କ୍ଲାସ୍ ନେବାରେ ସେ ବ୍ୟାଘାତ ସୃଷ୍ଟିକରିପାରେ; କିନ୍ତୁ ଦେଖିଲି- ପିଲାଟି ମୋଟି ଝିଅର କୋଳରେ ବସିଲା। ଏତେ ପୁଅପିଲାଙ୍କ ଭିତରେ ମାତୃସ୍ଥାନୀୟା ଝିଅଟିଏ ବସିବାର ଦେଖି ମୁଁ ତାର ପରିଚୟ ଜାଣିବାକୁ ଚେଷ୍ଟାକଲି। ସେ ଛାତ୍ରୀଟି ଜାତିରେ ମୁସଲମାନ, ନାମ ହାସିନା, ପିଲାଟି ତାରି ପୁଅ। ଦୀର୍ଘଦିନ ଅଧ୍ୟାପକ କାମକରି, ମୁଁ କେବେ ମା-ପୁଅ ଏକତ୍ର ବସି କ୍ଲାସ୍ କରିବା ଦେଖିନି ବା ଶୁଣିନି। ଯାହାହେଉ କାଳକ୍ରମେ ଜାଣିଲି, ସେ ନେତ୍ରୀସ୍ଥାନୀୟା ମହିଳାଟି ଜନୈକ ସ୍ଥାନୀୟ କମ୍ୟୁନିଷ୍ଟ ନେତାଙ୍କ ପତ୍ନୀ। ସେ ଖୁବ୍ ଆଧୁନିକା ବା forward। ସେ ବି.ଏ. ପାସ୍‌କଲେ। ବୋଧହୁଏ ସେ ହେଉଛନ୍ତି ବାରିପଦା କଲେଜର ପ୍ରଥମ ମହିଳା ଗ୍ରାଜୁଏଟ୍। ତାଙ୍କ ଘରକୁ ଦିନେ ଖାଇବାକୁ ଯାଇଥିଲି, ରୁଟି ଓ ଚିକେନ୍। ସେମାନଙ୍କ ସହିତ ମୋର ଆତ୍ମୀୟତା ହେଲା। କଥା ପ୍ରସଙ୍ଗରେ ସେମାନେ ଜାଣିଲେ ଯେ ମୁଁ ନୂଆ ଘରଟିଏ କରୁଛି। ଝରକା କବାଟପାଇଁ କିଛି କାଠପଟା ମୋର ଲୋଡାହେଉଛି। ତାଙ୍କ ବାଡିରେ ଛୋଟ ଦୁଇଟା ପିଆଶାଳ ଗଛ ଥିଲା। ସେମାନେ ମତେ ବିନାମୂଲ୍ୟରେ ସେ ଦୁଇଟି ଶୁଖିଲା ଗଛ ଦେଲେ। ତହିଁରୁ ମୁଁ ପଟା ବାହାର କରି କବାଟ ଝରକା କଲି। ସେ ଘରଟିରେ ୪ଟି ଝରକାପାଇଁ ପଇସା ଅଭାବ ହେଲା। ଆଉ ଗୋଟିଏ ଝିଅ ମୋତେ ଶହେଟି ଟଙ୍କା ଟ୍ୟୁସନ ପଇସା ଦେଲା। ସେହି ପଇସାରେ ମୁଁ ୪ଟି ଝରକା କିଣି ଅସମ୍ପୂର୍ଣ୍ଣ ଘରକୁ ସମ୍ପୂର୍ଣ୍ଣ କଲି ଏବଂ ଯଥା ସମୟରେ ଝରକା କବାଟ ବନ୍ଦକରି, ତାଲା ପକାଇ ନୂଆ କର୍ମସ୍ଥଳୀକୁ ବାହାରିଲି।



## ॥ ପଚାଶ ॥

ବାରିପଦା ଛାଡ଼ିବା ମୋ ପକ୍ଷରେ ଅତୀବ କରୁଣ ଓ ଶୋକାବହ ଘଟଣା । କେବେ ବିଦେଶ କରିନାହିଁ ବୋଲି କୁହାଯିବ । ସପରିବାର ବର୍ଷଟିଏ ବା ଦେଢବର୍ଷ କଟକ ଓ ପୁରୀରେ କଟାଇବା ବିଦେଶ କରିବା ନୁହେଁ । ପାରଳାଖେମୁଣ୍ଡି ଯିବା ମାନେ, ପ୍ରକୃତ ବିଦେଶ କରିବା । ଖୋର୍ଦ୍ଧାରୋଡ୍ ପରେ ଓଡ଼ିଶାର ଦକ୍ଷିଣ ଆଡ଼କୁ ଯେଉଁ ଇଲାକା, ତାହା ସଂସ୍କୃତି ଓ ସଭ୍ୟତା ଦୃଷ୍ଟିରୁ ଉତ୍ତର ଓଡିଶା ଠାରୁ ବହୁତ ଫରକ । ସେତେବେଳେ ମୋର ପୁଅଝିଅ ମିଶି ୬ ଜଣ । ପଇସା ହାତରେ ପ୍ରାୟ ନାହିଁ । ରୋଗବୈରାଗ୍ୟ ସମସ୍ତଙ୍କ ପଛରେ ଲାଗିଛି । ସ୍ତ୍ରୀଙ୍କର ଅନ୍ୟାନ୍ୟ ଦୁଃଶ୍ଚିନ୍ତା ସହିତ ବଦଳି ଜନିତ ମସ୍ତିଷ୍କ-ବିକୃତି ହୋଇଛି । ନୂଆ ଘରଟି କାହାକୁ ଭଡା ନ ଦେଇ ବାହାରି ପଡିଲି । ଅଗ୍ରିମ ବାବଦରେ ଯେଉଁ ଟଙ୍କା ମିଳିଲା, ତାକୁ ଅବଲମ୍ବନ କଲି ।

ବଡପୁଅ ସେତେବେଳେ 2nd year Scienceକୁ ଉଠିଥାଏ । ସେ କ୍ରିକେଟ୍ ଖେଳରେ ନାମ କରିବାକୁ ଆରମ୍ଭ କରିଥାଏ । ବଡ ବଡ ମ୍ୟାଚ୍‌ରେ ଯୋଗଦେଉଥାଏ । ତାର ସେତେବେଳେ ପେନ୍‌ଫ୍ରେଣ୍ଡ ଯୋଗାଡ କରିବାର ଭାରି କିଦ୍‌ଥାଏ । ସେଥିପାଇଁ postage stamp ଯୋଗାଡ କରିବାରେ ଯାବତୀୟ ଖର୍ଚ୍ଚ ମୁଁ ଦେଉଥାଏ । ସେହି ଜିନିଷ ପତ୍ର ବନ୍ଧାବନ୍ଧି କରିବାରେ ସାହାଯ୍ୟ କରିଥିଲା । ଜିନିଷପତ୍ର ସବୁ ବାରିପଦା ଷ୍ଟେସନରେ ପାରଳାଖେମୁଣ୍ଡିକୁ ଲୋଡ୍ କରିଦିଆଗଲା । ଆମେ ବାଲେଶ୍ୱରରୁ ଟ୍ରେନ୍‌ରେ ଗଲୁଁ । ମୁଁ ୨ ଦିନ ଆଗରୁ ଚାଲିଗଲି; ବଡପୁଅ ବାକି ସମସ୍ତଙ୍କୁ ନେଇ ପଛରେ ଆସିଲା । ମୁଁ ସେମାନଙ୍କୁ ଭୁବନେଶ୍ୱରରେ ଭେଟିଲି । Cooperative Departmentରେ କାମ କରୁଥିବା ଜୋଇଁ ଘରେ ରହି, ସ୍ତ୍ରୀକୁ ମାନସିକ ପରିବର୍ତ୍ତନ ଉଦ୍ଦେଶ୍ୟରେ କଟକ, ପୁରୀ, ଭୁବନେଶ୍ୱରରେ ବୁଲାବୁଲି କରାଇ ପାରଳାଖେମୁଣ୍ଡି ଆଡକୁ ମୁହାଁଇଲି । ଜଣାଗଲା, ମୁଁ ଯେମିତି ଏକ ଅଦେଖା, ଅଶୁଣା, ରାଜ୍ୟକୁ ଚାଲିଛି- ଅଶାନ୍ତି ଅସ୍ୱସ୍ତି ଓ ଅନିଶ୍ଚିତତା ଭେଦକରି । ଚିଲିକା ହ୍ରଦ ଦେଖିବାର ଅଭିଳାଷ ଥିଲା; କିନ୍ତୁ ଅନ୍ଧକାର ରାତିରେ ଜଳସ୍ଥଳ ସମାନ ଥିବାରୁ ଚିଲିକାର ଦୃଶ୍ୟ ଉପଭୋଗ କରିହେଲା ନାହିଁ । ତାଛଡା ସୌନ୍ଦର୍ଯ୍ୟ ଉପଭୋଗ କରିବାର ମନ ମୋର ବା ମୋ ଛୁଆପିଲାଙ୍କର ନଥିଲା । ପଲାଶା ଷ୍ଟେସନରେ ପହଞ୍ଚି ମୋର ଘରକରଣା ଜିନିଷପତ୍ର ସେଠି ପହଞ୍ଚିଥିବାର ଦେଖିଲି । ଜଳଖିଆ ଆକାରରେ ଜୀବନରେ ପ୍ରଥମ କରି ଚାରୁପାଣି ଓ ସମ୍ବର ଚାଖିଲି । ଭାତ ସହିତ ବି ସେହି ଚାରୁପାଣି ଓ ସମ୍ବର । ଲଙ୍କାମରିଚର ସୀମା ନାହିଁ । ଭୀଷଣ ରାଗ ତରକାରିପତ୍ର । ମୋତେ ଜଣାଗଲା

ରେଳଲାଇନଟା ସଭ୍ୟତା ସହିତ ଆମକୁ ସେଇଠି ଛାଡିଦେଇ ମାନ୍ଦ୍ରଜ୍ ଆଡକୁ ଚାଲିଗଲା । ବସରେ ୩୦ ମାଇଲ୍‌ରୁ ଊର୍ଦ୍ଧ୍ୱ ରାସ୍ତା ପାରଳାଖେମୁଣ୍ଡିକୁ । ସ୍ତ୍ରୀ ମନ୍ତବ୍ୟ କଲେ- "କେଉଁଠିକୁ ଆମକୁ ନେଉଛ ? ଏଠି ମଣିଷ ବଞ୍ଚିପାରିବ ? ଖାଇବାର ତ ଯାହାହେଲା"। ସେତେବେଳେ ମୋ ଆଖିରୁ ଲୁହ ଝରୁଥାଏ । ସେଠି ରହିବାର ସ୍ଥାନ କେଉଁଠି ନଥାଏ । ଅନ୍ଧାର ବଣଜଙ୍ଗଲିଆ ଗାଁ-ଗଣ୍ଡାବିହୀନ ରାସ୍ତାଦେଇ ପ୍ରାୟ ୧୨ ଟାରେ ପାରଳାଖେମୁଣ୍ଡି ପହଞ୍ଚିଲୁ । ହଷ୍ଟେଲ୍‌ରେ ଗେଷ୍ଟ ରୁମ୍‌ରେ ରହିଲୁ । ପରଦିନ ଗୋଟିଏ ଘରକୁ ଗଲୁ ।

ସେଠି ଯିବା ଆସିବାପାଇଁ ଯାନହେଲା ଝଟକା । ଏହା ଗୋଟିଏ କିସମର ଶଗଡ, ଯହିଁରେ ଘୋଡା ଯୋଡାହୋଇଥାନ୍ତି । ଜୀବଜନ୍ତୁ କହିଲେ କୁକୁଡା, ଛେଳି, ଲମ୍ବା ଲମ୍ବା କାନଥିବା ବୋଦା, ମେଣ୍ଢା; ଆଉ ତାଙ୍କ ସାଙ୍ଗରେ ଏଣେତେଣେ ଗୁଡାଏ ଗଧ ଛିଡା ହୋଇଥାନ୍ତି । କ'ଣ କରିବାକୁ ହେବ, ସେମାନେ ଜାଣିପାରନ୍ତି ନାହିଁ; କାନ ଫଡ୍ ଫଡ୍ କରୁଥାନ୍ତି ଏବଂ ଆଖି ବନ୍ଦକରି କ'ଣ ଭାବୁଥାନ୍ତି । ଏଠି ଦୃଷ୍ଟି ଆକର୍ଷଣ କରିବାର କିଛି ନାହିଁ । ଆମପାଇଁ ଯୋଗାଡ଼ ହୋଇଥିବା ଗୋଟିଏ ଘରେ ପହଞ୍ଚିଲୁ । ଦିନେ ଦୁଇଦିନ ପରେ ବଡ ବ୍ରାହ୍ମଣ ସାହିରେ ଥିବା ବସାକୁ ଚେଞ୍ଜ୍‌କଲୁ । ସେଠିକାର ଘର ସବୁ ବିଚିତ୍ର । ଦାଣ୍ଡ ଦୁଆରକୁ ବାଡି ଆଡକୁ ସବୁ ଖୋଲା । ପାଣିର ଅଭାବ । Hard water ଅର୍ଥାତ୍ ଖାରୁଆ ପାଣି । ଯୋଡିଏ ଛୋଟ ଛୋଟ କୋଠରୀରେ କିନିଷପତ୍ର ସହିତ ଆମେ ରହିଲୁ । ଫେର୍ ଦୁଇଦିନ ପରେ ଆଉ ଗୋଟାଏ ଘରକୁ ଗଲୁ । ସେଠି ଖୁବ୍ ଛୋଟଛୋଟ ୪ଟା କୋଠାରୀ । ତା ସାଙ୍ଗକୁ ଲାଗି ଗୋଟାଏ ବଡ କୋଠରୀ । ଛୋଟ ଛୋଟ କୋଠରୀରେ ଛୁଆଗୁଡା ସିଂଗଲ ସିଟ୍‌କରି ରହିଲେ । ଦୁଇଟା ଛୋଟ ଛୁଆଙ୍କୁ ଧରି ଆମେ ଦୁଇଜଣ ରହିଲୁ । ଏ ପର୍ଯ୍ୟନ୍ତ ଆମ ଜିନିଷପତ୍ର ଫିଟା ହୋଇନାହିଁ । ରାତିରେ ଉଠି ଛୁଆମାନେ କେମିତି ଅଛନ୍ତି ଚାହିଁଲି । କଳାକଳା ଚିକ୍‌ଚିକ୍ ଦେଖାଯାଉଥିବା ସାପ ଦୁଇଟା ଦୁଆର ଆଗରେ ଶୋଇଛନ୍ତି । ମାରିବାକୁ ସାହସ ହେଲାନାହିଁ । ମାରି ପାରିଲି ନାହିଁ । ରାତି ଯାକ ନିଦ ହେଲା ନାହିଁ । ପଙ୍ଖା ନାହିଁ; ମିଞ୍ଜମିଞ୍ଜ୍ ଆଲୁଅ । କେତେବେଳେ ଦିଶୁଛି, କେତେବେଳେ ଦିଶୁନି ।

ଦିନେ ସାଇକେଲ୍‌ରେ ବଡ ବ୍ରାହ୍ମଣ ସାହି ବସାରୁ କଲେଜକୁ ଯାଉଛି-ଦୁଇଟା ଦଶ୍ ମିନିଟ୍‌ର କ୍ଲାସ ନେବା ପାଇଁ ଖୁବ୍ ତରବର ହୋଇ । ଚାହିଁଦେଲି- ହାତେ ଦୂରରେ ଗୋଟିଏ ତିନି ଚାରିହାତ ଲମ୍ବ କଳାସାପ ପାହାଡ ଆଡୁ ହାଇସ୍କୁଲ୍ ଦେଇ ମୋ ଆଗରେ ରାସ୍ତା ପାର ହେଉଛି । କ'ଣ କରିବି କିଛି ଠିକ୍ କରିପାରିଲି ନାହିଁ । ସାଇକେଲର ବ୍ରେକ୍ ମାରିଲି ।

ସାଇକେଲଟା କିନ୍ତୁ ତାରି ଉପର ଦେଇ ଚାଲିଗଲା । ପେଡେଲ୍‌ରୁ ପାଦ ଛାଡିଦେଇ ମୁଁ ଆଗେଇ ଚାଲିଗଲି । ପଛକୁ ଫେରି ଚାହିଁନାହିଁ । ସାପର ପ୍ରାବଲ୍ୟ ସେଠି ବହୁତ । ପ୍ରତି ମୁହୂର୍ତ୍ତରେ ବିଷଧର ସର୍ପର ଦଂଶନରେ ମୃତ୍ୟୁ ହେବାର ଭୟ; କିନ୍ତୁ ତିନି ବର୍ଷ ରହଣି କାଳରେ ମୁଁ ସର୍ପ ଦଂଶନ ଦେଖିନାହିଁ, କି ସେକଥା ଶୁଣିନାହିଁ ।

ସେହି ବସାରେ ବି ତିନି ଚାରି ଦିନରୁ ବେଶି ରହିପାରିଲି ନାହିଁ । ସେଠି ପାଇଖାନା ନାହିଁ । ବାଲି, ମାଟି ପକାଇ ବିରାଡି ପରି ମଳତ୍ୟାଗ କରିବାକୁ ପଡେ । ବ୍ରାହ୍ମଣ ସାହି ତେଲିସାହିରୁ ବଡ । ତାପରେ ଭାଗ୍ୟ ଟିକେ ଉନ୍ନତ ହେଲା । ମୋର ବନ୍ଧୁ, କନୈକ ଅଧ୍ୟାପକ ଅନ୍ୟତ୍ର ବଦଳି ହୋଇଗଲା । ତାଙ୍କରି ଘରେ ରହିଲି । ସେଠି ବି ସେମିତି ସୁବିଧା ହେଲାନାହିଁ । ସାହିବାଲାଙ୍କ ସହିତ ପଟିଲା ନାହିଁ । ସେଠୁ ଚାଲିଲି ପେଲେସ୍ ଷ୍ଟ୍ରୀଟ୍ ଦୁଇତାଲା ଘରକୁ । ତାପର ଘରଟାରେ ଇଂରାଜୀ ଡିପାର୍ଟମେଣ୍ଟର ହେଡ୍ ରହୁଥିଲେ । ସେହି ଘରେ ମୋର ଅଷ୍ଟମ ତଥା ଶେଷ ସନ୍ତାନ ଜନ୍ମ ହେଲା । ଲୋକ ସୁବିଧା କରି ନ ପାରିବାରୁ, ସ୍ତ୍ରୀ ସବୁ ଅନ୍ତୁଡିଶାଳର କାମ କଲେ । ମୁଁ କେବଳ ଦର୍ଶକ । ସେଠିବି ସାପର ଦୌରାତ୍ମ୍ୟ । କାଠ ବୋଝଟି ଆଣି ଯଦି ଅଗଣାରେ ଫୋପାଡି ଦେବ, ତା'ହେଲେ ଶହ ଶହ ଛୋଟ କଙ୍କଡାବିଛା ଭିତରୁ ବାହାରିବେ । ଅଧ୍ୟକ୍ଷ ଅଜୟ୍ ବୀର । ଦୟାକରି ସେ ମୋତେ ହଷ୍ଟେଲ୍ ସୁପରିଟେଣ୍ଡେଣ୍ଟ ପଦରେ ରଖିଲେ । ଏଠି କୌଣସି କିଛି ଅସୁବିଧା ହେବାର କଥା ନୁହେଁ । ଏଠିବି ସାପ । ଦିନେ ସନ୍ଧ୍ୟାରେ ରୋଷେଇଘରର ଛପରରେ ଗୋଟିଏ ହଳଦିଆ ଗୋଖର ଦେଖିଲି ଏବଂ ଗୁଣିଆ ଗୋଟାକୁ ନେଇଗଲି । ସେ ଟର୍ଚ୍ଚ ଆଲୁଅରେ ସେହି ସାପଟାକୁ ହାତରେ ଧରି ପକାଇଲା, କିନ୍ତୁ ସାପଟା ଏତେ ବଳୁଆ ଯେ ତା' ହାତରୁ ଛିଟିକିଗଲା । ୨୦ ଟଙ୍କା ହାତରୁ ଗଲା ଭାବି, ଗୁଣିଆ ମୁଣ୍ଡରେ ହାତଦେଇ ବସିଗଲା ଅଗଣାରେ । ଛୁଆପିଲାଏ ବଡ ଭୟାର୍ତ୍ତ ହେଲେ । ସ୍ତ୍ରୀ କୌତୁକରେ କହିଲେ- "ତୁମେ ଆମକୁ ଏ ଅକାଗାକୁ ଆଣି, ମୋତେ ସାତଘରି କରିଦେଲଣି । ମାସକ ଭିତରେ କେତେଟା ଘର ଆମେ ବଦଳ କଲୁଣି । ଏଠାରୁ ବର୍ତ୍ତିକି ଫେରିବା ହେବନାହିଁ ?" ହଷ୍ଟେଲ୍ କ୍ୱାର୍ଟର୍‌ସ ବୋର୍ଡିଂକୁ ଲାଗି । ସଡକ ଏପାଖ ସେପାଖ । ହାତେ ମାପି ଚାଖଣ୍ଡେ ଡାଲି କାଳ ବିତେଇବାକୁ ପଡିଲା । ଛୁଆମାନଙ୍କର ଖେଳପଡିଆ ସବୁ ପାଖେପାଖେ । ଘରେ ରୋଷେଇବାସ ନ ହୋଇ ପାରିଲେ ବୋର୍ଡିଂରୁ ମିଲ୍ ନେଇଆସେ । ଖାଦ୍ୟର ବିବେଚନା ନ ଥାଏ ।

ପାରଳାଖେମୁଣ୍ଡିର ଅବସ୍ଥିତି ଓ ପରିବେଶ ଅତୀବ ରମଣୀୟ । ଗୋପାଳକୃଷ୍ଣ, ବଳଦେବ ରଥ ଆଦି କବିଭାବାପନ୍ନ ଲୋକଙ୍କର ଜନ୍ମସ୍ଥାନ ଏହି ଇଲାକା । ସହରର

ଚାରିପଟେ ଛୋଟ ବଡ଼ ପାହାଡ଼ । ଗୋଟିଏ ଅନୁଚ୍ଚ ପାହାଡର କଟୀଦେଶରେ ଦୁଇମହଲା କଲେଜ ଅବସ୍ଥିତ । କଲେଜ ଛାତ ଉପରକୁ ଚାଲିଗଲେ, ସ୍ଥାନଟିର ସୌନ୍ଦର୍ଯ୍ୟ ବେଶ୍ ଉପଭୋଗ କରିହୁଏ । ପାଦଦେଶରେ ହାଇସ୍କୁଲ୍‌ପାଖରୁ ଲମ୍ବିଯାଇଛି ପେଲେସ୍ ଷ୍ଟ୍ରୀଟ୍, ରାଜବାଟୀ ପର୍ଯ୍ୟନ୍ତ । ସାଇକେଲରେ ଥରେ ପେଡେଲ୍ ବୁଲାଇଲେ ଗୋଟିଏ ଫର୍ଲଙ୍ଗରୁ ଅଧିକା ରାସ୍ତା ଗଡିଯାଇ ରାଜବାଟୀର ସିଂହଦ୍ୱାର ପର୍ଯ୍ୟନ୍ତ ଚାଲିଯିବ । ରାସ୍ତାର ଦୁଇପଟେ ପକ୍କା ଓ ଛପର ମିଶାମିଶି ଦୁଇଧାଡି ଘର । ସହରରେ ଜାତି ଅନୁସାରେ ସାହିଗୁଡିକ ଗଡିଉଠିଛି । ଗୋଟିଏ ବସ୍ ସହରକୁ ପଲାଶା ସହିତ ସଂଯୁକ୍ତକରେ । ରେଳଲାଇନଟିଏ ନୂଆପଡାରୁ ରାଜବାଟୀ ପାଖ ଦେଇ ଗୁଣୁପୁର ଆଡକୁ ଚାଲିଯାଇଛି । ଛୋଟ ନେରୋ-ଗଜ୍ ଟ୍ରେନ୍‌ଟିଏ ଖଚଖଚ ହୋଇ ଦୁଇଥର ଯାତାୟତ କରେ । ନଉପଡା ଲୁଣପାଇଁ ବିଖ୍ୟାତ । ସେଠିକାର ଲୁଣ ହୁଏତ ଆମ ବାରିପଦାରେ ବିକ୍ରିହୁଏ । ଗୁଣୁପୁରରେ ପ୍ରଚୁର ପନିପରିବା ମିଳେ । ବିଶେଷକରି, ପନିପରିବା ଭିତରେ ବାଇଗଣ ଓ କମଳା ମିଳେ । ପରିହାସରେ ଲୋକମୁଖରୁ ଶୁଣାଯାଏ, ସେହି ବାଇଗଣ ଖାଇଲେ କୁଟୁମ୍ବ ବାନ୍ଧିହୁଏ । ସହରର ଉପକଣ୍ଠରେ ଯୋଡାଏ ତିନିଟା ବଡ ପୋଖରୀ ବା ବନ୍ଧ, ଯେଉଁଗୁଡାକୁ ସାଗର କୁହାଯାଏ, ଯଥା : କୃଷ୍ଣସାଗର । ରଜାରାଜୁଡାଙ୍କ ନାମ ସହିତ ସଂଯୁକ୍ତ । ବିସ୍ତୀର୍ଣ୍ଣ, ଅଗଭୀର, ଦଳମୟ ଜଳାଶୟ । ରାସ୍ତାସବୁ ଅସମତଳ, ଖାଲ-ଡିପମୟ । ଖଣ୍ଡେ ରାସ୍ତାରେ ଥରେ ପିଚୁ ଦିଆ ହେଉଥିଲା ପ୍ରଥମ କରି; ଅନେକ ଲୋକ ଦେଖିବାକୁ ଆସୁଥିଲେ । କଲେଜ ଫାଟକ ପାଖରେ ଗୋଟିଏ ବିରାଟ ପଥୁରିଆ ଖାତ । ସେଠି କୁଆଡେ ସୁଇମିଂପୁଲ ହେବାର ବ୍ୟବସ୍ଥା ଆରମ୍ଭ ହୋଇଥିଲା । ମୁଁ ଥରେ ଯାଇ ଦେଖିଲି- ବର୍ଷା ଦିନରେ ସେହି ସୁଇମିଂପୁଲର ଗୋଳିଆ ପାଣିରେ ବଡବଡ ଦେଶୀ ଡଙ୍ଗା ଭାସୁଛନ୍ତି । ସହରରେ ଏକ ଦର୍ଶନୀୟ ସ୍ଥାନ ହେଲା ବୃନ୍ଦାବନ ପେଲେସ୍, ପ୍ରାୟ ମାଇଲେ ଦୂରରେ । ବଡ ବଡ ଶାଗୁଆନ୍ ଗଛର ଜଙ୍ଗଲ ଭିତରେ ପ୍ରାସାଦଟି ପ୍ରାୟତଃ ପରିତ୍ୟକ୍ତ । କେବେ କେହି ଦର୍ଶକ ସେଠାକୁ ଯାଇନାହାନ୍ତି । ସେଠି ସବୁଠାରୁ ଦର୍ଶନୀୟ ତଥା ଆକର୍ଷଣୀୟ ଜିନିଷ ହେଲା- ଗୋଟିଏ ମାର୍ବଲ ପଥରର ଛୋଟ ନାରୀମୂର୍ତ୍ତି, ଗ୍ରୀକ୍ ବା ରୋମାନ୍ କଳାରେ ତିଆରି । ଏତେ ସୁନ୍ଦର ମୂର୍ତ୍ତି ମୁଁ କମ୍ ଦେଖିଛି । ଯେତେଥର ଗଲେ, ସେହି ମୂର୍ତ୍ତି ଦେଖିଦେଲା ପରେ ମୋର ଆଉ କିଛି ଦେଖିବାର ନଥାଏ । ବାରମ୍ବାର ଦେଖିବାକୁ ଇଚ୍ଛାହୁଏ । ରାଜପ୍ରାସାଦର ସାମ୍ନାରେ ରଖାଯାଇଛି । କାରୁଣ୍ୟର ପରିବେଶ. ଭିତରେ ସେହି ମୂର୍ତ୍ତିଟିର ଚେହେରା, ଚକ୍ଷୁ ଓ ସ୍ମିତହାସ୍ୟ ଅତୀବ ଉପଭୋଗ୍ୟ । କଲେଜ ଛାତ ଉପରେ ଛିଡାହେଲେ ଆମର Common room ପାଖରୁ ହାତ ବଡାଇ ବର୍ଷାକାଳରେ ଭସା ମେଘ ଗୋଟାଗୋଟାକୁ

ଧରିହୁଏ ଶିମିଳା ବା ନାଇତିନାଲ୍ ଆଦି ସ୍ଥାନ ଭଳି। ସେଠି ଛିଡାହେଲେ ପ୍ରାୟ ଦଶମାଇଲ୍ ଦୂରରେ ଥିବା ପାହାଡରେ ଧଳା ପ୍ରାସାଦଟିଏ ଦିଶେ। ସେଟା ମନ୍ଦିର ବା ଆଉ କ'ଣ ଜଣା ପଡେନାହିଁ। କଲେଜର ଲାଇବ୍ରେରୀଟି ଦେଖିବାର କଥା; ନୀରବ, ଶାନ୍ତ। ସେଠି ମୁଁ ଭେଟିଲି ଶାନ୍ତନୁ ଆଚାର୍ଯ୍ୟଙ୍କୁ। ସେ ସେଠି ଲେଖାଲେଖି କରୁଥିଲେ। ତାଙ୍କର ସାହିତ୍ୟିକ ଜୀବନ ଆରମ୍ଭ ବୋଧହୁଏ ସେହିଠାରୁ। ମୁଁ ମଧ୍ୟ ଲେଖାଲେଖିକରି ସାହିତ୍ୟିକ ଜୀବନର ଦ୍ୱିତୀୟ ଭାଗ ସେହିଠି ଆରମ୍ଭକଲି ।

ମୁଁ ଥରେ କଟକ ଯାଇଥାଏ। ସେଠି ଡଃ ମାନସିଂହଙ୍କ ସହିତ ମୋର ଦେଖାହେଲା। ଦିନ ୧୨ଟାରେ ଘଣ୍ଟାଏ ଦେଢଘଣ୍ଟା କାଳ ଭାବାବେଶରେ ଦିଜଣ ଗପିଲୁ। ଡଃ ମାନସିଂହ ମୋ କଥା ଶୁଣି ମୁଗ୍ଧହେଲେ ଏବଂ ପ୍ରଶଂସାସୂଚକ ଚକ୍ଷୁରେ ମୋତେ ଦେଖି ମୋର ଜ୍ଞାନ ଗରିମା ବିଷୟରେ 'ଝଙ୍କାର' ବା 'ସହକାର'ରେ ପ୍ରବନ୍ଧ ଲେଖିଲେ। କାଳକ୍ରମେ ମୁଁ ଡଃ ମାନସିଂହଙ୍କୁ ଏକ ସଭାରେ ତାଙ୍କର ଓଡିଆ ଜ୍ଞାନକୋଷ ଅଫିସରେ ଦେଖାକଲି। କେନ୍ଦ୍ର ସାହିତ୍ୟ ଏକାଡେମି ସଭାପତିଙ୍କ ପୌରୋହିତ୍ୟରେ ସଭାଟିଏ ହେଉଥାଏ। ଡଃ ମହତାବ ମଧ୍ୟ ଥାନ୍ତି। ସେମାନେ ମୋତେ ସାହିତ୍ୟ ଆଡକୁ ଟାଣିଲେ। ଆଦି ଯୁଗ କବିତା ଠାରୁ ଆରମ୍ଭ କରି ଆଧୁନିକ କାଳ ପର୍ଯ୍ୟନ୍ତ ଓଡିଆ ସାହିତ୍ୟର ଏକ କାବ୍ୟ ସଞ୍ଚୟନର ସଂକଳନ ଭାର ମୋ ଉପରେ ଦିଆଗଲା। ସେତେବେଳେ ବିଜୟ ମଜୁମଦାର୍‌ଙ୍କର Typical Selections from Oriya Literature ବହିଟି ଛଡା ଅନ୍ୟ କିଛି ସଞ୍ଚୟନ ଓଡିଆରେ ନ ଥାଏ। କାଳିନ୍ଦୀଚରଣ ପାଣିଗ୍ରାହୀ ଓ ଆର୍ତ୍ତବଲ୍ଲଭ ମହାନ୍ତି ମୋର ଉପଦେଷ୍ଟା ହେଲେ। ଏ ଗୁରୁ ଦାୟିତ୍ୱ ବହନକରି ମୁଁ ପାରଳାଖେମୁଣ୍ଡି ଫେରିଲି। ଲାଇବ୍ରେରୀରେ ଦେଖିଲି- ଯେଉଁଗୁଡାକ ପ୍ରାଚୀନ ବହି ସେଠି ରଖାଯାଇଛି, ତାହାକୁ କେହି କେବେ ହେଲେ ବ୍ୟବହାର କରିନାହାନ୍ତି। ପ୍ରାଚୀ ସମିତିର ବହି ସବୁ ପ୍ରକାଶିତ ହେଉଥାଏ। ବୌଦ୍ଧଗାନ ଓ ଦୋହାରୁ ମୁଁ ଆରମ୍ଭ କଲି "ନଗର ବାହାରେ ଡୋମ୍ବି ତହରି କୁଡିଆ।" ଡଃ ମାୟାଧର ମାନସିଂହ ସେତିକିବେଳେ- History of Oriya Literature ଲେଖୁଥାନ୍ତି। ତାର ଟାଇପ୍ କପି ମୋତେ ଦେଖିବାପାଇଁ ସେ ମୋତେ ଅନୁରୋଧକଲେ। ମୋତେ ଭାରି ସୁଯୋଗ ମିଳିଲା। ତାଙ୍କ ଇତିହାସକୁ ଅନୁସରଣ କରି ମୁଁ ଓଡିଆ କବିଙ୍କର କାବ୍ୟ ଓ କବିତାର ପରିଚୟ ପାଇଲି। ଓଡିଆ ଲେଖକବର୍ଗଙ୍କର କ୍ରମିକ ଆବିର୍ଭାବ କାଳ ଅନୁସାରେ ବହିସବୁ ଲାଇବ୍ରେରୀରୁ ଆଣି, ବଛାବଛି କାମ ଆରମ୍ଭକଲି। ମୋର ଉଦ୍ଦେଶ୍ୟହେଲା- କୌଣସି ଲେଖକଙ୍କୁ ବାଦ୍ ଦେବିନାହିଁ। ପ୍ରତ୍ୟେକ କବିଙ୍କ ଶ୍ରେଷ୍ଠ କାବ୍ୟକୃତିକୁ ସ୍ଥାନଦେବି ଏବଂ ଦରକାର ପଡିଲେ ଦୀର୍ଘ କବିତାର ସାରଅଂଶ

ସଂକଳନରେ ସନ୍ନିବିଷ୍ଟ କରିବି। ହଷ୍ଟେଲ ପିଲାମାନେ ମୋତେ ଲେଖାଲେଖି ନକଲ କରିବାରେ ସାହାଯ୍ୟକଲେ ଏବଂ କାମ ଚାଲିଲା। ଘରେ ନିଦାରୁଣ ଦୁଃଖର ପରିବେଶ ମଧ୍ୟରେ ମୁଁ ଏ କାମ କରିଚାଲିଥାଏ। ମଝିରେ ମଝିରେ କଟକ ଯାଇ ଡଃ କାଳିନ୍ଦୀଚରଣ ପ୍ରାଣିଗ୍ରାହୀଙ୍କ ସହିତ ପରାମର୍ଶ ଓ ଆଲୋଚନା ପରେ ଏବଂ ଉପଦେଷ୍ଟା ଦୁହିଁଙ୍କର ଉପଦେଶ ଅନୁସାରେ ମୁଁ ପରିବର୍ତ୍ତନ ତଥା ଯୋଡାଯୋଡି କରୁଥାଏ। ଏ ଦୁଇଜଣଙ୍କୁ ଛାଡି ଲବ୍ଧପ୍ରତିଷ୍ଠ ଲେଖକ ସୁରେନ୍ଦ୍ର ମହାନ୍ତି, ବଂଶୀଧର ମହାନ୍ତି, କୁଞ୍ଜବିହାରୀ ତ୍ରିପାଠୀ, ତଥା ଅନ୍ୟାନ୍ୟ ଗବେଷକବର୍ଗଙ୍କ ସାମୟିକ ପରାମର୍ଶ ଲୋଡୁଥାଏ। ଯାହା ହେଉ ଲବ୍ଧପ୍ରତିଷ୍ଠ ଲେଖକ। ଯଥା ସମୟରେ ମୁଁ ପାଣ୍ଡୁଲିପି ଦୁଇ କପି ଦାଖଲକଲି । ଓଡିଶାର କେହି ପ୍ରକାଶକ ପ୍ରକାଶନ ଦାୟିତ୍ୱ ନ ନେବାରୁ ଏକାଡେମି କର୍ତ୍ତୃପକ୍ଷ କଲିକତାରେ ଛାପିବାର ବ୍ୟବସ୍ଥାକଲେ। ଅଣଓଡିଆ ପ୍ରେସ୍‌ରେ ଛପା କାମ ଚାଲିଥିବାରୁ ଏବଂ ଡାକଯୋଗେ ସଂଶୋଧନ ହେଉଥିବାରୁ ବହୁତ ସମୟ ଲାଗୁଥାଏ। ବିନା ହଟ୍ଟଗୋଳରେ ୧୫ ଟଙ୍କା ଦାମ୍‌ର "ସଞ୍ଚୟନ" ବହିଟି ପ୍ରକାଶିତହେଲା। Palgraves Golden Treasury ମଡେଲରେ ମୁଁ ସଂକଳନ କରିଥିଲି। ଏ ବହିର ଦ୍ୱିତୀୟ ସଂସ୍କରଣ ଅଦ୍ୟାବଧି ପ୍ରକାଶିତ ହୋଇନାହିଁ। ଏହାପରେ ଏକାଡେମି ମୋତେ ରବୀନ୍ଦ୍ରନାଥଙ୍କ ଶତବାର୍ଷିକ ଅବସରରେ 'ରାଜା' ନାଟକଟି ଓଡିଆରେ ଅନୁବାଦକରିବାପାଇଁ କହିଲେ। ତାହା ମଧ୍ୟ ମୁଁ ପାରଳାଖେମୁଣ୍ଡିରେ ଥିବା ସମୟରେ କରିଥିଲି। ଡଃ ମାନସିଂହ ଗୀତଗୁଡିକର ଅନୁବାଦ ଦେଖିଦେଇଥିଲେ।

ମହାପାତ୍ର ନୀଳମଣି ସାହୁ ଏବଂ ଶାନ୍ତନୁ ଆଚାର୍ଯ୍ୟ, ଉଭୟଙ୍କ ସହିତ ମୁଁ ସେ ସମୟରେ ଆତ୍ମୀୟତା କରିଥିଲି। ପରବର୍ତ୍ତୀ ସମୟରେ ସେମାନେ ଦୁହେଁ କେନ୍ଦ୍ର ସାହିତ୍ୟ ଏକାଡେମୀ ଓ ସାରଳା ପୁରସ୍କାର ପାଇଲେ। ହଁ, ମୁଁ କହୁଥିଲି ପେଲେସ୍ ଷ୍ଟ୍ରୀଟରେ ଥିବା ବେଳେ ସାହିତ୍ୟିକ ଜୀବନର ଦ୍ୱିତୀୟ ପ୍ରସ୍ଥ ଆରମ୍ଭକଲି, ଏବଂ ଗୋଟିଏ ଘଟଣା ଦେଖି ଗାଳ୍ପିକ ଜୀବନ ଆଡକୁ ଚାଲିଲି। ଯେଉଁ ଗଳ୍ପଟି ମୂଳଦୁଆ ସେଇଠି ପକାଇଲି, ତାହା ହେଲା 'କାଣୀଚିଆଁ'-ଯାହା ମୋର ପ୍ରଥମ ଗଳ୍ପ ସଂକଳନ "ଏଣ୍ଟିରୋମାଣ୍ଟିକ"ରେ ସ୍ଥାନିତ ଏବଂ ଓଡିଶା ସାହିତ୍ୟ ଏକାଡେମି ତରଫରୁ ପୁରସ୍କୃତ। ମୋର ମାନସିକ ଅବସ୍ଥା ଯେତେବେଳେ ଅତୀବ ଦୟନୀୟ, ସେତିକିବେଳେ ମୁଁ ଦୁଃଖ ଭୁଲିବାପାଇଁ ଜୋରସୋର୍ ଲେଖା ଆରମ୍ଭକଲି। ମେକଲେଙ୍କର "litrature has saved my life and reason" କଥାଟି ମୋ ଲେଖକ ଜୀବନର ମୂଳମନ୍ତ୍ର ହେଲା। ଏତିକିବେଳେ ହଷ୍ଟେଲ୍ ସୁପରିଟେଣ୍ଡେଣ୍ଟ୍ ପଦ ଖାଲିହେଲା ଏବଂ ମୋର ଦୁଃଖକଷ୍ଟ ଦେଖି ପ୍ରିନ୍‌ସିପାଲ୍ ଅଜୟ ବୀର ମୋତେ ସେ

ପଦଟି ଦେଲେ । ମୋ ସ୍ତ୍ରୀ ବାରମ୍ବାର ଘର ବଦଳି କରିବାର ଦେଖି, ପୁଣି ମନ୍ତବ୍ୟକଲେ "ତୁମେ ଆମକୁ କଣ ସାତଘରୀ ପାଇଲ ? ବିରାଡ଼ି ତା ଛୁଆକୁ ଘରକୁ ଘର ବଦଳକଲା ପରି ମୋତେ ଓ ମା ଛୁଆ ପିଲାଙ୍କୁ କେତେ ଦିନରେ କେତେଟା ଘର କଲଣି ଗଣିଛ ?" ବୋର୍ଡିଂ ସୁପରିଟେଣ୍ଡେଣ୍ଟ୍ ଜୀବନ ବହୁତ ପୋଷାଇଲା । ବୋର୍ଡିଂ ପିଲାମାନେ ଆମର ସେବା ଶୁଶ୍ରୁଷା କରିବାରେ ବହୁତ ଆଗ୍ରହୀହେଲେ । ଆମ ଘରେ କେଉଁଦିନ କେମିତି ଚୁଲି ନ ଜଳିଲେ, ହଷ୍ଟେଲ୍‌ରୁ ମିଲ୍ ଆଣି ଚଳିଯାଉଁ । ହଷ୍ଟେଲ୍ ଚାକରବାକର ମଧ୍ୟ ସାହାଯ୍ୟ କରନ୍ତି । ଲେଖାଗୁଡ଼ାକ ଉତାରିବାପାଇଁ ମଧ୍ୟ ପିଲାଏ ଆଗଭର ହୋଇଥାନ୍ତି । ପିଲାମାନଙ୍କ ଅକ୍ଷର ଭଲ ନହେଲେ ମଧ୍ୟ କାମ ଚଳିଯାଏ । କୃଷ୍ଣ ବେହେରା ପିଲାଟିର ଅକ୍ଷର ଭଲ, ମୁଁ ତା ଉପରେ ମୁଖ୍ୟତଃ ନିର୍ଭରକରେ ।

ଏହି ସମୟରେ ନୂଆ ହୋଇ ତିଆରିହୋଇଥିବା ଟାଉନ ହଲରେ ଜଣେ ବରିଷ୍ଠ ଓକିଲ ସାହିତ୍ୟସଭାଟିଏ ଆୟୋଜନକଲେ । ମହାମନୀଷୀ ପଣ୍ଡିତ ନୀଳକଣ୍ଠ ନିମନ୍ତ୍ରିତ ହୋଇ ସସ୍ତ୍ରୀକ ଯାଇଥାନ୍ତି ବକ୍ତୃତାଦେବାପାଇଁ । ଉଦ୍ୟୋକ୍ତାଗଣ ସଭାପତିଟିଏ ପାଇଲେ ନାହିଁ । ଖୋଜିଖୋଜି ମୋ ପାଖରେ ପହଞ୍ଚିଗଲେ । ମୁଁ ନାଁ କଲି, କହିଲି 'କଃ ସୂର୍ଯ୍ୟ ପ୍ରଭାତଃବଂଶ, କଃଚାଲ୍ପ ଇଶୟ୍ୟମତି ମୁ ।'

ତଥାପି ଉଦ୍ୟୋକ୍ତାଗଣ ନଛୋଡବନ୍ଧା । ବାଧ୍ୟ ହୋଇ ମୁଁ ଦୁସ୍ତର ସମୁଦ୍ର ପାରହେବା ପାଇଁ ଚେଷ୍ଟାକଲି । ସଭାରେ ଅନେକ ଲୋକ ଥାନ୍ତି । ଏତେ ବଡ ସାହିତ୍ୟସଭା ପାରଳାଖେମୁଣ୍ଡିରେ ବିରଳ । ନୀଳକଣ୍ଠ ମୋର ପିତୃତୁଲ୍ୟ । ମୁଁ ସଭାପତି ଆସନରେ ବସି ପ୍ରାୟ ଥରୁଥାଏ । ପ୍ରଥମେ ହଲ୍‌କୁ ପଶିଗଲା ମାତ୍ରେ ଶବ୍ଦ ଶୁଣି ପଣ୍ଡିତ ନୀଳକଣ୍ଠ ଖୁବ୍ ବିରକ୍ତି ପ୍ରକାଶକଲେ ଓ କହିଲେ- "ହୋଇହୋ ପାଡିବାବୁ ! ଏଇଥିରୁ କ'ଣ ଗୋଟାଏ ଆଣି ପୂରାଇଛ; କ'ଣ ଲୋକ ଡାକୁଛ ପଣ୍ଡିତ ନୀଳକଣ୍ଠ ବକ୍ତୃତାକରିବ ? ଗୁଡାଏ ପିଲାପିଚିକା ଆସି କ'ଣ ଶୁଣିବେ ଓ ବୁଝିବେ ?" ପାଡିବାବୁ ଅଗତ୍ୟା Loud Speaker ବନ୍ଦକଲେ । ନୀଳକଣ୍ଠ ଯେଉଁ ବିଷୟରେ କହିଲେ- ତାହା ହେଲା, "ପାରଳାଖେମୁଣ୍ଡି ଓ ଦ୍ରାବିଡ ସଭ୍ୟତା" । ଘଣ୍ଟାଏ ଦେଡଘଣ୍ଟା ଧରି ସେ ଯେଉଁ ପାଣ୍ଡିତ୍ୟପୂର୍ଣ୍ଣ ଓଜସ୍ୱିନୀ ବକ୍ତୃତା ଦେଲେ, ତାହା ଲୋକେ ବୁଝନ୍ତୁ ନ ବୁଝନ୍ତୁ, ଚମତ୍କୃତ ଓ ସ୍ତମ୍ଭୀଭୂତ ହେଲେ । ମୁଁ କ'ଣ କହିବି ଠିକ୍ କରିପାରିଲି ନାହିଁ । ପାଡିବାବୁ ମୋ ପାଖକୁ ଆସି କାନପାଖରେ କହିଗଲେ- "ଶତପଥୀ ବାବୁ, ଆପଣ ସଂକ୍ଷେପରେ ପଣ୍ଡିତଙ୍କର ବକ୍ତୃତାଟି ଦୟାକରି ଯଦି ବୁଝାଇ ଦେବେ ତେବେ ଶ୍ରୋତୃବର୍ଗ ଉପକୃତ ହେବେ" । ମୁଁ ମୋର କ୍ଷୁଦ୍ର ବୁଦ୍ଧିରେ ତାହା କଲି ।

ଆଉ ଗୋଟିଏ ସାହିତ୍ୟ-ସଭା କଲେଜରେ ହୋଇଥିଲା, ଯହିଁରେ କଲିକତା ୟୁନିଭର୍‌ସିଟି ଇଂରାଜୀ ବିଭାଗୀୟ ମୁଖ୍ୟ Miss Stock ଯୋଡ଼ିଏ ବକ୍ତୃତା ଦେଇଥିଲେ। ଗ୍ରୀକ୍ ଥିଏଟର୍ ଉପରେ ତିନୋଟି ବକ୍ତୃତା ଦେଇଥିଲେ। ମୋର କାମହେଲା- ପ୍ରତିଦିନ ପୂର୍ବ ଦିନ ବକ୍ତୃତାର ସାରାଂଶ କହିବା। ତାଙ୍କ ବକ୍ତୃତା ଖୁବ୍ ଚିତ୍ତାକର୍ଷକ ତଥା ଜ୍ଞାନଗର୍ଭକ ହୋଇଥିବାରୁ ମୁଁ ମନଦେଇ ଶୁଣୁଥିଲି ଏବଂ ମୁଁ ଦେଉଥିବା ସଂକ୍ଷିପ୍ତସାର ଶ୍ରୋତାମାନଙ୍କୁ ଖୁବ୍ ଉପଭୋଗ୍ୟ ହୋଇଥିଲା। Miss Stock ମୋର ଭାଷଣକୁ ଉଚ୍ଚ ପ୍ରଶଂସା କରିଥିଲେ।

ଆଗରୁ କହିଛି, ପାରଳାଖେମୁଣ୍ଡିରେ ପାଣି ସ୍ୱାସ୍ଥ୍ୟପକ୍ଷରେ ଆଦୌ ଭଲ ନୁହେଁ। Dysentry ବା ଆମାଶୟ ପ୍ରାୟ ସମସ୍ତଙ୍କର। ବିଶେଷକରି, ବାହାର ଲୋକମାନେ ବହୁତ ହନ୍ତସନ୍ତ ହୁଅନ୍ତି। ପାଇଖାନାଗୁଡ଼ିକ ବିଚିତ୍ର କିସମର। କାଛ ଘେର ଭିତରେ ଇଟା ଦୁଇଖଣ୍ଡ ଲେଖା ପକାଇ ଖରା-ବର୍ଷାରେ ଛତାଧରି ବସିବାକୁ ହୁଏ। ପବ୍ଲିକ୍ ପାଇଖାନା ବି ସେଇ କିସମର। ଗୋପାଳକୃଷ୍ଣ ମନ୍ଦିରରେ ଲୋକମାନେ ମୂତ୍ରତ୍ୟାଗ କରିବାରୁ ମହାପାତ୍ର ନୀଳମଣି ସାହୁ ଶ୍ରେଣୀରେ ଥରେ ବିରକ୍ତି ଓ ଅସନ୍ତୋଷ ପ୍ରକାଶକରିଥିଲେ। କଲେଜର ଅଧ୍ୟକ୍ଷ ମଧ୍ୟ ସହରର ଶୁଚି ବ୍ୟବସ୍ଥା ବିଷୟରେ କର୍ତ୍ତୃପକ୍ଷଙ୍କୁ ଲେଖାଲେଖି କଲେ। ଗୋଟିଏ ବଡ଼ ଫାଇଲ ଗଲା, କିଛି ଲାଭ ହେଲା ନାହିଁ। ମହାପାତ୍ର ନୀଳମଣି ସାହୁଙ୍କୁ ଲକ୍ଷ୍ୟକରି ଜନସାଧାରଣ ଲେଖିଲେ "ଶଳା କଟକୀ ଥାଉଛି"। ବୋର୍ଡିଂ ସୁପରିଟେଣ୍ଡେଣ୍ଟ ଭାବରେ ମୋତେ ବେଲ ଗଛକୁ ଜଗିବାକୁ ପଡ଼ିଲା। ତାକୁ ଖାଇଲେ Dysentry ଭଲ ହୋଇଯାଏ। ଅଳ୍ପଦିନରେ ଗଛ ଲଣ୍ଡାହୋଇଗଲା। ଆମେ କେତେ ଜଣ ଅଧ୍ୟାପକ କଟକର ବଡ଼ ଡାକ୍ତରଖାନାର ଏକ ପାଖକୁ precaution (ନିଦାନ) ନେଇ tablet କିଣୁ। ତଥାପି Blood Dysentry ଆମର ଭଲ ହୁଏନାହିଁ। ବଜାରରେ ପୋଟଳ ମିଳେ ନାହିଁ। ପୋଟଳ କହିଲେ ଲୋକେ ସାପୁଆ, ଜହ୍ନି ବୁଝନ୍ତି। ସୋରିଷତେଲ କୌଣସିଥିରେ ପଡ଼େନାହିଁ। ଥରେ ବୋର୍ଡିଂପାଇଁ ସୋରିଷ ତେଲଟିଣଟିଏ ନେଇଥିଲି। କିଛି ପୋଟଳ ମଧ୍ୟ ନେଇଥିଲି ବରହମପୁର ବଜାରରୁ। ଲୋକେ ତାକୁ ଦେଖି "ଲିଂଗ ପୋଟଳ" ବୋଲି କହିଲେ।

ମୋ ପ୍ରତି ମଧ୍ୟ ସେହି "ଏଶଳା କଟକୀ ଥାଉଛି" ପ୍ରୟୋଗହେଲା। ତଳେ ବସିବା ଅପେକ୍ଷା ଟେବୁଲ ଚେୟାର୍‌ରେ ବସି ଖାଇବା ବୋର୍ଡିଂ ପିଲାମାନଙ୍କୁ ସୁହାଇବ ବୋଲି ଭାବିଲି। ବୃନ୍ଦାବନ ପାଲେସ୍ ଚାରିପଟେ ବହୁତ ବଡ଼ ବଡ଼ ଶାଗୁଆନ ଗଛ ଥିଲା। ତହିଁରୁ

କେତେଟା ଆଣି ବୋର୍ଡିଂରେ ପହଞ୍ଚାଇଲି । ରୋଷେଇରେ କାଠ ଜାଳିଲୁ । ଚେୟାର୍ ଟେବୁଲ ଯଥେଷ୍ଟ ସଂଖ୍ୟାରେ ତିଆରି କରାଗଲା । ଅନେକେ ତଳେବସି ଖାଇଲେ । ତେଣେ ଫରେଷ୍ଟ ଡିପାର୍ଟମେଣ୍ଟ କାହିଁକି ଶାଗୁଆନ ଗଛ ଆଣିଲି ବୋଲି Principalଙ୍କୁ ଚିଠି ଲେଖିଲେ । ଚାରିଆଡ଼ୁ ହନ୍ତସନ୍ତହୋଇ ବିରକ୍ତିରେ ମୁଁ ପାରଳାଖେମୁଣ୍ଡି ଛାଡିବାକୁ ଇଚ୍ଛାକଲି । ଡି.ପି.ଆଇ. ଆସିଥାନ୍ତି; ବିକଳ ହୋଇ ତାଙ୍କୁ ମୋର ହାଲ ହରକତ୍ କହିଲି । ବିଶେଷ କରି ସ୍ତ୍ରୀଙ୍କର ମାନସିକ ଦୁରବସ୍ଥା । ଡି.ପି.ଆଇ. ସବୁ ଶୁଣିଲେ । ଦୟା ପରବଶ ହୋଇ ଟିପାଖାତାରେ ମୋ ନାମ ଓ ପ୍ରାର୍ଥନା ଲେଖିରଖିଲେ । ପି.ଏ.ଙ୍କୁ ମଧ୍ୟ ନୋଟ୍ କରିବାପାଇଁ କହିଲେ । କିନ୍ତୁ ବଦଳି ଆଦେଶ ଆସିଲା ନାହିଁ । ଦୁର୍ଭାଗ୍ୟକୁ ଆଦରି ରହିଲି । ଚାକିରି କାଳ ମଧ୍ୟରେ ମୁଁ ରେଭେନ୍ସା କଲେଜ ମାଡିନାହିଁ । ସମ୍ବଲପୁର ମଧ୍ୟ ଦେଖି ନାହିଁ । ଭାଗ୍ୟ ଭଲ, ଆଉ ଏକ "ପନିସ୍ମେଣ୍ଟ୍" ସେନ୍ଟର୍ ଜୟପୁରକୁ ଯାଇନାହିଁ । ସେ କାଳରେ ତିନି ବର୍ଷିଆ, ଛଅ ବର୍ଷିଆ ଗୋଟିଏ ସ୍ଥାନରେ ରହଣି ନିୟମ ନ ଥିଲା ।

ପାରଳାଖେମୁଣ୍ଡି ଗୋଟିଏ ଛୋଟଜାଗା । ଘଟଣା ସେମିତି କିଛି ଘଟେନାହିଁ, ତଥାପି ଯାହା କିଛି ଛୋଟ ଛୋଟ ଘଟଣା ଓ କଥା ମୋର ମନେ ପଡୁଛି- ସେଗୁଡିକୁ ମୁଁ ଲିପିବଦ୍ଧ କରୁଛି ।

ଦିନେ ସକାଳେ ପେଲେସ୍ ଷ୍ଟ୍ରୀଟ୍ ଘରର ବାଲକନୀରେ ଛିଡା ହୋଇଥାଏ । ଦେଖିଲି- ପେଲେସ୍ ଆଡୁ ଗାଡିଟିଏ ଆସୁଛି । ରାସ୍ତାକଡରେ ଥିବା ଲୋକମାନେ ଜଣକ ପରେ ଜଣେ ଛିଡାହୋଇ, ଚପଲ ରଖି, ପଗଡି ଫିଟାଇ ଲମ୍ବତମ୍ବ ପଡିଯାଉଛନ୍ତି ରାସ୍ତାଉପରେ । ଇମିତି ଷ୍ଟ୍ରୀଟ୍ର ମୁଣ୍ଡ ପର୍ଯ୍ୟନ୍ତ ଲୋକମାନେ ସେ ଗାଡି ପାଖରେ ପଡିଯାଉଛନ୍ତି । ମୋତେ ଖୁବ୍ ଆଶ୍ଚର୍ଯ୍ୟଲାଗିଲା । ପରେ ବୁଝିଲି- ସେ ଗାଡିରେ ମହାରାଜା ଯାଉଥିଲେ । ପାରଳାଖେମୁଣ୍ଡିର ମହାରାଜା, ଯାହାଙ୍କୁ ଲୋକମାନେ "ମହନ୍ତୀ ଦେବତା" ବୋଲି ଭାବନ୍ତି । ଦିନେ ଏଇ ମହାରାଜା ଓଡିଶାର ପ୍ରଧାନମନ୍ତ୍ରୀ ଥିଲେ । ସେତେବେଳକୁ ହୁଏତ ତାଙ୍କର ସେହି ପୂର୍ବ ସମ୍ମାନ ନଥିଲା । ସ୍ୱତନ୍ତ୍ର ଓଡିଶା ଗଠନରେ ତାଙ୍କର ଯେଉଁ ଆପ୍ରାଣ ଚେଷ୍ଟା, ତ୍ୟାଗ ଓ ବଦାନ୍ୟତା ଥିଲା, ସେ କଥା ଓଡିଶାର ବହୁଲୋକ ଭୁଲି ଯାଇଛନ୍ତି । ପୁରୁଣା 'ଭଞ୍ଜପ୍ରଦୀପ'ରେ ମୁଁ ତାଙ୍କର ଲେଖା ପଢିଥିଲି ଏବଂ ଏକ ଅତିକାୟ ବାଘ ସହିତ ତାଙ୍କର ଶିକାରୀ ପୋଷାକରେ ଦୃପ୍ତ ଚେହେରା ମଧ୍ୟ ଦେଖିଥିଲି । ପାଖରେ କିନ୍ତୁ ତାଙ୍କୁ କେବେ ଦେଖିନଥିଲି । ମୟୂରଭଞ୍ଜ ମହାରାଜା ପ୍ରତାପଚନ୍ଦ୍ର ଓ ପାରଳାଖେମୁଣ୍ଡିର ମହାରାଜା ଆମକୁ ଏକାପରି ଲାଗନ୍ତି ।

ଲୋକଙ୍କୁ ପଚାରି ବୁଝି ଦେଖିଲି ଯେ, ସେ ତାଙ୍କର କୃଷି ଫାର୍ମ ତଦାରଖ କରିବା ପାଇଁ ପ୍ରତିଦିନ ଯାନ୍ତି। ସଭାସମିତିକୁ କେବେ ଯିବାର ମୁଁ ଶୁଣିନାହିଁ ବା ଦେଖିନାହିଁ। ମୋର ମନକୁ ଆସିଲା କେମିତି ତାଙ୍କୁ ଛାତ୍ରାବାସକୁ ଡାକିବି। ବହୁକଷ୍ଟରେ ତାଙ୍କ ସେକ୍ରେଟେରୀଙ୍କୁ ଦେଖାକରି ନିମନ୍ତ୍ରଣ ଜଣାଇଲି। ମହାରାଜା ରାଜି ହୋଇଗଲେ ଏବଂ ଯଥାସମୟରେ ଉପସ୍ଥିତହେଲେ। ସେଦିନ ସହରଟା ଯାକ ଉଠିଆସିଥାନ୍ତି ଛାତ୍ରାବାସ ପାଖକୁ। ସେଇଠି ମହାରାଜାଙ୍କୁ ସମ୍ବର୍ଦ୍ଧନା ଦେଲାବେଳେ, ତାଙ୍କୁ ପାଖରୁ ଦେଖିଛି ଏବଂ ତାଙ୍କ ମୁହଁର କଥା ଶୁଣିଛି। କି ଦିବ୍ୟ ସୁନ୍ଦର ବପୁଷ୍ମାନ ମୂର୍ତ୍ତି ! ରାଜାପଣିଆ ତାଙ୍କର ଶରୀରର ପ୍ରତ୍ୟେକ ଅଙ୍ଗ ପ୍ରତ୍ୟଙ୍ଗରେ ଲେଖାହୋଇଛି ଯେମିତି ! ସଭାରେ କଲେଜର ଅଧ୍ୟକ୍ଷ ଓ ଅଧ୍ୟାପକବର୍ଗ ଉପସ୍ଥିତଥିଲେ। ମହାରାଜାଙ୍କ ଗହଣରେ ଆମେ ସମସ୍ତେ ଫଟୋ ଉଠାଇଥିଲୁ। ସ୍ମୃତି ଜାଗରିତକରି ରଖିବାପାଇଁ ଏହି ସମୟରେ ମୋର ହିତାକାଂକ୍ଷୀ ବନ୍ଧୁ ତଥା ଏକଦା ମୟୂରଭଞ୍ଜର ଏସ୍.ପି. ଶ୍ରୀରାମ ଚନ୍ଦ୍ର ଦାଶ, ଓଡିଶାର ଆଇ.ଜି. ପାରଳାଖେମୁଣ୍ଡି ଗସ୍ତରେ ଆସିଥିଲେ ଏବଂ ମୋତେ ଡକାଇ ଦେଖା ସାକ୍ଷାତ କରିଥିଲେ। ଆଉଜଣେ ଆଇ.ଏ.ଏସ୍. ଅଫିସର, କବି ଶ୍ରୀ ରମାକାନ୍ତ ରଥଙ୍କ ସହିତ ମୋର ସେହି ପାରଳାଖେମୁଣ୍ଡିରେ ପରିଚୟ ଓ ଦେଖାସାକ୍ଷାତ୍।

ସହରରେ ସିନେମାଘର ଗୋଟିଏ। ସବୁବେଳେ ତେଲୁଗୁ ସିନେମା ଦେଖାଏ। କେବେ କେମିତି ରାଜକାପୁରଙ୍କର "ଆୱାରା", "ଚାରଶୋ ବିଶ୍" ଆସିଥିଲା। ଛୁଆପିଲା ଧରି ଯାଇଥିଲି। ଛବିର ଭଲ ଅଂଶ ପଡିଲେ ଆଗବାଲା ଛିଡାହୋଇଯାନ୍ତି। ଚେୟାରରେ ବସିଥିବା ଦର୍ଶକମାନଙ୍କୁ କିଛି ଦେଖାଯାଏ ନାହିଁ।

କହିସାରିଛି- ଜୀବଜନ୍ତୁ କହିଲେ ଗଧଗୁଡିକ ଦୃଷ୍ଟିକୁ ଆସନ୍ତି। ସେହି ଜୀବଗୁଡିକ ଦେଖିବାକୁ ମୋତେ ଭାରି କୌତୂହଳ ଲାଗେ। ସେମାନେ ଯେ କ'ଣ ଭାବନ୍ତି, ମୁଁ କିଛି ଜାଣିପାରେ ନାହିଁ। ଦିନେ ସକାଳୁ ଉଠି ଦେଖିଲା ବେଳକୁ ହୁଏତ ଝରକା ଆରପାଖରେ ପଛକୁପଛ ଲାଗି ୮/୧୦ଟା ଗଧ ଛିଡା ହୋଇଥିବେ। ଧୋବାସାହିରେ ସେମାନେ ବନ୍ଧାହୋଇଥାନ୍ତି। ପ୍ରତ୍ୟେକ ଘର ଆଗରେ ଗୋଟିଏ କରି। ଥରେ ମୋ ବସାର ପଛପାଖରେ କୋଳଥ କିଆରୀରେ ଗୋଟିଏ ଗଧ ମରିପଡିଥିଲା। କିଏ ଜଣେ କୌତୁକରେ କହିଲା- ଗୋଟିଏ ବାଘ ତା ପଛପଟୁ ଖାଇଯାଇଛି। ଗଧ ଚରୁଥିଲା ବେଳେ ବାଘ ତାକୁ ମାଡିବସି ପଛଆଡୁ ଖାଇବାକୁ ଲାଗିଲା। ଗଧ, ଗଧ ବୋଲି ଜାଣିପାରିଲା ନାହିଁ ଯେ, ତା ପଛ ପଟୁ ବାଘ ଫାଳେ ଖାଇଗଲାଣି।

କଲେଜରେ ସେହି ସମୟରେ ଶାନ୍ତନୁ ଆଚାର୍ଯ୍ୟ ଓ ମହାପାତ୍ର ନୀଳମଣି ସାହୁଙ୍କ ବ୍ୟତୀତ ଆଉ ଯେଉଁ କେତେଜଣ ମୋର ଅନ୍ତରଙ୍ଗ ବନ୍ଧୁ ଥିଲେ, ସେମାନେ ହେଲେ- ଅମୂଲ୍ୟକୃଷ୍ଣ ମିଶ୍ର, ଶରତ୍ ମିଶ୍ର, ବିଦ୍ୟୁତ୍‌କେଶ୍ ତ୍ରିପାଠୀ, ପ୍ରଭାକର ଶତପଥୀ । ପରବର୍ତ୍ତୀ କାଳରେ ଏମାନେ ସମସ୍ତେ ଉପରପାହ୍ୟାକୁ ଚାଲିଗଲେ । ଏହି ବନ୍ଧୁମାନଙ୍କ ସହାୟତାରେ ମୁଁ ନିଜ ଲେଖା ଦୁଇତିନୋଟି ଏକାଙ୍କିକା ଅଭିନୟ କରାଇଥିଲି- ଯଥାଃ- "ପିଲିସକ", "କର୍ଣ୍ଣେଲ ମହାନ୍ତି" ଓ "ସର୍ବେଃସମାନଃ" ।

ହଷ୍ଟେଲ୍‌ରେ ଥିବାବେଳେ ନିତିଦିନିଆ ଗୋଟିଏ ଦୃଶ୍ୟହେଲା- ସ୍ତ୍ରୀଲୋକମାନଙ୍କର ଧାଡିଧରି ଉପରବେଳା ପୋଖରୀ ପାଖକୁ ଯିବା । ସେତେବେଳେ ସମସ୍ତେ ସଫାଲୁଗା ପିନ୍ଧନ୍ତି । ମୁଣ୍ଡ ଚିକ୍‌କଣ କରି କୁଣ୍ଡାନ୍ତି । ଗଭାରେ ଫୁଲ ଖଂକନ୍ତି ବା ହାତରେ ଧରିଥାନ୍ତି । ସମସ୍ତେ ହସଖୁସିରେ ଥାନ୍ତି । ପେଲେସ୍ ଷ୍ଟ୍ରୀଟ୍‌ରେ ଯେଉଁଠି ରାସ୍ତା ଆଲୁଅ ଥାଏ, ସେଇଠି ଦଳଦଳ ସ୍ତ୍ରୀଲୋକ ପଳାଶପତ୍ର ଧରି ଖଲି ସିଲେଇରେ ଲାଗିଯାନ୍ତି । ସେଠି ୬ଟା ବେଳକୁ ଖିଆପିଆ ସରିଯାଇଥାଏ । ସେମାନଙ୍କର ସେତେବେଳେ ଆଉ କିଛି କାମ ନଥାଏ । ସରକାରୀ ଆଲୁଅ ତଳେ ବସି ଖଲିପତ୍ର ବିକ୍ରିକରନ୍ତି । ଖଲିବିକି ଯତ୍‌ସାମାନ୍ୟ ପାଆନ୍ତି, ସେଥିରେ ଆଉ କାହାରି ଅଧିକାର ନାହିଁ । ସେଥିରେ ସେମାନେ ଶାଢୀ ବା ଓଢଣୀ କିଣନ୍ତି ।

ସବା ସାନପୁଅଟିପାଇଁ ଖାଣ୍ଟିକ୍ଷୀର ପାଇବା ବଡ ଦୁଷ୍କରହେଲା । ଗାଈଟିଏ ରଖିବାକୁ ମନସ୍ଥକଲି । ଅଂଗ୍ରି ବୋଲି ଚାକରଟିଏ ଦିନେ ସଞ୍ଜବେଳେ ଗାଈ ବାଛୁରୀଟିଏ ଧରି ମୋ ପାଖରେ ପହଞ୍ଚିଲା । ୬ ଟଙ୍କାରେ ଦରଦାମ୍ ଛିଡିଲା । ସେ ଗାଈର ସହ୍ନା ଦେଖି ମୁଁ ଭାବିଲି, ଗାଈଟିର ଫାଇଲେରିଆ ହୋଇଛି । ଗାଈଟି ବୁଢୀ ଓ ସ୍ୱାସ୍ଥ୍ୟହୀନ । ଆତୁରେ ନିୟମନାସ୍ତି । ଅରକ୍ଷିତକୁ ଦଇବ ସାହା ଭଳି, ଦୋ ଦୋ ପାଞ୍ଚହୋଇ ଗାଈଟିକୁ ରଖିନେଲି । କଥାରେ କହନ୍ତି- ଗାଈ ମୁହଁରେ ଦୁଧ । ହଷ୍ଟେଲର ଅନେକ ଲୋକ ଗ୍ୱାଈ ଦେଖିବାପାଇଁ ଆସିଲେ । ପାରଳାଖେମୁଣ୍ଡି ଯେତେବେଳେ ଛାଡିଲି- ସେତେବେଳେ କାନ୍ଦକାନ୍ଦ ହୋଇ ଆସିଷ୍ଟାଣ୍ଟ ସୁପରିଟେଣ୍ଡେଣ୍ଟଙ୍କୁ ଗାଈବାଛୁରୀ ଦୁଇଟାକୁ ଏମିତି ଦେଇଦେଲି । କୃତଜ୍ଞ ବନ୍ଧୁଟି ମନି ଅର୍ଡ଼ର କରି ମୋ ପାଖକୁ ୪୦ ଟଙ୍କା ପଠାଇ ଦେଇଥିଲେ । ସେତିକିରେ ଆଉକିଛି ଟଙ୍କା ମିଶାଇ ମୁଁ ଗୋଟିଏ ଟେବୁଲ ପଙ୍ଖା କିଣି ଦୁଧ ବଦଳରେ ହାୱା ଖାଇଲି ।

ଆଗରୁ କହିଛି କୂଅ ପାଣିର ଅଭାବ ପାଇଁ ପାରଳାଖେମୁଣ୍ଡିରେ ନାନା ପେଟରୋଗ ଭାରି ଜୋର୍ ଆକ୍ରମଣ କରୁଥାଏ । ଆମେ ପାଣି କିଣୁଥାଉଁ । ଆମକୁ ପାଣି ଯୋଗାଉଥାଏ

ଜଣେ ତେଲଗୁ ବୁଢା । ବୟସ ୫୦, ୬୦ ଭିତରେ । ଚୂଳଗୁଡ଼ିକ କଦମ୍ବଫୁଲିଆ, କାନରେ ସୁବର୍ଣ୍ଣର ଦୁଇଟା ନୋଳି । ଖୁବ୍ ପତଳା ଓଦା ଗାମୁଛାଟିଏ ପିନ୍ଧିଥାଏ ଏବଂ ଖାଲି ଦେହ ଓ କାନ୍ଧ ଉପରେ ପଇତାକେରାଏ ପଡ଼ିଥାଏ । ସିଗାରେଟ୍‌ଟାଏ ମଧ୍ୟ ଟାଣୁଥାଏ । ଶଗଡ଼ ପାଖେ ପାଖେ ଚାଲିଥାଏ । ଶଗଡ଼ ସ୍ୱତନ୍ତ୍ର କିସମର । ଗୋଟିଏ ବୁଢା ହଳିଆ ଗାଡ଼ିକୁ ଟାଣେ । ଗୋଟିଏ ମାଇଲ ଦୂର ଜଳାଶୟରୁ ପାଣି ଆସେ । ସେଇଟା କୂଅ ନୁହେଁ, ପୋଖରୀ ନୁହଁ, ଗାଡ଼ିଆ ବି ନୁହେଁ । ସେମାନେ ତାକୁ ବାମ୍ପି କହନ୍ତି । ଦିନେ ଅକସ୍ମାତ୍ ସେହି ପାନୀୟ ଜଳ ଉତ୍ସଟିକୁ ଦେଖିଲି । ସେଠି ଗୋଟିଏ ଖାତ । ବେଙ୍ଗ ଭର୍‌ପୂର୍ । ୨୦, ୨୫ଟା ପିତ୍ତଳ ଗରାରେ ପାଣି ସହରକୁ ଯାଏ । ପ୍ରତ୍ୟେକ ଗରାଏ ପାଣିର ଦାମ୍ ମାସକୁ ୨ ଟଙ୍କା । ଧଡ଼ଧଡ଼ ଶବ୍ଦକରି ଗାଡ଼ିଟି ଏଘର ସେଘର ଆଗରେ ଛିଡ଼ାହୁଏ । ପାଣିବାଲା ତାକୁ କାନ୍ଧରେ ନେଇ ଗରା ଭିତରେ ଢାଳିଦିଏ । ସେଇ ବୁଢାଟି ହେଉଛି ପାରଳାଖେମୁଣ୍ଡିର ଜଳଦାତା । ସେତେବେଳେ ପାହାଡ଼ର ଟିକେ ଉଚ୍ଚ ସ୍ଥାନରେ ସହରଟାର ଗୋଟିଏ water supply ଯୋଜନା ଆରମ୍ଭ ହେଉଥାଏ । ଆମେ ପ୍ରତିଦିନ ଯୋଜନାର କେତେ ପ୍ରଗତି ହେଉଛି ଦେଖିବାକୁ ଯାଉଁ, କିନ୍ତୁ ସେଠି ଥିବା ଯାକେ ଯୋଜନା ସମ୍ପୂର୍ଣ୍ଣ ହେବାର କୌଣସି ଲକ୍ଷଣ ପ୍ରକାଶ ପାଇ ନଥିଲା ।

ଭବିତବ୍ୟ ଯାହା ଅବଶ୍ୟ ଘଟିବ । ତିନିବର୍ଷ ହେଲା ଯାହା ମୁଁ ବରାବର ଆଶଙ୍କା କରୁଥିଲି, ତାହା ଘଟିଲା । ଅଭାବ ଅନଟନ, ରୋଗ ବୈରାଗ୍ୟ, ଗୁଡାଏ ସନ୍ତାନ-ସନ୍ତତି ସାଙ୍ଗକୁ ଘର ତିଆରି ଚିନ୍ତା, ଛୁଆପିଲାଙ୍କର ଶାରୀରିକ ଅସୁସ୍ଥତା ସାଙ୍ଗକୁ ମୋର ନିଜର ରୋଗ ଜନିତ ପୀଡା, ସର୍ବୋପରି ଉତ୍ତର ଓଡ଼ିଶାରୁ ଦକ୍ଷିଣ ଓଡ଼ିଶାକୁ ବଦଳି । ଏସବୁ ସ୍ତ୍ରୀଙ୍କର ମଥାକୁ ଏକାବେଳକେ ବିଗାଡ଼ିଦେଲା । ନାନାବିଧ ଚିକିତ୍ସା ବ୍ୟବସ୍ଥାକଲି । କଟକ ନେଇଗଲି । ଏମିତି ବିଶ୍ୱାସଘାତକ ତାଙ୍କର ସେ ରୋଗ, ଯାହା ମୋତେ ପୂରାପୂରି ମ୍ରିୟମାଣ କରିଦେଲା । ଡାକ୍ତରଙ୍କୁ ଦେଖାଇଲି । ସେତେବେଳେ କଟକରେ ମାନସିକ ଚିକିତ୍ସା ବିଭାଗ ଖୋଲିଥାଏ । ସେଠି ଡାକ୍ତରଙ୍କୁ ଦେଖାଇଲି । ସେମାନେ କହିଲେ, "This is not a case for Ranchi ।" ଦୁର୍ଭାଗ୍ୟକୁ ଏତିକିବେଳେ ମୋର ଅଷ୍ଟମ ତଥା ଶେଷ ସନ୍ତାନ ଜନ୍ମହେଲା । ପୂଜାଛୁଟିରେ ଘରକୁ ଯାଇଥାଏ । ମା, ବାପା ଓ ଅନ୍ୟାନ୍ୟ ବନ୍ଧୁ କୁଟୁମ୍ବ ସମସ୍ତେ ଖୁସିହେଲେ ଯେ, ସ୍ତ୍ରୀଙ୍କର ମାନସିକ ବିକୃତି ଚାଲିଗଲା । ସୁରୁଖୁରୁରେ ଏକାଏକା କାହାରି ସାହାଯ୍ୟ ନ ନେଇ ସ୍ତ୍ରୀ ପୁତ୍ରସନ୍ତାନଟିଏ ଜନ୍ମଦେଲେ ଏବଂ ଏକୁଟିଆ ତାର ଲାଳନପାଳନ ମଧ୍ୟ କଲେ । କିନ୍ତୁ ଦୁଃଖର କଥା, ପିଲାଟା ଗୁରୁଣ୍ଡିବା ଅବସ୍ଥାକୁ ଆସିଲା ବେଳକୁ ତାର epilepticfits ଦେଖାଦେଲା; ସ୍ତ୍ରୀଙ୍କର ଶୁପ୍ତରୋଗ ପୁଣି

ବାହାରିଲା । ସ୍ତ୍ରୀ ଓ ମୋର ଦୁଇଝିଅ ମିଳିମିଶି ଛୁଆକୁ ପାଳିବାରେ ଲାଗିଲେ । କିନ୍ତୁ ସ୍ତ୍ରୀଙ୍କ ଅବସ୍ଥା ସୁଧୁରିଲା ନାହିଁ । ଦିନେ ସାମାନ୍ୟ କାରଣରେ ଉତ୍କ୍ଷିପ୍ତ ହୋଇ ସେ ଅଗଣାର ଏକ ଅତିକାୟ କୂଅକୁ ଡେଇଁପଡିଲେ । ସବୁ ସରିଗଲା ଭାବିଥିଲି, କିନ୍ତୁ ସ୍ତ୍ରୀଙ୍କୁ ପହଁରା ଭଲଭାବରେ ଜଣାଥିବାରୁ, ସେ ନିଆଁଲିଭାଳୀ ଆସିବା ପର୍ଯ୍ୟନ୍ତ ଆରାମରେ ପହଁରି ରହିଗଲେ । ତାଙ୍କୁ ଉଦ୍ଧାର କରାଗଲା । କେତେଥର ଏମିତି ଅପ-ମୃତ୍ୟୁରୁ ତାଙ୍କୁ ରକ୍ଷା କରିଥିଲି । କିନ୍ତୁ ଶେଷରେ ହାରମାନିଲି ।

ସେଦିନ ଥିଲା ଶିବରାତ୍ରୀ । ଆମେ ଦୁହେଁ ଆଜୀବନ ଶିବଭକ୍ତ । ଗାଁର ପାରେଶ୍ୱର ମହାଦେବ ଓ ପ୍ରଖ୍ୟାତ ସିମଳେଶ୍ୱର ମହାଦେବ ଆମର ଆରାଧ୍ୟ ଦେବତା । ସେହି ଶିବରାତ୍ରୀ ଦିନ ମହାଦେବ ଗୋସାଇଁ ମୋର ସ୍ତ୍ରୀଙ୍କୁ ନେଇଗଲେ । ସେହି ଶିବରାତ୍ରୀଟି ମୋର ଜୀବନର ସବୁଠୁ ଅନ୍ଧକାରମୟ ରାତ୍ରୀ । ମୁଁ ଅଚେତ ହେଲିନାହିଁ, ମରିଗଲି ନାହିଁ ବା ଚିତ୍କାରକରି ଗଗନପବନ ଫଟାଇ ଦେଲି ନାହିଁ । ଭଗବାନଙ୍କର ଉଦେଶ୍ୟ କଣ ଥିଲା କେଜାଣି ! ଦେଡବର୍ଷର ପିଲାଟିକୁ ରଖିବ କିଏ ? ସାରାରାତି ମୁଁ ତା ମୁଣ୍ଡକୁ କାନ୍ଧରେ ଥୋଇ କେନ୍‌ଭାସ୍ ଚୌକିରେ ପିଣ୍ଡାରେ ବସିଥାଏ । ମା, ମା ବୋଲି ପିଲାଟି ଯେତେବେଳେ ଡାକେ, ସେତେବେଳେ କୋହରେ ମୋର ଛାତି ଫାଟିଗଲା ପରି ଲାଗୁଥାଏ । ଗୋଟାଏ ପ୍ରକାର କ୍ରନ୍ଦନ ଶବ୍ଦ ବାହାରକରି ଛୁଆଟିକୁ ମୁଁ ଗୀତଗାଇ ଶୁଆଇବାର ଅଭିନୟକରେ । ଘର ପଛପଟେ ଗୋଟିଏ ଶିବମନ୍ଦିର । ଶହଶହ ଲୋକ ଆସି ଜମା ହୋଇଥାନ୍ତି; ଦୀପକାଳି ବ୍ରତୀ ସ୍ତ୍ରୀଲୋକମାନେ ବସିଥାନ୍ତି । ମୋ ଘର ସାମ୍‌ନା ଲୋକାରଣ୍ୟ । ଲୋକଙ୍କର ଏତେ ଦୟା ଓ ସହାନୁଭୂତି ମୁଁ ଖୁବ୍ କମ୍ ଦେଖିଛି । ସେମାନେ ଆସନ୍ତି । ସେ ଚେୟାରରେ ମୁଁ ଛୁଆକୁ ଧରି ବସିଥାଏ । ଟୋପାଏ ଟୋପାଏ ଲୁହ ଢାଳି ସେମାନେ ଫେରିଯାନ୍ତି । ଅନନ୍ତ ଜ୍ଞାନ ଅନ୍ତେ ରାତି ଶେଷହେଲା । ମୋର ସେତେବେଳର ଅବସ୍ଥା "ନ ତାତ ନ ମାତା, ନଭଗ୍ନୀ ନ ଭାତ୍ରା" ମୋର ଗତିପାଇଁ ଭବାନୀ ମଧ୍ୟ ନ ଥାନ୍ତି, ବାପା ମାଆ ଭାଇ ଭଉଣୀ, ଝିଅ, ଜୋଇଁ ସମସ୍ତେ ଥାଇ ମଧ୍ୟ ପାଖରେ ନ ଥାନ୍ତି । ଅବଶ୍ୟ ନିଜକୁ ଯେତେ ଅସହାୟ ଭାବେ ସେତେ ନୁହେଁ । ବୋଧହୁଏ ମୋର ସହକର୍ମୀ ଅଧ୍ୟାପକ ବିଧ୍ୟେତ୍‌କେଶ୍ ତ୍ରିପାଠୀ କେତେଜଣ ପ୍ରିୟଛାତ୍ରଙ୍କୁ ନେଇ କାମରେ ଲାଗିଗଲେ । ବଡପୁଅ ପାଖରେ ଥିଲେ ଶବସଂସ୍କାର ବ୍ୟବସ୍ଥା ସେ କରିପାରିଥାନ୍ତା । ସେତେବେଳେ ସେ ବନାରସ୍ ହିନ୍ଦୁ ବିଶ୍ୱବିଦ୍ୟାଳୟର ଛାତ୍ର । ତା ପାଖକୁ ମଧ୍ୟ ଟେଲିଗ୍ରାମ୍ ଗଲା, କିନ୍ତୁ ଶବସଂସ୍କାର କାମ ପୂରାପୂରି ଅଧ୍ୟାପକବନ୍ଧୁ ତ୍ରିପାଠୀ ନିଜ ହାତକୁ ନେଇଗଲେ, ଯେମିତିକି ସେ ମୋର

ଜ୍ୟେଷ୍ଠପୁତ୍ର । ତାଙ୍କର ଉଦ୍ଦେଶ୍ୟ, ମୋତେ ସେ କୌଣସି କାମର ଦାୟିତ୍ୱ ଦେବେନାହିଁ; କାରଣ ଏ ଛୋଟ ଛୁଆଟି ମୋତେ ଛାଡି କାହା ପାଖରେ ରହିବ ନାହିଁ ।

କ୍ରମେ କ୍ରମେ ମୋର ଗଁ ଗଁ ଶବ୍ଦ ବନ୍ଦ ହୋଇଗଲା ଏବଂ ମୁଁ ଗୁମ୍‌ମାରି ବସିଗଲି । କ୍ରମେ କ୍ରମେ ନୂତନ ବିପଦର ଉପଲବ୍ଧି ହେବାକୁ ଲାଗିଲା । କେତେ ଲୋକଙ୍କ ଋଣ ମୁଁ ଶୁଝିବି ? କେତେଲୋକଙ୍କ ପ୍ରତି ମୁଁ କୃତଜ୍ଞ ହେବି ? ବଡପୁଅ ଆସିପାରିବ ନାହିଁ, ମୁଖାଗ୍ନି ଦେବ କିଏ ? ଅଗତ୍ୟା ନବମ ଶ୍ରେଣୀରେ ପଢୁଥିବା ଦ୍ୱିତୀୟ ପୁତ୍ର ଉପରେ ସେ ଭାର ପଡିଲା । ସେ ବିଚରା କିଛି ଜାଣିନାହିଁ । ଯାହାହେଉ, ସେ ଘଟଣାସ୍ଥଳକୁ ଗଲା, ଚିତାରେ ଅଗ୍ନି ସଂଯୋଗକଲା ଏବଂ ସଙ୍ଗେ ସଙ୍ଗେ ଗାଧୋଇ ପାଧୋଇ ଫେରିଆସିଲା । ଖାଲି ଦେହରେ ଓଦା ସରସର ହୋଇ ମୋର ସେ ଛୋଟିଆ ପୁଅଟି କାନ୍ଦକାନ୍ଦ ହୋଇ ମୋତେ କହିଲା "ବାପା ! ମୁଁ କାମ ସାରିଦେଇଛି । ମାଆକୁ କହିଲି ମାଆ ଗୋ, ମୋତେ କ୍ଷମାକର ମୁଁ କିଛି ଜାଣିନାହିଁ । କ'ଣ କରିବି, କ'ଣ କହିବି କିଛି ଜାଣିନାହିଁ ।" ଦଶାହ ବେଳକୁ ବାପା, ତାଙ୍କର ବଡ ଜୋଇଁ, ମୋର ଝିଅ-ଜୋଇଁ ଓ ଭାଇ ଉପସ୍ଥିତ ଥିଲେ । ଶ୍ରାଦ୍ଧକର୍ମ ପରେ ଯେ ଯାହା କର୍ମସ୍ଥଳକୁ ଫେରିଗଲେ । ମୁଁ ଏକାବେଳେକେ ନିଃସ୍ୱ ଓ ନିଃସଙ୍ଗ । ମୋ ପାଇଁ ପୃଥିବୀ ଅନ୍ଧକାର । ପାରଳାଖେମୁଣ୍ଡିରେ ସ୍ତ୍ରୀର ଶୁଦ୍ଧିକ୍ରିୟାକୁ ଅନେକ ଆସିଥିଲେ । ସବୁ ପିଲାଝିଲା ଉପସ୍ଥିତ ଥିଲେ । କେବଳ ଦ୍ୱିତୀୟ ଝିଅଟି ଉପସ୍ଥିତ ରହିପାରିଲା ନାହିଁ । କାରଣ ସେହି ସମୟରେ ବିଶ୍ୱବିଦ୍ୟାଳୟ ଗୋଟିଏ ନୂଆ ନୀତି ବାହାର କରିଥିଲା ଯେ, ଜଣେ ଟେଷ୍ଟ ପରୀକ୍ଷାରେ ୨୦ ପର୍‌ସେଣ୍ଟ ନମ୍ବର ରଖିଲେ ଶେଷପରୀକ୍ଷା ଦେଇପରିବ । ସେଦିନ ଥାଏ ଟେଷ୍ଟ ପରୀକ୍ଷା । ଝିଅ ପରୀକ୍ଷା ଦେବା ପାଇଁ ମୁଣ୍ଡବୁଡାଇ ଗାଧୋଇ କଲେଜକୁ ଚାଲିଗଲା । ପରୀକ୍ଷା ପରେ ଆସି କ୍ରିୟାରେ ଯୋଗଦେଲା । ସେ ଆଇ.ଏସ୍‌ସି. ୨ୟ ବର୍ଷରେ ପଢୁଥାଏ । ବଡ ପୁଅ ଶାନ୍ତନୁ ବନାରସରୁ ଆସିଥାଏ । ସେ ସେଠି ଇଂଜିନିୟରିଂ ପଢୁଥାଏ । କିଏ ଆସିଲେ, କିଏ ଗଲେ, କଣ କହି ଆଶ୍ୱାସନାଦେଲେ, ସେଗୁଡାକ ମୋର କିଛି ମନେ ନାହିଁ; କାରଣ ସେମାନଙ୍କ କଥା ମୋ ମୁଣ୍ଡକୁ ପଶୁ ନଥାଏ । ବଡ ପୁଅ ଆସିଗଲା; ମୁଁ ଆଶ୍ୱସ୍ତ ହେଲି । ବଡ ଝିଅ-ଜୋଇଁ କିଛିଦିନ ରହିଲେ । ୩ଟି ପୁଅ ଲଣ୍ଡାହୋଇ ଘରେ ବୁଲୁଥାନ୍ତି । ଦେଖିଲେ କୋହ ଆସେ, କିନ୍ତୁ ଦୁନିଆରେ ଯାହା ଘଟୁନା କାହିଁକି, ଦା' କ୍ଷେତକୁ ଯିବ । ମାଠିଆ କୂଅକୁ ଯିବ । ଇଂରାଜୀରେ ଯାହାକୁ କହନ୍ତି-

"The scythe will go to the field and
the pitcher will go to the well.

କିଛିଦିନ ପରେ ସାନ ଛୁଆଟି ବୋଧେ ତାର ମାଆକୁ କ୍ରମେକ୍ରମେ ଭୁଲିଗଲା । ସମସ୍ତେ ଊଣା ଅଧିକେ ଭୁଲିଗଲେ । ପତ୍ନୀଙ୍କୁ କିନ୍ତୁ ମୁଁ ଖାଲି ମନେପକାଉଥାଏ । ମହାଦେବ ଯେପରି ସତୀଙ୍କର ଶବକୁ ପିଠିରେ ଝୁଲାଇ ସାରାଦୁନିଆ ବୁଲୁଥାନ୍ତି । ସେହିଦିନ ପାଖରୁ ମୁଁ ପ୍ରାୟ ଦଶ ଏଗାର ବର୍ଷ କୌଣସି ଦେବ-ଦେବୀଙ୍କୁ ଆସ୍ଥାନ ମାଡ଼ିଲି ନାହିଁ, ପୂଜାପଣା ତ ଦୂରର କଥା, କିନ୍ତୁ ପହଁରାଳୀ ଯେମିତି କହିଥିଲା- ମୁଁ ସିନା କମ୍ବଳ ଛାଡ଼ିଦେଉଛି, କିନ୍ତୁ କମ୍ବଳ ମୋତେ ଛାଡ଼ୁନାହିଁ । ତାକୁ ଭାଲୁ ଜାବୁଡ଼ି ଧରିଥାଏ । ମୋର ସେହି ଅବସ୍ଥା ହେଲା । ମୁଁ ସିନା ଭଗବାନଙ୍କୁ ଛାଡ଼ିଦେଲି, କିନ୍ତୁ ଭଗବାନ ମୋତେ ଛାଡ଼ିଲେ ନାହିଁ । ଅବଶେଷରେ ମୁଁ ଜଗନ୍ନାଥଙ୍କୁ ଧରିଲି ।

କିଛିଦିନ ଚାଲିଗଲା । ମୁଁ କ୍ଲାସ୍‌କୁ ଗଲି ଏବଂ କ୍ରମେ ସାଧାରଣ ଜୀବନ ଫେରି ଆସିଲା । ଲେଖାଲେଖି ମଧ୍ୟ ପୁର୍ନବାର ଆରମ୍ଭ ହୋଇଗଲା ।

ଏତିକିବେଳେ ନିର୍ବାଚନ ଆସିଲା । କର୍ମଚାରୀମାନେ ମୋତେ କୌଣସି ଦାୟିତ୍ୱ ଦେଲେ ନାହିଁ; ରିକର୍ଭରେ ରଖିଲେ । ମନ ଭୁଲାଇବ ପାଇଁ ମୁଁ ଶେଷମୁହୂର୍ତ୍ତରେ ନିର୍ବାଚନ ଅଫିସରଙ୍କ ପାଖକୁ ଯାଇ କୌଣସି ଗୋଟିଏ ସ୍ଥାନରେ ପୋଲିଙ୍ଗ୍ ଅଫିସର୍ ଦାୟିତ୍ୱ ଦେବାପାଇଁ କହିଲି । ମୋତେ ଗୋଟିଏ ସୁହରିଆ ବୋଲି ସ୍ଥାନକୁ ପଠାଗଲା । ଗମ୍ୟ କି ଅଗମ୍ୟ ସ୍ଥାନର ବିଚାର ନକରି ମୁଁ ସଦଳବଳ ଚାଲିଲି । ସ୍ଥାନଟି ପାହାଡର ପାଦଦେଶରେ । ଚାରିପାଖରେ ପାହାଡ । ଦିନ ଦୁଇଟା ବେଳକୁ ଛାଇ ପଡେ, ତିନିଟା ବେଳକୁ ଅନ୍ଧକାର ମାଡିଆସେ । ଏଇଟା ଦ୍ୱିତୀୟ ସାଧାରଣ ନିର୍ବାଚନ । ପ୍ରଥମଥର ମୟୂରଭଞ୍ଜର ଶିମିଳିପାଳ ପାହାଡର ପାଦଦେଶରେ ପଡିଥିଲା । ସେଠି କେହି ଭୋଟ୍ ଦେବାପାଇଁ ଆସିଲେ ନାହିଁ । ସନ୍ଧ୍ୟାବେଳକୁ ଗୋଟିଏ ଦୁଇଟା ଭାଲୁ ଆସିଥିଲେ । ଦୂରରେ ହାତୀଗୁଡିକର ବୃଂହିତଂ ଶୁଭିଥିଲା । ସୁହୁରିଆରେ ଜୀବଜନ୍ତୁ ଆସିନଥିଲେ । ଆସିଥିଲେ ତିନି, ଚାରି ଜଣ ଭୋଟର୍ । ଯେଉଁ ପ୍ରଧାନ ପାଖରୁ ଆମେ ସାହାଯ୍ୟ ପଉଥିଲୁ, ସେ ଆମ ଭୋଜନ କଥା ବୁଝୁଥିଲା । ଆଗ୍ରହରେ ତା ବାଡିରୁ ଚନ୍ଦନ କାଠ କିଲେ ଦେଡକିଲୋ ଦେଇଥିଲା । ଅଦ୍ୟାପି ତାହା ଠାକୁରଙ୍କ ପାଖରେ ଅଛି । ଫେରିଲା ବେଳେ ଅନେକ ରାସ୍ତା ଚାଲିଚାଲି ଆସିଲୁ । ତାପରେ ବଳଦଗାଡିରେ ଏବଂ ଶେଷରେ ଟ୍ରକରେ ପ୍ରଧାନ ରାସ୍ତା ଧରିଲୁ । ସେଇଠି ଲେଖାଥିଲା 'ମାଣ୍ଡସା' । ବୁଝାବୁଝିକରି ଜାଣିଲି, ସେ ସ୍ଥାନରେ ନାମ 'ମଞ୍ଜୁଷା' । ଓଡିଆ ନାମଟି ଏମିତି ବିକୃତ ହୋଇଛି ସେଇ ଇଲାକାରେ ।

ଏତେ ଦାରୁଣ ଦୁର୍ବିପାକ ସତ୍ତ୍ୱେ ମୋର ବଦଳି ହୁକୁମ ଆସିଲା ନାହିଁ। ପ୍ରାୟ ତିନିବର୍ଷ ମୁଁ ସେଠି ଘୋର ଅଭାବ ଅସୁବିଧା ଭିତରେ ରହିଗଲି। ଏହି ସମୟରେ ଓଡ଼ିଶାର ଲାଟ୍‌ସାହେବ ଆମ କଲେଜ ଗସ୍ତରେ ଆସିଥିଲେ। ସଭାରେ ପ୍ରିନ୍‌ସପାଲ ପ୍ରସଙ୍ଗ କ୍ରମେ ତେର ଶବ୍ଦକୁ ଅଶୁଭ ସୂଚକ ବୋଲି କହିଲେ। ଗଭର୍ଣ୍ଣର ସୁକ୍ତଙ୍କର ଜବାବରେ ୧୩ ଶବ୍ଦ ଉପରେ ଏକ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣ ଦେଇଥିଲେ। ଓଡ଼ିଆ ବା ସଂସ୍କୃତରେ ୧୩ଟା ଶୁଭସୂଚକ। ସେହି ସଭାରେ ଜଣୈକ ଅଧ୍ୟାପକ ବନ୍ଧୁଙ୍କର ମୋ ପ୍ରତି ଆଚାରବିଚାର ବଡ଼ ଦୁଃଖଦାୟକ ହେଲା। ମୋର ଲୋକଙ୍କୁ ବସାଇବା ଦାୟିତ୍ୱ ଥିଲା। ଅଧ୍ୟାପକ ବନ୍ଧୁଙ୍କୁ ମୁଁ ଯେଉଁଠି ବସାଇଲି, ତାଙ୍କର ମନବୋଧ ହେଲାନାହିଁ। ସେ ଚାହୁଁଥିଲେ ଭି.ଆଇ.ପି. ସ୍ଥାନ। କେବଳ ତାଙ୍କପାଇଁ ନୁହେଁ, ତାଙ୍କର  ଛୁଆପିଲା ଓ ସ୍ତ୍ରୀଙ୍କପାଇଁ ମଧ୍ୟ ଚାହୁଁଥିଲେ, ଅଧ୍ୟକ୍ଷଙ୍କର ସେ ପ୍ରିୟପାତ୍ର ଥିଲେ। କାରଣ ସେ ଜାତକ ଦେଖୁଥିଲେ ଓ ତାଙ୍କର ସବୁ କାମରେ ଯୋଗଦେଉଥିଲେ। ବାଲେଶ୍ୱରର ଫକୀର ମୋହନ କଲେଜକୁ ମୋର ବଦଳି ହୁକୁମ ଏହି ସମୟରେ ଆସିଲା।

ବନାରସ୍ ଯିବାପୂର୍ବରୁ ଶାନ୍ତନୁ ରେଭେନ୍‌ସାରେ ବି.ଏସ୍‌ସି. ପଢୁଥିଲା। ଥରେ ଉତ୍କଳ ବିଶ୍ୱବିଦ୍ୟାଳୟ ତରଫରୁ ସେ କ୍ରିକେଟ୍ ଖେଳିବାପାଇଁ ବନାରସ୍ ଯାଇଥାଏ। ସେଠି ସେ ଏତେ ଚମତ୍କାର ଖେଳିଲା ଯେ, ବନାରସ୍ ବିଶ୍ୱବିଦ୍ୟାଳୟ ଶୋଚନୀୟ ଭାବରେ ପରାସ୍ତହେଲା। ଖେଳ ଶେଷରେ ପ୍ରିନ୍‌ସପାଲ୍ ପୁଅକୁ ଡାକି ପଠାଇଲେ। କହିଲେ "Boy ! ତୁମର ବି.ଏସ୍‌ସି. ପରୀକ୍ଷାଫଳ ବାହାରିଲା। ମାତ୍ରେ ମୋତେ ଖବର ଦେବ। ମୁଁ ତୁମକୁ ଇଂଜିନିୟରିଂରେ ଆଡ୍‌ମିସନ୍ କରିଦେବି।" ଯଥା ସମୟରେ ପରୀକ୍ଷାଫଳ ବାହାରିଲା। ପୁଅ ପ୍ରିନ୍‌ସପାଲଙ୍କ ପାଖକୁ ଟେଲିଗ୍ରାମ କରି ଫଳ କଥା ଜଣାଇଦେଲା। ସାଙ୍ଗେ ସାଙ୍ଗେ ସେଠୁ ପ୍ରିନ୍‌ପାଲ ଆଡ୍‌ମିସନ୍ ଫର୍ମ ପଠାଇଲେ ଏବଂ ଅଳ୍ପ କେତୋଟା ଦିନ ଭିତରେ ତାକୁ ଆଡ୍‌ମିସନ୍ ନେବାପାଇଁ କହିଲେ। ସେତେବେଳେ ମେରିଟ୍ ଉପରେ ଆଡ୍‌ମିସନ୍ ହେଉଥିଲା;ଡୋନେସନ୍ ପ୍ରଶ୍ନ ନାହିଁ। ପ୍ରିନ୍‌ସପାଲ ଆଗ୍ରହରେ ପିଲାଙ୍କୁ ନେଉଥିଲେ ଭଲ ଖେଳପାଇଁ।

ପ୍ରସଙ୍ଗ କ୍ରମେ ମୁଁ କହିଦେଉଛି ଯେ, ମୁଁ କ୍ରିକେଟ୍‌କୁ ପ୍ରାଣଭଳି ଭଲପାଏ। ମୁଁ କ୍ରିକେଟ୍ ବଲ୍ କେବେ ଫୋପାଡ଼ି ନାହିଁ କିମ୍ବା ବେଟ୍ ହାତରେ ଧରିନାହିଁ। କ୍ରିକେଟ୍‌ର ନିୟମ କାନୁନ୍ ମଧ୍ୟ ମୋତେ ସେମିତି ଜଣା ନଥିଲା। ତଥାପି ବାରିପଦାରେ ଥିଲାବେଳେ ଦୁଇପୁଅଙ୍କୁ ଟେନିସ୍ ବଲ ସାହାଯ୍ୟରେ ପ୍ରାରମ୍ଭିକ କ୍ରିକେଟ୍ ଖେଳ ବିଷୟରେ ଶିକ୍ଷାଦେଉଥିଲି। ଦୁହିଁଙ୍କ

ପିଛା ମୁଁ ଖେଳପାଇଁ ବହୁତ ଲାଗିଛି। ସେ ବର୍ଷ West Indies ଦଳ କଲିକତାରେ Eden Gardenରେ ଭାରତ ସହିତ ଟେଷ୍ଟ ମ୍ୟାଚ ଖେଳୁଥାଏ। Hotelରେ ଯାଇ ରହିଲୁ। ମାଆ ପୁଅ ଦୁହିଁଙ୍କୁ ରଖିଲି। ମୁଁ ଏକାଏକା ଭୋର୍‌ରୁ ଇଡେନ୍‌ଗାର୍ଡନକୁ ବାହାରିଲି ଅଖିଆ ଅପିଆ। ଟିକେଟ୍ କରିନଥାଏ। ଅସାମାନ୍ୟ ଚେଷ୍ଟାଚରିତ୍ର କରି ମୁଁ ଟିକେଟ୍ ପାଇଲି ଏବଂ ଲାଠି ଚାର୍ଜ ଭିତର ଦେଇ ପଡିଆକୁ ପଶିଲି। ସେତେବେଳକୁ ଯୋଡାଏ ଓ୍ୱିକେଟ୍ ଖସିଯାଇଥାଏ ? ଖୁବ୍ ଅଳ୍ପ ରନ୍‌ରେ। Sobersଙ୍କର ଖେଳ ଦେଖିବାର ଇଚ୍ଛା ଥିଲା। ଯୋଡାଏ ଉଇକେଟ୍ ପତନପରେ ତାଙ୍କ କେପ୍‌ଟେନ୍ Sobersଙ୍କୁ ନପଠାଇ ହୋଲ୍‌ଟ ଓ ହଣ୍ଟଙ୍କୁ ଏବଂ ପରେ କହ୍ନାଇଙ୍କୁ ବ୍ୟାଟିଂପାଇଁ ପଠାଇଲେ। ଦିନଯାକ ରନ୍ ସଂଖ୍ୟା ୩୦୨ ହେଲା। ଉଇକେଟ୍ ପଡିଲା ନାହିଁ। ପଡିଆରେ ଦିନସାରା ବସି ଖେଳ ଦେଖିଲି। ମନର ଅବସ୍ଥା ଆଦୌ ଭଲ ନଥାଏ। ସେଦିନ ରାତିରେ ମୁଁ ପାରଳାଖେମୁଣ୍ଡି ଫେରିଆସିଲି। ସେ ଦିନର ମୋର ଅଭିଜ୍ଞତା ବିଷୟରେ, "Sir Roger at Test Cricket" ଶିରୋନାମାରେ ରମ୍ୟରଚନାଟିଏ ଲେଖି ସୁପ୍ରସିଦ୍ଧ Hindustan Standard ପତ୍ରିକାକୁ ପଠାଇଦେଲି। ଛବି ସହିତ ଛପା ହେଲା ଅଳ୍ପଦିନପରେ।

ପରେ ଟାଟାନଗରର Canium statiumରେ ପାକିସ୍ଥାନ ସହିତ ଟେଷ୍ଟ ମେଚ୍ ହେଲା। ବଡ ପୁଅ East Zone Teamରେ ଖେଳୁଥିଲା। ମୁଁ ଖେଳ ଦେଖିବାପାଇଁ ଯାଇଥିଲି। ସେ ରେଭେନ୍‌ସାରେ ବି.ଏସ୍‌ସି. ପଢୁଥିଲା ବେଳେ। ସେତିକିବେଳେ ଇଂଲଣ୍ଡର ଟିମ୍ ବାରବାଟୀ ଷ୍ଟାଡିୟମରେ ଇଷ୍ଟ ଜୋନ୍ ସହିତ ଖେଳିଥିଲା। ଶାନ୍ତନୁ ଯୋଡାଏ ଉଇକେଟ୍ ପାଇଥିଲା। କେତେବର୍ଷ ପରେ ଆଉଥରେ ସେହି ପଡିଆରେ ବଙ୍ଗଳା ସହିତ ଦୁଇ ଭାଇ ଶାନ୍ତନୁ ଓ ସଞ୍ଜୟ ମେଚ୍ ଖେଳିଥିଲେ। ଦୁହେଁ ଯାକ opening bowler ଥିଲେ। ୧୪ ରନ୍‌ରେ ୪ଟା ଓ୍ୱିକେଟ୍ ଦ୍ୱିତୀୟ ପୁତ୍ର ସଞ୍ଜୟ ଖସାଇଥିଲା। ମୋର ଗର୍ବ ଓ ଆନନ୍ଦର ସୀମା ନଥିଲା। ଯଥା ସମୟରେ ସେ ଦୁହିଁଙ୍କ ନାମ ବାରବାଟୀରେ ଲିପିବଦ୍ଧ ହୋଇ ରହିଲା। ମୁଁ କ୍ରିକେଟ୍ ନ ଜାଣି ମଧ୍ୟ କ୍ରିକେଟ୍ ଖେଳାଳୀ ବୋଲି ବିବେଚିତ ହେଲି।

ଏସବୁ ପର କଥା। ସ୍ତ୍ରୀ ଚାଲିଗଲାପରେ ମୁଁ ବିହ୍ୱଳ ହୋଇପଡିଥିଲି। ତୃତୀୟ ପୁଅକୁ ନେଇ ବଡ଼ ଝିଅ, କୋଇଁ ରାଉରକେଲା ଚାଲିଗଲେ ଏବଂ ସେଇଠି ନାତି ସାଙ୍ଗରେ ରହି ସିଏ ପଢ଼ିଲା। ଆଉ ଛୋଟ ଝିଆଟି କଥା। କିଏ ଦେଖିବ, କିଏ ବୁଝିବ ! ଝିଆମାନେ ସମସ୍ତେ ପାଠ ପଢିଲେଣି। ମୁଁ ତ ଦିନସାରା କଲେଜରେ ରହୁଛି। ବୁଢୀଗାଈଟିଏ ଫେର୍ ଅଛି। ପ୍ରବୋଧ ମିଶ୍ର ବୋଲି ଜଣେ ମୋର ଦୂର ସମ୍ପର୍କୀୟ ଅଧ୍ୟାପକ ଥାନ୍ତି। ତାଙ୍କ

ପାଖରେ ସ୍ତ୍ରୀ ଲୋକଟାଏ ରହିଥାଏ, ରୋଷେଇବାସ କରିଦିଏ। ମୋ ଦୁଃଖକଥା ତାଙ୍କୁ କହିଲି। ସେ ମୋ ପ୍ରତି ଦୟାପରବଶ ହୋଇ ସ୍ତ୍ରୀଲୋକଟିକୁ ମୋ କାମ କରିବାପାଇଁ ଅନୁମତି ଦେଲେ। ତାର ନାମ ମୁଁ ଜାଣିନାହିଁ। ସମସ୍ତେ ତାକୁ ପୁରସ୍ତମର ମା ବୋଲି ଜାଣନ୍ତି। ଭାରି କାମିକା। ତାର ପୁଅଟି ସ୍କୁଲ୍ ଯାଉଥାଏ। ମୋର ସାନ ପୁଅଟିର ସମସ୍ତ ତତ୍ତ୍ୱ ବେଶ୍ ଭଲ ଭାବରେ ସେ ଅକ୍ଳେଶରେ ନେଲା। ରୋଷେଇବାସ ଠାରୁ ଆରମ୍ଭ କରି ଆମର ସମସ୍ତ କାମ ଓ ତତ୍ତ୍ୱ ବୁଝାମଣାକଲା। ଆମେ ସମସ୍ତେ ଆଶ୍ୱସ୍ତ ହେଲୁ। ଛୁଆଟି ମଧ୍ୟ ସୁଖରେ ରହିଲା ଓ ବଢିଲା।

ଫେବୃଆରି ମାସର କଥା। ସେପ୍‌ଟେମ୍ବରରେ ମୁଁ ପାରଳାଖେମୁଣ୍ଡି ଛାଡିଲି। ଯେଉଁ ଦିନ ମୁଁ ବସ୍‌ରେ ଆସିବି ବୋଲି ସ୍ଥିରକଲି, ସେଦିନ ହଷ୍ଟେଲ୍‌ରେ ଓ ମୋ କ୍ୱାର୍ଟସ୍‌ରେ ଲୋକାରଣ୍ୟ। ମୋପାଇଁ ଏତେ ଦରଦ ଓ ସହାନୁଭୂତି ବାସିନ୍ଦାମାନଙ୍କର ମୁଁ ଭାବିପାରିଲି ନାହିଁ। ଯେମିତି କୌଣସି ବଡ ଦୁଃଖ ସେମାନଙ୍କୁ ମଧ୍ୟ ଘାରିଯାଇଥିଲା। ସ୍ତ୍ରୀଙ୍କର ଶୁଦ୍ଧିକ୍ରିୟାର ୧୨ ଦିନରେ ଆମେ ତିନିଟା ଝଟକା କରି ସମସ୍ତେ ତାଙ୍କର ଦାହସ୍ଥଳୀକୁ ଯାଇଥିଲୁ ଶେଷ ସମ୍ମାନ ଜ୍ଞାପନକରିବା ପାଇଁ। କେତେଗୁଡିଏ ଅସ୍ଥି ସଂଗ୍ରହ କରାଗଲା। ଗାଁ ଲୋକେ ଆମ ପାଖକୁ ଆସିଥିଲେ। ଗୋଟିଏ ସମାଧି କରିବାକୁ ମନସ୍ଥ କରିଛି କହିବାରୁ, ସେମାନେ ମୋତେ ସାହାଯ୍ୟ କରିବେ ବୋଲି କହିଲେ। ମୋ ପୁଅର ସାଙ୍ଗ ଶଙ୍କର ବୋଲି ପିଲାଟି ସେହି ଗାଁର। ସିଏ ବି ଏବିଷୟରେ ଖୁବ୍ ଆଗ୍ରହୀ ଥିଲା। ସେହି ବର୍ଷ ଗୋବିନ୍ଦଦ୍ୱାଦଶୀ ପଡିଲା। ପୁଅକୁ ଅସ୍ଥି ଦେଇ ପୁରୀ ପଠାଇଦେଲି। ସେଇଠି ସେ ମହୋଦଧିରେ ମା'ର ଅସ୍ଥି ବିସର୍ଜନ କରିଦେଲା। କିଛିଦିନ ପରେ ଭଣଜା ବନାରସ ଯାଉଥିଲା ବେଳେ ତାରି ହାତରେ ଆଉ କିଛି ଅସ୍ଥି ପଠାଇଦେଲି। ସେ ତ୍ରିବେଣୀରେ ବିସର୍ଜନ କରିଦେଲା। ଦିନେ ସେହି ତ୍ରିବେଣୀରେ ମୋର ସ୍ତ୍ରୀଙ୍କ ସହିତ ସଂଗମରେ ବୁଡ ପକାଇଥିଲୁ। ସେପ୍‌ଟେମ୍ବର ପହିଲା ବେଳକୁ ଦରମା ଓ ଆଡ୍‌ଭାନ୍‌ସ ଟି.ଏ. ନେଇ ମୁଁ ପାରଳାଖେମୁଣ୍ଡି ଛାଡିଲି।

ମୋର ଯେଉଁ ତିନୋଟି ଅଭିପ୍ରାୟ ଥିଲା- ସେଗୁଡିକ ମଧ୍ୟରୁ କଲେଜ୍ ଉପରୁ ସାରା ଇଲାକାର ଦୃଶ୍ୟ ଉପଭୋଗ କରିବା, ତାହା ପୂରଣ ହେଲା; କିନ୍ତୁ ସୁଦୂର ପାହାଡର ମଧ୍ୟଦେଶରେ (କଟିଦେଶର) ଥିବା ବିରାଟ ପ୍ରାସାଦର ରହସ୍ୟ ଭେଦିପାରିଲି ନାହିଁ। ଆଉ ଲୁଙ୍ଗି ପିନ୍ଧି ବାଡିଟିଏ ଧରି ଜହ୍ନ ଆଲୁଅରେ ଗଧ ପଲଙ୍କ ପ୍ରସେସନ ଦେଖିବା ଓ ରାତି ଅଧରେ ପୁରୁଣା କାଳିଆ ସୋଡା ବୋତଲର କାଚ ଠିପି ଫିଟାଇବାର ଶବ୍ଦ, ଏସବୁ। ମୋର

କାହିଁକି ଧାରଣା ହେଲା, ସେ ଆଡର ଲୋକମାନେ ଭାରି ପରିଶ୍ରମୀ। ଚାଷବାଷରେ ସବୁବେଳେ ବ୍ୟସ୍ତ। ଦିନେ ମୁଁ ଏକୁଟିଆ ସନ୍ଧ୍ୟା ଭ୍ରମଣ ଛଳରେ ସହରର ଉପକଣ୍ଠକୁ ଚାଲିଗଲି। ସେଠି ଦେଖିଲି, ବଗିଚାରେ ଲୋକମାନେ କାମରେ ଲାଗିଛନ୍ତି। ଭିତରକୁ ପଶିଯାଇ ଦେଖିଲି, ବର୍ଷାଦିନରେ ମଧ୍ୟ ସେମାନେ ଫୁଲକୋବି କରିଛନ୍ତି। ଗଛଗୁଡାକ ପ୍ରାୟ୍ ହାତେ ଉଚ୍ଚ ହୋଇଛି ଏବଂ ଛୋଟଛୋଟ ଫୁଲ ମଧ୍ୟ ଦେଖାଗଲାଣି। ମୁଁ ସେମାନଙ୍କୁ ପଚାରିଲି, ଏତେ ଶୀଘ୍ର ଏତେ ସୁନ୍ଦର ଫୁଲକୋବି ହେଲା କେମିତି ? ସେମାନେ କହିଲେ "ବାବୁ, ତିନୋଟି ଇଂଜେକ୍ସନ୍ ପରା ଦିଆଗଲାଣି।" ମୁଁ କାବା ହୋଇ ସେମାନଙ୍କ ଆଡକୁ ଚାହିଁରହିଲି। ଇଂଜେକ୍ସନ୍ କ'ଣ ? ସେମାନେ ଅଳ୍ପ ହସି କହିଲେ- ସାର ତିନିଥର ପ୍ରୟୋଗ ହେଲାଣି। ଅଳ୍ପ ଦୂରରେ ପଡିଆ ଜମିରେ ଗୁଡାଏ ଘାସ ଉଠିଛି। ସେମାନେ କହିଲେ- ସେଗୁଡା ମାଣ୍ଡିଆ। ସେଇ ଇଲାକାରେ ପ୍ରଚୁର ମାଣ୍ଡିଆ ଚାଷ ହୁଏ। ମୋର ମନେପଡିଲା ପିଲାଦିନର ଗୀତ-

ଧୋରେ ବାୟ୍ ଧୋ ;<br>
ଯେଉଁ କିଆରୀରେ ଗହଳ ମାଣ୍ଡିଆ<br>
ସେହି କିଆରୀରେ ଶୋ।

ମାଣ୍ଡିଆ କ'ଣ ଦେଖିଲି ଏବଂ ଜାଣିଲି। ଆମ ଇଲାକାରେ ମାଣ୍ଡିଆ କେହି ଦେଖିନାହାନ୍ତି। ମାଣ୍ଡିଆ ଯାଉ ବି କେବେ ଖାଇ ନାହାନ୍ତି।

ଖୁବ୍ କରୁଣ ଦୃଶ୍ୟ। ପୁରସ୍ତମର ମା' କୋଳରୁ ଯେତେବେଳେ ମୋ' ଝୁଆମାନେ ତାଙ୍କର ଚିକିଭାଇ ମୁନୁକୁ ନେଇ ଆସିଲେ, ସେ ଖୁବ୍ କାନ୍ଦିଲା। ମୁନୁ ମଧ୍ୟ କାନ୍ଦି କାନ୍ଦି ତାଟକା ହୋଇଗଲା। ପଲାସାରେ ରାତି ଟ୍ରେନ୍ ଧରି ବାଲେଶ୍ୱର ଆସିଲୁ। ପାରଳାଖେମୁଣ୍ଡି ରହିଗଲା। ରହିଗଲା ମୋର ମୋର ପ୍ରାଣାଧିକ ପତ୍ନୀଙ୍କର ଦାହସ୍ଥଳୀ ! ଆଉ ରହିଗଲା ସେହି ବୁଢୀ ଗାଈଟି। ସେଇ ସହର-ମଫସଲର ଆତ୍ମୀୟ୍ ଜନତା ବି ରହିଗଲେ। ରହିଗଲା ମୋର ବଗିଚା।



## ॥ ଏକାବନ ॥

ପାରଳାଖେମୁଣ୍ଡି ଗଲା ବେଳକୁ ମୋର କଣେ କେହି ଚିହ୍ନାପରିଚୟ ଲୋକ ବା ଆତ୍ମୀୟ ସ୍ୱଜନ ନଥିଲେ। ନିର୍ବାସିତ ପରି ମୋତେ ଜଣାଗଲା। କିନ୍ତୁ ବାଲେଶ୍ୱର ମୋ ଗାଁ ପାଖ। ମାତ୍ର ୩୦, ୪୦ ମାଇଲ୍ ଦୂର। ସେଇଠି ମୁଁ ମାଟ୍ରିକ୍ୟୁଲେଶନ୍ ପରୀକ୍ଷା ଦେଇଛି ଏବଂ ରେଭେନ୍‌ସା କଲେଜକୁ ପଢିବାପାଇଁ ଆସିଲା ବେଳେ ବାରମ୍ବାର ବାଲେଶ୍ୱର ଅତିକ୍ରମ କରିଛି। ଅନେକଥର ରହିଛି ଅର୍ଜର ବକାରର ପ୍ରିୟନାଥ ନନ୍ଦି ଘରେ। ସେ ମୋର ଅତି ଅନ୍ତରଙ୍ଗ ବନ୍ଧୁ। ୬ ବର୍ଷ କଲେଜ ଜୀବନରେ ସେ ମୋତେ ଯଥେଷ୍ଟ ସାହାଯ୍ୟ ସହାନୁଭୂତି ଦେଇଛି। ବଦଳି ହେବା ଅର୍ଡର ପାଇଲାମାତ୍ରେ, ମୁଁ ତା ପାଖକୁ ଚିଠି ଲେଖିଲି ଏବଂ ସେ ଖୁବ୍ ଖୁସି ହୋଇ ମୋ ପାଖକୁ ଚିଠିଦେଲା ଯେ, ସହଦେବଖୁଣ୍ଟାରେ ୫୦ ଟଙ୍କାରେ ଭଡାରେ ଗୋଟିଏ ଦ୍ୱିମହଲା ଘର, ଉପରର ୪/୫ କୋଠରୀ ରଖିଛି।

ଆମେ ସମସ୍ତେ ଯାଇ ଦିନ ପ୍ରାୟ ୧୧ଟା ବେଳେ ବାଲେଶ୍ୱର ପହଞ୍ଚିଲୁ। ପ୍ରିୟନାଥ ଷ୍ଟେସନକୁ ଆସିଥିଲା। ତାର କଳା ରଙ୍ଗର ଗୋଟିଏ Baby Austin ଗାଡ଼ି ନେଇ। ମୋତେ ଓ ମୋ ପିଲାଙ୍କୁ କେବେ କେବେ ସିଏ ବୁଲାଇଛି ସେଇ ଗାଡ଼ିରେ। ମୋ ପାଇଁ ଚେୟାର ଟେବୁଲ କେତେଟା ବି ଯୋଗାଡ କରିଥିଲା। ଆଜିକୁ ୩୦ ବର୍ଷ ହେଲା ସେ ଭିତରୁ ଦୁଇଟା ମୋ ପାଖରେ ଅଛି। ପ୍ରିୟନାଥ ଚାଲି ଗଲାଣି; ତାର ଫଟୋ ମୋ କାନ୍ଥରେ ଝୁଲୁଛି ଏବଂ ଚେୟାର ଦୁଇଟା ମୁଁ ବ୍ୟବହାର କରୁଛି। ମଝିରେ ଥରେ ତାର ଦେହ ଖୁବ୍ ଖରାପ ହୋଇଥିଲା, ରକ୍ତବାନ୍ତି ହେଉଥିଲା। ତାର ସାଇକେଲ୍ ଦୋକାନ ଥାଏ; ତା ସାଙ୍ଗକୁ ହଲର ମେସିନ ପାର୍ଟସ୍ ବିକ୍ରିକରୁଥାଏ। ମୁଁ ମୋ ପୁଅପାଇଁ ତାଠାରୁ କିସ୍ତି ଦ୍ୱାରିରେ ସାଇକେଲ କିଣିଥିଲି। ତା ସହିତ ମୋର ଭାଇଠାରୁ ବଳି ବଡ ସମ୍ପର୍କ। East Hostel Weeklyପାଇଁ ସେ ମୋତେ ଅକୁଣ୍ଠ ସାହାଯ୍ୟ କରିଥିଲା। ସେ ଏମ୍.ଏଲ୍.ଏ. ହୋଇଥିଲା। କଟକ ବ୍ୟାଙ୍କର ସେକ୍ରେଟାରୀ ମଧ୍ୟ ହୋଇଥିଲା। କେତେବେଳେ ଗଣତନ୍ତ୍ର, କେତେବେଳେ ସ୍ୱତନ୍ତ୍ର ଦଳର ସେ ସଭ୍ୟ ଥିଲା। ଚାକିରି ବା ଓକିଲାତି ସେ କରିନାହିଁ। ବଡ ସ୍ୱାଧୀନଚେତା। ଏକଦା Touring Cinema ତାର ଥିଲା। ଟ୍ରକ୍ ଓ ବସ୍‌ର Body ତିଆରି କାରଖାନା ଥିଲା। କେତେବର୍ଷ ପରେ ବାଲେଶ୍ୱର ରହଣି କାଳରେ ସେ ଚାଲିଯିବା ଖବରପାଇ ମୁଁ ତା ଘରକୁ ଗଲି। ଡେରି ହୋଇଯାଇଥିଲା। ମୁଁ ଗଲାବେଳକୁ ଆତ୍ମୀୟ ସ୍ୱଜନ ଶ୍ମଶାନରୁ ଫେରିଆସିଥାନ୍ତି। ମୁଁ ତାର ବଡପୁଅକୁ ଦେଖାକରି ସ୍ୱର୍ଗତ ଆତ୍ମାପ୍ରତି ସମ୍ମାନ ଜଣାଇ ଫେରିଆସିଲି।

କଲେଜରେ ଜୟେନ୍ କରିବା ପୂର୍ବରୁ କେତେଟା ଦିନ ପିଲାଝିଲାଙ୍କୁ ବିଭିନ୍ନ ଶିକ୍ଷାନୁଷ୍ଠାନରେ ଭର୍ତ୍ତିକରିବାରେ ବ୍ୟସ୍ତରହିଲି। ବଡପୁଅ ତ ବନାରସ୍‌ରେ (BHU) ଇଂଜିନିୟରିଂ ପଢୁଥାଏ। ଦ୍ୱିତୀୟ ଝିଅ ଫକୀର ମୋହନରେ ବିଜ୍ଞାନ ଦ୍ୱିତୀୟ ବର୍ଷରେ ଆଡ୍‌ମିସନ୍ ନେଲା। ଦ୍ୱିତୀୟ ଓ ତୃତୀୟ ପୁଅ ଜିଲ୍ଲା ସ୍କୁଲ୍‌ରେ ଭର୍ତ୍ତି ହେଲେ। ତୃତୀୟ ନମ୍ବର ଝିଅଟି ମିସନ ସ୍କୁଲରେ ଭର୍ତ୍ତିହେଲା। ତା'ତଳ ପୁଅ ରାଉରକେଲାରୁ ଆସି ପ୍ରଥମେ **Public School**ରେ ପଢ଼ିଲା। ସେ କାଳରେ ମାସିକିଆ ଫିସ୍ ଟ୧୦ଙ୍କା ଥିବାରୁ, ସେଠୁ କାଢ଼ି ଚର୍ଚ୍ଚଲେନ୍ ସ୍କୁଲ୍‌ରେ ପଢ଼ାଇଲି। ସବା ସାନ ପୁଅ ଦେଡ ବର୍ଷର।

ଚାକର ବା କାମଦୁଣୀ କେହି ନଥାନ୍ତି। ଯାହା ଘରେ ଭଡା ରହୁଥିଲି, ତାଙ୍କର ଗୋଟିଏ ସାନଝିଅ ଥିଲା। ସେ ଓ ମୋର ଛୋଟ ପୁଅ ଦୁଇଜଣ ଘରେଥାନ୍ତି। ଖେଳୁଥାନ୍ତି। କଳି ଲାଗନ୍ତି, ନିଦ ମାଡିଲେ ଶୋଇପଡନ୍ତି। ସେ ଝିଅ ଥରେ ପୁଅକୁ ପେଲିଦେଲା। ମୁଁ ଫେରିଲା ବେଳକୁ ଦେଖେ, କପାଳଟା ଫୁଲିଯାଇଛି। ଆଉଦିନେ ଆର୍.ଏମ୍.ଏସ୍.ରେ ଚିଠି ପକାଇବାପାଇଁ ଏବଂ ଟ୍ରେନ୍ ଦେଖିବାପାଇଁ ଦ୍ୱିତୀୟ ଓ ତୃତୀୟ ଦୁଇପୁଅଙ୍କୁ ଷ୍ଟେସନ ପଠାଇଥିଲି। ଖୁସିରେ ଡିଆଁମାରି ମାରି ଯାଉଁଯାଉଁ ତିନି ନମ୍ବର ପୁଅଟା ରେଳଲାଇନରେ ପଡିଗଲା ଏବଂ ତାର ନାକ କଟିଗଲା। ଘରକୁ ଆସି ଦେଖିଲି ପୁଅ ଫେରିନାହିଁ। ଶୁଣିଲି, ଡାକ୍ତରଖାନା ଯାଇଛି। ସେଠି ନାକ ସିଲେଇ ଫିଲେଇ ହେଲା। ଆଘାତପ୍ରାପ୍ତ ଛୁଆଁକୁ ମୁଁ ଯାଇ ଘରକୁ ଆଣିଲି। ସେହି ଗୋଟାଏ ଦୁଇଟା ବର୍ଷ ମୋର ଦୁଷ୍କାଳ; ମାନସିକ ଦୁଃଖ ଯନ୍ତ୍ରଣା ମୋର ବର୍ଣ୍ଣନା କରିହେବ ନାହିଁ। କୁଆଡେ କିଛି ମୁଁ ଠିକ୍ କରିପାରୁ ନଥାଏ।

ସେତେବେଳେ, ଯେଉଁଦିନ ମୁଁ ଫକୀର ମୋହନ କଲେଜରେ ଯୋଗଦେଲି, ସେହିଦିନ କଲେଜ ରୋଡରେ ଆଉ ଜଣେ ଚିହ୍ନା ବନ୍ଧୁ ହରିବନ୍ଧୁ ଶତପଥୀଙ୍କ ସହ ଦେଖାହେଲା। ସେ ରିଟାୟର କରିବା ଅବସ୍ଥାରେ ଥାନ୍ତି। ଡି.ପି.ଆଇ ଥିଲେ। ମୟୂରଭଞ୍ଜ ମିଶ୍ରଣ ଦିନ ସେ ପ୍ରସେଶନ୍‌ରେ ବାରିପଦାରେ ଉପସ୍ଥିତ ଥିଲେ। ମୁଁ ତାଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇବାପାଇଁ ଯାଇଥିଲି। ଖଣ୍ଡିଏ ଖାତା ଧରି ସେ ସାହିତ୍ୟିକ ବନ୍ଧୁମାନଙ୍କ ପାଖରୁ ଫକୀର ମୋହନ ସାହିତ୍ୟ ପରିଷଦପାଇଁ ଚାନ୍ଦା ଆଦାୟକରୁଥାନ୍ତି। ତାଙ୍କରି ସାଙ୍ଗରେ ଦେଖାହେଲା, ଆଳାପ ଆଲୋଚନା ହେଲା ଏବଂ ସେ ଷ୍ଟେସନ ରୋଡରେ ଗୋଟିଏ ବହି ଦୋକାନ ଖୋଲିବେ ବୋଲି ମୋତେ କହିଲେ। ସେହି ଦୋକାନରେ ବାଲେଶ୍ୱରରେ ଥିଲାବେଳେ କିଛିବର୍ଷ ପର୍ଯ୍ୟନ୍ତ ଅନେକ ସନ୍ଧ୍ୟା କଥାବାର୍ତ୍ତାରେ କଟାଇଛି। ସେ ମୋ ପ୍ରତି ଅନେକ ସହାନୁଭୂତି ଓ ସମବେଦନା ଜଣାଇଛନ୍ତି ଏବଂ ସାହିତ୍ୟ ସାଧନାରେ ମଧ୍ୟ ଉତ୍ସାହ ଦେଇଛନ୍ତି। ସେ ନିଜେ ଥିଲେ ଜଣେ ସାହିତ୍ୟିକ।

ସେସମୟରେ ମୁଁ ପ୍ରାୟ ଅଧା ପାଗଳା ହୋଇ ବୁଲୁଥାଏ। କଲେଜରୁ ଘରକୁ ନ ଫେରି ସିନେମା ଦେଖିବାରେ ସମୟ କଟାଏ। ଦିନେ ଦିନେ ମ୍ୟାଟିନି ସୋ ଦେଖିସାରି ଇଭିନିଙ୍ଗ୍ ସୋ ମଧ୍ୟ ଦେଖେ। ଛୁଆପିଲାଙ୍କ ପ୍ରତି ମୋର ଅବହେଳା ନଥାଏ। ଗାଈଟିଏ ସଦାସର୍ବଦା ଯେମିତି ତାର ଛୁଆଉପରେ ନଜର ରଖିଥାଏ। ମୁଁ ପ୍ରାୟ ଚାଲିଚାଲି କଲେଜରୁ ଘରକୁ ଫେରେ ଅନ୍ଧକାର ରାସ୍ତାରେ। ଅନ୍ଧକାର ବାହାରେ ଓ ଭିତରେ। ସହରରେ ଇଲେକ୍ଟ୍ରିକ୍ ଆଲୁଅ କ୍ୱଚିତ୍ ଥାଏ। ମୁଁ ଯେଉଁ ଇଲାକାରେ ଥାଏ, ସେଠି କେତେଟା କିରୋସିନି ଆଲୁଅ ଥାଏ।

ଏହି ସମୟରେ ଅକସ୍ମାତ୍ ଦିନେ ସନ୍ଧ୍ୟାରେ ଅନ୍ୟ ଜଣେ ସହକର୍ମୀ, ଚିନ୍ତାମଣି ବେହେରାଙ୍କ ସହିତ ଦେଖାଦେଲା ଏକ ଦେବଦୂତପରି। ମୟୂରଭଞ୍ଜର କପ୍ତିପଦାରେ ତାଙ୍କର ଘର; ବହୁ ଦିନରୁ ମୁଁ ତାଙ୍କୁ ଚିହ୍ନିଥାଏ। ସିନେମା ଛକରେ ତାଙ୍କ ସହିତ ମୋର ଦେଖା। ସାହିତ୍ୟ ବିଷୟରେ ଆମେ ଆଳାପ ଆଲୋଚନାକଲୁ। ଫକୀରମୋହନ କଲେଜରେ ଯୋଗଦେବା ପରେ Common roomରେ ମୁଁ କଥାବାର୍ତ୍ତା କରେ। ଅଧ୍ୟାପକଗଣ ମୋର ମୁଗ୍ଧ ଶ୍ରୋତା। ଦିନେ ବନ୍ଧୁ ଚିନ୍ତାମଣି ଭର୍ତ୍ସନାକରି ମୋତେ କହିଲେ "ଆପଣ ବିଦୂଷକ ପରି ହେଁ ହେଁ, ଫେଁ ଫେଁ କରି କାହିଁକି କାଳ କଟାଉଛନ୍ତି ? ଲେଖାଲେଖିରେ କାଳ କଟାନ୍ତୁ, ଆପଣଙ୍କ ଭିତରେ ମସଲା ଅଛି। 'ଭଞ୍ଜ ପ୍ରଦୀପ'ରେ ପ୍ରକାଶିତ ଆପଣଙ୍କ ଲେଖା, ବିଶେଷକରି 'ଫକୀରମୋହନ ସେନାପତି' ନାମରେ ଅସମ୍ପୂର୍ଣ୍ଣ ପ୍ରବନ୍ଧଟି ବଡ଼ ଦାମିକା। ସେଇଟା ଆପଣ ଚାଲୁ ରଖନ୍ତୁ।" ତାଙ୍କରି କଥା ମୋ ମନକୁ ପାଇଲା ଏବଂ ମୁଁ ଲେଖାଲେଖିରେ କାଳକଟାଇବି ଭାବିଲି।

ବଜାର ଭିତରେ ମୋର ଘରଟିଏ ଲୋଡ଼ା ପଡ଼ିଲା। ଛୁଆଗୁଡ଼ାକୁ ତାଙ୍କ ସ୍କୁଲ୍ ବଡ଼ଦୂର ହେଲା। ଘର ଖୋଜୁ ଖୋଜୁ ମୋର ଦେଖାହେଲା ଜଣେ ଅଦ୍ଭୁତ ଲୋକ ସହିତ, ନାଁ ତାଙ୍କର ନିବାରଣ ସରକାର। ସେ ଏକ ବିଚିତ୍ର ଲୋକ; ଖାଲି ଦେହରେ ଥାନ୍ତି। ଅସ୍ଥିଚର୍ମ। ଗୋଟିଏ ହାତ ଖଣ୍ଡିଆ। କହୁଣି ତଳକୁ କଟା ହୋଇଛି। ସେ କହନ୍ତି ଯେ- ସେ ନିଜେ କାଟିଦେଇଛନ୍ତି। ଆଉ କେହି କହେ ଜନ୍ମରୁ ସେମିତି ହାତ ଖାଣ୍ଡିଆ। ମୁହଁରେ ସବୁବେଳେ "ହରେରାମ" "କେଷ୍ଟ କେଷ୍ଟ"। କେତେବେଳେ କେମିତି ମୁଣ୍ଡରେ ପଗଡ଼ି। ଏକାବେଳକେ ଦରିଦ୍ର ଥିଲେ ବୋଲି କହନ୍ତି। ପିଲା ବୟସରେ ଜନୈକ ଲଳିତ ମୋହନ ସରକାରଙ୍କ ଘରେ ସେ ଅଧମ ଅବସ୍ଥାରେ କଟାଉଥିଲେ। ତାଙ୍କ ପ୍ରଥମ ସ୍ତ୍ରୀ ସ୍ୱର୍ଗତ। ଗୋଟିଏ ପୁଅ ଓ ଝିଅ। ଦ୍ୱିତୀୟ ପତ୍ନୀ ଗ୍ରହଣ କରିଛନ୍ତି। ତାଙ୍କ ତରଫରୁ ନିବାରଣ

ବାବୁଙ୍କର ତିନିପୁଅ। ଭାରି ଧର୍ମଭୀରୁ। ତାଙ୍କର ଦ୍ୱିତାଲା କୋଠା। ତା'ଛଡ଼ା ସମୁଦ୍ର କୂଳରେ ଗୁଡ଼ାଏ ଜମିଅଛି। ରାସ୍ତାଘାଟରେ ଯାଉଥିଲା ବେଳେ 'ଜୟ ! ମା କାଳୀ' ଚିତ୍କାର ସବୁବେଳେ ତାଙ୍କ ମୁହଁରୁ ଶୁଣାଯାଉଥାଏ। ଭାରି କାଳୀଭକ୍ତ ଥିବାରୁ, କାଳୀ ମନ୍ଦିରରେ ଅନେକ ସମୟ କଟାନ୍ତି। ବଳଙ୍ଗ ନଦୀ କୂଳରେ ବାଲିଘାଟରେ ମାଗିମାଗି ଗୋଟିଏ ମନ୍ଦିର ତୋଳିଥାନ୍ତି। ସେଠି ନାନା ଜାତିର ଠାକୁର ଥାନ୍ତି। ନିଜପାଇଁ ସମାଧିଟିଏ ବି କରିଥାନ୍ତି; ମରିଗଲେ ତାଙ୍କୁ ଶୁଆଇ ଦେବା କଥା। ବାକି ସବୁ କାମ ଶେଷ ହୋଇଅଛି।

ଦିନେ ସେ ଜଣେ ବୋଟାନି ଅଧ୍ୟାପକ-ବନ୍ଧୁ ଏବଂ ଆଉ ଜଣଙ୍କ ସହିତ ବସିଥାନ୍ତି। କଥା ପ୍ରସଙ୍ଗରେ ସେ ଜାଣି ପାରିଲେ ମୋ ସ୍ତ୍ରୀ ନାହିଁ। ଛୁଆପିଲାଗୁଡ଼ାକ ବଡ଼ ହଇରାଣ ହେଉଛନ୍ତି। କଲେଜ ଓ ସ୍କୁଲ୍‌ଠାରୁ ବହୁ ଦୂରରେ ରହି ମୁଁ ବଜାର ଭିତରେ ଘର ଖୋଜୁଛି। ସେ ସମବେଦନା ଜଣାଇଲେ ଏବଂ ତାଙ୍କର ଘରଟିଏ ଫାଙ୍କା ଅଛି ବୋଲି କହିଲେ। ମୁଁ ତାଙ୍କର ସେହି ଫାଙ୍କା ଘରଟି ପାଇଲି ମାସକୁ ୬୬ ଟଙ୍କା ଭଡ଼ାରେ ଏବଂ ତୁରନ୍ତ ଉଠି ଆସିଲି ସହଦେବଖୁଣ୍ଟାରୁ। କଲେଜ ପାଖ, ହାଇସ୍କୁଲ ପାଖ, ଡାକ୍ତରଖାନା ପାଖ, ସେହି ଘରକୁ। ଘର ପଛରେ ଗାଡ଼ିଆଟିଏ କାଳୀ ମନ୍ଦିରକୁ ଲାଗି । ପ୍ରାୟ ୧୮ ବର୍ଷ କାଳ ମୁଁ ସେହି ଘରେ ରହିଗଲି। ମୋର ଅଧିକାଂଶ ସାହିତ୍ୟ କୃତି ସେହି ଘରେ ଲେଖା। ଛୁଆପିଲାଙ୍କୁ ପାଠ ପଢ଼ିବାପାଇଁ ଭାରି ସୁବିଧାହେଲା। ଖେଳପାଇଁ ମଧ୍ୟ ପରିସର ଉନ୍ମୁକ୍ତ ହେଲା। ଅଧିକାଂଶ ଦିନ ଘର ଆଗ ପଡ଼ିଆରେ ଫୁଟବଲ୍ ଖେଳ ହୁଏ। ବଡ଼ ବଡ଼ ଟିମ୍ କମ୍ପିଟିସନ୍‌ରେ ଯୋଗ ଦିଅନ୍ତି। କଲେଜ ଅଧ୍ୟାପକମାନେ ଖେଳ ଦେଖିବାପାଇଁ ଆସନ୍ତି। ହିନ୍ଦୀ ଅଧ୍ୟାପକ ଯାଦବ ମୋର ଖେଳଦେଖା ସାଙ୍ଗ। ଆମେ ସବୁ ପ୍ରାୟ ବିନା ଟିକଟରେ ଖେଳଦେଖୁ।

ସାନଛୁଆଟି (ମୁନୁ) ପଡ଼ୋଶୀ ସରକାରଙ୍କ ଘରକୁ ଯାଇ ଖେଳାଖେଳି କରେ। ପ୍ରତି ଅଧଘଣ୍ଟାରେ ଥରେ ଘରକୁ ଦୌଡ଼ି ଆସେ, ଫେର୍ ଚାଲିଯାଏ। ସେମାନେ ବଙ୍ଗାଳୀ, ଓଡ଼ିଆରେ ବି କଥା କହିପାରନ୍ତି। ତାଙ୍କ ସ୍ନେହ ଶ୍ରଦ୍ଧା ମୋ ପ୍ରତି ଅତୁଟ। ମୋତେ "ଶତପଥୀବାବୁ" ବୋଲି ଡାକନ୍ତି। ତାଙ୍କର ଅଗାଧ ସମ୍ପତ୍ତି। ବହୁ ବର୍ଷ ପୂର୍ବରୁ ସେମାନେ ପୂର୍ବ ବଙ୍ଗଦେଶରୁ ଆସିଥିଲେ ହୁଏତ ମାଛ ଖାଇବାପାଇଁ। ବାଲେଶ୍ୱରରେ ମାଛ ବହୁତ ଶସ୍ତା ଥିଲା। ମୁଁ ବହୁତ ମାଛ ଖାଇଛି ବାଲେଶ୍ୱରରେ-ସମୁଦ୍ରି କଡ଼ମା, ଫିରକି, ଚମ୍ପା। ମାଛ ସେରକୁ ଆଠଣା। ଦେଶୀ ଛଟପଟ କରୁଥିବା କିଲିକିଆ କଟା ରୋହୀମାଛ ସେରକୁ ବାରଣା, ଇଲିସି ଦୁଇଟଙ୍କା। ସେଇ ଘରେ ରହିଗଲୁ। ବନ୍ଧୁ ଚିନ୍ତାମଣି ବାବୁଙ୍କ ଟାଉନହଲ

ନିକଟସ୍ଥ ବସାକୁ ଯିବାକୁ ମୋତେ ବହୁତ ପାଖ ପଡିଲା । ମୁହାଁମୁହିଁ ସିନେମା ହଲ୍ ଦୁଇଟା । ସେଠି ସିନେମା ଛକରୁ ଶହେଗଜରେ ତାଙ୍କ ଘର । ତାଙ୍କ ବଡଝିଅ ଧରାଶ୍ରୀ ମୋ ପୁଅ ଟୁନୁ ସାଙ୍ଗରେ ଘରପାଖ ସ୍କୁଲ୍‌ରେ ପଢୁଥାଏ । ମୁନୁକୁ ତା ସାଙ୍ଗରେ ଆଡ୍‌ମିସନ୍ କରାଇଦେଲି । ସରକାର ବାବୁଙ୍କ ଘରକୁ ଲାଗି ରବି ସରକାରଙ୍କର ଗୋଟିଏ ଘର ଥିଲା ।

ସେହି ଘରେ କାଳକ୍ରମେ ସୋର ମଙ୍ଗଳପୁରର ଗାନ୍ଧୀବାଦୀ ଜୟକୃଷ୍ଣ ବିଶ୍ୱାଳ 'ଗାନ୍ଧୀତତ୍ତ୍ୱ' ଗବେଷଣା କେନ୍ଦ୍ରଟିଏ ଖୋଲିଲେ । ସାହିତ୍ୟ ଓ ଗାନ୍ଧୀତତ୍ତ୍ୱ ବିଷୟରେ ସଭାସମିତି ହେଲେ ସେ ଡାକନ୍ତି ଏବଂ ଆମେ ଯେତେ ସାହିତ୍ୟପ୍ରେମୀ ସେଇଠି ଉପସ୍ଥିତି ହେଉଁ । ସେତେବେଳକୁ ମୁଁ ଓଡ଼ିଆ କବିତା ସଂକଳନଟି କେନ୍ଦ୍ର ସାହିତ୍ୟ ଏକାଡେମି ନିକଟରେ ଉପସ୍ଥାପନ କରିସାରିଥାଏ । "ସଞ୍ଚୟନ" କଲିକତାରେ ଛପା ହେଉଥାଏ, ଯାହାର ପ୍ରୁଫ୍ କପି ସବୁ ମୋ ପାଖକୁ ଆସିବାକୁ ଆରମ୍ଭ କରିଥାଏ । ମୁଁ ସଂଶୋଧନ କରି ପଠାଇ ଦେଉଥାଏ । ମୌଳିକ ଲେଖା ବାରିପଦାରେ ଥିଲାବେଳେ ଯାହା ଲେଖିଥିଲି, ତାର ଉତ୍ସଟା ଯେମିତି ପ୍ରେରଣା ବା ଉତ୍ସାହ ଅଭାବରୁ ସରିଗଲା । ଅନୁବାଦ ଆରମ୍ଭକଲି । କଲେଜରେ ଏକାଙ୍କିକାର ଘୋର ଅଭାବ ଲକ୍ଷ୍ୟକଲି । ସେତେବେଳେ କଲେଜ କ୍ଲାସ୍‌ରେ ଯେଉଁ ଇଂରାଜୀ ଏକାଙ୍କିକାମାନ ପଢାଯାଉଥିଲା, ସେଗୁଡା ଖୁବ୍ ଉଚ୍ଚକୋଟୀର । ତାହାର ଅନୁବାଦ କାମ ଗୋଟାଏ ପରେ ଗୋଟାଏ ଧରିଲି । ୯ଟା ଏକାଙ୍କିକାର ଅନୁବାଦ ପରେ କଟକରେ ସେସବୁ ଛାପିବାକୁ ଦେଲି ଏବଂ 'ନବନାଟିକା' ନାମରେ ବହିଟି ପ୍ରକାଶିତ ହେଲା । କେନ୍ଦ୍ର ସାହିତ୍ୟ ଏକାଡେମୀର କବିତା "ସଂଚୟନ" ଓ ଏକାଙ୍କିକା "ନବନାଟିକା" ହେଲା ମୋର ଦୁଃଖ ଭୁଲିବାର ମାଧ୍ୟମ । ବାଲେଶ୍ୱରକୁ ଆସି, ବନ୍ଧୁ ଚିନ୍ତାମଣି ବାବୁଙ୍କ ପାଖରୁ ଭର୍ତ୍ସନା ଖାଇ, ମୁଁ ପୁନର୍ବାର ସାହିତ୍ୟ ସୃଷ୍ଟିରେ ମନଦେଲି । ନୂତନ ପ୍ରସ୍ଥ ଲେଖା ଧରିଲି ଗଳ୍ପରୁ । ମାତ୍ର ଗୋଟିଏ ଗଳ୍ପ "କାୟା ଛାୟା" 'ଭଞ୍ଜ ପ୍ରଦୀପ'ରେ ଛପା ହୋଇଥିଲା । ସାହିତ୍ୟର କେଉଁ ବିଭାଗଟା ମୋତେ ସୁହାଇବ ଜାଣିବାପାଇଁ ବହୁତ ସମୟ ଲାଗିଥିଲା । ମଝିରେ ମଝିରେ କଲମକୁ ଧାରୁଆ କରିବାପାଇଁ ରମ୍ୟରଚନା ଲେଖେ ।

ନୂତନ ପ୍ରସ୍ଥର ମୋର ପ୍ରଥମ ଗଳ୍ପଟି ହେଲା 'ଜାଣିଚିଆଁ' ଏବଂ ପ୍ରଥମ ଗଳ୍ପ ସଂଚୟନଟିର ମଧ୍ୟ ସେହି ନାମ । ଗଳ୍ପର ଝଲକ୍‌ଟି ମୁଁ ପ୍ରଥମେ ଲେଖିଥିଲି ପାରଳାଖେମୁଣ୍ଡିର ପେଲେସ୍ ଷ୍ଟ୍ରୀଟ୍‌ରେ ଥିଲାବେଳେ ଏବଂ ତା'ପରେ ବାଲେଶ୍ୱରରେ ଦିନେ ସମ୍ପୂର୍ଣ୍ଣ ଗଳ୍ପଟି ଲେଖା ଆରମ୍ଭକରିଦେଲି । ଯେଉଁଦିନ ଲେଖା ସରିଲା, ସେହି ଦିନ ମୁଁ ଚିନ୍ତାମଣି ବାବୁଙ୍କ ଘରକୁ ଗଲି । ସେଠି ସନ୍ଧ୍ୟାବେଳେ ଦେଖିଲି ତାଙ୍କ ସାଙ୍ଗରେ ଅଛନ୍ତି

ଗାଳ୍ପିକ ମହାପାତ୍ର ନୀଳମଣି ସାହୁ ଓ ନୂତନ କବି ବ୍ରଜନାଥ ରଥ। ସେମାନଙ୍କ ଆଗରେ ଗପଟି ସନ୍ତର୍ପଣରେ ପଢିଗଲି। ଚିନ୍ତାମଣି ବାବୁ କିଛି କହନ୍ତି ନାହିଁ। ଗପଟି ସେ ତନ୍ମୟହୋଇ ଶୁଣିଗଲେ; କବି ବନ୍ଧୁ ବ୍ରଜନାଥ ରଥ ମଧ୍ୟ। ମହାପାତ୍ର ନୀଳମଣି ସାହୁ ଭଲ ଶ୍ରୋତା ପରି ଏମୁଣ୍ଡରୁ ସେମୁଣ୍ଡ ଶୁଣିଲେ ଏବଂ ମୁଁ ଗପ ପଢିସାରିଲା ବେଳକୁ କହିଲେ "ଇଏ ବି ତ ଗୋଟିଏ ଗପ"। ସମସ୍ତେ ଏକମତ ହେଲେ ଯେ, ଏହାକୁ 'ଝଙ୍କାର'କୁ ପଠାଇ ଦିଆଯାଉ। ତାହାହିଁ କଲି; ଗପଟିକୁ ଆଉ ଥରେ ଉତାରି ପଠାଇଦେଲି 'ଝଂକାର'କୁ।

ତା ପରଦିନ ଠାରୁ ମୁଁ ସନ୍ଧ୍ୟାବେଳେ ବରାବର ବ୍ରଜବାବୁଙ୍କର ସିନେମା ଛକରେ ଥିବା ବିଶ୍ୱଶ୍ରୀ ପ୍ରେସକୁ ଯିବାରେ ଲାଗିଲି। ସେଠି ଗୋଟାଏ ସାହିତ୍ୟିକ କ୍ଲବ ଗଢିଉଠିଥାଏ ବ୍ରଜବାବୁଙ୍କର ପ୍ରେରଣାରେ। ବ୍ରଜବାବୁ ନିଜେ ଜଣେ କବି। ତାଙ୍କ ପାଖରେ ସଞ୍ଜହେଲେ ଯୁଟନ୍ତି ପ୍ରହରାଜ ସତ୍ୟନାରାୟଣ ନନ୍ଦ, ଚଣ୍ଡୀଚରଣ କର, ଶୁଭେନ୍ଦୁ ମୋହନ ଦାସ, ନାରାୟଣ ପଟ୍ଟନାୟକ, ସୁରେଶ ମହାନ୍ତି, ଚନ୍ଦ୍ର କୁମାର ମହାନ୍ତି ଇତ୍ୟାଦି। ମଝିରେ ମଝିରେ ବ୍ରକବାବୁ ଚା' ମଗାନ୍ତି। ଆହୁରି ଯୁଟନ୍ତି ଅନ୍ୟ କେତେ ସାହିତ୍ୟପ୍ରେମୀ। ମୁଖ୍ୟତଃ ସାହିତ୍ୟ ଆଲୋଚନାହୁଏ। ଗୋଡରେ ଛପାକଳକୁ ଚଳାଉଥିବା ଯୁବକଟି ମଧ୍ୟ ସାହିତ୍ୟରେ କ୍ରମେ ଆଗ୍ରହୀହେଲା। ଖୁବ୍ ଛୋଟିଆ ରୁମ୍‌ଟି। ବ୍ରଜବାବୁ ଏକାଧାରରେ printer, proof reader, press mechanic, ଏବଂ ଆହୁରି କେତେ କ'ଣ। ସମୟ ପାଇଲେ ସେହି ପ୍ରେସ୍‌ରେ ବସି କବିତା ମଧ୍ୟ ଲେଖନ୍ତି। ପଞ୍ଚାନନ ଦାଶ ହେଉଛନ୍ତି ଜଣେ ସେଟଲ୍‌ମେଣ୍ଟ କର୍ମୀ ଓ ପାନଦୋକାନୀ। ଏମାନେ ସମସ୍ତେ ଫକୀରମୋହନ ସାହିତ୍ୟ ପରିଷଦର ଉତ୍ସାହୀ ଯୁବକ ଓ କାର୍ଯ୍ୟକର୍ତ୍ତା। ପଞ୍ଚାନନ ଆଜୀବନ ସମ୍ପାଦକ। ଏବେ ସେ ଜଣେ ନାମ୍‌ଯାଦା କବି।

ସାହିତ୍ୟର ଅନ୍ୟଏକ ପୀଠସ୍ଥଳୀ ହେଲା ଫକୀରମୋହନଙ୍କର 'ଶାନ୍ତିକାନନ'। ଦିନେ ଯାଇ 'ଶାନ୍ତିକାନନ' ଦେଖିଆସିଲି। ଫକୀରମୋହନଙ୍କର ମୂର୍ତ୍ତିଟି ଦର୍ଶନୀୟ ବସ୍ତୁ। ଫକୀରମୋହନ ନିଜେ ବସି ସେ ପ୍ରତିମୂର୍ତ୍ତିଟି ଗଢାଇଥିଲେ। ଜଣାପଡ଼େ, ଯେମିତି ସିଏ ଥିଲେ ଜଣେ ଦୀର୍ଘକାୟ ପୁରୁଷ। ଚୂନବାଲିରେ ତିଆରି ମୂର୍ତ୍ତିଟି, କାଳେ ଉତ୍ତରପୁରୁଷ ତାଙ୍କୁ ମନେପକାଇବେ ନାହିଁ। ସେପାଇଁ ସେ ଏହାକୁ କରିଦେଇ ଯାଇଛନ୍ତି। ତାଙ୍କର ପ୍ରକୃତ ଚେହେରା ସହିତ ମୂର୍ତ୍ତିଟିର କୌଣସି ସାମଞ୍ଜସ୍ୟ ଅଛି କି ନାହିଁ, ସେଇଟା ଫକୀରମୋହନ ବା ଶିଳ୍ପୀ ଆନନ୍ଦ ମିଶ୍ର ନଜର ଦେଇନାହାନ୍ତି ବୋଧହୁଏ; କିନ୍ତୁ ଏହାକୁ ଦେଖିଲେ ସେ

କୌଣସି ଲୋକ ଫକୀରମୋହନଙ୍କ ରୂପର ଏକ ମୋଟାମୋଟି କଳ୍ପନା କରିପାରିବ ନିଶ୍ଚୟ। ଫକୀରମୋହନଙ୍କର ନିଜ ହାତରେ ପୋତା ହୋଇଥିବା କେତେଗୁଡିଏ ଗଛ ମଧ୍ୟ ଦେଖିଲି। ସର୍ବଧର୍ମର ସମନ୍ୱୟ ସ୍ତମ୍ଭଟି ମୋତେ ଯଥେଷ୍ଟ ଉଦ୍ଦୀପନା ଯୋଗାଇଲା। ଆଗରୁ ବାରିପଦାରେ ଥିଲାବେଳେ 'ଭଞ୍ଜ ପ୍ରଦୀପ'ରେ ଫକୀରମୋହନ ସେନାପତିଙ୍କର ବିଷୟରେ ଯେଉଁ ୧୫/୨୦ ପୃଷ୍ଠା ଛାପିଥିଲି, ତାହା ସେହିଠି ରହିଗଲା। ମୁଁ ଯଦି ସେହି ଲେଖାଟି ବନ୍ଦକରି ନ ଥାନ୍ତି ଓ ବହିକରି ଛପାଇଥାନ୍ତି, ତେବେ ଫକୀରମୋହନଙ୍କ ବିଷୟରେ ତାହା ସର୍ବପ୍ରଥମ ସମାଲୋଚନା ଓ ଜୀବନ ଚରିତ ବୋଲି ପରିଗଣିତ ହୋଇଥାନ୍ତା। ବାଲେଶ୍ୱରକୁ ଆସି 'ଶାନ୍ତିକାନନ' ଦେଖି ଆଉବେଳେ ସେଇ ଅସମ୍ପୂର୍ଣ୍ଣ ଲେଖା ସମ୍ପୂର୍ଣ୍ଣକରିବା ପରିବର୍ତ୍ତେ, ଫକୀରମୋହନଙ୍କୁ ଗୁରୁ କରି, ମୁଁ ତାଙ୍କ ବିଷୟରେ ଲେଖାଲେଖି ଅନ୍ୟଦିଗରେ ଚଳାଇଲି। ତାଙ୍କର କେତେକ ଗଳ୍ପ ଇଂରାଜୀରେ ଅନୁବାଦ କଲି; ଆଉ କେତେଟା ଗଳ୍ପକୁ ଏକାଙ୍କିକାରେ ପରିଣତ କଲି। ଛମାଣ ଆଠଗୁଣ୍ଠ ବାରମ୍ବାର ପଢିଲି ଓ ପ୍ରାୟ୍ ବାୟା ହୋଇଗଲି। ତାଙ୍କ ବିଷୟରେ ଏଠି ସେଠି ବକ୍ତୃତା ମଧ୍ୟ ଦେବାକୁ ଆରମ୍ଭକଲି।

ସଭା ସମିତିରେ ବକ୍ତୃତା ଦେବାକୁ ମୁଁ ଶିଖି ନଥିଲି। ଚିନ୍ତାମଣି ବାବୁଙ୍କ ସଂସ୍ପର୍ଶରେ ଆସି ମୁଁ ସେ ବିଷୟରେ ଯତ୍ନବାନହେଲି। ସେ ଥରେ ବକ୍ତୃତା ଦେବାପାଇଁ ନିମନ୍ତ୍ରିତ ହୋଇଥାନ୍ତି କାମଶୂଳୀ ହାଇସ୍କୁଲକୁ, ଯେଉଁ ସ୍କୁଲଟି ବାଲିଆପାଳ ରାସ୍ତାରେ ଲଙ୍ଗଳେଶ୍ୱର ଯିବା ବାଟରେ ପଡେ। ସେ କାହିଁକି କେଜାଣି ଗଲେନାହିଁ। ମୋତେ ତାଙ୍କ ବଦଳରେ ଯିବାପାଇଁ କହିଲେ। ଏଇଠି କହି ରଖେ, ଯେତେ ଜଣ ଓଡିଆ ସାହିତ୍ୟିକଙ୍କୁ ଭେଟିଛି, ସେମାନଙ୍କ ଭିତରେ ଚିନ୍ତାମଣି ବାବୁ, ରବିନାରାୟଣ ବରାଳ ଏବଂ ବିଭୁଦତ୍ତ ମିଶ୍ରଙ୍କ ବକ୍ତୃତା ଅନୁପମ। ଏମିତି ନିଛକ, ନିର୍ଭୁଲ ଭାବରେ ସେମାନେ କହିଯାନ୍ତି, ଯାହା ଚମତ୍କାରିତା ସୃଷ୍ଟିକରେ। ତାଙ୍କରିଠାରୁ ମୁଁ ସୂଚନା ଓ ଉପଦେଶ ନେଇ ପ୍ରଥମେ ହାଇସ୍କୁଲ୍‌ରେ ବକ୍ତୃତା ଦେବାପାଇଁ ବାହାରିଲି। ରାତିରେ ଘରଛାଡି ରହିଯିବାପାଇଁ ହେଲେ ମଧ୍ୟ ମୁଁ ବକ୍ତୃତା ଦେବା ଆଗ୍ରହରେ ଛୁଆପିଲାଙ୍କ କଥା ମନେ ନ ପକାଇ ସେଠି ବକ୍ତୃତା ଦେଲି ଏବଂ ରାତିରେ ରହିଗଲି। ମୋର ଯାହା ଧାରଣା ହେଲା, ମୁଁ ମନ୍ଦ କହିନାହିଁ। ପରେ ପରେ ବନ୍ଧୁ ଚିନ୍ତାମଣିବାବୁ ମୋତେ ଛୋଟକାଟର ହାଇସ୍କୁଲ୍‌ମାନଙ୍କୁ ପଠାଇଲେ ଏବଂ ଏ ଗୋଟିଏ ନୂଆ ପଥ ଖୋଲିଗଲା।

"କାଣିଚିଆଁ" ଗଳ୍ପଟି 'ଝଙ୍କାର'ରେ ପ୍ରକାଶିତ ହେବା ଦେଖି ମୁଁ ଆନନ୍ଦରେ ଅଭିଭୂତ ହେଲି ଏବଂ ଅନ୍ୟାନ୍ୟ ଗଳ୍ପ ଗୋଟିକ ପରେ ଗୋଟିଏ ଲେଖିବାକୁ ଲାଗିଲି। ଦ୍ୱିତୀୟ ଗଳ୍ପଟି

ହେଲା "ଗୋଟିଏ ଆଳୁ"; ତାପରେ "ନୀଡାଶ୍ରୟୀ" ବୋଲି ଗଳ୍ପଟିଏ ଲେଖିଲି ଚଢେଇ ମାନଙ୍କ ବିଷୟରେ। ମହାପାତ୍ର ନୀଳମଣି ସାହୁ ସେ ଗଳ୍ପଟି ପଢି ତାରିଫ୍ କଲେ ଏବଂ ଚିଠିରେ ଲେଖିଲେ ଯେ 'ମୁଁ ଗୋଟିଏ ନୂଆ ଆଲୋକ ଦେଖିବାକୁ ପାଇଲି'। ଏମିତି ଗପ ପରେ ଗପ ଲେଖାଚାଲିଲା। ପ୍ରତିଟି ଗଳ୍ପ ଭାବିସାରିବା ପରେ ମୁଁ ସନ୍ଧ୍ୟାବେଳେ ବ୍ରଜବାବୁଙ୍କ ପ୍ରେସ୍‌କୁ ଯାଏ। ସେଇ ଗପଟି ଆଗ କହିଯାଏ ଏବଂ ଶ୍ରୋତାମାନଙ୍କ ଆଖି ଉପରେ ନଜର ରଖି ଗପର ଭାବ ଓ ଭାଷାର ପ୍ରତିକ୍ରିୟା ଲକ୍ଷ୍ୟ କରୁଥାଏ। ଯଦି ଗଳ୍ପଟି ଆଦର ଲାଭ କଲା, ତେବେ ଘରକୁ ଫେରି ଲେଖାଲେଖି ଆରମ୍ଭ କରିଦିଏ ଏବଂ ସୁବିଧା ସୁଯୋଗ ପାଇଲେ, ପୂର୍ଣ୍ଣିଙ୍ଗ ଅଧିବେଶନରେ ଗଳ୍ପଟି ପଢେ। ତାପରେ 'ଝଙ୍କାର'କୁ ପଠାଇଦିଏ। ଛପା ହେଲେ କାହା କାହା ପାଖରୁ ପ୍ରଶଂସା ସୂଚକ ମନ୍ତବ୍ୟମାନ ଆସେ। ପ୍ରକାଶିତ ହେବା ପରେ ସୀତାକାନ୍ତ ମହାପାତ୍ର ବାରିପଦାରୁ ଲେଖିଥିଲେ (ଇଂରାଜୀରେ) "Your 'Dunlop Agent' is thrilling"। ଏମିତି ପ୍ରଶଂସାଟିଏ କାହା ମୁହଁରୁ ଶୁଣିଲେ ବା ପଢିଲେ ମନରେ ବହୁତ ଉତ୍ସାହ ଆସେ ଆଗେଇବାପାଇଁ। ଅନୁବାଦ କରିଥିବା ଏକାଙ୍କିକା "ନବନାଟିକା" ନାମ ଦେଇ ପ୍ରକାଶ କରିଦେଲି। "ପିଲିସକ" ତହିଁରେ ଅର୍ନ୍ତଭୁକ୍ତ। ଯାହା ପରେ ହାଇସ୍କୁଲ୍‌ରେ ପଡା ହେଲା ଏବଂ ପରେପରେ କଲେଜରେ ମଧ୍ୟ ପାଠ୍ୟକ୍ରମରେ ରହିଲା। ସାହିତ୍ୟ ଦୃଷ୍ଟିରୁ ମୁଁ ନାନାଆଡୁ ଆନନ୍ଦ ପାଇଲି ଏବଂ ସ୍ତ୍ରୀଙ୍କ ବିୟୋଗ ପରେ ଜୀବନକୁ ସହ୍ୟକରିବା ଶକ୍ତିପାଇଲି। ମନର ପ୍ରଫୁଲ୍ଲତା ଫେରିଆସିଲା ଏବଂ ଲୁକ୍କାୟିତ ହୋଇ ରହିଥିବା ହାସ୍ୟରସ ମୋ କାମ ଓ କଥାରେ ପରିସ୍ଫୁଟ ହେବାକୁ ଲାଗିଲା। କିଏ ମୋତେ ଜୋକର କହିଲା, ଆଉ କିଏ ମୋତେ ହାସ୍ୟରସିକ କହିଲା।



## ।। ବାଉନ ।।

ଫକୀରମୋହନ କଲେଜରେ ଥିଲାବେଳେ I.A. ବା Pre-University କ୍ଲାସ୍‌ରେ ଇଂରାଜୀ ଗଦ୍ୟ ସଂକଳନରେ ବିନୋବାଙ୍କ ଭୂଦାନ ଆନ୍ଦୋଳନ ବିଷୟରେ ଲେଖାଟିଏ ପଢ଼ାଉଥାଏ। ବିନୋବାଜୀଙ୍କ ବିଷୟରେ ପିଲାଙ୍କୁ ପଢାଉପଢାଉ ଏହି ସନ୍ଥଙ୍କ ବିଷୟରେ ମୁଁ ଅନେକ ବିଷୟ ଜାଣିବାପାଇଁ ଆଗ୍ରହୀହେଲି। ଗାନ୍ଧୀଜୀଙ୍କ ବିଷୟରେ ବିଖ୍ୟାତ ବୈଜ୍ଞାନିକ ଆଇନଷ୍ଟାଇନ୍ ଲେଖିଥିଲେ : "ହଜାରେ ବର୍ଷ ପରେ ମନୁଷ୍ୟ ଜାତି ହୁଏତ ବିଶ୍ୱାସକରିବ ନାହିଁ ଯେ ଗାନ୍ଧୀ ଦିନେ ଆମରି ଏହି ମର୍ତ୍ତ୍ୟଭୂଇଁରେ ଥିଲେ।" ବିନୋବାଜୀଙ୍କୁ ଆନ୍ଧ୍ରପ୍ରଦେଶର ଲୋକେ ଯେମିତି ଜଣେ ସନ୍ଥ ବୋଲି ଭାବିଥିଲେ, ଯିଏକି ଏ ଧରାଧାମରେ ଜନ୍ମ ନେଇଛନ୍ତି, ଗରିବଙ୍କୁ ଜମି ବାଣ୍ଟିବାପାଇଁ। ବିନୋବାଜୀ କ୍ରମେକ୍ରମେ କିମ୍ବଦନ୍ତୀ ପୁରୁଷ ବନିଗଲେ। ଗାନ୍ଧୀଜୀ ଯେତେବେଳେ ସତ୍ୟାଗ୍ରହ କଲେ, ସେତେବେଳେ ସେ ବିନୋବାଙ୍କୁ ଏକ ନମ୍ବର ଶିଷ୍ୟ ବୋଲି କହୁଥିଲେ। ଆନ୍ଧ୍ର ପ୍ରଦେଶର ରାମଚନ୍ଦ୍ର ରେଡ୍ଡି ବିନୋବାଜୀଙ୍କ ସହିତ କଥାବାର୍ତ୍ତା କରି ଯେତେବେଳେ ସ୍ୱତଃପ୍ରବୃତ୍ତ ହୋଇ ଅଜାତରେ ଶହଶହ ଏକର ଜମି ଦାନକରିଥିଲେ, ସେତେବେଳେ ବୈପ୍ଳବିକ ଭୂଦାନ ଆନ୍ଦୋଳନ ଜନ୍ମନେଲା, ଏବଂ ସେହି ଘଟଣାରୁ ଅନେକେ ବିଶ୍ୱାସ କଲେ ଯେ, ଭାରତୀୟ ସମାଜରେ ଏକ ନାହିଁ ନଥିବା ଅଭୂତପୂର୍ବ ଓ ଅଶ୍ରୁତପୂର୍ବ ବିପ୍ଳବଟିଏ ଘଟିବାକୁ ଯାଉଛି।

ଦିନେ ଶୁଣାଗଲା- ବିନୋବାଜୀ ଓଡିଶା ଆସୁଛନ୍ତି ଏବଂ ବାଲେଶ୍ୱର ଜିଲ୍ଲାର ଉତ୍ତରପଟରୁ ସେ ଓଡିଶା ଜଗନ୍ନାଥ ରୋଡ୍ ଦେଇ ଆସିବେ। ଅତୀବ ଆଗ୍ରହରେ ଅନେକ ଗାନ୍ଧୀବାଦୀ ତାଙ୍କୁ ପାଛୋଟି ଆଣିବାପାଇଁ ଗଲେ ଏବଂ ସେଠାରୁ ସେ ଗାଁ ଗାଁ ବୁଲି ତାଙ୍କ ଭୂଦାନ କଥା ପରିପ୍ରଚାରକଲେ। ଅନେକ ଗରିବଲୋକ ମଧ୍ୟ ପାଦେ ଦୁଇପାଦ ଜମି ତାଙ୍କୁ ଅର୍ପଣ କରିବାକୁ ସଙ୍କୋଚ କଲେନାହିଁ। ସେ ପଦଯାତ୍ରାରେ ଆସୁଛନ୍ତି ବୋଲି ଶୁଣାଗଲା। ବିନୋବାଜୀ ବାଲେଶ୍ୱର ପହଞ୍ଚି 'ଉତ୍କଳ ବାଳାଶ୍ରମ'ରେ ଅବସ୍ଥାନକଲେ। ଆଶ୍ରମକୁ ରହଣି ସ୍ଥାନକରି ତାଙ୍କ କର୍ତ୍ତବ୍ୟ କରିଚାଲିଥାନ୍ତି। ଗୋଟିଏ ସଭା ମଧ୍ୟ ସେଠାରେ ଆହୂତ ହୋଇଥିଲା। ବିନୋବାଜୀ ଭାରି ଚିତ୍ତାକର୍ଷକ ବକ୍ତୃତା ଦେଇଥିଲେ। ସମାଜରେ ଧନୀ ଦରିଦ୍ର ଭିତରେ କିପରି ପାର୍ଥକ୍ୟ ରହିଯାଉଛି ଏବଂ ଅଧିକାଂଶ ଲୋକ କେମିତି ଭ୍ରଷ୍ଟାଚାରରେ ବୁଡି ରହିଛନ୍ତି ସେହି ବିଷୟରେ ସେ ସେଠାରେ ହୃଦୟସ୍ପର୍ଶୀ ଭାଷଣଟିଏ ଦେଇଥିଲେ। ମୁଁ ସେହି ସଭାରେ ଉପସ୍ଥିତ ଥିଲି। ତାଙ୍କର ଚେହେରା, ପୋଷାକପତ୍ର ମୋତେ ମୁଗ୍ଧ ଚକିତ କରିଦେଇଥିଲା।

ବକ୍ତୃତାରେ ପ୍ରସଙ୍ଗକ୍ରମେ ବିନୋଦଜୀ ନିମ୍ନ ଗଳ୍ପଟିର ଅବତାରଣା କରିଥିଲେ। କୌଣସି ଗ୍ରାମରେ ଜମିହୀନ ଗରିବଟିଏ ବାସ କରୁଥିଲା। ଦୁର୍ଯୋଗଯୋଗୁଁ ସେ ପ୍ରାୟ୍ ନିଃସ୍ୱ ହୋଇଗଲା। ଛୁଆପିଲା ଦାନାପାଣି ପାଇଲେନାହିଁ। ସମସ୍ତଙ୍କ ଅସ୍ଥିଚର୍ମ ହିଁ ସାର୍ହେଲା। କଙ୍କାଳର ସୀମାନାହିଁ। ଭୋକ ଉପାସରେ ପଡି ଛୁଆପିଲା କଲବଲ ହେଲେ। ତାପରେ ଦିନରାତି କ୍ରନ୍ଦନର ରୋଳ। ଗରିବ ଲୋକଟି କିଛି ଉପାୟ୍ ନପାଇ ପଡୋଶୀ ଧନୀଘରୁ ଚୋରିକଲା। ଧନୀ ଲୋକଟି ଥାନାକୁ ଯାଇ ଖବର ଦେବାରୁ ପୋଲିସ ଆସି ଗରିବଲୋକଟିକୁ ଧରି ଥାନାକୁ ନେଇଗଲା ଏବଂ କଚେରୀରେ ତାକୁ ହାଜରକଲା। ବିଚାରକ ସେ ଲୋକକୁ ଦୋଷୀ ସାବ୍ୟସ୍ତକରି ତିନିବର୍ଷ ସଶ୍ରମ କାରାଦଣ୍ଡ ଦେଲେ। ତିନିବର୍ଷ ପୂରି ଆସିଲା ବେଳକୁ କଏଦୀଟି କାନ୍ଦାକଟା ଆରମ୍ଭକଲା। ସାଙ୍ଗ କଏଦୀମାନେ ତାକୁ ପଚାରିଲେ, ତୋର ତ ଖଲାସ୍ ହେବା ଦିନ ପାଖେଇ ଆସିଲା, "ତୁ ଖୁସି ନହୋଇ କାନ୍ଦୁଛୁ କାହିଁକି ?" ସେ କହିଲା -

"ମୁଁ କାନ୍ଦୁଛି ଭବିଷ୍ୟତ କଥା ଭାବି। ଛୁଆପିଲା ଓ ଘର ଯେ କ'ଣ ହେଲା ମୁଁ ଜାଣେ ନାହିଁ। ଘରେ ପହଞ୍ଚିଲାବେଳକୁ ଭୋକ-ଉପାସରେ ଗୋଟିଏ ଦୁଇଟା ମରିଯାଇଥିବେ ବୋଧେ। ଏଠି ଯେତେଦିନ ଥିଲି ବେଶ୍ ଭଲରେ ଥିଲି। ଖଟୁଥିଲି, ଖାଉଥିଲି, ବଞ୍ଚୁଥିଲି, ଲୁଗାପଟା ଓ ଖାଇବା ପିଇବାର କିଛି ଅସୁବିଧା ନାହିଁ। ପ୍ରତିଦିନ ମୋର ଓଜନ ନିଆ ହେଉଥିଲା। ମୋର ଦେହ ବେଶ୍ ଭଲଥିଲା। ଗାଁକୁ ଗଲେ ମୁଁ କ'ଣ ଖାଇବି, କଣ ପିଇବି, ମୋର ଓଜନ କିଏବା ନବ, ଦେହ ମାପଯୋଜ କରିବ କିଏ ? ମହୁରଘରୁ ଯାଇ କାନ୍ତାରରେ ପଡିବି ସିନା। ସେଇଥିପାଇଁ ମୁଁ କାନ୍ଦୁଛି।" ବିନୋବାଜୀ ମନ୍ତବ୍ୟ କଲେ, ଜଣେ ବେକାର ଆଉଜଣେ ବେକାର ପାଖରେ ପହଞ୍ଚିଲା ବେଳକୁ ସମାଜରେ ଏ ଅବସ୍ଥା ହେଲା। ଯଦି ସେ ବିଚାରକଟି ତାଙ୍କ ରାୟ୍‌ରେ "ତୋତେ ମୁଁ ତିନିବର୍ଷ ଜେଲ୍‌ଦଣ୍ଡ ଦେଲି ନକହି ତୋତେ ତିନିମାଣ ଜମି ସଜାଦେଲି ବୋଲି କହିଥାନ୍ତେ, ତାହା ହେଲେ ସମାଜର କେତେ ମଙ୍ଗଳ କରି ନଥାନ୍ତେ !" ଏହି ଯେ ଚୋରଟି ଜେଲ୍‌ରୁ ଖସିଯାଇ ପୁଣି ଚୋରି ନ କରିବ ସେଥିରେ କ'ଣ ସନ୍ଦେହ ? ଦେଶରେ ବେକାରୀ ବଢି ଚାଲିଥିବ। ସମାଜର ଅମଙ୍ଗଳ ହେଉଥିବ। ଯଦି ତିନିମାଣ ଜମି ତାକୁ ସଜା ଦିଆଯାଇଥାନ୍ତା, ତାହେଲେ ତା ବଂଶ ସାରା ସମସ୍ତେ ଲାଗିପଡି ଆନନ୍ଦରେ ଚାଷବାସ କରି ରହିଥାନ୍ତେ। ବିନୋବାଜୀଙ୍କ ଏହି ଯୁକ୍ତି ସମସ୍ତଙ୍କ ମନକୁ ପାଇଲା। ସଞ୍ଜ ବେଳକୁ ମୁଁ ଘରକୁ ଫେରିଲି, ପୁଣି ଆଉ ଜଣେ ଗାନ୍ଧୀଜୀଙ୍କ ପରି ଦେବତାଙ୍କୁ ଦେଖି।

ଥରେ ଦିଲ୍ଲୀ ରହଣି କାଳରେ ମହାତ୍ମାଗାନ୍ଧୀଙ୍କର ହତ୍ୟା ପରେ 'ବିରଳା ଭବନ' ପରିସରକୁ ଯାଇଥିଲି, ଯେଉଁ ସ୍ଥାନରେ ଆତତାୟୀର ଗୁଳିଚୋଟରେ ମହାତ୍ମାଗାନ୍ଧୀ ଟଳିପଡିଥିଲେ, ସେଇଠୁ ଟିକେ ମାଟି ଆଣି ମୁଣ୍ଡରେ ଛୁଇଁବାପାଇଁ। ଦେଖିଲି ଚେମୁଟାଏ ମାଟି ଲୋକେ ନେଇ ନେଇ ଗୋଟିଏ ଆଠ ଦଶହାତ ଗାତ କରିଦେଇଛନ୍ତି। ଅଳ୍ପକିଛି ବେଳଥାଏ; କାମ ସେପରି କିଛି ନଥାଏ; ବାହାରି ପଡିଲି ଭଙ୍ଗି କଲୋନୀକୁ। ବିନୋବାଜୀ ସେଇଠି ରହୁଥାନ୍ତି। ଆଶ୍ରମରେ ସେତେବେଳେ ପ୍ରାୟ କେହି ନଥିଲେ ; ମୁଁ ଅକ୍ଳେଶରେ ଯାଇ ତାଙ୍କୁ ଦେଖାକରି ମୁଣ୍ଡିଆ ମାରିଲି। ତାଙ୍କରି ପାଖରେ ସପ ଖଣ୍ଡିକରେ ବସିଲି। ବିନୋବାଜୀ, ତାଙ୍କ ଆଗରେ ଟେବୁଲ ଲେମ୍ପଟି ଲଗାଇଥାନ୍ତି। ପଚାରିଲେ "ଆପଣ କେଉଁଠୁ ଆସିଛନ୍ତି ?" ମୁଁ କହିଲି, ଓଡିଶାରୁ, ଜଗନ୍ନାଥଙ୍କ ଦେଶରୁ। ମୁଁ ଓଡିଆରେ କହୁଁଥାଏ, ଦେଖିଲି ଯେ ମୋ ଭାଷା ବୁଝିବାପାଇଁ ତାଙ୍କର କିଛି ଅସୁବିଧା ହେଉନଥାଏ। ପଚାରିଲେ "ନାମ୍ କ'ଣ", କହିଲି, "ବସନ୍ତ"। ଖଣ୍ଡିଏ ନୋଟ୍‌ଖାତା ସେ ବାହାର କଲେ ଏବଂ ନାଁଟି ଲେଖିବାପାଇଁ କହିଲେ। ତାଙ୍କର ଉଦ୍ଦେଶ୍ୟ କ'ଣ ମୁଁ ଜାଣିପାରିଲି ନାହିଁ। ଦଣ୍ଡେ ପରେ କହିଲେ "ଅଣ୍ଡା" ଲେଖନ୍ତୁ। ମୁଁ ଲେଖିସାରିଲାପରେ କହିଲେ, ନ ତଳେ ୨ ଦେଲା ବେଳକୁ ସେ ଦୁଇଟା 'ତ' ହେଉଛି କିନ୍ତୁ ଣ ତଳେ ଦୁଇ ଦେଲାବେଳକୁ 'ଣ୍ଡ' ଉଚ୍ଚାରଣ ହେଉଛି। ସେଇ ଏକା ୨ ଚିହ୍ନଟା ଗୋଟିଏ ସ୍ଥାନରେ 'ତ' ହେଉଛିତ, ଆଉ ଗୋଟିଏ ସ୍ଥାନରେ 'ଡ' ହେଉଛି। ତାପରେ ସେ ନିଜେ ଲେଖିଲେ 'ବସ୍ତା', ତା ପାଖେ ପାଖେ ଲେଖିଲେ 'ବସ୍ତ'। ସୁତରାଂ ଦୁଇ ରକମର ଚିହ୍ନ ଦୁଇ ଉଦ୍ଦେଶ୍ୟରେ ବ୍ୟବହାର କରା ହେଉଛି। ତାପରେ ବୁଝାଇଲେ ଓଡିଆ ଭାଷାର ଲିପି ସଂସ୍କାରର କେତେ ଆବଶ୍ୟକତା ରହିଛି। ଲେଖିବାରେ ଠିକ୍ ପଦ୍ଧତି ଅନୁସରଣ କରୁନଥିବାରୁ ଅନେକ ଜିନିଷ ଆମ ଅଜ୍ଞାତ ରହିଯାଉଛି। ପଚାରିଲେ, ଆମେ 'କୃଷ୍ଣ' କିପରି ଲେଖୁ ଓ ଉଚ୍ଚାରଣ କିପରି କରୁ। ଷରେ ନ ଦେଲେ କୃଷ୍ଣ ହେଉଛି। ଆମେ ଯଦି କୃଷ୍ଣ ଲେଖି କୃଷ୍ କହୁ ତାହାହେଲେ କୃଷ୍ ଧାତୁର ନିଷ୍ପନ୍ନ ଷର ଅର୍ଥ ବୁଝିପାରିବା। ଯେଉଁ ଧାତୁରୁ କୃଷି ଶବ୍ଦ ଆସିଅଛି। ସୁତରାଂ ଯିଏ କୃଷି କର୍ମରେ ରତ ସେହି କୃଷ୍ଣ। ତାଙ୍କ ବଡଭାଇ ହଳ କାନ୍ଧରେ ପକାଇଥାନ୍ତି। ସେମାନେ ଗାଈ ଜଗନ୍ତି, ଚରାନ୍ତି। ଏସବୁ ଉଦ୍ୟାନ-ଭିତ୍ତିକ। ଠିକ୍ ଲେଖିପାରିଲେ ଜଣାଯିବ ଉଦ୍‌ଗତ ଶବ୍ଦଟାର ଅର୍ଥ ବାହାରି ଆସିବ; ଭୂଇଁ ଭେଦ୍‌କରି ଯେଉଁଠି ଗଛପତ୍ର ବଢନ୍ତି। ସେଇଟା ଉଦ୍ୟାନ ଓ ଭିତ୍ତିକ। ଉଦ୍ୟାନରେ ଉଦ୍ଭିଦ ଥାନ୍ତି। ତାପରେ ବିନୋବାଜୀ ଓଡିଆ ଯୁକ୍ତାକ୍ଷର ବିଷୟରେ କହିବାକୁ ଆରମ୍ଭକଲେ। କହିଲେ, ଓଡିଆର ଯୁକ୍ତାକ୍ଷର ସମ୍ବନ୍ଧରେ ଜ୍ଞାନ ଅର୍ଜନକରିବା ଯେ କୌଣସି ନୂଆ ଶିଖୁଥିବା ଲୋକଙ୍କ ପକ୍ଷରେ ବଡ କଷ୍ଟକର। ଛପାକାମରେ

compositerକୁ (ଅର୍ଥାତ୍ ଅକ୍ଷର ଯୋଡୁଥିବା ଲୋକମାନଙ୍କୁ) କେତେଗୁଡ଼ା ଟାଇପ୍ କେସ୍‌କୁ ଆଖି ଆଗରେ ରଖିବାକୁ ପଡେ। ଅକ୍ଷର ଆଦି ବାହାରକରି ଯୋଡାଯୋଡିକରିବା ବହୁତ ପରିଶ୍ରମର ବିଷୟ ହୋଇପଡେ। ଯୁକ୍ତାକ୍ଷରଗୁଡ଼ାକର ମାତ୍ରା ଭାଙ୍ଗିଯିବା ଫଳରେ ଛାପାରେ ବହୁତ ଭୁଲ ଓ ତ୍ରୁଟି ରହିଯାଏ। ପାଠକକୁ ପଢିବାକୁ ଅଡୁଆ ଲାଗେ। ପ୍ରଚଳିତ ଯୁକ୍ତାକ୍ଷର ବ୍ୟବହାର ନକରି, ଯଦି ଆମେ ଅନୁସାର ଓ ହଳନ୍ତ ବ୍ୟବହାର କରୁ, ତେବେ ଛାପାଖାନାବାଲାଙ୍କୁ ଯେମିତି ସୁବିଧା, ପାଠକଙ୍କୁ ମଧ୍ୟ ସେମିତି। ଗୁଡାଏ ଅକ୍ଷର କମିଯିବ। ଗୋଟିଏ ଛୋଟ ନୋଟ୍ ବହି ସେ ବାହାର କଲେ ଏବଂ ପେନ୍‌ସିଲ୍‌ରେ ଉଦାହରଣଗୁଡାକ ଲେଖିଲେ। ହିନ୍ଦୀରେ ଯୁକ୍ତାକ୍ଷର ବାଦ୍ ଦେଇ କେମିତି ଲିପି ଲେଖାହୋଇପାରୁଛି ଏବଂ ସର୍ବସାଧରଣଙ୍କପାଇଁ କେତେ ସୁବିଧାଜନକ ହୋଇଛି, ତାହା ବୁଝାଇଲେ। ତାଛଡା ଓଡିଆରେ ଯେଉଁ ସବୁ ମାତ୍ରା ଅଛି, ତାହା ନାନା ପ୍ରକାରର ଏବଂ ତାହା ପାଠକକୁ ଅସୁବିଧାରେ ପକାଇ ଦିଏ। 'ବସ୍ତ୍ର' ଯଦି 'ବ-ତ୍-ସ' ଲେଖାଯାନ୍ତା ବା 'ଯତ୍ନ'କୁ ଭାଙ୍ଗି ଦେଇ ଯୁକ୍ତାକ୍ଷର ବଦଳରେ 'ଯତ୍‌ନ' ହୋଇଥାନ୍ତା, ତାହେଲେ ଲେଖାପଡାପାଇଁ କେତେ ସୁବିଧା ହୋଇଥାନ୍ତା। ଏମିତି ଆଚାର୍ଯ୍ୟ ବିନୋବା କେତେ ଉଦାହରଣ ଦେଇ ଚାଲିଲେ। ପଣ୍ଡିତ ନୀଳକଣ୍ଠ ଲିପିସଂସ୍କାର ଉଦ୍ଦେଶ୍ୟରେ ଆମର ଗୁଡାଏ ଅସୁବିଧା ଉପଲବ୍ଧି କରି ଯେଉଁ ଲେଖାମାନ ପତ୍ରପତ୍ରିକାରେ ଛାପିଥିଲେ, ତାହାକୁ କେହି ଗୁରୁତ୍ୱ ସହିତ ଉପଲବ୍ଧି କଲେନାହିଁ। ସଚ୍ଚି ରାଉତ୍‌ରାୟଙ୍କୁ କେହିକେହି ଅନୁସରଣ କରି ମଝିରେ ମଝିରେ ଯୁକ୍ତାକ୍ଷର ବାଦ୍ ଦେଇଛନ୍ତି; କିନ୍ତୁ ସେଗୁଡାକ ସର୍ବଗ୍ରାହ୍ୟ ହୋଇନାହିଁ ବା ଛାପାଖାନା ମଧ୍ୟ ତାହା ଗ୍ରହଣ କରିନାହାନ୍ତି।

ଏତିକିବେଳେ ବିନୋବାଜୀଙ୍କପାଇଁ ରାତ୍ରୀଭୋଜନ ଆସିଗଲା। ଆଳୁ-ମଟର ତରକାରୀ ସାଙ୍ଗକୁ ବୋଧହୁଏ ଗୋଟାଏ କି ଦୁଇଟା ଛୋଟ ଛୋଟ ଚପାତି। ମୁଁ ଆଶ୍ଚର୍ଯ୍ୟ ହେଲି ସେ କେତେ ସ୍ୱଳ୍ପାହାରୀ। ଦୈନିକ ୧୫ ଲିଟର ଦୁଧ ପିଉଥିବା କିମ୍ବଦନ୍ତୀ ପୁରୁଷଙ୍କର ଏକି ପରିବର୍ତ୍ତନ ! "ଏକି ଗୁଲି, ବହୁନାମ" ମୁଁ ଦଣ୍ଡେ ବସି ଆଶ୍ଚର୍ଯ୍ୟ ହୋଇ ତାଙ୍କ ଚଷମାର ତଳ ଦେଇ କୁଳୁକୁଳୁ ଆଖି ଗୁଡାକ ଲକ୍ଷ୍ୟକରୁଥାଏ। ସେ ଖାଉଥାନ୍ତି ଓ ଲିପି ସଂସ୍କାର ବିଷୟରେ ଆଲୋଚନା କରୁଥାନ୍ତି। ଖାଇସାରି ସେ ଥାଳି ଓ ବାଟି ଧରି ପାଖ କୋଠରୀ ପାଇପ୍ ପାଖକୁ ଚାଲିଗଲେ ଏବଂ ଖାଇବା ବାସନ ଧୋଇ ରଖିଦେଲେ। ଦେଖିଲି ତାଙ୍କ ପରିଧାନ, ହାତେ ଦେଡହାତ, ଛୋଟିଆ ଖଦଡ ଧୋତିଟିଏ। ସେ ପୁନର୍ବାର ମୋ ଆଗରେ ଆସନ ଗ୍ରହଣକରି ବସିଛନ୍ତି କି ନାହିଁ, କିଏ ଜଣେ ତାଙ୍କ ସାମ୍‌ନାରେ ଦୈନିକ ଡାକ ରଖି ଦେଇଗଲା। ସାଙ୍ଗେ ସାଙ୍ଗେ ବିନୋବାଜୀ କାଢିଆଣିଲେ ସମାଜ

ଖବରକାଗଜଟିଏ, ଏବଂ ସମ୍ପାଦକୀୟ ପୃଷ୍ଠାଟି ପଢିବାକୁ ଆରମ୍ଭ କଲେ। ମଝିରେ ମଝିରେ ଅଟକୁଥାନ୍ତି ଏବଂ ପେନ୍‌ସିଲରେ ଶବ୍ଦ ବା ଅକ୍ଷର ତଳେ ଗାର ଦେଉଥାନ୍ତି। ଲିପି ସଂସ୍କାର ଦୃଷ୍ଟିରୁ ସେ କାମ କରୁଥାନ୍ତି ଜାଣିଲି। ତାଙ୍କ ବକ୍ତବ୍ୟର ଯଥାର୍ଥତା ମୋ ଆଗରେ ପ୍ରମାଣ କରୁଥାନ୍ତି। ମୋର ଆଶ୍ଚର୍ଯ୍ୟର ସୀମା ରହିଲା ନାହିଁ। ଏକେତ ଭଡଭଡ କରି ଓଡିଆ ପଡିଯାଉଥାନ୍ତି; ଦୁଇରେ ଲିପି ସଂସ୍କାରର ଏକାନ୍ତ ଆବଶ୍ୟକତା ବିଷୟରେ ଉଦାହରଣ ଦେଇ ଆଲୋଚନା କରୁଥାନ୍ତି। ମୋତେ ଖୁବ୍ ଲାକ ମାଡିଲା। ଓଡିଶାରୁ ଆସିଛି, ଓଡିଆ ଭାଷାପାଇଁ ମୋର ଗର୍ବ, ସ୍ୱାଭିମାନ ରହିଛି, କିନ୍ତୁ ମୋହରି ଆଗରେ ବୁଢାଟିଏ ଯିଏ ଭୂଦାନ ଆନ୍ଦୋଳନର ପ୍ରବର୍ତ୍ତକ ଓ ପ୍ରଚାରକ ରୂପେ ଦେଶ ବ୍ୟାପୀ ଖ୍ୟାତ ହୋଇଛି, ସେ ଅଣଓଡିଆ ଦିଲ୍ଲୀ ରାଜ୍ୟରେ ଆମ ଲିପି ସଂସ୍କାର ଉପରେ ଆଖି ରଖିଛି। ଭୂଦାନୀ ଆକାରରେ ତାଙ୍କୁ ସମ୍ମାନ ଦେବି, ନା ଅଣଓଡିଆ ହୋଇ ମଧ୍ୟ ସେ ଯେ ସୁଦୂର ଦିଲ୍ଲୀରେ ଓଡିଆ ପଢୁଛି, ଲେଖୁଛି ଏବଂ ଲିପି ସଂସ୍କାର କଥା ଭାବୁଛି, ତାକୁ ଧନ୍ୟ କହିବି ? ଏଇ ଦ୍ୱନ୍ଦ୍ୱଟା ମୋତେ କମ୍ ଆଶ୍ଚର୍ଯ୍ୟ ଚକିତ କରିନଥିଲା। ଯୁକ୍ତାକ୍ଷର ଶିଖାଉ ଶିଖାଉ ବିନୋବାଜୀ ସାମାନ୍ୟ ବିଚଳିତ ହୋଇ କହିଉଠିଲେ "ସାକ୍ଷର ହେବାକୁ ଥିବା ଅଗଣିତ ଶିଶୁ କିମିତି ଏ ଲିପି ଆୟତ୍ତ କରୁଛନ୍ତି, ଏବଂ ତାଙ୍କ ଅଭିଭାବକ ଓ ଶିକ୍ଷକମାନଙ୍କୁ ହାଣି ଦେଉନାହାନ୍ତି ସେଇଟା ମୁଁ ଭାବୁଛି।" ରାତି ସେତେବେଳକୁ ପ୍ରାୟ ଆଠ ବାଜିଯାଇଥାଏ। ଅଗାଧ ଭକ୍ତି ଓ ସମ୍ମାନର ସହିତ ମହାପୁରୁଷଙ୍କୁ ମୁଣ୍ଡିଆଟିଏ ମାରି ବିଦାୟନେଲି। ପୀଠ ସ୍ଥଳୀଟି ଛାଡିବା ପୂର୍ବରୁ ମୁଁ ଦ୍ୱିତୀୟ ମହାତ୍ମାଙ୍କ ପାଖରୁ ତାଙ୍କ ହାତଲେଖା କାଗଜଗୁଡିକ ମାଗିଆଣିଲି। ବହୁଦିନ, ବହୁବର୍ଷଧରି ସେ ଛୋଟ ଛୋଟ କାଗଜଗୁଡିକୁ ପେଡିସାଇତା କରି ରଖିଥିଲି ଗହଣାଗାଣ୍ଠି ଓ ଟଙ୍କା ପଇସା ସାଙ୍ଗରେ। କିନ୍ତୁ ବେକାର ପରିସ୍ଥିତିରେ ସେ ଅନାବନା କାଗଜଗୁଡିକୁ ମନଦୁଃଖରେ ଚିରି ଫୋପାଡି ଦେଲି କି ପୋଡିଦେଲି। ଏବେ ଭସ୍ମାବଶେଷ ବି ନାହିଁ।



## ॥ ତେପନ ॥

ଏ ଯାକେ ଶିକ୍ଷା ବିଷୟରେ କିଛି କହିନାହିଁ । ସାହିତ୍ୟ ବିଷୟରେ କହି ଚାଲିଛି । ଅଥଚ ମୁଁ ଜଣେ ଶିକ୍ଷକ । ଯେଉଁଥିପାଇଁ ମୁଁ ଦରମା ପାଏ । ଫକୀରମୋହନ କଲେଜ୍ ମୋ ପାଇଁ କିଛି ନୂଆ ନୁହେଁ । ଇଛା କରିଥିଲେ ତିନିବର୍ଷ ଆଗରୁ ଲେକ୍‌ଚରର୍ ହୋଇ ଏଠି ଯୋଗ ଦେଇପାରିଥାନ୍ତି । କିନ୍ତୁ ମୋର ଅନ୍ନଦାତା ମୟୂରଭଞ୍ଜ ମହାରାଜାଙ୍କ କଥାମାନି ମୁଁ ବାରିପଦାରେ ହିଁ ରହିଗଲି । ଏହି ଫକୀରମୋହନ କଲେଜ ପରିସରରେ ସେତେବେଳେ ବାଲେଶ୍ୱର ଜିଲ୍ଲା ସ୍କୁଲ ପରିଚାଳିତ ହେଉଥିଲା । ମୁଁ ମାଟ୍ରିକ୍ୟୁଲେସନ୍ ପରୀକ୍ଷା ଦେଇଥିଲି । ସେତେବେଳେ ମୟୂରଭଞ୍ଜର ଏକମାତ୍ର ହାଇସ୍କୁଲ୍‌ପାଇଁ ପାଟ୍‌ନା ବିଶ୍ୱବିଦ୍ୟାଳୟର ପରୀକ୍ଷା କେନ୍ଦ୍ର ବାଲେଶ୍ୱର ଥିଲା । କେଉଁଝରରେ ହାଇସ୍କୁଲ୍ ପିଲା ବୋଧହୁଏ ପରୀକ୍ଷା ଦେବାପାଇଁ ପ୍ରସ୍ତୁତ ହୋଇ ନଥାନ୍ତି । ଯେଉଁ ୭୫ ଜଣ ପିଲା ବାଲେଶ୍ୱର ଓ ବାରିପଦା ହାଇସ୍କୁଲ୍ ମାନଙ୍କରୁ ପରୀକ୍ଷା ଦେଇଥିଲେ, ସେମାନଙ୍କପାଇଁ ପରୀକ୍ଷା କେନ୍ଦ୍ର ଥିଲା ବାଲେଶ୍ୱର ଜିଲ୍ଲାସ୍କୁଲ । କଲେଜ୍ ହେବାକୁ ବହୁତ ଡେରିଥାଏ । ଓଡିଶା ସ୍ୱତନ୍ତ୍ର ପ୍ରଦେଶ ମଧ୍ୟ ହୋଇ ନଥାଏ । କଲେଜ୍‌ରେ ଯୋଗଦେଇ ପ୍ରଥମେ ପ୍ରିନ୍‌ସପାଲଙ୍କୁ ଦେଖା କରିବା କଥା । ସେତେବେଳେ ରାମଚନ୍ଦ୍ର ରାଜଗୁରୁ ଥାନ୍ତି କଲେଜ୍ ପ୍ରିନ୍‌ସପାଲ; ପାରଳାଖେମୁଣ୍ଡିର ଲୋକ । ଅଳ୍ପଦିନ ପରେ ସେ ଚାଲିଗଲେ ଏବଂ ତାଙ୍କ ସ୍ଥାନରେ ଏକଦା ମୋର ବାରିପଦାରେ ବନ୍ଧୁ ଓ ସହକର୍ମୀ ଥିବା ରାମଚନ୍ଦ୍ର ପଟ୍ଟନାୟକଙ୍କୁ ଭେଟିଲି । ଆଠବର୍ଷ ରହଣି କାଳରେ ମୁଁ ଯେଉଁମାନଙ୍କୁ ପ୍ରିନ୍‌ସପାଲ୍ ରୂପରେ ପାଇଥିଲି ସେମାନେ ହେଲେ, କେ.ପି.ଏ. ପିଲାଇ ଏବଂ ଅଜୟ୍ ଚନ୍ଦ୍ର ବୀର୍ । ଏହି ଦୁହିଁଙ୍କୁ ଆଗରୁ ଭେଟିଥିଲି ପାରଳାଖେମୁଣ୍ଡିରେ ।

ଫକୀର୍ ମୋହନ କଲେଜଟା ମୋତେ ଭଲ ଲାଗିଲା । ବେଶ୍ ସୁଶୃଙ୍ଖଳିତ । ବହୁତ ପିଲା, ଅନେକ ଅଧ୍ୟାପକ, ସମସ୍ତେ ସୁଶ୍ରୀ, ସ୍ୱାସ୍ଥ୍ୟବାନ୍ । ପରିବେଶ ସୌହାର୍ଦ୍ଦ୍ୟପୂର୍ଣ୍ଣ । ଇଂରାଜୀ ଡିପାର୍ଟମେଣ୍ଟରେ ବଙ୍କିଜଗବନ୍ଧୁ ବିଦ୍ୟାଧର ମହାପାତ୍ର, ମହାକୀତେଶ୍ୱର ଦାଶ, ବିୟତ୍‌କେଶ ତ୍ରିପାଠୀ, ହରେନ୍ଦ୍ର ପ୍ରସାଦ ମହାନ୍ତି, କଲ୍ୟାଣ ମୂଖର୍ଜୀ, ତାପସ ଚକ୍ରବର୍ତ୍ତୀ, ସଦାନନ୍ଦ ମିଶ୍ର ଓ ଆହୁରି କେତେଜଣ । ଏତେଦିନ କଲେଜରେ ଚାକିରୀ କରି ମୋର ଏହି ଧାରଣା ଉପୁଜିଛି ଯେ, ପ୍ରତ୍ୟେକ ଅଧ୍ୟାପକ ଜଣେ ଜଣେ ବିଚିତ୍ର ମଣିଷ । ପାଠ ବୋଧେ ସେମାନଙ୍କୁ ସେମିତି କରିଦିଏ । ପ୍ରତ୍ୟେକଙ୍କ ଚରିତ୍ରରେ କିଛି ନା କିଛି ବୈଚିତ୍ର୍ୟ ରହିଥିବ ।

ପିଲାମାନେ ସେସବୁ ବହୁତ ନକଲ କରିପାରନ୍ତି । ଇତିହାସ ବିଭାଗର ରାଜେନ୍ଦ୍ର କୁମାର ଦାଶଙ୍କୁ କିଏ ଭୁଲିପାରିବ ! ଗେଡାମଣିଷଟିଏ, ପଢେଇବାରେ ତାଙ୍କର ଅଶେଷ ଆଗ୍ରହ ଓ ଆନନ୍ଦ । ବି.ଏ. କ୍ଲାସ୍‌ରେ ସେ ଇଉରୋପିଆନ୍ ଇତିହାସ ପଢାଉଥିଲେ ଏବଂ ନେପୋଲିୟନ୍‌ଙ୍କ ବିଷୟରେ ପଢେଇଲା ବେଳେ ସେ କଲେଜ ହଲରେ ଏପାଖ ସେପାଖ ବୁଲି ବୀରଙ୍କ ଭଳି ଆକ୍‌ଟିଙ୍ଗ୍ କରୁଥିଲେ । ସତେଯେମିତି ସେ ସେଣ୍ଟ ହେଲେନା ଦ୍ୱୀପରେ ଘୁରାଫେରା କରୁଛନ୍ତି । ସେ ଜଣେ ଆକ୍ଟର ଏବଂ ପ୍ରଶଂସା ଟିକେ ଭଲପାନ୍ତି । ସେ କ୍ଲାସ୍‌ରୁ ଫେରିଆସିଲା ମାତ୍ରେ କହିଲି "ରାଜେନ୍ଦ୍ର ବାବୁ ! ପିଲାମାନେ ଆପଣଙ୍କର ନେପୋଲିଅନ୍ କିମ୍ବା ଯୁଦ୍ଧ ବିଷୟ ପଢାଇବାକୁ ଭାରି ପସନ୍ଦକରନ୍ତି । ଆପଣ ପ୍ରାୟ ନେପୋଲିଅନଙ୍କ ପରି ଦେଖାଯାନ୍ତି" । ସେତେବେଳେ ସେ ଷ୍ଟାଫ୍ କମନ୍ ରୁମ୍‌ର ପିଅନକୁ ସାଙ୍ଗେ ସାଙ୍ଗେ ୨୦ ଟଙ୍କା ଦେଇ ସିଙ୍ଗଡା ଓ ମିଠା ଆଣିବାପାଇଁ ବରାତ୍‌କଲେ ଏବଂ କହିଲେ, 'ଆଜି ମୋ କ୍ଲବ ତରଫରୁ କମନ୍ ରୁମ୍‌ର ସମସ୍ତଙ୍କୁ ଚା'ପାନରେ ଆପ୍ୟାୟିତ କରିବି ।" ଭାରି ଭଲ ମଣିଷଟିଏ । ମନଟା ସ୍ୱଚ୍ଛ । ତାଙ୍କ ଡିପାର୍ଟମେଣ୍ଟରେ ଥିଲେ ଜଗନ୍ନାଥ ପ୍ରସାଦ ଦାସ । ତାଙ୍କର ଗବେଷଣା ମନୋବୃତ୍ତି ଥିଲା । ଅନେକ ଦିନ ଧରି ସେ ବିଶ୍ୱଶ୍ରୀ ପ୍ରେସ୍‌ରେ ବସି ସଦାଶିବ ରଥଶର୍ମାଙ୍କ ସହିତ ଗୋଟିଏ ତାଳପତ୍ର ପୋଥି ଧରି କୋଣାର୍କ ମନ୍ଦିରର ତିଆରିରେ କେତେ ଖର୍ଚ୍ଚ ହୋଇଛି ତାର ହିସାବ କିତାବ କରୁଥିଲେ । ଗବେଷଣାର ଫଳ କ'ଣ ହେଲା, ତାହା ଏ ପର୍ଯ୍ୟନ୍ତ ମୁଁ ଜାଣିପାରିଲି ନାହିଁ । ତାଙ୍କରି ଡିପାର୍ଟମେଣ୍ଟରେ କୁମାରୀ ସମଲେଶ୍ୱରୀ ବର୍ଦ୍ଧନ ଥିଲେ ମହିଳା ଅଧ୍ୟାପିକା । Mathematics Departmentରେ ମଧ୍ୟ ଜଣେ ମହିଳା ଅଧ୍ୟାପିକା ଥିଲେ; ତାଙ୍କର ନାମ କୁମାରୀ ସିନ୍ଧୁମତୀ ଦେବୀ; କୁଆଡେ ଭାରି ଭଲ ପଢାନ୍ତି; କ୍ଲାସ୍‌ରେ ସଂଯମ ଓ ଶୃଙ୍ଖଳା ଉପରେ ଯୋର୍ ଦିଅନ୍ତି । Head of the Department ଥାନ୍ତି T.M. Patnaik । ଦୀର୍ଘକାୟ, ଧଳା ପଞ୍ଜାବି ପରିହିତ ଗୁରୁ ଗମ୍ଭୀର ମୂର୍ତ୍ତି । କ୍ୱଚିତ୍ ହସନ୍ତି, ଭାରି କଡା ମିଜାଜ୍‌ର । ମୁଁ ଗଣିତ ଅଧ୍ୟାପକମାନଙ୍କୁ ବହୁତ ସମ୍ମାନଦିଏ । ମୋର ଦୁଇ ପୁଅ ବିଜ୍ଞାନର ଛାତ୍ର । ସେତେବେଳେ ୨୦ ନମ୍ବର Tutorial mark କଲେଜରୁ ପଠାଯାଉଥିଲା ୟୁନିଭର୍‌ସିଟି ମାର୍କ ସହିତ ମିଶିବାପାଇଁ । ଏହି ଟିୟୁଟରିଆଲ୍ ମାର୍କ କାଳେ ସେମାନେ କମ୍ ଦେବେ, ସେଥିପାଇଁ ମୁଁ ଆତଙ୍କିତ ଥିଲି । ଜଣେ ପୁଅ ଭଲ କ୍ରିକେଟ୍ ଖେଳୁଥିଲା । ସେପାଇଁ ମଧ୍ୟ କିଛି ଅଧିକ ନମ୍ବର ତାକୁ ଦିଆଯାଉଥିଲା । ଏ ପୁଅଟି ଖେଳରେ ବ୍ୟସ୍ତରହି ପରୀକ୍ଷାଗୁଡିକ ଦେଇପାରିଲା ନାହିଁ । ଯେତେବେଳେ ପରୀକ୍ଷାକୁ ପଠାଗଲା, ସେତେବେଳେ ସେ ପରୀକ୍ଷାରେ ଅନୁପସ୍ଥିତ ଥିବା କାରଣରୁ Staff Council Meetingରେ Mathematics

Department ପକ୍ଷରୁ ଆପତ୍ତିହେଲା । ଖେଳପ୍ରେମୀ ଅଧ୍ୟାପକମାନେ ତାକୁ ପଠାଇବା ପାଇଁ ଚାହିଁଲେ; ମୁଁ ନୀରବ ରହିଲି, ଯେହେତୁ ସେ ମୋ ପୁଅ । ବହୁତ କଳି ଝଗଡା ଲାଗିଲା ପରେ ପ୍ରିନ୍‌ସପାଲଙ୍କୁ ନିଷ୍ପତ୍ତି ଦାୟିତ୍ୱ ଦିଆଗଲା । ପ୍ରିନ୍‌ସପାଲ ଅଜୟ ବୀର ଦେବପ୍ରତିମ ମଣିଷଟିଏ । ସେ ତାକୁ ପରୀକ୍ଷାକୁ ପଠାଇଦେଲେ, କହିଲେ "ସେ ୟୁନିଭର୍‌ସିଟି ଖେଳାଳୀ; ଗୌହାଟୀ ଯାଇଥିଲା; ଆମ କଲେଜର ଗର୍ବ । ଅତଏବ ସେ ଅଲ୍‌ବତ୍ ପରୀକ୍ଷାକୁ ଯିବ ।" Chemistryରେ ନୂଆ ହୋଇ ଜଣେକ ତ୍ରିପାଠୀ ଆସିଥାନ୍ତି । ତାଙ୍କରି ସହିତ ମୋର ଦ୍ୱିତୀୟ ଝିଅର ପ୍ରାକ୍ଟିକାଲ କ୍ଲାସ୍‌ରେ ଦେଖା ସାକ୍ଷାତ ଓ ଚିହ୍ନା ପରିଚୟ ହେଲା । ବୋଧହୁଏ ଦୁହିଁଙ୍କର ପ୍ରଥମ ଦର୍ଶନରେ ପ୍ରେମ ହୋଇଗଲା । ବନ୍ଧୁ ଓଡ଼ିଆ ଅଧ୍ୟାପକ ଗୋପୀନାଥ ମିଶ୍ର ଦିନେ ଆସି ମୋ ପାଖରେ ପ୍ରସ୍ତାବଦେଲେ । ମୁଁ ରାଜିହେଲି, କିନ୍ତୁ ମା' ମରିବାର ବର୍ଷେ ପୂରି ନଥିବାରୁ ପ୍ରସ୍ତାବଟି କାର୍ଯ୍ୟକାରୀ କରିବା ପାଇଁ ପ୍ରାୟ ବର୍ଷଟିଏ ଅପେକ୍ଷା କରିବାକୁ ପଡିଲା । ମୁଁ ପାତ୍ର-ପାତ୍ରୀଙ୍କୁ ସିଧା ପଚାରିଦେଲି ଏବଂ ବରର ପିତାମାତାଙ୍କୁ ମଧ୍ୟ ପଚାରିଲି । ସେମାନେ ସମ୍ମତିଦେଲେ ଏବଂ ଯଥା ସମୟରେ ସୁରୁଖୁରୁରେ ବିବାହ ହୋଇଗଲା ।

ମୋର ସବୁଦିନ ଅର୍ଥାଭାବ । ଭାଗ୍ୟକୁ ପ୍ରଭିଡେଣ୍ଟ ଫଣ୍ଡରେ ୨୦୦୦/୩୦୦୦ ଟଙ୍କା ଥିଲା । କିସ୍ତିବାରି ଶୁଝିବା ପ୍ରତିଶ୍ରୁତି ଦେଇ ଧାର୍‌ରେ ଲୁଗାପଟା କିଣିଲି । ସର୍ବମୋଟ୍ ବିବାହରେ ୭,୦୦୦ ଟଙ୍କା ଖର୍ଚ୍ଚ ହୋଇଥିଲା । Demand କଥା ମୁଁ ଶୁଣିଥିଲି, କିନ୍ତୁ କିଛି ଜାଣିପାରିଲି ନାହିଁ । ଜୟନ୍ତ ମହାପାତ୍ର (ଏବେ ପୃଥିବୀ ପ୍ରସିଦ୍ଧ ଇଂରାଜୀ କବି) କିଛିଦିନ ପାଇଁ Physics ଅଧ୍ୟାପକ ହେଇ ଫକୀରମୋହନ କଲେଜରେ ମୋର ସହକର୍ମୀ ହିସାବରେ ଥିଲେ । ଥରେ କଲେଜ ପିଲାଙ୍କୁ ନେଇ ମୁଁ ଚାନ୍ଦିପୁର ବେଳାଭୂମିରେ ଝାଉଁବଣ ମଧ୍ୟରେ ବଣଭୋଜି ବା ପିକ୍‌ନିକ୍ ବନ୍ଦୋବସ୍ତ କରିଥିଲି । ଶହଶହ ଛାତ୍ର, ଅଧ୍ୟାପକ ସାଇକେଲରେ ଯାଇ ସନ୍ଧ୍ୟାରେ ଫେରିଥିଲେ । ଆଉଜଣେ Physicsରେ ଅଧ୍ୟାପକ ଥିଲେ ଦୁର୍ଗାଦାସ ପଟ୍ଟନାୟକ । ସେସମୟରେ ପ୍ରାୟ ତାଙ୍କର ବିଲାତ୍ ଯିବାର ସ୍ଥିରହୋଇଗଲା । ଲାଇବ୍ରେରିଆନ୍ ହେମନ୍ତ ବାବୁ, ମନମୋହନ ବାବୁଙ୍କ ସହିତ ଲାଇବ୍ରେରି ଦାୟିତ୍ୱରେ ଥିଲେ । ଏକୁ ଆରେକ ମହାବଳୀ । କାହାକୁ କେବେ ହଇରାଣ ହରକତ କରନ୍ତି ନାହିଁ । ହେମନ୍ତବାବୁ ସବୁ ନାଟକରେ ଯୋଗ ଦିଅନ୍ତି ଏବଂ ଜଣେ ଦକ୍ଷ prompter (ସ୍ମାରକ) । ଯେଉଁଦିନ କଲେଜରେ join କଲି ସେଦିନ ମୁଁ ନିଜେ ଇଂରାଜୀ Departmentର senior most lecturer; ମୁଁ ନିଜେ ନିଜର ମାଲିକ । 4th yearରେ ଗୋଟିଏ କ୍ଲାସ୍ ଥିଲା । ମୁଁ ସିଧା ଚାଲିଗଲି । ପିଲାମାନେ ମୋତେ କହିଲେ "ମ୍ୟାକବେଥ ବହି ଆମେ ଆଣିଛୁ । ଆପଣ

ସେଇଟା ପଡାନ୍ତୁ ।" ସେମାନଙ୍କ ପାଖରୁ ଗୋଟିଏ ବହି ଆଣି ମୁଁ ଆରମ୍ଭ କଲି ସେଇ କଲେଜରେ ମୋର ପ୍ରଥମ ଲେକ୍‌ଚର୍ । ମୟୂରଭଞ୍ଜ ଓ ବାଲେଶ୍ୱରର ଉଚ୍ଚାରଣ ପ୍ରାୟ ସମାନ । ପିଲାମାନେ ବହୁତ ଆଗ୍ରହ ସହିତ ମୋ ଆଡକୁ ଚାହିଁଲେ ଏବଂ ମୁଁ ବହିର ଗଳ୍ପ ବିଷୟରେ ପ୍ରାରମ୍ଭିକ ସୂଚନା ଦେଇ ଆରମ୍ଭ କରିଦେଲି "If it were done, when it is done; I wish it were done quickly; but if assassination....." ଏତିକିରେ ପିଲାମାନେ ମୁଗ୍ଧ, ଚକିତ ହୋଇ ଆନନ୍ଦ ସୂଚକ କରତାଳି ଦେବାକୁ ଆରମ୍ଭକଲେ ମୋ ପଢେଇବାର ରୀତିଗତି ଦେଖି । ଯେତିକି ପଡାଇଲି ସେଥିରେ ପିଲାମାନେ ଖୁସି ହେଲାପରି ଜଣାଗଲା । ସନ୍ଧ୍ୟାବେଳେ ବଜାରକୁ ଯାଇଥାଏ Social Education Officer ଥିବା ସାନଭାଇ ପ୍ରସନ୍ନ ପାଖକୁ । ସେ ମୋତେ ଦେଖି ପଚାରିଲା "ନନା, ଆଜି କ୍ଲାସ୍ ନେଇଥିଲ କି ?" ମୁଁ "ହଁ" କହିଲି । ସେ କହିଲା "ଏଇଠି ଚାରି ପାଞ୍ଚଟା ପିଲା ଛିଡାହୋଇ ଏଇକ୍ଷଣି କଥାବାର୍ତ୍ତା ହେଉଥିଲେ ଯେ ଇଂରାଜୀ ପାଠ କେମିତି, ସେଇଟା ସେମାନେ ଆଜି ଜାଣିଲେ ।" ତା ପରେ ସିନେମା ଛକକୁ ଯାଇଥିଲି । ସେଠି ମଧ୍ୟ ବିଶ୍ୱଶ୍ରୀ ପ୍ରେସର ବ୍ରଜବାବୁ ଓ ତାଙ୍କ ଦଳବଳ ସେମିତି ପ୍ରଶସ୍ତି ଶୁଣାଇଲେ । ମୋତେ ଭାରି ଖୁସିଲାଗିଲା । Job satisfaction ନିଜ ଗାଁ ବାରିପଦାରେ ପାଇଥିଲି; କିନ୍ତୁ ବାଲେଶ୍ୱରରେ ମଧ୍ୟ ମୋର ଦରଦୀ ବନ୍ଧୁ ଦିନକ ଭିତରେ ମିଳିଗଲେ ଜାଣି ଭାରି ଖୁସି ଲାଗିଲା । ପ୍ରିନ୍‌ସପାଲ୍ ପିଲାଇ ଥରେ ଅସୁସ୍ଥତା ବଶତଃ ତାଙ୍କ ଦେଶକୁ ଗଲେ । ମୁଁ ସେହି ସୁଯୋଗ ନେଇ ତାଙ୍କ ଅନୁମତିକ୍ରମେ ସେ ପଡାଉଥିବା "King Lear" ପଡାଇଲି । ମୋତେ ସେକ୍ସପିୟର୍ ପଡାଇବାପାଇଁ ଭାରି ଭଲଲାଗେ । ମୁଁ ପଢେଇଲାବେଳେ ବିଭୋର ହୋଇଯାଏ । କ୍ଲାସ୍‌ରୁ ବାହାରି ଗଲାବେଳେ ମୋ ମୁହଁ ଦେଖି ଲୋକେ ଭାବନ୍ତି, ମୋତେ ଯେମିତି ସେକ୍ସପିୟର୍ ଭୂତ ଚାପିଛି; ଯାହାକୁ କହନ୍ତି, "A man possessed"। ଦିନେ King Lear ପଡାଉଥାଏ, ବାପ ଓ ସାନଝିଅର ମିଳନ । ସେଇଠି King Lear ଝିଅକୁ କହୁଥାନ୍ତି "Thou art a soul in bliss,/ But I am bound/ Upon a wheel of fire that my own tears/ Do scald me like molten lead." ଆଉ ସେ ବହିର ଯେଉଁଠି King Lear Kentକୁ କହୁଥାନ୍ତି -

Let me wash my hand
They smack of mortality

ଏହି ଯୋଡିଏ ସ୍ଥାନରେ ମୁଁ ଭାବବିହ୍ୱଳ ହୋଇ କାନ୍ଦିପକାଇଲି । ସେ କ୍ଲାସରେ ୧୨୮ ଜଣ ପିଲାଙ୍କ ଭିତରୁ ଜଣେ କେହି ନଥିଲା, ଯାହା ଆଖିରୁ ଲୁହ ଝରିନଥିଲା ।

ସେତିକିବେଳେ ଚପରାସି ରଘୁ କ୍ଲାସ୍ ଓଭର୍ ହେଲା ବୋଲି ଘଣ୍ଟି ପିଟିଦେଲା । କ୍ଲାସ୍ ଯାକ୍ ପିଲା ଦୀର୍ଘନିଃଶ୍ୱାସ ଛାଡି ବଡପାଟିରେ କହିଲେ, "ପଳା, ରଘୁ, ପଳା"। ଅଧ୍ୟାପକ ଜୀବନର ପୂର୍ଣ୍ଣତା ଏମିତି ମୁଁ କେତେଥର ଅନୁଭବକରିଛି । ଅନେକ ସେକ୍ସପିୟର୍ ନାଟକର ଶେଷ ଦୃଶ୍ୟ କେଉଁ ପାଠକକୁ ବିହ୍ୱଳିତ ନ କରିଛି ! ପ୍ରଖ୍ୟାତ "temptation scene"ରେ Iago ର ବକ୍ତୃତା କାହାକୁ ବିଚଳିତ ନକରେ ? Iago ର ବକ୍ତୃତା ପରେ Othelloର soliloquy ମର୍ମଭେଦୀ -

If I do prove her haggard
Though that her jesses were my dear
heart-strings
I'd whistle her off and let her down the wind
To prey at fortune.

ଓଡିଆ ଭାଷାର ସାହାଯ୍ୟ ନନେଇ ଅଳ୍ପକେ ଏମିତି କଷ୍ଟ ପଙ୍‌କ୍ତି ପିଲାଙ୍କୁ ବୁଝାଇବା ସହଜ କଥା ନୁହେଁ । ତେଣୁ ମୁଁ ଅନେକ ସମୟରେ ବି.ଏ. କ୍ଲାସ୍‌ରେ ହେଉ ବା ଏମ୍.ଏ. କ୍ଲାସ୍‌ରେ ହେଉ ପିଲାମାନଙ୍କୁ ଓଡିଆରେ ବୁଝାଇ ଆତ୍ମତୃପ୍ତି ପାଏ ଏବଂ ଛାତ୍ର-ଛାତ୍ରୀ ମଧ୍ୟ ଉପକୃତ ହୁଅନ୍ତି ।



## ॥ ଚଉବନ ॥

କ୍ରମେ କ୍ରମେ ଡଜନେ ବା ତଦୁର୍ଦ୍ଧ୍ୱ ଗଳ୍ପ ଲେଖି ଛାପିସାରିଲା ପରେ ବହିଟିଏ ଛାପିବାକୁ ମନବଳିଲା । 'ଭଞ୍ଜ ପ୍ରଦୀପ'ରେ ଛାପି, ମାତ୍ର ୬୫ ଖଣ୍ଡ କପିରେ କେତେବା ସମ୍ମାନ ଅର୍ଜନକରନ୍ତି ? ମୁଁ ଜଣେ ସାମାନ୍ୟ କିରାଣି । 'ଭଞ୍ଜ ପ୍ରଦୀପ'କୁ ଲୋକ ଜାଣିଲେ; କିନ୍ତୁ ବସନ୍ତ ଶତପଥୀକୁ ଲୋକେ ଜାଣିଲେ ନାହିଁ । ଏବେ କିନ୍ତୁ ଅଧ୍ୟାପକ ପଦବୀ ମୋର ବହୁତ କାମରେ ଆସିଲା ଏବଂ ମୋ ମନରୁ ହୀନମାନ୍ୟତା ଚାଲିଗଲା ।

ବହି ଛାପିବା ଏକ କାଠିକର ପାଠ । ବିଶେଷକରି, କଟକ ବାହାରେ ରହୁଥିବା ଲେଖକମାନଙ୍କ ପକ୍ଷେ । କଟକ ଯାଇ ଗୋଟିଏ ଛୋଟ ପ୍ରକାଶକଙ୍କୁ ଧରିଲି । ନାମଖ୍ୟାତି କିଛି ନଥିଲେ ମଧ୍ୟ ସେ ଲାଭକ୍ଷତି ବିଚାର ନକରି ମୋ ବହି ଛାପିବାକୁ ଲାଗିଲେ । 'ଆଣ୍ଟିରୋମାଣ୍ଟିକ' ନାମରେ ବହିଟି "କାଣିଚିଆଁ" ସହିତ ୧୨/୧୫ ଟି ଗଳ୍ପର ସମାହାରରେ ଛପାହେଲା । ପରେ ମୁଁ ଯାଇ ଦଶଟି କପି ଆଣିଲି ଏବଂ ହରିବନ୍ଧୁ ବାବୁଙ୍କ ଦୋକାନରେ ବିକ୍ରିପାଇଁ ଦେଇଦେଲି । ବହି ଗୋଟିକର ଦାମ୍ ୩ ଟଙ୍କା । ଉପର ଛବିଟିରେ କେଉଁ ଗଳ୍ପ ପ୍ରତିଫଳିତ, ତାହା ଜାଣିବା ମୋ ପକ୍ଷରେ ମୁସ୍କିଲ୍‌ହେଲା । ଗୋଟିଏ ସୁନ୍ଦରୀ ସ୍ତ୍ରୀଲୋକର ଛବି ଏବଂ ତା କାଖରେ ଗୋଟିଏ ଛୁଆ । ମୋତେ ବି ଲାଜ ଲାଗିଲା । ସେତିକି ବେଳେ ଓଡିଶା ସାହିତ୍ୟ ଏକାଡେମି ତରଫରୁ ପୁରସ୍କାରପାଇଁ ବହି ଦାଖଲ କରିବା ତାରିଖ ବିଜ୍ଞାପିତହେଲା । କାହାକୁ ନ ଜଣାଇ ମୁଁ ଦୋକାନରୁ ତିନିଖଣ୍ଡ ବହି ୯ ଟଙ୍କା ଦେଇ କିଣି ନିଜେ ପାର୍ଶଲ ବାନ୍ଧି ପଠାଇଦେଲି, ଯେମିତି କେହି ନ ଦେଖିବେ ଓ ନଜାଣିବେ । ପୁରସ୍କାରପାଇଁ ବହି ପଠାଇଛି ବୋଲି ଭୁଲିଗଲି । ଯେଉଁ ଦଶଖଣ୍ଡ ବହି ହରିବନ୍ଧୁ ବାବୁଙ୍କୁ ଦେଇଥିଲି, ସେଗୁଡିକ ବିକ୍ରି ହୋଇ ଯିବାରୁ ମୁଁ ପୁଣି କଟକ ଗଲି ଏବଂ ପ୍ରକାଶକଙ୍କ ପାଖରୁ ଆଉ ଦଶଖଣ୍ଡ ଆଣିଲି; ତାହା ବନ୍ଧା ହୋଇନଥିଲା । ଆଉ ଥରେ ଗଲାବେଳକୁ ସେ କହିଲା ବହି ଆଉ ବନ୍ଧା ହୋଇ ପାରିନାହିଁ । ଯେଉଁ ଛପା ଫର୍ମାଗୁଡାକ ଥିଲା, ସେଗୁଡାକ ସବୁ ଉଇ ଖାଇଗଲା । ସେ କହିଲା ଯେ, ସେ ଆଉ ବହିଁ ଛାପିବ ନାହିଁ, ରାଜନୀତିରେ ଯୋଗଦେବ । ଅନ୍ୟ ଏକ ପ୍ରକାଶକ ଖୋଜିଲି, ସେ ଗୋଟିଏ ବିଜ୍ଞାପନ ସମ୍ବାଦରେ ଛାପିଲା, କିନ୍ତୁ ଆଉ ବହି ଛପାହେଲା କି ନାହିଁ ମୁଁ ଜାଣିଲି ନାହିଁ । ସୁତରାଂ ପ୍ରଥମ ବହି ଛାପିବାରେ ଯେଉଁ Adventure ତାହା Misadventureରେ ପରିଣତହେଲା ।

ମୋ ଜୀବନରେ ସୁଖଦୁଃଖ ସବୁବେଳେ ପାଖାପାଖି ଥାନ୍ତି । ଆନନ୍ଦଟା ସାଙ୍ଗେ ସାଙ୍ଗେ ମଉଳି ଦୁଃଖରେ ପରିଣତ ହୋଇଯାଏ । ଏହି ସମୟରେ ସକାଳୁ ସାନଭାଇ

ପାଖରୁ ଟେଲିଗ୍ରାମଟିଏ ଆସିଲା, 'ମାଆ ଚାଲିଗଲେ, ଶୀଘ୍ର ଆସ'। ମୁଁ ସେହିଦିନ ଉପରବେଳା ବସ୍‌ରେ ବାଙ୍ଗିରୀପୋଷୀ ଗଲି। ଆମର ସେଆଡେ ବାସିମଡା କରନ୍ତି ନାହିଁ; ଯେ ପର୍ଯ୍ୟନ୍ତ ଶବଦାହ ନ ହୋଇଛି, ସେ ପର୍ଯ୍ୟନ୍ତ ଗାଁର ଲୋକେ ଭାତ ରାନ୍ଧନ୍ତି ନାହିଁ। ଦୂରତା ଦୃଷ୍ଟିରୁ ନହେଲେ ମଧ୍ୟ ସରବରାହ ଅସୁବିଧାଯୋଗୁଁ ମୋର ଯାଇ ପହଞ୍ଚିବାକୁ ଡେରିହେଲା। ପ୍ରାୟ ସନ୍ଧ୍ୟାହେଇ ଆସୁଥାଏ। ରେଳଲାଇନ ପାର୍‌ହେଲା ବେଳକୁ ବସ୍ ଭିତରୁ ଦେଖିଲି, ପ୍ରାୟ ମାଇଲେ ଦୂରରେ ହୁଡିତଳେ ଶ୍ମଶାନରେ ଲହଲହ ହୋଇ ଅଗ୍ନିଶିଖା ଜଳୁଛି। ଭାଇସରେ ପହଞ୍ଚି ଦେଖିଲି, ସାନଭାଇ ଖାଲିଦେହରେ ଓଦାସରସର ହୋଇ, ଥରିଥରି ଘରକୁ ଫେରୁଛି। ବାପା ମଧ୍ୟ ତା ସାଙ୍ଗରେ ଅଛନ୍ତି। ସେ ଶ୍ମଶାନକୁ ଯାଇଥିଲେ ମନ୍ତ୍ର-ଯନ୍ତ୍ର କରିବାପାଇଁ। ମାଆ ଖୁବ୍ ଦୁର୍ବଳ ହୋଇ ଯାଇଥିଲେ। ମୁଁ ୮ ଦିନ ଆଗରୁ ଯାଇ ତାକୁ ଦେଖିଆସିଥିଲି। ମାଆର ବୟସ ହୋଇଥିଲା ୬୪ ବର୍ଷ। ବାପା ଆଦୌ ଅଧୈର୍ଯ୍ୟ ହୋଇନଥାନ୍ତି। ମୋର 'ମାଆ' ଡାକ ସବୁଦିନପାଇଁ ସରିଗଲା। ମୋ ସ୍ତ୍ରୀ ତା ଦୁଇବର୍ଷ ଆଗରୁ ଚାଲିଯାଇଥିଲା। ଯାହା କିଛି ସ୍ନେହ ଶ୍ରଦ୍ଧା ଦୁନିଆରେ ପାଇଥିଲି, ତହିଁର ଉତ୍ସ ସେହି ଦୁଇଜଣ। ମାଆ ଓ ସ୍ତ୍ରୀର ମହିମା କିଏ ବର୍ଣ୍ଣନା କରିପାରିବ ! ଶୁଦ୍ଧିକ୍ରିୟା ପରେ ନଣ୍ଡାହୋଇ ମୁଁ ଜାଣିଲି, ଯେଉଁ ଦୁଇଟି ଚଢେଇ ଜଣକ ପରେ ଜଣେ ମୋତେ ଡେଣା ତଙ୍କାଇ ରଖିଥିଲେ ସେହି ରକ୍ଷାକାରିଣୀମାନେ ମତେ ଲଣ୍ଡା କରିଦେଇ ଚାଲିଗଲେ। ଜୀବନରେ ଆଉ ଉଷ୍ମତା ଆସିବ କେଉଁଠୁ ଓ କାହା ପାଖରୁ ?

ଲେଖାଲେଖି କିନ୍ତୁ ଚାଲିଥାଏ। କେବେ ଗଳ୍ପ ଲେଖେତ, ଆଉ କେବେ ଇଂରାଜୀ ପ୍ରବନ୍ଧ (ରମ୍ୟ ରଚନା) ଓଡିଆରେ ଅନୁବାଦ କରେ। ସେଥିରୁ ଅଧିକାଂଶ 'ସାମ୍ମୁଖ୍ୟ' ପତ୍ରିକାରେ ଛପା ହୋଇଥିଲା। ଆଗରୁ କହିଛି, ଇଂରାଜୀ ପଡିବାର ମୋର ଉଦ୍ଦେଶ୍ୟହେଉଛି ଇଂରାଜୀ ସାହିତ୍ୟର ଅମୂଲ୍ୟ ମଣି (ଏକାଙ୍କିକା ହେଉ, ପ୍ରବନ୍ଧ ହେଉ, ବା ସେକ୍ସପିୟର୍ ନାଟକ ବହି ହେଉ)କୁ ଓଡିଆ ପାଠକମାନଙ୍କ ଆଗରେ ଉପସ୍ଥାପିତ କରିବା। ସେହି ଉଦ୍ଦେଶ୍ୟରେ ମୁଁ "ନବନାଟିକା", "ଚାର୍ଲସ ଲେମ୍ବଙ୍କ ସେକ୍ସପିୟର୍ କାହାଣୀ ମାଳା" ଛାପିଲି ଏବଂ ଫକୀରମୋହନଙ୍କ ଭାରତୀୟ ପାଠକଙ୍କ ଆଗରେ ଉପସ୍ଥାପିତ କରିବାପାଇଁ ପେଟେଣ୍ଟ ମେଡିସିନ୍, ରାଣ୍ଡିପୁଅ ଅନନ୍ତା, ରେବତୀ, ଧୂଳିଆ ବାବା ଆଦି ଗଳ୍ପକୁ ଇଂରାଜୀ କଲି। Fakirmohan : His Mind and Art ଶୀର୍ଷକ ପ୍ରବନ୍ଧଟିଏ ମଧ୍ୟ ହିନ୍ଦୁସ୍ଥାନ ଷ୍ଟାଣ୍ଡାର୍ଡରେ ଛପାଇଲି। ଯାହାର ହିନ୍ଦୀ ଅନୁବାଦ ଅଧ୍ୟାପକ ଯାଦବ ଜୀ ହିନ୍ଦୀ ପତ୍ରିକାରେ ଛପାଇଥିଲେ। Indian Literature ସହ ସମ୍ପର୍କ ରଖି କିଛି ଓଡିଆ ସାହିତ୍ୟର ସର୍ଭେ ଛପାଇଥିଲି। 'ଚମ୍ପା' ବୋଲି ଗୋଟିଏ ନାଟକ ଫକୀରମୋହନ

ସେନାପତିଙ୍କର "ଛମାଣ ଆଠଗୁଣ୍ଠ"ର ଉପନ୍ୟାସ ଉପରେ ପର୍ଯ୍ୟବସିତ ହୋଇ ଏହି ସମୟରେ ପ୍ରକାଶିତ ହୋଇଥିଲା । ସେହି ନାଟକଟି ମୁଁ ରଙ୍ଗମଞ୍ଚରେ ଦେଖାଇଥିଲି । ଜଣେ ଛାତ୍ର ଓ ଜଣେ ଛାତ୍ରୀ ଯଥାକ୍ରମେ ମଙ୍ଗରାଜ ଓ ଚମ୍ପା ଭୂମିକାରେ ଭାରି ସୁନ୍ଦର ଅଭିନୟ କରିଥିଲେ । ସେମାନେ ଯେଉଁ ଅଭିନୟ କରିଥିଲେ, ତାହା ସର୍ବସାଧାରଣରେ ପ୍ରଶଂସିତ ହୋଇଥିଲା । ତା ପରେ ନଟବର ସେଣ ଓ ସୁଜାତା ଯଥାକ୍ରମେ ମଙ୍ଗରାଜ ଓ ଚମ୍ପା ଭୂମିକାରେ 'ଅର୍ଣ୍ଣପୂର୍ଣ୍ଣା' ରଙ୍ଗ ମଞ୍ଚରେ ଦର୍ଶକଙ୍କୁ ଚମତ୍କୃତ କରିଥିଲେ । ସେସମୟରେ ମୋର ଧାରଣା ହୋଇଥିଲା ଯେ, ଓଡ଼ିଆ ସାହିତ୍ୟରୁ ହାସ୍ୟ, ବ୍ୟଙ୍ଗ ଓ ରଙ୍ଗରସ କ୍ରମେ ଉଭେଇ ଯାଉଛି, ଯାହାକୁ ପୁଣି ସାହିତ୍ୟରେ ପ୍ରକାଶ କରିବା ଓଡ଼ିଆ ଲେଖକଙ୍କର ସର୍ବ ପ୍ରଧାନ କର୍ତ୍ତବ୍ୟ । ଲେଖାଲେଖି କାମରେ ମୋତେ ଉତ୍ସାହ ଦେଇଚାଲିଥିଲେ, 'ବିଶ୍ୱଶ୍ରୀ ପ୍ରେସ୍'ରେ ପ୍ରତି ସନ୍ଧ୍ୟାରେ ଆଡ୍ଡା ଜମାଉଥିବା ବ୍ରଜବାବୁ, ଟାଉନପ୍ରେସ୍‌ର ବିଜୟ ଦେ ବାବୁ, ସାମ୍ବାଦିକ ମିହିର୍ ବାବୁ ଓ ଅନ୍ୟ ବଂଧୁମାନେ । ସଙ୍ଗୀତଜ୍ଞ ସୁକୁମାର ସାହୁ ଫକୀରମୋହନଙ୍କ ସଭାରେ ଆବାହନୀ ସଙ୍ଗୀତଟି ଗାଇ ଆମ ସମସ୍ତଙ୍କୁ ମୁଗ୍ଧ ଚକିତ କରିଥାନ୍ତି । କ୍ରମେ କ୍ରମେ ମୋର ସାହିତ୍ୟ ପ୍ରୀତି ଯେତିକି ଯେତିକି ବଢୁଥାଏ, ଲୋକପ୍ରିୟତା ମଧ୍ୟ ସେତିକି ବଢୁଥାଏ । ଏବଂ କ୍ରମେ ବାଲେଶ୍ୱର ସହର ଓ ମୟୁରଭଞ୍ଜର ବାରିପଦା ସହର ଏକ ହୋଇଗଲେ । ଅର୍ଥାତ୍ ବାଲେଶ୍ୱରୀ ମଣା ଓ ବାରିପଦିଆ ପାହାଡ଼ିଆ ମୂଷା ଏକ ହୋଇଗଲା ପରି ଲାଗିଲା ।





ରେଭେନ୍‌ସା ଛାତ୍ର



ରେଭେନ୍‌ସା ଛାତ୍ର



ରେଭେନ୍‌ସା ବନ୍ଧୁମାନଙ୍କ ଗହଣରେ



ତାଜମହଲ, ଆଗ୍ରା, ୧୯୫୫



୧୯୬୦, ଏସ୍.କେ.ସି.ଜି କଲେଜ, ପାରଳାଖେମୁଣ୍ଡି



୧୯୬୦, ଏସ୍.କେ.ସି.ଜି କଲେଜ, ପାରଳାଖେମୁଣ୍ଡି



୧୯୬୦, ଏସ୍.କେ.ସି.ଜି କଲେଜ, ପାରଳାଖେମୁଣ୍ଡି



୧୯୬୫, ବାଲେଶ୍ୱର, ଷ୍ଟାଡ଼ିୟମ୍ ସାମ୍ନା



୧୯୬୪, ଫକୀରମୋହନ କଲେଜ, ବାଲେଶ୍ୱର



ଷ୍ଟାଡ଼ିୟମ ସାମ୍ନା ଘରର ଅଗଣାରେ



୧୯୭୦, ବାଲେଶ୍ୱର



ଫକୀରମୋହନ କଲେଜ, ଡ୍ରାମାଟିକ ସୋସାଇଟି



ବସନ୍ତ ଶତପଥୀ, ଯଦୁନାଥ ଦାଶ ମହାପାତ୍ର ଓ ନନ୍ଦକିଶୋର ଦାସ (ପୂର୍ବତନ ବାଚସ୍ପତି, ଓଡ଼ିଶା ବିଧାନସଭା)



୧୯-୧-୧୯୮୮, (ବିଶ୍ୱଶ୍ରୀ ପ୍ରେସ୍ - ବାଲେଶ୍ୱର)
ବାମରୁ ଡ଼ାହାଣକୁ : ଶ୍ରୀ ବ୍ରଜନାଥ ରଥ, ଶ୍ରୀ ସମରେନ୍ଦ୍ର ନାୟକ, ଶ୍ରୀ ବସନ୍ତ ଶତପଥୀ



କର୍ମସ୍ଥଳୀ ସହଦେବଖୁଣ୍ଟା ବାସଭବନରେ କାର୍ଯ୍ୟରତ

୧୯୮୦-୧୯୮୮



ଫକୀରମୋହନ ସାର୍ଦ୍ଧଶତବାର୍ଷିକ ଜୟନ୍ତୀ ଉପଲକ୍ଷେ ଆଲୋଚନା ଚକ୍ର
ବିଶ୍ୱଭାରତୀ - ଓଡିଆ ବିଭାଗ, ଶାନ୍ତିନିକେତନ
୨୩ - ୨୫ ଫେବ୍ରୁଆରୀ - ୧୯୯୨

ଆତ୍ମଜୀବନୀ ଆଜି ଓଡିଆ ସାହିତ୍ୟର ଏକ ଆଖିଦୃଶିଆ ଓ ଗୁରୁତ୍ୱପୂର୍ଣ୍ଣ ଅଙ୍ଗ । ନୀଳକଣ୍ଠ ଦାସ, ଗୋଦାବରୀଶ ମିଶ୍ର, କୁଞ୍ଜବିହାରୀ ଦାଶ, ଗୋପୀନାଥମହାନ୍ତି, ଚିତ୍ତରଞ୍ଜନ ଦାସ, ସଚ୍ଚି ରାଉତରାୟ, ସୁରେନ୍ଦ୍ର ମହାନ୍ତିଙ୍କ ପରି ସାହିତ୍ୟିକ; ରମାଦେବୀ, ଅନ୍ନପୂର୍ଣ୍ଣା ମହାରଣାଙ୍କ ପରି ସମାଜସେବୀ; ହରେକୃଷ୍ଣ ମହତାବ, ନୀଳମଣି ରାଉତରାୟଙ୍କ ପରି ରାଜନୀତିଜ୍ଞ ଓ ଏମାନଙ୍କ ବ୍ୟତୀତ ଆହୁରି ଅନେକଙ୍କ ଆତ୍ମଜୀବନୀ ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଛି । ସେଇ ପ୍ରବାହର ଧାରାରେ ବସନ୍ତ ବାବୁଙ୍କ 'ମନେପଡ଼େ' ଆଉ ଏକ ଉଲ୍ଲେଖନୀୟ ସଂଯୋଜନ ।

ବସନ୍ତ ବାବୁଙ୍କ ମନସ୍ତତ୍ତ୍ୱ ବେଶୀଭାଗ ଅନ୍ତର୍ମୁଖୀ, ଆବେଗ-ପରିଚାଳିତ ଓ "ଅଙ୍ଗେ ନିଭେଇଥିବା" ଅନୁଭବ ପ୍ରତି ନିଷ୍ଠା । ଯାହା ଯାହା ମନେପଡ଼େ ବହିଟି ତା'ର ଏକ ସ୍ୱଚ୍ଛ, ବ୍ୟକ୍ତିନିଷ୍ଠ, ଅନୁରାଗଭରା ରୂପାୟନ । ପାଠକ ଆଖିକୁ ସ୍ୱତଃ ଦିଶିଯାଏ ସ୍ନେହୀ ମଣିଷଟିଏ, ଯିଏ ଜୀବନରେ ବହୁ ଦୁଃଖର ଝଡ ଝଞ୍ଜା ଭିତରେ ଯାଇଛି କିନ୍ତୁ ଜୀବନବିମୁଖ ହୋଇ ପଡିନି, ଭାଗ୍ୟକୁ ଦୋଷ ଦେଇନି । ଅନ୍ୟପକ୍ଷରେ ଭିତରେ ରହିଛି ଏମିତି କିଛି ଟାଣୁଆପଣ, ଜୀବନ-ଅନୁରକ୍ତି ଯାହା ଦୁଃଖ ସହିବାକୁ ଶିଖାଇଛି, ସ୍ନେହ ବାଣ୍ଟିବାକୁ ଶିଖାଇଛି, ଅନ୍ୟ ସୁଖଦୁଃଖରେ ଭାଗନେବାର ସ୍ୱାଭାବିକ ପ୍ରବୃତ୍ତିକୁ ଜିଆଇ ରଖିଛି ।

ସୀତାକାନ୍ତ ମହାପାତ୍ର




ଏ-୧୨, ହାଉସିଂ ବୋର୍ଡ଼ କଲୋନୀ,
ବରମୁଣ୍ଡା, ଭୁବନେଶ୍ୱର-୭୫୧୦୦୩

I.S.B.N. -13:978-81-87982-46-3
ମୂଲ୍ୟ : ଟ. ୨୫୦/-